# ଶ୍ରୀମନ୍ଦିର ଶବ୍ଦକୋଷ


ସମ୍ପାଦନା : **ଡଃ ସୁରେନ୍ଦ୍ର ନାଥ ଦାଶ**
ପ୍ରାକ୍ତନ ପ୍ରଫେସର ଓ ବିଭାଗ ମୁଖ୍ୟ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର, ଭୁବନେଶ୍ୱର

ପ୍ରକାଶକ : **ଶ୍ରୀଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ**
ଡି.ଏଲ୍.ଏ.-୪୩
ଭି.ଏସ୍.ଏସ୍. ନଗର
ଭୁବନେଶ୍ୱର - ୭୫୧ ୦୦୭
ଦୂରଭାଷ : ୦୬୭୪-୨୫୮୧୧୨୫

ଅକ୍ଷର ସଜ୍ଜା : **ଶ୍ରୀମତୀ ସସ୍ମିତା ସାହୁ**
ଲତା କମ୍ପ୍ୟୁଟର କମ୍ୟୁନିକେଶନ୍
ଭି.ଏସ୍.ଏସ୍. ନଗର
ଭୁବନେଶ୍ୱର - ୭୫୧ ୦୦୭

ସଂସ୍କରଣ : **ପ୍ରଥମ ସଂସ୍କରଣ, ୨ ଜୁନ୍, ୨୦୧୫**
ଦେବସ୍ନାନ ପୂର୍ଣ୍ଣିମା
(ନବକଳେବର ବର୍ଷ)

ମୁଦ୍ରଣ : **ପ୍ରିଣ୍ଟଟେକ୍ ଅଫସେଟ୍ ପ୍ରା. ଲି.**
ଶୈଳଶ୍ରୀ ବିହାର, ଭୁବନେଶ୍ୱର
ମୋ- ୯୩୩୭୧୦୦୩୯୬

କଭର୍ ଓ ଚିତ୍ର ଅଙ୍ଗସଜ୍ଜା : **ଶ୍ରୀ ନିରଞ୍ଜନ ଡାଲୁଆ, କଟକ**

ମୂଲ୍ୟ : **୫୦୦.୦୦ ମାତ୍ର**


# SRIMANDIRA SABDAKOSHA


Edited by : **Dr. Surendranath Dash**
Former Prof. & Head of the Dept.
P.G. Department of Odia
Utkal University, Vani Vihar
Bhubaneswar

Publisher : **SriJagannath Research Institute**
D.L.A. -43, Vir Surendra Sai Nagar
Bhubaneswar - 751 007
Ph.: 0674-2581125

D.T.P. : **Smt. Sasmita Sahoo**
Lata Computer Communication
Vir Surendra Sai Nagar
Bhubaneswar - 751 007

Edition : **1st Edition, 2nd June, 2015**
Deva Snana Purnima
(Navakalebara year)

Printing : **Print-Tech Offset Pvt. Ltd.**
Sailashree Vihar, Bhubaneswar
Mob : 9337100396

Cover Design & Photography : **Sri Niranjan Dalua** Cuttack

Price : **Rs. 500/- only**

ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ, ନୂଆ ଦିଲ୍ଲୀ ର ଆର୍ଥିକ ସହାୟତାରେ ଏକ ବୃହତ୍ତର ଗବେଷଣା ପ୍ରକଳ୍ପ ଦ୍ୱାରା ପ୍ରସ୍ତୁତ ।



"......... ଯାହାଙ୍କ ବିଷୟ ବର୍ଣ୍ଣିତ,

ଏ ପୁସ୍ତକ ତାହାଙ୍କ ପାଦପଦ୍ମେ ସମର୍ପିତ"

**ସମ୍ପାଦକ**



ଶ୍ରୀମନ୍ଦିରର ଧାର୍ମିକ ବ୍ୟବସ୍ଥାର ମାର୍ଗଦର୍ଶକ ଓ ମୁକ୍ତିମଣ୍ଡପର ନାୟକ
ଶ୍ରୀ ଶ୍ରୀ ନିଶ୍ଚଳାନନ୍ଦ ସରସ୍ୱତୀ ମହାରାଜ, ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ, ପୁରୀ



ଶ୍ରୀମନ୍ଦିରର ପ୍ରଥମ ସେବକ

ଶ୍ରୀ ଶ୍ରୀ ଦିବ୍ୟସିଂହଦେବ ଗଜପତି ମହାରାଜା, ପୁରୀ

# ସଙ୍କେତ ବ୍ୟାଖ୍ୟା

| | | | |
|---|---|---|---|
| ଶ୍ରୀମନ୍ଦିର ସତ୍ତ୍ୱଲିପି | : ଶ୍ରୀ.ସ. | ଶ୍ରୀଜଗନ୍ନାଥଙ୍କ ପର୍ବପର୍ବାଣି ଓ ସେବାପୂଜା | : ଶ୍ରୀ.ପ.ସେ.ପୂ. |
| ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ | : ପୂ.ଓ.ଭା. | ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ | : ଶ୍ରୀ.ଶ୍ରୀ. |
| ଶବ୍ଦ କଳ୍ପଦ୍ରୁମ | : ଶ.କ. | ଶ୍ରୀଦାରୁବ୍ରହ୍ମଙ୍କ ଆଜ୍ଞାମାଳା ରହସ୍ୟ | : ଶ୍ରୀ.ଆ.ର. |
| ପୁରୀ ବୋଲି | : ପୁ.ବୋ. | ଶ୍ରୀକ୍ଷେତ୍ର ଜିଜ୍ଞାସା | : ଶ୍ରୀ.ଜି. |
| ଓଡ଼ିଆ ସାଂସ୍କୃତିକ ଶବ୍ଦାବଳୀ | : ଓ.ସାଂ.ଶ. | ପ୍ରାଚୀନ ଉତ୍କଳ | : ପ୍ରା.ଉ. |
| ମାଦଳାପାଞ୍ଜି | : ମା.ପା. | ଚରିତ ଚିନ୍ତାମଣି | : ଚ.ଚି. |
| ପ୍ରମୋଦ ଅଭିଧାନ (୧ମ, ୨ୟ, ୩ୟ) | : ପ୍ର.ଅ. | ବିରଜାକ୍ଷେତ୍ର ମାହାତ୍ମ୍ୟ | : ବି.ମା. |
| ପୌରାଣିକା (ବଂଗଳା) | : ପୌ(ବ) | ଶବ୍ଦତତ୍ତ୍ୱବୋଧ ଅଭିଧାନ | : ଶ.ତ.ବୋ.ଅ. |
| ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ | : ଉ.ଇ.ଅ.ଅ | ମେଦିନୀ କୋଷ | : ମେ.କୋ. |
| ଶ୍ରୀଜଗନ୍ନାଥଙ୍କ ସେବା ଓ ସେବକ | : ଶ୍ରୀ.ସେ.ସେ. | ପୁରୀର ମଠ ସଂସ୍କୃତି | : ପୁ.ମ.ସଂ. |
| ଶ୍ରୀମନ୍ଦିର ଶବ୍ଦାବଳୀ | : ଶ୍ରୀ.ଶ. | ସଂସ୍କୃତ | : ସଂ. |
| ସେବକ ଦର୍ପଣ | : ସେ.ଦ. | ଦେଶଜ | : ଦେ. |
| ଶ୍ରୀମନ୍ଦିର ବେଢ଼ାସ୍ଥ ଦେବଦେବୀ | : ଶ୍ରୀ.ବେ.ଦେ. | ବିଶେଷ | : ବି. |
| ଶ୍ରୀଜଗନ୍ନାଥ ଚେତନାର ଦୀପ୍ତି ଓ ବ୍ୟାପ୍ତି | : ଶ୍ରୀ.ଚେ.ଦୀ.ବ୍ୟା. | ବିଶେଷଣ | : ବି.ଣ. |
| କ୍ରମବିକଶିତ ଓଡ଼ିଆ ଶବ୍ଦସମ୍ଭାର | : କ୍ର.ଓ.ଶ. | ବୈଦେଶିକ | : ବୈ |
| ଦାରୁବ୍ରହ୍ମଙ୍କର ନବକଳେବର | : ଦା.ନ. | କ୍ରିୟାପଦ | : କ୍ରି. |
| ମହାପ୍ରଭୁଙ୍କର ନବକଳେବର | : ମ.ନ. | ପ୍ରଥମ ଭାଗ | : ୧ମ |
| ଶ୍ରୀଜଗନ୍ନାଥ ବେଶ ବୈଶିଷ୍ଟ୍ୟ | : ଶ୍ରୀ.ବେ.ବୈ | ଦ୍ୱିତୀୟ ଭାଗ | : ୨ୟ |
| ଶ୍ରୀଜଗନ୍ନାଥଙ୍କ ବେଶ ରହସ୍ୟ | : ଶ୍ରୀ.ବେ.ର. | ପୃଷ୍ଠା | : ପୃ. |

# ମୋ ହୃଦୟର କଥା

ଜାତିଧର୍ମ ବିଶ୍ୱାସ ନିର୍ବିଶେଷରେ ଜ୍ଞାନୀ, ଗୁଣୀ, ସାଧୁ, ସନ୍ଥ, ଦେଶୀ, ବିଦେଶୀ ଅନୁସନ୍ଧିତ୍ସୁ ଯେପରି ଶ୍ରୀଜଗନ୍ନାଥଙ୍କ ରହସ୍ୟ ଭେଦ କରିବାକୁ ଅବିରତ ପ୍ରଚେଷ୍ଟା କରୁଛନ୍ତି, ସେହିପରି ଶ୍ରୀମନ୍ଦିର ପରିସରରେ ସେବାୟତମାନଙ୍କ ଦ୍ୱାରା ମନ୍ଦିର ସହିତ ସଂପୃକ୍ତ ଅଧିକାରୀ ଭକ୍ତମାନଙ୍କ ଦ୍ୱାରା ବ୍ୟବହୃତ ଶବ୍ଦର ପ୍ରଚଳିତ ଅର୍ଥ ଭେଦ କରିବାରେ ମଧ ଏକ ଅସମାହିତ ଉଦ୍ୟମ ଅଦ୍ୟାବଧି ଚାଲିଆସିଛି । ଏ' ଏକ ଉତ୍କଣ୍ଠା, ଏକ ଅନିର୍ବଚନୀୟ ଆନନ୍ଦ ଏଥିରେ ବିଦ୍ୟମାନ । ଶବ୍ଦ ପ୍ରୟୋଗର ଚାତୁରୀ ପୁଣି ତାକୁ ବ୍ୟବହାର କଲାବେଳେ ଶବ୍ଦ ତରଙ୍ଗ, ବଳାଘାତ, ସ୍ୱର ଲହରର ମାଦକତାରେ ମୋହିତ ହୋଇଯାନ୍ତି । ଭକ୍ତ ମଣିଷଠୁ ଆରମ୍ଭ କରି ତତ୍ତ୍ୱଦର୍ଶୀଙ୍କ ଯାଏ, ଏ' ଶବ୍ଦ କୋଳାହଳ ଭିତରେ ଏକ ପରମ ଐଶ୍ୱର୍ଯ୍ୟବନ୍ତ ଜାଗତିକ ତୃପ୍ତି ମିଳୁଥିବାର ଅଲବ୍ଧ ଉପଲବ୍ଧିକୁ ଅଳ୍ପ ବହୁତେ ଯେ ଅଙ୍ଗେ ଲିଭାନ୍ତି, ସେମାନେ ପ୍ରକୃତରେ ମୁଗ୍ଧ ଓ ତନ୍ମୟ ହୁଅନ୍ତି ଏମାନଙ୍କର ବ୍ୟବହାରରେ ।

କାହିଁ କେଉଁ ବର୍ଷରୁ ଏମିତି ବିମୋହନରେ ମୁଗ୍ଧ ଓ ଚକିତ ହେଉଥିଲି ମୁଁ, ଯେତେଥର ପୁରୀ ଯାଇଛି, ଶ୍ରୀଜୀଉଙ୍କ ମୁଖାବଲୋକନରେ ମୁଁ ଯେତିକି ତନ୍ମୟ ହୋଇଛି, ମନ୍ଦିର ସେବାୟତମାନଙ୍କର ଅଦ୍ଭୁତ ଭାଷା ପ୍ରୟୋଗ ଓ ବ୍ୟବହାରରେ ଚକିତ ହୋଇଛି । ଏ' ରହସ୍ୟଘେରରୁ ମୁକ୍ତ ହେବାକୁ ବେଳେବେଳେ ଅତ୍ୟନ୍ତ ଉତ୍କଣ୍ଠିତ ହୋଇଛି । ଅଣନିଃଶ୍ୱାସୀ ହୋଇ ଖୋଜିଛି ବ୍ୟବହାରରେ ଏପରି ସୁଲଭ ପ୍ରାଣ ସତ୍ତାର ରୂପ; ଯେତିକି ଖୋଜିଛି ସେତିକି ପାଖକୁ ଆସିବା ପରିବର୍ତ୍ତେ ଦୂରେଇ ଯାଇଛି ଶବ୍ଦ ସିନ୍ଧୁର ମଧୁର ଆକର୍ଷଣରୁ ଏବଂ ପୁଣି ସେତିକି ତୀବ୍ରତାର ସହ ଆକର୍ଷିତ ହୋଇଛି ଏ' ସିନ୍ଧୁରେ ଅବଗାହନ ପାଇଁ ।

ଏଇ ଅବଗାହନ, ନିମଜ୍ଜନ ଏବଂ ଉର୍ଦ୍ଧ୍ୱଶ୍ୱାସ ହୋଇ ଖୋଜିବାରେ ମୋର ପ୍ରୟାସ କେବେଠୁ ଆରମ୍ଭ ହୋଇଛି, ମନେ ନାହିଁ, କିନ୍ତୁ ଏହାକୁ ଆନୁଷ୍ଠାନିକ ରୂପ ଦେବା ପାଇଁ ଯେଉଁ ଶୁଭେଚ୍ଛୁ, ଶ୍ରଦ୍ଧାଶୀଳ ଭାଷାତତ୍ତ୍ୱବିତ୍, ବନ୍ଧୁ, ସେବାୟତ ବନ୍ଧୁ ସେମାନଙ୍କର ବିଦ୍‌ବତ୍ତା, ଜଗନ୍ନାଥ ପ୍ରେମ, ଐକାନ୍ତିକତା, ସେବାପରାୟଣତା ଦ୍ୱାରା ଅନୁଗୃହୀତ କରିଛନ୍ତି, ସେମାନଙ୍କୁ ଏହି ଅବସରରେ ମୁଁ ସ୍ମରଣ କରୁଛି ।

ଏ ପ୍ରକାର ଏକ ସଂକଳନକୁ ଆଭିଧାନିକ ରୂପ ପ୍ରଦାନ କରିବା ପାଇଁ ଓଡ଼ିଶାର ଆଧାତ୍ମ ପ୍ରାଣ ଶ୍ରୀ ଶ୍ରୀଜଗନ୍ନାଥଙ୍କ ପରମ କରୁଣାର ସହିତ ଆଧାତ୍ମିକ ଓଡ଼ିଶାର ଦିଗ୍‌ଦର୍ଶକ ପରମ ପୂଜ୍ୟ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀ ଶ୍ରୀ ନିଶ୍ଚଳାନନ୍ଦ ସରସ୍ୱତୀ ମହାରାଜଙ୍କର ଆଶୀର୍ବାଦ ଏବଂ ଓଡ଼ିଶାର ପରମପୂଜ୍ୟ ଗଜପତି ଶ୍ରୀ ଶ୍ରୀ ଦିବ୍ୟସିଂହଦେବ ମହାରାଜାଙ୍କର ଉତ୍ସାହ ଓ ପ୍ରେରଣା ଏ' କ୍ଷେତ୍ରରେ ମୋର ପ୍ରଥମ ସୋପାନ ଥିଲା ।

ଯେଉଁ ବିଶିଷ୍ଟ ବ୍ୟକ୍ତିବିଶେଷ ତତ୍ତ୍ୱାନୁସନ୍ଧାନୀ, ଭାଷାତତ୍ତ୍ୱବିତ୍, ସେବାୟତ, ଜଗନ୍ନାଥପ୍ରେମୀ ଗବେଷକ, ଅନୁସନ୍ଧିତ୍ସୁମାନେ ଏହି ଗ୍ରନ୍ଥ ସଙ୍କଳନ କ୍ଷେତ୍ରରେ ନିଜର ବହୁମୂଲ୍ୟ ସମୟ, ଅନୁଭୂତି ଓ ଅଭିଜ୍ଞତାକୁ ନିୟୋଜନ କରିଛନ୍ତି ସେମାନେ ହେଲେ ଓଡ଼ିଶାର ବିଶିଷ୍ଟ ଭାଷାବିତ୍ ପ୍ରଫେସର ଦେବୀ ପ୍ରସନ୍ନ ପଟ୍ଟନାୟକ, ପ୍ରଫେସର ଖଗେଶ୍ୱର ମହାପାତ୍ର, ପ୍ରଫେସର କୈଳାସ ଟିକାୟତରାୟ, ପ୍ରଫେସର ପ୍ରମୋଦ କୁମାର ପରିଡ଼ା, ପ୍ରଫେସର ନାରାୟଣ ସାହୁ, ପ୍ରଫେସର କୈଳାସ ପଟ୍ଟନାୟକ, ପ୍ରଫେସର ଗିରିବାଳା ମହାନ୍ତି, ବିଶିଷ୍ଟ ଶ୍ରୀଜଗନ୍ନାଥ ସଂସ୍କୃତି ଗବେଷକ ଡଃ ଶ୍ରୀନିବାସ ଆଚାର୍ଯ୍ୟ, ଡଃ ଭାସ୍କର ମିଶ୍ର, ଡଃ ସୁରେନ୍ଦ୍ର କୁମାର ମିଶ୍ର, ଡଃ ସୁନୀଲ କୁମାର ରଥ, ଡଃ ଉମେଶ ଚନ୍ଦ୍ର ଚିନ୍ନାରା, ଡାକ୍ତର କୃଷ୍ଣକେଶବ ଷଡଙ୍ଗୀ, ଶ୍ରୀ ପ୍ରଫୁଲ୍ଲ କୁମାର ମହାପାତ୍ର, ଶ୍ରୀମନ୍ଦିର ସେବାୟତ ଡଃ

ସିଦ୍ଧେଶ୍ୱର ମହାପାତ୍ର, ଶ୍ରୀ ପୂର୍ଣ୍ଣଚନ୍ଦ୍ର ଖୁଣ୍ଟିଆ, ଶ୍ରୀକୃଷ୍ଣଚନ୍ଦ୍ର ସୁବୁଦ୍ଧି ଓ ଙ୍ଙ. ବଳଦେବ ସିଂହାରି ପ୍ରମୁଖ । ଏମାନେ ଅଭିଧାନର ଶବ୍ଦଗୁଡ଼ିକୁ ବିଶେଷ ବିଶ୍ଳେଷଣ ସହିତ ଶ୍ରୀମନ୍ଦିର ପ୍ରଚଳିତ ଶବ୍ଦଗୁଡ଼ିକର ଗ୍ରହଣଯୋଗ୍ୟ ବ୍ୟାଖ୍ୟା କରିଛନ୍ତି ।

ପୁସ୍ତକ ଆକାରରେ ଏହି ସଂଗୃହୀତ ଶବ୍ଦକୋଷ ପ୍ରସ୍ତୁତି ହେଲାବେଳେ ସେମାନଙ୍କର ଅକୁଣ୍ଠ ସହାୟତା, ଅକୃତ୍ରିମ ଶ୍ରଦ୍ଧା ଓ ଅନୁପମ ଉପଦେଶକୁ ଅନ୍ତରର ସହ ସ୍ମରଣ କରୁଛି ।

କ୍ଷେତ୍ରୀୟ ସର୍ବେକ୍ଷଣ କାର୍ଯ୍ୟ, ତଥ୍ୟ ଆହରଣ, ପୁସ୍ତକ ପ୍ରସ୍ତୁତି ଓ ମୁଦ୍ରଣ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ସଦାସର୍ବଦା ସାହାଯ୍ୟ ଓ ସହଯୋଗ କରୁଥିବା ଙ୍ଙ. ଶ୍ରୀଯୁକ୍ତ ଅଲେଖ କୁମାର ଦାସଙ୍କୁ ମୁଁ ମୋର ଅନ୍ତରର ଅନ୍ତରତମ ପ୍ରଦେଶରୁ ଅନନ୍ତ କୃତଜ୍ଞତା ଜ୍ଞାପନ କରୁଛି ।

ଅଭିଧାନଟି ଶ୍ରୀମନ୍ଦିର ସତ୍ତ୍ୱଲିପିକୁ ଆଧାର କରି ପ୍ରସ୍ତୁତ ହୋଇଥିଲେ ମଧ୍ୟ ମାଦଳାପାଞ୍ଜି, ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ଶବ୍ଦ କଳ୍ପଦ୍ରୁମ, ପ୍ରମୋଦ ଅଭିଧାନ, ପ୍ରାଚୀନ ଉତ୍କଳ, ଚରିତଚିନ୍ତାମଣି, ଓଡ଼ିଶାର ସାଂସ୍କୃତିକ ଇତିହାସ ଓ ଶ୍ରୀଜଗନ୍ନାଥ ସମ୍ପର୍କୀୟ ବହୁ ଉପାଦେୟ ପୁସ୍ତକ ଓ ଅଭିଧାନଗୁଡ଼ିକର ସହାୟତା ସହ କ୍ଷେତ୍ରିୟ ସର୍ବେକ୍ଷଣ ଉପରେ ପ୍ରସ୍ତୁତ ହୋଇଅଛି ।

ପୁସ୍ତକଟିର ପ୍ରସ୍ତୁତି କ୍ଷେତ୍ରରେ ଶ୍ରୀଜଗନ୍ନାଥ ପ୍ରତିଷ୍ଠାନର ଯୁଗ୍ମ ସମ୍ପାଦକ ଶ୍ରୀ ସୁରେନ୍ଦ୍ର ମହାରଣାଙ୍କର ନିର୍ବିବାଦୀୟ ଉତ୍ସର୍ଗ ଓ କର୍ମନିଷ୍ଠା, ଦୂରଦର୍ଶନର ବରିଷ୍ଠ ନିଷ୍ପାଦକ ଶ୍ରୀଯୁକ୍ତ ନୀଳାଦ୍ରିମୋହନ ଶତପଥୀ, ଗବେଷିକା ଡଃ ସ୍ମରିତା ପ୍ରଧାନ, ପଣ୍ଡିତ ଶ୍ରୀ ଚିନ୍ତାମଣି ଦାଶ, ପ୍ରାକ୍ତନ ପ୍ରଧାନଶିକ୍ଷକ ଡକ୍ଟର ସୁରେନ୍ଦ୍ର ନାଥ ମିଶ୍ର, ଗବେଷକ ଶ୍ରୀ ବିରଞ୍ଚି ନାରାୟଣ ରଥ, ଗବେଷିକା କୁମାରୀ ସରୋଜିନୀ ପାଣି, ଗଣମାଧ୍ୟମ ପ୍ରତିନିଧି କୁମାରୀ ସଙ୍ଗୀତା ମାନସିଂହଙ୍କ ସହଯୋଗ ପ୍ରଶଂସନୀୟ ।

ପ୍ରକାଶନ କ୍ଷେତ୍ରରେ ପ୍ରିଣ୍ଟ-ଟେକ୍-ଅଫ୍‌ସେଟ୍ ପ୍ରାଇଭେଟ୍ ଲିମିଟେଡ୍‌ର ସତ୍ତ୍ୱାଧିକାରୀ ଶ୍ରୀଯୁକ୍ତ ବୃନ୍ଦାବନ ବେହେରାଙ୍କ ସାହାଯ୍ୟ ଓ ସହଯୋଗରେ ଏ' ପୁସ୍ତକଟି ଠିକ୍ ସମୟରେ ପ୍ରକାଶିତ ହୋଇଥିବାରୁ ଶ୍ରୀଜଗନ୍ନାଥଙ୍କ ନିକଟରେ ମୁଁ ତାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ପରିଶେଷରେ ପାଠକମାନଙ୍କୁ ଅନୁରୋଧ କରୁଛି କି ଯେ ସେମାନେ ପୁସ୍ତକଟିକୁ ଅଧ୍ୟୟନ କରି ଏଥିରେ ଥିବା ତ୍ରୁଟି ବିଚ୍ୟୁତିକୁ ଆମକୁ ଜଣାଇଲେ ପରବର୍ତ୍ତୀ ସଂସ୍କରଣରେ ସେ ସବୁକୁ ଆମେ ସଂଶୋଧନ କରିବା ପାଇଁ ଯତ୍ନବାନ ହେବୁ ।

୦୨.୦୬.୨୦୧୫

**ସୁରେନ୍ଦ୍ର ନାଥ ଦାଶ**



# ଅ

**ଅଁଳା**-*ସଂ.ବି.*- ଏକ ଫଳ ବିଶେଷ । ତ୍ରିଫଳା (ହରିଡ଼ା, ବାହାଡ଼ା ଓ ଅଁଳା)ର ଏକ ଉପାଦାନ । ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ପୂଜାରେ ବିଶେଷ କରି ଦୈନିକ ଅବକାଶରେ ଅଁଳା ଲାଗି ହେବା ପରେ ଚନ୍ଦନ ଓ କର୍ପୂର ମିଶ୍ରିତ ଜଳରେ ଶ୍ରୀଜଗନ୍ନାଥ ସ୍ନାନ କରିଥାଆନ୍ତି ।
(ଶ୍ରୀ.ସ୍ୱ.୨ୟ- ପୃ. ୧୩ , ଓ.ସାଂ.ଶ. - ପୃ. ୧, ପୂ.ଓ.ଭା. - ପୃ.୨, ଶ.ବୋ.ଅ. - ପୃ.୧, ଶ.କ. ୧ମ - ପୃ.୧୮୧) ।

**ଅଁଳା ଘଟୁଆରୀ**-*ଦେ.ବି.*-ପୁରୀ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଅବକାଶ ନୀତିରେ ଅଁଳା ଯୋଗାଉଥିବା ସେବକ ।
(ଶ୍ରୀ.ସ୍ୱ. - ପୃ. ୧୩) ।

**ଅଁଳା ନବମୀ**-*ଦେ.ବି.*- ଏହାର ଅନ୍ୟ ନାମ ଧାତ୍ରୀ ନବମୀ । କାର୍ତ୍ତିକ ଶୁକ୍ଳ ନବମୀ ରୂପେ ପରିଚିତ । ଏହି ଦିନ ହବିଷ୍ୟାଳୀମାନେ ଅଁଳା ଗଛମୂଳେ ବିଷ୍ଣୁ (ଶ୍ରୀଜଗନ୍ନାଥ)ଙ୍କୁ ପୂଜା କରିଥାନ୍ତି । ବର୍ଷ ମଧ୍ୟରେ ଏହି ଦିନ ସାକ୍ଷୀଗୋପାଳ ମନ୍ଦିରରେ ବହୁ ସଂଖ୍ୟାରେ ଭକ୍ତମାନେ ଶ୍ରୀରାଧାଙ୍କ ପାଦ ଦର୍ଶନ କରିଥାନ୍ତି ।
(ପୂ.ଓ.ଭା. - ପୃ.୩) ।

**ଅଁଳା ବେଢ଼ା**-*ଦେ.ବି.*- ମନ୍ଦିରର ବିମାନ ଉପରେ ସ୍ଥାପିତ ଦହିଖୁଆ ପରି ଚିରୁଡ଼ା ଚିରୁଡ଼ା ଓ ଚେପଟା ଚକଡ଼ା । ଏହା ଉପରେ ଦଧିନଉତି ଥାଏ । ଅଁଳା କୋଳି ପରି କମ କମ ହୋଇଥିବାରୁ ଦଧିନଉତିର ତଳ ବଇଠି ଅଁଳା ପରି ହୋଇଥିବାରୁ ଏହାକୁ ଅଁଳା ବେଢ଼ା କୁହାଯାଏ । ଶ୍ରୀମନ୍ଦିରର ଏହି ବେଢ଼ା ଉପରେ ଏକାଦଶୀ ଦିନ ଚୁନରା ସେବକ ମହାଦୀପ ରଖିଥାଏ ।
(ପୂ.ଓ.ଭା. - ପୃ. ୨) ।

**ଅଇଘରା (ଅଗିରା) ପୁନେଇଁ**- ମାଘମାସର ପୁନେଇଁକୁ ଅଇଘରା ବା ଅଗିରା ପୁନେଇଁ କୁହାଯାଏ । ଏହି ଦିନ ସାହି ଛକମାନଙ୍କରେ ଲୋକେ ରାତିରେ ନିଆଁଜାଳି ଶୀତକୁ ବିଦାୟ ଦେଇଥାନ୍ତି । ଗ୍ରାମମୁଣ୍ଡରେ କୁଟା, ଛଣ ଆଦି ଗଦା କରି ଅଗ୍ନି ଉତ୍ସବ ପାଳନ କରନ୍ତି । ଏହି ଦିନ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ମଇଲମ ପରେ ଭିତରଛ, ପୁଷ୍ପାଳକ, ଖୁଣ୍ଟିଆ ଓ ମେକାପଙ୍କ ସାହାଯ୍ୟରେ ଶ୍ରୀ ଜଗନ୍ନାଥଙ୍କର ଗଜଉଦ୍ଧାରଣ ବେଶ କରାଯାଏ ।
(ଶ୍ରୀ. ସ୍ୱ. ୨ୟ - ପୃ. ୧୦୯) ।

**ଅଉଲ ମୂଳ**-*ଦେ.ବି.*- ଶ୍ରୀଜୀଉଙ୍କ ହସ୍ତରେ ଲାଗି ହେଉଥିବା ଏକ ସୁବର୍ଣ୍ଣ ଅଳଙ୍କାର ବିଶେଷ ।

**ଅର୍କକ୍ଷେତ୍ର**-*ସଂ.ବି.*- ପୁରୀ ଜିଲ୍ଲାର କୋଣାର୍କ । ଏହା ପୂର୍ବେ ଅର୍କକ୍ଷେତ୍ର ରୂପେ ପୁରାଣପ୍ରସିଦ୍ଧ । ଏହି ମନ୍ଦିରରେ ଅର୍କ ଅର୍ଥାତ୍ ସୂର୍ଯ୍ୟଙ୍କୁ ପୂଜା କରାଯାଉଥିଲା । ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଏହିଠାରେ ତପ ଆଚରଣ କରି କୁଷ୍ଠ ରୋଗରୁ ମୁକ୍ତ ହୋଇଥିଲେ ।
ଲାଙ୍ଗୁଳା ନରସିଂହ ଦେବ ତାଙ୍କ ରାଜତ୍ୱ କାଳରେ ବଙ୍ଗର ନବାବ ତୁଘ୍ରିଲ ଖାଁଙ୍କୁ ପରାସ୍ତ କଲା ପରେ କୋଣାର୍କ ମନ୍ଦିର ନିର୍ମାଣ କରିଥିଲେ । କୋଣାର୍କ ମନ୍ଦିର ପତନ ପରେ ସେଠାରେ ପୂଜା ପାଉଥିବା ସୂର୍ଯ୍ୟଦେବ ବର୍ତ୍ତମାନ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ପୂଜା ପାଉଛନ୍ତି ଏବଂ କୋଣାର୍କର ଅରୁଣସ୍ତମ୍ଭ ଶ୍ରୀମନ୍ଦିରର ସିଂହଦ୍ୱାର ସମ୍ମୁଖରେ ଦଣ୍ଡାୟମାନ । ଏହା ମରହଟ୍ଟା ଶାସନକାଳରେ ସ୍ଥାନାନ୍ତରିତ ହୋଇଥିଲା ।
(କ୍ଷେ.ସ.) ।

**ଅକାଳବୋଧନ ବିଜୟାଦଶମୀ**- ଅକାଳରେ ଦେବୀ ଦୁର୍ଗା ରାବଣର ବିନାଶ ନିମନ୍ତେ ରାମଚନ୍ଦ୍ରଙ୍କ

ବିଜୟ ପାଇଁ ବର ପ୍ରଦାନ କରିଥିବାରୁ ଏହାଙ୍କର ନାମ 'ଅକାଳବୋଧନ ବିଜୟାଦଶମୀ' ହୋଇଅଛି । ଶ୍ରୀମନ୍ଦିରରେ ଏହି ଦିନ ରାମକୃଷ୍ଣ ପାଲିଙ୍କିରେ, ଶ୍ରୀ ଦେବୀ, ଭୂଦେବୀ ଏବଂ ମଦନମୋହନ ମଣି ବିମାନରେ ତଥା ଦୁର୍ଗାମାଧବ ରଥାକାର ବିମାନରେ ଜଗନ୍ନାଥବଲ୍ଲଭ ମଠକୁ ବେଣ୍ଟ ନୀତି ପାଇଁ ଯାଇଥାନ୍ତି ।

(ଶ୍ରୀ.ପ.ସେ.ପୂ. - ପୃ. ୧୨୧) ।

**ଅଖଣ୍ଡଦୀପ**- *ସଂ. ବି.* ନିରବଚ୍ଛିନ୍ନ ଭାବରେ ଅହୋରାତ୍ର ପ୍ରଜ୍ୱଳିତ ଦୀପ । ଦେବଦେବୀଙ୍କ ପାଖରେ ଜଳୁଥିବା ଅଲିଭା ଦୀପ । କାର୍ତ୍ତିକ ମାସରେ ରାଧାକାନ୍ତ ମଠ ଓ ବଡଓଡ଼ିଆ ମଠ ତରଫରୁ ଜୟବିଜୟ ଦ୍ୱାରରେ ଅଖଣ୍ଡ ଦୀପ ଜଳେ । ଏଥିନିମନ୍ତେ ଉକ୍ତ ମଠ ଖଞ୍ଜା ଜମି ଭୋଗ କରେ । ଶ୍ରୀମନ୍ଦିରରେ କଳାହାଟ ଦ୍ୱାର ଫିଟାଠାରୁ ରାତ୍ରପହୁଡ ପର୍ଯ୍ୟନ୍ତ ଅଖଣ୍ଡ ଦୀପ ରାଶି ତେଲରେ ଜଳେ, କିନ୍ତୁ; ପହୁଡ ପରେ ଦୀପ ଲିଭାଇଦିଆଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୯୫, କ୍ଷେ.ସ.) ।

**ଅଖଣ୍ଡ ଦ୍ୱାଦଶୀ**- *ସଂ. ବି.* -ମାର୍ଗଶିର ଶୁକ୍ଳ ଦ୍ୱାଦଶୀ । ଏହି ଦିନ ପୁରୀ ଶ୍ରୀମନ୍ଦିରରେ ଲକ୍ଷ୍ମୀଙ୍କର ବିଶେଷ ପୂଜା କରାଯାଏ ।

(ଶ.କ. ୨ୟ - ପୃ.୭୬୫, ପୂ.ଓ.ଭା. - ପୃ. ୬୨) ।

**ଅଖଣ୍ଡନୀୟ**- *ସଂ. ବିଣ.*- ଯାହା ଅଖଣ୍ଡ ବା ଭଙ୍ଗାଯାଇ ନପାରେ । ଅବିଭାଜ୍ୟ, ଅକାଟ୍ୟ ଓ ଅପରିବର୍ତ୍ତନୀୟ । ଯାହାକୁ ଖଣ୍ଡ ଖଣ୍ଡ ବା ବିଭକ୍ତ କରାଯାଇପାରେ ନାହିଁ ।

(ଶ.କ. ୧ମ - ପୃ.୭, ପୂ.ଓ.ଭା. - ପୃ.୬୨) ।

**ଅଖଣ୍ଡ ବଇଠା**- *ଦେ. ବି.*- ଅଖଣ୍ଡବତୀ ଜାଳିବା ନିମନ୍ତେ ଉଦ୍ଦିଷ୍ଟ ବଇଠା, ଅର୍ଥାତ୍ ଯେଉଁ ବଇଠା ବା ଦୀପଦାନୀ ଉପରେ ଅଖଣ୍ଡ ଦୀପ ରଖାଯାଏ ।

(ଶ୍ରୀ.ସ୍ୱ.- ପୃ. ୧୪, ଓ.ସାଂ.ଶ.- ପୃ.୪, ପୁ.ବୋ.- ପୃ.୧୪୯) ।

**ଅଖଣ୍ଡ ମଣ୍ଡଳାକାର**- *ସଂ. ବି.* - ସମ୍ପୂର୍ଣ୍ଣ ଗୋଲାକାର । ପୂର୍ଣ୍ଣ ବୃତ୍ତାକାର । ଯାହାର ପରିଧିଖଣ୍ଡିତ ହୋଇ ନାହିଁ । ଶ୍ରୀ ଜଗନ୍ନାଥଙ୍କ ଚକ୍ଷୁକୁ ଅଖଣ୍ଡମଣ୍ଡଳାକାର ବୋଲି ବର୍ଣ୍ଣନା କରାଯାଇଛି । ମଣ୍ଡଳର ଆକାର ପରି ଯାହା ଅଖଣ୍ଡ, ଅର୍ଥାତ୍, ଏହାର ଆରମ୍ଭ ନାହିଁ କି ଶେଷ ନାହିଁ ।

(ପୂ.ଓ.ଭା. - ପୃ. ୬୨, ଓ.ସାଂ.ଶ. - ପୃ.୪) ।

**ଅଖଣ୍ଡ ମେକାପ ସେବା** -*ଦେ. ବି.*- ଅଖଣ୍ଡ ଦୀପ ପ୍ରଜ୍ୱଳିତ କରୁଥିବା ଓ ଅଖଣ୍ଡଦୀପ ଦାୟିତ୍ୱରେ ଥିବା ସେବକ । ଏହି ସେବକ ମଙ୍ଗଳ ଆଳତିବେଳେ ନଅଟି ପିତଳ ଦୀପ ଜାଳିବା ନିମନ୍ତେ ପ୍ରସ୍ତୁତ କରି ଦିଅନ୍ତି ଓ ସକାଳ ଧୂପରେ ଏକୋଇଶିଟି ବଳିତାର ଆଳତି ସଜାଡ଼ନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୪) ।

**ଅକ୍ଷକ୍ରୀଡ଼ା**-*ଦେ. ବି.* - ପଶାଖେଳ ବା ଦ୍ୟୁତକ୍ରୀଡ଼ା । ଆଶ୍ୱିନ ପୂର୍ଣ୍ଣିମା ବା କୁମାର ପୂର୍ଣ୍ଣିମା । ଶ୍ରୀମନ୍ଦିରରେ ମଧାହ୍ନ ଧୂପ ପରେ ମହାଜନେ ଲକ୍ଷ୍ମୀସରସ୍ୱତୀଙ୍କୁ ଖଟ ଶେଯ ଉପରେ ବିଜେ କରାଇବା ପରେ ଦଇତାପତିମାନେ ସିଂହାସନ ଉପରକୁ ଉଠନ୍ତି । ପଣ୍ଡା ଆଜ୍ଞା ମାଳ ଦେବାପରେ, ସୁଦର୍ଶନଙ୍କୁ ଜଗମୋହନସ୍ଥିତ ଚଉଦୋଳରେ ବିଜେ କରାଇ ଝୁଲଣ ମଣ୍ଡପ ନିକଟକୁ ନେଇ ଅଳଙ୍କାର ଲାଗି କରାନ୍ତି । ବଡ଼ଦେଉଳକୁ ବେଢ଼ାଏ ବୁଲି ଘଣ୍ଟ ଛତା କାହାଳୀ ସହ ବଡ଼ଦାଣ୍ଡ ବାଟେ ଛୋଟରାୟପୁର ହାଟ ଦେଇ ଉତ୍ତରପାଟଣା (ମରୀଚ଼କୋଟ ଗଳି ନିକଟ) ଉଗ୍ରସେନ ଆଶ୍ରମ ଜହ୍ନିମୁଣ୍ଡିଆ ଉପରେ ଚଉଦୋଳ ସହ ବିଜେ କରନ୍ତି । ଭୋଗ ବନ୍ଦାପନା ପରେ ପଶ୍ଚିମଦ୍ୱାର ଚକଡ଼ାରେ ବିଜେ ହୁଅନ୍ତି । ପଶ୍ଚିମଦ୍ୱାରରେ ପ୍ରସାଦ ଲାଗି ହେବା ପରେ ଜୟବିଜୟଦ୍ୱାରକୁ ବିଜେ ହୋଇ ଚନ୍ଦନ ଓ ନବବସ୍ତ୍ର ଲାଗି ହୁଅନ୍ତି । ସନ୍ଧ୍ୟାଧୂପ ପରେ ଦକ୍ଷିଣଘରୁ ମଦନମୋହନ ଭିତରକୁ ବିଜେ କଲେ ଆଜ୍ଞାମାଳ ପାଇ ମଦନମୋହନଙ୍କୁ ଓ ଲକ୍ଷ୍ମୀଙ୍କୁ ସାତ ପାହାଚଠାରେ ଥିବା ପାଲିଙ୍କିରେ ବିଜେ କରାନ୍ତି । ବିମାନବଡୁମାନେ ବାହାର କୁଅଁର ପୂଜା ନିମନ୍ତେ ଲକ୍ଷ୍ମୀମନ୍ଦିର ଜଗମୋହନରେ ଖଟ ଉପରେ ବିଜେ କଲା

ପରେ ଏଠାରେ ମହାପ୍ରଭୁଙ୍କ ପ୍ରତିନିଧି ମୁଦିରସ୍ତ ଓ ଶ୍ରୀଲକ୍ଷ୍ମୀଙ୍କ ପ୍ରତିନିଧି ମୁଦୁଲି ମହାଜନ ଅର୍ଥାତ୍ ଭିତରଛ ମହାପାତ୍ର ଉଭୟ ହିଙ୍ଗୁଳ କଉଡ଼ି-ଏକୋଇଶି, ରୂପା କଉଡ଼ି-ଏକୋଇଶି, ପଶା ଶକଟା ଖେଳମାନ ଖେଳନ୍ତି । ଏହାପରେ ଶୀତଳ ମଣୋହି ହୋଇ ଲକ୍ଷ୍ମୀ ସିଂହାସନକୁ ଓ ମଦନମୋହନ ଦକ୍ଷିଣି ଘରକୁ ବିଜେ କରନ୍ତି । ବଡ଼ସିଂହାର ବେଶରେ ଛଅ ମୂର୍ତ୍ତି ତଡ଼ପ, ନୂଆ ପଟନି ଓ ଆଜ୍ଞାମାଳ ଖଣ୍ଡେ ଲାଗି ହୁଅନ୍ତି । ବଡ଼ସିଂହାର ଧୂପ ସରିବା ପରେ ତିନି ପଣ୍ଡା, ପତି ଓ ମୁଦିରସ୍ତ ସିଂହାସନ ତଳେ ଜୁଆ, ପଶା, ଶକଟା କଉଡ଼ି ଆଦି ଖେଳନ୍ତି । ଏହି ଖେଳରେ ଲକ୍ଷ୍ମୀଙ୍କ ପାଖରେ ମହାପ୍ରଭୁ ହାରିଯିବାରୁ ନୀଳମାଧବ ମହାଜନଙ୍କ ହାତରେ ବିଜେ ହୋଇ ଲକ୍ଷ୍ମୀଙ୍କ ମନ୍ଦିରରେ ସାତ ଦିନ ବନ୍ଧା ରହିଲା ପରେ ଅଷ୍ଟମ ଦିନ ଅବକାଶ ପୂଜା ଶେଷରେ ବନ୍ଧାରୁ ଫିଟି ରତ୍ନସିଂହାସନକୁ ବିଜେ ହୁଅନ୍ତି । ଏହି ସାତ ଦିନ ଭିତରେ, ଗୁରୁବାର ପଡିଲେ ଏକାନ୍ତ ନୀତି ହୁଏ ନାହିଁ ।

ଶ୍ରୀ.ସ୍ୱ. ୨ୟ - ପୃ.୯୯-୧୦୦, ପୂ.ଓ.ଭା. - ପୃ.୫୨, ଶ.ଅ. - ପୃ.୬, ପୌ(ବଂ) ୧ମ - ପୃ.୭, ଶ.କ. ୧ମ - ପୃ.୫) ।

**ଅକ୍ଷତ**-*ସଂ.ବିଣ.*- ଯାହା କ୍ଷତ ନୁହେଁ । ଅଖଣ୍ଡ ତଣ୍ଡୁଳ, ଯବ ଶସ୍ୟ । ଦାଗ ନ ଥିବା, ଅଖୁଣ, ନିଖୁଣ, କ୍ଷତହୀନ, ଅଖଣ୍ଡିତ ଅରୁଆଚାଉଳ, ଗୋଟା ଚାଉଳ । ଆଶୀର୍ବାଦ ଚାଉଳ, ବୈଦିକ କର୍ମାନୁଷ୍ଠାନରେ ବା ପୂଜା ସମୟରେ ବ୍ୟବହୃତ ଓ ଅଭିମନ୍ତ୍ରିତ ଅରୁଆ ଚାଉଳ, ଯାହା ବରକନ୍ୟାଙ୍କ ଉପରେ ପକାଯାଏ । ବୈଦିକ ଅନୁଷ୍ଠାନରେ ଦୂବ, ବରକୋଳିପତ୍ର, ଅକ୍ଷତ, ପୁଷ୍ପ ଚନ୍ଦନ ଆଦି ଉପକରଣ ଲୋଡ଼ା ହୁଏ । ଏସବୁ ଦେବତାଙ୍କୁ ସମର୍ପଣ କରାଯାଏ । ଯଜମାନଙ୍କ ଉପରେ ଆଶୀର୍ବାଦ ମନ୍ତ୍ରଦ୍ୱାରା ଅଭିମନ୍ତ୍ରିତ ଅକ୍ଷତ ପକାଇ ଆଶୀର୍ବାଦ କରାଯାଏ । ଶ୍ରୀମନ୍ଦିର ବିଗ୍ରହମାନଙ୍କ ବିଭିନ୍ନ ପୂଜାରେ ଅକ୍ଷତର ବ୍ୟବହାର କରାଯାଇଥାଏ । ବିଶେଷକରି ଏକାଦଶୀ ନୀତି, ଗୁରୁବାର ମାଜଣା ନୀତିରେ ଅକ୍ଷତରେ ବନ୍ଦାପନା ହୁଏ ।

(ଶ୍ରୀ.ସ୍ୱ. - ପୃ. ୪୨, ପୂ.ଓ.ଭା. - ପୃ. ୫୨, ଶ.ବୋ.ଅ. ୧ମ- ପୃ.୬, ଶ.କ. ୧ମ - ପୃ.୫) ।

**ଅକ୍ଷତ ବନ୍ଦାପନା**-*ଦେ.ବି.*- ରଥଯାତ୍ରା ସମୟରେ ହେରାପଞ୍ଚମୀଦିନ ମହାଲକ୍ଷ୍ମୀଙ୍କୁ ଗୋଟା ଅରୁଆ ଚାଉଳ ଓ ଦୂବ ଇତ୍ୟାଦିରେ ଅକ୍ଷତ ବନ୍ଦାପନା କରାଯାଏ ।

**ଅକ୍ଷୟତୃତୀୟା**-*ସଂ.ବି.*- ଅକ୍ଷୟ ପୁଣ୍ୟଯୁକ୍ତ ତୃତୀୟା, ଯେଉଁ ତୃତୀୟାରେ ଅନୁଷ୍ଠିତ ଧର୍ମର ଫଳ ଅସରନ୍ତି ଅଟେ । ବୈଶାଖ ଶୁକ୍ଳ ତୃତୀୟା, ଅକ୍ଷି ତୃତୀୟା । ସତ୍ୟଯୁଗ ଏ ଦିନ ଆରମ୍ଭ ହୋଇଥିଲା ବୋଲି ପୁରାଣରେ ବର୍ଣ୍ଣିତ । ଚାଷୀମାନେ ଏ ଦିନ ଜମିରେ ପ୍ରଥମେ ଧାନ ବୁଣନ୍ତି ।

ଏହି ଦିନ ଶ୍ରୀ ଜଗନ୍ନାଥଙ୍କର ଚନ୍ଦନଯାତ୍ରା ଆରମ୍ଭ ହୁଏ । ଦ୍ୱିତୀୟ ଦିନ ରାତ୍ରରେ ଚନ୍ଦନ ଲାଗି ବଢ଼ିବା ପରେ ପାଳିଆ ମେକାପ ତିନି ଗୋଟା ରୂପା ପିଙ୍ଗଣରେ ରାଘବଦାସ ମଠ ଦେଇଥିବା ଚନ୍ଦନ ରଖି ଓ ଶ୍ରୀମନ୍ଦିର କାର୍ଯ୍ୟାଳୟ ଦେଇଥିବା ଚନ୍ଦନ ପରଖରେ ଭୋଗମଣ୍ଡପ ଘରକୁ ନିଅନ୍ତି । କାଠ ଭଦ୍ରାସନମଣ୍ଡଳ ଉପରେ ପିଙ୍ଗଣ ରଖାଗଲାପରେ, ପଣ୍ଡା ଆସି ଚେମେଡ଼ି, ପଟନି, ଫୁଲ ଚନ୍ଦନ ଦେଇ ସଂସ୍କାର କରି ଅଧିବାସ କରାଇବା ପରେ ତଡ଼ାଉ ଦ୍ୱାରମାନ ଶୋଧ କରି ଦ୍ୱାରମାନଙ୍କରେ ମୁଦ ଦିଅନ୍ତି ଓ ଲେଙ୍କା ପାଇକ ଜଗି ରହନ୍ତି । ଏହାପରେ ଅନ୍ୟନୀତି ହୋଇ ପହୁଡ଼ ପଡେ ।

'ସକାଳ ଧୂପପରେ ତିନି ବାଡ଼ରେ ମଇଲମ ଓ ମହାସ୍ନାନ ପରେ ଭୋଗମଣ୍ଡପ ଘରଠାକୁ ପଣ୍ଡା, ପତି ଓ ମୁଦିରସ୍ତ ଓ ଭିତର ମଇଲମ ବଢ଼ାଇଥିବା ତିନି ଜଣ ପୁଷ୍ପାଳକ ଏହିପରି ଛଅ ଜଣ ଯାଇ ପିଙ୍ଗଣମାନଙ୍କୁ ଘଣ୍ଟ, ଛତା, କାହାଳୀ ସହ ତଳିଛ ମହାପାତ୍ର ପଟୁଆରରେ ବଡ଼ ଦେଉଳକୁ ତିନି ଘେରା ବୁଲାଇ ଭିତର ସିଂହାସନ ଉପରେ ତିନି ବାଡ଼ରେ ରଖନ୍ତି । ରାମକୃଷ୍ଣଙ୍କୁ ଓ ବିମାନରେ ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନଙ୍କୁ ବିଜେ

କରାଇ, ଗୁଣ୍ଡା ବଢ଼ିବାପରେ ବିମାନବଡୁମାନେ ଘଣ୍ଟା ଛତା କାହାଳୀ ସହ ସିଂହଦ୍ୱାର ଦେଇ ଚନ୍ଦନବେଢ଼ାର ନରେନ୍ଦ୍ର ଚକଡାକୁ ବିଜେ କରାନ୍ତି । ବିମାନ ରାଜନଅର ଦ୍ୱାରରେ ପହଞ୍ଚିଲେ, ରଥଅନୁକୂଳ କାର୍ଯ୍ୟ ସକାଶେ ଦେଉଳ ପୁରୋହିତମାନେ ହୋମ କରନ୍ତି ଓ ମହାରଣା (ବଢ଼େଇ)ମାନେ ଶାଢ଼ିବନ୍ଧା ତଡ଼ଉକରଣଙ୍କ ଦ୍ୱାରା ହେବାପରେ ପଣ୍ଡାମାନେ ତିନି ରଥକୁ ଅନୁକୂଳ ଆଜ୍ଞାମାଳ ଦିଅନ୍ତି ।

ନରେନ୍ଦ୍ର ଚକଡ଼ାରେ ପହଞ୍ଚିଲେ କର୍ପୂର ଜଳ ମଣୋହି ହେବା ପରେ ରାମକୃଷ୍ଣ ଦୁଇ ଦେବଙ୍କୁ ବଡ଼ଚାପରେ, ମଦନମୋହନ, ଲକ୍ଷ୍ମୀ ଓ ସରସ୍ୱତୀ ସହ ପଛ ଚାପରେ ବିଜେ କରାଇ ମୁଦିରସ୍ତ ପ୍ରସାଦ ଲାଗି କରାନ୍ତି । ଦିନଚାପ ଏକଘେରା ବୁଲିବା ପରେ ରାମକୃଷ୍ଣ ମଦନମୋହନ ଚାପରେ ଥିଲା ବେଳେ ବିଡିଆ ଲାଗି ହୋଇଥାଏ । ତା'ପରେ ସୁବାସିତ ଜଳଥିବା ଜଳକୁଣ୍ଡକୁ ବିଜେ ହୁଅନ୍ତି । ଜଳକୁଣ୍ଡରୁ ବାହାରିଲା ପରେ ଅଳଙ୍କାର ଲାଗି ବେଶ ହୋଇ, ପଞ୍ଚୋପଚାରରେ ପୂଜା ପରେ ମଦନମୋହନ, ଶ୍ରୀଦେବୀ, ଭୂଦେବୀ ମଣିବିମାନରେ, ପଞ୍ଚ ମହାଦେବଙ୍କ ପ୍ରତିନିଧି ନିଜ ନିଜ ବିମାନରେ ଚନ୍ଦନ ପୋଖରୀକୁ ପଟୁଆରରେ ଯାଆନ୍ତି । ନରେନ୍ଦ୍ର ଚକଡ଼ା ରୋଷରେ ହୋଇଥିବା ମାଣ୍ଡୁଅ ଭୋଗ ଓ ବିଡ଼ିଆ ମଣୋହି ହୁଏ । ରାତ୍ର ଚାପ ପରେ ବିମାନରେ ବିଜେ ହୋଇ ଦେଉଳକୁ ବାହୁଡ଼ନ୍ତି ।
ଏହି ଦିବସଟି ଗଙ୍ଗାଙ୍କ ଧରାବତରଣ ଦିବସ ତଥା ବିଷ୍ଣୁ ସତ୍ୟନାରାୟଣ ରୂପରେ ଆବିର୍ଭୂତ ହୋଇଥିଲେ ବୋଲି କେତେକ ପୁରାଣରେ ବର୍ଣ୍ଣିତ । ଅଗ୍ନିପୁରାଣ, ବିଷ୍ଣୁ ଧର୍ମୋତ୍ତର ପୁରାଣ ଓ ଭବିଷ୍ୟ ପୁରାଣରେ ଅକ୍ଷୟ ତୃତୀୟାକୁ ଏକ ପ୍ରଶସ୍ତ ଶୁଭଦିନ ରୂପେ ବର୍ଣ୍ଣନା କରାଯାଇଅଛି । ଏହି ଦିବସରେ ଦାନପୁଣ୍ୟାଦି କଲେ ଅକ୍ଷୟ ପୁଣ୍ୟ ଲାଭ ହୋଇଥାଏ ବୋଲି ଭବିଷ୍ୟ ପୁରାଣ ବର୍ଣ୍ଣନା କରେ । ଅକ୍ଷୟ ତୃତୀୟା ଯଦି ବୁଧବାର ଶ୍ରବଣା ନକ୍ଷତ୍ରଯୁକ୍ତ ହୋଇଥାଏ ତେବେ ସେହିଦିନ ତପ, ଜପ ଦାନ ଓ ହୋମ ଅନୁଷ୍ଠାନ କଲେ ଜୀବର ବୈକୁଣ୍ଠ ପ୍ରାପ୍ତି ସହ ବହୁ ପୁଣ୍ୟ ଲାଭ ହୋଇଥାଏ । କୃଷକ ଏହିଦିନ ଅକ୍ଷିମୁଠି ବୁଣି ଲକ୍ଷ୍ମୀଙ୍କୁ ଆରାଧନା କରିଥାଏ ।
(ଶ୍ରୀ.ସ୍ୱ. ୨ୟ- ପୃ.୧୧୭-୧୧୯, ପୂ.ଓ.ଭା.- ପୃ.୫୪, ଶ. ଅ. - ପୃ.୬) ।

**ଅକ୍ଷୟବଟ**- *ସଂ. ବି.*- କଳ୍ପବଟ । ପ୍ରଳୟାନ୍ତର ସ୍ଥାୟୀ ବଟବୃକ୍ଷ; ଅର୍ଥାତ୍ ପ୍ରଳୟ ପରେ ମଧ୍ୟ ଏହି ବଟ ସ୍ଥାୟୀ ରୂପେ ବର୍ତ୍ତମାନ ପର୍ଯ୍ୟନ୍ତ ରହିଅଛି । ଏଣୁ ଏହା ଅକ୍ଷୟ ବଟ । ପ୍ରଳୟ ପୟୋଧି ଜଳରେ ଏହି ବଟବୃକ୍ଷର ଅଗ୍ରଭାଗ ବୁଡ଼ିଯାଏ ନାହିଁ ଏବଂ ବିଷ୍ଣୁ ଏହାର ପତ୍ର ଉପରେ ଶୋଇ ରହି ତାଙ୍କ ନାଭି କମଳରୁ ବ୍ରହ୍ମା ଜାତ ହୋଇ ପୁଣି ସୃଷ୍ଟି କରନ୍ତି । ଲୋକଙ୍କର ବିଶ୍ୱାସ ଯେ, ଏହି ବଟକୁ ପୂଜା ଓ ପ୍ରଦକ୍ଷିଣ କଲେ ଅକ୍ଷୟ ପୁଣ୍ୟ ହୁଏ । ଏହାର ଚେର ବା ଓହଳରେ ଗୋଡ଼ି ବାନ୍ଧି ମାନସିକ କରାଯାଏ । ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା ଅକ୍ଷୟବଟ କଳ୍ପବଟ ରୂପେ ପରିଚିତ ।
(ପୂ.ଓ.ଭା. - ପୃ.୫୪, ପୌ.ବଂ. - ପୃ.୪, ଶ୍ରୀ.ସ୍ୱ. - ପୃ. ୨୪୩) ।

**ଅଗୁରୁ**- *ସଂ. ବି.*- ଦେବଦେବୀଙ୍କ ପୂଜା ଲାଗି ଉଦ୍ଦିଷ୍ଟ ସୁଗନ୍ଧିତ ଦ୍ରବ୍ୟ । ସୁଗନ୍ଧ କାଷ୍ଠବିଶେଷ । କୃଷ୍ଣଚନ୍ଦନ । ଏହା ଭୁଟାନ ଓ ଆସାମର ପାର୍ବତ୍ୟ ଅଞ୍ଚଳର ଦୀର୍ଘ ବୃକ୍ଷ । ଏହି ବୃକ୍ଷର କାଣ୍ଡ ବଢ଼ିଗଲେ କାଣ୍ଡରୁ, କୃଷ୍ଣବର୍ଣ୍ଣ ସୁଗନ୍ଧ ନିର୍ଯ୍ୟାସ(କୃଷ୍ଣାଗୁରୁ) ଜନ୍ମେ । ଏହାର ଅନ୍ୟନାମ ଗୁଗୁଳ । ଏହି ନିର୍ଯ୍ୟାସକୁ ଶୁଖାଇ ଧୂପ ପ୍ରସ୍ତୁତ କରାଯାଏ । କୃଷ୍ଣଚନ୍ଦନ ବା ଶିଂଶପାବୃକ୍ଷର କାଠକୁ ଅଗ୍ନି ଉପରେ ରଖିଲେ ଏଥିରୁ ଚୁଆ ବାହାରି ଥାଏ । ଅଗୁରୁ ପାଞ୍ଚ ପ୍ରକାର: (୧) କୃଷ୍ଣାଗୁରୁ (୨) ଦାହାଗୁରୁ (୩) ସ୍ୱାଦ୍ୱଗୁରୁ (୪) ମାଙ୍ଗଲ୍ୟାଗୁରୁ (୫) କାଷ୍ଠାଗୁରୁ । ଅଗୁରୁ କାଷ୍ଠରୁ ଉତ୍ପନ୍ନ ତୈଳ (ଚୁଆ) ପାଣିରେ ବୁଡିଯାଏ । ଅଗୁରୁଧୂପ ସୁଗନ୍ଧ ଓ ବାୟୁ ଶୋଧକ । ଶ୍ରୀ ଜଗନ୍ନାଥଙ୍କ ବିଭିନ୍ନ ପୂଜା,

ପର୍ବପର୍ବାଣି, ଅଣସର ଓ ମହାଅଣସର ନୀତିରେ ଅଗୁରୁ ଲାଗି ହୋଇଥାଏ ।

(ଶ.କ. ୧ମ - ପୃ.୮, ଶ.ଅ. - ପୃ.୧୦, ପୂ.ଓ.ଭା. - ପୃ.୭୮) ।

**ଅଗ୍ରବାସ**- *ସଂ.ବି.*- ସୁବାସିତ ଅଗୁରୁ ମିଶ୍ରିତ ସୁଗନ୍ଧିତ ଜଳ ।

(କ୍ରି.ବି.ଓ.ଶ.ସ. - ପୃ.୭) ।

**ଅଗ୍ରାଶନ**- *ସଂ.ବି.*- ଅନ୍ନର ଯେଉଁ ଅଂଶ ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଥମେ କଢ଼ାଯାଏ । ଏହି ଖାଦ୍ୟାଂଶକୁ ସନ୍ନ୍ୟାସୀ କିମ୍ବା ପଶୁଙ୍କୁ ଦିଆଯାଏ ।

(ପୂ.ଓ.ଭା. - ପୃ.୯୪) ।

**ଅର୍ଗଳି**- *ଦେ.ବି.*- କବାଟରେ ଲାଗିଥିବା କିଳା । ଅର୍ଗଳି ବା କବାଟ ବା ବନ୍ଧକାଠ ବିଶେଷ । ଦ୍ୱାର ସମ୍ମୁଖରେ ଦୁଇଟି କାଠ ଦୁଇ ପାଖରେ ପୋତା ହୋଇଥାଏ । ମଝିରେ କିଛି ବ୍ୟବଧାନ ମଧ୍ୟରେ ଗୋଟିଏ ବା ଦୁଇଟି ଗୋଲାକାର ମୋଟ କାଠ ଏପଟରୁ ସେପଟକୁ ଯାଇ ପ୍ରବେଶ ପଥକୁ ଅବରୋଧ କରୁଥାଏ । ଏହାକୁ ଅର୍ଗଳି କୁହାଯାଏ । ଶ୍ରୀମନ୍ଦିରରେ ଭୋଗ ସମୟରେ ବାହାର ଅର୍ଗଳି କାଠ ଓ ଭିତର ଅର୍ଗଳି କାଠ ଲଗାଇ ପ୍ରବେଶ ପଥ ବନ୍ଦ କରାଯାଏ । ଶ୍ରୀମନ୍ଦିରର ଉଚ୍ଚଦ୍ୱାର ବନ୍ଧକୁ ଅର୍ଗଳି କୁହାଯାଏ । କବାଟ ବା କାଠ ବିଶେଷରେ ବନ୍ଧା ହୋଇଥିବା ବାଡ଼ । ଭୋଗ ସରିଗଲା ପରେ ବାହାର ଅର୍ଗଳି କାଠ ଓ ଭିତର ଅର୍ଗଳି କାଠ ଲଗାଇ ଦିଆଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ.୧୮) ।

**ଅଗ୍ନିଉତ୍ସବ**- *ସଂ.ବି.*- ଏହି ଉତ୍ସବ ଫାଲ୍‌ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ପାଳିତ ହୁଏ । ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନମାନଙ୍କରେ ରାଧାକୃଷ୍ଣ ଦୋଳପୂର୍ଣ୍ଣିମାର ପୂର୍ବରାତ୍ରିରେ ପଟୁଆର କରି ଗାଁରେ 'ଦ୍ୱାର ଭୋଗ' ଖାଆନ୍ତି । ଏହି ସମୟରେ ଲୋକେ ଦୁଆର ଆଗରେ ନଡ଼ିଆ ବାହୁଙ୍ଗା ବା ବାଉଁଶ ନଗିରେ କୁଟା ଗୁଡ଼ାଇ ପୂର୍ବରୁ ପୋତି ଥାଆନ୍ତି । ଠାକୁର ଆସିଲେ ଏହି ଶୁଖିଲା ସଂଗୃହୀତ କାଠ ଗଦାରେ ନିଆଁ ଲଗାଇ ଜାଳନ୍ତି । ବିଗ୍ରହ ମଧ୍ୟ ଏହାକୁ ପ୍ରଦକ୍ଷିଣ କରିଥାନ୍ତି । ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ପରେ ପୁଷ୍ପାଳକ ଶ୍ରୀଜୀଉଙ୍କୁ ଚନ୍ଦନ ବିଜେ କରାଇ ସର୍ବାଙ୍ଗ ଲାଗି କରିବା ପରେ ମହାଜନେ ଦୁଇ ଠାକୁରାଣୀଙ୍କୁ ଚାଚେରିବେଶ ନିମନ୍ତେ ଦକ୍ଷିଣି ଘରେ ପଡ଼ିଥିବା ଖଟଶେଯ ଉପରେ ହାତରେ ବିଜେ କରାଇଥାନ୍ତି । ଦୋଳଗୋବିନ୍ଦ ଏହାଙ୍କ ସହିତ ବେଶ ହୁଅନ୍ତି । ପୁଷ୍ପାଳକ ତିନିବାଡ଼ରେ ଚାଚେରୀ ବେଶ ବଢ଼ାଇ ମାଳଫୁଲ କର୍ପୂର ଲାଗି କରାନ୍ତି । ଧୋ'ପଖାଳ ହେବା ପରେ ଚାଚେରୀ ଭୋଗ ଉଠିଲା ଉତ୍ତାରେ ଦକ୍ଷିଣିଘର ଭୋଗ ସାରି ଠାକୁରମାନେ ଭିତରକୁ ବିଜେ କରନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରିବା ପରେ ପଣ୍ଡା ପଞ୍ଚୋପଚାର ପୂଜା କରନ୍ତି । ଧୋ'ପଖାଳ ପରେ ପଣ୍ଡା, ପତି ଓ ମୁଦିରସ୍ତ ଖଟୁଆରି ଘରଠାରୁ ଚନ୍ଦନ ଫଗୁ ବିଜେ କରାଇ ଆଣି ଶ୍ରୀଅଙ୍ଗରେ ଲାଗି କରାନ୍ତି । ତିନିବାଡ଼ରେ ବନ୍ଦାପନା ହୁଏ । ସିଂହାସନତଳେ ମୁଦିରସ୍ତ ତିନିବାଡ଼ରେ ଚାମର ଆଲଟ କରିନ୍ତି । ପଣ୍ଡା ଆଜ୍ଞାମାଳ ଦିଅନ୍ତି । ମହାଜନେ ଠାକୁରଙ୍କୁ ହାତରେ ବିଜେ କରାଇ ଜୟବିଜୟ ଦ୍ୱାର ଓ ମୁକ୍ତିମଣ୍ଡପ ଦେଇ ଲକ୍ଷ୍ମୀଙ୍କ ମନ୍ଦିର ଠାରେ ତିନିମୂର୍ତ୍ତିଙ୍କୁ ପଲଙ୍କରେ ବିଜେ କରାନ୍ତି । ଆଗରୁ ଖଟ ଶେଯ ମେକାପ ପଲଙ୍କ ପକାଇଥାଆନ୍ତି । ଲକ୍ଷ୍ମୀ-ନାରାୟଣଙ୍କ ମଧ୍ୟରେ ଫଗୁ ଖେଳ ହୁଏ । ସମ୍ପ୍ରଦାମାହାରୀ ଓ ମୁଦିରସ୍ତ ମଧ୍ୟରେ ଖେଳ ହୁଏ । ପରେ ପ୍ରସାଦ ଲାଗି ବନ୍ଦାପନା ହୁଏ । ମହାଜନେ ପଲଙ୍କରୁ ବିଜେ କରାଇ ଆଣି ଲକ୍ଷ୍ମୀ ମନ୍ଦିରଠାରେ ଥିବା ବିମାନରେ ବିଜେ କରାଇ ବିମାନ ସହ ସିଂହାଦ୍ୱାର ଓ ଲଙ୍ଗୁଳି ମଠ ଦେଇ ଦୋଳବେଦୀଠାରେ ଅଗ୍ନି ଉତ୍ସବ ଘରକୁ ବିଜେ କରାନ୍ତି । ସେଠାରେ ପଣ୍ଡା ହୋମ କରିବା ପରେ ଶୀତଳ ଭୋଗ ମଣୋହି ହୋଇ ଚାମର ଆଲଟ ହୁଏ । ଅଗ୍ନିଘରେ ନିଆଁ ଲଗାଯାଏ । ବିମାନ ଅଗ୍ନିଘର ଚାରି ପଟେ ସାତ ଥର ବୁଲନ୍ତି । ବାହୁଡ଼ା ବିଜେ ହେବା ପରେ ଭିତରେ ବଡ଼ସିଂହାର ଭୋଗ ହୋଇ ଅନ୍ୟାନ୍ୟ ନୀତି ବଢ଼େ ।

(ପୂ.ଓ.ଭା.- ପୃ.୪, ଶ୍ରୀ.ସ୍ୱ. ୨ୟ- ପୃ.୧୧୦) ।

**ଅଗ୍ନିଶର୍ମା-** *ସଂ.ବି.-* ମହାକ୍ରୋଧୀ, କ୍ରୋଧାନ୍ଧ, ଜନୈକ ଋଷି । ମହାକ୍ରୋଧ ସ୍ୱଭାବ ବ୍ୟକ୍ତି । ନୀଳାଦ୍ରିମହୋଦୟ ବର୍ଣ୍ଣିତ ରାଜାଙ୍କ ପ୍ରତିନିଧି ହେଉଛନ୍ତି ଅଗ୍ନିଶର୍ମା । ପରିଚ୍ଛାଦି ସେବକ ରାଜାଙ୍କ ପ୍ରତିନିଧି ରୂପରେ କାର୍ଯ୍ୟ ସମ୍ପାଦନ କରିଥାନ୍ତି । ଅଗ୍ନିଶର୍ମାଙ୍କ ସମ୍ବନ୍ଧୀୟ ତଥ୍ୟ ହେଲା ଅଗ୍ନିର୍ଶମା ପିତାଙ୍କର ଜ୍ୟେଷ୍ଠପୁତ୍ର ହୋଇଥିବେ । ସାତବର୍ଷ ଦୁଇ ମାସରେ ତାଙ୍କର ବ୍ରତୋପନୟନ ହେବ । ସେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଭଲଭାବରେ ବେଦାଧ୍ୟୟନ କରିବେ । ଅନ୍ୟ ଗୃହରେ ଭୋଜନ କରିବେ ନାହିଁ କିମ୍ବା ବାସି ଅନ୍ନ ଖାଇବେ ନାହିଁ । ସେ ସ୍ତ୍ରୀ ଓ ଶୂଦ୍ରମାନଙ୍କ ସହିତ ବାର୍ତ୍ତାଳାପ କରିବେ ନାହିଁ କିମ୍ବା ସେମାନଙ୍କ ସହିତ ସମ୍ପର୍କ ରଖିବେ ନାହିଁ । ସେ ତାମ୍ବୂଳ, ପୁଷ୍ପମାଲ୍ୟ ଗ୍ରହଣ କରିବେ ନାହିଁ କିମ୍ବା ନାଟତାମସାଦି କାବ୍ୟ ବ୍ୟାପାରରେ ସମ୍ପୃକ୍ତ ହେବେ ନାହିଁ । ସେ ହବିଷ୍ୟ ଭୋଜନ କରୁଥିବେ । ସର୍ବଦା ମନ୍ତ୍ରାଭ୍ୟାସ ପରାୟଣ ଓ ସଦାଚାର ସମ୍ପନ୍ନ ହେବେ । ଶାନ୍ତ ଭାବରେ ଜୀବନ କଟାଇବେ ଏବଂ କାହାଠାରୁ ପ୍ରତିଗ୍ରହ କରିବେ ନାହିଁ । ସେ ମସ୍ତକକୁ ବସ୍ତ୍ରଦ୍ୱାରା ଆଚ୍ଛାଦିତ କରିବେ । ସବୁ ଉତ୍ସବରେ ବଳଭଦ୍ରଙ୍କୁ ବନ୍ଦାପନା କରିବେ । ପ୍ରଭୁଙ୍କ ସର୍ବାଙ୍ଗରେ ଚନ୍ଦନ ଲେପନ କରିବେ । ଅଗ୍ନିଶର୍ମା ବାର ବର୍ଷ ପର୍ଯ୍ୟନ୍ତ ଏହି କାର୍ଯ୍ୟ କରିବେ । ବାର ବର୍ଷ ପରେ ସେ ଆଉ ବିଷ୍ଣୁଙ୍କୁ ସ୍ପର୍ଶ କରିବେ ନାହିଁ । ବାରମ୍ବାର, ଯଦି ପ୍ରତିମୁହୂର୍ତ୍ତରେ ଠାକୁରଙ୍କର ଶ୍ରୀଅଙ୍ଗକୁ ସ୍ପର୍ଶ କରିବେ ତେବେ ସେଥିରେ ଆଉ ଦେବତା ଅବସ୍ଥାନ କରିବେ ନାହିଁ । ବାର ବର୍ଷ ପରେ ଅଗ୍ନିର୍ଶମା ଦେବତୁଲ୍ୟ ଅଟନ୍ତି । ଯଦି ଭ୍ରମବଶତଃ ସ୍ପର୍ଶ କରନ୍ତି ତେବେ ମହାସ୍ନାନବିଧିରେ ଜଗନ୍ନାଥଙ୍କୁ ସ୍ନାନ କରାଇ ଭକ୍ତିପୂର୍ବକ ବହୁବିଧ ଭୋଗ ଅର୍ପଣ କରି ସନ୍ତୁଷ୍ଟ କରାଇବେ । ସେହି ସ୍ଥାନରୁ ଅଗ୍ନିଶର୍ମାଙ୍କୁ ଅନ୍ୟ ସ୍ଥାନକୁ ପଠାଇବେ । ସେହି ସମୟରୁ ରାଜା ଅଗ୍ନିଶର୍ମାଙ୍କର ମୁଖ ଚାହିଁବେ ନାହିଁ । ଯଦି ଚାହାନ୍ତି ତେବେ ବ୍ରାହ୍ମଣଙ୍କୁ ସୁବର୍ଣ୍ଣଦାନ କରି ପ୍ରାୟଶ୍ଚିତ କରିବେ । ତାଙ୍କ ଗୋତ୍ରରେ ଯଦି ପୁତ୍ର ଜ୍ୟେଷ୍ଠ ଭାବରେ ଦୈବାତ୍ ଜାତ ନ ହୁଅନ୍ତି ତେବେ ଦ୍ୱିତୀୟ ପୁତ୍ରକୁ ଆଦରପୂର୍ବକ ଅଗ୍ନିଶର୍ମା କରାଇବେ । ସେହି ପୁତ୍ରକୁ ରାଜାଙ୍କୁ ଅର୍ପଣ କରିବେ । ଯଦି ତାଙ୍କ ବଂଶରେ ଦୈବାତ୍ ପୁତ୍ର ଜାତ ନ ହୁଅନ୍ତି ତେବେ ତାଙ୍କ କାର୍ଯ୍ୟ ଶାନ୍ତ ଭାବରେ ଆଚାର୍ଯ୍ୟ ହିଁ ସମ୍ପାଦନ କରିବେ । (ପୂ.ଓ.ଭା. - ପୃ. ୮୬, ନୀ.ମ. ୯ମ ଅ., ୧ମ - ପୃ. ୧୯୧, ୧୯୨, ୧୯୩) ।

**ଅଗ୍ନୀଶ୍ୱର-** *ସଂ.ବି.-* ଶ୍ରୀମନ୍ଦିର ଭିତର ବେଢ଼ାରେ ଉପର ଗୁମୁଟ ଦେଇ ପାଟ ଅଗଣାକୁ ପ୍ରବେଶ କଲା ପଥରେ ଭୋଗମଣ୍ଡପ ସମ୍ମୁଖରେ ଅବସ୍ଥିତ ମହାଦେବ ମନ୍ଦିର । ଅଚିନ୍ତା ପହଣ୍ଡ ପାଖରେ ସ୍ଥାପିତ ଶିବଲିଙ୍ଗ । ଏଠାରେ ଦୈନିକ ପୂଜା ଅନୁଷ୍ଠିତ ହୁଏ । ପ୍ରତ୍ୟହ ରୋଷପୂର୍ବରୁ ଅଗ୍ନୀଶ୍ୱରଙ୍କୁ ପୂଜାର୍ଚ୍ଚନା କରାଯାଏ । ଲୋକେ ବିଶ୍ୱାସ କରନ୍ତି ଯେ ପାକ ପ୍ରସ୍ତୁତିରେ ଯଦି କିଛି ଅସୁବିଧା ଥାଏ ତେବେ ତାଙ୍କ ଦୃଷ୍ଟି ପଡିବା କ୍ଷଣି ସମସ୍ତ ପାକ ଦ୍ରବ୍ୟ ସିଦ୍ଧ ହୋଇଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୨୪୫) ।

**ଅଙ୍କୁରାରୋପଣ-** *ସଂ.ବି.-* ନବକଳେବର ସମୟରେ ବନଯାଗୀମାନେ ଦାରୁ ଚିହ୍ନଟ କଲାପରେ, ଦାରୁ ସଠିକ୍ ବୋଲି ଘୋଷଣା ପରେ, ପ୍ରଥମେ ଦାରୁଙ୍କୁ ଶ୍ରୀଜଗନ୍ନାଥଙ୍କଠାରୁ ଆସିଥିବା ଆଜ୍ଞାମାଳ ଅର୍ପଣ କରାଯାଏ । ଏଣୁ ଦାରୁ ଛେଦନ ପୂର୍ବରୁ ବନଯାଗ ଯଜ୍ଞ ନିମନ୍ତେ ବିଧିବିଧାନାନୁସାରେ କାର୍ଯ୍ୟ ଆରମ୍ଭ ହୁଏ । ପ୍ରଥମେ ପଞ୍ଚକର୍ମ ହୁଏ ତା'ପରେ ଭୂମି ଶୋଧନ, ଦାରୁପୂଜା, ମହାସ୍ନାନ ଓ ପରେ ଆଜ୍ଞାମାଳ ଲାଗି ହୁଏ । ଏହାପରେ ଯଜ୍ଞଶାଳା ନିର୍ମାଣ ସହ ଅଙ୍କୁରାରୋପଣ କରାଯାଇଥାଏ ।

ଏକଶହ ଆଠ ଗଡୁରେ ଜଳ ଆଣି ଦାରୁଙ୍କୁ ସ୍ନାନ କରାଯାଇ ସୁଦର୍ଶନ ଚକ୍ର ଦାରୁ ନିକଟରେ ସ୍ଥାପନ କରାଯାଏ । ତା'ପରେ

ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପ୍ରଦାନ ହୁଏ । ତତ୍‌ପରେ ସମ୍ଭାର ଗୃହ ବା ଅଙ୍କୁର ଶାଳା ଏକ କ୍ଷୁଦ୍ର ଶସ୍ୟକ୍ଷେତ୍ର ପ୍ରସ୍ତୁତ କରାଯାଏ । ତହିଁରେ ଯବ, ଶାଳିଧାନ, ଗହମ, ତିଳ, ସୋରିଷ, ମୁଗ ପ୍ରଭୃତି ଶସ୍ୟ, ଚନ୍ଦନ ହଳଦୀ ଆଦିରେ ଗୋଳି ଉଷ୍ମ ଜଳରେ ଧୋଇ ବପନ କରାଯାଏ । ତା'ପରେ ଏହା ଉପରେ ଗଙ୍ଗାଜଳ ସିଞ୍ଚନ କରି ଧଳା କନାରେ ଆବୃତ କରି ଦିଆଯାଏ । ଅଙ୍କୁରାରୋପଣ ନୀତି ପବିତ୍ରତା ସହ ସମାହିତ ହେବା ପରେ ସମସ୍ତ ବନଯାଗୀ ହବିଷ୍ୟାନ୍ନ ଗ୍ରହଣ କରିଥାନ୍ତି । ଏହି ଅଙ୍କୁରାରୋପଣ ପାଇଁ ଏକ ସ୍ୱତନ୍ତ୍ର ମଣ୍ଡଳ ନିର୍ମାଣ କରାଯାଏ ।
(ମ.ନ. - ପୃ. ୬୨) ।

**ଅଙ୍ଗନ୍ୟାସ**-*ସଂ.ବି.*- ଦେବପୂଜା ଉପଲକ୍ଷେ ବୀଜ ମନ୍ତ୍ରାଂଶ ଉଚ୍ଚାରଣ ପୂର୍ବକ ଦେହର ଭିନ୍ନଭିନ୍ନ ନିର୍ଦ୍ଦିଷ୍ଟ ଅଙ୍ଗକୁ ଛୁଇଁବା କ୍ରିୟା । ପ୍ରାତଃକାଳରେ, ପୂଜାସମୟରେ ଓ ହୋମାଦି କର୍ମରେ ଏହି ଅଙ୍ଗନ୍ୟାସ ଉପଯୋଗ ହୋଇଥାଏ । ଯଥା, ଗାୟତ୍ରୀମନ୍ତ୍ରର ଅଙ୍ଗନ୍ୟାସ;
ଓଁ ଭୂଃ ହୃଦୟାୟ ନମଃ, ଓଁ ଭୁବଃ ଶିରସେ ସ୍ୱାହା, ଓଁ ସ୍ୱଃ ଶିଖାୟୈ ବଷଟ୍, ଓଁ ତତ୍ସବିତୁର୍ବରେଣ୍ୟଂ କବଚାୟ ହୁମ୍, ଓଁ ଭର୍ଗୋ ଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ , କରତଳକରପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ ।
ଏହିପରି ସବୁ ମନ୍ତ୍ରର ଅଂଶ ଉଚ୍ଚାରଣ ପୂର୍ବକ ଭିନ୍ନଭିନ୍ନ ଅଙ୍ଗ ସ୍ପର୍ଶ କରିବାର ବିଧି ଅଛି ।
(ପୂ.ଓ.ଭା. - ପୃ.୧୧୦) ।

**ଅଙ୍ଗବାସ ଓଳି**-*ଦେ.ବି.*- ମରୀଚିପାଣି, ମିଠାଦହି, ଅଦାପଖାଳ ଆଦି ରହୁଥିବା ମାଟି ଓଳି ।
(ଶ୍ରୀ.ସ୍ୱ ୨ୟ - ପୃ.୨୩) ।

**ଅଙ୍ଗଲାଗି**-*ଦେ.ବି.*- ଦେବତାଙ୍କ ଶ୍ରୀଅଙ୍ଗରେ ଲାଗିବା ବା ବ୍ୟବହୃତ ହେଉଥିବା ପୋଷାକ ବା ଅଳଙ୍କାର ମାଳା । ଦେବତା ବା ରାଜା ରାଣୀଙ୍କ ପରିହିତ ବସ୍ତ୍ର ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୩) ।

**ଅଙ୍ଗାରୁଆ**-*ଦେ.ବି.*- ଶ୍ରୀମନ୍ଦିରର ରୋଷଚୁଲିରୁ ଅଙ୍ଗାର, ପାଉଁଶ, ଖଣ୍ଡିଆ ପୋଡ଼ାକାଠ କଢ଼ା ଓ ନଳା ସଫା କାର୍ଯ୍ୟ କରୁଥିବା ସେବକ ।
(ଶ୍ରୀ.ସ୍ୱ. ୩ୟ - ପୃ.୨୭) ।

**ଅର୍ଘ/ଅର୍ଘ୍ୟ**-*ସଂ.ବି.*- ପୂଜ୍ୟ, ମାନ୍ୟ, ପୂଜନୀୟ, ପୂଜାସାମଗ୍ରୀ । ପୂଜାରେ ବ୍ୟବହୃତ ଷୋଳଟି ଉପଚାର ମଧ୍ୟରୁ ଅନ୍ୟତମ । ଦେବତାଙ୍କ ପୂଜା ପାଇଁ ଅରୁଆ ଚାଉଳ, ଦୂବ, ଫୁଲ ଓ ଚନ୍ଦନମିଶ୍ରିତ ଜଳ ।
(ପୂ.ଓ.ଭା. - ପୃ.୫୭୪, ପୌ(ବ) ୧ମ - ପୃ.୯୬) ।

**ଅର୍ଘାସୁର ବଧ**-*ଦେ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣପକ୍ଷ ଦଶମୀ ସନ୍ଧ୍ୟାରେ ଏହି ଲୀଳା ହୋଇଥାଏ । ରାମ ଓ କୃଷ୍ଣ ଦୁଇ ମୂର୍ତ୍ତି ଜଗମୋହନରେ ବିଜେ ହେବା ପରେ ବାଲିସାହିର ଲୋକେ ବକାସୁର ବଧ ପ୍ରସ୍ତାବ କରନ୍ତି ଓ ଜଣେ ବକାସୁର ବେଶ ହୋଇ ଆସିଥାଏ । ଅନ୍ୟ ଜଣେ କୃଷ୍ଣ ବେଶ ହୁଏ ଓ ବକାସୁର ବଧ ଲୀଳା ହୁଏ । ଏହା ପରେ ହରଚଣ୍ଡୀ ସାହିର ଲୋକେ ଅର୍ଘାସୁର ବଧ ପ୍ରସ୍ତାବ କରନ୍ତି ଓ ଅର୍ଘାସୁର ବଧ ଲୀଳା ମଧ୍ୟ ହୁଏ । ଏହାପରେ ଶୀତଳ ଭୋଗ ସମର୍ପଣ ପରେ ବନ୍ଦାପନା ହୋଇ ଠାକୁର ଦକ୍ଷିଣି ଘରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ - ପୃ. ୯୧) ।

**ଅଘୋର ଚତୁର୍ଦ୍ଦଶୀ**-*ଦେ.ବି.*- ଭାଦ୍ରମାସ କୃଷ୍ଣ ଚତୁର୍ଦ୍ଦଶୀ । ଏହାର ଅନ୍ୟନାମ ଶିବ ଚତୁର୍ଦ୍ଦଶୀ । ଏହି ଦିନ ଦି'ପହର ଧୂପ ପରେ ଶ୍ରୀମନ୍ଦିରକୁ ଆଲାମଚଣ୍ଡୀ ମନ୍ଦିରରୁ କୁମ୍ଭାରମାନେ ସାତପୁରୀ ତାଡ଼ ଆଣନ୍ତି । ବେଢ଼ାଏ ଦେଉଳ ବୁଲାଇ ଅଚିନ୍ତା ପହଣ୍ଡରୋଷ ବେହରଣଠାରେ ରଖନ୍ତି । ସନ୍ଧ୍ୟାଧୂପ ସରିବା ପରେ ଜଣେ ପୂଜାପଣ୍ଡା ଶ୍ରୀଅଙ୍ଗରୁ ଆଜ୍ଞାମାଳ ନେଇ ଘଣ୍ଟ ଛତ୍ର କାହାଳୀ ବଜାଇ ଦକ୍ଷିଣକାଳୀ ଠାକୁରାଣୀ ମନ୍ଦିରକୁ ଯାଆନ୍ତି । କାଳୀଙ୍କ ସେବକ ତାଙ୍କଠାରୁ ଆଜ୍ଞାମାଳ ଘେନି ସିଂହଦ୍ୱାର ବାଟେ ଅଚିନ୍ତା

ପହଣ୍ଡ ଦେଇ ରୋଷଦ୍ୱାର ବାହାର ପାର୍ଶ୍ୱରେ ଆଜ୍ଞାମାଳ ରୋଷଆଡ଼େ ଆଣନ୍ତି । ଏହାପରେ ଅନ୍ୟାନ୍ୟ ନୀତି ହୁଏ ।
(ଶ୍ରୀ.ସ୍ୱ. - ପୃ. ୯୩, ପୌ(ବ) ୧ମ - ପୃ.୨୨) ।

**ଅଚଳ**-*ସଂ.ବିଶ.*- ସ୍ଥିର, ଦୃଢ଼, ଅବିଚଳିତ, ଯାହା ଚାଲିପାରେ ନାହିଁ । ଗତିରହିତ, ଚଳତ୍ ଶକ୍ତିହୀନ, ପର୍ବତ, ସ୍ଥାୟୀ । ଶ୍ରୀଜଗନ୍ନାଥଙ୍କୁ ଅଚଳ ମହାମେରୁ ବୋଲି ଓଡ଼ିଆରେ କୁହାଯାଏ ।
(ଶ.କ. ୧ମ - ପୃ.୧୬, ପୂ.ଓ.ଭା. - ପୃ.୧୨୩, ଶ.ଅ. - ପୃ. ୧୪, କ୍ର.ଓ. ଶ. - ପୃ.୧୦) ।

**ଅଚିନ୍ତା ପହଣ୍ଡ**-*ସଂ.ବି.*- ଶ୍ରୀମନ୍ଦିରରେ ସେବାୟତମାନେ ଅଚିନ୍ତା ବା ନିଶ୍ଚିନ୍ତରେ ପାଦ ପକାଇ ରୋଷ ଘରୁ ଶ୍ରୀଜଗନ୍ନାଥଙ୍କ ପାଖକୁ ଅମୋଣିହା ନେବାପାଇଁ ନିର୍ମିତ ହୋଇଥିବା ରାସ୍ତା । ଶ୍ରୀଜଗନ୍ନାଥ ମନ୍ଦିରର ନାଟମନ୍ଦିରର ମଧ୍ୟସ୍ଥ ସ୍ଥାନ ବିଶେଷ, ଯେଉଁଠାରେ ଭକ୍ତଜନ ବସି ସ୍ତୁତି ବା ଭଜନ କରନ୍ତି । ଏହି ରାସ୍ତା ହରେକୃଷ୍ଣଦେବଙ୍କ ସମୟରେ ନିର୍ମିତ ହୋଇଥିଲା ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୩) ।

**ଅଚିନ୍ତାଭୁବନ**-*ସଂ.ବି.*- ବୈକୁଣ୍ଠପୁର । ଯେଉଁଠାରେ ଅଭାବ, ଦୁଃଖ, ରୋଗ, ଶୋକଜନିତ ଚିନ୍ତା ନଥାଏ । ମୁକ୍ତିମଣ୍ଡପ ପାର୍ଶ୍ୱସ୍ଥ ନୃସିଂହ ମଣ୍ଡପ ନିକଟ ସ୍ଥାନ ।

**ଅଚ୍ୟୁତ**-*ସଂ.ବି.*- ଯାହା ଚ୍ୟୁତ ବା ଭିନ୍ନ ହୋଇ ନାହିଁ । ଶ୍ରୀକୃଷ୍ଣ, ବିଷ୍ଣୁ, ସ୍ଥିର, ଅବିନାଶୀ, ଈଶ୍ୱର । ବିଷ୍ଣୁଙ୍କର ଉନଚାଳିଶ ନାମ ମଧ୍ୟରୁ ଅନ୍ୟତମ ।
(ପୂ.ଓ.ଭା. - ପୃ.୧୩୦, କ୍ର.ଓ.ଶ.-ପୃ.୧୧) ।

**ଅଚ୍ୟୁତାଗ୍ରଜ**-*ସଂ.ବି.*- ଅଚ୍ୟୁତଙ୍କର ଅଗ୍ରଜ (ବଡ଼ଭାଇ), କୃଷ୍ଣଙ୍କର ବଡ଼ ଭାଇ, ବଳରାମ/ବଳଭଦ୍ର/ବଳଦେବ ।
(ପୂ.ଓ.ଭା. - ପୃ.୧୩୦, ପୌ(ବ) - ୧ମ, ପୃ ୨୪, ଶ.କ. - ୧ମ, ପୃ.୧୭, ଅ.କୋ.- ପୃ ୪) ।

**ଅଚ୍ୟୁତାନନ୍ଦ**-*ସଂ.ବି.*- ଚିରସ୍ଥାୟୀ ବା ଅଖଣ୍ଡାନନ୍ଦ । ଯାହାର ଆନନ୍ଦ ଚିରସ୍ଥାୟୀ ଅଟେ ସେ ବିଷ୍ଣୁ ।
(ପୂ.ଓ.ଭା. - ପୃ.୧୩୦) ।

**ଅଚ୍ୟୁତାନନ୍ଦ ଦାସ**-*ଦେ.ବି.*- କଟକ ଜିଲ୍ଲାର ସୁଆଙ୍ଗ ପ୍ରଗଣାର ତିଳକଣା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଜାତିରେ ଅହୋକରଣ । ପିତାଙ୍କ ନାମ ଦୀନବନ୍ଧୁ ଖୁଣ୍ଟିଆ, ମାତାଙ୍କ ନାମ ଥିଲା ପଦ୍ମାବତୀ । ବାଲ୍ୟକାଳରୁ ସେ ସାଂସାରିକ ବିଷୟରେ ଉଦାସୀନ ଥିଲେ । ସେ ଚୈତନ୍ୟ ଦେବଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ପଞ୍ଚସଖାଙ୍କ ମଧ୍ୟରୁ ସେ ଏକତମ । ଓଡ଼ିଆ ସାହିତ୍ୟ ମାଧ୍ୟମରେ ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ସେ ଓଡ଼ିଆରେ ଛତିଶ ଖଣ୍ଡ ସଂହିତା, ଅଠସ୍ତରି ଖଣ୍ଡ ଗୀତା, ହରିବଂଶ ଓ ଜ୍ଞାନୋଦୟ କୋଇଲି ପ୍ରଭୃତି ଗ୍ରନ୍ଥ ପ୍ରଣୟନ କରିଥିଲେ । ଅଚ୍ୟୁତାନନ୍ଦଙ୍କ ଭବିଷ୍ୟମାଳିକା ଓଡ଼ିଶାର ଘରେ ଘରେ ସୁପରିଚିତ । ତାଙ୍କର ସମସ୍ତ ରଚନାରେ ଶ୍ରୀଜଗନ୍ନାଥଙ୍କ ମହିମା ଓ ମାହାତ୍ମ୍ୟ ବର୍ଣ୍ଣିତ । ସେ ଥିଲେ ଗୃହୀ ବୈଷ୍ଣବ ଓ କଟକ ଜିଲ୍ଲାର ନେମାଳ ମଠର ସେ ଥିଲେ ପ୍ରତିଷ୍ଠାପକ ।
(ପୂ.ଓ.ଭା. - ପୃ. ୧୩୧) ।

**ଅର୍ଚ୍ଚନ**-*ସଂ.ବି.*- ଉପାସନା, ସମ୍ମାନ, ପୂଜା, ବନ୍ଦନା । ନବଧା ଭକ୍ତି ମଧ୍ୟରୁ ଏକ ।
(ପୂ.ଓ.ଭା.- ପୃ. ୫୭୪, ଶ.କ.୧ମ - ପୃ.୧୦୩) ।

**ଅର୍ଚ୍ଚାପ୍ରତିମା**-*ସଂ.ବି.*- ଶ୍ରୀମନ୍ଦିରରେ ରତ୍ନ ସିଂହାସନରେ ବିରାଜିତ ଶ୍ରୀଜଗନ୍ନାଥଙ୍କର ବାରମାସରେ ତେର ପର୍ବ ଅନୁଷ୍ଠିତ ହୁଏ । ବିଭିନ୍ନ ଉତ୍ସବ, ପର୍ବପର୍ବାଣି, ଯାତ୍ରାରେ ଶ୍ରୀଜୀଉଙ୍କର ମୁଖ୍ୟ ପ୍ରତିନିଧିତ୍ୱ କରନ୍ତି ମଦନମୋହନ । ଏହାଙ୍କ ସହିତ ରାମ, କୃଷ୍ଣ, ନୃସିଂହ ଓ ହନୁମାନ ପ୍ରଭୃତି ଅନେକ ଅର୍ଚ୍ଚା ପ୍ରତିମା ଶ୍ରୀମନ୍ଦିର ଦକ୍ଷିଣିଘରେ ଅଛନ୍ତି । ଶ୍ରୀ ଜଗନ୍ନାଥଙ୍କ ପୂଜା, ଅର୍ଚ୍ଚନା, ଉପାସନା, ରୀତିନୀତି ଅନୁଯାୟୀ ମଦନମୋହନ ବିଗ୍ରହ ଚର୍ଚ୍ଚିତ, ଅର୍ଚ୍ଚିତ, ପୂଜିତ ହେଉଥିବାରୁ ତାଙ୍କୁ 'ଅର୍ଚ୍ଚା ପ୍ରତିମା' ବୋଲି କୁହାଯାଏ ।
(କ୍ଷେ.ସ.) ।

**ଅର୍ଜୁନ**-*ସଂ.ବି*.- କୁନ୍ତୀଙ୍କ ଗର୍ଭରୁ ଇନ୍ଦ୍ରଙ୍କ ଔରସରୁ ଜନ୍ମ । ତୃତୀୟ ପାଣ୍ଡବରୂପେ ପରିଚିତ । କର୍ଣ୍ଣ, ଯୁଧିଷ୍ଠିର ଓ ଭୀମଙ୍କ ଠାରୁ ଛୋଟ । କର୍ଣ୍ଣକୁ ନିଧନ କରିବା, ପାଶୁପତ ଅସ୍ତ୍ର ଲାଭ କରିବା ଓ ଅଶ୍ୱମେଧ ଯଜ୍ଞ କରିବା ନିମନ୍ତେ ଆଶୀର୍ବାଦ ଲାଭ କରିଥିଲେ । ଶ୍ରୀକୃଷ୍ଣଙ୍କର ସଖା ଓ ପିଉସୀ ପୁଅ ଭାଇ । ଏହାଙ୍କର ଧନୁ-ଗାଣ୍ଡିବ, ଶଙ୍ଖ-ଦେବଦତ୍ତ, ରଥ-କପିଧ୍ୱଜ ଏବଂ ତୂଣୀର-ଅକ୍ଷୟ । ସେ କୃଷ୍ଣଙ୍କ ଭଉଣୀ ସୁଭଦ୍ରାଙ୍କୁ ବିବାହ କରିଥିଲେ । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ସୁଭଦ୍ରାଙ୍କ ରଥ 'ଦେବଦଳନ'ର ସାରଥି ।
(ଶ.କ. ୧ମ- ପୃ.୧୦୪, ପୌ. (ବଂ) ୧ମ - ପୃ.୯୬, ପୂ.ଓ.ଭା. - ପୃ.୫୭୫) ।

**ଅଟକାଳି**-*ଦେ.ବି*.- ଚାଉଳ ଓ ବିରିଚୂନା ମିଶ୍ରିତ ମିଠାଯୁକ୍ତ ଜାଉ । ଶ୍ରୀଜୀଉଙ୍କର ଏକ ଭୋଗ ବିଶେଷ । କ୍ଷୀର, ଗୁଡ଼ ବା ଚିନି ସହିତ ଗହମ ବା ଚାଉଳଚୂନା ମିଶ୍ରିତ ବହଳ କ୍ଷୀରି ଯାହାକୁ ଠାକୁରଙ୍କୁ ଅର୍ପଣ କରାଯାଏ ।
(ପୂ.ଓ.ଭା. - ପୃ.୧୫୨, କ୍ର.ଶ. - ପୃ. ୧୪, ଶ.ଅ.- ପୃ.୧୮) ।

**ଅଠରନଳା**-*ସଂ.ବି*.- ପୁରୀର ମୁଖ୍ୟ ପ୍ରବେଶ ପଥରେ ସଡ଼କ ଉପରେ ବାଟମଙ୍ଗଳା ମନ୍ଦିର ପରେ ଉଣେଇଶି ଫୁକାର ବା ଖିଲଣ ବିଶିଷ୍ଟ ପୋଲ । ଦୁଇପାର୍ଶ୍ୱ ସଂଯୋଗ ସ୍ତମ୍ଭକୁ ଛାଡ଼ି ଏଥିରେ ଅଠରଟି ଖିଲାଣଯୁକ୍ତ ଖମ୍ବ ଅଛି ଓ ଉଣେଇଶିଟି ନଳା ଅଛି । ବିଶ୍ୱାସ ଅଛି ଯେ, ଅଠରଟି ସନ୍ତାନ ପ୍ରସବ କରିଥିବା ନାରୀ ପୁରୀ ଯାଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଅଠର ନଳାଠାରେ ମହାପ୍ରସାଦ ଦେଇ ସଙ୍ଗାତ ବସନ୍ତି ।

ମତ୍ସ୍ୟ କେଶରୀ (୯୭୫-୯୯୫) ମଧୁପୁର ନଦୀ, ଯାହାର ଡାକ ନାମ ହୁଲୁହୁଲିଆ ବା ମଙ୍ଗଳା ନଦୀ ତାହାରି ଉପରେ ଏହି ପୋଲ ନିର୍ମାଣ କରାଇଥିଲେ । ନଳାଗୁଡ଼ିକ ସାତ ଫୁଟରୁ ଷୋହଳ ଫୁଟ ବ୍ୟବଧାନରେ ରହିଛି । ଏହାର ଦୈର୍ଘ୍ୟ ୨୯୦ଫୁଟ । ଫୁକାରମାନ ଖିଲାଣ କାମ ନହୋଇ ପଥରମାନଙ୍କ ଦ୍ୱାରା ଲହଡ଼ି ମୁଦ କରାଯାଇ ନିର୍ମାଣ କରାଯାଇଅଛି । ଉତ୍କଳୀୟ କାରିଗରମାନଙ୍କ କାରିଗରୀ କଳାକୌଶଳ ସହସ୍ରାଧିକ ବର୍ଷ ରହିପାରେ, ଅଠରନଳା ତା'ର ଏକ ନିଦର୍ଶନ ଅଟେ । ଏହିଠାରୁ ଭକ୍ତମାନେ ଶ୍ରୀମନ୍ଦିରର ନୀଳଚକ୍ର ଓ ପତିତପାବନ ବାନା ଦର୍ଶନ କରି ପ୍ରଣାମ କରିଥାଆନ୍ତି ।
(ପୂ.ଓ.ଭା. - ପୃ.୧୫୭, କ୍ର.ଓ.ସ. - ପୃ.୧୫, ଶ୍ରୀ.ଜି. - ପୃ. ୯୭) ।

**ଅଠା**-*ଦେ.ବି*.- ଦୁଇଟି ବସ୍ତୁକୁ ଯୋଡ଼ିବା ପାଇଁ ଉଦ୍ଦିଷ୍ଟ ତରଳ ପଦାର୍ଥ ବିଶେଷ । ଶ୍ରୀମନ୍ଦିରରେ ତେନ୍ତୁଳି ମଞ୍ଜିକୁ ପାଣିରେ ଭିଜାଇ ତା' ଉପର ଚୋପା ଛଡ଼ାଇଲା ପରେ ତାକୁ ଶିଳରେ ବାଟି ମାଟି ହାଣ୍ଡିରେ ନିଆଁ ଉପରେ ରଖି ଅଠା ପ୍ରସ୍ତୁତ କରାଯାଏ । ଏହି ଅଠାକୁ ପଟ୍ଟଚିତ୍ର ପ୍ରସ୍ତୁତିରେ ବ୍ୟବହାର କରାଯାଏ । ଏତଦ୍ ବ୍ୟତୀତ କଇଥ ଅଠା ମଧ୍ୟ ଶ୍ରୀମନ୍ଦିରରେ ଚିତ୍ର ପାଇଁ ବ୍ୟବହୃତ ହୋଇଥାଏ ।
(କ୍ଷେ.ସ.) ।

**ଅଣସର**-*ଦେ.ବି*.- ନ ଅବସର ଅନବସର । ଆଷାଢ଼ କୃଷ୍ଣପକ୍ଷ ପ୍ରତିପଦଠାରୁ ପନ୍ଦର ଦିନ ପର୍ଯ୍ୟନ୍ତ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ନିଭୃତ ବାସକୁ ନିରୋଧନ ନିବାସ କୁହାଯାଏ । ଦେବସ୍ନାନ ପୂର୍ଣ୍ଣିମା ଓ ନେତ୍ରୋତ୍ସବର ମଧ୍ୟବର୍ତ୍ତୀ ପନ୍ଦର ଦିନ । ଏହି ସମୟରେ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ ନିଷିଦ୍ଧ । ଅଣସର ପିଣ୍ଡି ପାଖେ ତାଟିବାଡ଼ ଦିଆଯାଇ, ତ୍ରିମୂର୍ତ୍ତିଙ୍କର ପଟିପୂଜା କରାଯାଇଥାଏ । ଜ୍ୟେଷ୍ଠପୂର୍ଣ୍ଣିମା ଦିନ ଦେବସ୍ନାନମଣ୍ଡପ ଉପରେ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନଙ୍କୁ ସ୍ନାନ ପରେ ସ୍ନାନମଣ୍ଡପରୁ 'ଅଣସର ଗୁମୁଟ'କୁ ଗୋଟି ପହଣ୍ଡିରେ ନିଆଯାଇ ସେଠାରେ ଅମାବାସ୍ୟା ପର୍ଯ୍ୟନ୍ତ ଅଣସର ସେବା ବିଧି ହୁଏ । ଏହି ସମୟରେ ଯାତ୍ରୀମାନେ ଶ୍ରୀଜୀଉଙ୍କୁ ଦର୍ଶନ ନ କରି ବ୍ରହ୍ମଗିରିରେ ଅଲାରନାଥଙ୍କୁ ଦର୍ଶନ କରିଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୧, ଶ.କ. ୧ମ- ପୃ.୨୪, କ୍ର.ଓ.ଶ.-ପୃ.୧୭, ଶ.ଅ.- ପୃ.୨୧) ।

**ଅଣସରଘର**-ଦେ.ବି.- ଶ୍ରୀଜଗନ୍ନାଥମନ୍ଦିରର କଳାହାଟ ଦ୍ୱାର ଏବଂ ଭିତର କାଠ ମଧ୍ୟରେ ଥିବା ସ୍ଥାନ । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତିମାନଙ୍କର ଅଣସର ନୀତି ହେଉଥିଲା ବେଳେ ତାଙ୍କ ଆଗରେ ରଖାଯାଇଥାଏ ବାଉଁଶର ଚାଞ୍ଚଡ଼ା ଘେର । ଏହି ସମୟରେ ଦର୍ଶନାଭିଳାଷୀ ଯାତ୍ରୀମାନେ ଶ୍ରୀବିଗ୍ରହମାନଙ୍କର ସାକ୍ଷାତ ଦର୍ଶନ ନ କରିପାରି ଅଣସର ତାଟି ସମ୍ମୁଖରେ ଚିତ୍ରପଟି ଦିଅଁଙ୍କୁ ଦର୍ଶନ କରିଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୬୨, ପୂ.ଓ.ଭା. - ପୃ.୧୬୬) ।

**ଅଣସରତାଟି**-ଦେ.ବି.- ଶ୍ରୀମନ୍ଦିରରେ ଅଣସର ନୀତି ନିମନ୍ତେ ପ୍ରସ୍ତୁତ ବାଉଁଶ ତାଟି । ଏହି ନିରୋଧନ ଗୃହ ମଧ୍ୟରେ ସମ୍ପୃକ୍ତ ସେବକଙ୍କ ବିନା ଅନ୍ୟ କାହାର ପ୍ରବେଶ ଅଧିକାର ନାହିଁ । ଅଣସର ଗୁହ୍ୟ ନୀତିକୁ କେହି ଦେଖିବେ ନାହିଁ, ଏଣୁ ଏହି ଅସ୍ଥାୟୀ ତାଟି ଆଗରେ ଥାଏ ଓ କାହାରି ନଜର ଠାକୁରଙ୍କ ଉପରେ ପଡ଼େ ନାହିଁ ।
(ଶ୍ରୀ.ସ୍ୱ. ୨ୟ- ପୃ. ୬୨, ପୁ.ବୋ.-ପୃ.୨୦, ଓ.ସାଂ.ଶ.- ପୃ.୧୨, ପୂ.ଓ.ଭା. - ପୃ.୧୭୬) ।

**ଅଣସର ଦଶମୂଳପାଚନ**-ଦେ.ବି.- ଶ୍ରୀମନ୍ଦିର ଭିତରେ ଶ୍ରୀବିଗ୍ରହମାନେ ଅଣସରରେ ଥାଇ ଜ୍ୱରରୁ ଆରୋଗ୍ୟ ନିମନ୍ତେ ସେବନ କରୁଥିବା ଦଶମୂଳ ପାଚନ । ଆୟୁର୍ବେଦୋକ୍ତ ଦଶ ଗୋଟି ଗଛର ମୂଳ, ଯଥା- ବେଲ, ଗମ୍ଭାରୀ, ଫଣଫଣା, ଅଗବଥୁ, ପାଟେଲୀ, ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ବୃହତୀ (ଲଟା ବରକୋଳି) ଅଙ୍କରାନ୍ତି ଓ ଗୋଖୁରା । ଗର୍ଭଣା ସଂକ୍ରାନ୍ତିରେ ଦଶ ଜଣ ଲୋକ ଏହି ଦଶଟି ମୂଳକୁ ପୃଥକ୍ ରୂପେ ସଂଗ୍ରହକରି ଆଣି ପାଣିରେ ସିଝାଇ ତିଆରି କରାଯାଇଥିବା ପାଚନ ମୋଦକ ପ୍ରସ୍ତୁତ କରାଯାଏ ।
(ପୂ.ଓ.ଭା. - ପୃ.୩୬୯୪) ।

**ଅଣସରନୀତି**-ଦେ.ବି.- ବିଶ୍ୱାବସୁ ନୀଳମାଧବଙ୍କୁ ଯେପରି ଭାବରେ ପୂଜା କରୁଥିଲା ତାହା ଥିଲା ନିଭୃତ ଗୁପ୍ତ ତଥା ଭକ୍ତି ପ୍ରାର୍ଥନା ପ୍ରଧାନ ଆଦିମତମ ଉପାସନା । ଅଣସର ପୂଜାନୀତି ବିଧିବିଧାନ ତା'ର ଏକ ନିଚ୍ଛକ ପ୍ରତିଫଳନ । ଶ୍ରୀମନ୍ଦିରର ରତ୍ନବେଦୀ ଉପରେ ଥାଇ ଜଗନ୍ନାଥ ପ୍ରତିଦିନ ଛପନ ପଉଟି ସୁସ୍ୱାଦ ପ୍ରସାଦ ମଣୋହି କରୁଥିଲେ ମଧ୍ୟ ଶବର ସେବାୟତ ଦଇତାମାନେ ଅଣସର ଘରେ କେବଳ ଫଳମୂଳ ଓ ପଣା ପାଣି ସମର୍ପଣ କରି ମହାପ୍ରଭୁଙ୍କର ସେବା କରନ୍ତି । ଏହି ସେବା ପୂଜାରେ କୌଣସି ମନ୍ତ୍ରାଦିର ଆବଶ୍ୟକତା ନ ଥାଏ । ଅଣସର ସମୟରେ ଅଣସର ପଣା ଶ୍ରୀମନ୍ଦିରର ଏକ ପ୍ରସିଦ୍ଧ ଭୋଗ । ପ୍ରତ୍ୟହ ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟାଧୂପ ପରେ ଦୁଇଥର ସର, ନବାତ, କର୍ପୂର, ଜାଇଫଳ, ଚନ୍ଦନ ମିଶ୍ରିତ ମୋଟ୍ ଅଠେଇଶ ଓଳି ପଣା ମହାପ୍ରଭୁଙ୍କୁ ସମର୍ପଣ କରାଯାଏ । ଏତଦ୍‌ବ୍ୟତୀତ ରାଘବଦାସ ମଠରୁ ଆସିଥିବା ଧୂଆମୁଗ ଓ ପଣସ ପ୍ରତ୍ୟେହ ପହୁଡ଼ ପୂର୍ବରୁ ଅଣସର ଠାକୁରଙ୍କୁ ଲାଗି ହୁଏ । ଏହା ଚକଟା ଭୋଗ ନାମରେ ପରିଚିତ । ଏହି ସମୟରେ ଭକ୍ତମାନଙ୍କ ଦ୍ୱାରା ଆମ୍ବ, ପଣସ, ସପୁରୀ, ଅଙ୍ଗୁର, କମଳା ପ୍ରଭୃତି ଫଳ ମଧ୍ୟ ଲାଗି ହୋଇଥାଏ । ଜ୍ୟେଷ୍ଠପୂର୍ଣ୍ଣିମା ଦିନ ସ୍ନାନ ମଣ୍ଡପରୁ ଶ୍ରୀଜୀଉମାନଙ୍କୁ ଗୋଟି ପହଣ୍ଡିରେ ନେଇ ଅଣସର ପିଣ୍ଡିରେ ବିଜେ କରାଯାଏ । ଶ୍ରୀଜୀଉଙ୍କର ଶରୀରକୁ ପୂର୍ବପରିଚିତ ପଟ୍ଟବସ୍ତ୍ର ସବୁ ଓଲାଗି କରିଦିଆଯିବା ପରେ ତାଙ୍କର ଅନାବୃତ ଦାରୁରୂପ ସାଧାରଣତଃ ଦର୍ଶନୀୟ ନୁହେଁ । ଏଣୁ ଏହି ସମୟରେ ବିଗ୍ରହମାନଙ୍କୁ ଜ୍ୱର ହେଉଛି ବୋଲି ଧାରଣା ଜନ୍ମାଇ ଲୋକଲୋଚନ ଅନ୍ତରାଳରେ ଅଣସର ଘରେ ପନ୍ଦର ଦିନରେ ବିଗ୍ରହମାନଙ୍କର ଅଙ୍ଗନିବାସ କରାଯାଇଥାଏ । କେବଳ ଦଇତାମାନେ ଏହି ସମୟରେ ଜ୍ୱର ପ୍ରପୀଡ଼ିତ ଜୀଉମାନଙ୍କୁ ମାନବ ରୂପେ ପରିକଳ୍ପନା କରି ତାଙ୍କର ସେବାନୀତି ସମ୍ପାଦନ କରନ୍ତି, ଯାହା କି ନୀଳମାଧବ ବିଗ୍ରହ ସହିତ ବିଶ୍ୱାବସୁ ଶବରର ଅନାବିଳ ଆତ୍ମୀୟତାର ପରିଚାୟକ ।
ପ୍ରାକ୍ ପୌରାଣିକ ଯୁଗରୁ ଦଇତାପତିମାନେ ଅଣସରକାଳୀନ ସେବାପୂଜା କରିଆସୁଛନ୍ତି । ଶୁଦ୍ଧଲଗ୍ନ, ସ୍ୱାତୀ ନକ୍ଷତ୍ର ଓ ଅନ୍ୟ କେତେକ

ସ୍ୱତନ୍ତ୍ର ନୀତିରେ ପଟ୍ଟବସ୍ତ୍ରକୁ ଛେକି ଶ୍ରୀବିଗ୍ରହରେ ଛକି ପଡ଼ିଲା ପରି ବାନ୍ଧି ତପ୍ପରେ ଚନ୍ଦନ ଲେପ ଦେଇଥାନ୍ତି । ଏହାକୁ ପଇତା ଲାଗି କୁହାଯାଇଥାଏ । ସ୍ନାନ ପୂର୍ଣ୍ଣିମାରେ ଜଳସିକ୍ତ ଏହି ପାଟ୍ଟଗୁଡ଼ିକୁ ଅଣସର ସମୟରେ ଶ୍ରୀଅଙ୍ଗରୁ ଫିଟାଇ ଦିଆଯାଉଥିବାରୁ ଶ୍ରୀଅଙ୍ଗ ଫିଟା ନାମରେ ଏହା କଥିତ । ଶ୍ରୀଜଗନ୍ନାଥଙ୍କ ବିଗ୍ରହରୁ ପ୍ରତିବର୍ଷ ଏହି ସମୟରେ ଦଇତାମାନେ ବାହାର ଆବରଣ ପୃଥକ୍ କରି ଶ୍ରୀଅଙ୍ଗରୁ ଝୁଣାରେ ପ୍ରସ୍ତୁତ ଚନ୍ଦନର ଲେପ ଛଡ଼ାଇଥାନ୍ତି । ଏହାକୁ 'କରାଳ' କହନ୍ତି । ଏହି ସମୟରେ ଶ୍ରୀବିଗ୍ରହମାନଙ୍କର ଆବଶ୍ୟକ ମରାମତି କାର୍ଯ୍ୟ ହୋଇଥାଏ ।

'କରାଳ' ପରେ ଆଷାଢ଼ କୃଷ୍ଣ ପଞ୍ଚମୀଠାରୁ ଦଇତାପତିମାନେ ପରଖ ଓ ପିଙ୍ଗଣରେ ରାଶିତେଲ, ଚୂଆ, କର୍ପୂର ଇତ୍ୟାଦି ବିଙ୍କେ କରାଇ ଶ୍ରୀଅଙ୍ଗରେ ଘର୍ଷଣ କରିଥାନ୍ତି । ଏହାକୁ 'ଫୁଲୁରୀ ଲାଗି' କୁହାଯାଇଥାଏ । ବର୍ଷକ ପୂର୍ବରୁ ଭୂମିତଳେ ରଖାଯାଇଥିବା ରାଶିତେଲ, ଝୁଣା, କର୍ପୂର ଆଦି ସୁଗନ୍ଧିତ ବସ୍ତୁକୁ ବଡ଼ଓଡ଼ିଆ ମଠ ଦ୍ୱାରା ଯୋଗାଇ ଦିଆଯାଏ । ତାହାକୁ ଫୁଲୁରୀତେଲ ବା 'ଶ୍ରୀତୈଳ କୁହାଯାଏ । ଅଣସର ସପ୍ତମୀ ଦିନ ଶ୍ରୀଜୀଉଙ୍କୁ ଉକ୍ତ ତୈଳ ଲାଗି କରାଯାଏ ।

ଫୁଲୁରୀ ତେଲ ବା ଶ୍ରୀତୈଳ ଘର୍ଷଣ ପରେ ଶ୍ରୀଜୀଉଙ୍କ ଦାରୁ କଳେବର ଉପରେ ଅଷ୍ଟମୀ ଦିନ ନୂତନ ପାଟ୍ଟବସ୍ତ୍ର ବନ୍ଧନ କରାଯାଏ । ଏହା 'ଶିରୀକପଡ଼ା' ବା ଶ୍ରୀକପଡ଼ା ନାମରେ ଖ୍ୟାତ । ଏହିଦିନ କ୍ଷୀର, ଅକ୍ଷତ ଚୂନା ଓ ଚୂଆ ଏକତ୍ର ରନ୍ଧନ କରି ଶ୍ରୀଅଙ୍ଗରେ ପଟ୍ଟସୂତ୍ର ମର୍ଦ୍ଦନ କରାଯାଏ । ଏହାକୁ 'ପଟ୍ଟରଜ୍ଜୁ ବନ୍ଧନ' କୁହାଯାଏ । ପଟ୍ଟରଜ୍ଜୁ ବନ୍ଧନ ପରେ ନବମୀ ଦିନ ସୁବାସିତ ରାଶିତେଲ ଓ ଝୁଣା ଏକତ୍ର କରି ପୁନଶ୍ଚ ଶ୍ରୀଅଙ୍ଗରେ ମାଲିସ କରାଯାଏ । ଏହାକୁ 'ମସୃଣ ଲେପ' କୁହାଯାଏ । ଏହାପରେ ଦଶମୀ ଦିନ କଳା ମୁଗୁନି ପ୍ରସ୍ତରେ ନିର୍ମିତ ତିନିଗୋଟି ଚକା ଉପରେ ବିଗ୍ରହମାନଙ୍କୁ ବିଙ୍କେ କରାଇ ଦଇତାପତିମାନେ କସ୍ତୁରୀ, କୁଙ୍କୁମ, ଚନ୍ଦନ ଶ୍ରୀଅଙ୍ଗରେ 'ଶ୍ୱେତଅଙ୍ଗରାଗ' ଲେପନ କରିଥାନ୍ତି । ନବମୀ ପର୍ଯ୍ୟନ୍ତ ଶ୍ୱେତଅଙ୍ଗରାଗ ଲାଗି ହେଉଥିବା ବେଳେ ଦଶମୀଠାରୁ ପୂର୍ଣ୍ଣ ଅଙ୍ଗରାଗ ଲାଗି ହୋଇଥାଏ । ଅଣସର ଏକାଦଶୀ ଦିନ ଅଣସର ଘରେ ଚନ୍ଦନ ଘୋରାଯାଇ ତହିଁରେ ସମପରିମାଣ କସ୍ତୁରୀ, କେଶର ଓ କର୍ପୂର ପ୍ରଭୃତି ଏକତ୍ର ମିଶାଇ ଠାକୁରମାନଙ୍କୁ ଲାଗି ହୋଇଥାଏ । ଏହାକୁ 'ଚନ୍ଦନ ଲାଗି' କୁହାଯାଏ । ଏହି ରାତିରେ ଖଳି ଗୋଳାଯାଇ ରୁପା ପିଙ୍ଗଣରେ ଯୋଗାଇ ଦିଆଯାଏ । ଦ୍ୱାଦଶୀ ମଧ୍ୟାହ୍ନ ଧୂପ ପରେ ଘଣ୍ଟ କାହାଳୀ ମଧ୍ୟରେ ମହାପ୍ରଭୁଙ୍କ ଶ୍ରୀପୟର ରଚନା କରାଯାଇ ରାଶିତେଲ, ଝୁଣା, ପଞ୍ଚମୂଳ, କର୍ପୂର, କସ୍ତୁରୀ ଓ ଅନ୍ୟାନ୍ୟ ସୁଗନ୍ଧ ଦ୍ରବ୍ୟ ଏକତ୍ର ରନ୍ଧନ କରି ଶ୍ରୀଅଙ୍ଗରେ ଲାଗି ହୋଇଥାଏ । ଏହା ଓଷ ଲାଗି ନାମରେ ପରିଚିତ ।

(ଶ୍ରୀ.ସ୍ୱ.- ପୃ. ୬୨-୬୩, କ୍ଷ.ସ.)

**ଅଣସରପଟି**-*ଦେ. ବି.*- ଅଣସର ସମୟରେ ଶ୍ରୀବିଗ୍ରହମାନେ ଅଣସର ନୀତି ମଧ୍ୟରେ ରହୁଥିବାରୁ ଶ୍ରୀ ଠାକୁରଙ୍କର ରଙ୍ଗନୀତି କାର୍ଯ୍ୟ ସମ୍ପୂର୍ଣ୍ଣ ହୁଏ । ଏହି ପନ୍ଦର ଦିନ ଏକ ପଟିରେ ଚିତ୍ର ହୋଇଥିବା ପ୍ରତିମା ପୂଜା ପାଆନ୍ତି । ଏହାକୁ ଅଣସରପଟି ଠାକୁର କୁହାଯାଏ । ଏମାନେ ହେଲେ ବଡ଼ ବାଡ଼ରେ ଅନନ୍ତ ବାସୁଦେବ, ମଝି ବାଡ଼ରେ ଭୁବନେଶ୍ୱରୀ ଓ ମହାପ୍ରଭୁଙ୍କ ବାଡ଼ରେ ନାରାୟଣ ।

(ଶ୍ରୀ.ସ୍ୱ.- ପୃ.୬୨, ଓ.ସାଂ.ଶ.- ପୃ.୧୩ ) ।

**ଅଣସରପଣା**- ଅଣସର ସମୟରେ ଶ୍ରୀଜୀଉଙ୍କୁ କେବଳ ଫଳମୂଳ ଓ ପଣା ଆଦି ଅର୍ପଣ କରାଯାଏ । ପ୍ରତ୍ୟହ ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପ ପରେ ଦୁଇଥର ସର, ନବାତ, କର୍ପୂର, ଜାଇଫଳ, ଚନ୍ଦନ ମିଶ୍ରିତ ମୋଟ ଅଠେଇଶ ଓଳି ପଣା (ଚଉଦ ଓଳି ସାନ ଓ ଚଉଦ ଓଳି ବଡ) ମହାପ୍ରଭୁଙ୍କୁ ସମର୍ପଣ କରାଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୬୨) ।

**ଅଣସରପିଣ୍ଡି**-*ଦେ.ବି.*- ଶ୍ରୀମନ୍ଦିର ଭିତରେ ଥିବା ବଲ୍ଲଭ ପିଣ୍ଡି । ଭିତର କାଠ ପରେ କଳା ହାଟ ଦୁଆରକୁ ଲାଗି ମୁଗୁନିପଥରର ପିଣ୍ଡି । ଏଠାରେ ଶ୍ରୀଜୀଉଙ୍କର ପ୍ରଥମ ଭୋଗ ଗୋପାଳବଲ୍ଲଭ ଅର୍ପିତ ହୁଏ । ଅଣସର ସମୟରେ ବିଗ୍ରହମାନେ ଏହିଠାରେ ରହିଥାନ୍ତି ।
(ଶ୍ରୀ.ସ୍ୱ. - ପୃ.୬୨, ଓ.ସାଂ.ଶ., ପୃ.୧୩) ।

**ଅଣସରଶୁଦ୍ଧସୁଆର ସେବା**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ଅଣସର ସମୟରେ ଅଣସର ପିଣ୍ଡିଠାରେ ଭୋଗହାଣ୍ଡି ଭାଙ୍ଗି ପଡ଼ିଥିଲେ ପରିଷ୍କାର କରିଥାନ୍ତି ଓ ପୂଜା ନିମନ୍ତେ ଉଦ୍‌ଯୋଗ କରନ୍ତି । ଖଳି ଓ ଓଷ ପ୍ରସ୍ତୁତ କରି ଅଣସରରେ ସେବା କରିଥାଆନ୍ତି ।
(ଶ୍ରୀ.ସ୍ୱ.- ପୃ. ୧୪) ।

**ଅଣାକାର**-*ସଂ.ବି.*- ନିରାକାର, ଆକାରହୀନ, ପରମବ୍ରହ୍ମ, ପରମେଶ୍ୱର । ସାକାର-ନିରାକାର, ସଗୁଣ-ନିର୍ଗୁଣ, ସବୁର ଆଧାର ଏବଂ ଇଚ୍ଛାନୁସାରେ ରୂପଧାରଣ କରୁଥିବା ପରମେଶ୍ୱର ।
(ଶ.କ. ୨ୟ - ପୃ.୮୮୮) ।

**ଅଣିମା**-*ସଂ.ବି.*- ଅଣୁତା, ସୂକ୍ଷ୍ମତା ଅଣୁପରି ଅବସ୍ଥା । ଦେବୀ ଓ ସିଦ୍ଧ ପୁରୁଷମାନଙ୍କର ଓ ଈଶ୍ୱରଙ୍କର ସାଧନା ଲବ୍ଧ ଅଷ୍ଟସିଦ୍ଧି ବା ଅଷ୍ଟୈଶ୍ୱର୍ଯ୍ୟ ମଧ୍ୟରୁ ଏକତମ । ଈଶ୍ୱରଙ୍କର ଅଣିମାଦି ଅଷ୍ଟ ବିଭୂତି ମଧ୍ୟରୁ ଅନ୍ୟତମ ।
(ପୂ.ଓ.ଭା. - ପୃ.୧୮୦, ପ୍ର.ଅ. ୧ମ - ପୃ. ୪୦/୪୩୦, ଶ.ଅ. - ପୃ. ୨୨, କ୍ର.ଓ.ଶ.- ପୃ.୧୮, ଶ.କ. ୧ମ - ପୃ.୨୪/୩୦) ।

**ଅତିବଡ଼ି**-*ଦେ.ବି.*- ଏହା ଏକ ବୈଷ୍ଣବ ସମ୍ପ୍ରଦାୟ । ଶ୍ରୀଚୈତନ୍ୟ ଦେବ ପୁରୀରେ ତାଙ୍କର ରହଣିକାଳ ମଧ୍ୟରେ କବି ଜଗନ୍ନାଥ ଦାସଙ୍କ ଭକ୍ତି ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼ି' ସମ୍ବୋଧନ କରିଥିଲେ । ଜଗନ୍ନାଥ ଦାସ ଥିଲେ ଓଡ଼ିଆ ଭାଗବତର ପ୍ରଣେତା ଓ ଶ୍ରୀଚୈତନ୍ୟଙ୍କ ସମସାମୟିକ । କବି ଜଗନ୍ନାଥ ଦାସଙ୍କ ଶିଷ୍ୟମାନଙ୍କୁ ନେଇ ଅତିବଡ଼ି ସମ୍ପ୍ରଦାୟ ସୃଷ୍ଟି ହୋଇଛି ।
(ପୂ.ଓ.ଭା. - ପୃ. ୨୦୦) ।

**ଅଥାର**-*ଦେ.ବି.*- ପିଠା ସିଝା ହେବା ନିମନ୍ତେ ଏକ ହାଣ୍ଡି । ଏଥିରେ ପାଣି ରଖାଯାଇ ଏହାର ମୁହଁକୁ କନାରେ ଢାଙ୍କି ବାନ୍ଧି ଦିଆଯାଇ ଥାଏ । ଏହାର ଉପରେ ସୁଦ (ଅଣ) ରଖି ନିଆଁରେ ବସାଯାଇ ବିବିଧ ପ୍ରକାର ପିଠା ପ୍ରସ୍ତୁତ କରାଯାଏ ।
(ପୂ.ଓ.ଭା. - ପୃ.୨୧୮) ।

**ଅଦା ପାଚେଡ଼ି**-*ଦେ.ବି.*- ଏକ ପ୍ରକାର ଭୋଗ । ଯାହା କୋଠ ଭୋଗରେ ଶ୍ରୀଜୀଉଙ୍କୁ ଅର୍ପଣ କରାଯାଏ ।
(ଶ୍ରୀ.ସ୍ୱ. - ପୃ. ୨୧) ।

**ଅଧର**-*ସଂ.ବି.*- ତଳ, ନିମ୍ନ, ତଳ ଓଠ । ଶ୍ରୀଜଗନ୍ନାଥଙ୍କୁ ଅଧର ଲମ୍ବିତ ମାଳା ପ୍ରଦାନ କରାଯାଏ । ଏହାକୁ ଅଧର ମାଳା କୁହାଯାଏ ।
(କ୍ର.ଓ.ଶ.- ପୃ.୨୩, ପୂ.ଓ.ଭା. - ପୃ. ୨୪୨, ପ୍ର.ଅ.- ୧ମ - ପୃ. ୬୧, ବୃ.ଓ.ଅ.- ପୃ. ୧୯, ଶ.ଅ.- ପୃ. ୩୦, ଶ.କ. - ପୃ. ୩୬) ।

**ଅଧର କୁସୁମି**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥଙ୍କ ବ୍ୟବହୃତ ଏକ ପ୍ରକାର ବସ୍ତ୍ର ବିଶେଷ ।

**ଅଧର ପୋଛା**-*ଦେ.ବି.*- କର୍ପୂର, ଚନ୍ଦନ ମିଶ୍ରିତ ଜଳରେ ଠାକୁରଙ୍କ ଶ୍ରୀମୁଖ ପୋଛାଯିବା ବିଧି । ଶ୍ରୀମୁଖ ମଳିନ ଦିଶିଲେ ଦତ୍ତ ମହାପାତ୍ର ମଲମଲ ବସ୍ତ୍ରକୁ ଜଳରେ ଭିଜାଇ ଶ୍ରୀମୁଖ ପୋଛନ୍ତି । ଏହାକୁ ଶ୍ରୀମୁଖ ଧୋପଖାଳ ମଧ୍ୟ କୁହାଯାଏ । ସ୍ନାନପୂର୍ଣ୍ଣିମା ଦିନ ବିଶେଷତଃ ଏହି ନୀତି କରାଯାଏ ।
(ପୁ.ବୋ. - ପୃ. ୧୫୧) ।

**ଅଧରବଳା**-*ଦେ.ବି.*- ଶ୍ରୀଜୀଉଙ୍କ ଶ୍ରୀମୁଖର ଅଧଃ ଭାଗରେ ଦିଆଯାଉଥିବା ଏକ ଗୋଲ ଓ ଲମ୍ବାକୃତି ଅଧରମାଳା ବଳା ।
(ଶ୍ରୀ.ଶ. - ପୃ. ୨୧) ।

**ଅଧରବୋଳା**-*ଦେ.ବି.*- ଶ୍ରୀଜୀଉଙ୍କ ଶ୍ରୀମୁଖ ସଜ୍ଜା ପାଇଁ ବସ୍ତ୍ରଭୂଷଣ ।
(ପୁ.ବୋ.-ପୃ. ୧୫୧) ।

**ଅଧରପଣା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ପାଖରେ ରଥ ଉପରେ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ନୀଳାଦ୍ରି ବିଜେର ପୂର୍ବଦିନ ଅଧର ପଣା ଲାଗି କରାଯାଏ । ବାହୁଡ଼ା ପରେ ସିଂହଦ୍ୱାରରେ

ଠାକୁର ରଥାରୂଢ଼ ଅବସ୍ଥାରେ ଶ୍ରୀ ଅଧରକୁ ପାଇଲା ଭଳି ତୁମ୍ୱ ସଦୃଶ ତିନୋଟି ହାଣ୍ଡିରେ ଅର୍ପିତ ପଣା ଭୋଗ । ମହାପ୍ରଭୁଙ୍କ ଅଧର ସ୍ପର୍ଶ ମାପ ହୋଇ ସ୍ୱତନ୍ତ୍ର ଭାବରେ ନିର୍ମିତ ହୋଇଥିବା ମାଟି ହାଣ୍ଡିରେ ଏହା ଭୋଗ ହେଉଥିବାରୁ ଏହାକୁ 'ଅଧରପଣା' କୁହାଯାଏ । କ୍ଷୀରସର, ନବାତ, କଦଳୀ, ଗୋଲମରିଚ, ଅଳେଇଚ଼ ଆଦି ମିଶ୍ରିତ ପଣା, ଯାହାକି ଓଡ଼ିଆ ମଠ, ରାଘବଦାସ ମଠ ଏବଂ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ତିନିଗୋଟି ହାଣ୍ଡି ଏକ ସମୟରେ ଭୋଗ କରାଯାଏ ।

ପୂର୍ବେ ବାହୁଡ଼ାଯାତ୍ରାରେ ମହାପ୍ରଭୁ ଗୁଣ୍ଡିଚା ମନ୍ଦିରରୁ ଆସି ସିଂହଦ୍ୱାରରେ ପହଞ୍ଚିଲା ପରେ ତିନି ରଥରେ ଅଧରପଣା ଭୋଗ ଲାଗୁଥିଲା । ବାହୁଡ଼ା ଦଶମୀଦିନ ତିନିହାଣ୍ଡି, ଏକାଦଶୀ ସୁନାବେଶ ଦିନ ତିନି ହାଣ୍ଡି ଏବଂ ଦ୍ୱାଦଶୀ ଦିନ ତିନି ହାଣ୍ଡି ଏହିପରି ନଅ ହାଣ୍ଡି ଅଧର ପଣା ଭୋଗ ହେଉଥିଲା । ପରବର୍ତ୍ତୀ କାଳରେ ରଥ ସିଂହଦ୍ୱାରରେ (ବାହୁଡ଼ାଦିନ) ପହଞ୍ଚି ନ ପାରିବାରୁ ଏକାଦଶୀ ଦିନ ଛ ହାଣ୍ଡି ଏବଂ ଦ୍ୱାଦଶୀ ଦିନ ତିନି ହାଣ୍ଡି ପଣା ଭୋଗ ହେଉଥିଲା; କିନ୍ତୁ ଏବେ ଦ୍ୱାଦଶୀ ଦିନ ଅର୍ଥାତ୍ ସୁନାବେଶ ପରଦିନ ଏକାଦିନକେ ନଅ ହାଣ୍ଡି ଅଧର ପଣା ଭୋଗ ହେଉଅଛି । ପ୍ରକୃତରେ ନଅ ହାଣ୍ଡି ଅଧର ପଣା ନୁହେଁ ବାରହାଣ୍ଡି ଅଧର ପଣା । ପ୍ରତି ରଥରେ ତିନି ହାଣ୍ଡି ଲେଖାଏଁ ନଅ ହାଣ୍ଡି । ଏତଦ୍‌ବ୍ୟତୀତ ବଳଭଦ୍ରଙ୍କ ରଥରେ ଅଧିକ ଦୁଇଟି ଛୋଟ ହାଣ୍ଡିରେ ଅଧର ପଣା ଭୋଗ ହୋଇଥାଏ । ରଥରେ ଥିବା ରାମ ଓ କୃଷ୍ଣଙ୍କର ଚଳନ୍ତି ବିଗ୍ରହ ନିକଟରେ ଏହି ପଣା ହାଣ୍ଡି ଭୋଗ ହୁଏ । ଆଉ ଏକ ଅଧିକ ଛୋଟ ହାଣ୍ଡି ଅଧର ପଣା ଶ୍ରୀ ଜଗନ୍ନାଥଙ୍କ ରଥରେ ବିରାଜମାନ କରିଥିବା ମଦନମୋହନଙ୍କ ନିକଟରେ ମଧ୍ୟ ଭୋଗ ହୁଏ ।

ଏହି ପଣା ନଅଟି ଦ୍ରବ୍ୟର ସମ୍ମିଶ୍ରଣରେ ପ୍ରସ୍ତୁତ ହୋଇଥାଏ । ଯଥା - ଦୁଗ୍ଧ, ଦହି, ମହୁ, ଘୃତ, ଛେନାସର, କଦଳୀ, ଗୋଲମରିଚଗୁଣ୍ଡ, କର୍ପୂର, ଜାଇଫଳ ଇତ୍ୟାଦି । ଏହାକୁ 'ମହାପଞ୍ଚରାତ୍ର' ବିଧି ବୋଲି ବୈଷ୍ଣବମାନେ ଗ୍ରହଣ କରିଥିବାବେଳେ, ଶାକ୍ତମାନେ ମହାପଞ୍ଚତନ୍ତ୍ର ବିଧି କହିଥାନ୍ତି । ଲୋକ ବିଶ୍ୱାସରେ ଆଶାୟୀ ଚଣ୍ଡୀ ଚାମୁଣ୍ଡା ଆଦିଙ୍କର ପରିତୃପ୍ତି ନିମନ୍ତେ ଏହା ପ୍ରଦାନ କରାଯାଏ । ଭୂତ, ପ୍ରେତଙ୍କ ଉଦ୍ଦେଶ୍ୟରେ ଏହା ଉଦ୍ଦିଷ୍ଟ ଥିବାରୁ ରଥ ଉପରେ ପଣା ହାଣ୍ଡି ଭଙ୍ଗାଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୮୦, ପୂ.ଓ.ଭା. - ପୃ. ୨୪୩, ଉ.ପ୍ର. ଜୁଲାଇ ୨୦୦୦ - ପୃ. ୫୯) ।

**ଅଧରମାଳା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ପୁଷ୍ପମାଳା ଯାହା ଅଧର ପର୍ଯ୍ୟନ୍ତ ଲମ୍ୱିଥାଏ । ଏହା ତିନି ପ୍ରକାରର । ଷୋହଳ ହାତିଆ, ଚଉଦ ହାତିଆ ଓ ବାର ହାତିଆ । ଶ୍ରୀ ଜଗନ୍ନାଥଙ୍କର ଷୋହଳ ହାତିଆ, ବଳଭଦ୍ରଙ୍କର ଚଉଦ ହାତିଆ ଓ ସୁଭଦ୍ରାଙ୍କର ବାର ହାତିଆ ମାଳ ଅଟେ । ଏହା ମଧ୍ୟାହ୍ନ ଧୂପରେ ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ । ଜଗନ୍ନାଥ ବଲ୍ଲଭ ମଠରୁ ଯେଉଁ ଅଧରମାଳ ଆସେ ତାହା ବଡ଼ ସିଂହାରରେ ଲାଗିହୁଏ । ଏହା ବ୍ୟତୀତ କୋଇଲି ବୈକୁଣ୍ଠ, ନୀଳାଚଳ ଉପବନ ଏବଂ ଉତ୍ତର ପାର୍ଶ୍ୱ ଓ ଦକ୍ଷିଣ ପାର୍ଶ୍ୱ ମଠରୁ ମଧ୍ୟ ମାଳା ଆସିଥାଏ ।

(କ୍ଷେ.ସ.) ।

**ଅଧା**-*ଦେ.ବି.*- ଅମାଲୁ ଛଣା ତଇ ବା କଡ଼େଇ ଯାହା ଶ୍ରୀମନ୍ଦିର ରୋଷରେ ଅମାଲୁ ତିଆରିରେ ବ୍ୟବହାର କରାଯାଏ ।

(କ୍ଷେ.ସ.) ।

**ଅଧା ଝଡ଼େଇ ନେଦା**-*ଦେ.ବି.*- ଏକ ପ୍ରକାର ଭୋଗ ବିଶେଷ । ଛୋଟ ଡାଟରେ ଥିବା ଝଡେଇ ନେଦାକୁ ଅଧା ଝଡେଇ ନେଦା କୁହାଯାଏ । ଏହା ସନ୍ଧ୍ୟାଧୂପରେ ଠାକୁରଙ୍କୁ ଲାଗି ହୁଏ । ବିଭିନ୍ନ ପିଠା ପ୍ରସ୍ତୁତିବେଳେ ତହିଁରୁ ଝଡ଼ିଥିବା ଅଂଶ । ଏଣୁ ଏହାକୁ ଝଡ଼େଇନେଦା ମଧ୍ୟ କୁହାଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୫) ।

**ଅଧା ତାଡ଼ିଆ**-*ଦେ.ବି.*- ଶ୍ରୀମନ୍ଦିରର ଏକ ପ୍ରକାର ଭୋଗ ବିଶେଷ । ଛୋଟ ମାପର ତାଡରେ ଥିବା ଭୋଗ । ଏହା ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ ।

**ଅଧାମ**-*ଦେ.ବି.*- ରାବିଡ଼ି ଭୋଗ, କ୍ଷୀରରୁ ପ୍ରସ୍ତୁତ ଏକ ପ୍ରକାର ଖାଦ୍ୟ ଦ୍ରବ୍ୟ, ଯାହାକୁ ଠାକୁରଙ୍କୁ ଲାଗି ହୋଇଥାଏ । ଦୁଗ୍ଧରେ ପ୍ରସ୍ତୁତ ଏକ ମିଷ୍ଟାନ୍ନ ବିଶେଷ । (ପୂ.ଓ.ଭା. - ପୃ. ୨୪୯) ।

**ଅଧାଶୋଧ**-*ଦେ.ବି.*- ଶ୍ରୀମନ୍ଦିରର ଗର୍ଭଗୃହରୁ ଦର୍ଶନାର୍ଥୀମାନଙ୍କୁ ଆଂଶିକ ଖାଲି କରିବା ବିଧି । (ଶ୍ରୀ.ସ୍ୱ. - ପୃ. ୧୯) ।

**ଅଧିକ ମନୋହର**-*ଦେ.ବି.*- ଶ୍ରୀମନ୍ଦିରର ଏକ ପ୍ରକାର ମିଷ୍ଟାନ୍ନ ଭୋଗ ପଦାର୍ଥ । ଆବଶ୍ୟକୀୟ ମିଠା ଠାରୁ ଅଧିକ ମିଠା ଦିଆଯାଇଥିବା ଭୋଗ । ଚମ୍ପକ ଦ୍ୱାଦଶୀ, ବାମନଜନ୍ମ, ପିତୃପକ୍ଷ ଅମାବାସ୍ୟା, ଗହ୍ମାପୂର୍ଣ୍ଣିମା, ତୁଳାସଂକ୍ରାନ୍ତି, ଉତ୍‌ଥାପନ ଏକାଦଶୀ, ଦଶହରା ପ୍ରଭୃତି ଉତ୍ସବମାନଙ୍କରେ ଠାକୁରଙ୍କୁ ଭୋଗ ହୁଏ । (ଶ୍ରୀ.ସ୍ୱ. - ପୃ. ୧୮୯, ୧୯୦, ୧୯୨, ୧୯୪) ।

**ଅଧିବାସ**-*ସଂ.ବି.*- ଯଜ୍ଞାନୁଷ୍ଠାନର ପୂର୍ବ ଦିନ ବା ଦେବ ବିଗ୍ରହ ପ୍ରତିଷ୍ଠାର ପୂର୍ବ କର୍ମ । ଦେବ କ୍ରିୟାର ପୂର୍ବ ଦିବସ ସଂସ୍କାର ବିଶେଷ । ମଙ୍ଗଳ କାର୍ଯ୍ୟରେ ମନ୍ତ୍ରୋଚ୍ଚାରଣପୂର୍ବକ ଗୁଆ, ନଡ଼ିଆ, ପଇତା, ସିନ୍ଦୂର, ଶଙ୍ଖ, କଜ୍ଜ୍ୱଳ, ଗୋରଚନା, ଶ୍ୱେତ ସୋରିଷ, ସୁନା, ରୂପା, ତମ୍ବା, ଚାମର, ଦର୍ପଣ, ଦୀପ ତଥା ଆବଶ୍ୟକ ପାତ୍ର ଓ ବରୁଣ ଡାଳ ଇତ୍ୟାଦି ସଂଗ୍ରହ କରି ସ୍ଥାପନା କରାଯାଏ । ବିବାହ ଇତ୍ୟାଦି ସଂସ୍କାର କାର୍ଯ୍ୟରେ ନିର୍ଦ୍ଧାରିତ ଦିନର ସକାଳେ କରାଯାଏ । ଶ୍ରୀମନ୍ଦିରରେ ଦେବସ୍ନାନ ପୂର୍ଣ୍ଣିମା ଦିନ ଏକଶତଆଠ ଗରା ଜଳ ସୁନାକୂଅରୁ ଅଣାଯାଇ ଅଧିବାସ ପରେ ସରଘରେ ରଖାଯାଏ । ସେଥିରେ ଚନ୍ଦନ, କର୍ପୂର, କେଶର, ଚୁଆ ସମପରିମାଣରେ ମିଶ୍ରିତ କରି ଅଧିବାସ କର୍ମ କରାଯାଏ । ନୀଳାଦ୍ରିମହୋଦୟାଷ୍ଟମୀର ପୂର୍ବଦିନ, ପୁଷ୍ୟାଭିଷେକର ପୂର୍ବଦିନ ମଧ୍ୟ ଏହି ଅଧିବାସ କର୍ମ କରାଯାଏ । ବର୍ତ୍ତମାନ ସମୟରେ ସ୍ନାନପୂର୍ଣ୍ଣିମା ପୂର୍ବ ରାତିରେ ଅଧିବାସ ଜଳ ସଂରକ୍ଷଣ ନହୋଇ ସେହି ଦିନ ପ୍ରାତଃ କାଳରେ ଜଳ ଅଧିବାସ ହେଉଅଛି । (କ୍ଷ.ସ., ଶ୍ରୀ.ସ୍ୱ. ୨ୟ - ପୃ. ୫୮, ଓ.ସାଂ.ଶ.- ପୃ.୧୭, ଶ.କ. ୧ମ - ପୃ.୩୬, କ୍ର.ଓ.ଶ.- ପୃ. ୨୪, ପୂ.ଓ.ଭା. - ପୃ. ୨୫୮, ପ୍ର.ଅ. ୧ମ - ପୃ. ୬୬, ଶ.କ. ୧ମ - ପୃ.୩୮, ପୌ(ବ) - ପୃ.୪) ।

**ଅର୍ଦ୍ଧନାରୀଶ୍ୱର**-*ସଂ.ବି.*- ହରଗୌରୀ ରୂପରେ ଶିବଙ୍କର ମୂର୍ତ୍ତି ଭେଦ । ଶିବ ଓ ପାର୍ବତୀଙ୍କ ସଂଲଗ୍ନ ମୂର୍ତ୍ତି । କୁଶାଣ ଓ ଗୁପ୍ତ ଯୁଗରେ ଏ ବିଗ୍ରହର ପ୍ରଚଳନ ଥିଲା । ମୂର୍ତ୍ତିର ଦକ୍ଷିଣପାର୍ଶ୍ୱ ଶିବ ଓ ବାମ ପାର୍ଶ୍ୱ ପାର୍ବତୀ । କିନ୍ତୁ ଶ୍ରୀମନ୍ଦିର ମଧ୍ୟରେ ବଡ଼ସିଂହାର ବେଶ ପରେ ଅର୍ଦ୍ଧ ଈଶ୍ୱର ନାରୀମୂର୍ତ୍ତି ଭାବରେ ଶୟନ ପ୍ରତିମା (ଲକ୍ଷ୍ମୀନାରାୟଣ)ଙ୍କୁ ଜୟବିଜୟ ଦ୍ୱାରଠାରେ ଆଳତି କରାଯାଇ ସାରିବା ପରେ ମନ୍ଦିର ପହୁଡ଼ କରାଯାଏ । (ଶ୍ରୀ.ସ୍ୱ. - ପୃ. ୨୮, ପୂ.ଓ.ଭା. - ପୃ.୫୮୪, ପୌ. ୧ମ (ବଂ.)- ପୃ. ୧୦୫) ।

**ଅର୍ଦ୍ଧମାତ୍ରା**-*ସଂ.ବି.*- ଅର୍ଦ୍ଧ ପରିମାଣ, ଅର୍ଦ୍ଧ ଚନ୍ଦ୍ରାକୃତି ବ୍ରହ୍ମରୂପିଣୀ, ମାହେଶ୍ୱରୀ, ମାତ୍ରାର ମଧ୍ୟ ଭାଗ, ଯୋଗମାୟା, ସୁଦର୍ଶନ । (ଶ.କ. ୩ୟ - ପୃ.୬୯୬, ପୂ.ଓ.ଭା. - ୫୮୪) ।

**ଅର୍ଦ୍ଧାଶନୀ**-*ଦେ.ବି.*- ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ ଅଧିଷ୍ଠାତ୍ରୀ ଠାକୁରାଣୀ । ଏହାଙ୍କୁ ଅର୍ଦ୍ଧଶୋଷଣୀ ବୋଲି ମଧ୍ୟ କୁହାଯାଏ । ଯିଏକି, ମାଉସୀ ମା’ ନାମରେ ପରିଚିତା । ଏହାଙ୍କ ପ୍ରକୃତ ନାମ ଅର୍ଦ୍ଧାଶନୀ । ସୃଷ୍ଟିର ଆଦ୍ୟ କାଳରେ ମହାପ୍ରଳୟରେ ବର୍ଦ୍ଧିତ ଜଳରୁ ସେ ଅର୍ଦ୍ଧେକ ଶୋଷଣ କରିଥା’ନ୍ତି । ବଡ଼ଦାଣ୍ଡ ମଧ୍ୟରେ ଲୁପ୍ତ ନଦୀର ପାର୍ଶ୍ୱରେ ରହି ଶ୍ରୀକ୍ଷେତ୍ର ମଧ୍ୟକୁ ବନ୍ୟାଜଳ ପ୍ରବେଶ କରାଇ ନ ଦେବା ତଥା କ୍ଷେତ୍ରକୁ ଜଗି ରହିଥିବାରୁ ଏ ଦେବୀ ଅର୍ଦ୍ଧାଶନୀ ନାମରେ ପରିଚିତା । ମୂର୍ତ୍ତିର ଦୁଇ ପାର୍ଶ୍ୱରେ ଦୁଇ ଜଣ ପାର୍ଶ୍ୱଦେବୀ ଅଛନ୍ତି । ମୂର୍ତ୍ତିର କଟୀ ଦେଶରୁ ଉପର ଅଂଶକୁ ଆଚ୍ଛାଦିତ କରି

ସୁଭଦ୍ରାଙ୍କ ମୁଖାଟିଏ ଚାପି ଦିଆଯାଇଛି । ଏହି ମୁଖା ବର୍ଷକରେ ଦୁଇଥର ଚିତ୍ର ହୁଏ । ମାଉସୀ ମା' ବନଦୁର୍ଗା ମନ୍ତ୍ରରେ ପୂଜା ପାଆନ୍ତି । ବାହୁଡ଼ା ଯାତ୍ରା ସମୟରେ ଗୁଣ୍ଡିଚାଘରୁ ଲେଉଟାଣି ରାସ୍ତାରେ ତିନି ଠାକୁରଙ୍କୁ ଏହି ମନ୍ଦିରରୁ ପୋଡ଼ପିଠା ଭୋଗ ଅର୍ପଣ କରାଯାଏ ।

(ଶ୍ରୀ.ସ୍ୱ. - ପୃ. ୨୭୮, ଶ.କ. ୧ମ - ପୃ. ୧୦୭) ।

**ଅନଙ୍ଗୋତ୍ସବ-** *ସଂ. ବି.-* ଶ୍ରୀଜଗନ୍ନାଥଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରେ ଅନଙ୍ଗୋତ୍ସବ ବା ଦମନକୋତ୍ସବ ଅନ୍ୟତମ । ଏହି ଉତ୍ସବ ଚୈତ୍ରମାସ ଶୁକ୍ଳ ଦ୍ୱାଦଶୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ତିନିଦିନ ପାଳିତ ହୁଏ । ଦ୍ୱାଦଶୀ ରାତ୍ରିରେ ଜଗନ୍ନାଥଙ୍କର ଭିତର ଚନ୍ଦନଲାଗି ସରିବା ପରେ ଦକ୍ଷିଣି ଗୃହରେ କନ୍ଦର୍ପ ପଟି ବା ଚିତ୍ରପଟରେ ଅଧିବାସ ହୁଏ । ପଞ୍ଚାମୃତ ସ୍ନାନ ପରେ ପଣ୍ଡା କାମଦେବଙ୍କୁ ବସ୍ତ୍ର, ମାଲ୍ୟ, ଭୂଷଣ ଓ ଭୋଗାଦି ପ୍ରଦାନ କରି ବନ୍ଦାପନା କରନ୍ତି । ଚୈତ୍ର ଶୁକ୍ଳ ତ୍ରୟୋଦଶୀ ଦିନ ଦୟଣାଚୋରୀ ବା ଦମନକୋତ୍ସବ ଅନୁଷ୍ଠିତ ହୁଏ । ଜଗନ୍ନାଥଙ୍କର ମଧ୍ୟାହ୍ନ ଧୂପ ଓ ଦକ୍ଷିଣିଗୃହ ଭୋଗ ପରେ ରାମକୃଷ୍ଣ ଦୁହେଁ ରତ୍ନସିଂହାସନକୁ ବିଜେ କରନ୍ତି ।

ପୂର୍ବଦିନ ଅଧିବାସ ହୋଇଥିବା କନ୍ଦର୍ପଙ୍କୁ ସେବକ ଘଣ୍ଟ, ଛତା, କାହାଳୀ ସହ ହସ୍ତରେ ବିଜେ କରାଇ ଆଣି ବଟବୃକ୍ଷମୂଳେ ପାଲିଙ୍କି ସମ୍ମୁଖରେ ନେଇ ଦଣ୍ଡାୟମାନ ହୁଅନ୍ତି । ରାମକୃଷ୍ଣ ଆଜ୍ଞା ପାଇବା ପରେ ମହାଜନଙ୍କ ହସ୍ତରେ ପାଲିଙ୍କିରେ ଉପବେଶନ କରି ଘଣ୍ଟ, ଛତା, କାହାଳୀ ସହ ଆଗେ ଆଗେ ଯାଇଥିବା କନ୍ଦର୍ପଙ୍କ ପଛରେ ପାଲିଙ୍କିରେ ଯାଇ ବସନ୍ତ ଉପବନ 'ଜଗନ୍ନାଥବଲ୍ଲଭ'ରେ ପହଞ୍ଚନ୍ତି । ସେଠାରେ ରାମକୃଷ୍ଣ ସହ ଖଟ ଉପରେ କନ୍ଦର୍ପ ବିଜେ ହୁଅନ୍ତି । ସେବକମାନଙ୍କ ଦ୍ୱାରା ପଞ୍ଚୋପଚାରରେ ପୂଜାପରେ ହୋମ, ମଣୋହି, ବନ୍ଦାପନା ଓ ଆଳଟଚାମର ହୁଏ ।

ଏହାପରେ ଜଗନ୍ନାଥବଲ୍ଲଭର ଦୟଣା ବାଡ଼ିକୁ ଯାଇ ସେଠି ଲଗାଯାଇଥିବା ଦୟଣା ବୃକ୍ଷ ଅନୁସନ୍ଧାନ କରନ୍ତି । ତନ୍ମଧ୍ୟରୁ ଛଅଟି ଦୟଣାବୃକ୍ଷ ଉପୁଡ଼ାଇ ଜଗନ୍ନାଥ ବଲ୍ଲଭ ମହାବୀରଙ୍କ ନିକଟସ୍ଥ ଦୟଣା ବଗିଚାରେ ରୋପଣ କରନ୍ତି । ଏଠାରେ ଭିତରଛ ମହାପାତ୍ର ରାମକୃଷ୍ଣଙ୍କ ଶ୍ରୀହସ୍ତରେ ଦୁଇଗଛ ଦୟଣା ଲାଗିକରି ଚାରି ଗଛ ଦୟଣାପତ୍ରି ନୂଆ ତାଡ଼ରେ ଖଣ୍ଡୁଆ ଘୋଡ଼ାଇ ରାମକୃଷ୍ଣଙ୍କ ସଙ୍ଗରେ ପାଲିଙ୍କିକୁ ଆଣନ୍ତି । ରାମକୃଷ୍ଣ ମହାଜନ ହସ୍ତରେ ବିଜେ ହୋଇ ଆସି ଗରୁଡ଼ଦ୍ୱାର ନିକଟରେ ଉପସ୍ଥିତ ହେଲେ ସେମାନଙ୍କ ଶ୍ରୀଅଙ୍ଗରୁ ଦୟଣା ମୈଲମ (ବାହାର) କରାଯାଏ । ଏବଂ ପତ୍ରୀ ତାକୁ ନେଇ ତାଡ଼ରେ ରଖିବା ପରେ ଠାକୁରଙ୍କ ବଡ଼ ସିଂହାର ଭୋଗ ସରିବା ପରେ ମଦନମୋହନ ଦକ୍ଷିଣିଗୃହରୁ ରତ୍ନସିଂହାସନ ବିଜେ କରନ୍ତି । ମଦନମୋହନ, ଲକ୍ଷ୍ମୀ ଓ ସରସ୍ୱତୀ ମହାପ୍ରଭୁଙ୍କ ଠାରୁ ଆଜ୍ଞାମାଳ ପାଇ ମହାଜନଙ୍କ ହସ୍ତରେ ବିଜେ ହୋଇ ଆସି ଭୋଗମଣ୍ଡପରେ ପଡ଼ିଥିବା ଖଟ ଶେଯରେ ବିଜେ କରନ୍ତି । ତଡ଼ାଉ ରଖିଥିବା ଦୟଣାବୃକ୍ଷରୁ ତିନୋଟି ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନଙ୍କ ହସ୍ତରେ ବାନ୍ଧି ଦିଅନ୍ତି ଓ ସମ୍ମୁଖରେ ଯୋଗାଣିଆ ପ୍ରଦତ୍ତ ତିନୋଟି ଚାଙ୍ଗୁଡ଼ିରେ ଅବଶିଷ୍ଟ ବୃକ୍ଷରଖାଯାଏ । ତତ୍‌ପରେ ପୂଜାପଣ୍ଡା ମଣ୍ଡଳ ଉପରେ ତିନି ଚାଙ୍ଗୁଡ଼ିକୁ ଫୁଲଚନ୍ଦନ ଓ ଚେମେଡ଼ି ପତନି ଦେଇ ରଖନ୍ତି । ଏହାପରେ ତଳିଛୁ ମହାପାତ୍ର ପଟୁଆର ହୋଇ ଘଣ୍ଟ, ଛତା ଓ କାହାଳୀ ସହ ବଲ୍ଲଭ ବଡ଼ ସିଂହାର ଭୋଗ ଶ୍ରୀଜଗନ୍ନାଥଙ୍କ ସମ୍ମୁଖକୁ ଆଣନ୍ତି । ପଞ୍ଚୋପଚାର ମଣୋହି ହେବାପରେ ମହାପ୍ରଭୁଙ୍କର ପହୁଡ଼ ହୁଏ । ପରଦିନ ଦମନକ ଚତୁର୍ଦ୍ଦଶୀ ଦିନ ଶ୍ରୀଜଗନ୍ନାଥଙ୍କୁ ଦମନକାର୍ପଣ କରାଯାଏ । ଶାସ୍ତ୍ର ମତରେ ତ୍ରୟୋଦଶୀ ସଂଯୁକ୍ତ ଚତୁର୍ଦ୍ଦଶୀ ତିଥିକୁ ଦୟଣାଲାଗିର ପ୍ରକୃଷ୍ଟ ଦିବସରୂପେ ଗ୍ରହଣ କରାଯାଏ ।

ଏହିପରି ଚୈତ୍ରମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀରେ ସୁଗନ୍ଧିଯୁକ୍ତ ଦମନକ ବା ଦୟଣାବୃକ୍ଷ ଦେବତାମାନଙ୍କୁ ବିଶେଷତଃ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରାଯାଏ । ସେଥିପାଇଁ ଉକ୍ତ ତିଥିରେ ଶ୍ରୀମନ୍ଦିରରେ ମହାପ୍ରଭୁ ନୀଳାଦ୍ରିନାଥଙ୍କର ସିଦ୍ଧିପ୍ରଦ ଅନଙ୍ଗୋତ୍ସବ ପାଳନ କରାଯାଏ ।

(ଶ୍ରୀ.ସ୍ୱ.- ପୃ. ୧୧୪, ୧୨୪, କ୍ଷେ.ସ.) ।

**ଅନଙ୍ଗ ଭୀମଦେବ(୩ୟ)**-*ଦେ.ବି.*- ଉତ୍କଳର ଗଙ୍ଗବଂଶର ବିଖ୍ୟାତ ରାଜା । ସେ ଖ୍ରୀ. ୧୧୮୯ରୁ ୧୨୨୩ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଥିଲେ ଅସାଧାରଣ ଦାନୀ ଓ ପ୍ରଜାହିତୈଷୀ । ତାଙ୍କର ରାଜତ୍ୱ କାଳରେ ଷାଠିଏଟି ମନ୍ଦିର, ଦଶଟି ସେତୁ, ଚଉରାନବେଟି ବାମ୍ଫି, କୋଡ଼ିଏଟି ପୋଖରୀ, ଏକଶହ ବାଉନଟି ଘାଟ ନିର୍ମାଣ ହୋଇଥିଲା ଓ ସେ ଅନେକ ବ୍ରାହ୍ମଣ ଶାସନ ବସାଇଥିଲେ । ଏହାଙ୍କ ସମୟରେ ଶ୍ରୀମନ୍ଦିର କାର୍ଯ୍ୟ ସମାପ୍ତ ହୋଇଥିଲା । ପୁରୀ ମନ୍ଦିର ଓ ଜଗମୋହନ ନିର୍ମାଣ ପାଇଁ ସାଢ଼େ ବାରଲକ୍ଷ ମାଢ଼ ସୁନା, ଅଢ଼େଇ ଲକ୍ଷ ମାଢ଼ ସୁନା ମୂଲ୍ୟର ରତ୍ନ ବ୍ୟୟ କରାଯାଇଥିଲା । ମନ୍ଦିରରେ ବହୁ ସେବାନୀତି ଖଞ୍ଜିଥିଲେ । ଏହାଙ୍କର ରାଜଧାନୀ ଥିଲା କଟକ ବାରବାଟୀ ଦୁର୍ଗ । ତାଙ୍କର ପ୍ରଚଳିତ ମୁଦ୍ରାରେ "ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟୋ- ତ୍କଳବର୍ଗେଶ୍ୱରାଧିରାୟ ଭୂତଭୈରବ ଦେବସାଧୁଶାସନୋତ୍କୀର୍ଣ୍ଣ ଲିଖିତ ଥିଲା । ସେ 'ଅତୁଳବଳ ପରାକ୍ରମ ସଂଗ୍ରାମେ ସହସ୍ର ବାହୁ କ୍ଷତ୍ରିୟକୁଳଧୂମକେତୁ' ଉପାଧି ଲାଭ କରିଥିଲେ । ତାଙ୍କ ରାଜତ୍ୱ କାଳରେ ଜମି ମାପ କରାଇ ରାଜସ୍ୱ ବନ୍ଦୋବସ୍ତ କରାଇଥିଲେ । ତେଇଶିଲକ୍ଷ ବାଟୀ ଭୂମି ଦାନ ଓ ଜାଗିରି ରୂପେ ଦେଇଥିଲେ । ଏହାଙ୍କର ବାର୍ଷିକ ପ୍ରାପ୍ୟ ରାଜସ୍ୱ ଅଠେଇଶି ଲକ୍ଷ ମାଢ଼ ସୁନା ଥିଲା । ଗୋବିନ୍ଦ ପାଟଯୋଷୀ ଏହାଙ୍କର ସେନାପତି ଓ ପ୍ରଧାନମନ୍ତ୍ରୀ ଥିଲେ । ଏହାଙ୍କର ରାଜ୍ୟ ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ବ୍ୟାପିଥିଲା । ଏହାଙ୍କ ପୁତ୍ର ଥିଲେ ଲାଙ୍ଗୁଳା ନରସିଂହ ଦେବ । ତାଙ୍କ ସମୟରେ ଶ୍ରୀମନ୍ଦିର ପରିସରରେ ଉତ୍ତର ପାର୍ଶ୍ୱରେ ସୁନାକୂଅ ଖୋଳା ହୋଇଥିଲା, ଯେଉଁଥିରୁ ଏକଶତ ଆଠ ଗରା ଜଳ ଆସି ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ସ୍ନାନପୂର୍ଣ୍ଣିମାରେ ସ୍ନାନମଣ୍ଡପ ଉପରେ ସ୍ନାନ କରାଯାଇଥାଏ ।

(ପୂ.ଓ.ଭା. - ପୃ. ୨୭୮) ।

**ଅନଳ**-*ସଂ.ବି.*- ଅଗ୍ନି । ନିଆଁ । ଆତ୍ମା, ବିଷ୍ଣୁ, ମୁନି ବିଶେଷ, ପିତୃ ବିଶେଷ ବୃହସ୍ପତିଙ୍କର ପଞ୍ଚାଶତମ ବର୍ଷ, କୃତ୍ତିକା ନକ୍ଷତ୍ର, ଅଷ୍ଟବସୁଙ୍କ ମଧ୍ୟରେ ଷଷ୍ଠ ବସୁ । ଭକ୍ଷଣ କରିବାରେ ଯାହାଙ୍କର କୌଣସି ବାରଣ ନାହିଁ ଏବଂ ଯେ ଦହନ କରିବାରେ ତୃପ୍ତି ଲାଭ କରନ୍ତି ।

(କ୍ରି.ଓ.ସ.- ପୃ. ୨୭, ପ୍ର.ଅ. - ପୃ. ୭୮, ଶ.ଅ. - ପୃ.୩୬, ପୂ.ଓ.ଭା. - ପୃ. ୨୯୩, ପୌ(ବ)- ପୃ.୪୯, ଶ.କ. ୧ମ - ପୃ.୪୪) ।

**ଅନନ୍ତ ଚତୁର୍ଦ୍ଦଶୀ**-*ସଂ.ବି.*- ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ । ଶ୍ରୀମନ୍ଦିରରେ ଏହି ଦିନ ମୁକ୍ତିମଣ୍ଡପ ନିକଟସ୍ଥ ଅନନ୍ତଙ୍କ ପାଖରେ ଭୋଗ ଲାଗେ ଓ ଅନନ୍ତବ୍ରତ କଥା ପାଠ କରାଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୯୭, ପୂ.ଓ.ଭା. - ପୃ. ୨୮୩, ଶ.କ. ୧ମ - ପୃ. ୪୧/୪୨) ।

**ଅନନ୍ତ ବାସୁଦେବ**-*ସଂ.ବି.*- ଭୁବନେଶ୍ୱରର ବିନ୍ଦୁସାଗର ପୂର୍ବ ଦିଗରେ ଥିବା ମନ୍ଦିରରେ ପୂଜିତ ଶିଳାନିର୍ମିତ ବିଷ୍ଣୁମୂର୍ତ୍ତି । ଶ୍ରୀମନ୍ଦିରର ଭିତର କୂର୍ମ ବେଢ଼ାର ଦକ୍ଷିଣ ପଟରେ ଥିବା ଅନନ୍ତ ବାସୁଦେବ ବିଗ୍ରହ । ଏଠାରେ ଦୈନିକ ବଲ୍ଲଭ ଭୋଗ ହୁଏ । ଏଥିପାଇଁ କୋଠରୁ ଭୋଗ ଖଞ୍ଜା ଅଛି । ଭାଦ୍ରବ ମାସ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ଏଠାରେ ଅନନ୍ତଙ୍କ ଜନ୍ମୋତ୍ସବ ଓ ଅନନ୍ତ ବ୍ରତ ପାଳନ କରାଯାଏ । ଏହି ଦକ୍ଷିଣମୁଖୀ ମନ୍ଦିର ଭିତରେ ଶୀଳା ନିର୍ମିତ ଅନନ୍ତ ବା ଶେଷଦେବଙ୍କ ବିଗ୍ରହ ସହିତ ଦଶ ଦିଗପାଳମାନେ ମଧ୍ୟ ପୂଜା ପାଆନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୪୧, ପୂ.ଓ.ଭା. - ପୃ. ୨୮୩) ।

**ଅନନ୍ତ ମହାରଣା**-ଦେ.ବି.- ପୁରାଣରେ ବର୍ଣ୍ଣିତ ଅଛି ଯେ, ରାଜା ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ଦାରୁ ଲାଭ କଲେ, ମୂର୍ତ୍ତି ନିର୍ମାଣ ନିମନ୍ତେ ବଢ଼େଇ ଆବଶ୍ୟକ ପଡ଼ିଲେ । ଏହି ସମୟରେ ଏକ ବୃଦ୍ଧ ବଢ଼େଇ ରୂପେ ଦେବଶିଳ୍ପୀ ବିଶ୍ୱକର୍ମା ଅନନ୍ତ ମହାରଣା ନାମରେ ରାଜାଙ୍କ ସହ ଚୁକ୍ତି କରି ମୂର୍ତ୍ତି ନିର୍ମାଣ ଦାୟିତ୍ୱ ନେଲେ ଯେ ଏକୋଇଶି ଦିନ ଏକ ଅବରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ ରହି ସେ ମୂର୍ତ୍ତି ଗଢ଼ିବେ ମାତ୍ର ଏକୋଇଶି ଦିନ ପୂର୍ଣ୍ଣ ହେବା ପୂର୍ବରୁ ଦ୍ୱାର କେହି ଖୋଲିବେ ନାହିଁ । ପନ୍ଦର ଦିନ ଅତିକ୍ରାନ୍ତ ହେବା ପରେ ପ୍ରକୋଷ୍ଠ ମଧ୍ୟରେ ଆଉ ନିହାଣ ବାରିଶିର ଠୁକୁ ଠୁକୁ ଶବ୍ଦ ଶୁଣାଗଲା ନାହିଁ । ଏଣୁ ରାଣୀ ଗୁଣ୍ଡିଚା ଦେବୀ ଅତ୍ୟନ୍ତ ମର୍ମାହତ ହୋଇ ରାଜାଙ୍କୁ ଅନୁରୋଧ କରନ୍ତେ ରୁଦ୍ଧ ଦ୍ୱାର ଉନ୍ମୁକ୍ତ ହେଲା ଓ ଦେଖାଗଲା ଯେ ଅର୍ଦ୍ଧନିର୍ମିତ ମୂର୍ତ୍ତି ଓ ଅନନ୍ତ ମହାରଣାଙ୍କର ଅନ୍ତର୍ଦ୍ଧାନ । ଅର୍ଦ୍ଧନିର୍ମିତ ମୂର୍ତ୍ତି ଦେଖି ରାଜାଙ୍କ ମନରେ ଗଭୀର ଦୁଃଖ ଜାତ ହେବାରୁ ତାଙ୍କୁ ଶୂନ୍ୟବାଣୀ ହେଲା ଯେ, "ତୁମେ ଚିନ୍ତା ପରିହାର କରି ଅର୍ଦ୍ଧନିର୍ମିତ ମୂର୍ତ୍ତିକୁ ଚିତ୍ରଣ କରାଇ ଯଜ୍ଞବେଦୀରୁ ନେଇ ଶ୍ରୀମନ୍ଦିରର ରତ୍ନବେଦୀରେ ପ୍ରତିଷ୍ଠା କରାଅ" ।
(କ୍ଷେ.ସ.) ।

**ଅନନ୍ତରୂପୀ**-ସଂ.ବି.- ଅନନ୍ତଶରୀର, ସେ ଅନନ୍ତରୂପୀ ଭଗବାନ ବିଷ୍ଣୁ । ଶେଷନାଗ ବାସୁକୀ । ନାଗମାନଙ୍କ ମଧ୍ୟରେ ପ୍ରଧାନ । ବିଷ୍ଣୁଙ୍କର ତାମସିକ ରୂପ । ବିଷ୍ଣୁ ପୁରାଣ ଅନୁଯାୟୀ ବଳରାମଙ୍କର ଅବତାର, ମହାଭାରତରେ ଏହାଙ୍କୁ ଶେଷନାଗ ରୂପେ ବର୍ଣ୍ଣନା କରାଯାଇଛି ।
(ଶ.କ. ୧ମ - ପୃ.୪୧, ପୌ(ବ)-୧ମ, ପୃ. ୪୮, କ୍ର.ଓ.ଶ., ପୃ.୨୬) ।

**ଅନ୍ତର୍ବେଦୀ**-ସଂ.ବି.- ଦୁଇଟି ନଦୀର ମଧ୍ୟବର୍ତ୍ତୀ ସ୍ଥାନ । ପ୍ରୟାଗ ଠାରୁ ହରିଦ୍ୱାର ପର୍ଯ୍ୟନ୍ତ ଗଙ୍ଗା ଯମୁନାର ମଧ୍ୟବର୍ତ୍ତୀ ସ୍ଥାନ । ଓଡ଼ିଶାର ପ୍ରାଚୀ ଓ ମଣିକର୍ଣ୍ଣିକା, କୁଶଭଦ୍ରାର ଏକ ଶାଖାର ମଧ୍ୟବର୍ତ୍ତୀ ଅଞ୍ଚଳ । ଶେଷୋକ୍ତ ଅନ୍ତର୍ବେଦୀରେ ଏକ ଅନ୍ତର୍ବେଦୀ ମଠ ରହିଛି । ଯଜ୍ଞାଦି ନିମନ୍ତେ ଅନ୍ତର୍ବେଦୀ ପ୍ରକୃଷ୍ଟ କ୍ଷେତ୍ର । ଶ୍ରୀକ୍ଷେତ୍ରରେ ସମୁଦ୍ର ତଟ ଦେଶରୁ କଳ୍ପବଟ ପର୍ଯ୍ୟନ୍ତ ସ୍ଥାନକୁ ଅନ୍ତର୍ବେଦୀ କୁହାଯାଇଛି । କଳ୍ପବଟ ନିକଟସ୍ଥ ରୋହିଣୀ କୁଣ୍ଡର ଜଳକୁ ଦୃଷ୍ଟିରେ ରଖି ଏହି ଭଳି ଏକ ଆରୋପ କରାଯାଇଥିବା ସମ୍ଭବ । ଶ୍ରୀମନ୍ଦିରର ଗର୍ଭଗୃହ ସ୍ଥିତ ବେଦୀ ଅନ୍ତର୍ବେଦୀ । ପୁରୁଷୋତ୍ତମ କ୍ଷେତ୍ର ବିଷ୍ଣୁଙ୍କ କଳେବର ହେଲେ ତନ୍ମଧ୍ୟରେ ଅନ୍ତର୍ବେଦୀ ହୃଦୟ ସଦୃଶ ବୋଲି କୁହାଯାଇଛି ।
(ପୂ.ଓ.ଭା. - ପୃ. ୩୫୦, ଶ.କ. - ପୃ. ୫୪, ପୌ(ବ) ୧ମ - ପୃ.୫୬) ।

**ଅନ୍ତରୀକ୍ଷମଣ୍ଡା**-ଦେ.ବି.- ଏକ ପ୍ରକାର ପିଠାଭୋଗ । ଗୁଡ ଓ ମୁଗପୁର ଦିଆଯାଇଥିବା ପିଠା । ଶ୍ରୀମନ୍ଦିରର ପର୍ବପର୍ବାଣି ଓ ମକର ଭୋଗରେ ଠାକୁରଙ୍କୁ ଲାଗି ହୁଏ ।
(ଶ୍ରୀ.ସ୍ୱ.- ପୃ. ୧୭୫) ।

**ଅନ୍ତର୍ଯାମୀ**-ସଂ.ବି.- ଯେ ଅନ୍ତର ବା ମନ କଥା ସବୁ ଜାଣନ୍ତି, ଭଗବାନ ଶ୍ରୀଜଗନ୍ନାଥ ।
(ପୂ.ଓ.ଭା. - ପୃ. ୩୫୦, କ୍ର.ଓ.ଶ. ୧ମ - ପୃ. ୩୫, ପ୍ର.ଅ. ୧ମ - ପୃ.୧୦୪, ଶ.କ. ୧ମ - ପୃ. ୫୪) ।

**ଅନ୍ଧାରିବିଜେ**-ଦେ.ବି.- ରାଜା ବା ରାଜପୁରୁଷଙ୍କର ଗୋପନରେ ରାଜ୍ୟର ପ୍ରକୃତ ଅବସ୍ଥା ଅନୁସନ୍ଧାନ ପାଇଁ ରାତିରେ ଛଦ୍ମବେଶରେ ଭ୍ରମଣ କରିବା । ଏହାଦ୍ୱାରା ସେମାନେ ଗୁପ୍ତରେ ଅନେକ ତଥ୍ୟ ସଂଗ୍ରହ କରିଥା'ନ୍ତି ।
(କ୍ର.ଓ.ଶ.- ପୃ. ୩୦, ପୂ.ଓ.ଭା. - ପୃ. ୩୫୮, ଶ.ଅ. - ପୃ. ୫୧, ପ୍ର.ଅ. ୧ମ- ପୃ.୧୦୭) ।

**ଅନ୍ନକୁଡୁଆ**-ଦେ.ବି.- ପୁରୀ ଜଗନ୍ନାଥଙ୍କ ଅନ୍ନ ରାନ୍ଧିବା ଓ ରଖିବା ପାଇଁ ବ୍ୟବହୃତ ମାଟି କୁଡୁଆ । ମାଟିହାଣ୍ଡିର ଆକାର ଅନୁସାରେ ଭିନ୍ନଭିନ୍ନ, ନାମଅଛି । ବଡ ପାତ୍ରକୁ 'ହାଣ୍ଡି'ଓ ଛୋଟ ପାତ୍ରକୁ 'କୁଡୁଆ' କୁହାଯାଏ ।
(ପୂ.ଓ.ଭା. - ପୃ. ୩୫୯, ପୁ.ବୋ. - ୧୬୭) ।

**ଅନ୍ନକ୍ଷେତ୍ର**-*ସଂ.ବି.*- ଶ୍ରୀକ୍ଷେତ୍ର । ଯେଉଁ ସ୍ଥାନରେ ବହୁ ପରିମାଣରେ ସିଦ୍ଧ ତଣ୍ଡୁଳ ରନ୍ଧନ ଓ ଭୋଗ ହୋଇଥାଏ । ଯେଉଁ କ୍ଷେତ୍ର ବା ତୀର୍ଥରେ ଦେବଦେବୀଙ୍କ ସିଦ୍ଧ ତଣ୍ଡୁଳ ଭୋଗ ଲାଗିଲା ପରେ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତେ ସେବନ କରନ୍ତି ।
(ପୂ.ଓ.ଭା.- ପୃ. ୩୫୯) ।

**ଅନ୍ନଛତ୍ର**-*ସଂ.ବି.*- ଅନ୍ନଦାନ କରାଯିବା ସ୍ଥାନ । ସର୍ବସାଧାରଣଙ୍କୁ ଅନ୍ନ ବିତରଣ ।
(ପ୍ରଅ. ୧ମ- ପୃ ୧୦୯, ପୂଓ.ଭା.- ପୃ ୩୫୯) ।

**ଅନ୍ନପୂର୍ଣ୍ଣା**-*ସଂ.ବି.*- ଅନ୍ନଦ୍ୱାରା ତୃପ୍ତିକାରିଣୀ, ବିଶ୍ୱେଶ୍ୱରୀ । ପାର୍ବତୀଙ୍କ ଅବତାର ବିଶେଷ । କିଆ ଜାତୀୟ ଏକ ପ୍ରକାର ଅତି କ୍ଷୁଦ୍ର ନିଷ୍କଣ୍ଟକ ଗୁଳ୍ମ । ଏହାର ପତ୍ର ସୁବାସଯୁକ୍ତ । ଅନ୍ନ ମଧ୍ୟରେ ଏ ପତ୍ରକୁ କିଛିକାଳ ପୋତି ରଖିଲେ ଅନ୍ନ ସୁବାସଯୁକ୍ତ ହୁଏ । ଚୈତ୍ରଶୁକ୍ଳ ଅଷ୍ଟମୀ ତିଥିରେ ଅନ୍ନପୂର୍ଣ୍ଣାଙ୍କର ପୂଜା କରାଯାଏ । ଦକ୍ଷିଣାମୂର୍ତ୍ତି ସଂହିତାନୁସାରେ ଏ ମୂର୍ତ୍ତି ଚତୁର୍ଭୁଜା । ପଦ୍ମ, ଅଭୟ, ଅଙ୍କୁଶ ଓ ବରଦ ଧରି ହାତରେ ଶୋଭିତ ।
(ପୂ.ଓ.ଭା.- ପୃ. ୩୬୦, ଶ.କ. ୧ମ - ପୃ. ୫୮, ପୌ(ବ.) ୧ମ - ପୃ. ୫୯) ।

**ଅନ୍ନବ୍ୟଞ୍ଜନ** -*ସଂ.ବି.*- ଅନ୍ନ ଓ ବ୍ୟଞ୍ଜନ, ଭାତ ତିଅଣ । କ୍ଷୁଧା ଶାନ୍ତ କରିବା ନିମନ୍ତେ ଅନ୍ନବ୍ୟଞ୍ଜନାଦି ବିଭିନ୍ନ ଦ୍ରବ୍ୟର ଭୋଜନ ।
(ପୂ.ଓ.ଭା. - ପୃ.୩୬୧, କୃ.ଓ.ଶ. - ପୃ. ୩୭) ।

**ଅପରାଜିତା**-ସଂ.ବି.- ଧଳା ଓ ନୀଳ ରଙ୍ଗର ପୁଷ୍ପଲତା ବିଶେଷ, ଦୁର୍ଗା, ଗୌରୀ, ଦୂର୍ବା, ଅଶନପର୍ଣ୍ଣିଗୁଳ୍ମ ବା ଜୟନ୍ତଗଛ, ବିଷ୍ଣୁକ୍ରାନ୍ତା, ଗିରିକନିକା । ଅପରାଜିତା ଏକ ପୁଷ୍ପ ବିଶେଷ । ଶ୍ରୀଜୀଉଙ୍କର ଏକ ଅଳଙ୍କାର ବିଶେଷ । ଆଶ୍ୱିନ ମାସ ଶୁକ୍ଳ ଦଶମୀକୁ ଅପରାଜିତା ଦଶମୀ କୁହାଯାଏ । ଦେବୀ ବିମଳାଙ୍କଠାରେ ଏହି ଫୁଲ ଅର୍ପଣ କରାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୮, ପୌ.(ବ.) ୧ମ - ପୃ.୬୦, ପୂ.ଓ.ଭା.- ପୃ.୩୭୭, ପ୍ର.ଅ. ୧ମ - ପୃ. ୧୧୫, କୃ.ଓ.ଶ. - ପୃ. ୪୦, ପୌ(ବ) ୧ମ - ପୃ.୬୦) ।

**ଅପସର**-*ଦେ.ବି.*- ପିଠି ତକିଆ, ଶ୍ରୀ ଜୀଉଙ୍କ ପୃଷ୍ଠଭାଗରେ ଦିଆଯାଉଥିବା ତକିଆ ।
(ପ୍ର.ଅ. - ପୃ. ୧୧୮) ।

**ଅପହ୍ନୁତ**-*ଦେ.ବି.*- ଜାଗ୍ରତ, ଉନ୍ନିଦ୍ର, ନିଦ୍ରାରୁ ଜାଗରିତ, ନିଦ୍ରାରହିତ ଦେବତାଙ୍କ ପହଡ଼ ବା ଶୟନ ସମାପ୍ତି ନହୋଇ ଉଜାଗର ରହିବା ।
(ପୂ.ଓ.ଭା. - ପୃ. ୩୮୪, ଶ.ଅ. - ପୃ. ୫୮, କୃ.ଓ.ଶ. - ପୃ.୪୧, ପ୍ର.ଅ. ୧ମ - ପୃ.୧୧୮) ।

**ଅର୍ପଣ**-*ସଂ.ବି.*- ସ୍ଥାପନ, ନ୍ୟସ୍ତକରଣ, ଯାଚିବା, ପ୍ରଦାନ, ସମର୍ପଣ କରିବା ।
(ପୂ.ଓ.ଭା. - ପୃ.୫୮୫) ।

**ଅର୍ପଣ ଗୋପାଳ**-*ଦେ.ବି.*- ଶ୍ରୀମନ୍ଦିରର ବାହାର ବେଢ଼ା ଦକ୍ଷିଣ ଦ୍ୱାରପାଖରେ ଥିବା ଠାକୁର । ଏହାଙ୍କ ପାଖରେ ଦୈନିକ ବଲ୍ଲଭ ଭୋଗ ହୁଏ ।

**ଅପାଙ୍ଗଦର୍ଶନ**-*ସଂ.ବି.*- କଟାକ୍ଷ, ପରଦୃଷ୍ଟି, କଣେଇ କରି ଚାହିଁବା, ବାଙ୍କ ଚାହାଣୀ । କଟାକ୍ଷ ଚାହେଣୀ ।
(ଶ.କ. ୧ମ - ପୃ.୬୭, ପୂ.ଓ.ଭା. - ପୃ.୩୮) ।

**ଅପାମାଲୁ**-*ଦେ.ବି.*- ପିଠା ବିଶେଷ- ମିଷ୍ଟାନ୍ନ ବିଶେଷ । ଅମାଲୁ ।
(ପ୍ର. ଅ. ୧ମ, କୃ.ଓ.ଶ. - ପୃ. ୪୧, ପୂ.ଓ.ଭା. - ପୃ. ୩୭୫) ।

**ଅପୌରୁଷେୟ**-*ସଂ.ବି.*- ଈଶ୍ୱରୀୟ, ଅତିମାନସ, ଅଲୌକିକ, ଅସାଧାରଣ, ଅକୃତ୍ରିମ ।
(ପୂ.ଓ.ଭା. - ପୃ.୩୯୭, ପ୍ର.ଅ. - ପୃ.୧୨୩) ।

**ଅବକାଶ**-*ସଂ.ବି.*- ଶ୍ରୀମନ୍ଦିରରେ ବିଗ୍ରହମାନଙ୍କର ଦନ୍ତ ମାର୍ଜନ ଓ ସ୍ନାନବିଧି । ପୂଜାବିଧି ସରିବା ପରେ ଶ୍ରୀଜୀଉମାନଙ୍କର ବେଶ ପରିବର୍ତ୍ତନକୁ ମଧ୍ୟ ଅବକାଶ କୁହାଯାଏ । ଶ୍ରୀମନ୍ଦିର ଦ୍ୱାର ଖୋଲିବା ସଙ୍ଗେ ସଙ୍ଗେ ଅତି ପ୍ରତ୍ୟୁଷରେ ମଇଲମ ଓ ତପରେ ପ୍ରଥମ ଅବକାଶ ପ୍ରାୟ ସକାଳ ୬.୩୦ ମଧ୍ୟରେ ହୋଇଥାଏ । ଏହି ନୀତି ସକାଶେ ପିଢ଼ା, ପାଣି, ଖଟୁଳି, ଦାନ୍ତକାଠି ଜିଭଛେଲା, ତିନିଗୋଟି ବଟା, ଫୁଲ ଓ ତୁଳସୀ, ଚନ୍ଦନ, ଅଁଳା, କର୍ପୂର, ଦର୍ପଣ, ଗରା, ଓ ହାଣ୍ଡି ଉପକରଣ ଆବଶ୍ୟକ ।

ପାଣିଆପଟ ପାଣି ଦିଅନ୍ତି । ପିଢ଼ା, ଓ ଅନ୍ୟାନ୍ୟ ବାସନ ଦିଅଁଙ୍କ ଭଣ୍ଡାରରୁ ସୁଆରବଡ଼ୁ ଆଣି ଯୋଗାନ୍ତି । ଖଟୁଳିସେବକ ଖଟୁଳି ଆଣେ, ଦର୍ପଣିଆ ଦର୍ପଣ ଯୋଗାଏ । ଅଅଁଳା ଘଟୁଆରି ପ୍ରତିଦିନ ଅଅଁଳାଦିଏ । କର୍ପୂର ଭଣ୍ଡାରମେକାପ ଜିମାରେ ଥାଏ । ଚନ୍ଦନ ମୁଖ ପଖାଳ ପୁଷ୍ପାଳକ ଯୋଗାଏ । ମୁତୁରୀ ଦାନ୍ତ କାଠି ମୁଖପଖାଳ ପ୍ରତିହାରୀ ଦିଏ ।

ନିମ୍ନଲିଖିତ ସେବକମାନଙ୍କ ଦ୍ୱାରା ଏହି ଅବକାଶ ନୀତି ସମ୍ପନ୍ନ ହୁଏ - (୧) ପୁଷ୍ପାଳକ (୨) ସୁଆର ବଡ଼ୁ (୩) ପାଣିଆପଟ (୪) ଖଟୁଳି ସେବକ (୫) ଦର୍ପଣିଆ, (୬) ମୁଖ ପଖାଳ ପ୍ରତିହାରୀ, (୭) ମୁଖ ପଖାଳ ପୁଷ୍ପାଳକ (୮) ଅଅଁଳା ଘଟୁଆରୀ (୯) ଭଣ୍ଡାର ମେକାପ (୧୦) ମହାଭୋଇ (୧୧) ଜ୍ୟୋତିଷ ଖୁରି ନାଏକ ।

ଠାକୁରଙ୍କର ମଇଲମ ପରେ ପାଣିଆପଟ ଏକଗରା ପାଣି ଆଣି ଦିଏ । ସୁଆର ବଡ଼ୁ ଉକ୍ତ ପାଣି ଭିତର ପୋଖରୀଆରେ ପକାଇ ଧୂଆପହଁରା କରେ, ଏହାକୁ ଅବକାଶ ପାଇଁ ପାଣି ପଡ଼ିଲା କହନ୍ତି । ତା'ପରେ ସୁଆର ବଡ଼ୁ ତିନି ଦିଅଁଙ୍କ ସାମନାରେ ସିଂହାସନ ତଳେ ଓ ପୋଖରୀଆର ପ୍ରାୟ ମଧ ଭାଗରେ ତିନି ଗୋଟି କାଠ ପିଢ଼ା ପକାଇ ତହିଁରେ ଖଟୁଳି ରଖି ତିନି ଗୋଟି ବଟା ଓ ତିନି ଗୋଟି ଥାଳି ସଜାଡ଼ି, ତହିଁରେ ଫୁଲ ଚନ୍ଦନ, ଅଅଁଳା ରଖାଯାଏ । ତିନି ଖଣ୍ଡ ଦାନ୍ତକାଠି ଓ ଜିଭ ଛେଲା ରଖନ୍ତି । ଗରାବଡ଼ୁ ତିନି ଗୋଟି ରୁପାଝରି ତିନି ପିଢ଼ା ପାଖରେ ରଖେ । ଦର୍ପଣିଆ ତିନି ଗୋଟି ଦର୍ପଣ ରଖେ । ପାଣିଆ ପଟ ତିନି ଗୋଟି ପିଢ଼ା ପାଖରେ ତିନି ଗରା ପାଣି ଓ ଶେଷ ଚତୁର୍ଥ ଗରା ପାଣି ମଧ ରଖେ । ଏହି ଚତୁର୍ଥ ଗରା ପାଣିରେ କର୍ପୂର ଗୋଳା ହୁଏ । ମହାଭୋଇ ଦେଇଥିବା ଦହି ସ୍ନାନ ପାଣିରେ ମିଶା ହୁଏ । ଏହିପରି ଭାବରେ ପୂଜାପାଠ କରି ମୁଖ ପଖାଳ ପଢ଼ିହାରୀ ମଇଲମ କରିଥିବା ତିନିଜଣ ପୁଷ୍ପାଳକଙ୍କୁ ପୂଜାରେ ବସିବାକୁ ଡାକନ୍ତି । ତିନି ଠାକୁରଙ୍କୁ ଦାନ୍ତ କାଠି ଓ ଜିଭଛେଲା ଦୂରରୁ ଦେଖାଇ ଦାନ୍ତ ଘସିଲା ଭଳି କରନ୍ତି ଓ ଜିଭ ଛେଲାନ୍ତି । ଏହାପରେ କର୍ପୂର ଦହି, ଅଅଁଳା ଓ ଚନ୍ଦନ ମିଶ୍ରିତ ଜଳ ଦର୍ପଣ ମାନଙ୍କ ଉପରେ ଢ଼ାଳି ଠାକୁରମାନଙ୍କୁ ସ୍ନାନ କରାନ୍ତି । ଏହି ନୀତି ହେଉଥିବା ସମୟରେ ମନ୍ଦିରରେ ଜ୍ୟୋତିଷ ଖୁରି ନାଏକ ଠିଆ ହୋଇ ଠାକୁର ମାନଙ୍କର ସେହିଦିନର ନକ୍ଷତ୍ର ବିଚାର ଇତ୍ୟାଦି ଶୁଣାଏ । ଯଦି ସେହିଦିନ ଜନ୍ମ ନକ୍ଷତ୍ର ଥାଏ ସେ ତଡାଉ କରଣକୁ କୁହେ ଓ ମଧାହ୍ନ ଧୂପ ପରେ ନକ୍ଷତ୍ର ବନ୍ଦାପନା ହୁଏ । ଠାକୁରମାନଙ୍କର ଅବକାଶ ବଢ଼ିଲେ ଗରୁଡ଼ ସେବକ ପାଳିଆ ଚୁନରା ପାଣି ଆଣି ଗରୁଡ଼ଙ୍କୁ ସ୍ନାନ କରାଏ। ଏହିନୀତି ହେଉଥିବା ବେଳେ ସର୍ବସାଧାରଣ ଭିତରକୁ ଯିବାକୁ ନିଷେଧ, କିନ୍ତୁ ଭିତରେ ଅର୍ଗଳିଠାରେ ରହି ଦର୍ଶନ କରିପାରିବେ । ଭିତରକୁ ଯାଇ ଦର୍ଶନ କରିବାକୁ ଇଚ୍ଛା କଲେ ପରିମାଣିକ ଦେଇ ଯାଇପାରିବେ ।

ଶ୍ରୀମନ୍ଦିରରେ ତିନିଧୂପ ପାଞ୍ଚ ଅବକାଶ ହେବା ବିଧି ଅଛି । ପ୍ରଥମ ଅବକାଶ - ଅତି ପ୍ରତ୍ୟୁଷରେ ମଙ୍ଗଳ ଆଳତି ହେବାପରେ ପ୍ରଭାତ ଅବକାଶ । ଏ ସମୟରେ ଦିଅଁଙ୍କର ଦାନ୍ତ ଘଷା, ସ୍ନାନ ଓ ବେଶଲାଗି ନୀତି ବଢ଼ିଥାଏ । ଦ୍ୱିତୀୟ ଅବକାଶ - ସକାଳ ଧୂପ ପରେ ବେଶଲାଗି ହୋଇ ନୂଆ ବେଶ ପରିଧାନ ବେଳେ । ତୃତୀୟ ଅବକାଶ -ମଧାହ୍ନ ଧୂପ ବା ଦି' ପ୍ରହର ଧୂପ ପରେ ବେଶ ଉଲାଗି ହୋଇ ନୂଆ ବେଶ ପରିବର୍ତ୍ତନ ବେଳେ । ଚତୁର୍ଥ ଅବକାଶ - ସନ୍ଧ୍ୟା ଆଳତୀ ପରେ ବେଶ ପରିବର୍ତ୍ତନ ସମୟରେ । ପଞ୍ଚମ ଅବକାଶ- ସଞ୍ଜ ଧୂପ ପରେ ବେଶ ପରିବର୍ତ୍ତନ ବା ବଡ଼ ସିଂହାର ବେଶ ହେବା ସମୟରେ । ତାହାପରେ ବଡ଼ ସିଂହାର ଭୋଗ ନୈବେଦ୍ୟ ଅର୍ପଣ, ପରେ ରାତ୍ରି ପହଡ଼ । ଦିନରେ ଦ୍ୱିତୀୟ ଧୂପ ପରେ ଓ ରାତିରେ ବଡ଼ ସିଂହାର ଭୋଗ ପରେ ଶ୍ରୀଜୀଉଙ୍କ ପହଡ଼ ବା ନିଦ୍ରା ହୁଏ ।

ସେହି ସମୟରେ ଯାତ୍ରୀମାନେ ଶ୍ରୀଜୀଉଙ୍କୁ ଦର୍ଶନ କରି ପାରନ୍ତି ନାହିଁ । ଅବକାଶ ସମୟରେ କେବଳ ଶ୍ରୀଜଗନ୍ନାଥଙ୍କ ଶ୍ରୀ ଅଙ୍ଗ ସେବକ ଛଡ଼ା ଅନ୍ୟ କେହି ଶ୍ରୀ ଜଗନ୍ନାଥଙ୍କ ଛାମୁକୁ ଯାଇ ପାରନ୍ତି ନାହିଁ ଓ ଏହି ସମୟରେ ଦେଉଳର ଭିତର ଦ୍ୱାର ବନ୍ଦ ରହେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩, ଶ.କ. ୧ମ - ପୃ. ୧୨୨, ମା.ପା. - ପୃ.୧୫, ପୂ.ଓ.ଭା. - ପୃ. ୪୧୫, ପୁ.ବୋ. - ପୃ. ୧୫୨, କ୍ର.ଓ.ଶ. - ପୃ. ୪୪) ।

**ଅବକାଶ ପର ମଇଲମ**-ଦେ.ବି.- ବିଗ୍ରହଙ୍କ ଦେହରୁ ଟଡପ ଉତରାୟ କଢ଼ାଯିବା । ଶ୍ରୀମନ୍ଦିରରେ ଏହି ନୀତି ଶ୍ରୀଜୀଉଙ୍କ ଅବକାଶ ନୀତି ପରେ କରାଯାଏ । ଭଣ୍ଡାର ଘରୁ ଚାଙ୍ଗଡ଼ା ମେକାପ ଠାକୁରଙ୍କ ପାଇଁ ବାରଲାଗି ପାଟ ଓ ଲୁଗା ଆଣନ୍ତି । ତିନି ଜଣ ପୁଷ୍ପାଳକ ସବୁ ଠାକୁରଙ୍କ ଲୁଗା ବଦଳାନ୍ତି । ପୂଜା ନ ଥିବା ସମୟ ଅର୍ଥାତ୍ ମଇଲମ, ତା'ପରେ ବସ୍ତ୍ରାଦି ଦ୍ୱାରା ବେଶଭୂଷା କରାଯିବା ସମୟକୁ ଅବକାଶ କୁହାଯାଏ । ବେଶ ଅଳଙ୍କାର, ମାଳଚୂଳ ଆଦି କଢ଼ା ଯିବା ବା ଉଲାଗି ହେବା 'ମଇଲମ' ଅଟେ ।

ସ୍ୱତ୍ୱଲିପି ଅନୁଯାୟୀ ଏହି ନୀତି ସକାଳ ଅବକାଶ ପରେ ନିର୍ଦ୍ଧାରିତ ସମୟ ପୂର୍ବାହ୍ନ ଛ'ଟା ପଇଁଚାଳିଶି ମିନିଟ୍ । ବାରଲାଗି ଲୁଗା ଓ ରାଶିତେଲ ଏହି ନୀତି ସକାଶେ ଆବଶ୍ୟକ । ମନ୍ଦିର ପରିଚାଳନା ତରଫରୁ ଭଣ୍ଡାରରୁ ଚାଙ୍ଗଡ଼ା ମେକାପ ଜିମାରେ ବାର ଲାଗି ଲୁଗା ଦିଆଯାଏ ଓ ରାଶିତେଲ ଅଖଣ୍ଡ ମେକାପ ଜିମାରେ ଦିଆଯାଏ । ଏମାନେ ଠାକୁରଙ୍କ ନୀତି ବେଳେ ଏହା ଯୋଗାଇ ଥାଆନ୍ତି । ନିମ୍ନ ଲିଖିତ ସେବକମାନଙ୍କ ଦ୍ୱାରା ଏହି ନୀତି ସମ୍ପନ୍ନ ହୁଏ । (୧)ପୁଷ୍ପାଳକ (୨) ଚାଙ୍ଗଡ଼ା ମେକାପ (୩) ଅଖଣ୍ଡ ମେକାପ (୪) ଧୋବା (୫) ସୁଆର ବଡୁ । ଚାଙ୍ଗଡ଼ା ମେକାପ ବାରଲାଗି ଖଣ୍ଟୁଆ ଆଣେ ଓ ଅବକାଶ ପୂଜାରେ ବସିଥିବା ତିନ ଜଣ ପୁଷ୍ପାଳକ ଶ୍ରୀଜଗନ୍ନାଥ, ଶ୍ରୀ ବଳଭଦ୍ର, ଶ୍ରୀ ସୁଭଦ୍ରା ଦେବୀ, ଶ୍ରୀମାଧବ, ଶ୍ରୀଲକ୍ଷ୍ମୀ, ଶ୍ରୀ ସରସ୍ୱତୀଙ୍କ ଲୁଗା ବଦଳାନ୍ତି । ଅବକାଶ ଲୁଗାଛଡ଼ା ଅନ୍ୟ ସବୁ ଲୁଗା ସାମୟିକ ଧୋବା ଘରକୁ ସଫା ହେବା ନିମନ୍ତେ ଯାଏ । ଅବକାଶ ପରେ ମଇଲମ ସମୟରେ ଅଖଣ୍ଡ ମେକାପ ଅଖଣ୍ଡବଇଠା ବସାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୪) ।

**ଅବକାଶପାଇଁ ପାଣିପଡ଼ିବା**-ଦେ.କ୍ରି.- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ମଇଲମ ପରେ ପାଣିଆପଟ ଏକଗରା ପାଣି ଆଣିଦିଏ । ସୁଆର ବଡୁ ଉକ୍ତ ପାଣିକୁ ଭିତର ପୋଖରୀଆରେ ପକାଇ ଧୂଆ ପହଁରା କରେ । ଏହାକୁ ଅବକାଶ ପାଇଁ ପାଣି ପଡ଼ିବା କହନ୍ତି ।
(ଶ୍ରୀ.ସ୍ୱ. ପୃ. ୧୩ ) ।

**ଅବକାଶ ଦହି**-ଦେ.ବି.-ଅବକାଶ ସମୟରେ ଠାକୁରଙ୍କ ସ୍ନାନ ନିମନ୍ତେ ବ୍ୟବହୃତ ହେଉଥିବା ଦହି ।
(ଶ୍ରୀ.ସ୍ୱ. - ପୃ. ୧୩) ।

**ଅବଟା**-ଦେ.ବି.- ଯାହା ବଟା ହୁଏ ନାହିଁ । ଶ୍ରୀଜୀଉଙ୍କ ମହାପ୍ରସାଦରେ ଅବଟା ମସଲା ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ. ୪୨୩) ।

**ଅବଢ଼ା**-ଦେ.ବିଶେ- ଯେଉଁ ଖାଦ୍ୟ ବଢ଼ା ହୁଏ ନାହିଁ । ସାଧାରଣତଃ ଲୋକେ ଅନ୍ନକୁ ରୋଷ ହାଣ୍ଡିରୁ ପାତ୍ର ଆଦିରେ ବାଢ଼ି ଭୋଜନ କରନ୍ତି । ମାତ୍ର ଶ୍ରୀ ଜଗନ୍ନାଥଙ୍କ ମହାପ୍ରସାଦକୁ ସେହି କୁଡୁଆରେ ବା ଛେଲୁଆରେ ଅତି ତୃପ୍ତିରେ ଭକ୍ତମାନେ ଭୋଜନ କରୁଥିବାରୁ ଏହାକୁ 'ଅବଢ଼ା' କୁହାଯାଏ । ଲୋକେ ଅବଢ଼ାକୁ ସାକ୍ଷୀରଖି, ହାତରେ ଦେଇ ଅନ୍ୟ ସହ ବନ୍ଧୁତା ସ୍ଥାପନ କରାଯାଇଥିବା ବ୍ୟକ୍ତି ବିଶେଷକୁ 'ଅବଢ଼ା' ନାମରେ ଡାକନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଭୋଗ ରୂପେ ଦିଆଯାଉଥିବା ଅନ୍ନ ବା ମହାପ୍ରସାଦ ।
(ପୂ.ଓ.ଭା. - ପୃ.୪୨୪, ପ୍ର.ଅ. ୧ମ - ପୃ. ୧୩୦, କ୍ର.ଓ.ଶ. ୧ମ - ପୃ. ୫୧, ଶ.ଅ.- ୧ମ, ପୃ.୬୩) ।

**ଅବଢ଼ା କୁଡୁଆ**-ଦେ.ବି.- ଯେଉଁ ମାଟି ପାତ୍ରରେ ଶ୍ରୀଜଗନ୍ନାଥଙ୍କ ଲାଗି ଅନ୍ନ ପ୍ରସାଦ ରନ୍ଧନ କାରାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦୦, ଶ.ଅ.-ପୃ.୬୩) ।

**ଅବତଂସ**- *ସଂ. ବି.*- କର୍ଣ୍ଣଭୂଷଣ ବା କର୍ଣ୍ଣକୁଣ୍ଡଳ । ଶ୍ରୀଜୀଉଙ୍କ ସ୍ୱର୍ଣ୍ଣନିର୍ମିତ ଶିରୋଭୂଷଣ ।
(ପୂ.ଓ.ଭା.- ପୃ.୪୨୪, ଓ.ସାଂ.ଶ. - ପୃ.୨୩) ।

**ଅବତାର**- *ସଂ. ବି.* - ମାନବ ରୂପରେ ଭଗବାନଙ୍କର ଧରାବତରଣ । ଅବତରଣ ବା ତଳକୁ ଓହ୍ଲାଇବା, ଦୁଷ୍ଟ ଦଳନ ଓ ଶିଷ୍ଟ ପାଳନାର୍ଥେ ଦେବତାଙ୍କର ପୃଥିବୀରେ ଜନ୍ମ ଗ୍ରହଣ କରିବା । ଭଗବାନ ବିଷ୍ଣୁ ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମ, ବଳରାମ, ବୁଦ୍ଧ ଓ କଳ୍କି - ଏହି ଦଶଗୋଟି ଅବତାରରୁ ନଅଗୋଟି ରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇଥିବାର ଜଣାଯାଏ । ଶ୍ରୀଜଗନ୍ନାଥ ଏହି ଦଶ ଅବତାରରେ 'ଅଂଶାବତାର' ଓ ପୂର୍ଣ୍ଣାବତାର ରୂପରେ ବର୍ଣ୍ଣିତ । ପରବର୍ତ୍ତୀ ଅବତାର କଳ୍କି ବୋଲି ବର୍ଣ୍ଣନା ରହିଛି । ଅବତାର - ଦୁଇ ପ୍ରକାର- ପୂର୍ଣ୍ଣାବତାର ଓ ଅଂଶାବତାର ।

ଦେବୀ ପୁରାଣରେ - ଷାଠିଏଟି ଅବତାର ବର୍ଣ୍ଣନା କରାଯାଇଛି । ମହାଭାରତରେ କେଉଁଠି ଚାରି କେଉଁଠି ଛଅ ଓ କେଉଁଠି ଦଶଟି ଅବତାର କଥା ବର୍ଣ୍ଣନା କରାଯାଇଅଛି ।

ଭାଗବତରେ ବାଇଶି ଗୋଟି ଅବତାରର ବର୍ଣ୍ଣନା କରାଯାଇଛି । ସେହିପରି ପଞ୍ଚରାତ୍ର ସଂହିତାରେ ଅଣଚାଳିଶ ଅବତାର ସମ୍ପର୍କରେ ବର୍ଣ୍ଣନା କରାଯାଇଛି ।

ଏହି ଅଣଚାଳିଶ ଅବତାର ମହାଭାରତ ଠାରୁ ପ୍ରାଚୀନ । ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ଷୋଳ କଳା ବିଶିଷ୍ଟ ସ୍ୱୟଂ ସମ୍ପୂର୍ଣ୍ଣ ଅବତାରୀ ଓ ଅନ୍ୟମାନେ ଅବତାର । କେତେକ କ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ବୁଦ୍ଧଙ୍କ ସ୍ଥାନରେ ଅବତାର ରୂପେ ଗ୍ରହଣ କରାଯାଇଛି ।
(ପୂ.ଓ.ଭା. - ପୃ. ୪୨୫, କ୍ର.ଓ.ଶ. - ପୃ. ୪୫, ଓ.ସାଂ.ଶ. - ପୃ. ୨୩, ପୌ. ୧ମ - ପୃ. ୬୨/୬୩, ପ୍ର.ଅ. ୧ମ - ପୃ. ୪୨୫, ଶ.କ. - ପୃ. ୧୨୪) ।

**ଅବତାରୀ**- *ସଂ. ବିଣ.* - ଯାହାଙ୍କଠାରୁ ଅବତାରମାନେ ସୃଷ୍ଟି ହୋଇଥା'ନ୍ତି ।
ଯିଏ ଅବତାର ପ୍ରଦାନ କରନ୍ତି ତାଙ୍କୁ ମଧ୍ୟ 'ଅବତାରୀ' କୁହାଯାଏ । ପରଂବ୍ରହ୍ମ । ଏକ ଅଗ୍ନି ଶିଖାରୁ ଶତ ସହସ୍ର ସ୍ଫୁଲିଙ୍ଗ ବିଚ୍ଛୁରିତ ହେବାପରି ଏକ ନିର୍ଗୁଣ ବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଠାରୁ ସମସ୍ତ ଅବତାର ଓ ସଗୁଣବାଦର ସୃଷ୍ଟି । ଶ୍ରୀଜଗନ୍ନାଥଙ୍କଠାରୁ ସମସ୍ତ ଅବତାର ସୃଷ୍ଟି ହୁଏ ବୋଲି ସେ ଅବତାରୀ ।
(ପୂ.ଓ.ଭା. - ପୃ. ୪୨୫, ଓ.ସାଂ.ଶ. - ପୃ. ୨୩) ।

**ଅଭିମନ୍ତ୍ରିଣ**- *ସଂ. ବି.* - ମନ୍ତ୍ର ଉଚ୍ଚାରଣ ପୂର୍ବକ କୌଣସି ଦ୍ରବ୍ୟର ଶୁଦ୍ଧିକରଣ । ପବିତ୍ରକରଣ, ଆମନ୍ତ୍ରଣ, ସମ୍ବୋଧନ - ମନ୍ତ୍ର ଉଚ୍ଚାରଣପୂର୍ବକ ଆହ୍ୱାନ, ନିମନ୍ତ୍ରଣ ବା ଆମନ୍ତ୍ରଣ ।
(ପୂ.ଓ.ଭା. - ପୃ.୪୯୯, ଶ.ଅ. - ପୃ.୬୭) ।

**ଅଭିଲେଖ**-*ଦେ. ବି.*- ଶ୍ରୀଜଗନ୍ନାଥ ମନ୍ଦିର ପରିସର ମଧ୍ୟରେ ବିଭିନ୍ନ ସ୍ଥାନରେ ଏକଷଠିଟି ଅଭିଲେଖ ଥିବା କଥା ଡଃ ସତ୍ୟନାରାୟଣ ରାଜଗୁରୁ ମତ ପ୍ରଦାନ କରିଛନ୍ତି । ତେବେ ଏହି ସବୁ ଅଭିଲେଖଗୁଡ଼ିକ ମଧ୍ୟରୁ ଶ୍ରୀଜଗନ୍ନାଥ ମନ୍ଦିରର ଭିତର ବେଢ଼ାରେ ନୃସିଂହ ମନ୍ଦିର, ପାତାଳେଶ୍ୱର ମନ୍ଦିର ତଥା ମୂଳ ଜଗନ୍ନାଥ ମନ୍ଦିରର ଜୟବିଜୟ ଦ୍ୱାରରେ ଖୋଦିତ ହୋଇଥିବା ଅଭିଲେଖଗୁଡ଼ିକ ବିଶେଷ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ପୁରୀ ମାର୍କଣ୍ଡେଶ୍ୱର ମନ୍ଦିର ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀର ପାହାଚରେ ମଧ୍ୟ କେତେକ ଅଭିଲେଖ ରହିଛି ।

ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଅଭିଲେଖଗୁଡ଼ିକ ସରକାରୀ, ବେସରକାରୀ ନଥିପତ୍ର ବ୍ୟତୀତ ପୁରୀକୁ ତୀର୍ଥାଟନ ଉଦ୍ଦେଶ୍ୟରେ ଆସିଥିବା ଭକ୍ତ ବା ଦେଶାଟନ ଉଦ୍ଦେଶ୍ୟରେ ପର୍ଯ୍ୟଟକମାନଙ୍କ ଭ୍ରମଣ ବୃତ୍ତାନ୍ତଗୁଡ଼ିକର ମଧ୍ୟ ବିଶେଷ ଭୂମିକା ରହିଛି । ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ବହୁ ଉପାଦେୟ ଅଭିଲେଖ ସଂରକ୍ଷିତ ରହିଥିବାର ଜଣାଯାଏ । ଏହିସବୁକୁ ଅନୁଶୀଳନ କଲେ ଶ୍ରୀଜଗନ୍ନାଥ ଓ ଶ୍ରୀମନ୍ଦିରର ସାଂସ୍କୃତିକ, ସାମାଜିକ, ଅର୍ଥନୈତିକ ଦିଗ ସମ୍ପର୍କରେ

ଅନେକ ତଥ୍ୟ ଦୃଷ୍ଟିଗୋଚର ହୁଏ । ଏହି ଅଭିଲେଖଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କର ସେବାପୂଜା, ବିଶିଷ୍ଟ ବ୍ୟକ୍ତିଙ୍କର ପୁରୀକୁ ଭ୍ରମଣ, ବିଭିନ୍ନ ପ୍ରକାରର ଦାନ ଯଥା ଜମି, ଧନ, ସ୍ୱର୍ଣ୍ଣ, ପୁଷ୍ପ, ଦୀପ ତୈଳାଦି ରାଜବଂଶାବଳୀ ଇତ୍ୟାଦି ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଥାଏ । (କ୍ରୁ.ଓ.ଶ. - ପୃ.୫୩) ।

**ଅଭିଷେକ-** *ପୁଂ.ବି.-* ମନ୍ତ୍ରପୂତ ଜଳରେ ସ୍ନାନ, ରାଜପଦରେ ଆରୋହଣ କ୍ରିୟା । ପୌଷ ପୂର୍ଣ୍ଣିମା ଦିନ ଶ୍ରୀଜୀଉଙ୍କର ପୁଷ୍ୟାଭିଷେକ ଉତ୍ସବ ପାଳିତ ହୋଇଥାଏ ।
(କ୍ରୁ.ଓ.ସ. - ପୃ.୧୪୦, ପୂ.ଓ.ଭା. - ପୃ.୫୦୫) ।

**ଅମାବାସ୍ୟା-** *ସଂ.ବି.-* କୃଷ୍ଣପକ୍ଷ ଅନ୍ତର୍ଗତ ତିଥି । ବର୍ଷ ମଧ୍ୟରେ ବିଭିନ୍ନ ମାସର ଅମାବାସ୍ୟା ବିଭିନ୍ନ ନାମରେ ପରିଚିତ । ମାର୍ଗଶୀର- ଦୀପାବଳୀ ଅମାବାସ୍ୟା, ପୌଷ - ବଉଳ ଅମାବାସ୍ୟା, ମାଘ- ତ୍ରିବେଣୀ ଅମାବାସ୍ୟା, ଫାଲଗୁନ - ଜାଗର ଅମାବାସ୍ୟା, ଚୈତ୍ର - ନିମକୋଳି ଅମାବାସ୍ୟା, ବୈଶାଖ - ରୁକ୍ମିଣୀ ଅମାବାସ୍ୟା, ଜ୍ୟେଷ୍ଠ - ସାବିତ୍ରୀ ଅମାବାସ୍ୟା, ଆଷାଢ଼ - ବିଜୟା ଅମାବାସ୍ୟା, ଶ୍ରାବଣ - ଚିତାଲାଗି ଅମାବାସ୍ୟା, ଭାଦ୍ର - ସାତପୁରୀ ଅମାବାସ୍ୟା, ଆଶ୍ୱିନ - ଫୁଲୁରି ଅମାବାସ୍ୟା, କାର୍ତ୍ତିକ-ପୟା ବା ଦୀପାବଳୀ ଅମାବାସ୍ୟା । ଏହି ସବୁ ଅମାବାସ୍ୟା ଗୁଡ଼ିକରେ ଶ୍ରୀମନ୍ଦିରରେ ବିଭିନ୍ନ ରୀତିନୀତିରେ ପୂଜା ଅନୁଷ୍ଠିତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୩-୪୪, ଶ.କ. ୧ମ- ପୃ. ୮୩/୮୫, ପୂ.ଓ.ଭା. - ପୃ.୫୨୮) ।

**ଅମାବାସ୍ୟା ନାରାୟଣ-** *ଦେ.ବି.-* ଶ୍ରୀକ୍ଷେତ୍ରରେ ଅମାବାସ୍ୟା ତିଥିରେ ସାଗର ବିଜେ କରୁଥିବା ପ୍ରତିମା । ଏହି ପ୍ରତିମା ଶ୍ରୀମନ୍ଦିରର ଦକ୍ଷିଣି ଘରେ ବିରାଜିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୪) ।

**ଅମାବାସ୍ୟା ନୀତି-** *ଦେ.ବି.-* ପ୍ରତି ଅମାବାସ୍ୟା ତିଥିରେ ହେଉଥିବା ବିଶେଷ ନୀତି । ଅମାବାସ୍ୟା ପ୍ରତିପଦ ସ୍ପର୍ଶ କଲେ ଏହି ଦିନ ସକାଳେ ବେଶ ସମୟରେ ଶ୍ରୀଜଗନ୍ନାଥ ତୁଳସୀମାଳ ଏବଂ ଆଜ୍ଞାମାଳ ଲାଗି ହୁଅନ୍ତି । ସକାଳ ଧୂପ ଭିତରେ ଧୋପଖାଳ ପରେ ମହାଜନ ଦକ୍ଷିଣି ଘରୁ ଶ୍ରୀନାରାୟଣ ମୂର୍ତ୍ତି ଆଣି ସିଂହାସନରେ ବିଜେ କରାନ୍ତି । ଶ୍ରୀ ଜଗନ୍ନାଥଙ୍କୁ ଲାଗି ହୋଇ ଥିବା ଆଜ୍ଞାମାଳ ନାରାୟଣ ମୂର୍ତ୍ତିଙ୍କୁ ପ୍ରଦାନ କରାଯାଏ । ମହାଜନେ ତାଙ୍କୁ ହାତରେ ବିଜେ କରାଇ ନେଇ ବଟ ଦ୍ୱାର ଦେଇ ଝୁଲଣ ମଣ୍ଡପ ତଳେ ଥିବା ପାଲିଙ୍କିରେ ବିଜେ କରାନ୍ତି । ଚାରି ଜଣ ବିମାନବଡୁ ବିମାନକୁ ଆନନ୍ଦବଜାର ସିଂହଦ୍ୱାର ଦେଇ ସ୍ୱର୍ଗଦ୍ୱାରକୁ ନିଅନ୍ତି । ବିମାନ ସହିତ ହୋମପାଳିଆ, ପୂଜା ପଣ୍ଡା ଅସ୍ଥାୟୀ ପଢିଆରୀ, ବାସିପାଳିଆ, ଗରାବଡୁ, ଘଣ୍ଟୁଆ, ଛତାର, କାହାଳିଆ ଯାଇଥାଆନ୍ତି । ଗରାବଡୁ ରୂପା ପିଙ୍ଗଣରେ ସମୁଦ୍ର ପାଣି ଆଣି ପଣ୍ଡାଙ୍କୁ ଦେଲେ, ପଣ୍ଡା ତାହା ସଂସ୍କାର କରି ଠାକୁରଙ୍କୁ ଲାଗି କରାନ୍ତି । ସାବତ ନିଯୋଗ ତରଫରୁ ପଣା ଭୋଗ ହେଲା ପରେ କର୍ପୂର ଆଳତି, ବନ୍ଦାପନା, ସଞ୍ଜକାହାଳି ପରେ ଠାକୁର ହରିଦାସମଠ ଗୋହିରୀ ଦେଇ ଯମେଶ୍ୱର ମହାଦେବ ମନ୍ଦିରକୁ ବିଜେ କରନ୍ତି । ଏଠାରେ ଠାକୁରଙ୍କର ଦହି ପଞ୍ଚାମୃତରେ ମହାସ୍ନାନ ପରେ ପଞ୍ଚୋପଚାର ପୂଜା ହୁଏ । ଖଇ କୋରା ଶୀତଳ ଭୋଗ ଓ ବନ୍ଦାପନା ହେବା ପରେ ମହାଜନେ ଠାକୁରଙ୍କୁ ପାଲିଙ୍କିରେ ବିଜେ କରାନ୍ତି । ପାଲିଙ୍କି ହରଚଣ୍ଡୀ, ମଣିକର୍ଣ୍ଣିକା ଦେଇ ସିଂହଦ୍ୱାର ବାଟେ ମନ୍ଦିରକୁ ଆସିଲା ପରେ ଠାକୁର ଦକ୍ଷିଣି ଘରକୁ ବିଜେ କରନ୍ତି । ଆଷାଢ଼ ଅମାବାସ୍ୟାରେ ପ୍ରତିପଦ ସ୍ପର୍ଶ କଲେ ଏହି ନୀତି ହୁଏ ନାହିଁ । ଠାକୁରଙ୍କୁ ଲାଗି ହେବା ଆଜ୍ଞାମାଳ ତୁଳସୀ ମିଶା ହୁଏ ଓ ଠାକୁରାଣୀଙ୍କୁ ଲାଗି ହେବା ଆଜ୍ଞାମାଳରେ ତୁଳସୀ ରହେନାହିଁ ।
(ଶ୍ରୀ.ସ୍ୱ. ୨ୟ - ପୃ.୪୩) ।

**ଅମାଲୁ-** *ଦେ.ବି.-* ଅଟା, ଋଉଳଚୁନା ଓ ଗୁଡକୁ ମିଶ୍ରଣ କରି ଘିଅରେ ଛାଣି ଭୋଗ ପାଇଁ ପ୍ରସ୍ତୁତ କରାଯିବା ପିଠା ବିଶେଷ । ଏହା

ମଧ୍ୟାହ୍ନ ଧୂପରେ ଶ୍ରୀଜୀଉଙ୍କ ପାଖରେ ଲାଗିହୁଏ । ଏହା ବଡ଼, ସାନ, ଚକି, ହାତ ପୋଡା ଚାରି ପ୍ରକାର କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ୨୭, ପ୍ର.ଅ. - ପୃ.୧୫୨, ଶ.ଅ.- ପୃ୭୩) ।

**ଅମାଲୁ ତୋଳା**-*ଦେ.ବି.*- ଶ୍ରୀମନ୍ଦିରରେ ରୋଷଶାଳରୁ ଅମାଲୁ ପିଠା ଆଣି ପନ୍ତିରେ, ସାତପୁରୀ ଅମାବାସ୍ୟାରେ ଓ ପ୍ରତ୍ୟେହ ସନ୍ଧ୍ୟା ଧୂପରେ ରଖିବା ।
(ଶ୍ରୀ.ସ୍ୱ. - ପୃ.୪) ।

**ଅମାଲୁସୁଆର**-*ଦେ.ବି.*- ଅମାଲୁ ପିଠା ପ୍ରସ୍ତୁତ କରୁଥିବା ସୁଆର ବିଶେଷ ।
(ପୁ.ବୋ.- ପୃ.୧୫୨) ।

**ଅମିନମହାସୁଆର**-*ଦେ.ବି.*- ପୁରୀ ମନ୍ଦିରର ରୋଷଘରେ ଠାକୁରଙ୍କ ନିମନ୍ତେ ପାକ କରାଯାଉଥିବା ଖାଦ୍ୟଦ୍ରବ୍ୟ ତଦାରଖ କରିବା ସେବକ । ଶ୍ରୀମନ୍ଦିରରେ କେତେକ ସେବକଙ୍କୁ ସମୟ କ୍ରମେ ଅମିନ କୁହାଯାଇଛି ଯଥା- ରୋଷ ଅମିନ, ତଦାରଖ ଅମିନ ।
(କ୍ଷେ.ସ.) ।

**ଅମୃତ କଦଳୀ**-*ସଂ.ବି.*- ନାଲି ଚୋପା ବିଶିଷ୍ଟ ପାଚିଲା କଦଳୀ । ଏହା ଶ୍ରୀମନ୍ଦିରରେ ଭୋଗଲାଗି ଥାଏ । ଏହି କଦଳୀର ଏକ ସ୍ୱତନ୍ତ୍ର ମହତ୍ୱ ରହିଛି ।
(କ୍ଷେ.ସ.) ।

**ଅମୃତକୁଣ୍ଡ**-*ଦେ. ବି.*- ଦୁଧ, ଖଣ୍ଡ, ବା ଚିନି, କଦଳୀ ଆଦି ମିଶ୍ରିତ ଏକ ସ୍ୱାଦିଷ୍ଟ ପ୍ରସ୍ତୁତି । ଶ୍ରୀମନ୍ଦିରରେ ଏହା ଏକ ସ୍ୱାଦିଷ୍ଟ ଭୋଗ, ଯାହାକି ଛପନଭୋଗ ତାଲିକାରେ ଅନ୍ତର୍ଭୁକ୍ତ ।
(ଓ.ସାଂ.ଶ. - ପୃ.୨୭) ।

**ଅମୃତପରଷା ନିଯୋଗ**-*ଦେ.ବି.*- ଶ୍ରୀ ମନ୍ଦିରର ଏକ ସେବକ ବିଶେଷ ।
(ପୁ.ବୋ.- ପୃ.୧୫୨) ।

**ଅମୃତ ମଣୋହି**-*ସଂ.ବି.*- ଓଡ଼ିଶା ମଧ୍ୟରେ ବା ବାହାରେ ଶ୍ରୀଜଗନ୍ନାଥଙ୍କୁ ଦାନସୂତ୍ରରେ ମିଳିଥିବା ବିପୁଳ ଭୂସମ୍ପତ୍ତି । ଏହି ଭୂସମ୍ପତ୍ତିକୁ ଶ୍ରୀମନ୍ଦିର ପରିଭାଷାରେ ଅମୃତ ମଣୋହି କୁହାଯାଏ ।
(ଶ୍ରୀ.ଜି. - ପୃ. ୫୪) ।

**ଅମୃତ ମଣୋହି ବିଶୋଇ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ ।

**ଅରିଆ**-*ଦେ.ବି.*- ଶ୍ରୀମନ୍ଦିର ଭିତରେ ସେବକଙ୍କୁ ଆବଶ୍ୟକ ଜିନିଷପତ୍ର ଓଜନ କରି ଯୋଗାଇବା ଓ ବିଭିନ୍ନ ଦେବ ଦେବୀଙ୍କ ଭୋଗ ସମାଗ୍ରୀ ଯୋଗାଇବା, ପଙ୍‌କ୍ତି ସମୟରେ ଗଣତି କରିବା, ହିସାବ ଅନୁଯାୟୀ ପହଞ୍ଚିବା ଓ ଛାଡ଼ିବା, ଦେଖିବା କାର୍ଯ୍ୟ କରୁଥିବା ସେବକ ।
(ପୁ.ବୋ. - ପୃ.,୧୫୩) ।

**ଅରୁଣ**-*ସଂ.ବି.*- କଶ୍ୟପଙ୍କ ପୁତ୍ର । ଗରୁଡଙ୍କ ବଡ ଭାଇ ଓ ସୂର୍ଯ୍ୟଙ୍କ ସାରଥୀ । ଏହାଙ୍କ ଜନ୍ମ ରହସ୍ୟ ବଡ଼ ବିଚିତ୍ର । କଶ୍ୟପ ଋଷିଙ୍କର ବିନତା ଓ କଦ୍ରୁ ନାମରେ ଦୁଇଜଣ ପତ୍ନୀ ଥିଲେ । ସମୟକ୍ରମେ ବିନତାଙ୍କଠାରୁ ଦୁଇଟି ଅଣ୍ଡା ଜନ୍ମ ନେଲା । ଚାହୁଁ ଚାହୁଁ ଅନେକ ଦିନ ବିତିଗଲା, ହେଲେ ସେହି ଅଣ୍ଡା ଦୁଇଟି ଫୁଟିଲା ନାହିଁ କି ସେଥିରୁ ଛୁଆ ଜନ୍ମ ନେଲେ ନାହିଁ । ଦିନେ ରାଗରେ ବିନତା ଗୋଟିଏ ଅଣ୍ଡାକୁ କଚାଡ଼ି ଭାଙ୍ଗିଦେଲେ । ସେଥିରୁ ଗୋଟିଏ ଛୁଆ ଜନ୍ମ ନେଲା । ମାତ୍ର ସେ ଛୁଆର ଅଙ୍ଗ ପ୍ରତ୍ୟଙ୍ଗ ସମ୍ପୂର୍ଣ୍ଣ ହୋଇ ନ ଥିଲା । ବିକଳାଙ୍ଗ ପିଲାଟି ଜନ୍ମ ହେବା ମାତ୍ରେ କାନ୍ଦିବାକୁ ଆରମ୍ଭ କଲା । ମାତା ବିନତା ଏହା ଦେଖି ମନ ଦୁଃଖ କଲେ ଓ ସମସ୍ତ ଘଟଣା ସ୍ୱାମୀ କଶ୍ୟପଙ୍କୁ ଜଣାଇଲେ । କାଶ୍ୟପ ସମସ୍ତ ବିଷୟ ଜାଣିବା ପରେ ପିଲାଟିକୁ ସୂର୍ଯ୍ୟ ନାରାୟଣଙ୍କୁ ଅର୍ପଣ କରିଦେଲେ । ପରେ ସେହି ପିଲାର ନାମ ହେଲା ଅରୁଣ । ସେ ସୂର୍ଯ୍ୟଙ୍କଠାରୁ ଦିବ୍ୟଶକ୍ତି ପ୍ରାପ୍ତ ହୋଇ ସୂର୍ଯ୍ୟଙ୍କର ଏକ ଚକ୍ର ବିଶିଷ୍ଟ ସପ୍ତଅଶ୍ୱ ଯୋଚିତ ରଥର ସାରଥି ହୋଇ ରହିଲେ । ଅରୁଣର ନାକ ଅତ୍ୟନ୍ତ ସୁନ୍ଦର ଏବଂ ଶରୀରରେ ଦୁଇଟି ପକ୍ଷ ରହିଛି । ଶ୍ରୀଜଗନ୍ନାଥଙ୍କୁ ନବଗ୍ରହର ପ୍ରତୀକ ବା ସୂର୍ଯ୍ୟନାରାୟଣରୂପେ ପରିକଳ୍ପନା କରାଯାଇଥିବାରୁ ଅରୁଣ ଶ୍ରୀମନ୍ଦିର ଆଡ଼େ ଯୋଡ଼ହସ୍ତରେ ପରଂବ୍ରହ୍ମଙ୍କୁ ଏକନିଷ୍ଠ ଭାବରେ ପ୍ରାର୍ଥନା କରୁଅଛନ୍ତି । ରାହୁ ସୁବିଧା ପାଇ

ସୂର୍ଯ୍ୟଙ୍କୁ ଗ୍ରାସ କରିବାକୁ ଚାହିଁବାରୁ ସୂର୍ଯ୍ୟ ରାଗିଯାଇ ସବୁକିଛି ନିଜ ଶକ୍ତି ବଳରେ ଧ୍ୱଂସ କରିବାକୁ ଚାହିଁଲେ । ଦେବତାମାନେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ସୃଷ୍ଟିକୁ ରକ୍ଷା କରିବା ପାଇଁ ବ୍ରହ୍ମା ଅରୁଣଙ୍କୁ ସୂର୍ଯ୍ୟଙ୍କ ରଥର ସାରଥି ହେବା ନିମନ୍ତେ ନିର୍ଦ୍ଦେଶ ଦେଲେ । ସେହି ଦିନଠାରୁ ଅରୁଣ ସୂର୍ଯ୍ୟଙ୍କୁ ନିଜ ଆଢୁଆଳରେ ରଖି ସାରଥି ହେଲେ । ଶ୍ରୀମନ୍ଦିରର ସିଂହଦ୍ୱାର ସମ୍ମୁଖରେ କଳାମୁଗୁନି ପଥର ସ୍ତମ୍ଭର ଉପରେ ଅରୁଣ ବିରାଜିତ ।

(ପୌ.(ବଂ) ୧ମ - ପୃ. ୯୨/୯୩, ପୂ.ଓ.ଭା.- ପୃ.୫୬୮, ଶ.କ. ୧ମ - ପୃ.୯୬) ।

**ଅରୁଣସ୍ତମ୍ଭ**- *ସଂ.ବି.*- ଶ୍ରୀମନ୍ଦିରର ମୁଖ୍ୟଦ୍ୱାର ଅର୍ଥାତ୍ ସିଂହଦ୍ୱାର ପ୍ରବେଶ ମାର୍ଗରେ ସୁଉଚ୍ଚ ପ୍ରସ୍ତର ନିର୍ମିତ ସ୍ତମ୍ଭ । ସିଂହଦ୍ୱାରର ଏହି ଅଞ୍ଚଳକୁ 'ଅରୁଣସ୍ତମ୍ଭ ଚକଡ଼ା' ବୋଲି କୁହାଯାଏ । ପ୍ରସ୍ତର ଚକଡ଼ା ଉପରେ ଏହି ଅରୁଣସ୍ତମ୍ଭ ବିଦ୍ୟମାନ । ଗୋଟିଏ ପ୍ରସ୍ତରରେ ଏହି ସ୍ତମ୍ଭଟି ନିର୍ମିତ ହୋଇ ଥିବା ଦୃଷ୍ଟିଗୋଚର ହୁଏ । ଇତିହାସ କହେ ଲାଙ୍ଗୁଳା ନରସିଂହ ଦେବଙ୍କ ସମୟରେ କୋଣାର୍କ ସୂର୍ଯ୍ୟ ମନ୍ଦିର ସମ୍ମୁଖରେ ସୂର୍ଯ୍ୟଦେବଙ୍କ ସାରଥି ରୂପେ ଅରୁଣଙ୍କ ପ୍ରତିମା ଏହି ସ୍ତମ୍ଭ ଉପରେ ବିରାଜମାନ ହୋଇ ପୂଜିତ ହେଉଥିଲେ । ପରବର୍ତ୍ତୀ କାଳରେ କୋଣାର୍କ ମୁଖ୍ୟ ମନ୍ଦିରଟି ଭାଙ୍ଗି ପଡ଼ିବାରୁ ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ମରହଟ୍ଟାମାନଙ୍କର ରାଜତ୍ୱ କାଳରେ ଭୋଇ ବଂଶର ରାଜା ଦିବ୍ୟସିଂହ ଦେବ ଏହି ସ୍ତମ୍ଭଟିକୁ ନିଖୁଣ ଅବସ୍ଥାରେ କୋଣାର୍କ ଠାରୁ ଅଣାଇ ପୁରୀ ଶ୍ରୀମନ୍ଦିରରର ପୂର୍ବଦ୍ୱାର ସିଂହଦ୍ୱାର ଠାରେ ପ୍ରତିଷ୍ଠା କରାଇଥିଲେ । ସ୍ତମ୍ଭଟି ପୀଠର ଉପରଠାରୁ ଅରୁଣଙ୍କ ପାଦ ପର୍ଯ୍ୟନ୍ତ ଉଚ୍ଚତା ପଚିଶ ଫୁଟ ଦୁଇ ଇଞ୍ଚ, କିନ୍ତୁ ପୀଠର ପତନଠାରୁ ଅରୁଣଙ୍କ ଶିଖା ପର୍ଯ୍ୟନ୍ତ ସ୍ତମ୍ଭର ଉଚ୍ଚତା ତେତିଶ ଫୁଟ ଆଠ ଇଞ୍ଚ । ଏହି ସ୍ତମ୍ଭଟି ଗୋଟିଏ ମୁଗୁନି ପ୍ରସ୍ତରରେ ଗଢ଼ା ଏବଂ ଷୋଳ କୋଣ (ପଗ) ବିଶିଷ୍ଟ । କୋଣଗୁଡ଼ିକର ଓସାର ସମାନ । ସାତଫୁଟ ନଅ ଇଞ୍ଚଲମ୍ବ ଓ ଛଅଫୁଟ ଓସାର ଉଚ୍ଚର ଏକ ପୀଠ ଉପରେ ଏ ସ୍ତମ୍ଭଟି ରହିଅଛି । ପୀଠଟି କଳା ମୁଗୁନି ପ୍ରସ୍ତରରେ ନିର୍ମିତ । ସ୍ତମ୍ଭଟିର ବ୍ୟାସ ଦୁଇ ଫୁଟ ଓ ଗୋଲେଇ ଛଅ ଫୁଟ ତିନି ଇଞ୍ଚ । ସ୍ତମ୍ଭ ପୀଠର ଗାତ୍ରରେ ସୂକ୍ଷ୍ମ କାରୁକାର୍ଯ୍ୟ ସମ୍ପନ୍ନ ଅନେକ କମନୀୟ ମୂର୍ତ୍ତି ଶୋଭା ପାଉଛି । ସୂର୍ଯ୍ୟ ଦେବଙ୍କର ସାରଥୀ ଅରୁଣ ଯୋଡ଼ ହସ୍ତରେ ଉପବିଷ୍ଟ ଏକ କ୍ଷୁଦ୍ର ମୂର୍ତ୍ତି ଏହି ବିଶାଳ ସ୍ତମ୍ଭ ଉପରେ ବିଦ୍ୟମାନ । ଏହାକୁ ମଧ ଷୋଳ ପହଳିଆ ଖମ୍ବ କହନ୍ତି ।

ଶ୍ରୀମନ୍ଦିରର ସ୍ୱତ୍ୱଲିପିରେ ବର୍ଣ୍ଣିତ ଅଛି ଯେ ଚୂନରା ବା ଶ୍ରୀମନ୍ଦିର ଗରୁଡ଼ ସେବକ, ଏହି ଅରୁଣସ୍ତମ୍ଭ ସେବାକରିବା ସହିତ ଏହି ସ୍ତମ୍ଭର ଦାୟିତ୍ୱରେ ଅଛନ୍ତି । ଏହି ସ୍ତମ୍ଭର ଚତୁଃପାର୍ଶ୍ୱରେ ଲୁହା ଜାଲି ଲଗାଯାଇ ସୁରକ୍ଷା କରାଯାଇଛି । ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାପକ୍ଷରୁ ଏହି ଜାଲିସମେତ ଅରୁଣସ୍ତମ୍ଭର ସଂରକ୍ଷଣ ଓ ମରାମତି କାର୍ଯ୍ୟ କରାଯାଏ । ରଥଯାତ୍ରା ସମୟରେ ପୂଜା ପଣ୍ଡା ସେବକମାନେ ଏହି ସ୍ତମ୍ଭଠାରେ ଉପସ୍ଥିତ ରହି ଭକ୍ତମାନଙ୍କ ପ୍ରଦତ୍ତ ଭୋଗଦ୍ରବ୍ୟକୁ ରଥାରୂଢ଼ ଠାକୁରଙ୍କ ଉଦ୍ଦେଶ୍ୟରେ ନୈବେଦ୍ୟ ସମର୍ପଣ କରିଥାଆନ୍ତି ।

(ଶ୍ରୀ.ସ୍ୱ. - ପୃ. ୨୫୮, କ୍ଷେ.ସ.) ।

**ଅରୂପ**- *ସଂ.ବି.*- ନିରାକାର, ମୂର୍ତ୍ତିହୀନ, ରୂପହୀନ, କୁତ୍ସିତ ରୂପ, ଯାହାର ରୂପ ନାହିଁ । ମହାପ୍ରଭୁ ଶ୍ରୀଜଗନ୍ନାଥ ଅରୂପ । ମହାପ୍ରଭୁ ନୃସିଂହ ଓ ଶ୍ରୀଜଗନ୍ନାଥ ଖମ୍ବଜ ହୋଇଥିବାରୁ ସେ ଆକାର ବିହୀନ ବା ଅରୂପ ରୂପେ କଳ୍ପିତ ।

(ଶ.କ. ୧ମ - ପୃ.୯୭, ପ୍ର.ଅ. ୧ମ - ପୃ. ୧୬୨, ପୂ.ଓ.ଭା. - ପୃ.୫୭୦, ପୁ.ବୋ. - ପୃ. ୧୪୬) ।

**ଅରୂପ ବ୍ରହ୍ମ**-*ଦେ.ବିଶେ.*- ରୂପହୀନ ବ୍ରହ୍ମ । ଯିଏ ଚିରନ୍ତନ ସତ୍ୟ, ଶାଶ୍ୱତ, ସନାତନ, ନିର୍ବିକଳ୍ପ, ନିରାକାର, ପରମେଶ୍ୱର, ପରମାତ୍ମା । ବ୍ରହ୍ମଙ୍କୁ ଅରୂପ ବ୍ରହ୍ମ ବୋଲି କୁହାଯାଏ । ନିଜେ ଜାତ ହୋଇ ଆବର ସୃଷ୍ଟି ହେଉଛି ପ୍ରକୃତ ଅରୂପ,

ଅଲେଖ, ଅନନ୍ତ ବା ପରଂବ୍ରହ୍ମ । ଶ୍ରୀଜଗନ୍ନାଥ ହିଁ ନିରାକାର ଅରୂପ ବ୍ରହ୍ମ ସଦୃଶ ।
(ଓ.ସାଂ.ଶ., ପୃ. ୨୮) ।

**ଅଳକା**-*ସଂ.ବି.*- କୁବେରପୁରୀ । ଚୂର୍ଣ୍ଣକୁନ୍ତଳ । ଶ୍ରୀଜଗନ୍ନାଥଙ୍କ ସ୍ୱର୍ଣ୍ଣାଳଙ୍କାର ବିଶେଷ । ବଡ଼ସିଂହାର ବେଶ ବେଳେ ଶ୍ରୀମସ୍ତକରୁ ଝୁଲା ଯାଉଥିବା ଏଗାର ଗୋଟି ପୁଷ୍ପଝୁମ୍ପା ।
(ପୂ.ଓ.ଭା. - ପୃ. ୫୮୮, ଶ.ଅ. - ପୃ.୮୩, ଶ.କ. ୧ମ - ପୃ.୧୧୩ , କ୍ରି.ଓ.ଶ. - ପୃ.୬୪, ପୌ.୧ମ - ପୃ.୧୦୭) ।

**ଅଳଙ୍କର୍ତ୍ତା**-*ସଂ.ବି.*- ପ୍ରସାଧକ, ଭୂଷଣକାରୀ, ଅଳଙ୍କାର ପିନ୍ଧାଉଥିବା ବେଶକାରୀ ସେବକ ।
(ପୂ.ଓ.ଭା. - ପୃ.୫୯୨, ଶ.କ. ୧ମ - ପୃ.୧୧୩, ଶ.ଅ. - ପୃ. ୮୪) ।

**ଅଳଙ୍କାର**-*ଦେ.ବି.*- ଭୂଷଣ, ଆଭରଣ । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ଲାଗି ହେଉଥିବା ସୁବର୍ଣ୍ଣ ଅଳଙ୍କାର, ଯଥା- ଚୂଳକରା, ମୟୂରଚନ୍ଦ୍ରିକା, ତ୍ରିଶାଖା, ଚୂଳପତ୍ରୀ, ଅପରାଜିତା, ମୟୂରପଙ୍ଖା, ଚନ୍ଦ୍ରସୂର୍ଯ୍ୟ, ମୁକୁଟ, ବଡ଼ଫୁଲ, କିଆପତ୍ର, କର୍ଣ୍ଣଚିଲ, କୁଣ୍ଡଳ, ଅରକନିଆନା, ଅଳକା, ରାହୁରେଖା, ଭେଟ, ଶ୍ରୀଭୁଜ (ସୁନାହାତ), ନଳୀବାହୁଟି (ହାତଘୋଡ଼ା ପାଇଁ ସୁନାର ଅଳଙ୍କାର), ସୁନାଚକ୍ର, ଅଉଲମୁଲ (ହାତର ଗହଣା), ଭରିଆ କମରପଟ୍ଟା, ତୁରୁକୁସିଆ, ନୁକାସିଆ, କମରଝୁମ୍ପା, ପଦ୍ମପାଦ (ସୁନାଗୋଡ଼), ବାଘନଖ, ପଦ୍ମମାଳା, ସେବତୀମାଳା, ଅଗସ୍ତିମାଳା, ପାରିଜାତ ମାଳା, କେଳି କଦମ୍ବମାଳା, ପଡ଼ିଖୁଣ୍ଟିମାଳା, କଣ୍ଠିମାଳା, ମୁକ୍ତାର ସାନ କଣ୍ଠିମାଳା, ହରିଡକିମାଳା (ମୁକ୍ତାସହ), ନିଦା ପଥରମାଳା, ନିଦା ପଥରମାଳା ରାମନାମୀ, ମିରିଗମାଳା (ମୁକ୍ତା), କଣ୍ଠିମାଳ ମାଳା (ମୁକ୍ତା), ମୁକ୍ତାମାଳା (ସୁନାଛାଉଣୀ), ଫୁଲସରମାଳା (ମୁକ୍ତା, ସୁନା), ପଞ୍ଚସୋରିଆ ଦୋସରା ପାଞ୍ଚ (ସୁନାକୁମ୍ଭପକା), ପଦକ, ଧୂକଧୂକିଆ (ସାନ), ଉପଚାରକ ପଦକ, ବାଜୁବନ୍ଧ (ମୁକ୍ତା), ବାଜୁବନ୍ଧ, ମୁଦି, ଜୟମଙ୍ଗଳ, ଆରତି ଦୀପ, କର୍ପୂର ଦୀପ, ସୁନାଥାଳ, ସୁନାବେଣ୍ଟ ଚଉରୀ, ସୁନା ମୟୂର ଚୂଳ, ସୁନା ଛାଞ୍ଚୁଣୀ, ପଙ୍ଖାର ଚନ୍ଦ୍ରସୂର୍ଯ୍ୟ (ସୁନା), ପଙ୍ଖା ପାଇଁ ଦାଣ୍ଡକଣ୍ଠି, ସୁନାବେତ, ଜିଭଛେଲା, ତାବିଜ, ରାକ୍ଷବାହୁକା, ରତ୍ନପାଦୁକା, ଚମ୍ପାଫୁଲ (ମୁଣ୍ଡ ପାଇଁ), ସୁନାକଣ୍ଠି (ବିଭିନ୍ନ ଧରଣର), ସୁନା ଝୁମ୍ପା (କମର ପାଇଁ), ସୁନାଚକି ପଡର, ସୁନା ନାକଫାସିଆ, ଭଙ୍ଗା ସୁନାଗହଣା, ଅଗସ୍ତମାଳା (ସୁନାଫୁଲ), ସୁନାର ପାନପତ୍ରୀ ଅଳକା, ସୁନାର କଦମ୍ବ ମାଳା, ପଦ୍ମମାଳା (ସୁନା), ମୁଦି, ମୁକ୍ତା, ସୁନାପିଆ ବାଡ଼ି, ଚଉରୀବେଣ୍ଟ, ପଙ୍ଖା ପାଇଁ ଚନ୍ଦ୍ରସୂର୍ଯ୍ୟ, ପଙ୍ଖା ପାଇଁ ଚନ୍ଦ୍ର, ଛତା ବେଣ୍ଟ, ଜିଭନାଲ ମୁହଁ ନାଲ, କାନ ପାଇଁ କର୍ଣ୍ଣଫୁଲ (ରୂପା ସହ), ପଣ୍ଟଦୁଆ (ବେକ ପାଇଁ), ମକର କୁଣ୍ଡଳ, ଶିରପଞ୍ଚ, କାନଫୁଲ, ଟିକା, ସୁନାର ମୁକ୍ତାମାଳ, ନବରତ୍ନ ଜାହାଙ୍ଗୀ (ବାଜୁବନ୍ଧ), ହୀରା ଓ ମୁକ୍ତାର କଣ୍ଠମାଳା, ଧୂକଧୂକିଆ (ପଥରଲଗା), ଝୁମ୍ପା, ଝୁମୁକା, ନାଶଭ୍ର, ଘୁଣସି (ହୀରା ନୀଳା ଓ ପଥର ସହ), ନାକଚଣା (ସାନ), ସୋଲଚିତା, ବଳି, ମଣିମୁକ୍ତା (ଝୁଟା ପଥର ଲଗା) ମଣିମୁକ୍ତା ପ୍ରଭୃତି ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ୍ରୀ.ଶ୍ରୀ. - ୨ୟ ଭାଗ, ପୃ. ୪୨୮) ।

**ଅଳାଇଚ (ଅଳେଇଚ)**-*ଦେ.ବି.*- ସୁଗନ୍ଧ ମସଲା ମଞ୍ଜି ବିଶେଷ । ଶ୍ରୀମନ୍ଦିରରେ ବ୍ୟବହୃତ ମସଲା । ଶ୍ରୀମନ୍ଦିରରେ ପ୍ରତ୍ୟେକ ଧୂପରେ, ଦଶାଙ୍ଗ ଧୂପରେ, ଦଶାଙ୍ଗ ଧୂପରେ ଏତଦ୍ ବ୍ୟତୀତ ଅଧରପଣାରେ ଓ ଖିଲପାନରେ ମଧ୍ୟ ବ୍ୟବହାର କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ଅଲାରନାଥ**-*ଦେ.ବି.*- ପୁରୀ ଜିଲ୍ଲା ବ୍ରହ୍ମଗିରି ଥାନା ଅନ୍ତର୍ଗତ ଅଲାରନାଥଠାରେ ପ୍ରତିଷ୍ଠିତ ବିଷ୍ଣୁ ମନ୍ଦିର । ଅଣସର ସମୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅଦର୍ଶନରେ ଶ୍ରୀଅଲାରନାଥଙ୍କ

ଦର୍ଶନ କଲେ ପୂର୍ଣ୍ଣଫଳ ମିଳିଥାଏ । ଏହି ଅଲାରନାଥ ପୀଠ ଠାରେ ବୈଷ୍ଣବ ରାମାନନ୍ଦ ଜନ୍ମଗ୍ରହଣ କରିଥିଲେ ।

(ପୂ.ଓ.ଭା. -ପୃ. ୫୯୭, କ୍ର.ଓ.ଶ. ୧ମ - ପୃ. ୬୬, ଶ.କ. ୧ମ - ପୃ. ୧୨୦) ।

**ଅଲେଖ**-*ଦେ. ବି.*- ଭଗବାନ, ନଗଣ୍ୟ, ନିକୃଷ୍ଟ, ଅନିର୍ବଚନୀୟ, ଅବର୍ଣ୍ଣନୀୟ, ଅଗଣିତ । ଅଲିଖିତ ଯାହା ଲେଖା ହେବାର ଯୋଗ୍ୟ ନୁହେଁ, ଯାହା ଲେଖା ହୋଇନାହିଁ । ଅଲେଖ ଧର୍ମ ସମ୍ପ୍ରଦାୟ, ନିରାକାର ପନ୍ଥୀ ବା ଶୂନ୍ୟ ଭଜନକାରୀ ଏକ ସମ୍ପ୍ରଦାୟ । ୧୮୮୧ ମସିହା ମାର୍ଚ୍ଚ ୧ ତାରିଖ ଦିନ ଅଲେଖ ଧର୍ମର କେତେକ ପୁରୁଷ ଓ ସ୍ତ୍ରୀ ମିଶି ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ଶ୍ରୀଜଗନ୍ନାଥଙ୍କୁ 'ଅଲେଖ' 'ଅଲେଖ' ବୋଲି ସମ୍ବୋଧନ କରିଥିଲେ ।

(ଉତ୍କଳ ଦୀପିକା ୧୬ଶ ଭାଗ, ୧୧ ସଂଖ୍ୟା ୧୮୮୧ ମସିହା ମାର୍ଚ୍ଚ ୧୩ ତାରିଖ) ।

**ଅଶୋକ ମଣୋହି**-*ଦେ. ବି.*- ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳପକ୍ଷ ଅଷ୍ଟମୀରେ ସକାଳ ଧୂପ ପରେ ଭଣ୍ଡାରରୁ ଲୋକନାଥ ଦେବଙ୍କୁ ମହାଜନେ ହାତରେ ବିଜେ କରାଇ ଝୁଲଣ ମଣ୍ଡପ ତଳେ ଥିବା ପାଲିଙ୍କିରେ ଶ୍ରୀ ଈଶାନେଶ୍ୱରଙ୍କ ମନ୍ଦିରକୁ ବିଜେ କରାନ୍ତି । ପାଳିଆ ଖୁଣ୍ଟିଆ ଦେଇଥିବା ଅମୁଣିଆ ମାଳ ଭିତରଛ ମହାପାତ୍ରେ ଶ୍ରୀ ଈଶାନେଶ୍ୱରଙ୍କୁ ଲାଗି କଲାପରେ ସେ ମାଳ ଲୋକନାଥଙ୍କୁ ଲାଗି କରାଇ ପାଲିଙ୍କିରେ ଜଗନ୍ନାଥ ବଲ୍ଲଭଠାକୁ ବିଜେ ହୁଅନ୍ତି । ଏଠାରେ ଭୋଗ ବନ୍ଦାପନା ହୋଇ ଅଶୋକକଢ଼ୀ ମଣୋହି ହେବା ପରେ ବାହୁଡ଼ା ବିଜେ ହୁଅନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୩) ।

**ଅଶୋକାଷ୍ଟମୀ**-*ସଂ. ବି.*- ଚୈତ୍ର ମାସ ଶୁକ୍ଳାଷ୍ଟମୀ । ଏହିଦିନ ପୁନର୍ବସୁ ନକ୍ଷତ୍ରରେ ଆଠଟି ଅଶୋକ କଳିକା ଜଳ ସହିତ ପାନ କଲେ ମନୁଷ୍ୟ ଶୋକରୁ ମୁକ୍ତି ପାଏ ବୋଲି ପୁରାଣରେ ବର୍ଣ୍ଣିତ ଅଛି । ଏହି ଦିନ ଭୁବନେଶ୍ୱର ଲିଙ୍ଗରାଜଙ୍କ ଚଳନ୍ତି ପ୍ରତିମା ରଥରେ ବିଜେ କରାଯାଇ ରଥକୁ ଲିଙ୍ଗରାଜ ବେଢାର ଉତ୍ତର ପୂର୍ବକୋଣ ଠାରୁ ରାମେଶ୍ୱର ମନ୍ଦିର ପର୍ଯ୍ୟନ୍ତ ନିଆଯାଏ । ଏ ରଥର ନାମ ରୁକୁଣା ରଥ । ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳାଷ୍ଟମୀ ଦିନ ଭଣ୍ଡାର ଲୋକନାଥ ପାଲିଙ୍କିରେ ଚଢି ଈଶାନେଶ୍ୱର ମନ୍ଦିରକୁ ଯିବା ଓ ବନ୍ଦାପନା ସାରି ଜଗନ୍ନାଥ ବଲ୍ଲଭ ବିଜେ କରିବା ନୀତି ପ୍ରଚଳିତ । ଏହି ନୀତିରେ ମହାଜନେ, ପାଳିଆ, ଘଣ୍ଟୁଆ, ବିମାନବଡୁ, ଗରାବଡୁ, ଭିତରଛ ମହାପାତ୍ର ସାହାଯ୍ୟ କରିଥାନ୍ତି । ଏହି ଦିନ ଶ୍ରୀଜଗନ୍ନାଥଙ୍କୁ ରାମଚନ୍ଦ୍ରଙ୍କର ଜନ୍ମକର୍ତ୍ତା ଭାବରେ ଯେଉଟ ଫଳ ଭୋଗ କରାଯାଏ । ଯାହାକି, ସୁପ୍ରସବ ପାଇଁ ବ୍ୟବହାର କରାଯାଇଥାଏ । ଏହା ରାମଙ୍କ ଜନ୍ମ ପାଇଁ ରାମନବମୀ ପୂର୍ବଦିନ ବ୍ୟବସ୍ଥା କରାଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୨, ଶ.କ. - ପୃ.୧୫, ପୂ.ଓ.ଭା. - ପୃ. ୬୧୨, ଶ.କ.୧ମ - ପୃ.୧୩୮, ପୌ. ୧ମ - ପୃ. ୧୧୬, କ୍ର.ଓ.ଶ. ପୃ. ୬୮) ।

**ଅଶଉଚ/ଅଶୌଚ**-*ଦେ. ବି.*- ଶୁଦ୍ଧିର ଅଭାବ, ଅଶୁଦ୍ଧ । କୁଟୁମ୍ବରେ ଜନ୍ମ ମରଣ ଘଟିବାର ବାର ଦିନ ପର୍ଯ୍ୟନ୍ତ ଅଶୁଦ୍ଧି, ରଜଃସ୍ୱଳା ସ୍ତ୍ରୀର ମାସିକ ଧର୍ମ ସମୟରେ ଅଶୌଚ ହେତୁ ଶ୍ରୀମନ୍ଦିର ପ୍ରବେଶ ନିଷିଦ୍ଧ । ନବକଳେବର ସମୟରେ ମହାପ୍ରଭୁଙ୍କୁ ପାତାଳି କରି ସାରି ସେହି ରାତିରୁ ହିଁ ଦଇତାପତିମାନେ ଅଶୌଚବିଧି ପାଳନ କରନ୍ତି । କୁଟୁମ୍ବରୁ ବୟୋଜ୍ୟେଷ୍ଠ ଜଣକର ମୃତ୍ୟୁ ହେବା ପରେ ଯେଉଁଭଳି ବିଧିରେ ଶୁଦ୍ଧିକ୍ରିୟା ହୋଇଥାଏ, ଠିକ୍ ସେହିପରି ଅଶୌଚବିଧି ଦଶଦିନ ପର୍ଯ୍ୟନ୍ତ ସେମାନେ ପାଳନ କରନ୍ତି । ସେମାନେ ମୁକ୍ତିମଣ୍ଡପ ତଳେ ଝୁଲଣ ମଣ୍ଡପଠାରେ ନିଜ ଶରୀରରେ ରାଶିତେଲ ଲଗାଇ ମାର୍କଣ୍ଡ ପୁଷ୍କରିଣୀକୁ ସ୍ନାନ କରିବା ପାଇଁ ଯାଆନ୍ତି । ସେଠାରୁ ଫେରି ହସ୍ତପଦ ଧୌତ କରି ଶ୍ରୀମନ୍ଦିର ମଧ୍ୟକୁ ପ୍ରବେଶ କରି ଶାନ୍ତି ଉଦକପାନ କରନ୍ତି ।

(ଶ୍ରୀ.ସ୍ୱ. - ପୃ. ୪୭, ପୂ.ଓ.ଭା. - ପୃ.୨୦୩, ମ.ନ.- ପୃ. ୫୪) ।

**ଅଶ୍ୱ**-*ସଂ.ବି.*- ଘୋଟକ, ଘୋଡ଼ା । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ତିନିରଥରେ ଅଶ୍ୱ ସଂଯୋଜନା ପରେ ରଥ ଟଣା ହୁଏ ।

**ଅଶ୍ୱମେଧ**-*ସଂ.ବିଶ.*- ଯଜ୍ଞ ବିଶେଷ । ଏହି ଯଜ୍ଞ ପାଇଁ ବିଶେଷ ଲକ୍ଷଣ ଯୁକ୍ତ ଶ୍ୟାମଳ ବା ଶୁକ୍ଳ ଅଶ୍ୱକୁ ଅଭିମନ୍ତ୍ରିତ କରି ତା'କପାଳରେ ଜୟ ପତ୍ର ବାନ୍ଧି ଅବାଧରେ ଭ୍ରମଣ କରିବାକୁ ଛାଡି ଦିଆଯାଏ । ବର୍ଷକ ପରେ ଘୋଡା ଫେରି ଆସିଲେ କିମ୍ବା ତାକୁ କେହି ବୀର ଧରି ରଖିଲେ ସେ ବୀରକୁ ଜୟ କରି ଯଜ୍ଞ କର୍ତ୍ତା ସେ ଘୋଡାକୁ ତାହାଠାରୁ ଆଣେ । ସେହି ଘୋଡାକୁ ବଧ କରି ଏହି ଯଜ୍ଞ କରାଯାଏ । ଏହି ଯଜ୍ଞ ଦ୍ୱାରା ବ୍ରହ୍ମ ହତ୍ୟା ଓ ମହାପାତକରୁ ମୁକ୍ତି ମିଳେ । ଅତୀତରେ ରାଜଚକ୍ରବର୍ତ୍ତି ପାଇଁ ଅଧିକ ପୁଣ୍ୟ ଅର୍ଜନ ନିମନ୍ତେ ମଧ ରାଜାମାନେ ଅଶ୍ୱମେଧ ଯଜ୍ଞ କରୁଥିଲେ । ଶ୍ରୀକ୍ଷେତ୍ରର ଗୁଣ୍ଡିଚାମଣ୍ଡପରେ ଶ୍ରୀଜଗନ୍ନାଥଙ୍କ ପ୍ରତିଷ୍ଠା ସମୟରେ ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କଲା ପରେ ଯଜ୍ଞ ନୃସିଂହଙ୍କୁ ପୂଜା କରି ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ପ୍ରତିଷ୍ଠା କରିଥିଲେ । ସହସ୍ର ଅଶ୍ୱମେଧ ଯଜ୍ଞ ମହାବେଦୀ ରୂପେ କଳ୍ପିତ ।
(ଓ.ସାଂ.ଶ. - ପୃ. ୩୧, ପୂ.ଓ.ଭା. - ପୃ. ୬୧୬, ପୌ.(ବଂ.) - ପୃ. ୧୨୦, ଶ.କ. ୧ମ ଭାଗ - ପୃ. ୧୪୬) ।

**ଅଷ୍ଟଅର୍ଘ୍ୟ**-*ସଂ.ବି.*- ଜଳ, କ୍ଷୀର, କୁଶାଗ୍ର, ଘୃତ, ମଧୁ, ଦଧି, ରକ୍ତଚନ୍ଦନ ଓ କରବୀର । ପୂଜା, ଅର୍ଚ୍ଚନା ସମୟରେ ଏହାର ଆବଶ୍ୟକତା ପଡ଼ିଥାଏ ।

**ଅଷ୍ଟକ**-*ସଂ.ବି.*- ଆଠ ପଦିଆ ସଂସ୍କୃତ ଶ୍ଳୋକ । ଜଗଦ୍‌ଗୁରୁ ଶ୍ରୀଶଙ୍କରାଚାର୍ଯ୍ୟଙ୍କ ରଚିତ ଶ୍ରୀଜଗନ୍ନାଥାଷ୍ଟକ ବହୁ ଜନପ୍ରିୟ ଅଷ୍ଟକ ରୂପେ ପରିଚିତ ।
(ଶ.କ. ୧ମ - ପୃ.୧୪୮, ପୂ.ଓ.ଭା. - ପୃ. ୬୨୨, ପୌ.(ବଂ) ୧ମ - ପୃ.୧୨୬) ।

**ଅଷ୍ଟଗନ୍ଧ**-*ସଂ.ବି.*- ଚନ୍ଦନ, ଗୁଗ୍‌ଗୁଳ, କୁଙ୍କୁମ, ଅଗୁରୁ, ଗୋରଚନା, ଜାଇଫଳ, ଫୁଲ ଓ ଜଟା ମାଂସୀ । ଏହା ଶ୍ରୀମନ୍ଦିରର ବିଗ୍ରହମାନଙ୍କ ପୂଜାରେ ଲାଗିଥାଏ ।
(ପୌ. ୧ମ - ପୃ.୧୨୭) ।

**ଅଷ୍ଟଗୁଣ**-*ସଂ.ବି.*- ବ୍ରାହ୍ମଣଙ୍କ ଠାରେ ଏହି ଆଠଟି ଗୁଣ ରହିବା ଆବଶ୍ୟକ । ଦୟା, କ୍ଷମା, ଅନସୂୟା, ଅନାୟାସ, ଶୌଚ, ମଙ୍ଗଳ, ଅସ୍ପୃହା ଓ ଅକାର୍ପଣ୍ୟ । ଶ୍ରୀମନ୍ଦିରର ମୁକ୍ତିମଣ୍ଡପରେ ଯେଉଁ ଷୋଳଶାସନ ବ୍ରାହ୍ମଣମାନେ ବସନ୍ତି, ସେମାନେ ଏହି ଅଷ୍ଟଗୁଣର ଅଧିକାରୀ ହେବା ଦରକାର ।
(ପୌ. (ବ). - ପୃ. ୧୨୭, ଓ.ସାଂ.ଶ.- ପୃ.୩୨) ।

**ଅଷ୍ଟଚଣ୍ଡୀ** -ଦେ.ବି.- ଶ୍ରୀମନ୍ଦିରର ରତ୍ନସିଂହାସନ ରକ୍ଷଣାର୍ଥେ ଅଷ୍ଟଦିଗରେ ଯଥା ପୂର୍ବରେ ମା' ଚର୍ଚ୍ଚିକା, ପଶ୍ଚିମରେ ମା' ବିମଳା, ଉତ୍ତରରେ - ମା' ଅର୍ଦ୍ଧାଶନୀ, ଦକ୍ଷିଣରେ - ମା' ଦକ୍ଷିଣକାଳୀ, ଅଗ୍ନିକୋଣରେ - ମା' ମଙ୍ଗଳା, ନୈରିତ କୋଣରେ - ମା' ଭଦ୍ରକାଳୀ, ବାୟୁ କୋଣରେ- ମା' ସର୍ବମଙ୍ଗଳା, ଐଶାନ୍ୟ କୋଣରେ - ଆଲାମଚଣ୍ଡୀ ଅଛନ୍ତି ।
(କ୍ଷେ.ସ.) ।

**ଅଷ୍ଟଦଳ ପଦ୍ମ**-*ସଂ.ବିଶ.*- ଆଠଟି ପାଖୁଡ଼ାଯୁକ୍ତ ପଦ୍ମଫୁଲର ଚିତା ବା ଝୋଟି । ଭଗବାନ ଶ୍ରୀକୃଷ୍ଣଙ୍କର ଦୁଇନେତ୍ର, ନାଭି, ବଦନ, ଦୁଇଚରଣ, ଦୁଇକର, ମୋଟ ଆଠ ଗୋଟି ଅଙ୍ଗକୁ ଅଷ୍ଟଦଳପଦ୍ମ ସହିତ ତୁଳନା କରାଯାଏ । ଶ୍ରୀମନ୍ଦିରରେ ବିଭିନ୍ନ ପୂଜା ସମୟରେ ଅଷ୍ଟଦଳ ପଦ୍ମର ଚିତା ବା ମଣ୍ଡଳ କରାଯାଏ ।
(ପୂ.ଓ.ଭା. - ପୃ.୬୨୩) ।

**ଅଷ୍ଟଦିଗ ପାଳ**-*ସଂ.ବି.*- ଆଠଟି ଦିଗର ଅଧୀଶ୍ୱର । ଶ୍ରୀମନ୍ଦିରରେ ଥିବା ଅଷ୍ଟଦିଗପାଳ ଯଥା - ପୂର୍ବରେ ଇନ୍ଦ୍ର, ଅଗ୍ନି କୋଣରେ ଅଗ୍ନି, ଦକ୍ଷିଣରେ ଯମ, ନୈରିତରେ ନୈରିତ, ପଶ୍ଚିମରେ ବରୁଣ, ବାୟୁ କୋଣରେ ମରୁତ, ଉତ୍ତରରେ କୁବେର ଓ ଐଶାନ୍ୟକୋଣରେ ଈଶାନେଶ୍ୱର ।
(ପୌ., ୧ମ ଭାଗ - ପୃ. ୧୨୭) ।

**ଅଷ୍ଟଧାତୁ**-*ସଂ.ବି.*- ଆଠ ଗୋଟି ଧାତୁ ଯଥା- ସ୍ୱର୍ଣ୍ଣ (ସୁନା), ରୌପ୍ୟ (ରୂପା), ତାମ୍ର (ତମ୍ବା), ସୀସକ (ସୀସା), ଲୌହ (ଲୁହା), ରଙ୍ଗ

(ଟିଣ), କାନ୍ତଲୌହ ଓ ପାରଦ । ଶ୍ରୀମନ୍ଦିର ଚୂଡ଼ାରେ ଶୋଭା ପାଉଥିବା ନୀଳଚକ୍ର ଅଷ୍ଟଧାତୁରେ ନିର୍ମିତ ।
(ପୂ.ଓ.ଭା. - ପୃ. ୬୨୩, ପୌ. ୧ମ - ପୃ. ୧୩୭) ।

**ଅଷ୍ଟନାଗ**-*ସଂ.ବି.*- ହିନ୍ଦୁ ପୁରାଣମତରେ ପୃଥିବୀକୁ ଆଠ ଦିଗରେ ଧରିଥିବା ଆଠଗୋଟି ନାଗ, ଯଥା-ଅନନ୍ତ, ବାସୁକୀ, ପଦ୍ମ, ମହାପଦ୍ମ, ତକ୍ଷକ, କୁଳୀକ, କର୍କୋଟକ, ଶଙ୍ଖ । ଶ୍ରୀମନ୍ଦିରରେ ଇନ୍ଦ୍ରଧ୍ୱଜ ପୂଜା ସମୟରେ ଅଷ୍ଟନାଗଙ୍କୁ ସ୍ୱ ସ୍ୱ ନାମରେ ପୂଜା କରାଯାଇଥାଏ ।
(ଶ୍ରୀ.ସ୍ୱ.୨ୟ-ପୃ.୯୬, ପୂ.ଓ.ଭା. - ପୃ.୬୨୩/୮୬୯, ଓ.ସାଂ.ଶ.-ପୃ.୩୨) ।

**ଅଷ୍ଟପ୍ରହର**-*ସଂ.ବି.*- ଦିନ ଚାରି ପ୍ରହର ଓ ରାତି ଚାରି ପ୍ରହର । ଏହିପରି ଆଠ ପ୍ରହର। ଅହୋରାତ୍ର ବ୍ୟାପୀ ହେଉଥିବା ସଂକୀର୍ତ୍ତନକୁ ଅଷ୍ଟପ୍ରହର ସଂକୀର୍ତ୍ତନ ବା ଅଷ୍ଟପ୍ରହରୀ କୁହାଯାଏ । ରଥଯାତ୍ରା ସମୟରେ ଓ ନବକଳେବର ଦାରୁ ସଂଗ୍ରହ ସମୟରେ ଅଷ୍ଟପ୍ରହର ସଂକୀର୍ତ୍ତନ ହୋଇଥାଏ ।
(ପୂ.ଓ.ଭା. - ପୃ.୬୨୪) ।

**ଅଷ୍ଟବଟ ଦେବତା**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ କଳ୍ପବଟକୁ କେନ୍ଦ୍ରକରି ଯେଉଁ ବଟ ଦେବତାମାନେ ବିରାଜିତ ସେମାନେ ହେଲେ ବଟେଶ୍ୱର ମହାଦେବ, ବଟକୃଷ୍ଣ, ବଟବାଳମୁକୁନ୍ଦ, ବଟମାଧବ, ବଟଗଣେଶ, ବଟନାରାୟଣ, ବଟମାର୍କଣ୍ଡେୟ ଓ ବଟମଙ୍ଗଳା ।
(କ୍ଷେ.ସ.) ।

**ଅଷ୍ଟବସୁ**-*ସଂ.ବି.*- ଆଠ ସଂଖ୍ୟକ ବସୁ ଦେବତା। ଯଥା- ଅପ, ଧ୍ରୁବ, ସୋମ, ଅନଳ, ଅନିଳ, ଧରା, ପ୍ରତ୍ୟୁଷ ଓ ପ୍ରଭାସ । ଏମାନେ ଗଙ୍ଗାଙ୍କ ପୁତ୍ରଭାବେ ଜନ୍ମ ହୋଇଥିଲେ । ଶ୍ରୀମନ୍ଦିର ରାଜଗୁରୁଙ୍କ ପାଖରେ କାର୍ଯ୍ୟ କରୁଥିବା ଆଠ ଜଣ ବ୍ରାହ୍ମଣ। ଏମାନେ ମନ୍ଦିର ଭିତରେ କୌଣସି ଭୟକୁ ଖାତିରି ନ କରି ନିର୍ବିବାଦରେ ସମସ୍ତ ବ୍ୟବସ୍ଥା କରିଥାନ୍ତି ।
(ପୂ.ଓ.ଭା. - ପୃ. ୬୨୫, ଓ.ସାଂ.ଶ. - ପୃ. ୩୩, କ୍ର.ଓ.ଶ. - ପୃ. ୭୦, ପୌ.(ବଂ) ୧ମ ପୃ.୧୨୮) ।

**ଅଷ୍ଟବୈକୁଣ୍ଠ** - ସଂ.ବି.- ବୈକୁଣ୍ଠ ଅର୍ଥ କୁଣ୍ଠ ରହିତ ଅର୍ଥାତ୍ ଅକୁଣ୍ଠିତ ଭାବେ ଯିଏ ପୃଥିବୀକୁ ସୃଷ୍ଟି କରିଛନ୍ତି, ବିଷ୍ଣୁ । ବିଷ୍ଣୁଙ୍କ ପୁରୀ, ଗୋଲକଧାମ, ଶ୍ରୀ ବୈକୁଣ୍ଠ, କୈବଲ୍ୟ ବୈକୁଣ୍ଠ, କାରଣାର୍ଣ୍ଣବ ବୈକୁଣ୍ଠ, ଶେଷଶାୟୀ ବୈକୁଣ୍ଠ, ଶ୍ୱେତଦୀପ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, ଗର୍ଭୋଦକ ଶାୟୀ ବୈକୁଣ୍ଠ ଓ କୈଳାସ ବୈକୁଣ୍ଠ। ଶ୍ରୀମନ୍ଦିର ବାଇଶି ପାହାଚ ଚଉଦଭୁବନ ଏବଂ ଅଷ୍ଟ ବୈକୁଣ୍ଠର ପ୍ରତୀକରୂପେ କଳ୍ପିତ ବୋଲି କେହି କେହି ମତ ଦେଇଥାନ୍ତି।
(ପୂ.ଓ.ଭା.- ପୃ. ୫୯୧୫)

**ଅଷ୍ଟମୀ** - *ସଂ.ବି.* - ଅମାବାସ୍ୟା ବା ପୂର୍ଣ୍ଣମୀ ଠାରୁ ଅଷ୍ଟମ ଦିବସ। ବର୍ଷ ମଧ୍ୟରେ ଚବିଶଟି ଅଷ୍ଟମୀ ପଡୁଥିଲେ ମଧ୍ୟ ନିମ୍ନଲିଖିତ ଆଠଟି ଅଷ୍ଟମୀ ବିଶେଷ ପ୍ରସିଦ୍ଧ । ଚୈତ୍ର ଶୁକ୍ଳ ଅଷ୍ଟମୀ - ଅଶୋକାଷ୍ଟମୀ, ଆଷାଢ଼ ଶୁକ୍ଳଅଷ୍ଟମୀ- ପରଶୁରାମାଷ୍ଟମୀ, ଭାଦ୍ରବ କୃଷ୍ଣଅଷ୍ଟମୀ - ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ, ଭାଦ୍ରବ ଶୁକ୍ଳ ଅଷ୍ଟମୀ - ରାଧା ଜନ୍ମାଷ୍ଟମୀ, ଆଶ୍ୱିନ ଶୁକ୍ଳଅଷ୍ଟମୀ - ମହାଷ୍ଟମୀ (ଦୁର୍ଗାଷ୍ଟମୀ), କାର୍ତ୍ତିକ ଶୁକ୍ଳଅଷ୍ଟମୀ - ଗୋଷ୍ଠାଷ୍ଟମୀ ମାର୍ଗଶିର କୃଷ୍ଣାଷ୍ଟମୀ, ପ୍ରଥମାଷ୍ଟମୀ। ମାଘଶୁକ୍ଳଅଷ୍ଟମୀ - ଭୀଷ୍ମାଷ୍ଟମୀ । ଶ୍ରୀମନ୍ଦିରରେ ଏହି ଅଷ୍ଟମୀଗୁଡ଼ିକରେ ଭିନ୍ନ ଭିନ୍ନ ସ୍ୱତନ୍ତ୍ର ନୀତି ପାଳିତ ହୁଏ ।
(ପୂ.ଓ.ଭା. - ପୃ. ୬୨୬, ଶ.କ. ୧ମ - ପୃ. ୧୪୮) ।

**ଅଷ୍ଟଲୋହି**-*ସଂ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କର ଭଙ୍ଗାରୁଜା ମରାମତି କାମ କରୁଥିବା ସେବକ ।

**ଅଷ୍ଟଶମ୍ଭୁ**-*ସଂ.ବି.*- କୂର୍ମ ପୁରାଣ ଅନୁସାରେ ବ୍ରହ୍ମାଙ୍କ ମସ୍ତକରୁ ଜନ୍ମିତ ଅତିଶୟ ରୋଦନ କରୁଥିବା ରୁଦ୍ରଙ୍କୁ ବ୍ରହ୍ମ ରୋଦନରୁ ନିବୃତ୍ତ

କରାଇବା ଲାଗି ଆଠ ଗୋଟି ନାମ ପ୍ରଦାନ କରିଥିଲେ । ଯଥା- ଭବ, ଶର୍ବ, ଈଶାନ, ପଶୁପତି, ଭୀମ, ଉଗ୍ର, ମହାଦେବ ଓ ରୁଦ୍ର । ଶ୍ରୀକ୍ଷେତ୍ରରେ ବାଲିସାହିରେ ଥିବା ରାଜାଙ୍କର ପୁରୁଣା ନଅର ପାର୍ଶ୍ୱରେ ଅଷ୍ଟଶମ୍ଭୁ ମନ୍ଦିର ବିଦ୍ୟମାନ । ଅଷ୍ଟଶମ୍ଭୁ ମନ୍ଦିର ମଧ୍ୟରେ ଥିବା ଶକ୍ତି ଉପର ମଧ୍ୟଭାଗରେ ବୃହତ ଧବଳ ଶିବଲିଙ୍ଗ କୋକିଳେଶ୍ୱର ବିଦ୍ୟମାନ । ଏତଦ୍‌ବ୍ୟତୀତ ପିଙ୍ଗଳେଶ୍ୱର, ତୁରେଶ୍ୱର, କପିଳେଶ୍ୱର, ମହେଶ୍ୱର, ନାଟକେଶ୍ୱର, ଅର୍ଦ୍ଧନାରୀଶ୍ୱର, ମହାରୁଦ୍ରେଶ୍ୱର ପ୍ରଭୃତି ସାତୋଟି ଲିଙ୍ଗ ବେଷ୍ଟିତ ହୋଇଅଛନ୍ତି । ଏଥିରେ ପୂଜିତ ଲିଙ୍ଗଗୁଡ଼ିକ ଅନେକ ସମୟରେ ନିଜର ରଙ୍ଗ ବା କାନ୍ତି ବଦଳାଇଥାନ୍ତି ।

(ପୂ.ଓ.ଭା. - ପୃ.୭୧୫୨, କ୍ଷେ.ସ.) ।

**ଅଷ୍ଟାଙ୍ଗ**- *ସଂ.ବି.*- ଦେହର ଆଠଗୋଟି ଅଙ୍ଗ । ହାତ, ଛାତି, କପାଳ, ଆଖି, ହୃଦୟ, ତଣ୍ଟି, ବେକ ଓ ପଛ । ଶରୀରର ଏହି ଅଙ୍ଗମାନଙ୍କରେ ତିଳକ ଧାରଣ କରାଯାଏ । ଆଠଟି ଅଙ୍ଗ ଦ୍ୱାରା ସାଷ୍ଟାଙ୍ଗ ପ୍ରଣାମ କରାଯାଏ । ଯଥା- ହାତ, ପାଦ, ଜାନୁ, ଛାତି, ଚକ୍ଷୁ, ମସ୍ତକ ବାକ୍ୟ ଓ ମନ । ଯୋଗର ଆଠଟି ଅଙ୍ଗ ବା କ୍ରିୟା - ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି । ସାଧୁସନ୍ଥମାନେ ଅଷ୍ଟାଙ୍ଗ ପ୍ରଣିପାତ କରିଥାଆନ୍ତି ।

(ପୂ.ଓ.ଭା. - ପୃ.୬୨୭, ଶ.କ. ୧ମ - ପୃ. ୧୫୦) ।

**ଅଷ୍ଟାଙ୍ଗ ବିଧି**-*ଦେ.ବି.*- ରଥଯାତ୍ରାର ଆଠଟି ଅଙ୍ଗ ରହିଛି । ତାହାକୁ ଅଷ୍ଟାଙ୍ଗ ଯଥା- ସ୍ନାନ ଉତ୍ସବ, ଅନବସର, ନେତ୍ରୋତ୍ସବ, ଶ୍ରୀଗୁଣ୍ଡିଚା, ହେରୋତ୍ସବ, ଆଡ଼ପ ପର୍ବ, ବାହୁଡ଼ାଯାତ୍ରା ଓ ନୀଳାଦ୍ରିବିଜେ ଅଷ୍ଟାଙ୍ଗ ବିଧି ରୂପେ କଥିତ ।

(ଶ୍ରୀ.ଯ.ସେ.ପୂ.- ପୃ. ୬୫) ।

**ଅଷ୍ଟାଦଶାକ୍ଷରମନ୍ତ୍ର**-*ସଂ.ବି.*- ଗୋପୀଜନ ବଲ୍ଲଭ ଶ୍ରୀକୃଷ୍ଣଙ୍କ ମଧୁର ଭାବାତ୍ମକ ଉପାସନାର ଅଠର ଅକ୍ଷର ମନ୍ତ୍ରକୁ ମନ୍ତ୍ରରାଜ ବା ଅଷ୍ଟାଦଶାକ୍ଷର ମନ୍ତ୍ର କୁହାଯାଏ । 'ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନବଲ୍ଲଭାୟ ନମଃ ।' ଯଜ୍ଞରେ ନମଃ ସ୍ଥାନରେ ସ୍ୱାହା ହେବ ।

(ଓ.ସାଂ.ଶ. - ପୃ. ୩୬) ।

**ଅଷ୍ଟାଦଶ ଚିହ୍ନ**-*ସଂ.ବି.*- ପରମ ବିଷ୍ଣୁ ବା ଭଗବାନଙ୍କ ପାଦରେ ଥିବା ଅଠରଟି ଚିହ୍ନ ବା ଲକ୍ଷଣ । ଯଥା- କମ୍ବୁ, ଚକ୍ର, ପଦ୍ମ, କୁଳିଶ, ଅଷ୍ଟକୋଣ, ଉର୍ଦ୍ଧ୍ୱରେଖା, ତ୍ରିକୋଣ, ଧନୁ, ଧ୍ୱଜ, ସ୍ୱସ୍ତିକ, ମୀନ, କଳସ, ଯବ, ବିନ୍ଦୁ, ଅଙ୍କୁଶ, ଅର୍ଦ୍ଧେନ୍ଦୁ, ଗୋଷ୍ପଦ, ଓ ଅମ୍ବର ।

(ପୂ.ଓ.ଭା. - ପୃ. ୬୨୮, ଓ.ସାଂ.ଶ. - ପୃ. ୩୫) ।

**ଅଷ୍ଟାଦଶପୁରାଣ**-*ସଂ.ବି.*- ପୁରାତନ କାଳରେ ଘଟିଥିବା ଘଟଣା । ଅତି ପ୍ରାଚୀନ କାଳରେ ପ୍ରସିଦ୍ଧ ବ୍ୟକ୍ତି, ସମାଜ, ଧର୍ମ, ଓ ଦେବତା ଆଦିଙ୍କର ଜନ୍ମ ଅବଲମ୍ବନରେ ରଚିତ୍ ଆଖ୍ୟାୟିକା । ସଂସ୍କୃତ ଭାଷାରେ ଅଠରଟି ପୁରାଣ ରଚିତ । ଯଥା- ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଲିଙ୍ଗ, ବାୟୁ, ନାରଦୀୟ, ଭାଗବତ, ଅଗ୍ନି, ସ୍କନ୍ଦ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡେୟ, ବାମନ, ବରାହ, ମତ୍ସ୍ୟ, କୂର୍ମ ଓ ବ୍ରହ୍ମାଣ୍ଡ ପୁରାଣ । ବିଶେଷ କରି ମତ୍ସ୍ୟପୁରାଣ, ବିଷ୍ଣୁ ପୁରାଣ, ପଦ୍ମ ପୁରାଣ, ବ୍ରହ୍ମ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ଅଗ୍ନି ପୁରାଣ, ନାରଦ ପୁରାଣ ଓ ସ୍କନ୍ଦ ପୁରାଣ ପ୍ରଭୃତିରେ ଶ୍ରୀ ଜଗନ୍ନାଥଙ୍କ ଉତ୍ପତ୍ତି, ପ୍ରତିଷ୍ଠା, ବିବିଧ ପର୍ବପର୍ବାଣିର ବିଶେଷ ବର୍ଣ୍ଣନା କରାଯାଇଅଛି ।

(ଓ.ସାଂ.ଶ. - ପୃ.୩୫, ପୂ.ଓ.ଭା. - ପୃ.୬୨୮, ପୌ. ୧ମ - ପୃ.୧୨୯) ।

**ଅଷ୍ଟାଦଶ ସିଦ୍ଧି**-*ସଂ.ବି.*- ଭଗବାନ ପୁରୁଷୋତ୍ତମ ଅଠରଟି ସିଦ୍ଧିର ଅଧିକାରୀ । ଯଥା- ଅଣିମା, ଲଘିମା, ମହିମା, ପ୍ରାପ୍ତି, ପ୍ରକାମ୍ୟ, ଈଶିତା, ବଶିତା, କାମ ବସାୟିତା, ଦୂରଶ୍ରବଣ, ଦୂରଦର୍ଶନ, ମନୋଜବ, କାମରୂପ, ପରକାୟ ପ୍ରବେଶନ, ଇଚ୍ଛାମୃତ୍ୟୁ, ସଂକଳ୍ପସ୍ୱରୂପ ସିଦ୍ଧି ଓ ବଚନସିଦ୍ଧି ।

(ଓ.ସାଂ.ଶ.-ପୃ.୩୬, ପୂ.ଓ.ଭା. - ପୃ.୬୨୮) ।

**ଅଷ୍ଟୈଶ୍ୱର୍ଯ୍ୟ**-*ସଂ.ବି.*- ଦେବତା ଓ ଯୋଗସିଦ୍ଧ ପୁରୁଷମାନଙ୍କର ସାଧନଲବ୍ଧ ଆଠଗୋଟି ଅନନ୍ୟ ସୁଲଭ ସିଦ୍ଧି ବା ବିଶେଷତ୍ୱ । ଅଷ୍ଟୈଶ୍ୱର୍ଯ୍ୟ - ଅଣିମା - ଅତିସୂକ୍ଷ୍ମ ଆକାର ଧାରଣ କରିବା ସିଦ୍ଧି, ଲଘିମା - ଅତିଲଘୁ ବା ହାଲୁକା ହୋଇ ସୂର୍ଯ୍ୟଲୋକ ପର୍ଯ୍ୟନ୍ତ ଉଠିଯିବାର କ୍ଷମତା, ମହିମା- ଅତିବୃହତ୍ ଆକାର ଧାରଣ କରିବା କ୍ଷମତା, ପ୍ରାପ୍ତି - ସବୁ ପାଇବାର ଶକ୍ତି, ପ୍ରାକାମ୍ୟ- ଯଥେଚ୍ଛାଚରିତା, ଈଶିତା - ସମସ୍ତଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବା ଶକ୍ତି, ବଶିତା- ସମସ୍ତପ୍ରାଣୀଙ୍କୁ ବଶ କରିବାର ଶକ୍ତି ଓ କାମାବସାୟିତା - ଯେଉଁ ସୁଖ ଭୋଗ କରିବାକୁ ଇଚ୍ଛା ତାହାର ପୂରଣ । ଶ୍ରୀମନ୍ଦିରରେ ଥିବା ୨୨ ପାହାଚ ଚଉଦ ଭୁବନ ଓ ଅଷ୍ଟୈଶ୍ୱର୍ଯ୍ୟର ପ୍ରତୀକ ରୂପେ କେହି କେହି ଗବେଷକ ମତ ଦେଇଥାନ୍ତି ।
(ପୂ.ଓ.ଭା. - ପୃ. ୬୨୯, ଶ.କ. ୧ମ - ପୃ.୨୪, ପୌ. ୧ମ (ବଂ.) - ପୃ.୧୨୯, କ୍ର.ଓ.ଶ. - ପୃ.୬୯) ।

**ଅସବ୍ୟ**-*ଦେ.ବି.*- ବାମ ପାର୍ଶ୍ୱ, ବାମ ପାଖ । ପୂଜା, ବସୁଦେବ, ଯଜ୍ଞ ଓ ଶ୍ରାଦ୍ଧ ସମୟରେ ଉପବୀତକୁ ପରିବର୍ତ୍ତନ କରିବା ବିଧି । ଶ୍ରୀମନ୍ଦିରରେ ପୂଜା ଓ ଶ୍ରାଦ୍ଧ ସମୟରେ ଏହି ବିଧି ଆଚରଣ କରାଯାଏ ।
(ପୂ.ଓ.ଭା. - ପୃ. ୬୩୬) ।

**ଅସିଦ୍ଧ**-*ସଂ.ବି.*- ଅସମ୍ପାଦିତ, ଅସିଝା, ଅସମ୍ପୂର୍ଣ୍ଣ, ଅପକ୍ୱ, ସିଦ୍ଧରହିତ, ଅପ୍ରାମାଣିକ । ଯେଉଁଦ୍ରବ୍ୟ ଭୋଗ ପାଇଁ ଉପଯୁକ୍ତ ନୁହେଁ ।
(ପୂ.ଓ.ଭା. - ପୃ. ୬୪୯, ଶ.କ. ୧ମ - ପୃ. ୧୫୩) ।

**ଅସ୍ଥାୟୀ ସିଂହାସନ**-*ଦେ.ବି.*- ରତ୍ନସିଂହାସନଠାରୁ କିଛି ଦୂରରେ ମୁଖଶାଳା ଭିତରେ ନିର୍ମାଣ କରାଯାଇଥିବା ସିଂହାସନ । ଅତୀତରେ ଷାଠିଏ ଜଣ ମହାରଣାଙ୍କ ଦ୍ୱାରା ପନ୍ଦର ଦିନ ଅହୋରାତ୍ର ଶ୍ରମ କରି ଦୁଇ ଲକ୍ଷ ଛଅସ୍ତରୀ ହଜାର ଟଙ୍କା ବ୍ୟୟରେ ଏହା ନିର୍ମାଣ କରାଯାଇଥିଲା । ସତର ଫୁଟ ସାତ ଇଞ୍ଚ ଲମ୍ବ, ସାତ ଫୁଟ ଓସାର ଓ ତିନି ଫୁଟ ଉଚ୍ଚତା ବିଶିଷ୍ଟ ଶାଳ, ଶାଗୁଆନ କାଠରେ ନିର୍ମିତ ପ୍ରାୟ ଦୁଇ ଟନ୍ ଓଜନର ଏହି ଅସ୍ଥାୟୀ ସିଂହାସନ ମୂଳ ରତ୍ନସିଂହାସନଠାରୁ ଅପେକ୍ଷାକୃତ ଛୋଟ ଓ ସିଂହାସନ ପଟା ଉପରେ ୨୭୫ କିଲୋଗ୍ରାମ ପିତଳପାତ ଛାଉଣୀ କରାଯାଇଥିଲା । ଯାହାର ମୂଲ୍ୟ ଟ୮୪୦୦୦.୦୦ ଥିଲା । ୧୯୯୨ ମସିହା ନଭେମ୍ବର ୨୯ ତାରିଖ ଗୁରୁବାର ଦିନ ୧୨ଟା ୨୨ମିନିଟରୁ ଅପରାହ୍ନ ୪ଟା ୪୫ ମଧ୍ୟରେ ଶ୍ରୀଜୀଉ ଅସ୍ଥାୟୀ ସିଂହାସନକୁ ସ୍ଥାନାନ୍ତରିତ ହୋଇଥିଲେ ଓ ପ୍ରତିଷ୍ଠା କାର୍ଯ୍ୟ ଚାଳିଶି ଜଣ ପୂଜାପଣ୍ଡା ୧୦ ଘଣ୍ଟା ଧରି ହୋମାଦି କାର୍ଯ୍ୟ କରିଥିଲେ । ୧୯୯୩ ମସିହା ଜୁନ୍ ୪ତାରିଖରେ ଶ୍ରୀଜୀଉଙ୍କ ଦେବସ୍ନାନ ପୂର୍ଣ୍ଣିମା ଦିନ ଶ୍ରୀଜୀଉ ସ୍ନାନବେଦୀକୁ ଯିବା ପରେ ଏ ସିଂହାସନ ଭଙ୍ଗାଯାଇଥିଲା । ଏହି ଅସ୍ଥାୟୀ ସିଂହାସନ ଭଙ୍ଗାଯିବା ପରେ ତାକୁ ପୁନଃ ନିର୍ମାଣ କରାଯାଇ ନୀଳାଦ୍ରିବିହାର ପରିସର ମଧ୍ୟରେ ଏକ ଅତ୍ୟାଧୁନିକ କାଚଘରେ ପ୍ରଦର୍ଶନ ପାଇଁ ରଖାଯାଇଛି ।
(କ୍ଷେ.ସ.) ।

**ଅହିଆ**-*ଦେ.ବି.*- ରୋଷ ଶାଳାରେ ଡାଲି ଓ ତରକାରୀ ପ୍ରସ୍ତୁତ ପାଇଁ ଉଦ୍ଦିଷ୍ଟ ସ୍ଥାନ, ଯେଉଁଠାରେ ଚୁଲିରୁ ବାହାରୁ ଥିବା ଜଳନ୍ତା ଅଙ୍ଗାର ରଖି ରନ୍ଧାଯାଏ ।
(କ୍ଷେ.ସ.) ।

**ଅହୁଣିଆ**-*ଦେ.ବି.*- ଶ୍ରୀଜୀଉଙ୍କ ପାଖରେ ମଣୋହି ହୋଇ ନ ଥିବା ଭୋଗ ଦ୍ରବ୍ୟ ।
(ପୂ.ଓ.ଭା.- ପୃ.୫୧୮) ।

**ଅହୁଣିଆ କୂଅ**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା ଗଙ୍ଗାଯମୁନା କୂଅକୁ ଅହୁଣିଆ କୂଅ କୁହାଯାଏ । ଏହି କୂଅର ଜଳରେ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ପ୍ରସ୍ତୁତ କରାଯାଇଥାଏ ।
(କ୍ଷେ.ସ.) ।

**ଅହୁଣିଆ ଛତାର**-*ଦେ.ବି.*- ଶ୍ରୀମନ୍ଦିରରେ ବିଶେଷ ଦିନମାନଙ୍କରେ ପର୍ବାଣି ଭୋଗ ହୁଏ । ଏହି

ସେବକ ଘଣ୍ଟ ଛତା ଧରି ଭୋଗ ବାଟଠାରୁ ଜୟ ବିଜୟ ଦ୍ୱାର ପର୍ଯ୍ୟନ୍ତ ଭୋଗ ଆଗରେ ଯାଇଥାନ୍ତି । ସ୍ନାନପୂର୍ଣ୍ଣିମା, ପୁଷ୍ୟାଭିଷେକ ଓ ନୀଳାଦ୍ରି ମହୋଦୟରେ ଜଳଛେକ ଆସିଲା ବେଳେ ଛତା ଧରି ଆଗରେ ଯାଆନ୍ତି । ଦଣ୍ଡଛତ୍ର ଲାଗି ଓ ପୁଷ୍ୟାଭିଷେକରେ ଏହି ସେବକ ଛତା ମୁଦିରସ୍ତ ହାତକୁ ବଢ଼ାଇ ଦିଅନ୍ତି । ବାମନଜନ୍ମ ବେଶରେ ପୁଷ୍ପାଳକ ହାତକୁ ଛତା ବଢ଼ାଇଥାନ୍ତି ।
(ଶ୍ରୀ.ସ୍ୱ. - ପୃ. ୬୪) ।

**ଅହ୍ଲୁଣିଆ ପରିଛା**-*ଦେ.ବି.*- ଶ୍ରୀମନ୍ଦିରରେ ଅହ୍ଲୁଣିଆ ରୋଷ କରିବା ତତ୍ତ୍ୱାବଧାରକ ।
(ଶ୍ରୀ.ଜି. ୧୩୩)

**ଅହ୍ଲୁଣିଆ ପାଣି**-*ଦେ.ବି.*- ଧୂପ ପୂର୍ବରୁ ଭିତର ସ୍ଥାନ ଧୂଆ ହେବା ନିମନ୍ତେ ବ୍ୟବହୃତ ପାଣି ।
(ପୁ.ବୋ. - ପୃ. ୧୫୩) ।

**ଅହ୍ଲୁଣିଆ ସଙ୍ଖୁଡ଼ି**-*ଦେ.ବି.*- ବର୍ଷ ମଧ୍ୟରେ ଗୋଟିଏ ଦିନ (ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ବାମନ ଜନ୍ମ ବା ଇନ୍ଦ୍ରଧ୍ୱଜ ପୂଜାଦିନ) ରୋଷ ପାଇକ ବା ଅନ୍ନ ମହାସୁଆର ଦୁଇଓଳି ଅନ୍ନ ଇନ୍ଦ୍ରଧ୍ୱଜ ପୂଜା ନିମନ୍ତେ ଚାହାଣୀ ମଣ୍ଡପଠାରେ ବଡଛତା ମଠ କୋଣରେ କୋଠ ସୁଆଁସିଆ କାଠ ଗୟଳରେ ସପ୍ତମେଘ ବାଉଁଶରେ ତିଆରି କରି ପୋତିଥିବା ସ୍ଥାନକୁ ନିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୬) ।

**ଅହେତୁକୀ ଭକ୍ତି**-*ସଂ.ବି.*- ନିଷ୍କାମଭକ୍ତି । ଯେଉଁ ଭକ୍ତିରେ ଭକ୍ତ କୌଣସି କାମନା ରଖେନାହିଁ । ଶ୍ରୀକୃଷ୍ଣଙ୍କ ପ୍ରୀତି କାମନା ହିଁ ଯେଉଁ ଭକ୍ତିର ପ୍ରବର୍ତ୍ତକ ତାହା ଅହୈତୁକୀ ଭକ୍ତି ବା ଶୁଦ୍ଧା ଭକ୍ତି ଅଟେ ।
(ଓ.ସାଂ.ଶ.- ପୃ.୩୮, ପୂ.ଓ.ଭା. - ପୃ.୬୭୪) ।



# ଆ

**ଆଇଖାଡ଼ି**-*ଦେ.ବି.*- ଦହି ମନ୍ଥନ ପାଇଁ ବ୍ୟବହୃତ କାଠି ବା ଖାଡ଼ି ।
(ପୂ.ଓ.ଭା. - ପୃ. *୬୭୬*, ପ୍ର.ଅ. - ପୃ. ୨୨୯) ।

**ଆଇତୋଟା**-*ଦେ.ବି.*- ଶ୍ରୀକ୍ଷେତ୍ରର ଗୁଣ୍ଡିଚା ମଣ୍ଡପ ନିକଟସ୍ଥ ଉପବନ ।
(ପ୍ର.ଅ. - ପୃ. ୨୨୯) ।

**ଆକଟ**-*ଦେ.ବି.*- ସତର୍କ, କାଏଦା, ତାଗିଦ୍, ତୀବ୍ର ଆଦେଶ, ଅଟକ, ନିଷେଧ, କଠୋର ବିଧି, ଅନୁଶାସନ, କାଇଦା, ଅଲଂଘ୍ୟ ବିଧି ।
(ପୂ.ଓ.ଭା. - ପୃ. *୬୮୩*, ପ୍ର.ଅ. - ପୃ. ୨୩୧, କ୍ରୁ.ଓ.ଶ. ୧ମ - ପୃ. *୭୮*) ।

**ଆକଟଦର୍ଶନ**-*ଦେ.ବି.*- ଗୁରୁଜନାଦିଙ୍କର ଅଧସ୍ତନମାନଙ୍କ ପ୍ରତି କଠୋର ବିଧି, ଶାସନ । ଅଲଂଘ୍ୟ ବିଧି, ତୀବ୍ର ଆଦେଶ, ଜରୁରୀ, କଡ଼ା ନିର୍ଦ୍ଦେଶ । ଶ୍ରୀମନ୍ଦିରରେ ପ୍ରଚଳିତ ଶାସ୍ତ୍ରାନୁମୋଦିତ ନୀତିନିୟମ ବିଧିବିଧାନ ଅନୁସାରେ ଠାକୁରଙ୍କୁ ସାମାଜିକ ନିୟମ ଲଙ୍ଘନ ନ କରି ଦର୍ଶନ କରିବା ହିଁ ଆକଟ ଦର୍ଶନ । ଯଯାତିଙ୍କ ସମୟରୁ ଶଙ୍କରାଚାର୍ଯ୍ୟଙ୍କର ଆକଟ ଦର୍ଶନ ନିର୍ଦ୍ଦେଶନାମାକୁ ଶ୍ରୀମନ୍ଦିରର ସମସ୍ତ ସେବକ ସମ୍ମାନର ସହ ପାଳନ କରୁଥିଲେ ଏବଂ ଆକଟ ଦର୍ଶନ କରାଉଥିଲେ । ରଥଯାତ୍ରା, ନବକଳେବର ତଥା ଠାକୁର ଯେତେବେଳେ ବାହାର ଯାତ୍ରା କରୁଛନ୍ତି ଶଙ୍କରାଚାର୍ଯ୍ୟଙ୍କ ଆକଟଦର୍ଶନ ଏକାନ୍ତ ଗ୍ରହଣୀୟ ।
(ମା.ପା-ପୃ.୪ / ଶ୍ରୀଜଗନ୍ନାଥ ୨୦୧୪ ପୂଜା ସଂଖ୍ୟା ପୃ.୪ ) ।

**ଆକାମାବୈ**-*ସଂ.ବି.*- ଆ-ଆଷାଢ଼, କା-କାର୍ତ୍ତିକ, ମା-ମାଘ, ବୈ-ବୈଶାଖ । ଆଷାଢ଼, କାର୍ତ୍ତିକ, ମାଘ ଓ ବୈଶାଖ - ଏହି ଚାରି ମାସର ପ୍ରଥମ ଅକ୍ଷର ଚତୁଷ୍ଟୟ । ଏହି ଚାରି ମାସ ପୁଣ୍ୟ ମାସ । ଏହି ମାସମାନଙ୍କରେ ଲୋକେ ଧର୍ମ କାର୍ଯ୍ୟ କରି ପୁଣ୍ୟ ସଞ୍ଚୟ କରିଥାନ୍ତି । ଏହି ଚାରି ମାସ ଓ ଏହାର ପୂର୍ଣ୍ଣିମାରେ କୃତ ବ୍ରତଦାନାଦି ମହାପୁଣ୍ୟପ୍ରଦ । ମତ୍ସ୍ୟ ପୁରାଣରେ ବର୍ଣ୍ଣିତ ଅଛି ବିଷୁବ ସଂକ୍ରାନ୍ତିରେ ଦାନ ଧର୍ମାଦି କଲେ ଶତସହସ୍ର ଆକାମାବୈ ଫଳ ଲାଭ ହୁଏ । ଏହି ଦିନମାନଙ୍କରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ଲାଗି ବହୁଭକ୍ତ ଶ୍ରୀକ୍ଷେତ୍ରକୁ ଆସି ଦାନଧର୍ମ କରିଥାଆନ୍ତି ।
(ପୂ.ଓ.ଭା. - ପୃ. *୬୮୬*, ପ୍ର.ଅ. ୧ମ - ପୃ.୨୩୨, କ୍ରୁ.ଓ.ଶ. - ପୃ.୭୯) ।

**ଆକାଶ ଦୀପ**-*ସଂ.ବି.*- ପୋତା ବାଉଁଶ ଉପରେ ଲଟକା ଯାଇଥିବା ଦୀପ ବା ଆଲୋକ । ରାତିରେ ସମୁଦ୍ରରେ ନାବିକମାନଙ୍କୁ ବହୁ ଦୂରରୁ ଦେଖା ଯାଉ ଥିବା ଭଳି କୌଣସି ଉଚ୍ଚ ସ୍ଥାନରେ ଜଳା ଯାଉଥିବା ଉଜ୍ଜ୍ୱଳ ଆଲୋକ । ଦୂର ଦେଶକୁ ଇସାରା ଦ୍ୱାରା ସମ୍ବାଦ ପଠାଇବା ପାଇଁ ପର୍ବତାଦି ଉପରେ ଜଳା ଯିବା ଆଲୋକ । କାର୍ତ୍ତିକ ମାସ ସଂଧ୍ୟା ସମୟରେ ଅଗଣା ବା ଦାଣ୍ଡରେ ଶଗଡ଼ି ଓ ଦଉଡ଼ି ଲାଗିଥିବା ଏକ ଉଚ୍ଚ ବାଉଁଶ ପୋତା ଯାଏ ଏବଂ ଛିଦ୍ର ହୋଇଥିବା ଗୋଟିଏ ହାଣ୍ଡି ମଧ୍ୟରେ ଲକ୍ଷ୍ମୀ-ନାରାୟଣଙ୍କର ଉଦ୍ଦେଶ୍ୟରେ ଘିଅ ଦୀପ ଜାଳି ଶଗଡ଼ି ସହାଯ୍ୟରେ ତାକୁ ବାଉଁଶ ଅଗକୁ ଟାଣି ଝୁଲାଇ ଦିଆଯାଏ । କାର୍ତ୍ତିକ ମାସରେ ବିଷ୍ଣୁ ପ୍ରତିମୂର୍ତ୍ତିର ସମାନ ଉଚ୍ଚରେ ଯେଉଁ ପ୍ରଦୀପ ଦିଆଯାଏ, ତାହା ଆକାଶ ଦୀପ । ବାଉଁଶର ଶୀର୍ଷ ଭାଗରେ ଦେବତାମାନଙ୍କ ଉଦ୍ଦେଶ୍ୟରେ ଆଶ୍ୱିନ ସଂକ୍ରାନ୍ତି ଠାରୁ କାର୍ତ୍ତିକ ମାସର ପ୍ରତି

ସନ୍ଧ୍ୟାରେ ଆକାଶରେ ବା ବିଷ୍ଣୁଙ୍କ ମନ୍ଦିରରେ ପ୍ରଦୀପ ଦିଆଯାଏ ।
(ପୌ.ବ. - ପୃ.୧୪୩, ପୂ.ଓ.ଭା. - ପୃ. ୬୮୯, ପ୍ର.ଅ. - ପୃ. ୨୩୩) ।

**ଆଖଡ଼ା**-*ଦେ.ବି.*- ବ୍ୟାୟାମ ଓ ମଲ୍ଲ ବିଦ୍ୟା ଅଭ୍ୟାସ କରିବା ସ୍ଥାନ । ନୃତ୍ୟ ଗୀତାଦି ଅଭ୍ୟାସ କରିବା ସ୍ଥଳ । ଏହା ଏକ ପ୍ରତିଷ୍ଠାନ ଯାହା ଅଧୀନରେ କେତେଗୁଡ଼ିଏ ଜାଗାଘର ଥାଏ । ଏକ ସମ୍ପ୍ରଦାୟର ବୈରାଗୀ ବା ବୈଷ୍ଣବମାନଙ୍କର ମିଳନ ସ୍ଥାନ । ଆଖଡ଼ାକୁ କୁମାରୀମାନଙ୍କ ପ୍ରବେଶ ନିଷିଦ୍ଧ । ପୁରୀରେ ବଡ଼ ଆଖଡ଼ା ଓ ସାନ ଆଖଡ଼ା ମଠ ଅଛି । ଶ୍ରୀମନ୍ଦିରକୁ ଆସୁଥିବା ସାଧୁସନ୍ଥମାନେ ଏହିଠାରେ ଅବସ୍ଥାନ କରୁଥିଲେ ।
(ପୂ.ଓ.ଭା. - ପୃ. ୬୯୮/୬୯. ପୌ.ବ. ୧ମ - ପୃ. ୧୪୩, ପ୍ର. ଅ. ୧ମ - ପୃ.୨୩୬, ପୁ.ବୋ - ପୃ.୩୪, ଶ୍ରୀ.ଶ. - ପୃ.୨୯) ।

**ଆଖେଟକ ପର୍ବ**-*ସଂ.ବି.*- ପୁରୀ ଜିଲ୍ଲାରେ ପାଇକମାନଙ୍କର ଏକ ପର୍ବ । ଶ୍ରାବଣ ଶୁକ୍ଳ ତ୍ରୟୋଦଶୀ ଦିନ ଏମାନେ ନିଜ ନିଜର ଅସ୍ତ୍ରଶସ୍ତ୍ରାଦି ପୂଜା କରନ୍ତି । ପାଇକମାନେ ଶାନ୍ତି ସମୟରେ ବୃତ୍ତିଗତ କାର୍ଯ୍ୟ କରିବା ବା କୃଷି କାର୍ଯ୍ୟ କରନ୍ତି, କିନ୍ତୁ ଯୁଦ୍ଧ ସମୟରେ ଗଜପତି ମହାରାଜଙ୍କୁ ସାହାଯ୍ୟ କରନ୍ତି ଓ ଯୁଦ୍ଧରେ ଯୋଗଦିଅନ୍ତି । ଏମାନଙ୍କ ଶିକ୍ଷା ଓ ତାଲିମ ପାଇଁ ଗଜପତି ସାହାଯ୍ୟ କରିଥାଆନ୍ତି ।
(ପୂ.ଓ.ଭା. - ପୃ. ୭୦୫, ପ୍ର.ଅ. ୧ମ - ପୃ.୨୩୭) ।

**ଆଜ୍ଞାମାଳ**-*ଦେ.ବି.*- ଦେବତାଙ୍କ ଆଜ୍ଞା ଚିହ୍ନ ସ୍ୱରୂପ ଆଜ୍ଞା ପାଳନକାରୀ ବ୍ୟକ୍ତି ନିକଟକୁ ଆଜ୍ଞା ସଙ୍ଗେ ପଠାଯାଉଥିବା ଦେବତାଙ୍କର ଫୁଲମାଳ । ଏହା ଏକ ଆଦେଶ ନାମା । ଶ୍ରୀମନ୍ଦିରର ପ୍ରତ୍ୟେକ ନୀତିକାନ୍ତି ଓ ପୂଜା ପାର୍ବଣରେ ପ୍ରଭୁଙ୍କର ଆଜ୍ଞାମାଳା ନ ମିଳିଲେ ପୂଜା କାର୍ଯ୍ୟ ହୋଇ ନ ଥାଏ ।
ପ୍ରଭୁ ହେଉଛନ୍ତି ରାଜାଧିରାଜ ଶ୍ରୀପୁରୁଷୋତ୍ତମ । ସେ ନିଜେ ସମସ୍ତ କାର୍ଯ୍ୟ ନିର୍ଦ୍ଦେଶ ଦ୍ୱାରା କରାନ୍ତି । ଯେପରି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଶ୍ରୀବିଗ୍ରହଙ୍କର ମୂର୍ତ୍ତି ଗଠନରୁ ଆରମ୍ଭ କରି ଯାନିଯାତ୍ରା ଖଞ୍ଜିବା ପର୍ଯ୍ୟନ୍ତ ସବୁ ହିଁ ପ୍ରଭୁଙ୍କ ନିର୍ଦ୍ଦେଶ, ସେହିଭଳି ଅନନ୍ତ କାଳରୁ ଚଳିଆସିଥିବା ଯାନିଯାତ୍ରାଗୁଡ଼ିକ ଆଜ୍ଞାମାଳ ମାଧ୍ୟମରେ ପ୍ରତିମା, ଜଡ଼ ଓ ଚେତନ ଦ୍ୱାରା ହିଁ କରାଇଥାନ୍ତି । ତାହା ହିଁ ଆଜ୍ଞାମାଳ ପରମ୍ପରାର ବୈଶିଷ୍ଟ୍ୟ ଓ ରହସ୍ୟ । ଏହି ଆଜ୍ଞାମାଳ ମାଧ୍ୟମରେ ଯେଉଁ ଯାନିଯାତ୍ରା ପାଳିତ ହୁଏ, ସେଗୁଡ଼ିକ ବହୁ ଆଧାର ଭିତ୍ତିକ । ରାଷ୍ଟ୍ରୀୟ ସଂହତି, ସାମାଜିକ ସଂହତି, ସମାଜରେ ପରସ୍ପର ପ୍ରତି ଅତୁଟ ଅନାବିଳ ସ୍ନେହ ସମ୍ପର୍କ, ଆଦର୍ଶ ପାରିବାରିକ ସଂପ୍ରୀତି ଓ ଲୋକଶିକ୍ଷା, ଜନହିତ, ବୀରତ୍ୱ, ମର୍ଯ୍ୟାଦା, ସୁରକ୍ଷା, ରୋଗନିରୋଧ, ଆରୋଗ୍ୟ ବର୍ଦ୍ଧନ, ସହଯୋଗ, ସାହାଯ୍ୟ, ସେବକ ପ୍ରତି ଅନୁଗ୍ରହ ଆଦି ଆଧାର ଭିତ୍ତିକ ବାର୍ତ୍ତା ଦେବା ହିଁ ଆଜ୍ଞାମାଳର ରହସ୍ୟ ।
ଏହି ଆଜ୍ଞାମାଳ ବ୍ୟତୀତ ଶ୍ରୀକୃଷ୍ଣଜନ୍ମ, ଶ୍ରୀ ବାମନଜନ୍ମ ଓ ଶ୍ରୀରାମଜନ୍ମରେ ଶ୍ରୀଜଗନ୍ନାଥଙ୍କଠାରୁ ଧଣ୍ଡି ପ୍ରସାଦ ଆଣି ଶ୍ରୀମଦନମୋହନଙ୍କୁ ଦିଆଯାଏ । ତାହା ମହାପ୍ରଭୁଙ୍କ ପ୍ରତ୍ୟକ୍ଷ ଆଜ୍ଞା ଅଟେ । କିନ୍ତୁ ମାଳା ପର୍ଯ୍ୟାୟ ଚୁକ୍ତି ହୋଇ ନ ଥିବାରୁ ଏହା ଆଜ୍ଞାମାଳ ବୋଲି ଉଲ୍ଲେଖ ନାହିଁ । ସେହିପରି ଶ୍ରୀକୃଷ୍ଣଲୀଳା, ଶ୍ରୀରାମଲୀଳାରେ ବିଭିନ୍ନ ସାହିରୁ ବାହାରି ଥିବା ସାହିଯାତ୍ରା ପାଇଁ ଆଖେଡ଼ାର ସାହି ନାଏକମାନଙ୍କୁ 'ରେଖ ସୁନ୍ଦରୀ' ଶ୍ରୀ ବିଗ୍ରହମାନଙ୍କଠାରୁ ପ୍ରତ୍ୟକ୍ଷ ଆଜ୍ଞାରୂପୀ 'ନାଲି ଓ କଳା କନା' ଦିଆଯାଉଥିଲେ ମଧ ତାହା ଆଜ୍ଞାମାଳା ପର୍ଯ୍ୟାୟରେ ଆସୁ ନ ଥିବାରୁ ତାହା ଆଜ୍ଞାମାଳା ହିସାବରେ ଉଲ୍ଲେଖ କରାଯାଇନାହିଁ । ଶ୍ରୀମନ୍ଦିରରେ ପ୍ରଚଳିତ ବ୍ୟବସ୍ଥାନୁସାରେ ଶହେଅଣଚାଳିଶ ଥର ଆଜ୍ଞାମାଳ ଦ୍ୱାରା ବିଭିନ୍ନ ନୀତି ସଂପାଦିତ ହେଉଥିବାର ପ୍ରମାଣ ଏ ପର୍ଯ୍ୟନ୍ତ ମିଳିଅଛି । ସତେଇଶ ଠାକୁର ଠାକୁରାଣୀଙ୍କ ଚଳନ୍ତି

ପ୍ରତିମାମାନେ ସାମୂହିକ ଓ ବ୍ୟବସ୍ଥାଗତ ଭାବରେ ତଥା ଆଠ ଥର ଜଡ଼ ଓ ଚେତନ ବୃକ୍ଷ ଆଦିକୁ ଆଜ୍ଞାମାଳ ଦିଆଯାଇଥାଏ । ରଥ ନିର୍ମାଣ ଓ ନବକଳେବର ବିଧିରେ ଆଜ୍ଞାମାଳ ଲାଗି ପରେ ପରବର୍ତ୍ତୀ କାର୍ଯ୍ୟ କରାଯାଇଥାଏ । (ପୂ.ଓ.ଭା. - ପୃ.୭୨୪, ଶ୍ରୀ.ଆ.ର.- ପୃ. ୬) ।

**ଆଙ୍ଗିରସ**-*ସଂ.ବି.*- ଦୋଳମଣ୍ଡପସାହିସ୍ଥ ଆଶ୍ରମ । ଅଙ୍ଗିରା ଋଷିଙ୍କର ପୁତ୍ର ଦେବଗୁରୁ ବୃହସ୍ପତି । ଅଥର୍ବ ବେଦର ସୂକ୍ତବିଶେଷ । ଅଙ୍ଗିରା ଗୋଷ୍ଠୀ ଅଗ୍ନିଙ୍କ ଆବିଷ୍କର୍ତ୍ତା । ଏମାନେ ପ୍ରଥମେ ବୃକ୍ଷ କୋଟରକୁ ମନ୍ଥନ କରି ଅଗ୍ନି ବାହାର କରିଥିଲେ, ଏଥିପାଇଁ ଅଗ୍ନିକୁ ଅଙ୍ଗିରା କୁହାଯାଏ । ପୁରୀ, ଦୋଳମଣ୍ଡପ ସାହିସ୍ଥ ଅଙ୍ଗିରା ଆଶ୍ରମ ପରିସରରେ ଏକପ୍ରାଚୀନ ବଟ ଓ ଅଶ୍ୱସ୍ଥ ବୃକ୍ଷ ଅଛି, ଏହି ବଟମୂଳେ ଜଗନ୍ନାଥଙ୍କର ଚତୁର୍ଦ୍ଧାମୂର୍ତ୍ତି ପୂଜିତ । ଏହି ଆଶ୍ରମ ବଡ଼ଛତା ମଠର ତତ୍ତ୍ୱାବଧାନରେ ପରିଚାଳିତ । (ପୂ.ଓ.ଭା. - ପୃ.୭୧୫, ପ୍ର.ଅ. ୧ମ - ପୃ.୨୪୨, ପୌ. (ବଂ) - ପୃ. ୧୪୫, ଶ.କ. ୧ମ - ପୃ. ୧୬୬, ଓ.ସାଂ.ଶ. - ପୃ.୪୦) ।

**ଆଚମନ**-*ସଂ.ବି.*- ଭୋଜନ କରିବା ପୂର୍ବରୁ ମନ୍ତ୍ରପାଠ ପୂର୍ବକ ଗଣ୍ଡୂଷଦ୍ୱାରା ସାମାନ୍ୟ ଜଳ ମୁଖ ଗହ୍ୱରକୁ ନେବା । ଭୋଜନାଦି ପରେ ମୁଖ ଧୌତ କରିବା, ଆଚମନ କ୍ରିୟା ବା ଆଞ୍ଚେଇବା । ଧର୍ମ କାର୍ଯ୍ୟ ପାଇଁ ମନ୍ତ୍ରପାଠ । ବିଧିମତେ ଜଳ ଗ୍ରହଣ । ପୂଜାପୂର୍ବରୁ ତିନି ଥର ଜଳପାନ କରି ଦୁଇଥର ସଂବୃତ ଓଷ୍ଠାଧାର ମାର୍ଜନା କରି ମଥା ଆଦି ଛଅ ବା ଆଠ ଅଙ୍ଗ ସ୍ପର୍ଶରୂପ ବା ପ୍ରତୀକ ଶୁଦ୍ଧିକ୍ରିୟା । ମନୁଙ୍କ ମତାନୁସାରେ ଚକ୍ଷୁ, କର୍ଣ୍ଣ, ନାସିକା, ହୃଦୟ, ମସ୍ତକ, ନାଭି ଓ ବାହୁ ସମେତ ଅଷ୍ଟାଙ୍ଗ ସ୍ପର୍ଶ କରିବାକୁ ହୁଏ । ହସ୍ତମଧ୍ୟରେ ଥିବା ତୀର୍ଥ ସ୍ଥାନାନୁସାରେ ମଧ୍ୟ ଆଚମନ କରାଯାଏ । ଶ୍ରୀମନ୍ଦିରରେ ଷୋଡଶ ପୂଜା ଉପଚାର ମଧ୍ୟରୁ ଏକତମ ।

(ଶ.କ. ୧ମ - ପୃ.୧୬୬।୧୬୭, ପ୍ର.ଅ. ୧ମ- ପୃ.୨୪୨, ପୂ.ଓ.ଭା. - ପୃ.୭୧୬, ପୌ.(ବଂ). ୧ମ- ପୃ.୧୪୫) ।

**ଆଞ୍ଜୁଆଣିହେବା**-*ଦେ.ବି.*- ଶ୍ରୀମନ୍ଦିରରେ ପୂଜକ ସମ୍ପ୍ରଦାୟର ବ୍ରାହ୍ମଣ ତଥା ସେବକମାନେ କୌଣସି ନୀତି କାନ୍ତି ବା ପୂଜା କରିବା ପୂର୍ବରୁ ନିଜର ହସ୍ତ, ପଦ ଓ ମୁଖଧୌତ କରି ନିଜକୁ ପବିତ୍ର କରିବା ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୫) ।

**ଆଟିକା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଅନ୍ନ ଆଦି ରଖିବା ଓ ରୋଷେଇ କରିବା ନିମନ୍ତେ ବ୍ୟବହୃତ ଛୋଟ ମାଟି ହାଣ୍ଡି । ଶ୍ରୀଜଗନ୍ନାଥଙ୍କ ଦର୍ଶନକୁ ଆସିଥିବା ଯାତ୍ରୀମାନେ ଶ୍ରୀଜଗନ୍ନାଥଙ୍କ ଠାରେ ଚିରକାଳ ଭୋଗ ଲାଗିବା ଉଦ୍ଦେଶ୍ୟରେ ପଣ୍ଡାମାନଙ୍କ ଜିମା ଯେଉଁ ଧନ ଦାନ କରି ଯାଆନ୍ତି ବା ଦେବାକୁ ସ୍ୱୀକାର କରି ଯାଆନ୍ତି । (ପୂ.ଓ.ଭା. - ପୃ.୭୨୭, ପ୍ର.ଅ.- ପୃ.୨୪୮, ଓ.ସାଂ.ଶ. - ପୃ.୪୧) ।

**ଆଠପେଣ୍ଠ**-*ଦେ.ବି.*- ବ୍ରାହ୍ମଣଙ୍କର ଆଠକର୍ମ - ଯଜନ, ଯାଜନ, ଅଧ୍ୟୟନ, ଅଧାପନ, ଦାନ, ପ୍ରତିଗ୍ରହ, ପୂଜା ଓ ବିଶ୍ୱଦେବ ବ୍ରାହ୍ମଣର ଅଷ୍ଟକର୍ମ ।

ଏହି ଅଷ୍ଟକର୍ମ କରୁଥିବା ବ୍ରାହ୍ମଣମାନେ ହିଁ ପୂଜା ତଥା ଠାକୁରଙ୍କ ରୀତିନୀତି କରିବାକୁ ଯୋଗ୍ୟ । (ପ୍ର.ଅ. ୧ମ - ପୃ.୨୪୮, ପୂ.ଓ.ଭା. - ପୃ. ୭୨୯) ।

**ଆଡ଼କାନି**- ଶ୍ରୀଜୀଉଙ୍କ ସୁନାବେଶରେ କାନର ନିକଟରେ ଲାଗୁଥିବା ଅନ୍ୟ ଏକ ସ୍ୱର୍ଣ୍ଣ ଅଳଙ୍କାର ।

**ଆଡ଼କିଆ**-*ଦେ.ବି.*- କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ତିଥିରେ ଶ୍ରୀଜଗନ୍ନାଥଙ୍କର ଏହି ଆଡ଼କିଆ ବେଶ ହୋଇଥାଏ । ଏହି ବେଶରେ ଶ୍ରୀଜଗନ୍ନାଥ ଓ ବଳଭଦ୍ରଙ୍କ ମସ୍ତକରେ ସୋଲ ନିର୍ମିତ ଚୂଳ ଲାଗିହୁଏ । ଦେବୀ ସୁଭଦ୍ରାଙ୍କ ମୁଣ୍ଡରେ ସ୍ୱର୍ଣ୍ଣ ଚନ୍ଦ୍ରିକା ଖଞ୍ଜାଯାଏ । ଏହି ତ୍ରିବିକ୍ରମ ବା ଆଡ଼କିଆ ବେଶରେ ସୁନା କିଆ ଆଡ଼ବାଗରେ ଖୋସାଯାଇଥାଏ । ସୋଲ ଚୂଳର ଶେଷରେ ସୁନାର ଚନ୍ଦ୍ରିକା ଲଗାଯାଏ । ଶ୍ରୀମଦ୍ ଭାଗବତ୍ ପୁରାଣ ତଥା ହରିବଂଶ ବର୍ଣ୍ଣିତ ଭଗବାନ ବାମନ

ଅବତାରରେ ଦୁଇଟି ପାଦ ଦ୍ୱାରା ସ୍ୱର୍ଗ ମର୍ତ୍ତ୍ୟକୁ ବଳି ରାଜାଙ୍କଠାରୁ ନେବା ପରେ ତୃତୀୟ ପାଦକୁ ନାଭି ପାଖରୁ କାଢ଼ି ବଳିଙ୍କର ମସ୍ତକରେ ରଖି ପାତାଳରେ ଚାପି ଦେଇଥିବା ଆଖ୍ୟାନକୁ ନେଇ ବେଶଟି ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇଅଛି । ଏହି ବେଶଟି ଅତିବଡ଼ୀ ସମ୍ପ୍ରଦାୟର ଅତିପ୍ରିୟ ବେଶ । ପଞ୍ଚସଖାମାନେ ତ୍ରୟୋଦଶୀ ତିଥିର ଏହି ବେଶ ଦର୍ଶନରେ ପ୍ରଭୁଙ୍କର ବିରାଟ ରୂପର କଳ୍ପନା କରିଥାନ୍ତି । ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଏହି ବେଶ କରାଯାଏ ।
(ଓ.ସାଂ.ଶ. - ପୃ.୪୨, ଶ୍ରୀ.ବେ.ବୈ. - ପୃ.୨୭) ।

**ଆଡ଼ଚାହାଣୀ**-*ଦେ.ବିଶ.*- ବାଙ୍କଚାହାଣୀ, ଅପାଙ୍ଗ ଦୃଷ୍ଟି । ଈଷତ୍ ବକ୍ରଦୃଷ୍ଟି । ଠାକୁରଙ୍କ ବାଙ୍କଚାହାଣୀକୁ ଆଡ଼ ଚାହାଣୀ କୁହାଯାଏ ।
(ପୂ.ଓ.ଭା. - ପୃ. ୭୩୯, ପ୍ର.ଅ. ୧ମ - ପୃ.୨୪୯) ।

**ଆଡ଼ଛତା**-*ଦେ.ବି.*- ରାଜା ଓ ଦେବତାଙ୍କ ଦେହରେ ଖରା ନ ପଡ଼ିବା ପାଇଁ କଡ଼ରେ ଧରାଯିବା ପଙ୍ଖା ଆକୃତିର ବଡ଼ଛତା ବା ତ୍ରାସ ।
(ପ୍ର.ଅ. - ପୃ.୨୪୯, ପୂ.ଓ.ଭା. - ପୃ. ୭୩୯) ।

**ଆଡ଼ଦୋସଡ଼ି**-*ଦେ.ବି.*- ଶ୍ରୀଜୀଉଙ୍କ କାନ୍ଧର ଦୋସଡ଼ା ବସ୍ତ୍ର । ଆଡ଼ ବା ପ୍ରସ୍ଥ ବାଗରେ ପକାଇବା କାନ୍ଧର ଦୋସଡ଼ା ବସ୍ତ୍ର ।
(ଓ.ସାଂ.ଶ. - ପୃ.୪୨) ।

**ଆଡ଼ପତ୍ର**-*ସଂ.ବି.*- ଗ୍ରୀଷ୍ମ ବା ଖରାରୁ ରକ୍ଷା ବା ଶ୍ରୀମନ୍ଦିରରେ ବିଗ୍ରହମାନେ ବିଜେ କଲାବେଳେ ବ୍ୟବହୃତ ବଡ଼ ଛତା ବା ଛତ୍ର ।
(ଶ.କ. - ପୃ. ୧୭୦, ପୂ.ଓ.ଭା. - ପୃ. ୭୫୨, ଶ.ଅ. - ପୃ.୧୨୦) ।

**ଆଡ଼ରୁଷା**-*ଦେ.ବି.*- ଅଳ୍ପକୋପ, ଛଳ, ଅଳ୍ପମାନ, ଅବ୍ୟକ୍ତ ଅଭିମାନ ।
(ପ୍ର.ଅ. ୧ମ - ପୃ.୨୫୦) ।

**ଆଡ଼ହୋ**-*ଦେ.କ୍ରି.*- ପୁରୁଷମାନେ ନାଚିବା ସମୟରେ ଆନନ୍ଦସୂଚକ ଧ୍ୱନି । ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ଅହୁଣିଆ ନିଆ ଯାଉଥିବା ବାଟରୁ ଲୋକଙ୍କୁ ପାଖେଇ ଦେବା ପାଇଁ ପ୍ରତିହାରୀର ସତର୍କୀକରଣ ଡାକ । ଆଡ଼େଇ ଯାଅ - ଦୂର ହୁଅ, ଆଡ଼ ହୋ ଇତ୍ୟାଦି ।
(ପୂ.ଓ.ଭା. - ପୃ. ୭୪୪, ପ୍ର.ଅ. - ପୃ.୨୫୦) ।

**ଆଡ଼ପ**-*ଦେ.ବି.*- ଶ୍ରୀକ୍ଷେତ୍ରର ଗୁଣ୍ଡିଚା ମନ୍ଦିର । ଆଡ଼ମ୍ବରପୂର୍ଣ୍ଣ ମଣ୍ଡପ । ଏହାକୁ ମଧ୍ୟ ଯଜ୍ଞବେଦୀ ବା ଜନ୍ମବେଦୀ ବୋଲି କୁହାଯାଏ । ରଥଯାତ୍ରା ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁ ରଥରୁ ଓହ୍ଲାଇ ଗୁଣ୍ଡିଚା ମନ୍ଦିରର ଯେଉଁ ମଣ୍ଡପରେ ବିଜେ କରନ୍ତି ।
(ଓ.ସାଂ.ଶ. - ପୃ.୪୨, ପୂ.ଓ.ଭା. - ପୃ. ୭୪୧, ପ୍ର.ଅ. ୧ମ - ପୃ.୨୪୯) ।

**ଆଡ଼ପଅଭଡ଼ା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ସମୟରେ ଗୁଣ୍ଡିଚା ମନ୍ଦିରରେ ଯେଉଁ ଅନ୍ନରନ୍ଧା ହୋଇ ଠାକୁରମାନଙ୍କୁ ଭୋଗ ଲାଗିହୁଏ । ଶ୍ରୀଗୁଣ୍ଡିଚା ମନ୍ଦିରରେ ଭୋଗ କରାଯାଉଥିବା ଅଭଡ଼ା ।
(ପ୍ର.ଅ. - ପୃ.୨୫୦, ପୂ.ଓ.ଭା.- ପୃ. ୭୪୧) ।

**ଆଡ଼ପତଣ୍ଡୁଳ**-*ଦେ.ବି.*- ଉଆ ଚାଉଳ ବା ଅରୁଆଚାଉଳ । ଯାହା ଆଡ଼ପ ମଣ୍ଡପରେ ଆଡ଼ପ ଅଭଡ଼ା ନିମନ୍ତେ ବ୍ୟବହୃତ ହୁଏ ।
(ଓ.ସାଂ.ଶ. - ପୃ.୪୨) ।

**ଆଡ଼ପବସିବା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ମାଧ୍ୟମରେ ଯେପରି ବଂଧୁତ୍ୱ ସ୍ଥାପନ କରାଯାଇଥାଏ, ସେହିପରି ଗୁଣ୍ଡିଚା ମନ୍ଦିରର ଅନ୍ନଭୋଗଦ୍ୱାରା 'ଆଡ଼ପ' ମିତ୍ରତା ମଧ୍ୟ ସ୍ଥାପନ କରାଯାଇଥାଏ ।
(ପୂ.ଓ.ଭା- ପୃ.୭୪୧) ।

**ଆଡୁଆଳ**-*ଦେ.ବିଶ.*- ଗୋପନୀୟ, ଆଚ୍ଛନ୍ନ, ଉଢ଼ାଳ, ଅନ୍ତରାଳ । ଶ୍ରୀମନ୍ଦିରରେ ଏକାଦଶୀ ଦିନ ଚୁନରା ସେବକ ଦଧିନଉତି ତଳେ ଠିଆହୋଇ ତୁଳସୀ ଚନ୍ଦନ ନୀଳଚକ୍ରକୁ ଲାଗିକରି ଚାରି ପଟେ ତିନିଘେରା ବୁଲିଲା ପରେ 'ଚନ୍ଦ୍ର ଉଦିଆ' ପ୍ରତ୍ୟେକ ଦିଗରେ ତିନିଟି ଲେଖାଏଁ ଜାଳନ୍ତି । ବୁଲିବା ସମୟରେ ମହାପ୍ରଭୁ ଶ୍ରୀଜଗନ୍ନାଥ ପୁରୀ ରାଜାଙ୍କୁ (ନାମଧରି) ଶଙ୍ଖେ ପୂରାଇ ଚକ୍ର ଆଡୁଆଳ କରନ୍ତୁ ବୋଲି

ହରିବୋଲ ଦିଅନ୍ତି । ଗଞ୍ଜାମ ଜିଲ୍ଲା ଆଠଗଡ଼ ରାଜାଙ୍କ ନାମ ମଧ୍ୟ ଉଚ୍ଚାରଣ କରିଥାଆନ୍ତି ।
(ପୂ.ଓ.ଭା. - ପୃ.୭୪୮, ପ୍ର.ଅ. ୧ମ- ପୃ.୨୫୧, ଶ୍ରୀ.ସ୍ୱ. ୨ୟ - ପୃ.୪୨)।

**ଆଡ଼େଣୀ**-*ଦେ.ବି.*- ଢ଼ାଲ, ପଙ୍ଖା ଜାତୀୟ, ରାଜସମ୍ଭାର ବିଶେଷ, କନାନିର୍ମିତ ବୃହତ ଛତ୍ର । ଦେବତାମାନଙ୍କ ବିଜେ ସମୟରେ ବ୍ୟବହାର ହୋଇଥାଏ ।
(କ୍ରୁ.ଓ.ଶ. - ପୃ.୮୮, ପୂ.ଓ.ଭା. - ପୃ.୭୪୭, ପ୍ର.ଅ. - ପୃ.୨୪୯)।

**ଆତସବାଜି**-*ବୈ.ବି.*- ବାରୁଦଦ୍ୱାରା ପ୍ରସ୍ତୁତ ନାନାପ୍ରକାର ବାଣ । ପର୍ବପର୍ବାଣି, ଯାନିଯାତ୍ରା, ରୋଷଣୀ ତଥା ଶୋଭାଯାତ୍ରାମାନଙ୍କରେ ଆତସବାଜି ବ୍ୟବହୃତ ହୁଏ । ଶ୍ରୀଜଗନ୍ନାଥଙ୍କ ନୀଳାଦ୍ରିବିଜେ ସମୟରେ ଶ୍ରୀମନ୍ଦିର ଭିତରେ ଆତସବାଜିର ବ୍ୟବହାର ହୋଇଥାଏ ।
(ପ୍ର.ଅ. ୧ମ - ପୃ. ୨୫୩, ପୂ.ଓ.ଭା. - ପୃ. ୭୫୩, ଶ.ଅ. - ପୃ. ୧୨୦)।

**ଆର୍ତ୍ତନାଶନ**-*ଦେ.ବିଶେ.*- ଦୁଃଖକଷ୍ଟ ନାଶନକର୍ତ୍ତା ଆର୍ତ୍ତତ୍ରାଣ, ଭଗବାନ ବିଷ୍ଣୁ । ଶ୍ରୀଜଗନ୍ନାଥଙ୍କୁ ଆର୍ତ୍ତନାଶନ ବୋଲି ବହୁ କବି ଓ ଭକ୍ତ ସମ୍ବୋଧନ କରିଅଛନ୍ତି ।
(କ୍ରୁ.ଓ.ଶ. - ପୃ.୧୦୨, ଶ.କ. - ପୃ.୧୮୯)।

**ଆଦ୍ୟ ରଥ**-*ସଂ.ବି.*- ରଥ ଖଳାରୁ ସିଂହଦ୍ୱାରକୁ ଭିଡା ହୋଇଯାଉଥିବା ରଥ ।
(କ୍ଷେ.ସ.) ।

**ଆଦ୍ୟ ସମ୍ବୋଧନୀ ପୂଜା**-*ଦେ.ବି.*- ସକାଳେ ଶ୍ରୀମନ୍ଦିର ଖୋଲିବା ପରେ ପରେ ଶ୍ରୀଜୀଉଙ୍କ ପ୍ରଥମ ଅର୍ପିତ ଭୋଗ । ଗୋପାଳ ବଲ୍ଲଭ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭) ।

**ଆଦ୍ୟସେବକ**-*ଦେ.ବି.*- ପ୍ରଥମ ସେବକ । ଗଜପତି ମହାରାଜା ଶ୍ରୀମନ୍ଦିରର ଆଦ୍ୟ ସେବକ ଅଟନ୍ତି । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ବିଭିନ୍ନ ସେବାଲାଗି ବିଭିନ୍ନ ନିଯୋଗ ବ୍ୟବସ୍ଥା କରାଯାଇଛି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୨-୧୪) ।

**ଆଦ୍ୟାଶକ୍ତି**- ଦେବୀ ସୁଭଦ୍ରାହିଁ ଏହି ଆଦ୍ୟାଶକ୍ତି, ଜୀବାତ୍ମାର ଗତି ନିୟନ୍ତ୍ରଣକାରିଣୀ ଶକ୍ତି । ଶ୍ରୀମନ୍ଦିରରେ ରତ୍ନସିଂହାସନରେ ବିରାଜିତା ଦେବୀ ସୁଭଦ୍ରା ଶ୍ରୀଜଗନ୍ନାଥଙ୍କ ଚିନ୍ତନରେ ଏକ ସଂଯୋଗକାରିଣୀ ଶକ୍ତି । ସେ ଲକ୍ଷ୍ମୀଭାବେ ବିରାଜିତା । ଜୀବାତ୍ମାର ଗତିକୁ ନିୟନ୍ତ୍ରଣ କରି ଜୀବମୁକ୍ତିର ବାଟ ନିଷ୍କଣ୍ଟକ କରନ୍ତି । ସେ ଆଦ୍ୟାଶକ୍ତି ଜଗଜ୍ଜନନୀ ଭୁବନେଶ୍ୱରୀ ଭାବେ ପୂଜିତା ଓ ପ୍ରତିଷ୍ଠିତା । ସେ ହେଉଛନ୍ତି ଭକ୍ତି, ଗତି ଓ ମୁକ୍ତିର ପଥ । ସାଂଖ୍ୟଦର୍ଶନରେ 'ପ୍ରକୃତି' ହେଉଛନ୍ତି ଜଗଜ୍ଜନନୀ ଓ ଆଦ୍ୟାଶକ୍ତି ।
(ଶ୍ରୀମନ୍ଦିର, ଜୁନ୍-୧୯୯୫ - ପୃ.୯୩)।

**ଆଦିକନ୍ଦ**-*ସଂ.ବି.*- ସୃଷ୍ଟିର ଯିଏ ଆରମ୍ଭ ଓ ମୂଳ, ସେ ହିଁ ଆଦିକନ୍ଦ । ଅର୍ଥାତ୍, ପ୍ରଭୁ ଶ୍ରୀଜଗନ୍ନାଥ ।
(ପୂ.ଓ.ଭା. - ପୃ.୭୪୨, ପ୍ର.ଅ. ୧ମ - ପୃ.୨୬୦, କ୍ରୁ.ଓ.ଶ. ୧ମ - ପୃ.୯୧, ଶ.ଅ. -ପୃ.୧୨୨)।

**ଆଦିଦେବ**-*ସଂ.ବି.*- ସର୍ବପ୍ରଥମ ଅବତାର । ସଂସାରର ପ୍ରଥମ ପ୍ରଭୁ । ପରମେଶ୍ୱର, ବିଷ୍ଣୁ, ବ୍ରହ୍ମା, ସୂର୍ଯ୍ୟ ଓ ଶିବ । ଈଶ୍ୱରଙ୍କ ଯେଉଁସବୁ ରୂପ ସୃଷ୍ଟି କାର୍ଯ୍ୟରେ ଲିପ୍ତ ଅଛି, ତାହାର ସର୍ବପ୍ରଥମ ପ୍ରୟୋଗ କାରୀ ପୁରୁଷଙ୍କୁ 'ଆଦିଦେବ' କୁହାଯାଏ । ପରଂବ୍ରହ୍ମ ବିଷ୍ଣୁଙ୍କୁ ଆଦି ଦେବ ରୂପେ କଳ୍ପନା କରାଯାଇଛି ।
(ପୂ.ଓ.ଭା. - ପୃ. ୭୬୩, ଓ.ସାଂ.ଶ. - ପୃ.୪୫, ଶ.କ. ୧ମ - ପୃ.୧୭୩, ପ୍ର.ଅ. ୧ମ - ପୃ.୨୬୧)।

**ଆଦିଭୋଗ**-*ଦେ.ବି.*- କୋଠ ଭୋଗ, ଯଜମାନୀ ଭୋଗ, ଉପାଧି ଭୋଗ, ଆଦ୍ୟ ସମ୍ବୋଧନୀ ଭୋଗ - ଗୋପାଳ ବଲ୍ଲଭ ଭୋଗ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭)।

**ଆଦିମୂଳ**-*ସଂ.ବି.*- ସୃଷ୍ଟିର ଆଦ୍ୟକାରଣ ବା ସୃଷ୍ଟି କର୍ତ୍ତା ଭଗବାନ ବିଷ୍ଣୁ, ଶବ୍ଦବ୍ରହ୍ମ, ଶ୍ରୀଜଗନ୍ନାଥଙ୍କୁ ଆଦିମୂଳ ବୋଲି ମଧ୍ୟ କୁହାଯାଏ ।
(ପୂ.ଓ.ଭା. - ପୃ. ୭୬୪, ଓ.ସାଂ.ଶ. - ପୃ. ୪୫, ପ୍ର.ଅ. ୧ମ - ପୃ. ୨୬୨, ଶ.ଅ.- ପୃ. ୧୨୨, ଶ.କ. ୧ମ - ପୃ. ୧୭୩)।

**ଆଦି ଶଙ୍କରାଚାର୍ଯ୍ୟ**- ଆଦିଶଙ୍କରାଚାର୍ଯ୍ୟ ଶୈବ ଥିଲେ । ସମଗ୍ର ଭାରତ ଭ୍ରମଣ କରି ଲୁପ୍ତ

ଧର୍ମାନୁଷ୍ଠାନକୁ ପୁନଃ ପ୍ରତିଷ୍ଠା କରାଇଥିଲେ । ବୌଦ୍ଧ ବୁଦ୍ଧିଜୀବୀମାନଙ୍କୁ ବାରମ୍ବାର ଏକ ବିତର୍କରେ ପରାସ୍ତ କରି ହିନ୍ଦୁଧର୍ମର ଉତ୍ଥାନ କରାଉଥିଲେ । ସେ ଭାରତର ଚାରି ଦିଗରେ ଚାରୋଟି ମଠ ପ୍ରତିଷ୍ଠା କରାଇଥିଲେ । ଉତ୍ତର ହିମାଳୟସ୍ଥ ଜ୍ୟୋତିର୍ମଠ, ଦକ୍ଷିଣରେ କର୍ଣ୍ଣାଟକ ରାଜ୍ୟରେ ଶୃଙ୍ଗେରୀ ମଠ, ପଶ୍ଚିମରେ ଦ୍ୱାରକାରେ ଶାରଦାମଠ ଓ ଶ୍ରୀକ୍ଷେତ୍ର ପୁରୀରେ ଗୋବର୍ଦ୍ଧନ ମଠ । ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ପୁନଃ ପ୍ରତିଷ୍ଠାକରି ବିଭିନ୍ନ ପୂଜା ଉପାସନା, ପର୍ବପର୍ବାଣି, ଯାନିଯାତ୍ରାର ପ୍ରଚଳନ କରିଥିଲେ ।

(ମା.ପା - ପୃ ୫-୬, ଶ୍ରୀ.ଜି. - ପୃ. ୨୯୦)

**ଆନନ୍ଦବଜାର**-*ଦେ.ବି.*- ପୁରୀ ଶ୍ରୀମନ୍ଦିରର ଐଶାନ୍ୟ କୋଣରେ ଶ୍ରୀମହାପ୍ରସାଦ ବିକ୍ରୟସ୍ଥାନ । ପୂର୍ବେ ଏହା କୈବଲ୍ୟ ହାଟ ନାମରେ ପରିଚିତ ଥିଲା ।

(ଓ.ସାଂ.ଶ. - ପୃ. ୪୬, ଶ୍ରୀ.ସ୍ୱ. - ପୃ. ୨୫୭) ।

**ଆବର୍ତ୍ତନ**-*ଦେ.*- ମେଘାଧିପ ବିଶେଷ । ଅଶ୍ୱାଦିର ରୋମକୁ ଚିହ୍ନ । ମେରୁଦଣ୍ଡ ସଂଲଗ୍ନ ଅସ୍ଥିଖଣ୍ଡ ।

ଦେବରାଜ ଇନ୍ଦ୍ରଙ୍କର ଚାରି ମେଘ ମଧ୍ୟରୁ ଏକ ମେଘ ବିଶେଷ । ଆବର୍ତ୍ତକ, ସମ୍ବର୍ତ୍ତକ ଦ୍ରୋଣ ଓ ପୁଷ୍କର । ସୂର୍ଯ୍ୟଙ୍କର ପଶ୍ଚିମ ଦିଗ ଅବସ୍ଥିତିରେ ଛାୟାର ପୂର୍ବଦିଗ ପ୍ରତି ଆରମ୍ଭ କାଳ । ସ୍ମୃତି ଅନୁସାରେ ଆବର୍ତ୍ତନର ସମୟ ପୂର୍ବାହ୍ନ ଏବଂ ଅପରାହ୍ନର ପର ସମୟ । ଶ୍ରୀମନ୍ଦିର ପୂର୍ବଦିଗର ପାଚେରୀର ନାମ ।

(କ୍ର.ଓ.ଶ. - ପୃ. ୯୬, ପ୍ର.ଅ. ୧ମ - ପୃ.୨୯୪, ଓ.ସାଂ.ଶ. - ପୃ.୪୭, ପୂ.ଓ.ଭା. - ପୃ.୭୮୫, ଶ.କ. ୧ମ - ପୃ. ୧୯୨) ।

**ଆବରଣ ଦେବତା**-*ଦେ.ବି.*- ମନ୍ଦିରର ପାର୍ଶ୍ୱଦେବତା ବ୍ୟତୀତ ମନ୍ଦିରର ବିଭିନ୍ନ ସ୍ଥାନରେ ସ୍ଥାନିତ ହୋଇଥିବା ଦେବତା ଓ ଉପଦେବତା । (କ୍ଷେ.ସ.) ।

**ଆବାହନ**-*ଦେ.ବି.*- ନିମନ୍ତ୍ରଣ, ନିକଟକୁ ଆସିବା ନିମିତ୍ତ ଦେବତାଙ୍କୁ ଆହ୍ୱାନ, ଦେବଦେବୀଙ୍କୁ ଆବିର୍ଭାବ ନିମନ୍ତେ ମନ୍ତ୍ରଦ୍ୱାରା ଆହ୍ୱାନ ବା ଆମନ୍ତ୍ରଣ କରିବା ।

(ପୂ.ଓ.ଭା. - ପୃ. ୭୮୭, ପ୍ର.ଅ. ୧ମ - ପୃ. ୨୯୫, କ୍ର.ଓ.ଶ. ୧ମ - ପୃ.୯୬, ତ.ଶ. - ପୃ. ୬୩, ଶ.କ. ୧ମ - ପୃ. ୧୯୩) ।

**ଆଭରଣ**-*ସଂ.ବି.*- ଭୂଷଣ, ଅଳଙ୍କାର, ସମ୍ୟକ୍ ଭରଣ ପୋଷଣ, ବିବିଧ ଗହଣା । ଅଳଙ୍କାର ବା ଆଭରଣ । ଏହା ଚାରି ପ୍ରକାର ଯଥା- ଆବେଧ୍ୟ-କୁଣ୍ଡଳାଦି କର୍ଣ୍ଣ ଅଳଙ୍କାର, ବନ୍ଧନୀୟ- କୁସୁମାଦି ବାହୁ ଅଳଙ୍କାର, କ୍ଷେପ୍ୟ- ନୂପୁରାଦି ପାଦ ଅଳଙ୍କାର ଓ ଆରୋପ୍ୟ - ହାରାଦି କଣ୍ଠ ବା ହୃଦୟାଦି ଅଳଙ୍କାର । ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ପୂଜା ପାର୍ବଣରେ ବିଗ୍ରହମାନଙ୍କଠାରେ ବିଭିନ୍ନ ଆଭରଣ ଲଗାଯାଇଥାଏ ।

(ପୂ.ଓ.ଭା. - ପୃ.୭୯୧, ପ୍ର.ଅ. ୧ମ - ପୃ. ୨୭୪, କ୍ର.ଓ.ଶ. ୧ମ - ପୃ. ୬, ଶ.କ. ୧ମ- ପୃ. ୧୭୯, ଓ.ସାଂ.ଶ. - ପୃ. ୪୭) ।

**ଆମିଷ**-*ଦେ.ବି.*- ମାଛ ଓ ମାଂସ । କୌଣସି ପକ୍ଷୀ କିମ୍ବା ପଶୁର ରକ୍ତ ଓ ମାଂସ ଆଇଁଷ ବା ଆମିଷ । ପଶୁ ମଧ୍ୟରେ ଛେଳି, ମେଣ୍ଢା, ହରିଣ, ଘୁଷୁରୀ, ଗାଈ, କୋଟରା, ସମ୍ବର ଓ ଠେକୁଆ ଇତ୍ୟାଦିର ମାଂସକୁ ଭକ୍ଷଣ କରାଯାଏ । ପକ୍ଷୀ ମଧ୍ୟରେ ବିଶେଷ କରି କୁକୁଡ଼ା ମାଂସ ଆଜିକାଲି ବହୁଳ ଭାବେ ଭକ୍ଷଣ କରୁଛନ୍ତି ।

ଶ୍ରୀମନ୍ଦିର ପରିସରରେ ଆଶ୍ୱିନ ଶୁକ୍ଳ ସପ୍ତମୀ, ଅଷ୍ଟମୀ ଓ ନବମୀରେ ବିମଳାଙ୍କ ମନ୍ଦିରରେ ଦେବୀଙ୍କର ନିଶାର୍ଦ୍ଧ ପୂଜା ହୁଏ । ଏହି ତିନି ଦିନରେ ପ୍ରତ୍ୟହ ରାତ୍ର ତିନିଟାରେ ମାଛ ରନ୍ଧା ହୁଏ । ଭିତରେ ବଡ଼ ସିଂହାର ସହ ପହୁଡ଼ ହେବା ପରେ ଏହି ଭୋଗ ପଶ୍ଚିମ ଦ୍ୱାର ବାଟେ ନେବା ଆଣିବା କରାଯାଏ । ବିମଳାଙ୍କ କୂଅପାଖରେ ରୋଷ ଘର ତିଆରି ହୋଇ ମାଛ ରନ୍ଧା ହୁଏ ଓ କେତେକ ଗୁପ୍ତ ସେବା ହୁଏ । ମହାପ୍ରଭୁଙ୍କ ନବକଳେବର

ସମୟରେ କୋଇଲି ବୈକୁଣ୍ଠ ଠାରେ କୋଠ ସୁଆଁସିଆଙ୍କ ଦ୍ୱାରା ମାଛ ବଳି ପ୍ରଦାନ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୯୮, ଶ.କ. ୧ମ - ପୃ.୧୮୩, ପୂ.ଓ.ଭା. - ପୃ.୬୭୮, ପ୍ର.ଅ. ୧ମ - ପୃ.୨୨୯) ।

**ଆୟା ମହାଜନ**-*ଦେ.ବି.*- ଶ୍ରୀମନ୍ଦିରର ମହାଜନ ସେବକ ବିଶେଷ ।
(ପୁ.ବୋ. - ପୃ.୧୫୫) ।

**ଆୟୁଧ**-*ଦେ.ବି.*- ଯାହାଦ୍ୱାରା ଯୁଦ୍ଧ କରାଯାଏ । ପ୍ରହରଣ, ଖଡ଼୍‌ଗ, ଚକ୍ର, ହସ୍ତମୁକ୍ତ, ଯନ୍ତ୍ରଯୁକ୍ତ ଶର, ହତିଆର, ଅସ୍ତ୍ର, ହାତ ହତିଆର ।

ଆଶ୍ୱିନ ବିଜୟାଦଶମୀ ଦିନ ଶ୍ରୀମନ୍ଦିରରେ ଠାକୁରମାନଙ୍କର ଆୟୁଧମାନଙ୍କୁ ପୂଜା କରାଯାଏ । ଆୟୁଧ ତିନି ପ୍ରକାର- ପ୍ରହରଣ ଯଥା- ଖଡ଼୍‌ଗାଦି, ପାଣିମୁକ୍ତ ଆୟୁଧ ଯଥା- ଚକ୍ରାଦି ଓ ଯନ୍ତ୍ରମୁକ୍ତାଦି ଯଥା- ଶରାଦି ଅସ୍ତ୍ର ଆୟୁଧ । ତେଣୁ ଶ୍ରୀଜଗନ୍ନାଥଙ୍କର ଆୟୁଧ ପାଣିମୁକ୍ତ ଅର୍ଥାତ୍ ହସ୍ତରୁ ମୁକ୍ତ ଯଥା ସୁଦର୍ଶନ ଚକ୍ର । ବଳଭଦ୍ରଙ୍କର ପ୍ରହରଣ ଯଥା ଗଦା ଏବଂ ହଳ । ତେଣୁ ତାଙ୍କୁ 'ହଳପାଣି' ମଧ୍ୟ କୁହାଯାଏ । (ଶଙ୍ଖ, ଚକ୍ର, ଗଦା, ପଦ୍ମ, ହଳ ଓ ମୁଷଳ) । ଏହି ସବୁ ଆୟୁଧର ପୂଜା କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୯, ଶ.କ. ୧ମ - ପୃ. ୧୮୬, ପୂ.ଓ.ଭା. - ପୃ. ୮୦୨, ପ୍ର.ଅ. ୧ମ- ପୃ. ୨୮୧) ।

**ଆୟୁଧ ବେଢ଼ା**-*ଦେ.ବି.*- ଦଶହରା ଦିନ ଘଣ୍ଟ, ଛତ୍ର, କାହାଳୀ ସହିତ ରୁପା ଥାଳିରେ ଠାକୁରଙ୍କ ଆୟୁଧ ଧରି ତଳିଛ ଓ ପ୍ରଧାନୀ ପଟୁଆରରେ ତିନିବାଡ ନିମନ୍ତେ ବଡବାଡ-ହଳ ମୂଷଳ, ମଝିବାଡ- ତଡଗୀ, ମହାପ୍ରଭୁଙ୍କର ବାଡ- ଶଙ୍ଖଚକ୍ର ବଡ ଦେଉଳ ବେଢ଼ାରେ ତିନି ଥର ପରିକ୍ରମା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୮) ।

**ଆଳତି**-*ଦେ.ବି.*- ଆରତି, ବନ୍ଦାପନା, ନିରାଜନା, ରାଜା ବା ବରକନ୍ୟାଙ୍କ ସମ୍ମୁଖରେ ମନ୍ତ୍ରୋଚାରଣ ପୂର୍ବକ ପ୍ରଦୀପ ସଞ୍ଚାଳନ ଓ ବନ୍ଦାପନା । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଗୋଟିଏ ଦିନରେ ମଙ୍ଗଳ ଆଳତି, ଭୋଗ ଆଳତି, ପୂଜାର ଉପଚାର ଆଳତି, ସନ୍ଧ୍ୟା ଆଳତି, ଶୟନ ଆଳତି ଓ ଉତ୍ସବାତ୍ମକ ଆଳତି କରାଯାଏ । ମଙ୍ଗଳ ଆଳତି ଦୁଇପ୍ରକାର- ଯଥା- ଶୟନାନ୍ତ ଓ ନୈବେଦ୍ୟାନ୍ତ । ଠିକ୍ ପହୁଡ଼ ଭାଙ୍ଗିବା ମାତ୍ରେ ଯେଉଁ ଆଳତି ହୁଏ ତାହା ଶୟନାନ୍ତ ଓ ସାମାନ୍ୟ ନୈବେଦ୍ୟ ପରେ ଯେଉଁ ଆଳତି ହୁଏ ତାହା ନୈବେଦ୍ୟାନ୍ତ । କିନ୍ତୁ ଶ୍ରୀମନ୍ଦିରରେ ଶୟନାନ୍ତ ଆଳତି ହିଁ ମଙ୍ଗଳ ଆଳତି ।

ଶ୍ରୀମନ୍ଦିରରେ ଠାକୁରଙ୍କ ସକାଳ ଦୁଆର ଫିଟାପରେ ଦୈନିକ ମଙ୍ଗଳ ଆଳତି ଓ ଅନ୍ୟାନ୍ୟ ନୀତି ସକାଶେ ପ୍ରଭୁଙ୍କର ନିକଟରେ କରାଯାଉଥିବା ଆଳତି ଯେଉଁଥିରେ କର୍ପୂର, ପିଠଉ, ବଳିତା, ଘିଅ, ବଇଠା, ପାଣିଝରି ତେଲ ମଶାଲ ଆବଶ୍ୟକ ହୋଇଥାଏ । ଦୀପାବଳୀ ଦ୍ୱାରା ବିଷ୍ଣୁଙ୍କର ଆଳତି ଅନୁଷ୍ଠିତ ହେଲେ ତାମସିକତା ଦୂର ହୁଏ । ମୂଳମନ୍ତ୍ରରେ ପୁଷ୍ପାଞ୍ଜଳି ପ୍ରଦାନ କରି ତା'ପରେ ଘିଅ କିମ୍ବା କର୍ପୂରରେ ଜୟଧ୍ୱନି ସହ ନୀରାଜନା ବା ଆରତି କରାଯାଏ । ଏହାକୁ ଦର୍ଶନ ବା ଶ୍ରବଣ କଲେ ବିଷମତା ଦୂର ହୋଇ ପରମ ଶାନ୍ତି ଲାଭ ହୋଇଥାଏ ।

ମଙ୍ଗଳ ଆଳତିରେ କର୍ପୂର ଆଳତି ପରେ ଏକୋଇଶି ବତୀ ଆଳତି, ତତ୍‌ପରେ ପିଠଉ ବତୀ ଆଳତି କରାଯାଏ । ଶ୍ରୀ ଜୀଉଙ୍କ ଶୟନ ପୂର୍ବରୁ କର୍ପୂର ଆଳତି ପରେ ସଞ୍ଜକାଳି ଆଳତି ବଡ଼ଶୃଙ୍ଗାର ନୀତି ପରେ ହୋଇଥାଏ । ଗୁଣ୍ଡିଚା ମନ୍ଦିରକୁ ରଥରୁ ବିଜେ କଲା ପୂର୍ବରୁ କର୍ପୂର ଦୂର୍ବାକ୍ଷତ ସହ ସାତବତୀ ଆଳତି କରାଯାଏ । ସନ୍ଧ୍ୟାଧୂପ ପରେ କର୍ପୂର ଏକୋଇଶି ବତୀ ଓ ପିଠଉ ଆଳତି ବ୍ୟତୀତ ଆଉ ଦୁଇ ଗୋଟି ଅଧିକ ଆଳତି ସେହି ରୂପା ବଟାରେ ହୁଏ । ଏହା ଜୟମଙ୍ଗଳ ଆଳତି ନାମରେ ନାମିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧/୧୪//୨୫/୨୯,୭୩ ପୂ.ଓ.ଭା. -ପୃ. ୮୦୬, କ୍ଷୁ.ଓ.ଶ. - ପୃ.୧୦୨, ପୌ.(ବଂ.) ୧ମ - ପୃ. ୧୬୫/୫୫, ଶ.କ. ୧ମ - ପୃ. ୧୮୮, ଶ୍ରୀ.ଜି. - ପୃ. ୨୦୫) ।

**ଆଳତି ବଇଠା**-*ଦେ.ବି.*- ଆଳତି କରିବା ଲାଗି ଉଦ୍ଦିଷ୍ଟ ବଇଠା । ମଙ୍ଗଳ ଆଳତି ନିମନ୍ତେ ଏହା ବ୍ୟବହୃତ ହୋଇଥାଏ । ମୁଦୁଲି ସେବକ ଏହା ଯୋଗାଇ ଦେଇଥାନ୍ତି ।
(ଶ୍ରୀ.ସ୍ୱ-୨ ପୃ-୨୦)

**ଆଳତିବଳିତା ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ସେବକ ପ୍ରତିଦିନ ରୋଷ ହୋମ ହେବା ପୂର୍ବରୁ ପତ୍ରିବନ୍ତୁଙ୍କୁ ବଡ଼ ତିନି ବିଡ଼ା ଓ ଛୋଟ ଏକ ବିଡ଼ା ଓ ସୁଆର ବଡୁଙ୍କୁ ବଡ଼ ଦୁଇ ଓ ଛୋଟ ଏକ ବିଡ଼ା ବଳିତା ଯୋଗାଇଥାନ୍ତି । ଏହି ବଳିତାରେ ଠାକୁରଙ୍କ ଦିନତମାମ ଆଳତି ହୁଏ ।
(ଶ୍ରୀ.ସ୍ୱ. ୩ୟ - ପୃ. ୮୨) ।

**ଆଲୁମଣ୍ଡିଆଲୁଗା**-*ଦେ. ବି.*- ଶ୍ରୀଜୀଉଙ୍କର ବ୍ୟବହୃତ ମଣ୍ଡଦିଆ ଧଳା ଲୁଗା ।
(ପୁ.ବୋ. - ପୃ. ୧୫୫) ।

**ଆଲଟ**-*ସଂ.ବି.*-ରାଜ ଉପକରଣ ବ୍ୟଜନ ବିଶେଷ । ରାଜା ଓ ଦେବତାଙ୍କ ସେବାରେ ବ୍ୟବହୃତ ଆଡଣି ବା ବିରାଟ ରାଜକୀୟ ପଙ୍ଖା । ଚନ୍ଦନ ବଇଆଳିଶ ଦିନରେ ଶ୍ରୀମନ୍ଦିର ଠାକୁରଙ୍କ ପାଖରେ ଦିନକୁ ଦୁଇଥର ଆଲଟ ଲାଗିହୁଏ । ଜଗମୋହନ ଓ ପୋଖରୀଆ ଅନ୍ଧାର କରାଯାଏ । ଅଖଣ୍ଡ ବଇଠା ଲିଭାଇ ଦିଆଯାଏ । ଘୋଡା ବାରିକ, ଖୁଣ୍ଟିଆ, ରତ୍ନ ସିଂହାସନକୁ ଲଗାଇ ଘୋଡା ରଖନ୍ତି । ପଢିଆରୀ ଦକ୍ଷିଣଦ୍ୱାର ନନ୍ଦାବର୍ତ୍ତରେ ଜଗି ବସନ୍ତି । ଆଲଟ ଲାଗିବା ନିମନ୍ତେ ମଇଲମ, ଲୁଗାଲାଗି ତ୍ରିମୁଣ୍ଡିରେ ସୁବାସ ଫୁଲ ଲାଗି, କର୍ପୂର ଲାଗି, ବିଡିଆ ମଣୋହି ଆଦି କରାଯାଏ । ଖୁରୀ ନାହକ ଦକ୍ଷିଣ ଦ୍ୱାରରେ ଖୁରୀ ଧରି ବସନ୍ତି ଓ ମାହାରୀ ସେବା କରନ୍ତି । ପୁଷ୍ପାଳକ ଖୁରିଏ, ତା'ପରେ ତିନିଜଣ ପଣ୍ଡା ଖୁରିଏ ଆଲଟ କରନ୍ତି ।
(ଶ୍ରୀ.ସ୍ୱ. - ପୃ. , ଶ.କ. - ପୃ. ୧୯୧, ପୁ.ବୋ.- ପୃ. ୧୫୫, ପ୍ର.ଅ. ୧ମ - ପୃ. ୨୮୯, କ୍ର.ଓ.ଶ. ୧ମ - ପୃ. ୧୦୨, ପୂ.ଓ.ଭା. - ପୃ. ୮୧୭, ଓ.ସାଂ.ଶ. - ପୃ.୪୭ )

**ଆଲଟ ଚାମର**-*ଦେ. ବି.*- ବାହାର ଚନ୍ଦନ ସମୟରେ ରତ୍ନସିଂହାସନ ପ୍ରଥମ କାଠ ପାଖରେ ଚନ୍ଦନ ଲାଗି ପରେ ରାଜକୀୟ ବଡ଼ ବଡ଼ ପଙ୍ଖାରେ ଶୀତଳ ଉପଚାର କରାଯାଏ । ଏହାକୁ ଆଲଟ ଚାମର ସେବା କୁହାଯାଏ ।
(କ୍ଷେ.ସ.) ।

**ଆଲଟଲାଗି**-*ଦେ. ବି.*- ରାଜୋପକରଣ । ଦେବଦେବୀଙ୍କ ବ୍ୟଜନ ବିଶେଷ । ଦେବଦେବୀଙ୍କ ସେବାରେ ବ୍ୟବହୃତ ହେଉଥିବା ବଡ ପଙ୍ଖା । ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ଅକ୍ଷୟ ତୃତୀୟାଠାରୁ ଆରମ୍ଭକରି ବୟାଳିଶି ଦିନ ବାହାର ଓ ଭିତର ଚନ୍ଦନ ଯାତ୍ରା ସମୟରେ ଦୈନିକ ଦୁଇଥର ଆଲଟ ଲାଗି ହୁଏ । ସକାଳବେଳା ଭୋଗମଣ୍ଡପ ପୂଜା ହେବା ପରେ ମହାପ୍ରଭୁଙ୍କର ଏହି କାର୍ଯ୍ୟକ୍ରମ ଆରମ୍ଭ ହୁଏ । ବାହାର ଚନ୍ଦନ ଏକୋଇଶି ଦିନ ରାମ କୃଷ୍ଣ ପାଲିଙ୍କିରେ, ବିମାନରେ ଲକ୍ଷ୍ମୀ, ସରସ୍ୱତୀ ଓ ମଦନ ମୋହନ ବିଜେହୋଇ ଚନ୍ଦନ ଚକଡାକୁ ଯାତ୍ରା କରନ୍ତି ।
(କ୍ଷେ.ସ.) ।

**ଆଲମ୍ବିତ**-*ଦେ. ବି.*- ଧୃତ, ଗୃହୀତ, ଆଶ୍ରିତ, ଲମ୍ବମାନ, ଅବଲମ୍ବନ, ଆଶ୍ରୟ, ଶରଣ । ତଳକୁ ଲମ୍ବିଥିବା ବା ଝୁଲୁଥିବା । ଶ୍ରୀବିଗ୍ରହମାନଙ୍କ ମସ୍ତକରେ ଝୁଲୁଥିବା ଫୁଲ ବିଶେଷ ।
(ପୂ.ଓ.ଭା. - ପୃ. ୮୧୭, ପ୍ର.ଅ. ୧ମ - ପୃ. ୨୯୦, ଶ.କ. ୧ମ - ପୃ.୧୯୧) ।

**ଆଲାମ ଚଣ୍ଡୀ**-*ଦେ.ବି.*- ଶ୍ରୀକ୍ଷେତ୍ରରର ରକ୍ଷାକର୍ତ୍ତୀ ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ଅନ୍ୟତମ । ଏହି ଠାକୁରାଣୀଙ୍କ ବିଜେସ୍ଥଳୀ କୁମ୍ଭାରପଡା ନିକଟବର୍ତ୍ତୀ ସ୍ଥାନରେ । ଅଠର ନଳା ପାଖରେ ପ୍ରତିଷ୍ଠିତା ଦେବୀ । ଶ୍ରୀମନ୍ଦିର ବାହାରେଥିବା ଏହି ଠାକୁରାଣୀଙ୍କ ନିକଟକୁ ସାତପୁରୀ ଅମାବାସ୍ୟା ଓ ମକର, ଏହି ଦୁଇ ଦିନ ଘଣ୍ଟା, ଛତା ଓ କାହାଳୀ ଯାଇ କୁମ୍ଭାରମାନେ ତାଡ଼ମାନଙ୍କୁ ଆଣନ୍ତି । ନବକଳେବର ସମୟରେ ଦାରୁଶଗଡ଼ି ପୁରୀ ଆସିଲେ ପ୍ରଥମେ ଆଲାମଚଣ୍ଡୀଠାରେ ବିଶ୍ରାମ ନିଅନ୍ତି । ବାର୍ତ୍ତାଗଲେ ଗଜପତି ମହନ୍ତ, ସାଧୁସନ୍ଥ ସହ ଘଣ୍ଟଘଣ୍ଟା ଛତ୍ର ତରାସ ସହ ଆସି ଶଗଡ଼ିକୁ

ପାଛୋଟି ନେଇ ଶ୍ରୀମନ୍ଦିରର ଉତ୍ତର ଦ୍ୱାର ଦେଇ ଦାରୁଗୃହକୁ ନିଅନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୭୮, ମ.ନ. - ପୃ.୧୭) ।

**ଆଲାବର୍ତ୍ତ**-*ଦେ.ବି.*- ଆଲଟ, ରାଜବ୍ୟଜନ, ବିରାଟ, ରାଜକୀୟ ପଙ୍ଖା, ଆଡଣୀ । ବସ୍ତ୍ର ନିର୍ମିତ ବ୍ୟଜନ ବା ପଙ୍ଖା । ଶ୍ରୀମନ୍ଦିରରେ ଠାକୁରଙ୍କ ନୀତି ଓ ପର୍ବପର୍ବାଣିରେ ବ୍ୟବହୃତ ଉପକରଣ ବିଶେଷ ।
(ପ୍ର.ଅ. ୧ମ. - ପୃ.୨୮୯, ପୂ.ଓ.ଭା. - ପୃ. ୮୧୭, ଶ.କ. - ପୃ. ୧୯୧) ।

**ଆଲିମ୍ପନ**-*ଦେ.ବି.*- ଭାରତର ପ୍ରାୟ ସବୁ ପ୍ରଦେଶରେ ପ୍ରଚଳିତ ଚିତା । ହିନ୍ଦୁମାନଙ୍କର ସାମାଜିକ ଉତ୍ସବର ଗୋଟିଏ ହସ୍ତକଳା । ଏହି ଝୋଟି ଚିତ୍ର ହିଁ ପ୍ରାକ୍ ଆର୍ଯ୍ୟଯୁଗର ଐତିହ୍ୟ ବହନ କରିଥାଏ । ସାଧାରଣତଃ ଝିଅମାନେ ଝୋଟିଚିତା ଆଙ୍କିଥାନ୍ତି । ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ସମ୍ମୁଖରେ ମୁରୁଜରେ ଚିତ୍ରଣ ବା ଝୋଟିଚିତ୍ର । ଚଟାଣ ବା କାନ୍ଥରେ ବା କୌଣସି ପିଣ୍ଡି, କିମ୍ବା କଳସ ଇତ୍ୟାଦିରେ ପିଠଉରେ କିମ୍ବା ଅନେକ ସମୟରେ ମୁରୁଜରେ ବିଭିନ୍ନ ରଙ୍ଗରେ ଅଙ୍କା ଯାଉଥିବା ଝୋଟି ଚିତା ।
(ଶ.କ. ୧ମ - ପୃ. ୧୯୧, ପୌ. (ବଂ) ୧ମ - ପୃ. ୧୭୪, ପ୍ର.ଅ. ୧ମ - ପୃ.୨୯୧) ।

**ଆହୂତାପନ୍ତି**-*ଦେ.ବି.*- ଠାକୁରଙ୍କ ବିଭିନ୍ନ ଯାତ୍ରାଲାଗି ଯିବାବେଳର ଭୋଗ । ଯାତ୍ରା ବେଳର ଭୋଗ ।
(ପୁ.ବୋ. - ପୃ. ୧୫୯) ।

**ଆହୁତି**-*ସଂ.ବି.*- ମନ୍ତ୍ରପାଠ ପୂର୍ବକ ଘୃତାଦିରେ ହୋମାଗ୍ନିରେ ଘୃତ ନିକ୍ଷେପ । ଘୃତଆଦି ଶ୍ରୁବଦ୍ୱାରା ଅଗ୍ନିରେ ଏକବାର ନିକ୍ଷେପକୁ ଆହୁତି ପ୍ରଦାନ କୁହାଯାଏ । ଶ୍ରୀମନ୍ଦିରର ବିଭିନ୍ନ ଉତ୍ସବ ତଥା ରଥ ପ୍ରତିଷ୍ଠା, ନବକଳେବରର ଦାରୁ ସଂଗ୍ରହ ବେଳେ ହୋମ କରାଯାଇ ଆହୁତି ପ୍ରଦାନ କରାଯାଇଥାଏ ।
(ପୂ.ଓ.ଭା. - ପୃ. ୮୪୬, ଓ.ସାଂ.ଶ. - ପୃ.୫୦, ପ୍ର.ଅ. ୧ମ - ପୃ. ୩୦୯, କ୍ର.ଓ.ଶ. - ପୃ. ୧ମ - ପୃ. ୧୦୭, ଶ.କ. ୧ମ - ପୃ. ୧୯୯) ।

**ଆଶାବାଡି**-*ଦେ.ବି.*- ଯେଉଁବାଡି ଉପରେ ମନୁଷ୍ୟ ଆପଣା ଶରୀରର ଭାରରଖି ଚାଲେ ବା ବସେ । ଏହାକୁ କାଖ ତଳେ ଦେଇ ଛୋଟାମାନେ ଚାଲନ୍ତି ଓ ବୈରାଗୀମାନେ ତାକୁ କାଖ ତଳେ ରଖି ବସିବା ଅବସ୍ଥାରେ ବିଶ୍ରାମ କରନ୍ତି । ବସନ୍ତ ପଞ୍ଚମୀଦିନ ବେଣ୍ଟ ବା ଶିକାରକୁ ଠାକୁର ବିଜେ ହୁଅନ୍ତି । ଜାଗରଠାରୁ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ, ଓ ଦ୍ୱାଦଶୀ ତିଥିରେ, ମଙ୍ଗଳ ଆଳତି ପରେ ଠାକୁର ବେଣ୍ଟ ବା ଶିକାରକୁ ବିଜେ କରିଥାନ୍ତି । ଏ ନୀତି ସକାଶେ ବିମାନ ଘରୁ ପାଲିଙ୍କି ଓ ଗାରଦ ଘରୁ ଆଶାବାଡି ଯୋଗାହୁଏ । ବିମାନବଡୁ ମାନେ ଚାରି ଖଣ୍ଡ ଆଶାବାଡି ଧରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୪୬, ପୂ.ଓ.ଭା. - ପୃ. ୮୨୬, ପ୍ର.ଅ.୧ମ - ପୃ. ୨୯୮) ।

**ଆଂଶିକ ଶୋଧ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କୁ ଦର୍ଶନ କରିବାର ଯାତ୍ରୀମାନଙ୍କୁ ପୂର୍ଣ୍ଣ ସୁବିଧା ଯୋଗାଇବା ପାଇଁ ଲୋକଙ୍କୁ ଖାଲି କରିବା ବ୍ୟବସ୍ଥା ।
(ଶ୍ରୀ.ଶ. - ପୃ. ୩୩) ।

**ଆଶ୍ୱିନ ଗୁଣ୍ଡିଚ୍ଚା**-*ସଂ.ବି.*- ଏହା ଶାକ୍ତ ଗୁଣ୍ଡିଚା ବା ଗୁପ୍ତ ଗୁଣ୍ଡିଚା ନାମରେ ପରିଚିତ । ଶରତକାଳୀନ ଦୁର୍ଗାମାଧବଙ୍କ ରଥଯାତ୍ରା । ଦୋଳମଣ୍ଡପ ସାହିସ୍ଥ ନାରାୟଣୀ ମନ୍ଦିରକୁ ଦୁର୍ଗାମାଧବ ବିଜେ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୯) ।

**ଆଶ୍ୱିନ ଗୁଣ୍ଡିଚ୍ଚାମଣ୍ଡପ**-*ଦେ.ବି.*- ଦୋଳମଣ୍ଡପ ସାହିରେ ନାରାୟଣୀଙ୍କ ଆସ୍ଥାନ ।
(ପୁ.ବୋ. - ପୃ. ୧୫୫) ।

**ଆଶ୍ୱିନ ଶୁକ୍ଳଦଶମୀନୀତି**-*ଦେ.ବି.*- ଶ୍ରୀମନ୍ଦିରରେ ଏହିଦିନ ଦଶହରା ପାଳିତ ହୁଏ । ଏହିଦିନ ପାଞ୍ଚଖଣ୍ଡ ଆଜ୍ଞାମାଳ ଲାଗି ହେବା ପରେ ସକାଳ ଧୂପ ପରେ ପଣ୍ଡା ଆୟୁଧମାନଙ୍କୁ ଆଣି ମହାସ୍ନାନ କରାଇ ବରୁଣପୂଜା କରନ୍ତି । ପରେ ଏହି ଦିନ ସହସ୍ର କୁମ୍ଭ ଅଭିଷେକ ହୁଏ । ଠାକୁରଙ୍କର ନାନାବିଧ ସୁବର୍ଣ୍ଣ ଅଳଙ୍କାର ଲାଗି ହୋଇ ରାଜବେଶ ନୀତି କରାଯାଏ ।
(ଶ୍ରୀ.ସ୍ୱ. - ପୃ. ୯୯) ।

**ଆଶ୍ରମ**-*ସଂ.ବି.*- ଆଶ୍ରୟସ୍ଥାନ । ସଂସାର ତ୍ୟାଗୀମାନଙ୍କର ଆଶ୍ରୟ ସ୍ଥାନ । ଜୀବନର ବିଭିନ୍ନ ବିଭାଗ ସୂଚକ ଋରି ଗୋଟି ଅବସ୍ଥା ଯଥା- ବ୍ରହ୍ମଚର୍ଯ୍ୟ, ଗାର୍ହ୍ୟସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ଶ୍ରୀମନ୍ଦିରକୁ କେନ୍ଦ୍ରକରି ବିଭିନ୍ନ ଦିଗରେ ଋରୋଟି ପ୍ରାଚୀନ ଆଶ୍ରମ । ଦୋଳମଣ୍ଡପ ସାହି, ବାଲିସାହି, ଗୌଡବାଡ଼ ସାହି ଓ ମାର୍କଣ୍ଡେଶ୍ୱର ସାହିରେ ଯଥାକ୍ରମେ ଦୁଇ ବୈଦିକ ଋଷି ଅଙ୍ଗିରା ଓ ଭୃଗୁ ଏବଂ ଦୁଇ ପୌରାଣିକ ଋଷି କଣ୍ଡୁ ଓ ମାର୍କଣ୍ଡେୟଙ୍କ ନାମ ସହ ଜଡିତ ଋରି ଆଶ୍ରମ । (ପୂ.ଓ.ଭା. - ପୃ. ୮୩୦, ପ୍ର.ଅ. ୧ମ - ପୃ. ୩୦୦, ଓ.ସାଂ.ଶ. - ପୃ.୪୮, ପୁ.ବୋ.- ପୃ. ୧୫୫, କ୍ର.ଓ.ଶ. - ପୃ. ୧୦୪, ଶ.କ. ୧ମ- ପୃ. ୧୯୫) ।

**ଆସନ**-*ସଂ.ବି.*- ଦେବପୂଜା ଉପଋରର ପ୍ରଥମ ଉପଋର । ବସିବା ପାଇଁ ବ୍ୟବହୃତ ପୀଠ, ପୀଢା, କମ୍ବଳ, କୁଶାଦିରେ ନିର୍ମିତ ପୂଜା ଯୋଗ୍ୟ ତାନ୍ତ୍ରିକ ସାଧନ ଓ ପ୍ରାଣାୟାମ କରିବା ସମୟରେ ମନକୁ ସ୍ଥିର ରଖିବା ପାଇଁ ଭିନ୍ନ ଭିନ୍ନ ଆସନ ବା ବସିବା ପ୍ରଣାଳୀ ନିର୍ଦ୍ଦିଷ୍ଟ ହୋଇଅଛି । ଈଶ୍ୱରଙ୍କ ପୂଜା ଓ ତର୍ପଣାଦି ପାଇଁ ଆସନ ଶୁଦ୍ଧି କରି ପୂଜା ତର୍ପଣ କରାଯାଏ । ଅଷ୍ଟାଙ୍ଗ ଯୋଗର ତୃତୀୟ ଅଙ୍ଗ । ଶ୍ରୀମନ୍ଦିରରେ ଅକ୍ଷୟତୃତୀୟା ଦିନ ଭଦ୍ରାସନ ଉପରେ ପିଙ୍ଗଣରେ ଚନ୍ଦନ ରଖାଯାଇ ବିଗ୍ରହମାନଙ୍କୁ ଲାଗି କରାଯାଏ । ଦୈନିକ ପୂଜାନୀତିରେ କାଠ ପିଢ଼ାକୁ ଆସନ ରୂପେ ବ୍ୟବହାର କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୭, ପୂ.ଓ.ଭା. - ପୃ. ୮୩୩/୮୩, ଓ.ସାଂ.ଶ. - ପୃ. ୪୮, କ୍ର.ଓ.ଶ.- ପୃ. ୧୦୫, ପ୍ର.ଅ. - ପୃ. ୩୦୩, ଶ.କ. ୧ମ - ପୃ.୧୯୭) ।

**ଆସନ ପୁଷ୍କରିଣୀ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଜଗନ୍ନାଥ ବଲ୍ଲଭ ମଠ ପରିସରରେ ଥିବା ପୁଷ୍କରିଣୀ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବିଭିନ୍ନ ଯାନିଯାତ୍ରା ଓ ପର୍ବପର୍ବାଣି ମଧ୍ୟରେ କାଳୀୟଦଳନ, ରାବଣବଧ, ବେଣ୍ଟ ପାରିଧି, ଆଦି ବିଭିନ୍ନ ନୀତି ଅନୁଷ୍ଠିତ ହେବା ସମୟରେ ଶ୍ରୀଜୀଉଙ୍କର ଚଳନ୍ତି ପ୍ରତିମାକୁ ଆସନ ପକାଯାଇ ଏହି ପୁଷ୍କରଣୀ ହୁଡ଼ାରେ ବିଜେ କରାଯାଉଥିବାରୁ ସମ୍ଭବତଃ ପୁଷ୍କରିଣୀର ନାମ ଆସନ ପୁଷ୍କରିଣୀ ନାମକରଣ ହୋଇଥିବା ମନେ ହୁଏ । ଏହି ପୁଷ୍କରିଣୀ ଚତୁଃପାର୍ଶ୍ୱରେ ତୁଳସୀ ଓ ଫୁଲ ବଗିଚା ରହିଛି, ଯେଉଁଥିରୁ ପ୍ରତ୍ୟେହ ତୁଳସୀ ଓ ପୁଷ୍ପ ସଂଗ୍ରହ କରାଯାଇ ଶ୍ରୀଜୀଉଙ୍କ ସେବାରେ ଲାଗିଥାଏ ।
(ଶ୍ରୀ.ଜି. - ପୃ. ୨୯୩) ।

**ଆସ୍ଥାନ**-*ସଂ.ବି.*- ମଣ୍ଡପ । ଦେବଦେବୀଙ୍କର ଉପବେସନ ପୀଠ । ଆସନ, ଅଧିଷ୍ଠାନ, ସିଂହାସନ, ବସିବା ସ୍ଥାନ । ଆସ୍ଥା, ବିଶ୍ୱାସ, ନିର୍ଭର, ଆଶ୍ରୟ । ରାଜା ବା ମହାରାଜା ଯେଉଁଠାରେ ପ୍ରଜାଦିଙ୍କ ଗୁହାରୀ ଶୁଣନ୍ତି । କଚେରୀ ଘର । ପ୍ରତିମାଦି ବସିବାର ପ୍ରଧାନ ସ୍ଥାନ । ଶ୍ରୀମନ୍ଦିର ପାକଶାଳାରେ ଏକ ଉଦ୍ଦିଷ୍ଟ ଚୁଲି ପାଖରେ ସାହାଣ ପଥରରେ ତିଆରି ସ୍ଥାନ । ଯେଉଁଠାରେ ଉପକରଣ ପ୍ରସ୍ତୁତ ହୁଏ ।
(କ୍ର.ବି.ଓ.ଶ. - ପୃ. ୧୦୬, ପୂ.ଓ.ଭା. - ପୃ. ୮୪୦, ଓ.ସାଂ.ଶ. - ପୃ. ୪୯, ଶ.କ. ୧ମ- ପୃ.୧୯୮/ କ୍ଷ.ସ.) ।

**ଆସ୍ଥାନ ପଡିଆରୀସେବା**-*ଦେ.ବି.*- ଶ୍ରୀମନ୍ଦିରରେ ପୂଜା ସମୟରେ କାଠପିଢ଼ାକୁ ଆସନ ରୂପେ ବ୍ୟବହାର କରାଯାଉଛି । ମାଜଣା ନୀତିରେ ସୁଦ ସୁଆରଙ୍କ ସହ ପୂଜା କରିବା, ପ୍ରତିହାରୀ ସେବକ ବିଶେଷ । ବିଭିନ୍ନ ପର୍ବ ସମୟରେ ଯୋଗାଣିଆ, ପୁରୋହିତ ଇତ୍ୟାଦିଙ୍କୁ ଡାକ ପକାଇବା ସେବକ । ଏହି ମଣୋହିବେଳକୁ ଆସ୍ଥାନ ପଡିଆରୀ ଟେରା ଧରିଥାନ୍ତି ।
(ମା.ପା. - ପୃ. ୫୮, କ୍ର.ଶ. - ପୃ. ୧୦୬, ଶ୍ରୀ.ସ୍ୱ. - ପୃ. ୪୪) ।



**ଇଷ୍ଟଡ**-*ଦେ.ବି.*- କଷି ପଣସ ବା ପଣସ କଠା । ଶ୍ରୀ ମନ୍ଦିରର ପାକଶାଳାରେ ଏହା ବ୍ୟବହୃତ ହୋଇଥାଏ ।
(ପୂ.ଓ.ଭା. - ପୃ. ୮୫୭, ପ୍ର.ଅ. ୧ମ - ପୃ. ୩୧୨)।

**ଇଚ୍ଛାମୟ**-*ସଂ.ବି.*- ଇଚ୍ଛା ପରିପୂର୍ଣ୍ଣକାରୀ ଶ୍ରୀଜଗନ୍ନାଥଙ୍କୁ ଇଚ୍ଛାମୟ ରୂପେ ବର୍ଣ୍ଣନା କରାଯାଇଛି ।
(ଓ.ସାଂ.ଶ. - ପୃ.୫୦, ପୂ.ଓ.ଭା. - ପୃ.୮୫୪)।

**ଇଜ୍ୟା**-*ସଂ.ବି.*- ହୋମ, ପୂଜା, ଯଜ୍ଞ, ଦାନ, ସଙ୍ଗମ, ମିଳନ, ପ୍ରତିମା ।
(ଶ.କ. - ପୃ.୨୦୪, ପୂ.ଓ.ଭା. - ପୃ. ୮୫୭, ପ୍ର.ଅ. ୧ମ - ପୃ. ୩୧୪, ଶ.ଅ. - ପୃ. ୧୪୬, ସଂ.ହି.କୋ.ପ. - ପୃ.୧୭୨- ୭୩) ।

**ଇନ୍ଦିରା**-*ସଂ.ବି.*- ଲକ୍ଷ୍ମୀ, କମଳା । ଶ୍ରୀମନ୍ଦିରରେ ପୂଜା ପାଉଥିବା ଲକ୍ଷ୍ମୀ ଠାକୁରାଣୀ ।
(ପୂ.ଓ.ଭା. - ପୃ. ୮୬୬, ପ୍ର.ଅ. ୧ମ - ପୃ. ୩୧୭, ଶ.କ. ୧ମ - ପୃ. ୨୦୫, ସଂ.ହି.କୋ. - ପୃ. ୧୭୪, ସଂ.ହି.କୋ. - ପୃ. ୧୭୪) ।

**ଇନ୍ଦ୍ର**-*ସଂ.ବି.*- ସ୍ୱର୍ଗର ରାଜା ବ୍ରହ୍ମା, ବିଷ୍ଣୁ, ମହେଶ୍ୱରଙ୍କ ବ୍ୟତୀତ ଅନ୍ୟାନ୍ୟ ଦେବତାମାନେ ଏହାଙ୍କ ଅଧୀନସ୍ଥ । ଏହାଙ୍କୁ ଦେବରାଜ କହନ୍ତି । ଶଚୀ ଏହାଙ୍କର ପତ୍ନୀ । ବୃତ୍ରବଧ ନିମିତ୍ତ ଦେବଶିଳ୍ପୀ ବିଶ୍ୱକର୍ମା ଦଧୀଚି ମହର୍ଷିଙ୍କ ଅସ୍ଥିରେ ବଜ୍ର ନିର୍ମାଣ କରି ଏହାଙ୍କୁ ଦେଇଥିଲେ । ସମୁଦ୍ର ମନ୍ଥନ ପରେ ଐରାବତ ହସ୍ତୀ, ଉଚ୍ଚୈଃଶ୍ରବା ଅଶ୍ୱ ଓ ପାରିଜାତ ପୁଷ୍ପ ଇନ୍ଦ୍ରଙ୍କ ଭାଗରେ ପଡ଼ିଥିଲା । ଏହାଙ୍କର ରାଜପ୍ରସାଦର ନାମ ବୈଜୟନ୍ତ ଓ ପୁତ୍ରର ନାମ ଜୟନ୍ତ । ମହାଭାରତ ଅନୁଯାୟୀ ବ୍ରହ୍ମାଙ୍କ ଆଦେଶରେ ବିଶ୍ୱକର୍ମାଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ପରମା ସୁନ୍ଦରୀ ତିଳୋତ୍ତମାଙ୍କୁ ଦେଖି ଇନ୍ଦ୍ର ସହସ୍ର ଲୋଚନ ବିଶିଷ୍ଟ ହୋଇଥିଲେ । ବ୍ରହ୍ମ ବୈବର୍ତ୍ତ ଓ ରାମାୟଣର ଆଦିକାଣ୍ଡ ଅନୁସାରେ ମହର୍ଷି ଗୌତମଙ୍କ ପତ୍ନୀ ଅହଲ୍ୟାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଛଦ୍ମ ବେଶରେ ଗୌତମ ରୂପ ଧାରଣ କରି ଇନ୍ଦ୍ର ତାଙ୍କର ସତୀତ୍ୱ ନଷ୍ଟ କରିଥିଲେ । ଏହା ଗୌତମ ଜାଣିପାରି ଇନ୍ଦ୍ରଙ୍କୁ ଅଭିଶାପ ଦେଇଥିଲେ । ଏହାଦ୍ୱାରା ଇନ୍ଦ୍ରଙ୍କ ଶରୀରରେ ସହସ୍ର ଯୋନି ସୃଷ୍ଟି ହୋଇଥିଲା । ଦେବତାଙ୍କ ପରାମର୍ଶ କ୍ରମେ ସହସ୍ର ଯୋନି ସହସ୍ର ଚକ୍ଷୁରେ ପରିଣତ ହେଲା । ସେଥିପାଇଁ ଇନ୍ଦ୍ରଙ୍କର ଅନ୍ୟ ନାମ ସହସ୍ରାକ୍ଷ । ଶ୍ରୀମନ୍ଦିରରେ ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଦିନ ସପ୍ତମେଘ ସହ ଇନ୍ଦ୍ରଧ୍ୱଜ ପୂଜା କରାଯାଏ । ପୁଣି କଥିତ ଅଛି ପ୍ରତ୍ୟହ ଶ୍ରୀଜଗନ୍ନାଥ ଦର୍ଶନ ପାଇଁ ଇନ୍ଦ୍ର ସ୍ୱର୍ଗରୁ ଆସିଥାଆନ୍ତି ।
(ଚ.ଚି. - ପୃ. ୧୯/୧୭) ।

**ଇନ୍ଦ୍ରଗୋବିନ୍ଦ**-*ଦେ.ବି.*- ଏକ ପ୍ରକାର ଉତ୍କୃଷ୍ଟ କାରୁକାର୍ଯ୍ୟ ଖଚିତ ଚାନ୍ଦୁଆ ।
(ପୂ.ଓ.ଭା. - ପୃ. ୮୬୮, ପ୍ର.ଅ. ୧ମ - ପୃ. ୩୧୮)।

**ଇନ୍ଦ୍ରଦ୍ୟୁମ୍ନ**-*ସଂ.ବି.*- ଅଗ୍ନିପୁରାଣ ଓ ବିଷ୍ଣୁ ପୁରାଣାନୁସାରେ ଅବନ୍ତୀର ରାଜା । ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁ ଭକ୍ତ ଥିଲେ । ଜଣେ ସନ୍ନ୍ୟାସୀଠାରୁ ନୀଳମାଧବଙ୍କ ସନ୍ଧାନ ପାଇ ତାଙ୍କର ପରମ ବିଶ୍ୱସ୍ତ ବିଦ୍ୟାପତିଙ୍କୁ ନୀଳମାଧବଙ୍କ ଅନ୍ୱେଷଣରେ ନୀଳକନ୍ଦରକୁ ପ୍ରେରଣ କରିଥିଲେ ।
ବିଦ୍ୟାପତି ନୀଳମାଧବ ଦର୍ଶନ କରି ରାଜାଙ୍କୁ ଜଣାଇବା ପରେ ରାଜା ଇନ୍ଦ୍ରଦ୍ୟୁମ୍ନ ସୈନ୍ୟମାନଙ୍କ ସହିତ ନୀଳକନ୍ଦରରେ ପହଞ୍ଚି ଦେଖନ୍ତି ଯେ, ନୀଳମାଧବ ଅନ୍ତର୍ଦ୍ଧାନ ହୋଇଛନ୍ତି । ତେବେ

ବିଶ୍ୱାବସୁ ନୀଳମାଧବଙ୍କୁ ଅନ୍ୟତ୍ର ଲୁଚାଇ ରଖିଥିବେ ଏହା ସନ୍ଦେହ କରି ତାଙ୍କୁ ବନ୍ଦୀ କଲେ । ବିଶ୍ୱାବସୁ ନିର୍ଦ୍ଦୋଷରେ ବନ୍ଦୀ ହୋଇ ନୀଳମାଧବଙ୍କୁ ପ୍ରାର୍ଥନା କରନ୍ତେ ପ୍ରଭୁ ରାଜାଙ୍କୁ ସ୍ୱପ୍ନାଦେଶରେ କହିଲେ ଯେ ରାଜା ଆଉ ତାଙ୍କର ଦର୍ଶନ ଲାଭ କରିପାରିବେ ନାହିଁ । ବରଂ ଏକ ମନ୍ଦିର ନିର୍ମାଣ କରି ସେହି ସ୍ଥାନରେ ସହସ୍ର ଅଶ୍ୱମେଧ ଯଜ୍ଞ କଲେ ସେ ଦାରୁ ରୂପେ ଦର୍ଶନ ଦେବେ । ସ୍ୱପ୍ନାଦେଶ ପରେ ରାଜା ବିଶ୍ୱାବସୁଙ୍କୁ ବନ୍ଧନମୁକ୍ତ କଲେ, ସେହିସ୍ଥାନରେ ଶହେ କୋଡିଏ ହାତ ଉଚ୍ଚତା ବିଶିଷ୍ଟ ଏକ ମନ୍ଦିର ନିର୍ମାଣ କରି ବାଙ୍କି ମୁହାଁଣରେ ଅପୌରୁଷେୟ ଶଙ୍ଖଚକ୍ରାଙ୍କିତ ଭାସମାନ ଦାରୁଙ୍କୁ ନେଇ ଅନନ୍ତ ମହାରଣାରୂପୀ ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ମୂର୍ତ୍ତି ଗଠନ କରି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇଥିଲେ ।

କପିଳ ସଂହିତା, ବାମଦେବ ସଂହିତା, ନୀଳାଦ୍ରି ମହୋଦୟ, ଅଗ୍ନି ପୁରାଣ ଓ ବିଷ୍ଣୁ ପୁରାଣ ପ୍ରଭୃତିରେ ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ପର୍କରେ ବିଶେଷ ବିବରଣୀ ପ୍ରଦାନ କରାଯାଇଛି ।

(ଶ୍ରୀ.ଜି. - ୮-୧୦) ।

**ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ**-*ସଂ.ବି.*- ପୁରୀରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଖୋଳା ହୋଇଥିବା ପୁଷ୍କରିଣୀ । ସ୍କନ୍ଦ ପୁରାଣରେ ଏହାକୁ ଅଶ୍ୱମେଧାଙ୍ଗ ସର ବୋଲି କୁହାଯାଇଅଛି । ଇନ୍ଦ୍ରଦ୍ୟୁମ୍ନଙ୍କ ସହସ୍ର ଅଶ୍ୱମେଧ ଯଜ୍ଞର କର୍ମାଙ୍ଗ ଦାନ ନିମନ୍ତେ ଉଦ୍ଦିଷ୍ଟ କୋଟି କୋଟି ଗୋଧନଙ୍କ ଖୁରାଘାତରେ ଏହାର ସୃଷ୍ଟି । ଦାନ ନିମନ୍ତେ ସଂକଳ୍ପ ଜଳ ଅନ୍ୟତ୍ର ଗୋମୂତ୍ର ରେ ପୂର୍ଣ୍ଣ ହୋଇ ଏହା ପୁଷ୍କରିଣୀ ରୂପ ନେଇଛି ବୋଲି ଏଥିରେ କୁହାଯାଇଛି । ଶ୍ରୀମନ୍ଦିର ନିର୍ମାଣ ବେଳେ ପଥର ବୋହିଥିବା ମୂଲିଆମାନେ ପଥର ବୋହି ବୋହି କୂର୍ମ ହୋଇ ଏଠାରେ ଅଛନ୍ତି ବୋଲି ଦେଉଳ ତୋଳା ଗ୍ରନ୍ଥରେ ଉଲ୍ଲେଖ ଅଛି । ଗୁଣ୍ଡିଚା ମନ୍ଦିରର ଐଶାନ୍ୟକୋଣରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଅବସ୍ଥିତ । ଏହାର ଲମ୍ବ ଚାରିଶହ ପଞ୍ଚାଅଣି ଫୁଟ ଓ ପ୍ରସ୍ଥ ତିନିଶହ ଛୟାନବେ ଫୁଟ । ସାଢ଼େ ଚାରି ଏକର ପରିମିତ ଜମି ଉପରେ ଏହି ପୁଷ୍କରିଣୀ କୂଳରେ ଅନେକ ଗୁଡ଼ିଏ କ୍ଷୁଦ୍ର ମନ୍ଦିର ଅଛି ।

(ପ୍ର.ଅ. ୧ମ - ପୃ. ୩୧୮, ପୁ.ବୋ. - ପୃ. ୨୨୯, ଶ.ଅ. - ପୃ. ୧୪୯, ପୂ.ଓ.ଭା. - ପୃ. ୮୬୯, ଶ୍ରୀ.ଜି. - ପୃ. ୯୬) ।

**ଇନ୍ଦ୍ରଧ୍ୱଜ**-*ସଂ.ବି.*- ଭାଦ୍ରବ ମାସ ଶୁକ୍ଳ ଦ୍ୱାଦଶୀ ଦିନ ଇନ୍ଦ୍ରଙ୍କର ସନ୍ତୋଷ ନିମିତ୍ତ ଧ୍ୱଜଦାନ ପୂଜା କରାଯାଏ । ଏହା ଠାକୁରଙ୍କର ଏକ ସୁରକ୍ଷା କବଚ । ଶ୍ରୀମନ୍ଦିରରେ ଜଣେ କୋଠ ସୁଆଁସିଆ ସ୍ନାନବେଦୀ ଘହାଣୀମଣ୍ଡପଠାରେ କାଠ ଗୟଳରେ ବାଉଁଶରେ ସପ୍ତ ମେଘ ତିଆରି କରି ପୋତି ତାହାକୁ ପଞ୍ଚୋପଚାର ପଦ୍ଧତିରେ ପୂଜା କରାଯାଏ । ଏହାକୁ ଇନ୍ଦ୍ରଧ୍ୱଜା ପୂଜା କୁହାଯାଏ । ରୋଷଘରୁ ଦୁଇଓଳି ଅନ୍ନ ଆଣି ଏଠାରେ ପଙ୍‌କ୍ତି ହୁଏ । ପଞ୍ଚୋପଚାରରେ ଭୋଗ ଓ ବନ୍ଦାପନା ପୂର୍ଣ୍ଣିମା ପର୍ଯ୍ୟନ୍ତ ଚାଲିଥାଏ । ଇନ୍ଦ୍ରଙ୍କ ସହିତ ଶଚୀ, ମାତଳି, ଜୟନ୍ତ, ବଜ୍ର, ଐରାବତ, ସମସ୍ତ ଦେବତା ଓ ଗଣଦେବତା ମାନଙ୍କର ପୂଜା ମଧ କରାଯାଏ । ଶ୍ରୀମନ୍ଦିରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆଜ୍ଞାମାଳ ଆଣି ମର୍ଦ୍ଦଳାକାର ଧ୍ୱଜ ଉପରେ ଅର୍ପଣ କରାଯାଏ । ଘଣ୍ଟା ଧ୍ୱନି, ଘମରାଦି ଘଳନା କରି ମହୋତ୍ସବ ମଧରେ ଏହି ମର୍ଦ୍ଦଳାକୃତି ଧ୍ୱଜକୁ ମନ୍ଦିରର ଚତୁଃପାର୍ଶ୍ୱରେ ଭ୍ରମଣ କରାଇ ତୃତୀୟାବରଣ ବାହାରେ ପୂର୍ବଦିଗରେ ରଖାଯାଏ । ଆଋର୍ଯ୍ୟ ପଞ୍ଚୋପଋରରେ ଅଗ୍ନିପୂଜା କରିଥାଆନ୍ତି । ଏହି ଅଗ୍ନି ପୂଜାରେ ଉଦୁମ୍ବର କାଷ୍ଠର ସମିଧରେ ନୃସିଂହଙ୍କ ମନ୍ତ୍ରରେ ଏକ ହଜାର ସଂଖ୍ୟକ ରାଶିଚରୁ ଅର୍ପଣ କରାଯାଇଥାଏ । ଏହି ଇନ୍ଦ୍ରଧ୍ୱଜ ବା ଶକ୍ରଧ୍ୱଜର ଲମ୍ବ ପଚିଶି ହାତ ଏବଂ ଏହାର ଆକୃତି କଦଳୀଗଛର କାଣ୍ଡପରି ନିର୍ମିତ ହୋଇଥାଏ । ଏହି ପୂଜା ଚାରି ଦିନ ବ୍ୟାପି ହୋଇଥାଏ । ଅଗ୍ନିଶର୍ମା ଏହି ଧ୍ୱଜକୁ ବନ୍ଦାପନା କରନ୍ତି । ଏହି ପୂଜା ଦ୍ୱାରା ରାଜ୍ୟରେ ଶତ୍ରୁ ଭୟ, ଦୁର୍ଭିକ୍ଷ, ମହାମାରୀ ଆଦି

ରୋଗ ଦୂର ହୋଇଥାଏ । ଇନ୍ଦ୍ର ମଧ୍ୟ ସନ୍ତୁଷ୍ଟ ହୋଇ ଯଥା ସମୟରେ ବୃଷ୍ଟି କରନ୍ତି ଏବଂ ପ୍ରଜାମାନେ ସୁଖରେ ରହନ୍ତି । ଏହି ଭାଦ୍ର ଶୁକ୍ଳ ଦ୍ୱାଦଶୀ ଦିନରେ ବାମନ ଜନ୍ମ, ସୁନିଆ ତଥା ଗରୁଡଙ୍କ ପାର୍ଶ୍ୱ ପରିବର୍ତ୍ତନ ଉତ୍ସବ ମଧ୍ୟ ଶ୍ରୀମନ୍ଦିରରେ ଅନୁଷ୍ଠିତ ହୁଏ ।

(ନୀ.ମ. ୨୭ ଅଧ୍ୟାୟ - ପୃ. ୩୮୫-୩୮୯, ପୂ.ଓ.ଭା. - ୮୬୯, ପ୍ର.ଅ. ୧ମ - ପୃ. ୩/୯, ପୌ. ୧ମ - ପୃ. ୧୯୬, ସଂ.ହି.କୋ.- ପୃ. ୧୭୫, ଶ୍ରୀ.ସ୍ୱ. ୨ୟ - ପୃ. ୯୬) ।

**ଇନ୍ଦ୍ରନୀଳମଣି**-*ସଂ.ବି.*- କ୍ଷୀର ମଧ୍ୟରେ ଯଦି ଇନ୍ଦ୍ର ନୀଳମଣିକୁ ପକାଯାଏ ତେବେ କ୍ଷୀର ରଙ୍ଗ ସମ୍ପୂର୍ଣ୍ଣ ନୀଳବର୍ଣ୍ଣ ହୋଇଥାଏ । ତେବେ ଏହାକୁ ଇନ୍ଦ୍ରନୀଳମଣି ବୋଲି ଜାଣିବାକୁ ହେବ । ଶ୍ରୀଜଗନ୍ନାଥଙ୍କର ବିଜେ ପ୍ରତିମା ବା ଚଳନ୍ତି ପ୍ରତିମା ଇନ୍ଦ୍ରନୀଳମଣି ପ୍ରତିମା ରୂପେ ପୂର୍ବେ ପ୍ରତିନିଧିତ୍ୱ କରୁଥିଲେ । ଏହି ପ୍ରତିମା ଅତୀବ ରମଣୀୟ ତଥା ମୂଲ୍ୟବାନ ଥିଲା । କୁହାଯାଏ କି ଏହା ତିରିଶି ମହଣ ସୁନାରେ ତିଆରି ହୋଇଥିଲା ଓ ଆଖିରେ ଦୁଇଟି ହୀରା ଥିଲା । ୧୫୬୮ରେ କଳାପାହାଡ଼ ଶ୍ରୀମନ୍ଦିର ଲୁଣ୍ଠନ କରି ଏହି ମୂର୍ତ୍ତି ନେଇଯାଇଥିଲା ।

(ଶ୍ରୀ.ଜି. - ପୃ. ୨୩୧, ଶ୍ରୀମନ୍ଦିର ସମାଚାର - ଜୁନ୍ ୧୫ - ୧୯୯୪) ।

**ଇନ୍ଦ୍ରହାତୀ**-*ସଂ.ବି.*- ଭାଦ୍ରବ ପୂର୍ଣ୍ଣିମା ଦିନ ଇନ୍ଦ୍ର ଗୋବିନ୍ଦ ପୂଜାରେ ବାସେଳି ସାହିରୁ ବାହାରୁଥିବା ହାତୀ ।

(କ୍ଷେ.ସ.) ।

**ଇନ୍ଦ୍ରାଣୀ**-*ସଂ.ବି.*- ଇନ୍ଦ୍ରଙ୍କ ସ୍ତ୍ରୀ, ଶଚୀ । ସେ ଦାନବରାଜ ପୁଲୋମାଙ୍କ କନ୍ୟା । ଇନ୍ଦ୍ରପଦ ତପସ୍ୟାଲବ୍ଧ, ସେହି ହେତୁରୁ କାଳକ୍ରମେ ଅନେକଙ୍କ ଭାଗ୍ୟରେ ଇନ୍ଦ୍ରତ୍ୱ ଲାଭ ହୋଇପାରେ. କିନ୍ତୁ ଯେ ଇଚ୍ଛା ସେ ଇନ୍ଦ୍ର ହେଲେ ମଧ୍ୟ ଶଚୀ ବା ଇନ୍ଦ୍ରାଣୀ ଇନ୍ଦ୍ରଙ୍କର ପଦବୀ ସଂଶ୍ଳିଷ୍ଟା ପତ୍ନୀ । ଶ୍ରୀମନ୍ଦିର ଭିତର ବେଢ଼ା ଭିତରେ ଇନ୍ଦ୍ରାଣୀଙ୍କ ମନ୍ଦିର ବିଦ୍ୟମାନ ।

(ଶ୍ରୀ.ସ୍ୱ. - ପୃ. ୨୧୪) ।

**ଇନ୍ଦ୍ରପୂର୍ଣ୍ଣିମା**-*ଦେ.ବି.*- ଭାଦ୍ର ପୂର୍ଣ୍ଣିମା ଦିନର ଚାରି ଦିନ ପୂର୍ବରୁ ଜଗନ୍ନାଥ ମନ୍ଦିରରେ ସପ୍ତମେଘ ବନ୍ଦାପନା ଓ ଇନ୍ଦ୍ରଧ୍ୱଜ ପୂଜା ଅନୁଷ୍ଠିତ ହୁଏ । ସପ୍ତମେଘକୁ ମେଘନାଦ ପ୍ରାଚୀରରେ ସଂସ୍ଥାପନ କରି ଦ୍ୱାଦଶୀ ଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପୂଜାର୍ଚ୍ଚନା କରାଯାଏ । ପୂର୍ଣ୍ଣିମା ଦିନ ବାସେଳି ସାହିର ଜଣେ ଲୋକ ଇନ୍ଦ୍ରହାତୀ ବେଶରେ ଆସି ସପ୍ତମେଘ ଦର୍ଶନ କରିଥାଆନ୍ତି । ଏହି ପୂଜା ଶ୍ରୀଜଗନ୍ନାଥ ମନ୍ଦିରରେ ସ୍ୱତନ୍ତ୍ର ଉତ୍ସବ ରୂପେ ପରିଗଣିତ ।

**ଇଷ୍ଟଦେବ**-*ସଂ.ବି.*- ପୂଜ୍ୟଦେବତା, ଗୁରୁ, ଠାକୁର, ଯାହାଙ୍କଠାରୁ ମନ୍ତ୍ର ଗ୍ରହଣ କରାଯାଏ । ନିଜର ଆରାଧ୍ୟ ଦେବତା । ଉପାସ୍ୟ ଦେବତା, କୁଳ ଦେବତା । ଦେବତାନୁକୂଳ ଦେବ, ଅଭିଭାବକ ଦେବ । ଓଡ଼ିଶାବାସୀଙ୍କ ପାଇଁ ଶ୍ରୀଜଗନ୍ନାଥ ହେଉଛନ୍ତି ଇଷ୍ଟ ଓ ରାଷ୍ଟ୍ରଦେବତା ।

(ସଂ.ହି.କୋ. - ପୃ. ୧୭୭, ପୂ.ଓ.ଭା. - ପୃ. ୮୮୦, ପ୍ର.ଅ. - ପୃ. ୩୨୫, ଓ ସାଂ.ଶ.- ପୃ. ୫୩, ଶ.କ. ୧ମ - ପୃ. ୨୧୪) ।

# ଈ

**ଈଶ** - *ସଂ. ବି.* - ଲଙ୍ଗଳଦଣ୍ଡ, ହଳ । ଶ୍ରୀବଳଭଦ୍ର ଠାକୁରଙ୍କର ଆୟୁଧ ।
ପ୍ର.ଅ. ୧ମ - ପୃ.୩୨୮, ପୂ.ଭା.କୋ. - ପୃ.୮୮୭, ସଂ.ହି.କୋ. - ପୃ.୧୮୦) ।

**ଈଶାନେଶ୍ୱର**- *ସଂ.ବି.* - ମହାଦେବ । ଶିବ । ଶ୍ରୀମନ୍ଦିର ବାହାର ବେଢ଼ାର ଉତ୍ତର ଦ୍ୱାର ଐଶାନ୍ୟକୋଣରେ ଥିବା ମହାଦେବ । ସେ ହେଉଛନ୍ତି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର କୁଳଗୁରୁ । ଐଶାନେଶ୍ୱର ହେଉଛନ୍ତି ରୁଦ୍ର ଓ ତ୍ର୍ୟମ୍ବକେଶ୍ୱର । ଏହାଙ୍କ ମନ୍ଦିରଟି ଅତି ପ୍ରାଚୀନ । ମନ୍ଦିର ବେଢ଼ା ପତନରୁ ପ୍ରାୟ ପଚିଶି ଫୁଟ ତଳେ ଶକ୍ତି ପ୍ରତିଷ୍ଠିତ । ମାଦଳା ପାଞ୍ଜି ଅନୁସାରେ ଧ୍ରୁବକେଶରୀ ଏ ମନ୍ଦିରକୁ ନିର୍ମାଣ କରିଥିଲେ । ମନ୍ଦିରର ଉଚ୍ଚତା, ବେଢ଼ା ପତନ ଠାରୁ ପ୍ରାୟ ଅଠର ଫୁଟ । ଜଗମୋହନର ଉଚ୍ଚତା ପନ୍ଦର ଫୁଟ । ଏଥିରେ ନବଗ୍ରହ ଓ ତତ୍ ଉପରେ ଏକ କ୍ଷୁଦ୍ର ଲକ୍ଷ୍ମୀବିଗ୍ରହ ବିଦ୍ୟମାନ । ଦ୍ୱାରଦେଶର ଦ୍ୱିପାର୍ଶ୍ୱରେ ନନ୍ଦୀ ଓ ଭୃଙ୍ଗୀ ବିରାଜମାନ । ଜଗମୋହନରେ ଜଗନ୍ନାଥଙ୍କ ମୂର୍ତ୍ତି ଖୋଦିତ । ଦୈନିକ ନୀତି ସକାଶେ କୋଠରୁ ବଲ୍ଲଭ ଭୋଗ ଖଞ୍ଜା ଅଛି । ଏହାଛଡ଼ା ପ୍ରାତଃ ସମୟରେ ସ୍ନାନ, ଫୁଲ, ବେଶ, କୋଠରୁ ଯୋଗାଯାଉଛି । ଭୋଗ, ଦ୍ୱିପ୍ରହରରେ ଠାକୁରଙ୍କୁ ମଇଲମ ଫୁଲବେଶ, ଖଇକୋରା ଭୋଗ, ସନ୍ଧ୍ୟାରେ କର୍ପୂର ଆଳତି ରାତ୍ରିରେ କ୍ଷୀର, ଖୁଆ, କଦଳୀଭୋଗ ପ୍ରଭୃତି କରାଯାଇ ପହୁଡ଼ନୀତି ଅନୁଷ୍ଠିତ ହୋଇଥାଏ । ୨୦୦୪ ମସିହାରୁ ଏହିଠାରେ ଅଖଣ୍ଡଦୀପ ଜଳିବାର ବନ୍ଦୋବସ୍ତ ହୋଇଅଛି । ଅଶୋକାଷ୍ଟମୀରେ ଭଣ୍ଡାରରୁ ଶ୍ରୀ ଲୋକନାଥ ଐଶାନେଶ୍ୱର ମନ୍ଦିର ଗର୍ଭଗୃହକୁ ବିଜେ କରିଥାଆନ୍ତି । ଏହିଦିନ ଭିତରଛ ମହାପାତ୍ର ସେବକ ଐଶାନେଶ୍ୱର ମହାଦେବଙ୍କୁ ଅଶୋକ କଢ଼ି, ଫୁଲ ଲାଗି କରିବା ପରେ ଉକ୍ତ କଢ଼ି ଓ ଫୁଲ ଇତ୍ୟାଦି ଲୋକନାଥଙ୍କୁ ଲାଗି କରାନ୍ତି । ବୈଶାଖ ମାସରେ ଠାକୁରଙ୍କର ଜଳଶାୟୀ ଉତ୍ସବ ପାଳିତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୧, ଶ୍ରୀ.ବେ.ଦେ.- ପୃ.୧୨୦) ।

**ଈଶ୍ୱର**- *ସଂ.ବି.*- ଶିବ, ବ୍ରହ୍ମା, ପରମେଶ୍ୱର, ଭଗବାନ, କାମଦେବ, ରାଜା, ରୁଦ୍ର ବିଶେଷ, ଭର୍ତ୍ତା, ବିଶୁଦ୍ଧ, ଅନ୍ତର୍ଯାମୀ, ଅବିଦ୍ୟାଦି କର୍ତ୍ତୃକ, ଜୀବାତ୍ମା, ମହାପୁରୁଷ, ସମ୍ବତ୍ସର, ସମର୍ଥ, ଶ୍ରେଷ୍ଠ, ପ୍ରଧାନ ଓ ପ୍ରଭୁ । ଏକାଦଶ ରୁଦ୍ରମଧ୍ୟରୁ ଜଣେ । ବେଦାନ୍ତରେ ବିଶୁଦ୍ଧ ସତ୍ତ୍ୱ ପ୍ରଧାନ ଏବଂ ଜ୍ଞାନ ଉତ୍ପାଦିତ ଚୈତନ୍ୟ ହେଉଛନ୍ତି ଈଶ୍ୱର । ସ୍ୱୟଂ ଶିବ ଶ୍ରୀହରି ବିଷ୍ଣୁଙ୍କୁ ପଚାରୁଛନ୍ତି ହେ ଦେବେଶ କୁହନ୍ତୁ କିଏ ଈଶ୍ୱର ? କିଏ ଧ୍ୟେୟ ? କିଏ ପୂଜ୍ୟ ? ଏବଂ କାହାକୁ ବ୍ରତୋପାସନାରେ ସନ୍ତୁଷ୍ଟ କରାଯାଏ ? ଶ୍ରୀହରି ବିଷ୍ଣୁ, ଶିବଙ୍କର ପ୍ରଶ୍ନର ଉତ୍ତରରେ କହୁଛନ୍ତି । 'ହେ ରୁଦ୍ର ! ଶୁଣ, କହୁଛି ମୁଁ ହିଁ ସର୍ବ ଦେବତା, ମାନବ, ଦାନବ ଏବଂ ସର୍ବ ଲୋକରେ ଈଶ୍ୱର ଅଟେ' । ମୁଁ ହିଁ ଧ୍ୟେୟ, ପୂଜ୍ୟ, ସ୍ତୁତ୍ୟ ଅଟେ ଏବଂ ମୋତେ ପୂଜାର୍ଚ୍ଚନା କଲେ ମୁଁ ହିଁ ପରମଗତି ପ୍ରଦାନ କରିଥାଏ । ଶ୍ରୀଜଗନ୍ନାଥ ଈଶ୍ୱରଙ୍କ ପରମପୂଜ୍ୟ ରୂପେ ପରିକଳ୍ପିତ ।
(କ୍ର.ବି.ଓ.ଶ.- ପୃ.୧୧୨, ଓ.ସାଂ.ଶ. - ପୃ.୫୪, ପୂ.ଓ.ଭା. - ପୃ.୮୮୭, ପୌ.(ବଂ) ୧ମ - ପୃ.୨୦୪-୨୦୫, ଶ.କ.ଦ୍ରୁ. ୧ମ - ପୃ. ୨୧୭), ପ୍ର.ଅ. ୧ମ - ପୃ. ୩୨୮) ।

●

# ଉ

**ଉଆ**-*ଦେ.ବିଣ.*- ଅରୁଆ ଚାଉଳ, ତଣ୍ଡୁଳ, ଧାନ ସିଦ୍ଧ ନ ହୋଇ କୁଟା ହେବା ଚାଉଳ । ଶ୍ରୀମନ୍ଦିରର ଶଙ୍ଖୁଡ଼ି ଭୋଗ (ପ୍ରସାଦ) ନିମନ୍ତେ ଶୁଦ୍ଧ ଅରୁଆ ଚାଉଳ ବ୍ୟବହାର ହୋଇଥାଏ । (ଓ.ସାଂ.ଶ. - ପୃ. ୫୫, ପ୍ର.ଅ. ୧ମ - ପୃ.୩୩୦-୩୩୧, ପୂ.ଓ.ଭା. - ପୃ. ୮୯୦, କ୍ର.ଓ.ଶ. ୧ମ - ପୃ. ୧୧୩) ।

**ଉଆଁସ ଦାଣ୍ଡ**-*ଦେ.ବି.*- ଶ୍ରୀକ୍ଷେତ୍ରର ବାଲି ସାହି ଦାଣ୍ଡ ।
(ଶ୍ରୀ.ଶ. - ପୃ. ୩୫) ।

**ଉତ୍କଳ**-*ସଂ.ବି.*- ବୈବସ୍ବତମନୁଙ୍କର ପୁତ୍ର । ପ୍ରାଚୀନ ଓଡ଼ିଶା । ଓଡ଼ିଶା, ଉଡ୍ରଦେଶ । ଶ୍ରୀକ୍ଷେତ୍ର । ଉତ୍କଳିଙ୍ଗ ଅର୍ଥାତ୍ ଉତ୍ତର କଳିଙ୍ଗର ସଙ୍କୁଚିତ ରୂପ । କଟକର ବିପରୀତ ଦିଗର ନଦୀର ଅପରପାର୍ଶ୍ୱରେ ଥିଲା ଚୌଦ୍ୱାର । କେଶରୀ ରାଜାଙ୍କର ରାଜଧାନୀ ଥିଲା ଭୁବନେଶ୍ୱର ଓ ଯାଜପୁର । ଗଙ୍ଗବଂଶୀମାନଙ୍କର ରାଜଧାନୀ ଥିଲା କଟକ, ଚୌଦ୍ୱାର ଓ ବାରବାଟୀ । ଖ୍ରୀ.ଅ ପଞ୍ଚମ ଶତକରେ ଓଡ଼ିଶା କେଶରୀ ରାଜା ବୌଦ୍ଧ ଧର୍ମ ତ୍ୟାଗ କରି ଶୈବଧର୍ମ ଗ୍ରହଣ କଲେ ଏବଂ ଗଙ୍ଗବଂଶୀୟମାନଙ୍କର ସମୟରେ ଦ୍ୱାଦଶ ଶତକରେ ବୈଷ୍ଣବ ହୋଇଥିଲେ । ମହାଭାରତାନୁସାରେ ଉତ୍କଳ କଳିଙ୍ଗର ଅଂଶ ବିଶେଷ । ବୈତରଣୀ ଉତ୍କଳର ସୀମାରେ ଥିଲା । କାଳିଦାସଙ୍କ ସମୟରେ ଏହା ଗୋଟିଏ ସ୍ୱାଧୀନ ରାଜ୍ୟ ଥିଲା । ବ୍ରହ୍ମ ପୁରାଣାନୁସାରେ ଉତ୍କଳ ଓ କଳିଙ୍ଗ ଦୁଇଟି ଅଲଗା ରାଜ୍ୟ । ଓଡ଼ିଶାର ଚାରୋଟି ପ୍ରସିଦ୍ଧ ତୀର୍ଥ- ଚକ୍ରକ୍ଷେତ୍ର, ଭୁବନେଶ୍ୱର । ଶଙ୍ଖକ୍ଷେତ୍ର - ପୁରୀ । ପଦ୍ମକ୍ଷେତ୍ର- କୋଣାର୍କ ଏବଂ ଗଦାକ୍ଷେତ୍ର ଯାଜପୁର । ଗୟାସୁରକୁ ନିହତ କରି ଭଗବାନ୍ ବିଷ୍ଣୁଙ୍କୁ ଗୟାରେ ତାଙ୍କର ପାଦଚିହ୍ନ ଏବଂ ଚକ୍ର, ଶଙ୍ଖ ପଦ୍ମ ଓ ଗଦା ଉପରୋକ୍ତ ସ୍ଥାନଗୁଡ଼ିକରେ ସ୍ଥାପିତ କରିଛନ୍ତି । ଶଙ୍କରାଚାର୍ଯ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋବର୍ଦ୍ଧନ ମଠ ଏହି ଓଡ଼ିଶାରେ । ଉତ୍କଳକୁ ଶୃଙ୍ଗଗିରି ମଧ୍ୟ କୁହାଯାଏ । କଳିଙ୍ଗ, ମଧ୍ୟ କଳିଙ୍ଗ ଓ ଉତ୍କଳିଙ୍ଗ ଏହି ତିନୋଟି କଳିଙ୍ଗର ମଧ୍ୟରେ ଉତ୍କଳିଙ୍ଗ ଅନୁଶାସନ ସମୟରେ ଶହେସାତ ଏବଂ ଧ୍ରୁବଙ୍କର ଜ୍ୟେଷ୍ଠପୁତ୍ରଙ୍କର ନାମ ମଧ୍ୟ ଉତ୍କଳ ଏବଂ ପଞ୍ଚଗୌଡ଼ (ରାଢ଼, ବରେନ୍ଦ୍ର, ବାଗରୀ, ବଙ୍ଗ ଓ ମିଥିଳା) ବ୍ରାହ୍ମଣଙ୍କ ମଧ୍ୟରୁ ଜଣେ ।

ସୁଦ୍ୟୁମ୍ନଙ୍କର ତିନିଟି ପରମ ଧାର୍ମିକ ପୁତ୍ର, ସେମାନେ ହେଲେ ଉତ୍କଳ, ଗୟା ଏବଂ ବିନତାସ୍ୱ । ଜଗନ୍ନାଥ ପ୍ରାନ୍ତ ଦେଶ । ଓଡ଼ିଶା ବା ଓଡ୍ରେଶ ଜାତିର ନାମାନୁସାରେ ଏହି ଉତ୍କଳ ପ୍ରଦେଶ ମେଦିନିପୁରର କଂସାବତୀ (କାସଇ) ନଦୀ ପର୍ଯ୍ୟନ୍ତ ବ୍ୟାପି ରହିଥିଲା । ଏହି ଉତ୍କଳ ପ୍ରଦେଶ ବହୁ ପ୍ରାଚୀନକାଳରୁ ଓଡ଼ିଶା ବା ଓଟିଶା ନାମରେ ଅଭିହିତ ହେଇଥିବା ତିବ୍ବତ ଇତିହାସରୁ ପ୍ରମାଣ ମିଳେ । ଆଧୁନିକ ଓଡ଼ ଚଷା ଜାତି ପ୍ରାଚୀନ ଓଡ୍ରେଶ ଜାତି ରୂପେ ନିଃସନ୍ଦେହରେ ଚିହ୍ନିତ କରାଯାଇ ପାରନ୍ତି । ତିବ୍ବତୀୟମାନେ ବୌଦ୍ଧ ଧର୍ମର ଅଭ୍ୟୁଦୟ କାଳରେ ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍କଳ ପ୍ରଦେଶ ବୌଦ୍ଧଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲା । ତିବ୍ବତୀୟମାନେ ଉତ୍କଳୀୟମାନଙ୍କ ସଂସ୍ପର୍ଶରେ ଆସିଥିବାର ପ୍ରମାଣ ମିଳେ ।

ତିବ୍ଦତ ଇତିହାସରେ ପ୍ରାଚୀନ ଉତ୍କଳର ବହୁ ବିବରଣୀ ଲିପିବଦ୍ଧ ଅଛି ।
(ଓ.ସା.ଇ. ବିନାୟକ ମିଶ୍ର, ପୌ.(ବ) ୧ମ - ପୃ. ୨୨୧, ସଂ.ହି.କୋ. - ପୃ.୧୮୫, ଶ.କ.ଦ୍ରୁ. ୧ମ - ପୃ.୨୨୩, ପା.କୋ.- ପୃ.୧୫୭, ପୂ.ଓ.ଭା.- ପୃ.୨୩୪୯) ।

**ଉଖୁଡ଼ା**-*ଦେ.ବି.*- ଗୁଡ଼ ବା କନ୍ଦରେ ପାକ ହୋଇଥିବା ଲିଆ ଯାହାକି ପୂଜାଦିକର୍ମରେ ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ. ୮୯୯, ପ୍ର.ଅ. - ପୃ.୩୩୩) ।

**ଉଗ୍ରଚଣ୍ଡୀ**-*ଦେ.ବି.*- ଉଗ୍ର ପ୍ରକୃତିର, ଚଣ୍ଡୀ, କୋପ ପ୍ରଖର, କଟୁ ଉତ୍କଟ, ପ୍ରଚଣ୍ଡ, ଭୟାନକ, କ୍ରୂର, ନିଷ୍ଠୁର ଓ କର୍କଶ ସ୍ୱଭାବର ବ୍ୟକ୍ତିତ୍ୱ ।
ଆଶ୍ୱିନ ମାସ ନବମୀ ତିଥିରେ କୋଟି ଯୋଗିନୀଙ୍କ ସହିତ ପ୍ରଥମେ ଆବିର୍ଭୂତା ହୋଇ ଅଷ୍ଟାଦଶ ଭୁଜା ଦେବୀ ମହିଷାସୁରକୁ ବିନାଶ କରିଥିଲେ । ଦକ୍ଷ ଯଜ୍ଞରେ ସତୀ ଦେହତ୍ୟାଗ କରି ରାମଚଣ୍ଡୀ ରୂପ ନେଇ କୋଟିଯୋଗିନୀ ସହ ଶିବଙ୍କ ସହିତ ଦକ୍ଷ ଯଜ୍ଞନଷ୍ଟ କରିଥିଲେ । କାଳିକା ପୁରାଣାନୁସାରେ କାତ୍ୟାୟିନୀ ହିଁ ଉଗ୍ରଚଣ୍ଡୀଙ୍କର ରୂପ ଧାରଣ କରନ୍ତି ଏବଂ ଦୁର୍ଗାଙ୍କର ଅଷ୍ଟନାୟିକାଙ୍କ ମଧ୍ୟରୁ ଜଣେ ।
(ଶ.କ. ୧ମ - ପୃ. ୨୧୯, ପୌ. ୧ମ - ପୃ. ୨୦୬, ଶ.ତ.ଅ. - ପୃ. ୧୫୯, ପୂ.ଓ.ଭା. - ପୃ. ୩୩୪, କ୍ର.ଓ.ଶ. ୧ମ - ପୃ. ୧୧୫, ପୂ.ବୋ. - ପୃ.୧୫୪) ।

**ଉଗ୍ରସେନ**-*ସଂ.ବି.*- ମଥୁରାର ରାଜା । କଂସର ପିତା । ଏହାଙ୍କର ଅନ୍ୟ ନାମ ଚିତ୍ରସେନ, ଋଷି କଣ୍ୟପର୍ବଙ୍କ ଔରସରୁ ପୁତ୍ର । ନନ୍ଦବଂଶର ପ୍ରତିଷ୍ଠାତା । ଶ୍ରୀମନ୍ଦିରରେ ଭାଦ୍ର କୃଷ୍ଣପକ୍ଷ ଅଷ୍ଟମୀ (ଶ୍ରୀକୃଷ୍ଣ ଜନ୍ମଦିନ) ଦିନ କୃଷ୍ଣ ଜନ୍ମ ପରେ ପୂଜାପଣ୍ଡା ବଂଶରୁ ଜଣେ ଉଗ୍ରସେନ ବେଶ ହୋଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୯, ପୂ.ଓ.ଭା. - ପୃ. ୯୦୨, ପ୍ର.ଅ. ୧ମ- ପୃ. ୩୩୪, ପୌ.(ବ) ୧ମ- ପୃ. ୨୦୭, ଶ.କ. ୧ମ - ପୃ. ୨୨୦) ।

**ଉଗ୍ରସେନ ପଣା**-*ଦେ.ବି.* - ରାମନବମୀ ଠାରୁ ଆରମ୍ଭ ସାହିଯାତରେ ରାବଣ ବଧ ଉପାଖ୍ୟାନ ଉପସ୍ଥାପନ ବେଳେ ରାବଣ ମୃତ୍ୟୁ ପୂର୍ବରୁ ପିଉଥିବା ପଣା । ମାର୍କେଣ୍ଡେଶ୍ୱର ସାହିର ଆରାଧ୍ୟା ଦେବୀ ମା' ଭଗବତୀଙ୍କୁ ସମର୍ପଣ ହୋଇଥିବା ଏହି ପଣା ପିଇବା ପରେ ରାବଣ ଶକ୍ତିହୀନ ହୋଇଯାଏ ।
(କ୍ଷେ.ସ.) ।

**ଉଗ୍ରସେନ ମୁଣ୍ଡି**-*ଦେ.ବି.*- ଶ୍ରୀକ୍ଷେତ୍ର ବାଲିସାହିସ୍ଥ ଉଗ୍ରସେନଙ୍କ ଆସ୍ଥାନ ।
(କ୍ଷେ.ସ.) ।

**ଉଞ୍ଝିବା**-*ଦେ.କ୍ରି.*- ଲୁଗାକୁଞ୍ଚ ସଜାଡ଼ିବା, ସଜ୍ଜିତ କରିବା, ଉଞ୍ଝିବା । ବିଗ୍ରହମାନଙ୍କ ଅଭିଷେକ ସମୟରେ ଲୁଗା ବଦଳାଇବା ସମୟରେ ଲୁଗା ସଜାଡ଼ିବା ଓ କୁଞ୍ଚ କରିବାରେ ଏହାର ବାରମ୍ବାର ବ୍ୟବହାର ।
(ପୂ.ଓ.ଭା. - ପୃ.୯୧୨, ପ୍ର.ଅ. ୧ମ- ପୃ.୩୪୦) ।

**ଉତ୍ସର୍ଗ**-*ସଂ.ବି.*- ଦାନ କରିବା । କୌଣସି ଖାଦ୍ୟ ବସ୍ତୁକୁ ଦେବଦେବୀଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିବା । ଠାକୁରଙ୍କ ନାମରେ ପାଣି ଛଡ଼େଇବା ।
(ଓ.ସାଂ.ଶ. - ପୃ.୫୫, ପୂ.ଓ.ଭା. - ପୃ.୯୦୯) ।

**ଉଡ୍ଡୁ**-*ସଂ.ବି.*- ଫରଫର ହୋଇ ଉଡୁଥିବା ଧ୍ୱଜା ।
(ଶ.କ.ଦ୍ରୁ. ୧ମ - ପୃ. ୧୮୨, ପୂ.ଓ.ଭା. - ପୃ.୯୦୮) ।

**ଉଚ୍ଛିଷ୍ଟାନ୍ନ**-*ସଂ.ବି.*- ଦେବନୈବେଦ୍ୟ ବା ଦେବତାଙ୍କ ପାଖରେ ସମର୍ପିତ ଭୋଜନ ।
(ପା.କୋ. - ପୃ.୧୫୫, ଶ.କ.ଦ୍ରୁ. ୧ମ - ପୃ.୨୨୧, ପୂ.ଓ.ଭା. - ପୃ.୯୧୧, ସଂ.ହି.କୋ. - ପୃ.୧୮୨) ।

**ଉଜ୍ଜ୍ୱଳ**-*ସଂ.ବି.*- ସ୍ୱର୍ଣ୍ଣ, ଶୃଙ୍ଗାର ରସ । କାନ୍ତିଯୁକ୍ତ, ଚିକ୍‌ଚିକ୍ କରୁଥିବା ପଦାର୍ଥ । ଝଲସିବା, ଚମକିବା । ଯାହା ଆଲୋକପରି ଝଲସିଥାଏ ।
(ପା.କୋ. - ପୃ.୧୫୬, ଶ.କ.ଦ୍ରୁ. ୧ମ - ପୃ.୨୨୨, ପୂ.ଓ.ଭା. - ପୃ.୯୧୭) ।

**ଉଜୁଆଁ**-*ଦେ.ବି.*- ବ୍ରତ ଉଦ୍‌ଯାପନ, ବ୍ରତସମାପ୍ତି, କୌଣସି ବ୍ରତ ବା ମାନସିକ ପୂଜା ଅନୁଷ୍ଠାନର ପରିସମାପ୍ତି । ନିଜର ଅଭିଳାଷ ପୂର୍ଣ୍ଣ ପାଇଁ ଠାକୁରଙ୍କୁ ସାକ୍ଷୀ ରଖି ବ୍ରତ କରିବା, ମନାସି ପୂଜା ଶେଷ କରିବା ।
(ଓ.ସାଂ.ଶ. - ପୃ.୫୬) ।

**ଉଝାଳିବା**-*ଦେ.ବି.*- ପରିଷ୍କାର କରିବା, ପଙ୍କୋଦ୍ଧାର କରିବା, ସଫା କରିବା, ମାଜିବା, ଶୋଧନ କରିବା, ଗୁପ୍ତରହସ୍ୟ ଉଦ୍‌ଘାଟନ କରିବା । କୁଡୁଆ ବା ହାଣ୍ଡିକୁ ସଫାକରି ଧୂଆପାଣି ଢ଼ାଳିବା । ଶ୍ରୀକ୍ଷେତ୍ରରେ ଫାଲ୍‌ଗୁନ କୃଷ୍ଣ ଏକାଦଶୀ ପଙ୍କଉଦ୍ଧାର ଏକାଦଶୀ ନାମରେ ଖ୍ୟାତ । ଏହି ଦିନ ପୁରୀ, ଶ୍ରୀଲୋକନାଥ ମନ୍ଦିରର ପଙ୍କ ଉଝାଳିବା କାର୍ଯ୍ୟ ହୋଇଥାଏ ।
(ପ୍ର.ଅ. - ପୃ.୩୩୯, ପୂ.ଓ.ଭା. ୧ମ- ପୃ.୯୧୮) ।

**ଉଡ଼ାଚାନ୍ଦୁଆ**-*ଦେ.ବି.*- ଛାତ ନ ଥିବା ମଣ୍ଡପ ଉପରେ ଠାକୁରଙ୍କ ବିଜେ ସମୟରେ ବନ୍ଧାଯାଇଥିବା ଚାନ୍ଦୁଆ ।

**ଉଡୁପ**-*ସଂ.ବି.*- ଚନ୍ଦ୍ରମା । ଶ୍ରୀକ୍ଷେତ୍ରରେ ମାଧବାଚାର୍ଯ୍ୟଙ୍କର ପ୍ରତିଷ୍ଠିତ ଗୋଟିଏ ମଠ ।
(ପା.କୋ. - ପୃ.୧୫୬, ଶ.କ.ଦ୍ରୁ. ୧ମ- ପୃ.୨୨୨, ପୌ.(ବ) ୧ମ - ପୃ. ୨୧୦) ।

**ଉତ୍ତରପାଟଣା**-*ଦେ.ବି.*- ଶ୍ରୀକ୍ଷେତ୍ରରେ ମରୀଚିକୋଟ ଗଳି ନିକଟସ୍ଥ ଏକ ସ୍ଥାନ ।

**ଉତ୍ତରାୟଣ ଯାତ୍ରା**-*ସଂ.ବି.*- ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଦିନ ଶ୍ରୀଜଗନ୍ନାଥଙ୍କର ଉତ୍ତରାୟଣ ଯାତ୍ରା ଯଥାବିଧିରେ ପାଳନ କରାଯାଏ । ଏହି ଦିନ ପ୍ରାତଃରୁ ଦେବତାମାନଙ୍କ ଆଳତି ଅବକାଶ ଫୁଟା, ପହରଣଲାଗି, ତ୍ରିମୁଣ୍ଡିରେ ମକର ଚୂଳ, ମାଳ ଲାଗି ବେଶ ପରେ କର୍ପୂର ଲାଗି ହୋଇ ବଲ୍ଲଭ ଓ ସକାଳ ଧୂପ ପରେ ତିନିଠାକୁରଙ୍କ ମଇଲମ ଓ ମହାସ୍ନାନ କରାଯାଏ । ତପ୍ତରେ ସର୍ବାଙ୍ଗ, ନବବସ୍ତ୍ର, ଚୂଳମାଳ ଲାଗି ପରେ ଛଅମୂର୍ତ୍ତି ଅଳଙ୍କାର ଲାଗି ହୋଇ ବେଶ ପରେ ଦ୍ୱିପହର ଧୂପ ସହିତ ଯାତ୍ରାଙ୍କ ଭୋଗ ଘଣ୍ଟ ଛତ୍ର କାହାଳି ସହିତ ପଟୁଆରରେ ଆସି ଷୋଡ଼ଶ ଉପଚାରରେ ମଣୋହି କରାଯାଏ । ଟେରା ପଡ଼ିବା ପରେ ଏକ ଓଳି ଅନ୍ନ ମନ୍ଦିର ଚତୁର୍ଦ୍ଦିଗରେ ବଳି ହେଲା ପରେ ମଣୋହି ହୋଇ ଭୋଗ ଆଳତି ଶେଷରେ ଟେରାବନ୍ଧା ଯାଇ ଅଧିବାସିତ ମକର ଚାଉଳ ବିଗ୍ରହମାନଙ୍କୁ ଲାଗି କରାହୁଏ ।
(ଶ୍ରୀ.ସ୍ୱ.-୨ୟ ପୃ.୧୦୭) ।

**ଉତ୍ତରୀୟ**-*ସଂ.ବି.*- ନାଭିଦେଶର ଊର୍ଦ୍ଧ୍ୱସ୍ଥିତ ଅଙ୍ଗର ଆଚ୍ଛାଦନ ବସ୍ତ୍ର, ଉତୁରି, ପାଛୁଡ଼ା, ଚାଦର, ଦୋସଡ଼ା, ଏକପଟା ।
(ପୂ.ଓ.ଭା. - ୯୫୦, ପା.କୋ. - ପୃ.୧୫୯) ।

**ଉତଂସ**-*ସଂ.ବି.*- କର୍ଣ୍ଣଭୂଷଣ, କାନଫୁଲ, କାନର ଗହଣା, ଶିରୋଭୂଷଣ, ପଗଡ଼ି ମୟୂରଚୂଡ଼ା ଇତ୍ୟାଦି ।
(ପୂ.ଓ.ଭା. - ପୃ.୯୪୩, ପ୍ର.ଅ. ୧ମ-ପୃ. ୩୪୫, ଶ.ତ.ଅ. - ପୃ. ୧୬୮) ।

**ଉତ୍ଥାପନ ଏକାଦଶୀ**-*ସଂ.ବି.*- କାର୍ତ୍ତିକ ଶୁକ୍ଳ ଏକାଦଶୀ । ଏହାକୁ ହରି ଉତ୍ଥାପନ ଏକାଦଶୀ କୁହାଯାଏ । ଶ୍ରୀମନ୍ଦିରରେ ବଡ଼ସିଂହାର ଭୋଗ ପରେ ମହାସ୍ନାନ ପୂଜା ପରେ ଏକାଦଶୀ ପୂଜାଦି କର୍ମ ହୁଏ । ମାଳଫୁଲ ଲାଗି ବେଶ ହୋଇ ତ୍ରିମୂର୍ତ୍ତି ଅଳଙ୍କାର ଲାଗି ହୋଇ ବଲ୍ଲଭ ବଡ଼ସିଂହାର ଭୋଗ ଓ ଷୋଡ଼ଶ ଉପଚାରରେ ମଣୋହି କରାଯାଏ ।
(ପୌ.(ବ) ୧ମ - ପୃ.୨୧୭, ଶ୍ରୀ.ସ୍ୱ. ୧ମ - ପୃ.୧୦୦) ।

**ଉତ୍‌ଥାପନ ଯାତ୍ରା**-*ସଂ.ବି.*- କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ବିଗ୍ରହମାନଙ୍କର ଉତ୍‌ଥାପନ ଯାତ୍ରା ଅନୁଷ୍ଠିତ ହୁଏ । ଆଷାଢ଼ ମାସରୁ କାର୍ତ୍ତିକମାସ ଦୀର୍ଘ ଚାରିମାସ କାଳ ଠାକୁରମାନେ ଶୟନ କରିଥିଲେ । ଏହିଦିନରେ ନିଦରୁ ଉଠି ଯାତ୍ରାମାନ ଆରମ୍ଭ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦) ।

**ଉଦକକର୍ମ**- *ସଂ.ବି.*- ପିତୃଲୋକଙ୍କ ଉଦ୍ଦେଶ୍ୟରେ ଜଳ ତର୍ପଣ ବା ଜଳଦାନ ।
(ପୂ.ଓ.ଭା. - ପୃ. ୯୬୪, ପା.କୋ. ୧ମ- ପୃ.୧୬୨) ।

**ଉଦ୍‌ବାହୁ**- *ସଂ.ବି.*- ପ୍ରସାରିତ ବାହୁ, ଊର୍ଦ୍ଧ୍ୱବାହୁ, ଯାହାଙ୍କର ବାହୁ ସର୍ବଦା ଉପରକୁ ଟେକା ହୋଇଅଛି । ଆନନ୍ଦରେ ଯେ ସର୍ବଦା ଅଧୀର, ପ୍ରେମରେ ଯେ ସଦା ଉନ୍ମତ୍ତ । ସେ ହେଉଛନ୍ତି ଉଦ୍‌ବାହୁ ଶ୍ରୀଜଗନ୍ନାଥ ମହାପ୍ରଭୁ ।

**ଉଦଧି**- *ସଂ.*ବି.- ସମୁଦ୍ର, ସାଗର, ଚାରିସଂଖ୍ୟା, ମେଘ, ସୂର୍ଯ୍ୟ, ଜଳଧି, ଅମ୍ବୁଧି, ବାରାନିଧି, ପୟୋଧି, ପାରାବାର ।
(ପୂ.ଓ.ଭା. - ପୃ.୯୬୬, ପ୍ର.ଅ. ୧ମ - ପୃ.୩୫୫) ।

**ଉଦ୍ରଥ**- *ସଂ.ବି.*- ଅନକିଳି । ରଥ ଚକରେ ଦିଆଯାଉଥିବା କିଳା ।
(ପୂ.ଓ.ଭା. - ପୃ.୯୯୦, ଶ.କ.ଦ୍ରୁ. ୧ମ - ପୃ. ୨୪୨, ପା.କୋ. - ପୃ.୧୬୮, ସଂ.ହି.କୋ. - ପୃ.୧୯୯) ।

**ଉଦ୍‌ବର୍ତ୍ତନ**- *ସଂ.ବି.*- ବିଲେପନ, ଘର୍ଷଣ, ଅଙ୍ଗମର୍ଦ୍ଦନ ଶରୀର ନିର୍ମାଣ କରଣ ପାଇଁ ଗନ୍ଧଦ୍ରବ୍ୟାଦି ଚନ୍ଦନାଦି ଲେପନ ।
(ସଂ.ହି.କୋ. - ପୃ.୧୯୯, ପୂ.ଓ.ଭା. - ପୃ.୯୮୪, ଶ.କ.ଦ୍ରୁ. ୧ମ - ପୃ.୨୪୨, ପା.କୋ. - ପୃ.୧୬୮) ।

**ଉଦ୍‌ବାହିନୀ**- *ସଂ.ବି.*- ରଜ୍ଜୁ, ଦଉଡ଼ି, ବନ୍ଧନୀ ।
(ସଂ.ହି.କୋ. - ପୃ.୧୯୯, ପୂ.ଓ.ଭା. - ପୃ.୯୮୪) ।

**ଉଦ୍ଦାଳକ**- *ସଂ.ବି.*- ଋଷିବିଶେଷ । ଯାଜ୍ଞବଲ୍‌କ୍ୟଙ୍କର ଗୁରୁ । ଭଗବାନ ଏହି ଉଦ୍ଦାଳକଙ୍କୁ ଲକ୍ଷ୍ମୀଙ୍କ ବଡ଼ ଭଉଣୀ ଅଲକ୍ଷ୍ମୀଙ୍କ ସଙ୍ଗେ ବିବାହ କରାଇ ଦେଇଥିଲେ । କିନ୍ତୁ ଅଲକ୍ଷ୍ମୀ ବିଷ୍ଣୁଙ୍କୁ ବିବାହ କରିବା ପାଇଁ ଆଶାୟୀ ଥିଲେ । ମାତ୍ର ବିଷ୍ଣୁ ଚତୁରତାର ସହିତ ଏହି ଋଷିଙ୍କୁ ବିବାହ କରାଇ ଦେଇଥିବାରୁ ଅଲକ୍ଷ୍ମୀଙ୍କ କୋପରେ ଅଣସରରେ ମହାପ୍ରଭୁ ଶ୍ରୀଜଗନ୍ନାଥ ଜ୍ୱର ବ୍ୟାଧିରେ ପୀଡିତ ହୁଅନ୍ତି ବୋଲି ଲୋକ ବିଶ୍ୱାସ ।
(ଓ.ସାଂ.ଶ. - ପୃ.୫୯, ପୂ.ଓ.ଭା. - ପୃ.୯୭୯, ପ୍ର.ଅ. ୧ମ - ପୃ.୩୬) ।

**ଉନ୍ନିଦ୍ର**- *ସଂ.ବି.*- ନିଦ୍ରାବିରହିତ । ନିଦ୍ରାବିହୀନ ।
(ସଂ.ହି.କୋ. - ପୃ.୨୦୦, ପା.କୋ.- ପୃ.୧୬୯, ପୂ.ଓ.ଭା. - ପୃ.୯୯୩) ।

**ଉପଚର୍ଯ୍ୟା**-ସଂ.ବି.- ପୂଜାର ଉପକରଣ । ଯଜମାନଙ୍କର ସଙ୍ଗତି ଅନୁସାରେ ପାଞ୍ଚ, ଦଶ, ଷୋହଳ, ଅଠର ବା ଚଉଷଠି ଉପଚାରରେ ପୂଜାର ବ୍ୟବସ୍ଥା କରାଯାଏ । ଶଠତା ନ କରି ସାଧ୍ୟାନୁସାରେ ଏହି ସମସ୍ତ ଉପଚାର ଯଥାସମ୍ଭବ ଭଲ ଭାବରେ ସଂଗ୍ରହ କରି ପଞ୍ଚ ଉପଚାର ଅର୍ଥରେ ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ଦଶଉପଚାର-ପାଞ୍ଚ ଉପଚାର ସହିତ ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ପାନୀୟ ଓ ତାମ୍ବୂଳ । ଷୋଡ଼ଶ ଉପଚାର ଦଶ ଉପଚାର ଏବଂ ଆଉଛଅଟି ଉପଚାର ଯଥା ଆସନ, ସ୍ୱାଗତ ପ୍ରାଦ୍ୟ ମଧୁପର୍କ, ସ୍ନାନପାଇଁ ଜଳ, ବସ୍ତ୍ର ଓ ଆଭରଣ । (ପୂଜା ପାଇଁ ଷୋହଳ ଉପଚାର ଯଥା - ଆବାହନ, ଆସନ, ଅର୍ଘ୍ୟ, ପାଦ୍ୟ, ଆଚମନ, ସ୍ନାନ, ବସ୍ତ୍ର, ଯଜ୍ଞୋପବୀତ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ନୀରାଜନ, ନମସ୍କାର, ବିସର୍ଜନ ।
(ପା.କୋ. - ପୃ. ୧୭୨) ।

**ଉପଚାର**- *ସଂ.ବି.*- ଔଷଧ ପ୍ରୟୋଗ, ଚିକିତ୍ସା, ରୋଗ ପ୍ରତିକାର, ସେବା ଶୁଶ୍ରୂଷା, ବ୍ୟବହାର, ଧର୍ମାନୁଷ୍ଠାନ, ଭେଦ, ଛଳ, ରାଜନୀତି ଯୁକ୍ତ ମାର୍ଗ, ବିଧାନ, ଜୀବନୋପାୟ, ପ୍ରାର୍ଥନା, ମନୋରଞ୍ଜନ, ଶ୍ରେଷ୍ଠାଚାର । ପୂଜାର ବିଭିନ୍ନ ଉପଚାର ବା ଆବଶ୍ୟକୀୟ ଉପଯୋଗୀ ଦ୍ରବ୍ୟ ।
(ପ୍ର.ଅ. ୧ମ - ପୃ.୩୭୨, ପୂ.ଓ.ଭା. - ପୃ.୧୦୦୧) ।

**ଉପଚାର ଘମର ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବା ବିଶେଷ । ଶ୍ରୀମନ୍ଦିରର ଏକ ନିର୍ଦ୍ଦିଷ୍ଟ

ସ୍ଥାନରେ ରହି ଠାକୁରଙ୍କ ଚାମର ସେବାରେ ନିଯୁକ୍ତ ଥିବା ସେବକ ।
(ଶ୍ରୀ.ଶ. - ପୃ.୩୬) ।

**ଉପନ୍ନା**-*ସଂ.ବି.*- ଶର୍କରା, ଚିନି, ମିଠାଦ୍ରବ୍ୟ ।
(ଶ.କ.ଦ୍ରୁ. ୧ମ - ପୃ.୨୬୦) ।

**ଉପନତ**-*ସଂ.ବି.*- ଶରଣାଗତ ହେବା ।
(ପୂ.ଓ.ଭା. - ପୃ.୧୦୦୬) ।

**ଉପନଭୋଗ**-*ଦେ.ବି.*- ଏକ ମିଷ୍ଟାନ୍ନ ଭୋଗ, ଯାହାକି ଶ୍ରୀମନ୍ଦିରରେ ଠାକୁରଙ୍କୁ ଲାଗି ହୁଏ ।
(ପୁ.ବୋ. - ପୃ.୧୬୨) ।

**ଉପବୀତ**-*ଦେ.ବି.*- ଯଜ୍ଞସୂତ୍ର ବା ପଇତା । ବାମ କାନ୍ଧରେ ଧାରଣ କରାଯାଉଥିବା ପବିତ୍ର ଯଜ୍ଞସୂତ୍ର ।
(ପୂ.ଓ.ଭା. - ପୃ.୧୦୦୮) ।

**ଉପଯାତ୍ରା**-*ଦେ.ବି.*- ଶ୍ରୀମନ୍ଦିରରେ ବର୍ଷକରେ ତେରଟି ଯାତ୍ରା ବ୍ୟତୀତ ସତେଇଶିଟି ଉପଯାତ୍ରା ଓ ଶହେ ଆଠଟି ପର୍ବପର୍ବାଣି ବର୍ଷର ବିଭିନ୍ନ ସମୟରେ ପାଳିତ ହୋଇଆସୁଅଛି । ମୋଟରେ ଶହେଅଠଚାଳିଶିଟି ଯାତ୍ରା ଶ୍ରୀମନ୍ଦିରରେ ପାଳିତ ହୁଏ । ଉପଯାତ୍ରାଗୁଡ଼ିକ ହେଉଛି- ୧. ନୃସିଂହଜନ୍ମ - ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ, ୨. ଶୀତଳଷଷ୍ଠୀ - ଜ୍ୟେଷ୍ଠ ମାସ ଶୁକ୍ଳ ଷଷ୍ଠୀ, ୩.ରୁକ୍ମିଣୀ ହରଣ- ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ, ୪.ନେତ୍ରୋତ୍ସବ- ଆଷାଢ଼ ଅମାବାସ୍ୟା, ୫.ହେରାପଞ୍ଚମୀ - ଆଷାଢ଼ ଶୁକ୍ଳ ଷଷ୍ଠୀ, ୬. ବାହୁଡ଼ା ଯାତ୍ରା- ଆଷାଢ଼ ଶୁକ୍ଳ ଦଶମୀ, ୭. ଚିତାଲାଗି ଅମାବାସ୍ୟା- ଶ୍ରାବଣ ଅମାବାସ୍ୟା, ୮. ଝୁଲଣ ଯାତ୍ରା- ଶ୍ରାବଣ ଶୁକ୍ଳ ଦଶମୀ, ୯. ଗହ୍ମାପୂର୍ଣ୍ଣିମା- ଶ୍ରାବଣ ପୂର୍ଣ୍ଣିମା, ୧୦. ଜନ୍ମାଷ୍ଟମୀ- ଭାଦ୍ର କୃଷ୍ଣ ଅଷ୍ଟମୀ, ୧୧. ଗଣେଶ ଚତୁର୍ଥୀ- ଭାଦ୍ର ଶୁକ୍ଳ ଚତୁର୍ଥୀ, ୧୨. ସପ୍ତପୁରୀ ଅମାବାସ୍ୟା- ଭାଦ୍ରବ ଅମାବାସ୍ୟା, ୧୩. ରାଧାଷ୍ଟମୀ - ଭାଦ୍ରବ ଶୁକ୍ଳ ଅଷ୍ଟମୀ, ୧୪. ବାମନ ଜନ୍ମ- ଭାଦ୍ରବ ଶୁକ୍ଳ ଦ୍ୱାଦଶୀ, ୧୫. ଅନନ୍ତ ଚତୁର୍ଦ୍ଦଶୀ- ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ, ୧୬. ଦୁର୍ଗାପୂଜା- ଆଶ୍ୱିନ ଶୁକ୍ଳ ଅଷ୍ଟମୀ-ଦଶମୀ, ୧୭. କୁମାର ପୂର୍ଣ୍ଣିମା- ଆଶ୍ୱିନ ପୂର୍ଣ୍ଣିମା, ୧୮. ଦୀପାବଳୀ- କାର୍ତ୍ତିକ କୃଷ୍ଣ ଚତୁର୍ଦ୍ଦଶୀ, ୧୯. ରାସପୂର୍ଣ୍ଣିମା-କାର୍ତ୍ତିକ ପୂର୍ଣ୍ଣିମା, ୨୦.ପ୍ରଥମାଷ୍ଟମୀ- ମାର୍ଗଶିର କୃଷ୍ଣ ଅଷ୍ଟମୀ, ୨୧. ପୁଷ୍ୟାଭିଷେକ- ପୌଷପୂର୍ଣ୍ଣିମା, ୨୨. ବସନ୍ତ ପଞ୍ଚମୀ- ମାଘ ଶୁକ୍ଳ ପଞ୍ଚମୀ, ୨୩. ଶିବରାତ୍ରି- ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ, ୨୪. ଚାଚେରୀ- ଫାଲଗୁନ ଶୁକ୍ଳ ଦଶମୀ, ୨୫. ଶ୍ରୀରାମ ନବମୀ - ଚୈତ୍ର ଶୁକ୍ଳ ନବମୀ । ୨୬. ଶ୍ରୀରାମ ଲୀଳା -ଚୈତ୍ର ଶୁକ୍ଳ ନବମୀ ଠାରୁ ବୈଶାଖ କୃଷ୍ଣ ଦ୍ୱିତୀୟା, ୨୭. ଦମନକ-ଚୈତ୍ର୍ୟ ଶୁକ୍ଳ ଚତୁର୍ଦ୍ଦଶୀ ।
(ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୧୦୧, କ୍ଷ.ସ.) ।

**ଉପଲେପନ**-*ସଂ.ବି.*- ଲେପନ, ମର୍ଦ୍ଦନ, ଉପଲେପ, ପୋଛିବା, ବୋଳିବା, ଲିପିବା, ରଙ୍ଗ ଆଦି ପୋଛିବା ।
(ପ୍ର.ଅ. - ପୃ.୩୮୧, ପୂ.ଓ.ଭା. - ପୃ.୧୦୨୪) ।

**ଉପସଂଖ୍ୟାନ**-*ସଂ.ବି.*- ପରିଧାନ ବସ୍ତ୍ର । ଅନ୍ତଃ, ପଟବସ୍ତ୍ର ।
(ସଂ.ହି.କୋ. - ପୃ.୨୧୧, ଶ.କ.ଦ୍ରୁ ୧ମ - ପୃ.୨୬୧) ।

**ଉପାଙ୍ଗ**-*ଦେ.ବି.*- ଏକ ପ୍ରକାର ବାଦ୍ୟ ବିଶେଷ । ଏହା ଶ୍ରୀମନ୍ଦିରରେ ଠାକୁରଙ୍କ ନୀତିରେ ବ୍ୟବହୃତ ହୋଇଥାଏ ।
(ପୁ.ବୋ. - ପୃ.୧୬୨, ମା.ହି.ଷ. - ପୃ. ୧୮୮) ।

**ଉପାଧାନ**-*ସଂ.ବି.*- ତୁଳା ବା ଗଦିରେ ତିଆରି ତକିଆ । ଗୁଣ୍ଡିଚା ଯାତ୍ରା ସମୟରେ ପହଣ୍ଡିବିଜେ ସମୟରେ ପ୍ରଭୁଙ୍କ ବ୍ୟବହୃତ ମାଣ୍ଡି ବା ତକିଆ ।
(ଶ.କ.ଦ୍ରୁ. ୧ମ - ପୃ. ୨୫୯, ପୂ.ଓ.ଭା.- ପୃ.୧୭୩) ।

**ଉପାଧି ଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ଦୈନିକ ନିର୍ଦ୍ଧାରିତ ଭୋଗ ଅପେକ୍ଷା ଅତିରିକ୍ତ ଭୋଗ । ଯଜମାନୀ ଭୋଗ ।
(ପୂ.ଓ.ଭା. - ପୃ.୧୦୩୫) ।

**ଉପାରେଣ**-*ଦେ.ବି.*-ଦେବଦେବୀଙ୍କ ନିକଟରେ ପୂଜା ପାଇଁ ଉଦ୍ଦିଷ୍ଟ ନୈବେଦ୍ୟ ଓ ଛତ୍ର ଚାମରାଦି ଉପକରଣ ।
(ପା.କୋ. - ପୃ.୧୭୯, ସଂ.ହି.କୋ. ୧ମ- ପୃ.୨୦୨, ଶ.କ.ଦ୍ରୁ. ୧ମ - ପୃ.୨୫୧, ପୌ.(ବ) ୧ମ - ପୃ. ୨୩୩) ।

**ଉପାସ**-*ଦେ.ବି.*- ଅନାହାର, ଅନଶନ, ଓଷା, ବ୍ରତାନୁଷ୍ଠାନ । ଗୋଟିଏ ଦିନର ସୂର୍ଯ୍ୟୋଦୟରୁ ପରଦିନ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ ଅନାହାର ରହିବା ।
(ପ୍ର.ଅ. ୧ମ - ପୃ.୩୮୮, ପୂ.ଓ.ଭା.- ପୃ.୧୦୩୮) ।

**ଉପାସନା**-*ସଂ.ବି.*- ପ୍ରାର୍ଥନା, ସେବା, ଶୁଶ୍ରୂଷା, ପରିଚର୍ଯ୍ୟା, ବେଦାନ୍ତସାରାନୁସାରେ ନିତ୍ୟନୈମିତିକ ପ୍ରାୟଶ୍ଚିତ୍ତୋପାସନା ।
ବିଷ୍ଣୁଙ୍କ ଦୀକ୍ଷା, ଶିବଙ୍କର ପୂଜା ଉପାସନା, ଗାୟତ୍ରୀଙ୍କର ଉପାସନା ହେଉଛି ମନୁଷ୍ୟର ଧର୍ମ ଏବଂ କର୍ତ୍ତବ୍ୟ ।
(ପୂ.ଓ.ଭା. - ପୃ.୧୦୩୮, ଶ.କ.ଦ୍ରୁ. ୧ମ - ପୃ.୨୬୩) ।

**ଉପାସ୍ୟ ଦେବତା**-*ସଂ.ବି.*- କୌଣସି ବିଶେଷାନୁଷ୍ଠାନରେ ଯେଉଁ ଦେବଦେବୀଙ୍କ ଉପାସନା କରିବା ଉଚିତ । ଇଷ୍ଟଦେବତା ।
(ପୂ.ଓ.ଭା. -ପୃ.୧୦୩୮, ପ୍ର.ଅ. -ପୃ.୩୮୯) ।

**ଉଭା ଅମବାସ୍ୟା**-*ଦେ.ବି.*- ଆଷାଢ଼ ଅମାବାସ୍ୟା । ଅଣସର ପରେ ସର୍ବସାଧାରଣଙ୍କ ଦର୍ଶନ ପାଇଁ ଠାକୁରଙ୍କୁ ଉଭା କରାଯାଉଥିବାରୁ ଏହା ଉଭା ଅମାବାସ୍ୟା ନାମରେ କଥିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୫) ।

**ଉଭାହେବା**-*ଦେ.ବି.*- ଠିଆ ହେବା । ଠାକୁରାଣୀ ଲାଗିବା, ମନୁଷ୍ୟଠାରେ ଦେବୀଙ୍କର ଆବିର୍ଭାବ ହେବା । ଶ୍ରୀମନ୍ଦିରରେ ଠାକୁର ସିଂହାସନ ଛାଡ଼ି ବାହାରକୁ ଆସିଲେ ଦର୍ଶକଙ୍କ ପାଇଁ 'ଉଭାହେଲେ' ବୋଲି କୁହାଯାଏ ।
(ପୂ.ଓ.ଭା. -ପୃ.୧୦୪୬, ପ୍ର.ଅ. ୧ମ-ପୃ.୩୯) ।

**ଉରଗାରି**-*ସଂ.ବି.*- ବିଷ୍ଣୁଙ୍କର ବାହନ ।
(ପୂ.ଓ.ଭା. - ପୃ.୧୦୪୮, ପ୍ର.ଅ. ୧ମ- ପୃ.୩୯୨) ।

**ଉରିଆକମର ପଟି**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଅଣ୍ଟାରେ ଲାଗିହେଉଥିବା ଏକ ପ୍ରକାର ସୁନା ଗହଣା ।

**ଉଲ୍ଲୁଖ**-*ଦେ.ବି.*- ଏକ ବଡ଼ କନା । ରାଜନଅରକୁ ଠାକୁରଙ୍କ ପ୍ରସାଦ ଗଲାବେଳେ ଉପରେ ଏକ କନା ବନ୍ଧାହୋଇ ଗଣେଶ ମୋହରରେ ମୁଦ ଦିଆଯାଇ ପ୍ରସାଦବଡୁଙ୍କୁ ମଣୋଇ ଦିଆଯାଏ ।
(ପୁ.ବୋ. - ପୃ.୧୬୩) ।

**ଉଲାଗି**-*ଦେ.ବି.*- ଦେହରୁ ବସନ, ବେଶ ବା ମାଳାଦି ବାହାର କରିବା । ଦେବତାଙ୍କ ଦେହରୁ ବସ୍ତ୍ରାଭରଣାଦି ପିନ୍ଧା ହେଲାପରେ କଢ଼ାଯିବା ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨, ପୂ.ଓ.ଭା. - ପୃ.୧୦୫୬, ପ୍ର.ଅ. - ପୃ.୩୯୪) ।

**ଉଲାଗିମାଳ**-*ଦେ.ବି.*- ଦେବତାଙ୍କଠାରୁ କଢ଼ାଯାଇଥିବା ବା ଉତୁରା ଯାଇଥିବା ମାଳ ବା ଛଡ଼ାମାଳ ।
(ଓ.ସାଂ.ଶ. - ପୃ.୬୦, ପୂ.ଓ.ଭା. - ପୃ.୧୦୫୬, ପ୍ର.ଅ. - ପୃ.୩୯୪) ।

**ଉଲୁଧ୍ୱନି**-*ଦେ.ବି.*- ଯେକୌଣସି ମଙ୍ଗଳ କାର୍ଯ୍ୟ ସମୟରେ ସ୍ତ୍ରୀମାନେ ଦେଉଥିବା ହୁଳହୁଳି ଧ୍ୱନି । ଶ୍ରୀଜଗନ୍ନାଥଙ୍କ ରଥ ଯାତ୍ରାବେଳେ ବଡ଼ଦାଣ୍ଡ ହରିବୋଲ ଓ ହୁଳହୁଳିରେ ପ୍ରକମ୍ପିତ ହୋଇଥାଏ ।
(ପୂ.ଓ.ଭା. - ପୃ.୧୦୫୮, ପ୍ର.ଅ. ୧ମ- ପୃ.୩୯୫, ଓ.ସାଂ.ଶ. - ପୃ.୬୦) ।

●



**ଊଖଳ**-*ଦେ.ବି.*- ଧାନ କୁଟିବା ପାତ୍ର, ଡିଙ୍କି ଭରାଣ୍ଡି ।
(ଶ.ତ.ଅ. - ପୃ. ୧୯୯) ।

**ଊତ**-*ସଂ.ବିଶ.*- ତନ୍ତବୁଣା ଲୁଗା ।
(ଶ.କ. ୧ମ - ପୃ.୨୭୮) ।

**ଊର୍ଜଃ**-*ସଂ.ବି.*- ତେଜ ଶକ୍ତି ।
(ତ.ଶ. - ପୃ. ୯୯) ।

**ଊର୍ଦ୍ଧ୍ୱକ**-*ସଂ.ବି.*- ମୃଦଙ୍ଗ ବିଶେଷ । ଶବ୍ଦାର୍ଣ୍ଣବାନୁସାରେ ଏହି ମୃଦଙ୍ଗ ଗାଈ ଲାଙ୍ଗୁଳ ପରି ତିନିତାଳରେ ଆଠଟି ଆଙ୍ଗୁଠିରେ ବାଦନ କରାଯାଏ । ଶ୍ରୀମନ୍ଦିରରେ ପୁଷ୍ପାଳକ ନିଯୋଗ ମନ୍ଦିର ପ୍ରାଙ୍ଗଣରେ ମୃଦଙ୍ଗ ବାଦନରେ ପ୍ରଭୁ ଶ୍ରୀ ଶ୍ରୀ ରାଧାଗୋବିନ୍ଦଙ୍କର କୀର୍ତ୍ତନ କରାଯାଏ ।
(ଶ.କ. ୧ମ-ପୃ୨୮୧, ଶ.ତ.ଅ.-ପୃ ୨୦୦) ।

**ଊର୍ଦ୍ଧ୍ୱଦେବ**-*ସଂ.ବି.*- ତୁଙ୍ଗ ଏବଂ ଶ୍ରେଷ୍ଠ ଦେବତା ଚଳନ୍ତି ବିଷ୍ଣୁ ଜଗନ୍ନାଥ ।
(ଶ.କ. ୧ମ - ପୃ.୨୮୧) ।

**ଊର୍ଦ୍ଧ୍ୱପୁଣ୍ଡ୍ର**-*ସଂ.ବି.*- ତିଳକ ବିଶେଷ । ଏକ ବୈଷ୍ଣବ ସମ୍ପ୍ରଦାୟର ତିଳକ । ବ୍ରାହ୍ମଣମାନେ ଊର୍ଦ୍ଧ୍ୱପୁଣ୍ଡ୍ର, କ୍ଷତ୍ରିୟମାନେ ତ୍ରିପୁଣ୍ଡ୍ର, ବୈଶ୍ୟମାନେ ଅର୍ଦ୍ଧଚନ୍ଦ୍ର ଏବଂ ଶୂଦ୍ରମାନଙ୍କର ବର୍ତ୍ତୁଳାକାର ଚନ୍ଦନ ଲଗାଇବାର ଶାସ୍ତ୍ରରେ ନିର୍ଦ୍ଦେଶ କରାଯାଇଛି । ଆହୁରି ମଧ୍ୟ ଅଶୁଚି କିମ୍ବା ମାନସିକ ଅଶାନ୍ତି ଥିଲେ ଲଲାଟରେ ଚନ୍ଦନ ଲଗାଇଲେ ସେଥିରୁ ମୁକ୍ତି ମିଳେ । ଊର୍ଦ୍ଧ୍ୱମୁଖ ତିଳକ ।
(ଶ.କ. ୧ମ - ପୃ.୨୮୧) ।

**ଊର୍ଦ୍ଧ୍ୱାମ୍ନାୟ**-*ସଂ.ବି.*- ସଂହିତା ବିଶେଷ । ଏଥିରେ ଗୁରୁଭକ୍ତି ତଥା କୃଷ୍ଣ ପୂଜାବିଧି ଉକ୍ତି ଅଛି ।
(ଶ.ତ.ଅ. - ପୃ. ୨୦୦) ।

**ଊର୍ଦ୍ଧ୍ୱଲୋକ**-*ସଂ.ବି.*- ସ୍ୱର୍ଗପୁର । ଦେବତାମାନଙ୍କ ନିବାସସ୍ଥଳ ।
(ତ.ଶ. - ପୃ. ୯୯) ।

**ଊର୍ମି**-*ସଂ.ବି.*- ଲହରୀ, ଢେଉ ।
(ତ.ଶ. - ପୃ. ୯୯) ।

**ଊର୍ମିମାଳି**-*ସଂ.ବି.*- ସମୁଦ୍ର ।
(ତ.ଶ. - ପୃ. ୯୯) ।

**ଊହ୍ୟ**-*ସଂ.ବି.*- ଲେଖା ନ ଥିଲେ ମଧ୍ୟ ଯାହାର ଅସ୍ତିତ୍ୱ କଳ୍ପନା କରାଯାଏ । ଅନୁକ୍ତ ହେଲେ ହେଁ ଅନୁମେୟ ।
(ତ.ଶ. - ପୃ.-୯୯) ।



# ଋ

**ଋକ୍**-*ସଂ.ବି.*- ଋଗ୍‌ବେଦ । ଏହା ହିନ୍ଦୁମାନଙ୍କର ପ୍ରାଚୀନତମ ବେଦମନ୍ତ୍ର ଗ୍ରନ୍ଥ । ଋଗ୍‌ବେଦଠାରୁ ପ୍ରାଚୀନତମ ଗ୍ରନ୍ଥ ଜଗତରେ ନାହିଁ ବୋଲି ପ୍ରତ୍ନତତ୍ତ୍ୱବିତ୍‌ମାନେ କହନ୍ତି । ଜଣେ ପାଶ୍ଚାତ୍ୟ ପଣ୍ଡିତଙ୍କ ମତାନୁସାରେ - 'ଋକ୍‌ବେଦ ଖଣ୍ଡିଏ ଗ୍ରନ୍ଥ ନୁହେଁ ଏହା ଏକ ପୁସ୍ତକାଗାର ଓ ସାହିତ୍ୟ ଭଣ୍ଡାର ଅଟେ ।' ଋଗ୍‌ବେଦରେ ଶ୍ରୀଜଗନ୍ନାଥ ଦାରୁ ରୂପେ ସମୁଦ୍ରରେ ଭାସମାନ ଥିଲେ ବୋଲି ସାୟାଣାଚାର୍ଯ୍ୟଙ୍କ ଭାଷ୍ୟରେ ବର୍ଣ୍ଣିତ ।
(ପୂ.ଓ.ଭା. - ପୃ.୧୦୭୯, ଓ.ସାଂ.ଶ.- ପୃ.୬୧, ପ୍ର.ଅ. ୧ମ - ପୃ.୪୦୩) ।

**ଋଜୁ**-*ସଂ.ବି.*- ସିଧା, ସଳଖ, ସରଳ, ସହଜ, ଅକପଟ, ପ୍ରାଞ୍ଜଳ ।
(ତ.ଶ. - ପୃ. ୯୯) ।

**ଋଣୀ**-*ସଂ.ବି.*- ଉପକାରୀ ନିକଟରେ କୃତଜ୍ଞ ।
(ତ.ଶ. - ପୃ. ୯୯) ।

**ରୁକ୍ମିଣୀହରଣ**-*ସଂ.ବି.*- ଶ୍ରୀମନ୍ଦିରରେ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀରେ ଏହି ନୀତି ପାଳିତ ହୁଏ । ସକାଳ ଧୂପ ବସିବା ସମୟରେ ଦକ୍ଷିଣି ଘରେ ମଦନମୋହନଙ୍କର ବେଶ ଆରମ୍ଭ ହୁଏ । ସକାଳ ଧୂପ ପୂଜା ବଢ଼ି ଭିତରେ ପାଣି ପଡ଼ିଲା ଉତ୍ତାରେ ପୂଜାପଣ୍ଡା ଶ୍ରୀଜଗନ୍ନାଥଙ୍କ ଶ୍ରୀ ଅଙ୍ଗରୁ ଆଜ୍ଞାମାଳ ନେଇ ଲକ୍ଷ୍ମୀ ଠାକୁରାଣୀଙ୍କୁ ଲାଗି କରାନ୍ତି । ପରେ ନୀତିକାନ୍ତି ଅନୁଯାୟୀ ରୁକ୍ମିଣୀ ହରଣ ଓ ବିବାହ ବିଧି ସମ୍ପନ୍ନ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୨୨) ।

**ଋତ**-*ସଂ.ବି.*- ସତ୍ୟ, ଚିରନ୍ତନ ।
(ତ.ଶ. - ପୃ. ୯୯) ।

**ଋଦ୍ଧି**-*ସଂ.ବି.*- ସମ୍ପତ୍ତି, ଉନ୍ନତି, ସୌଭାଗ୍ୟ, ଲକ୍ଷ୍ମୀ ।
(ତ.ଶ. - ପୃ. ୯୯) ।

**ଋଷି**-*ସଂ.ବି.*- ଶାସ୍ତ୍ରଜ୍ଞ, ତପସ୍ୱୀ, ବେଦମନ୍ତ୍ର ରଚୟିତା ମୁନି ।
(ତ.ଶ. - ପୃ. ୧୦୦) ।

**ଋଷିପଞ୍ଚମୀ**-*ସଂ.ବି.*- ଭାଦ୍ର ଶୁକ୍ଳ ପଞ୍ଚମୀ ଋଷିପଞ୍ଚମୀରୂପେ ପରିଚିତ । ଶ୍ରୀମନ୍ଦିରରେ ସକାଳ ଧୂପରେ ମହାଲକ୍ଷ୍ମୀ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇଁ ସାତ ପାହାଚ ଠାରେ ପାଲିଙ୍କିରେ ମାର୍କଣ୍ଡେଶ୍ୱରଙ୍କ ନିକଟକୁ ବିଜେ କରନ୍ତି । ସେଠାରେ ମାଜଣା, କନକ ଲାଗି ବଢ଼ି ଏହାଙ୍କ ଛାମୁରେ ପଣ୍ଡା ଋଷିପଞ୍ଚମୀ କଥା ବର୍ଣ୍ଣନା କଲାପରେ ଶୀତଳ ଭୋଗ ବନ୍ଦାପନା ବଢ଼ି ସିଂହାସନକୁ ବାହୁଡ଼ା ବିଜେ କରନ୍ତି । ସନ୍ଧ୍ୟା ଧୂପ ବଢ଼ିବା ଉତ୍ତାରେ ଦକ୍ଷିଣି ଘରୁ ମଦନ ମୋହନ ବିଜେ ହୋଇ ଆଜ୍ଞାମାଳ ପାଇ ନାଟ ମଣ୍ଡପ ଖଟ ଉପରେ ବିଜେ ହୁଅନ୍ତି । ଗଉଡ଼ବାଡ଼ ସାହିଲୋକେ ଏହାଙ୍କ ଛାମୁରେ ଦାହଲୀଳା ପ୍ରସ୍ତାବ (ଦାହଲୀଳା ନାଟ) କଲାପରେ ଶୀତଳ ଭୋଗ ବନ୍ଦାପନା ହୋଇ ବାହୁଡ଼ା ବିଜେ କରନ୍ତି ।
(ପୂ.ଓ.ଭା. - ପୃ. ୧୦୮୪, ଶ୍ରୀ.ସ୍ୱ. ୨ୟ - ପୃ. ୯୪, ପ୍ର.ଅ. ୧ମ - ପୃ. ୪୦୮) ।

●



**ଏକ କାନିଆ**-*ଦେ.ବିଶ.*- ଏକ ବସ୍ତ୍ର ପରିହିତ । ଉତ୍ତରୀୟ ବିହୀନ, ଏକ କାନିକିଆ । କେବଳ ଖଣ୍ଡେ ବସ୍ତ୍ର ପରିଧାନ କରି କାନ୍ଧରେ କୌଣସି ଉତ୍ତରୀ ବା ଉତ୍ତରୀୟ, ବେଢ଼ା, ପାଛୁଡ଼ା ବା ଦୋସଡ଼ା ଚଦର ଧାରଣ ନକରି ମନ୍ଦିର ମଧ୍ୟକୁ ଦର୍ଶନାର୍ଥେ ଯିବା କିମ୍ବା ପୂଜା, ହୋମ ଆଦିରେ ବସିବା ନିଷେଧ ଅଟେ । ଏକ କାନ୍ଧିଆ ହୋଇ ପୂଜାରେ କେହି ବସନ୍ତି ନାହିଁ ।
(ପ୍ର.ଅ. ୧ମ - ପୃ.୪୧୦, ପୂ.ଓ.ଭା. - ପୃ.୧୦୯୪) ।

**ଏକକୁଣ୍ଡଳ**-*ସଂ.ବି.*- କୁବେର, ଶେଷଦେବ ଓ ବଳରାମ । ଗୋଟିଏ ମାତ୍ର କାନରେ କୁଣ୍ଡଳ ପିନ୍ଧି ଥିବା ବଳରାମ ।
(ଶ.କ. ୧ମ - ପୃ.୨୯୧, ପୂ.ଓ.ଭା.- ପୃ.୧୦୯୫) ।

**ଏକଚକ୍ର**-*ସଂ.ବି.*- ଏକ ଚକ୍ର ରଥ ଅର୍ଥାତ୍ ଯାହାଙ୍କର ଗୋଟିଏ ରଥଚକ । ସୂର୍ଯ୍ୟଦେବଙ୍କର ରଥ ।
(ଶ.କ. ୧ମ - ପୃ.୨୯୧, ପୂ.ଓ.ଭା. - ପୃ.୧୦୯୭) ।

**ଏକଦନ୍ତ**-*ସଂ.ବି.*- ଗଣେଶ । ବ୍ରହ୍ମବୈବର୍ତ୍ତପୁରାଣ ଅନୁଯାୟୀ ଭକ୍ତ ପର୍ଶୁରାମ କ୍ରୋଧବଶତଃ ଗଣେଶଙ୍କ ଗୋଟିଏ ଦାନ୍ତ ଭାଙ୍ଗିଦେଇ ଥିଲେ । ଏକଦା ଶିବ ଏବଂ ପାର୍ବତୀ ହିମାଳୟରେ ଅବସ୍ଥାନ କରୁଥିବା ସମୟରେ ଗଜାନନ ଦ୍ୱାରପାଳ ରୂପେ ଥିଲେ ଏବଂ ଏହି ସମୟରେ ପର୍ଶୁରାମ ଶିବଙ୍କ ଦର୍ଶନାର୍ଥେ ଆସିଥିଲେ । କିନ୍ତୁ ପର୍ଶୁରାମଙ୍କୁ ଗଣପତି ଦ୍ୱାର ଅବରୋଧ କଲେ । ଏହି କାରଣରୁ ଗଣପତି ଏବଂ ପର୍ଶୁରାମଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା ଏବଂ ପର୍ଶୁରାମ ନିଜର ପର୍ଶୁଦ୍ୱାରା ଗଣପତିଙ୍କର ଗୋଟିଏ ଦନ୍ତ ଭଗ୍ନ କଲେ । ସେହି ଦିନଠାରୁ ଗଣେଶଏକଦନ୍ତ ନାମରେ ବିଦିତ ।
(ଶ.କ. ୧ମ - ପୃ.୨୯୨, ପୂ.ଓ.ଭା.- ପୃ.୧୧୦୨) ।

**ଏକବର୍ଣ୍ଣୀ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀ ଜୀଉଙ୍କର ଏକପ୍ରକାର ସଙ୍ଖୁଡ଼ି ଭୋଗ ବିଶେଷ । ପନିପରିବା, ଫୁଟଣ ଇତ୍ୟାଦି ପଡ଼ି ପ୍ରସ୍ତୁତ କରାଯାଉଥିବା ଘୃତପକ୍ୱ ଅନ୍ନ । ଏହା ଶ୍ରୀଜୀଉଙ୍କୁ ଭୋଗରୂପେ ଅର୍ପଣ କାରଯାଏ ।

**ଏକବର୍ଣ୍ଣୀ ପୁଷ୍ପ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କୁ ଅର୍ପଣ କରାଯାଉଥିବା ଏକବର୍ଣ୍ଣର ପୁଷ୍ପମାଳ ।

**ଏକବିଂଶ ବତୀ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଆଳତି ସମୟରେ ଏକୋଇଶ ବତୀର ଆଳତି ଏକ ସମୟରେ ହୋଇଥାଏ । ଏହି ଆଳତି ପହଡ଼ ଓ ପ୍ରତିଧୂପରେ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ଏକା ଏକ ସେବକ**-*ଦେ.ବି.*- ଏକ ସେବକ ବିଶେଷ । ଏକାକୀ ସେବା କରୁଥିବା ସେବକ ।
(ପୁ.ବୋ. - ପୃ.୧୬୩) ।

**ଏକାଦଶୀ**-*ଦେ.ବି.*- ଏଗାର ସଂଖ୍ୟା ବିଶିଷ୍ଟ । ବିଷ୍ଣୁ ବା ହରିଙ୍କର ବିଶେଷ ତିଥି । ଶ୍ରୀମନ୍ଦିରରେ ପ୍ରତ୍ୟେକ ଏକାଦଶୀରେ ସନ୍ଧ୍ୟା ଆଳତି ପରେ ଏକାଦଶୀ ନୀତି ପାଳିତ ହୁଏ । ଏକାଦଶୀ ଶୁକ୍ଳପକ୍ଷ ଗୁରୁବାର ପଡ଼ିଲେ ଏହାକୁ ଲକ୍ଷ୍ମୀ ନାରାୟଣ ଏକାଦଶୀ କୁହାଯାଏ । ଏହିଦିନ ସନ୍ଧ୍ୟା ଧୂପ ପରେ ଶ୍ରୀ ଜଗନ୍ନାଥ ବେଢ଼ାରେ ମହାସ୍ନାନ ହୁଏ । ତା'ପରେ ତିନିବାଡ଼ ମଇଲମ ହୁଏ । ଚନ୍ଦନ ଲାଗି, ବଡ଼ସିଂହାର ବେଶ ଇତ୍ୟାଦି ବିଧି ବିଧାନ ଅନୁସାରେ ପାଳିତ ହୁଏ ।

ସୋମବାର ଦିନ ଏକାଦଶୀ ପଡ଼ିଲେ ଏହାକୁ ଶମ୍ଭୁ-ଏକାଦଶୀ କୁହାଯାଏ । ସେହିଦିନ ଶ୍ରୀଲୋକନାଥଙ୍କ ପାଲିଙ୍କି ଆଣି ବଲ୍ଲଭ ସରିବା ପରେ ଏବଂ ଭଣ୍ଡାର ଲୋକନାଥଙ୍କ କୋରା ଭୋଗ ହେବା ପରେ ଘଣ୍ଟା, ଛତା ସହ ତାଙ୍କୁ ଲୋକନାଥଙ୍କ ଦେଉଳକୁ ନେଇ ଯା'ନ୍ତି । ଦ୍ୱିପ୍ରହର ଧୂପ ପରେ ମଦନ ମୋହନ ଆଜ୍ଞାମାଳ ପାଆନ୍ତି, ଏବଂ ଚାରି ବିମାନ ବଡୁ ତାଙ୍କୁ ମନ୍ଦିରରେ ବେଢ଼ା ବୁଲାଇ ଲୋକନାଥଙ୍କ ମନ୍ଦିରକୁ ବିଜେ କରାନ୍ତି । ବାନାୟରଙ୍କ ଗମ୍ଭୀରାରେ ଠାକୁରମାନେ ରହନ୍ତି । ସେଠାରେ ତାଙ୍କର ପଙ୍କ୍ତି ଭୋଗ ହୁଏ ।

ଏହିପରି ଭାବରେ ବିଧି ବିଧାନ ଅନୁସାରେ ପୂଜାପଣ୍ଡା ଭୋଗ ନୀତି ଶେଷକରନ୍ତି । ଆଷାଢ଼ ମାସ ଶୟନ ଏକାଦଶୀ ଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ପର୍ଯ୍ୟନ୍ତ ବିଗ୍ରହମାନେ ଏପରି ଲୋକନାଥଙ୍କ ପାଖକୁ ଯା'ନ୍ତି ନାହିଁ । ଉକ୍ତ ଚତୁର୍ମାସରେ ଲୋକନାଥଙ୍କ ସେବକ ଆସି ଲୋକନାଥଙ୍କୁ ଏବଂ ମଦନ ମୋହନଙ୍କୁ ଜୟ ବିଜୟ ଦ୍ୱାରକୁ ଆଣି ସେହି ପରି ଭୋଗ ବନ୍ଦାପନା ନୀତି କରନ୍ତି । ଚନ୍ଦନ ଯାତ୍ରାରେ ଓ ରୁକ୍ମିଣୀ ହରଣରେ ଶମ୍ଭୁ ଏକାଦଶୀ ପଡ଼ିଲେ ବିଅଁମାନେ ଶ୍ରୀଲୋକନାଥଙ୍କ ମନ୍ଦିରକୁ ଯା'ନ୍ତି ନାହିଁ । ଏକାଦଶୀ, ଗୁରୁବାର ପଡ଼ିଲେ ଦଣ୍ଡଛତ୍ର ନୀତି ବା ଦଣ୍ଡ ତ୍ରିନୀତି କୁହାଯାଏ । ବଡ଼ସିଂହାର ଭୋଗପରେ ଭିତରଛ ମହାପାତ୍ର, ମୁଦିରସ୍ତ, ପାଳିଆମେକାପ, ଅମୁଣିଆ ପରିଛା, ପାଳିଆ ଖୁଣ୍ଟିଆ, ଅଖଣ୍ଡ ମେକାପ ଓ ସୁଦୁସୁଆର ଭିତରକୁ ଯା'ନ୍ତି ଓ ଦଣ୍ଡତ୍ରିନୀତି କରନ୍ତି କୃଷ୍ଣ ଓ ଶୁକ୍ଳପକ୍ଷ ଏକାଦଶୀ ତିଥିକୁ ହରିବାସର ବୋଲାଯାଏ ।

ଶ୍ରୀମନ୍ଦିରରେ ନିମ୍ନଲିଖିତ ଏକାଦଶୀମାନଙ୍କର ସ୍ୱତନ୍ତ୍ର ନାମ ଥିବାର ଜଣାଯାଏ । ଜ୍ୟେଷ୍ଠ କୃଷ୍ଣ ପକ୍ଷ ଏକାଦଶୀ- ଜଳକ୍ରୀଡ଼ା ଏକାଦଶୀ, ଜ୍ୟେଷ୍ଠ ଶୁକ୍ଳ ପକ୍ଷ ଏକାଦଶୀ - ଦେବବିବାହ ବା ପଦ୍ମା ଏକାଦଶୀ, ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀ- ବାହୁଡ଼ା(ବଡ଼) ଏକାଦଶୀ, ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀ - ଦେବଶୟନ ଏକାଦଶୀ, ଶ୍ରାବଣ କୃଷ୍ଣପକ୍ଷ ଏକାଦଶୀ - ଗାନ୍ଧାରୀ ଏକାଦଶୀ, ଭାଦ୍ରବ କୃଷ୍ଣପକ୍ଷ ଏକାଦଶୀ - କାଳୀୟ ଦଳନ ଏକାଦଶୀ, ଭାଦ୍ରବ ଶୁକ୍ଳପକ୍ଷ ଏକାଦଶୀ - ପାର୍ଶ୍ୱ ପରିବର୍ତ୍ତନ (ବଡ଼) ଏକାଦଶୀ , କାର୍ତ୍ତିକ ଶୁକ୍ଳପକ୍ଷ ଏକାଦଶୀ - ଦେବୋତ୍ଥାନ(ବଡ଼) ଏକାଦଶୀ, ମାଘ ଶୁକ୍ଳପକ୍ଷ ଏକାଦଶୀ - ଭୈମୀ(ବଡ଼) ଏକାଦଶୀ ।

(ଶ୍ରୀ.ସ୍ୱ. ୨ୟ - ପୃ. ୪୧, ପୂ.ଓ.ଭା. - ପୃ.୧୧୨୧) ।

**ଏକାଦଶୀ ନୀତି**-*ଦେ.ବି.*-ଏକାଦଶୀ ଦିନ ଶ୍ରୀମନ୍ଦିର ଉପରକୁ ମହାଦୀପ ଉଠେ । ଏକାଦଶୀ ଗୁରୁବାର ପଡ଼ିଲେ ଦଣ୍ଡଛତ୍ର ନୀତି ହୁଏ । ସୋମବାର ପଡ଼ିଲେ ଶମ୍ଭୁ ଏକାଦଶୀ ନୀତି ବଢ଼େ ।

**ଏକାଦଶୀ ମହାପ୍ରଭୁ**-*ଦେ.ବି.*- ବଡ଼ଦେଉଳର ସଦର ଦ୍ୱାର ଛଡ଼ା ଅନ୍ୟ ତିନି ଦ୍ୱାରର ଦେଉଳ ଗାତ୍ରକୁ ଲଗାଇ ନିର୍ମିତ ଛୋଟ ଦେଉଳ । ବିମାନ ପଛକୁ ଲାଗି ଏକ କ୍ଷୁଦ୍ର ମନ୍ଦିରରେ ଉପାସିତ ପ୍ରତିମା ।

(ପୁ.ବୋ. - ପୃ.୧୬୩) ।

**ଏକାନ୍ତ**-*ସଂ.ବି.*- ଅତ୍ୟନ୍ତ, ଅତିଶୟ, ନିରୋଳା, ନିର୍ଜନ, ଗୋପନୀୟ ଘର, ଅତ୍ୟର୍ଥ, ଅତିମାତ୍ରା, ଉଦ୍‌ଗାଢ଼, ନିର୍ଭର, ତୀବ୍ର, ଗାଢ, ବାଢ଼, ଦୃଢ଼, ବିଶେଷ, ଯାହା ନିଶ୍ଚୟ କରି କୁହାଯାଏ । ଶ୍ରୀମନ୍ଦିରରେ ଗୁରୁବାର ରାତ୍ରିରେ ଲକ୍ଷ୍ମୀ ଓ ଜଗନ୍ନାଥଙ୍କ ପ୍ରତୀକାତ୍ମକ ମିଳନ ନୀତି । ଏକାନ୍ତ ଦିନ ସନ୍ଧ୍ୟା ଧୂପ ପରେ ଲକ୍ଷ୍ମୀ ଓ ମଦନ ମୋହନ ଆଜ୍ଞାମାଳ ପାଇ ଝୁଲଣ ମଣ୍ଡପ ତଳେ ବିମାନରେ ବିଜେ ହୁଅନ୍ତି । ଘଣ୍ଟଘଣ୍ଟାଛତ୍ର ଛାମୁ ଦିହୁଡ଼ି ସହ ବିମାନ ଯାଇ ନିଶା ନୃସିଂହଙ୍କ ପାଖରେ ପହଞ୍ଚେ । ଏଠାରୁ ମହାଜନମାନେ ଉଭୟଙ୍କୁ ମହାଲକ୍ଷ୍ମୀ ମନ୍ଦିରକୁ ନିଅନ୍ତି । ସେଠାରେ ପୂଜା ଆଳତି ଅକ୍ଷତ ବନ୍ଦାପନା ମାଧ୍ୟମରେ ଏହିନୀତି ବଢ଼େ । ଜନ୍ମାଷ୍ଟମୀଠାରୁ ଭାଦ୍ର ଶୁକ୍ଳ ଦଶମୀ ପର୍ଯ୍ୟନ୍ତ, କୁମାର ପୂର୍ଣ୍ଣିମାଠାରୁ ସାତ ଦିନ ମଧ୍ୟରେ

ଗୁରୁବାର ପଡ଼ିଲେ, ସୀତା ଚୋରୀଠାରୁ ପୁଷ୍ୟା ନକ୍ଷତ୍ରରେ ଅଭିଷେକ ଯାଏ, ସ୍ନାନପୂର୍ଣ୍ଣିମାଠାରୁ ଦିଅଁ ରଥରୁ ସିଂହାସନକୁ ଫେରିବା ପର୍ଯ୍ୟନ୍ତ, ସହସ୍ର କୁମ୍ଭାଭିଷେକଠାରୁ ଦଶହରା ପର୍ଯ୍ୟନ୍ତ ଏକାନ୍ତ ହୁଏ ନାହିଁ ।
(ଶ୍ରୀ.ସ୍ୱ. ୩ୟ - ପୃ.୪୦, ପୂ.ଓ.ଭା. - ପୃ.୧୧୨୨, ଶ୍ରୀ.ମ. - ପୃ.୩୯, ଓ.ସାଂ.ଶ.- ପୃ.୬୪) ।

**ଏକାକ୍ଷର**-*ସଂ.ବି.*- ଏକମାତ୍ର ଅକ୍ଷର ବିଶିଷ୍ଟ ମନ୍ତ୍ର । 'ଓଁ' ପ୍ରଣବ ମନ୍ତ୍ର । ଏକ ଅକ୍ଷର 'ଓଁ' କୁ ଏକାକ୍ଷର କୁହାଯାଏ । ଏହି ଏକ ଅକ୍ଷରରୁ ବେଦର ଜନ୍ମ । ବେଦରୁ ମନ୍ତ୍ର ତନ୍ତ୍ରର ଜନ୍ମ ବୋଲି ପୁରାଣରେ ବର୍ଣ୍ଣିତ । 'ଅ ଉ ମ'ର ମିଶ୍ରଣରେ 'ଓଁ' ବା ଏକାକ୍ଷରର ଉତ୍ପତ୍ତି ।
(ପୂ.ଓ.ଭା. - ପୃ. ୧୧୧୮, ପ୍ର.ଅ. ୧ମ - ପୃ.୪୧୮, ଓ.ସାଂ.ଶ. - ପୃ.୬୩) ।

**ଏଣ୍ଡୁରି**-*ଦେ.ବି.*- ଏକ ପ୍ରକାର ପିଷ୍ଟକ ବିଶେଷ । ବିରି ଓ ଚାଉଳ ବଟା ଦ୍ୱାରା ଅଥାରରେ ସିଝାଇ ଏହି ପିଠା ପ୍ରସ୍ତୁତ କରାଯାଏ । ମାର୍ଗଶିର କୃଷ୍ଣ ଅଷ୍ଟମୀକୁ ପ୍ରଥମାଷ୍ଟମୀ କୁହାଯାଏ । ଏହିଦିନ ଓଡ଼ିଶାର ଘରେ ଘରେ ଜ୍ୟେଷ୍ଠ ସନ୍ତାନକୁ ସମ୍ମାନ ଦେବା ଅର୍ଥେ ପ୍ରଥମାଷ୍ଟମୀ ପାଳିତ ହୁଏ ଓ ଏହି ଅଷ୍ଟମୀରେ ଏଣ୍ଡୁରୀ ବିଶେଷତଃ ପ୍ରସ୍ତୁତ କରି ଘରେ ଖାଇବା ସହିତ ବନ୍ଧୁବାନ୍ଧବରେ ବଣ୍ଟନ କରାଯାଏ । ଏହି ଦିନ ଶ୍ରୀଜଗନ୍ନାଥଙ୍କ ଧୂପରେ ଏଣ୍ଡୁରି ପିଠା ପ୍ରସାଦ ରୂପେ ପୂଜା କରାଯାଏ ।
(ପୂ.ଓ.ଭା. - ପୃ.୧୧୩୭, ପ୍ର.ଅ. ୧ମ - ପୃ.୪୨୩, ଶ୍ରୀ.ସ୍ୱ. ୨ୟ - ପୃ.୧୦୨) ।

**ଏମାର କୁଡୁଆ**-*ଦେ.ବି.*-ଏକ ପ୍ରକାର କୁଡୁଆ,ରନ୍ଧ ହାଣ୍ଡି ।
(ପୂ.ଓ.ଭା. - ପୃ. ୧୧୪୪, ପ୍ର.ଅ. ୧ମ - ପୃ. ୪୨୫ ) ।

**ଏମାର ମଠ**-*ଦେ.ବି.*- ପୁରୀ ମନ୍ଦିର ନିକଟସ୍ଥ ପ୍ରସିଦ୍ଧ ରାମାନୁଜ ସମ୍ପ୍ରଦାୟର ବୈଷ୍ଣବ ମଠ, ହିନ୍ଦୁ ଧର୍ମର ପ୍ରସିଦ୍ଧ ପ୍ରଚାରକ ଆଚାର୍ଯ୍ୟ ରାମାନୁଜଙ୍କ ଦ୍ୱାରା ପ୍ରତିଷ୍ଠିତ । ରାମାନୁଜ ତାଙ୍କର ପ୍ରିୟ ଶିଷ୍ୟ ଗୋବିନ୍ଦଙ୍କୁ ସ୍ନେହରେ 'ମନ୍ନାଥ' ମୋର ନାଥ ବୋଲି ଡାକୁଥିଲେ । ତାମିଲ ଭାଷାରେ 'ମନ୍ନାଥ'ର ଭାଷାନ୍ତର - ଏମ ପେରୁ ନାମର । ରାମାନୁଜ ତାଙ୍କ ଶିଷ୍ୟ ଗୋବିନ୍ଦଙ୍କ ନାମରେ ଏ ମଠ ସ୍ଥାପନ କରିଥିବାରୁ ତାଙ୍କ ନାମର ପ୍ରଥମ ଓ ଶେଷ ଅକ୍ଷର ସମ୍ମିଶ୍ରଣରେ ମଠର ନାମ ଏମାର ହୋଇଅଛି । ଏ ମଠର ଅନ୍ୟ ନାମ ଶ୍ରୀନିବାସ କୋଟ ଓ ରାଜ ଗୋପାଳଚାରୀ ମଠ ।
(ପୂ.ଓ.ଭା. - ପୃ. ୧୧୪୪) ।

**ଏମାର ରୋଷ**-*ଦେ.ବି.*- ଶ୍ରୀମନ୍ଦିର ରୋଷରେ 'ଏମାରମଠ' ତରଫରୁ କରାଯାଉଥିବା ଭୋଗ ପ୍ରସାଦ ।

**ଏକେଶ୍ୱରବାଦ**-*ସଂ.ବି.*- ଈଶ୍ୱର ଏକ ବା ଅଦ୍ୱିତୀୟ ।

**ଏରୁଣ୍ଡି**-*ଦେ.ବି.*- ଦ୍ୱାରବନ୍ଧର ତଳ ଅଂଶର କାଠଖଣ୍ଡ । ଚଉକାଠର ତଳ ଅଂଶ ।
(ତ.ଶ. - ପୃ. ୧୦୪) ।

**ଏଲା**-*ଦେ.ବି.*- ଅଳେଇଚ ।

**ଏସନେ**-*ଦେ.ବି.*- ଏହି ପ୍ରକାରେ ଏହି ରୂପେ ।
(ମା.ପା.- - ପୃ. ୪) ।

●

# ଐ

**ଐକ**-*ସଂ.ବି.*- ଏକ ସଂବନ୍ଧୀୟ ।
(ତ.ଶ.- ପୃ. ୧୦୪) ।

**ଐକତାନ**-*ସଂ.ବି.*- ବିଭିନ୍ନ ବାଦ୍ୟର ଏକାବେଳେ ସମସ୍ୱରରେ ବାଦନ ।
(ତ.ଶ. - ପୃ. ୧୦୪) ।

**ଐକାନ୍ତିକ**-*ସଂ.ବି.*- ପ୍ରଗାଢ଼, ଏକନିଷ୍ଠ, ଦୃଢ଼, ସାତିଶୟ ।
(ତ.ଶ. - ପୃ. ୧୦୪) ।

**ଐତିହ୍ୟ**-*ସଂ.ବି.*- ପରମ୍ପରାଗତ ପ୍ରମାଣ । ପ୍ରବାଦ ବାକ୍ୟ । ପ୍ରମାଣ । ଉପଦେଶ ବାକ୍ୟ ।
(ପ୍ର.ଅ. ୧ମ - ପୃ.୪୨୯, ପୂ.ଓ.ଭା. - ପୃ. ୧୧୫୪) ।

**ଐରାବତ**-*ସଂ.ବି.*- ଇନ୍ଦ୍ରଙ୍କ ହସ୍ତୀ । ପୂର୍ବଦିଗର ହସ୍ତୀ ।
(ପୂ.ଓ.ଭା. - ପୃ.୧୧୫) ।

**ଐତିହାସିକ**-*ସଂ.ବି.*- ଇତିହାସ ସମ୍ବନ୍ଧୀୟ । ଇତିହାସ ଲିଖିତ । ଇତିହାସ ଲେଖକ ।
(ପୂ.ଓ.ଭା. - ପୃ.୧୧୫୪) ।

**ଐର**-*ଦେ.ବି.*- ନୃପତି ବିଶେଷ । ପ୍ରାଚୀନ ଉତ୍କଳର ବିଖ୍ୟାତ ରାଜା ଖାରବେଳ । ଉଦୟଗିରି ହାତୀଗୁମ୍ଫା ଖୋଦିତ ଶିଳାଲେଖରୁ ଜଣାଯାଏ ଯେ କେତୁଭଦ୍ର ଐରବଂଶର ଜଣେ ପ୍ରସିଦ୍ଧ ରାଜା ଥିଲେ । ଖାରବେଳ ରାଜା ହେବା ପରେ ସେହି କେତୁଭଦ୍ରଙ୍କ ବିଗ୍ରହଙ୍କୁ ପୂଜା କରୁଥିଲେ । ଐର ରାଜାମାନେ ଖ୍ରୀ.ପୂ. ୩୭୦ ପୂର୍ବରୁ କଳିଙ୍ଗରେ ରାଜତ୍ୱ କରୁଥିଲେ ।
(ପୂ.ଓ.ଭା.-୧୧୫୫) ।

**ଐଶ୍ୱର୍ଯ୍ୟ**-*ସଂ.ବି.*- ପ୍ରଭୁତ୍ୱ, ଅସାଧାରଣ ତେଜ । ଈଶ୍ୱରତ୍ୱ, ଧନସଂପତ୍ତି ବିଭବ, ଈଶ୍ୱରଙ୍କର ଅଣିମାଦି ଅଷ୍ଟ ବିଭୂତି । ମାନବୀୟ ଲୀଳା ଭାବକୁ ଅପେକ୍ଷା ନକରି ଈଶ୍ୱରଙ୍କ ଯେଉଁ ପ୍ରକାଶ ଘଟେ ତାହାକୁ ଐଶ୍ୱର୍ଯ୍ୟ ଲୀଳା କୁହାଯାଏ ।
(ପୂ.ଓ.ଭା. - ପୃ.୧୧୫୭, ପ୍ର.ଅ. ୧ମ- ପୃ.୪୩୦) ।

**ଐଶାନୀ**-ସଂ.*ବି.*- ଈଶାନକୋଣ; ଶକ୍ତିବିଶେଷ, ପାର୍ବତୀ ।
(ଶ.ତ.ଅ. - ପୃ. ୨୧୭, ପୂ.ଓ.ଭା.- ପୃ.୧୧୫୬) ।

**ଐଶ୍ୱର୍ଯ୍ୟବାନ୍**-*ସଂ.ବି.*- ଧନଶାଳୀ, ଧନସମ୍ପତ୍ତିବନ୍ତ ।

**ଐଶ୍ୱର**-*ସଂ.ବି.*- ଈଶ୍ୱର ସମ୍ବନ୍ଧୀୟ, ଈଶ୍ୱରଦତ୍ତ ।

**ଐଶ୍ୱରିକ**-*ଦେ.ବି.*- ଈଶ୍ୱରଙ୍କ ସମ୍ବନ୍ଧୀୟ । ଈଶ୍ୱର ଦତ୍ତ ।
(ପୂ.ଓ.ଭା. - ପୃ.୧୧୫୭, ପ୍ର.ଅ. ୧ମ- ପୃ.୪୩୦) ।

**ଐହିକ**-*ସଂ.ବିଣ.*- ଇହକାଳ । ଇହଲୋକ । ସାଂସାରିକ ଇହଲୋକ ସମ୍ବନ୍ଧୀୟ; ପାର୍ଥିବ ।
(ପୂ.ଓ.ଭା. - ପୃ.୧୧୫୭, ପ୍ର.ଅ. ୧ମ - ପୃ. ୪୩୦, ଓ.ସାଂ.ଶ. - ପୃ.୬୫) ।

●

# ଓ

ଓଉ-*ଦେ.ବି.*- ପାଞ୍ଚଫଡ଼ାଯୁକ୍ତ ଖଟା ଫଳ ବିଶେଷ ।

ଓଁ-*ସଂ.ବି.*- ଓଁକାର, ପ୍ରଣବ, ଆଦ୍ୟ ବୀଜ ବିଶେଷ । ଅ,ଉ,ମର ସମ୍ମିଶ୍ରଣ । ଅ-ବ୍ରହ୍ମା, ଉ-ବିଷ୍ଣୁ, ମ-ମହେଶ୍ୱର । ଏହି ବୀଜମନ୍ତ୍ରରେ ତିନି ଦେବତାଙ୍କ ନାମଥିବାରୁ ଏହା ସକଳ ମନ୍ତ୍ରର ଆଦ୍ୟରେ ଲାଗେ । ଏହାକୁ ପ୍ରଥମେ ଉଚ୍ଚାରଣ କରି ମନ୍ତ୍ର ପାଠ କଲେ ମନ୍ତ୍ରସିଦ୍ଧ ହୁଏ ।

ଅ'କାର - ସୂର୍ଯ୍ୟବୀଜ, 'ଉ' କାର ଚନ୍ଦ୍ରବୀଜ, 'ମ'କାର ଅଗ୍ନିବୀଜ ବୋଲି ଶାସ୍ତ୍ର ମତ । ଏହା ପୁଣି ସତ୍ୱ, ରଜ ଓ ତମର ପ୍ରତୀକ ।

(ଓ.ସାଂ.ଶ. - ପୃ.୬୮, ପୂ.ଓ.ଭା. - ପୃ.୧୧୫୮, ପ୍ର.ଅ. ୧ମ - ପୃ.୪୭୧) ।

ଓଁକାର-*ସଂ.ବି.*- ପ୍ରଣବ, ବୀଜମନ୍ତ୍ର ।

ଓଁ ତତ୍‌ସତ୍‌-*ସଂ.ବି.*- ଏହା ଉଚ୍ଚାରଣ କରି ଯଜ୍ଞ, ଦାନ ଓ ତପସ୍ୟା ବିଧିବଦ୍ଧଭାବେ ଅନୁଷ୍ଠାନ କରାଯାଏ । ଏହା ପରଂବ୍ରହ୍ମଙ୍କ ଜଠର ଅବୟବ ତ୍ରୟ ଯୁକ୍ତ ନାମ । ବୈଗୁଣ୍ୟ ଦୋଷ ପରିହାର ନିମିତ୍ତ ଏହାକୁ ଉଚ୍ଚାରଣ କରାଯାଏ ।

(ଓ.ସାଂ.ଶ. - ପୃ.୬୮) ।

ଓଝା ମହାରଣାସେବା-*ଦେ.ବି.*- ଶ୍ରୀମନ୍ଦିରର କମାର ସେବକ । ଏହି ସେବାୟତ ଶ୍ରୀମନ୍ଦିରରେ ଆବଶ୍ୟକ ବେଳେ କିମ୍ବା ରଥ ପାଇଁ ଲୁହା କାମ ଦରକାର ବେଳେ ଦେଉଳ କଚେରୀ ହତାରେ ଶାଳ କରି ଯୋଗାଇ ଥାଆନ୍ତି । ଦାରୁ ଅନ୍ୱେଷଣରେ ଯିବା ବେଳେ ଦାରୁ ଛେଦନ ପାଇଁ କୁରାଢ଼ୀ ଯୋଗାନ୍ତି ।

(ଶ୍ରୀ.ସ୍ୱ. - ପୃ. ୩୬୨) ।

ଓଡ଼ପୁଷ୍ପ-*ସଂ.ବି.*- ଜବା ପୁଷ୍ପ, ମନ୍ଦାର । ଦେବୀ ଯୋଗ୍ୟା ପୁଷ୍ପ ବିଶେଷ ।

ଓଡ୍ର ଦେବତା-*ଦେ.ବି.*- ଭାରତର ପୂର୍ବ ପ୍ରାନ୍ତରେ ପ୍ରାୟ ୧୦୦୦ ଖ୍ରୀ.ଅ. ପୂର୍ବରୁ ବିରଚିତ ଓ ସମଗ୍ର ଭାରତରେ ତନ୍ତ୍ରମନ୍ତ୍ରର ଏକ ପ୍ରାମାଣ୍ୟ ଗ୍ରନ୍ଥ ରୂପେ ସ୍ୱୀକୃତ "କାଳିକା ପୁରାଣ'ରେ ଜଗନ୍ନାଥ 'ଓଡ୍ରେଶୀ' ବା 'ଓଡ୍ର' (ଉତ୍କଳ)ର ଶ୍ରେଷ୍ଠ ଦେବତା ରୂପେ ପ୍ରଚାରିତ ହୋଇଛନ୍ତି । ଗ୍ରନ୍ଥକାର କାମରୂପବାସୀ ହେଲେ ମଧ୍ୟ 'ଓଡ୍ରପୀଠ'କୁ ତନ୍ତ୍ରପୀଠ ଚତୁଷ୍ଟୟ ମଧ୍ୟରେ ପ୍ରଥମ ସ୍ଥାନ ଏବଂ କାମରୂପକୁ ଚତୁର୍ଥସ୍ଥାନ ପ୍ରଦାନ କରି ସ୍ୱୀୟ ନିରପେକ୍ଷତା ପ୍ରକାଶ କରିଛନ୍ତି । ଦଶମ ଶତାବ୍ଦୀରେ ମଧ୍ୟପ୍ରଦେଶର ସତନା ଜିଲ୍ଲାର ମହିଆର ନାମକ ସ୍ଥାନରେ ପର୍ବତ ଶିଖରରେ ନିର୍ମିତ ସରସ୍ୱତୀ ମନ୍ଦିରରେ ଥିବା ଏକ ବିସ୍ତୃତ ଶିଳାଲେଖରୁ ସ୍ପଷ୍ଟ ଜଣାଯାଏ ଯେ, ସେ ଯୁଗରେ ମଧ୍ୟ ସମୁଦ୍ର ସ୍ନାନପରେ ଓଡ୍ରଦେଶର ସମୁଦ୍ର କୂଳରେ ଅବସ୍ଥିତ ଥିବା ପୁରୁଷୋତ୍ତମ (ଜଗନ୍ନାଥ)ଙ୍କର ଦର୍ଶନ ପରମବ୍ରହ୍ମଙ୍କ ପଦପ୍ରାପ୍ତିର ପ୍ରଧାନ ସୋପାନ ରୂପେ ବିବେଚିତ ହେଉଥିଲା ।

ଓଡ଼ିଆଣୀ-*ଦେ.ବି.*- କଟିସୂତ୍ର ବା କଟି ମେଖଳା, ଚନ୍ଦ୍ରହାର, ଅଣ୍ଟାସୂତା, ଯାହାକୁ ଓଡ଼ିଆ ଜାତିର ସ୍ତ୍ରୀ ବ୍ୟବହାର କରନ୍ତି । ଶ୍ରୀଜୀଉମାନଙ୍କର ସୁନା ବେଶରେ ଏହା ବ୍ୟବହୃତ ହୁଏ । କଟିର ଅଳଙ୍କାର ବିଶେଷ ।

(ପ୍ର.ଅ. ୧ମ - ପୃ.୪୩୩, ଓ.ସାଂ.ଶ. - ପୃ.୬୬, ପୂ.ଓ.ଭା. - ପୃ. ୧୧୬୮) ।

ଓଡ଼ିଆ ମଠ-*ଦେ.ବି.*- ପୁରୀରେ ଥିବା ବିଭିନ୍ନ ବୈଷ୍ଣବ ମଠ ମଧ୍ୟରୁ ଏହା ଅନ୍ୟତମ । ଶ୍ରୀମନ୍ଦିରର କାର୍ଯ୍ୟାବଳିରେ ମଠମାନଙ୍କ ଦାୟିତ୍ୱ ଅଛି । ତନ୍ମଧ୍ୟରୁ ଓଡ଼ିଆ ମଠ, ଶୁକ୍ଳ ମାର୍ଗଶିର ଚତୁର୍ଦ୍ଦଶୀ, ବାହୁଡ଼ା ପଙ୍‌କ୍ତି, ଆଡ଼ପ ବିଜେ,

ଧୂଳିଆଗୁଣ୍ଠିଚା ଏବଂ ଅଣସର ବିଧି କାର୍ଯ୍ୟରେ ବିଶେଷ ଅଂଶ ଗ୍ରହଣ କରିଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୬୨) ।

**ଓଡ଼ିଶା**-*ଦେ.ବି.*- ଗଜପତି କପିଳଦେବଙ୍କ ପ୍ରଦ ଓ ଶିଳାଲେଖରେ ଉତ୍କୀର୍ଣ୍ଣ 'ଉକ୍ରଳ' ଶବ୍ଦର ଏକ ନୂତନ ବିକଳ୍ପ, ଯାହା କି ଆଧୁନିକ ଓଡ଼ିଶାରେ ରୂପାନ୍ତରିତ ହୋଇଛି ।

**ଓଢ଼ଣ ଷଷ୍ଠୀ**-*ଦେ.ବି.*- ମାର୍ଗଶିର ଶୁକ୍ଳ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ବିଗ୍ରହରେ ଶୀତବସ୍ତ୍ର ବ୍ୟବହାର କରାଯାଏ । ଠାକୁରମାନଙ୍କ ନୀତିରେ ଓଢ଼ଣଲାଗି ହୁଏ । ଶ୍ରୀଜୀଉଙ୍କର ଓଢ଼ଣ ଲାଗିକୁ ଘୋଡ଼ ଲାଗି ବେଶ କୁହାଯାଇଥାଏ । ବିଭିନ୍ନ ବାରରେ ବିଭିନ୍ନ ରଙ୍ଗର ଓଢ଼ଣୀ ଲାଗେ ।
ରବିବାର - ଲାଲ ରଙ୍ଗ, ସୋମବାର - କଳାଛିଟ ମିଶା ଶୁକ୍ଳ ଓଢ଼ଣୀ, ମଙ୍ଗଳବାର - ବାର ପଟିଆ (ପଞ୍ଚରଙ୍ଗୀ), ବୁଧବାର - ନୀଳରଙ୍ଗ, ଗୁରୁବାର- ବସନ୍ତରଙ୍ଗ, ଶୁକ୍ରବାର - ଶୁକ୍ଳରଙ୍ଗ, ଶନିବାର - କଳାରଙ୍ଗ ।
(ପ୍ର.ଅ. ୧ମ - ପୃ.୪୩୩, ପୂ.ଓ.ଭା. - ପୃ. ୧୧୭୦, ଶ୍ରୀ.ସ୍ୱ. - ପୃ.୧୪୪, ପୌ.(ବଂ.) ୧ମ - ପୃ.୨୬୯) ।

**ଓଢ଼ଣୀ**-*ଦେ.ବି.*- ସ୍ତ୍ରୀମାନଙ୍କ ଓଢ଼ଣୀ, ମୁଖାଚ୍ଛାଦନ ବସ୍ତ୍ର । ଉପଚାରଣ ବସ୍ତ୍ର । ଶ୍ରୀମନ୍ଦିରରେ ଠାକୁରଙ୍କୁ ଓଢ଼ଣୀ ଲାଗି କରାଯାଏ । ଏଥି ନିମନ୍ତେ ଓଢ଼ଣୀ ଷଷ୍ଠୀ ରହିଛି । ମାର୍ଗଶିର ଶୁକ୍ଳ ଷଷ୍ଠୀରୁ ମାଘ ଶୁକ୍ଳ ପଞ୍ଚମୀ ପର୍ଯ୍ୟନ୍ତ ଶ୍ରୀଜୀଉ ଓଢ଼ଣୀ ବ୍ୟବହାର କରିଥାଆନ୍ତି ।
(ପୂ.ଓ.ଭା. - ପୃ. ୧୧୭୦, ପ୍ର.ଅ. ୧ମ - ପୃ.୪୩୩) ।

**ଓତରା**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ଏ ସେବକ ପ୍ରତିଦିନ ଶ୍ରୀମନ୍ଦିରର ସକଳ ସ୍ଥାନ ବୁଲିବେ ଓ ଅଦରକାରୀ ଜିନିଷ କେଉଁଠାରେ ଥିଲେ ତାହା ପରିଚ୍ଛାଙ୍କୁ ଜଣାଇବେ । ସମ୍ପ୍ରତି ଏହି ସେବା ନାହିଁ ।

**ଓତା ବ୍ରାହ୍ମଣ**-*ଦେ.ବି.*- ହୋତା ବ୍ରାହ୍ମଣ ।

**ଓରିଆ**-*ଦେ.ବି.*- ଏକ ପ୍ରକାର ଘୃତାନ୍ନ । ଅଭଡ଼ାରେ ଘିଅ, କମଳାରସ ଓ ଲୁଣ ଦିଆଯାଇ ପ୍ରସ୍ତୁତ ହୋଇଥିବା ଅନ୍ନ । କୋଠ ଭୋଗରେ ଯେଉଁ ଅଣଚାଳିଶିଟି ଭୋଗ ଅଛି, ତନ୍ମଧ୍ୟରୁ ଏହା ଏକତମ ।
(ପୂ.ଓ.ଭା. - ପୃ. ୧୧୭୪, ପୁ.ବୋ.- ପୃ.୧୬୪, ଶ୍ରୀ.ସ୍ୱ. - ପୃ. ୬୦) ।

**ଓଳ**-*ଦେ.ବିଣ.*- ଆର୍ଦ୍ର, ଓଦା, ଭିଜା, ନିର୍ବୋଧ, ବୋକା, ପୁରୀର ବ୍ୟବହୃତ ଶବ୍ଦ ।
(ପ୍ର.ଅ. ୧ମ - ପୃ.୪୩୪) ।

**ଓଳମାଳ**-*ଦେ.ବି.*- ଶ୍ରୀ ଠାକୁରଙ୍କ ବାହୁରେ ଓହଳାଯାଉଥିବା ବସ୍ତ୍ର । ଶ୍ରୀଜଗନ୍ନାଥଙ୍କ ନାଗାର୍ଜ୍ଜୁନ ବେଶରେ ଶ୍ରୀଭୁଜରେ ଲୋକ ନର୍ତ୍ତକ ନାଗାର ଦୁଇ ହସ୍ତରେ ଧାଡ଼ି ଧାଡ଼ି ହୋଇ ସଜାଇଥିବା ଓଳମାଳ ।
(ଓ.ସାଂ.ଶ. - ପୃ.୬୩, ପୁ.ବୋ. - ପୃ.୧୬୪) ।

**ଓଳଗି**-*ଦେ.ବି.*- ଭୂମିଷ୍ଠ ପ୍ରଣାମ, ନମସ୍କାର, ନଇଁପଡ଼ି ପୂଜ୍ୟଲୋକଙ୍କ ପାଦ ସ୍ପର୍ଶ କରି ପ୍ରଣାମ କରିବା ।
(କ୍ଷେ.ସ.) ।

**ଓଳି**-*ଦେ.ବି.*- ଘର ଚାଳର ପ୍ରାନ୍ତ । ଦିବସର ଶେଷ ଅର୍ଦ୍ଧ ବା ଦିନାର୍ଦ୍ଧ । ଛୋଟ ମାଟି କୁଡୁଆ, ଆବୃତ୍ତି, ପ୍ରକୃତି, ଅଭ୍ୟାସ । ଶ୍ରୀମନ୍ଦିରରେ ଠାକୁରଙ୍କ ମହାପ୍ରସାଦରେ ଓଳି ବ୍ୟବହୃତ ହୁଏ ।
(ଶ୍ରୀ.ସ୍ୱ. - ପୃ.୧୦୭, ପୂ.ଓ.ଭା. - ପୃ.୧୧୭୯) ।

**ଓଲଟ ବୃକ୍ଷ**-*ଦେ.ବି.*- ଏହି ବିଚିତ୍ର ବୃକ୍ଷରୂପୀ ସଂସାରରେ ବ୍ରହ୍ମ (ମୂଳ ପରମାତ୍ମା ପରମେଶ୍ୱର) ସର୍ବୋତ୍ତମ ସ୍ଥାନରେ ଅବସ୍ଥାନ କରୁଥିବା ବେଳେ, ତାଙ୍କଦ୍ୱାରା ସୃଷ୍ଟ ମାୟା ଓ କାମନା ବିଜଡ଼ିତ ସଂସାରୀ ଓ ତାହାର ଐଶ୍ୱର୍ଯ୍ୟ ଇତ୍ୟାଦି ଫଳ ଲିପ୍ସା ନିମ୍ନ ସ୍ଥାନରେ ରହିଥାଏ । ଏହି ଓଲଟ ବୃକ୍ଷର ତତ୍ତ୍ୱ ହେଉଛି ସମସ୍ତ ଜଗତର ମାୟା ବିଜଡ଼ିତ ମୋହକୁ ଛାଡ଼ି ଅବ୍ୟୟ ଅକ୍ଷର ବ୍ରହ୍ମରେ ମନଯୋଗ ଦେବା ।
(କ୍ଷେ.ସ.) ।

**ଓଲାଗି ପୁଷ**-*ଦେ.ବି.*- ଶ୍ରୀରାମଦାସ ମଠ ଓ ଏମାର ମଠ ଶ୍ରୀଜୀଉଙ୍କ ବଡ଼ସିଂହାର ବେଶ ପାଇଁ ପୁଷାଳଙ୍କାର ଯଥା- ଅଧରମାଳା, ଝୁମ୍ପା, ଚନ୍ଦ୍ରିକା, କରପଲ୍ଲବ ଆଦି ଓଲାଗି ପରେ ତାହା ଶ୍ରୀକ୍ଷେତ୍ରର କେତେକ ନିର୍ଦ୍ଦିଷ୍ଟ ଦେବଦେବୀଙ୍କୁ ଲାଗି କରାଯାଏ । ଶ୍ରୀଜଗନ୍ନାଥଙ୍କ ଅଧରମାଳା ଲକ୍ଷ୍ମୀଦେବୀଙ୍କୁ, ଶ୍ରୀବଳଭଦ୍ରଙ୍କ ଅଧରମାଳା ମା' ବିମଳାଙ୍କୁ ଓ ସୁଭଦ୍ରାଙ୍କ ଅଧରମାଳା ଉତ୍ତରାୟଣୀଙ୍କୁ ଲାଗିହୁଏ । ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ଗୋଟିଏ ଲେଖାଏଁ ଝୁମ୍ପା ଦେବୀ କନକ ଦୁର୍ଗାଙ୍କ ନିମନ୍ତେ ଶ୍ରୀନଅରକୁ ପଠାଯାଏ । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରାଙ୍କ ଚନ୍ଦ୍ରିକା ଯଥାକ୍ରମେ ଦକ୍ଷିଣକାଳୀ, ବାଟମଙ୍ଗଳା ଓ ହରଚଣ୍ଡୀଙ୍କୁ ପ୍ରଦାନ କରାଯାଏ । ଅବଶିଷ୍ଟ ପୁଷମାଳ ପୁଷାଳକ ଓ ପାଳିଆ ଖୁଣ୍ଟିଆ ସେବକ ଦୁଇ ଭାଗ କରି ବାଣ୍ଟି ନିଅନ୍ତି ।
(ଶ୍ରୀ.ଜି. - ପୃ. ୨୨୧) ।

**ଓଲାଉଠା**-*ଦେ.ବି.*- ହଇଜା, ଝାଡ଼ାବାନ୍ତି ରୋଗ ।

**ଓଲାର**-*ଦେ.ବି.*- ଏକ ପ୍ରକାର ବଡ଼ ଛତା । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଶୋଭାଯାତ୍ରାରେ ଏହା ବ୍ୟବହୃତ ହୁଏ ।
(ପୁ.ବୋ. - ପୃ.୧୬୪) ।

**ଓଳିଆ**-*ଦେ.ବି.*- ପୁତୁଗ, ପାଳଟିଆରି ପୁଟୁଳା ।

**ଓଷ**-*ଦେ.ବି.*- ଝୁଣା, ରାଶି ତେଲର ମିଶ୍ରଣରେ ପ୍ରସ୍ତୁତ ଲେପ ।
(କ୍ଷେ.ସ.) ।

**ଓଷା**-*ଦେ.ବି.*- ନାରୀମାନଙ୍କର ଆଚରିତ ବ୍ରତ ।

**ଓସାର**-*ଦେ.ବି.*- ବିସ୍ତାର, ପ୍ରଶସ୍ତ ।

**ଓସ୍ତ**-*ସଂ.ବି.*- ଅଶ୍ୱତ୍ଥ ।

**ଓହଳ**-*ଦେ.ବି.*- ଡାଳରୁ ତଳକୁ ଲମ୍ବିଥିବା ଚେର ।

**ଓହଳିବା**-*ଦେ.ବି.*- ଲମ୍ବା ହୋଇ ତଳକୁ ଝୁଲିବା ।
(ତ.ଶ.- ପୃ. ୧୦୭) ।

**ଔପଳ**-*ସଂ.ବି.*- ପ୍ରସ୍ତର, ଶିଳା, ଶାଳଗ୍ରାମ ।

**ଔରତ**-*(ଯା)ବି.*- ନାରୀ, ଭାର୍ଯ୍ୟା ।

**ଔଷଧ**-*ଦେ.ବି.*- ଭେଷଜ ।



# କ

**କ-** ପ୍ରଥମ ବ୍ୟଞ୍ଜନବର୍ଣ୍ଣ । ବିଷ୍ଣୁ, ବ୍ରହ୍ମା, ରୁଦ୍ର, ବାୟୁ, ଯମ, ସୂର୍ଯ୍ୟ, ଆତ୍ମା, ଅଗ୍ନି, ନୃପତି । (ମେ.କୋ.) ।

**କଅଁଳପୁଳି-** *ଦେ.ବି.-* ଶ୍ରୀମନ୍ଦିରରେ ଭୋଗ ସକାଶେ ବଟା ବିରିରେ ନଡ଼ିଆ ଓ ମସଲା ପଡ଼ି ପ୍ରସ୍ତୁତ ହୋଇଥିବା ପିଷ୍ଟକ ବିଶେଷ । (ଉ.ଇ.ଅ.ଅ. - ପୃ. ୩୨୪) ।

**କଇଁଚ-** *ଦେ.ବି.-* କଚ୍ଛପ ବିଷ୍ଣୁଙ୍କ ଦ୍ୱିତୀୟ ଅବତାର । ଏହା ଗୋଲାକାର ଓ ଚେପଟା । ସେ ଇଚ୍ଛାନୁସାରେ ଚାରିଗୋଡ଼କୁ ଓ ମୁଣ୍ଡକୁ ନିଜ ଖୋଳ ଭିତରକୁ ଟାଣି ନିଏ । ଏହାର ପିଠିର ଖୋଳ କୁଦ ଆକାରର ଓ ଖୁବ୍ ଟାଣୁଆ । ଖୋଳ ଉପରେ ଚୋପି ଚୋପି ଦାଗ ଥାଏ । ଖୋଳର ପଛଆଡ଼ କୋଣ ବିଶିଷ୍ଟ । ବଡ଼ କଇଁଛକୁ କୁରୁମ କୁହାଯାଏ । ଛୋଟ ବଡ଼ ବହୁତ ପ୍ରକାରର କଇଁଛ ଅଛନ୍ତି । କଇଁଛ ଜଳଚର ଓ ସ୍ଥଳଚର । ପୁରୀ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ, ଯମୁନା ନଦୀରେ ମଥୁରା, ବୃନ୍ଦାବନ, ଆହ୍ଲାବାଦ ଆଦି ସ୍ଥାନରେ ବଡ଼ ବଡ଼ କଇଁଛ ବହୁତ ଦେଖାଯାଆନ୍ତି । କିମ୍ବଦନ୍ତୀ କହେ ଶ୍ରୀମନ୍ଦିର ତୋଳାରେ କର୍ମ କରୁଥିବା ଅର୍ଥାତ୍ ପ୍ରସ୍ତର ବୋହୁଥିବା ଶ୍ରମିକ ପଥର ବୋହି ବୋହି କୂର୍ମ ପାଲଟିଯାଇ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀରେ ଆଶ୍ରୟ ନେଇଛନ୍ତି । (ପୂ.ଓ.ଭା. - ପୃ.୧୧୯୯) ।

**କଉଡ଼ି-** *ଦେ.ବି.-* ଏକ ସାମୁଦ୍ରିକ ଜୀବ । ଏହାକୁ ଅତି ପବିତ୍ର ମନେକରି ଦେବଦେବୀ ପୂଜାରେ ବ୍ୟବହାର କରାଯାଏ । ସନ୍ତାନଟିର ଜନ୍ମଲାଭ ପରେ ଏନ୍ତୁଡ଼ିଶାଳରେ ଷଠୀଘର ନିର୍ମାଣରେ କଉଡ଼ି ଲଗାଯାଏ । ବିବାହ ବେଦୀରେ ବରକନ୍ୟାଙ୍କୁ କଉଡ଼ି ଖେଳିବାକୁ ସୁଯୋଗ ଦିଆଯାଏ । ମଧ୍ୟଯୁଗରେ ଆମ ଦେଶରେ ମୁଦ୍ରା ପରିବର୍ତ୍ତେ କଉଡ଼ିର ପ୍ରଚଳନ ମଧ ଥିଲା । ଶ୍ରୀମନ୍ଦିରରେ ଆଶ୍ୱିନ ପୂର୍ଣ୍ଣିମା ବା କୁମାର ପୂର୍ଣ୍ଣିମା ଦିନ ଶ୍ରୀ ଜଗନ୍ନାଥଙ୍କ ବାଡ଼(ପକ୍ଷ) ଓ ଶ୍ରୀ ଲକ୍ଷ୍ମୀଙ୍କ ବାଡ଼ (ପକ୍ଷ) ମଧ୍ୟରେ କଉଡ଼ି ଖେଳ ହୁଏ । ଶ୍ରୀ ଜଗନ୍ନାଥଙ୍କ ପ୍ରତିନିଧିତ୍ୱ କରନ୍ତି ମୁଦିରସ୍ତ ଏବଂ ଶ୍ରୀ ଲକ୍ଷ୍ମୀଙ୍କର ପ୍ରତିନିଧିତ୍ୱ କରନ୍ତି ଭିତରଛ ମହାପାତ୍ର । ଏକୋଇଶି କଉଡ଼ି, ଏକୋଇଶିରୂପା କଉଡ଼ି, ପଶା, ଶକଟା ରାତିସାରା ଖେଳ ହୁଏ । (ଶ୍ରୀ.ସ୍ୱ.- ପୃ.୧୦୦, ଓ.ସାଂ.ଶ. - ପୃ. ୬୯, ପୂ.ଓ.ଭା. - ପୃ.୧୨୦୩ ) ।

**କଉତୁକ-** *ଦେ.ବି.-* ଥଟ୍ଟା ପରିହାସ କରିବା । ଗମାତ କରିବା । ଶ୍ରୀମନ୍ଦିରରେ ନବକଳେବର ବେଳେ ସଂଗୃହୀତ ଦାରୁକୁ ଶ୍ରୀମନ୍ଦିରର କାରୁ ଶାଳାରେ କଉତୁକ (ଡେଉଁରିଆ ବା କବଚ) ବନ୍ଧାଯାଏ । (କ୍ଷେ.ସ.) ।

**କଉସ୍ତୁଭ-** *ସଂ.ବି.-* ବିଷ୍ଣୁଙ୍କର ବକ୍ଷ ଶୋଭିତ ମଣି । କ୍ଷୀରସମୁଦ୍ର ମନ୍ଥନକାଳରେ ସମୁଦ୍ରରୁ ବାହାରିଥିବାରୁ ତାହାର ନାମ କଉସ୍ତୁଭ । ନୃସିଂହ ପୁରାଣରେ ବର୍ଣ୍ଣିତ ଅଛି ଯେ, ଜଣେ ରାଜା କଠୋର ତପ କରି ନିଜର ହାତ, ଗୋଡ଼ ଆଦି ସମସ୍ତ ଅବୟବ ହରାଇଲେ, କେବଳ ମସ୍ତକଟି ରହିଲା । ତାଙ୍କର ଶେଷ ପ୍ରାର୍ଥନା ଥିଲା ଯେ, 'ମହାପ୍ରଭୁ ତା' ମସ୍ତକକୁ ଏକ ମଣିରେ ପରିବର୍ତ୍ତନ କରି ନିଜ କଣ୍ଠରେ ଧାରଣ କରନ୍ତୁ' । ଭକ୍ତର କଥାରେ ମହାପ୍ରଭୁ ସନ୍ତୁଷ୍ଟ ହୋଇ ସେହି ମଣିକୁ ବକ୍ଷରେ ଧାରଣ କରିଥିଲେ । (ଓ.ସାଂ.ଶ. - ପୃ. ୬୯, ପୂ.ଓ.ଭା - ପୃ.୧୮୨୨, ଶ.କ.ଦ୍ରୁ ୨ୟ - ପୃ.୨୧୧, ପୌ. (ବ) - ପୃ.୪୨୨, ଚ.ଚି. - ପୃ.୫୬) ।

**କଖାରୁ-** *ଦେ.ବି.-* ଲତା ଜାତ ଖାଦ୍ୟ ଫଳ ବିଶେଷ । କୁଷ୍ମାଣ୍ଡ । କଖାରୁ ଦୁଇ ପ୍ରକାର-

ବୋଇତି କଖାରୁ ଓ ପାଣି କଖାରୁ । ଉଭୟ କଖାରୁ ଶ୍ରୀମନ୍ଦିରର ରୋଷ ଘରେ ବ୍ୟବହାର କରାଯାଇଥାଏ । ବୋଇତି କଖାରୁ ତରକାରୀ ହୁଏ ଓ ପାଣିକଖାରୁ ଆମ୍ବିଳା ପ୍ରସ୍ତୁତ କରାଯାଇ ମଧ୍ୟାହ୍ନ ଧୂପରେ ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ ।
(କ୍ଷେ.ସ.) ।

**କଚିରି ଘର**-*ଦେ.ବି.*- ରାଜକୀୟ କାର୍ଯ୍ୟାଳୟ । ଶ୍ରୀମନ୍ଦିରର ପଣ୍ଡାଙ୍କ କାର୍ଯ୍ୟାଳୟ ।
(ପୂ.ଓ.ଭା. - ପୃ. ୧୨୨୧) ।

**କଟକ**-*ଦେ.ବି.*- ରାଜଧାନୀ । ମେଖଳା, ବାହୁଭୂଷଣ ବଳୟ, ହାତଖଡ଼ୁ, ଗୋଡ଼ଖଡ଼ୁ, ଚଉଦ୍ୱାର କଟକ, ବାରଣାସୀ କଟକ, କଟକ ସହର, କୃତ୍ତିବାସ କଟକ, ପୁରୀ କଟକ, ପୁରୁଷୋତ୍ତମ କଟକ, କମ୍ବୁକଟକ, ଖୋର୍ଦ୍ଧା ରାଜାଙ୍କ ଗଡ଼, କେଶରୀ ବଂଶର ରାଜତ୍ୱକାଳରେ କଟକ ନିର୍ମାଣ ହୋଇଥିଲା । କଟକ ସୁନାରୂପା ତାରକସୀ କାମ ପାଇଁ ପ୍ରସିଦ୍ଧ । ହାତୀଦାନ୍ତ ଓ ଶିଙ୍ଗ କାମ ପାଇଁ କଟକ ପ୍ରସିଦ୍ଧ ଥିଲା । ଇଂରେଜ ରାଜତ୍ୱକାଳରେ କମିଶନର ଓ ଜଜ୍‌ମାନେ ଏଠାରେ କଚେରୀ କରୁଥିଲେ ।
ନୃପକେଶରୀ ୯୧୪ ମସିହାରେ ମହାନଦୀ ଓ କାଠଯୋଡ଼ିର ତ୍ରିକୋଣ ଭୂମି ଅଂଚଳରେ ଏ ନଗର ବସାଇ ଥିଲେ । ବନ୍ୟା ବ୍ୟୁପ୍ପାତରୁ ଏହି ସହରକୁ ରକ୍ଷା କରିବା ପାଇଁ ମର୍କତ କେଶରୀ ମହାନଦୀ ଏବଂ କାଠଯୋଡ଼ିରେ ପଥରବନ୍ଧ ନିର୍ମାଣ କରାଇଥିଲେ । ଅନଙ୍ଗଭୀମ ଦେବ କଟକର ବାରବାଟୀ ଠାରେ ନବତଳ ପ୍ରାସାଦ ନିର୍ମାଣ କରାଇ ରାଜଧାନୀ କରିଥିଲେ ।
(ପୂ.ଓ.ଭା. - ପୃ.୧୨୩୪, ଓ.ସାଂ.ଶ. ପୃ.- ୭୦, ପୌ.(ବ) ୧ମ ପୃ. ୨୭୯, ଶ.କ.ଦ୍ରୁ ୨ୟ - ପୃ.୮) ।

**କଟକାଇ**-*ଦେ.ବି.*- ଯୁଦ୍ଧଯାତ୍ରା କରିବା ନିମନ୍ତେ ଅନୁକୂଳ ସାମରିକ ଅଭିଯାନ ଶିବିର ଆୟୋଜନ ।
(ପୂ.ଓ.ଭା. - ପୃ. ୧୨୩୬, ଶ.ଅ. - ପୃ. ୧୨୮) ।

**କଟାସରା**-*ଦେ.ବି.*- ଏକ ପ୍ରକାର ମାଟି ପାତ୍ର । ଯେଉଁଥିରେ ପାଚିଲା କଦଳୀ, କଦଳୀ ଭଜା ପ୍ରଭୃତି ରଖାଯାଇ ଶ୍ରୀ ଜଗନ୍ନାଥଙ୍କ ନିକଟରେ ଲାଗି କରାଯାଏ ।
(ପୁ.ବୋ. - ପୃ. ୧୬୪) ।

**କଟୁଆଳ**-*ଦେ.ବି.*- ନଗର ରକ୍ଷକ, ରାଜକର୍ମଚାରୀ, ଜଗୁଆଳୀ । ଜାଗ୍ରତ ରହିଥିବା ଚେତନଶୀଳ ପ୍ରହରୀ, ନଗରରକ୍ଷୀ, ପ୍ରହରୀମାନଙ୍କର ଅଧ୍ୟକ୍ଷ । ଶ୍ରୀମନ୍ଦିରରେ ଶାନ୍ତିଶୃଙ୍ଖଳା ରକ୍ଷା ନିମନ୍ତେ ପହରା ଦେବା ପାଇଁ ଏବେ ମଧ୍ୟ ଏହି ସେବାୟତ ପରମ୍ପରା ପ୍ରଚଳିତ ।
(ପୂ.ଓ.ଭା. - ପୃ.୧୨୪୨, ଓ.ସାଂ.ଶ.- ପୃ.୭୦) ।

**କଟୁରିଆ ବ୍ରାହ୍ମଣ**-*ଦେ.ବି.*- ଠାକୁରଙ୍କର ନବକଳେବର ସମୟରେ ଦାରୁ କଟାଳି ବ୍ରାହ୍ମଣ ।
(ଶ୍ରୀ.ଶ. - ପୃ. ୪୧) ।

**କଟେଇତ**-*ଦେ.ବି.*- ଆଶ୍ୱିନମାସ ଅଷ୍ଟମୀ, ନବମୀ, ଦଶମୀ ତିନିପୂଜାରେ ବିମଳାଙ୍କ ପୀଠରେ ବଳି ପକାଇବା ସେବକ ।
(ଶ୍ରୀ.ସ୍ୱ.- ପୃ. ୯୮) ।

**କର୍ଡନ**-*ବୈ.(ଇଂ)ବି.*- ଶ୍ରୀଗୁଣ୍ଡିଚା ଯାତ୍ରା ସମୟରେ ଶ୍ରୀଜୀଉମାନେ ମନ୍ଦିର ବାହାରକୁ ବିଜେ କଲାବେଳେ ଧାଡ଼ି ପହଣ୍ଡିରେ ଆସିଥାନ୍ତି । ରଥଯାତ୍ରାକୁ ଶୃଙ୍ଖଳିତ କରିବା ପାଇଁ ଆରକ୍ଷୀମାନଙ୍କ ଦ୍ୱାରା ପହଣ୍ଡି ସମୟରେ କର୍ଡ଼ନ ଭିତରେ ଦଇତାପତି ଓ ନିର୍ଦ୍ଦିଷ୍ଟ ସଂଖ୍ୟକ ସେବକ ରହିଥାନ୍ତି । ନିଯୋଗମାନଙ୍କ ସଭାପତି, ସମ୍ପାଦକ, ସମ୍ପୃକ୍ତ ପାଳିଆ ସେବକ, ଘଣ୍ଟୁଆ, ଓଳାର, ଛତାର, ଚାମର ଓ କର୍ତ୍ତବ୍ୟରତ ଅଫିସର, କର୍ମଚାରୀ ଇତ୍ୟାଦି କର୍ଡନ ବାହାରେ ରହିପାରିବେ ।
(ର.ମ.ଶ୍ରୀ.ଦ.ସ୍ୱ.- ପୃ. ୨୧୮) ।

**କଡ଼ମ୍ବା**-*ଦେ.ବି.*- ଏକ ପ୍ରକାର ଭୋଗ ପ୍ରସାଦ । ଶ୍ରୀମନ୍ଦିର ଠାକୁରଙ୍କର ମକର ଚଉରାଶି ଭୋଗରେ ପୂଜା କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୭୫, ଶ୍ରୀ.ଶ. - ପୃ. ୪୧) ।

**କଡ଼ା**-*ଦେ.ବି.*- ଶ୍ରୀମନ୍ଦିରରେ ସକାଳ ଧୂପରେ ମହାସୁଆର ଆଣିଥିବା ଭୋଗସାମଗ୍ରୀ ପ୍ରତ୍ୟେକ ଥାଳିରେ ସିଂହାସନ ତଳେ ରଖିଦିଅନ୍ତି । କଡ଼ା ସୁଆର ତାହା ସବୁ ଥାଳିରୁ କାଢ଼ି ତଳେ ଥୁଅନ୍ତି । ଏହି କଡ଼ା ହୋଇଥିବା ପଦାର୍ଥକୁ 'କଡ଼ା' କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୯) ।

**କଡ଼ା ସୁଆର**-*ଦେ.ବି.*- ଶ୍ରୀମନ୍ଦିରର ପାଳିଆ ମହାସୁଆର କୋଠଭୋଗ ଜିନିଷ ସିଂହାସନ ତଳେ ରଖିବା ପରେ ତାହା ଥାଳିରୁ କାଢ଼ି ପନ୍ତିରେ ରଖୁଥିବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୯) ।

**କର୍ଣ୍ଣିକା**-*ଦେ.ବି.*- କର୍ଣ୍ଣଭୂଷଣ । କର୍ଣ୍ଣାଳଙ୍କାର, ପଦ୍ମ ମଧ୍ୟସ୍ଥ ବୀଜକୋଷ । ଅଙ୍ଗୁଳି ଆକାର ଅଂଶ । ଶବ୍ଦ ବ୍ରହ୍ମର ବାସସ୍ଥାନ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସ୍ୱର୍ଣ୍ଣ ଅଳଙ୍କାର ବିଶେଷ ।
(ଓ.ସାଂ.ଶ. - ପୃ.୭୬, ଶ.କ.ଦ୍ରୁ. ୨ୟ - ପୃ.୪୩, ପୂ.ଓ.ଭା. - ପୃ.୧୩୭୩) ।

**କଣ୍ଢେଇ**-*ଦେ.ବି.*- ଏକ ପ୍ରକାର ଭୋଗ ଦ୍ରବ୍ୟ । ଏହା ପହିଲି ଭୋଗରେ ଠାକୁରଙ୍କୁ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୪) ।

**କଣ୍ଢେଇ ନଲୁକା**-*ଗ୍ରା.ବି.*- ଶ୍ରୀମନ୍ଦିରର ଠାକୁରଙ୍କର ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ. - ପୃ.୪୩) ।

**କଣ୍ବୁ ଆଶ୍ରମ**-*ଦେ.ବି.*- ଶ୍ରୀକ୍ଷେତ୍ରର ଗୌଡ଼ବାଡ଼ ସାହିସ୍ଥ ଯମେଶ୍ୱରଙ୍କ ନିକଟରେ ଥିବା ଆଶ୍ରମ । ପୂର୍ବେ କଣ୍ବୁମୁନି କୌଣସି ସ୍ୱର୍ଗବେଶ୍ୟା ଦ୍ୱାରା ବିମୋହିତ ହୋଇ ଆଠଶହ ବର୍ଷ ତାଙ୍କ ସହିତ ଭୋଗରେ ଲିପ୍ତ ରହିବା ପରେ ଅନୁତପ୍ତ ହୋଇ ଶ୍ରୀକ୍ଷେତ୍ରକୁ ଆସି ଦାରୁରୂପୀ ଶ୍ରୀଜଗନ୍ନାଥଙ୍କର ଆରାଧନା ଓ ସ୍ତୁତି କରି ପରମଗତି ଲାଭ କରିଥିଲେ ।
(କ୍ଷେ.ସ.) ।

**କଦଳୀ**-*ଦେ.ବି.*- ରମ୍ଭାଗଛ ଓ ଫଳ, ମୃଗ ବା ମୃଗୀ ବିଶେଷ, ପତାକା, ହସ୍ତୀ ଉପରେ ବାହିତ ହେବା ନିଶାଣ । ସାଧାରଣ ଜୀବନରେ କଦଳୀର ମହତ୍ତ୍ୱ ଓ ବ୍ୟବହାର ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । କଞ୍ଚା କଦଳୀକୁ ତରକାରୀ କରି ଓ ପାଚିଲା କଦଳୀର ଚୋପା ଛଡ଼ାଇ ଦୁଗ୍ଧ ସହ ଚକଟି ଅମୃତକୁଣ୍ଡ ବା ସିରିଣି କରି ଖିଆଯାଏ । କଦଳୀ ମଞ୍ଜା ଓ ଭଣ୍ଡାରେ ମଧ ତରକାରୀ ପ୍ରସ୍ତୁତ ହୁଏ । କଦଳୀ ଗଛରୁ ମଧ୍ୟ କର୍ପୂର ତିଆରି ହୋଇ ଠାକୁରଙ୍କ ଆଳତିରେ ଲାଗି ହୁଏ । ଶ୍ରୀମନ୍ଦିରରେ ପ୍ରତିଦିନ ଗୋପଳବଲ୍ଲଭ ଭୋଗରେ କଦଳୀ ଲାଗି ହୋଇଥାଏ । କଞ୍ଚା କଦଳୀ ତରକାରୀ ହୋଇ ଅନ୍ନ ସହ ଭୋଗ ମଧ୍ୟ ହୋଇଥାଏ । କଦଳୀ ବାହୁଙ୍ଗାରେ ତୁଳସୀ, ପଦ୍ମ ଓ ବିଭିନ୍ନ ଫୁଲପତ୍ର ଗୁନ୍ଥା ହୋଇ ଶ୍ରୀବିଗ୍ରହଙ୍କଠାରେ ଲାଗି କରାଯାଏ । ମହାପ୍ରସାଦ ସେବନ ଲାଗି କଦଳୀପତ୍ର ମଧ୍ୟ ବ୍ୟବହୃତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭, କ୍ରୁ.ବି.ଓ.ଶ.ସ. ୧ମ - ପୃ. ୧୬୧, ପୂ.ଓ.ଭା. - ପୃ.୧୨୮୭, ପ୍ର.ଅ. - ପୃ. ୪୬୦, ଶ.କ.ଦ୍ରୁ ୨ୟ - ପୃ. ୧୮) ।

**କଦଳୀ ବଡ଼ା**-*ଦେ.ବି.*- ଏହା ଏକ ପ୍ରକାର କଦଳୀ ପ୍ରସ୍ତୁତ ଭୋଗ । ଏହା ଠାକୁରଙ୍କର ବଡ଼ସିଂହାର ଧୂପରେ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୨୩) ।

**କଦଳୀ ତଳିଆ**-*ଦେ.ବି.*-ଶ୍ରୀମନ୍ଦିରରେ ବିଭିନ୍ନ ଉତ୍ସବ ଓ ପର୍ବପର୍ବାଣିରେ କଞ୍ଚା କଦଳୀ ଚୋପା ଛଡ଼ାଯାଇ ଚାରିସୋରା କରି କାଟି ଶୁଦ୍ଧ ଘିଅରେ ଭଜାଯାଇ ଏହା ପ୍ରସ୍ତୁତ ହୋଇଥାଏ । ରାମଜନ୍ମ ଉତ୍ସବ ଓ ଦୀପାବଳି ଅମାବାସ୍ୟା ଭୋଗରେ ମଧ ଏହା ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୭୯/୧୯୧, ଶ୍ରୀ.ଶ. - ପୃ.୪୨) ।

**କନକଦୁର୍ଗାଓଳି**-*ଦେ.ବି.*- ଛୋଟ ମାଟି କୁଡୁଆ ଶ୍ରୀନଅରରେ କନକ ଦୁର୍ଗାଙ୍କ ଉଦ୍ଦେଶ୍ୟରେ ସମର୍ପିତ ଏକ ଓଳି ମହାପ୍ରସାଦ ।
(ପୁ.ବୋ. - ପୃ. ୧୬୪) ।

**କନକବେଦୀ**-*ସଂ.ବି.*- ପବିତ୍ରମଣ୍ଡପ । ଯେଉଁଠାରେ ବିଭିନ୍ନ ଶୁଭକାର୍ଯ୍ୟ ଅନୁଷ୍ଠିତ ହୋଇଥାଏ । ସୁବର୍ଣ୍ଣ ବେଦୀ । ଲକ୍ଷ୍ମୀ ନାରାୟଣଙ୍କର ବିବାହ ବେଦୀ । ଓଡ଼ିଆ ଘରର

ବରକନ୍ୟାଙ୍କୁ ଏହିଭଳି ଯେଉଁ ବେଦୀରେ ବସାଇ ବିବାହ କରାଯାଏ । ମାଣବସା ବେଦୀକୁ ମଧ୍ୟ ଓଡ଼ିଆ ଘରେ କନକବେଦୀ କୁହନ୍ତି ।
(ଓ.ସାଂ.ଶ. - ପୃ. ୭୧) ।

**କନକ ମୁଣ୍ଡେଇ**-*ଗ୍ରା.ବି.*- କନକମଣ୍ଡପ । କନକମୁଣ୍ଡି ଗମ୍ଭୀରା ଭିତରେ ବିଗ୍ରହମାନଙ୍କ ଉପରେ ନିର୍ମିତ କାଠର ମଣ୍ଡପ ।
(ପୂ.ଓ.ଭା. - ପୃ.୧୨୯୬) ।

**କନକଲାଗି ବେଶ**-*ଦେ.ବି.*- ପୌଷ ପୂର୍ଣ୍ଣିମା ଦିନ ଲକ୍ଷ୍ମୀ ଜଗମୋହନ ଖଟ ଉପରେ ବିଜେ ହୋଇ ସୁନା ଅଳଙ୍କାର ସହ କର୍ପୂର ମାଳ ଓ ଫୁଲମାଳ ଦ୍ୱାରା ହେଉଥିବା ସୁଶୋଭିତ ବେଶ ।
(ଶ୍ରୀ.ସ୍ୱ. - ପୃ. ୧୦୫) ।

**କନ୍ଦର୍ପ ଚୋରି**-*ଦେ.ବି.*- ଦଅଣାଚୋରିକୁ ଶ୍ରୀ ମନ୍ଦିରରେ କନ୍ଦର୍ପଚୋରି ବୋଲି ମଧ୍ୟ କୁହାଯାଇଥାଏ ।
(ଶ୍ରୀ.ଶ. - ପୃ.୪୨) ।

**କନ୍ଦମୂଳ**-*ସଂ.ବି.*- ମିଷ୍ଟ ଖାଦ୍ୟ ମୂଳ ବିଶେଷ । ଏହା ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପରେ ବ୍ୟଞ୍ଜନରେ ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ. ୧୩୧୮) ।

**କନାଟେରା**-*ଦେ.ବି.*- ସକାଳଧୂପ ସରିଗଲେ ପତ୍ରିସେବକ ପତ୍ରଦୀପାଳିରେ ବଳିତା ଦେଇ ଦୀପଦିଏ । ଗରାବଡୁ ଘସା ଜଳ ଦେଲେ ପାଳିଆ ମହାସୁଆର ପନ୍ତିରେ ଲଗାନ୍ତି । ମହାସୁଆର କେବଳ ପନ୍ତି ଛୁଇଁପାରିବେ । ପୂଜା ବଢ଼ିଲେ ପତ୍ରି ତିନିଗୋଟି ଦର୍ପଣ ବାହୁଡ଼େଇ ଆଣନ୍ତି । ସେତେବେଳେ ଧୂପଦୀପ ଦିଆଯାଏ । ଅହ୍ଲଣିଆ ପାଣି ପଡ଼ିବାଠାରୁ କନାଟେରା ପଡ଼ିଥାଏ । ପୂଜା ବଢ଼ି ଦୀପ ଦେଲା ପରେ ପଢ଼ିହାରୀ ଭିତର ଦ୍ୱାର ବନ୍ଦ କରେ । ଏହାକୁ ଟେରାପଡ଼ିବା କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୧୯) ।

**କନ୍ୟାସ୍ତମ୍ଭ**-*ସଂ.ବି.*- ଦେଉଳ ବା ମଣ୍ଡପ ପ୍ରଭୃତିରେ ସ୍ତ୍ରୀ, ମୂର୍ତ୍ତି ନିର୍ମିତ କାଠ ବା ପ୍ରସ୍ତରର ସ୍ତମ୍ଭ । ଏହା ଅତ୍ୟନ୍ତ ଶୁଭସୂଚକ ସ୍ତମ୍ଭ ।
(ଓ.ସାଂ.ଶ. - ପୃ. ୭୧) ।

**କପାଳମୋଚନ**-*ସଂ.ବି.*- ହିନ୍ଦୁମାନଙ୍କର ତୀର୍ଥସ୍ଥାନ ବିଶେଷ । ପୁରାଣବର୍ଣ୍ଣିତ ଅନୁସାରେ ଶିବ ବ୍ରହ୍ମ ହତ୍ୟା କରିଥିବା ଯୋଗୁ ତାଙ୍କ ହସ୍ତରେ ଲାଗିଥିବା ବ୍ରହ୍ମ ମୁଣ୍ଡ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପରେ ହସ୍ତରୁ ଖସି ପଡ଼ିଥିଲା ଶ୍ରୀମନ୍ଦିର ବେଢ଼ା କପାଳମୋଚନ ମନ୍ଦିର ପରିସରରେ । ଏହା ଭିତର ବେଢ଼ା ବଟବୃକ୍ଷ ନିକଟସ୍ଥ ପଞ୍ଚମହାଦେବଙ୍କ ମଧ୍ୟରୁ ଅନ୍ୟତମ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪୧, ପୂ.ଓ.ଭା. - ପୃ.୧୩୧୦, ଓ.ସାଂ.ଶ. - ପୃ. ୭୩) ।

**କପିଧ୍ୱଜ**-*ସଂ.ବି.*- ଯେଉଁ ଧ୍ୱଜରେ ହନୁମାନଙ୍କ ଚିହ୍ନ ଥାଏ । ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ରଥର ପତାକା । ବର୍ତ୍ତମାନ ସୁଭଦ୍ରାଙ୍କ ରଥ ଦେବଦଳନରେ କପିଧ୍ୱଜ ଶୋଭା ପାଉଛି ।
(ଶ.କ.ଦ୍ରୁ. - ପୃ.୨୪, ପୂ.ଓ.ଭା. - ପୃ.୧୩୧୨, ଓ.ସାଂ.ଶ. - ପୃ.୭୨, ପ୍ର.ଅ. ୧ମ - ପୃ. ୪୬୬, ପୌ (ବ) ୧ମ - ପୃ.୨୮୬) ।

**କପିଳେନ୍ଦ୍ର ଦେବ**-*ଦେ.ବି.*- ଓଡ଼ିଶାର ସୂର୍ଯ୍ୟବଂଶୀୟ ଜନୈକ କ୍ଷତ୍ରିୟ ରାଜା (ଖ୍ରୀ.୧୪୩୫-୧୪୬୫) ଗଙ୍ଗବଂଶର ଶେଷ ରାଜା । ନିଶଙ୍କ ଭାନୁଦେବ ଅପୁତ୍ରିକ ଥିବାରୁ ସେ ଏକ ବ୍ରାହ୍ମଣ ଘରେ ପାଳିତ କ୍ଷତ୍ରିୟ ବାଳକ କପିଳେନ୍ଦ୍ରଙ୍କୁ ଶ୍ରୀଜଗନ୍ନାଥ ମନ୍ଦିରରେ ଦେଖି ଓ ତାଙ୍କଠାରେ କେତେକ ରାଜଲକ୍ଷଣ ଲକ୍ଷ୍ୟ କରି ତାଙ୍କୁ ସଙ୍ଗରେ ନେଇ କପିଳେନ୍ଦ୍ର ସାମନ୍ତରାୟ ନାମ ଦେଇ ମନ୍ତ୍ରୀ କଲେ ଓ ମରିବା ପୂର୍ବରୁ ତାଙ୍କର ଉତ୍ତରାଧିକାରୀ ରୂପେ ମନୋନୀତ କଲେ । ରାଜାଙ୍କ ମୃତ୍ୟୁ ପରେ କପିଳେନ୍ଦ୍ରଦେବ ରାଜା ହେଲେ । ସେ ଅତ୍ୟନ୍ତ ବୀର, ସାହସୀ, ଯୁଦ୍ଧପ୍ରିୟ ଓ ରାଷ୍ଟ୍ରନୀତିରେ ବିଚକ୍ଷଣ ଥିଲେ । ଏହାଙ୍କ ରାଜତ୍ୱ କାଳରୁ ଗୋଟିଏ ସ୍ୱତନ୍ତ୍ର ଅବ୍ଦ(କପିଳେନ୍ଦ୍ରାବ୍ଦ) ଆରମ୍ଭ ହୋଇ ଏ ପର୍ଯ୍ୟନ୍ତଚାଲିଛି । ଯୁଦ୍ଧରେ ବିଜୟଲାଭ କରି ରାଜ୍ୟକୁ ଫେରିଆସିବା ସମୟରେ କପିଳେନ୍ଦ୍ର

ଦେବ କୃଷ୍ଣା ନଦୀ ତୀରରେ ଦେହ ତ୍ୟାଗ କରିଥିଲେ । ସେ ପୁରୀ ଶ୍ରୀମନ୍ଦିରର ମେଘନାଦ ପାଚେରୀ ନିର୍ମାଣ କରିଥିଲେ । ସେ ଦାକ୍ଷିଣାତ୍ୟ ଅଧିକାର କରି ଯେଉଁ ଶଗଡ଼ ଶଗଡ଼ ସ୍ୱର୍ଣ୍ଣଅଳଙ୍କାର ଆଣିଥିଲେ ସେଥିରେ ଶ୍ରୀଜଗନ୍ନାଥଙ୍କର ଏକଶହ ଅଠତିରିଶି ପ୍ରକାରର ସ୍ୱର୍ଣ୍ଣ ଅଳଙ୍କାର ନିର୍ମିତ ହୋଇଥିଲା ।
(ପୂ.ଓ.ଭା. - ପୃ.୧୩୧୫) ।

**କର୍ପୂର**-*ସଂ.ବି.*- ଶ୍ରୀମହାପ୍ରଭୁଙ୍କର ଧୂପ ପରେ ବିଡ଼ିଆ ମଣୋହି ହୁଏ । ଖିଲିପାନରେ ଅଳେଇଚ, ଲବଙ୍ଗ, ଶୁଖିଲା ଗୁଆ ସହ କର୍ପୂର ଓ ଯାଇପତ୍ରି ଦେଇ ପାନ ଖିଲ ପ୍ରସ୍ତୁତ କରାଯାଏ । ବିଡ଼ିଆ ମଣୋହି ପରେ ଭୀମସେନ କର୍ପୂରରେ ଆଳତି ହୁଏ । ପ୍ରତ୍ୟେକ ଅବକାଶ ଆଳତିରେ, ଅଧର ପୋଛା ବା ଶ୍ରୀମୁଖ ପୋଛା ପାଇଁ ପ୍ରସ୍ତୁତ ଜଳରେ କର୍ପୂର ବ୍ୟବହୃତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**କର୍ପୂରଆଳତି**-*ଦେ.ବି.*- କର୍ପୂର ଜାଳି କରାଯାଉଥିବା ଆଳତି । ଏହି କର୍ପୂର ଜାପାନ, ଚୀନ ଓ ଫର୍ମୋଜା ଦ୍ୱୀପର ଚିର ଶ୍ୟାମଳ ବୃକ୍ଷର ଶୁକ୍ଳବର୍ଣ୍ଣ ଶୁଷ୍କରସ । ଏହି ଗଛର କାଠକୁ ନିଆଁରେ ସିଝାଇ ସାଧାରଣତଃ କର୍ପୂର ପ୍ରସ୍ତୁତ କରାଯାଏ । ବାଷ୍ପୀକୃତ ଓ ଶୋଧିତ କର୍ପୂର ଶ୍ରୀକର୍ପୂର ନାମରେ ପରିଚିତ । ଶ୍ରୀମନ୍ଦିରରେ ଦୈନିକ ଦ୍ୱାରଫିଟା ମଙ୍ଗଳ ଆଳତି ଲାଗି ମନ୍ଦିର କାର୍ଯ୍ୟାଳୟ ତରଫରୁ ଭୀମସେନ କର୍ପୂର ଯୋଗାଇ ଦିଆଯାଇଥାଏ । ଏହି ଭୀମସେନ କର୍ପୂର ବୋର୍ଣ୍ଣିଓ ଓ ସୁମାତ୍ରା ଦ୍ୱୀପର ଏକ ପ୍ରକାର ବୃକ୍ଷର କାଣ୍ଡରେ ସଞ୍ଚିତ ରସରୁ ପ୍ରସ୍ତୁତ ହୋଇଥାଏ । ପ୍ରତିଦିନ ଧୂପ ଶେଷରେ କର୍ପୂର ଆଳତି ହୁଏ ।
(ଶ୍ରୀ.ସ୍ୱ. ୧ମ - ପୃ. ୧୨, ପୂ.ଓ.ଭା. - ପୃ.୧୩୧୬) ।

**କପୋତେଶ୍ୱର**-*ଦେ.ବି.*- ଶିବ, ମହାଦେବ । କପୋତେଶ୍ୱର ମନ୍ଦିର ପୁରୀ ନଗରର ଦଶ କିଲୋମିଟର ଦୂରରେ ଭାର୍ଗବୀ ନଦୀ କୂଳରେ ଅବସ୍ଥିତ । ଶ୍ରୀ ଚୈତନ୍ୟ ମହାପ୍ରଭୁ ପୁରୁଷୋତ୍ତମ ଯାତ୍ରା କରିବା ସମୟରେ ଏଠାକୁ ଆସିଥିଲେ । ଏଠାରେ ଧୂର୍ଜଟୀ କଠୋର ତପସ୍ୟା କରି କପୋତ ସଦୃଶ କ୍ଷୀଣକାୟ ହୋଇଯାଇଥିବାରୁ ଏହାଙ୍କର ଏହିପରି ନାମକରଣ ହୋଇଛି ।
(ପୂ.ଓ.ଭା. - ପୃ.୧୩୧୮) ।

**କବାଟପକା ସେବକ**-*ଦେ.ବି.*- ବାହୁଡ଼ାଯାତ୍ରା ଶେଷରେ ବିଗ୍ରହମାନଙ୍କର ନୀଳାଦ୍ରି ବିଜେ ଦିନ ମା' ଲକ୍ଷ୍ମୀଙ୍କ ପକ୍ଷରୁ ଶ୍ରୀଜଗନ୍ନାଥଙ୍କୁ ଦ୍ୱାର ପକାଯାଉଥିବା ସେବାକୁ 'କବାଟପକା' କୁହାଯାଏ । ଏହି କାର୍ଯ୍ୟରେ ନିୟୋଜିତ ସେବକକୁ କବାଟପକା ସେବକ କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୪୨) ।

**କବୀର**-*ଦେ.ବି.*- ସାମ୍ୟ ମୈତ୍ରୀ ଧର୍ମର ଚତୁର୍ଦ୍ଦଶ ଶତାବ୍ଦୀର ପ୍ରଚାରକ । ରାମାନନ୍ଦଙ୍କର ଜଣେ ପ୍ରଧାନ ଶିଷ୍ୟ ଓ ଧର୍ମ ପ୍ରଚାରକ । ସେ ପ୍ରଥମେ ମୁସଲମାନ ଥିଲେ; ପରେ ସକଳ ଧର୍ମର ମୂଳ ଏକ, ଭଗବାନ ସର୍ବତ୍ର ବିଦ୍ୟମାନ, ଏହି ଦୃଢ଼ ବିଶ୍ୱାସ ତାହାଙ୍କ ମନରେ ଜନ୍ମିଲା ଓ ଏହା ହିଁ ତାଙ୍କ ପ୍ରଚାରିତ ଧର୍ମର ମୂଳମନ୍ତ୍ର ହେଲା । ହିନ୍ଦୁ ଓ ମୁସଲମାନ ତାଙ୍କୁ ସମଭାବରେ ଆଦର କରୁଥିଲେ ଏବଂ ତାଙ୍କ ମୃତ୍ୟୁ ପରେ ଉଭୟ ସଂପ୍ରଦାୟ ମିଶି ତାଙ୍କ ଶବର ଯଥାବିଧି ସତ୍କାର କରିଥିଲେ । କବୀର ମଠ ଅଦ୍ୟାପି ଶ୍ରୀକ୍ଷେତ୍ରରେ ବିଦ୍ୟମାନ । ଯାତ୍ରୀମାନେ ଏହି ମଠରୁ ତୋରାଣୀ ଟିକିଏ ପିଇ ନିଜକୁ ଧନ୍ୟ ମନେ କରିଥାଆନ୍ତି ।
(ପୂ.ଓ.ଭା. - ପୃ. ୧୩୨୭) ।

**କମ**-*ଦେ.ବି.*- କାରୁକାର୍ଯ୍ୟ, ସୂକ୍ଷ୍ମକାରିଗରୀ, ସୂକ୍ଷ୍ମଶିଳ୍ପ, ଅଳଙ୍କାର, ବାଦ୍ୟବିଶେଷ । ଶ୍ରୀମନ୍ଦିରରେ ସୁନାରୂପାଦି ଧାତୁକାମ କରୁଥିବା ସେବକଙ୍କୁ ରତ୍ନକମ ବିନ୍ଧାଣି ବୋଲି କୁହାଯାଏ ।
(ଓ.ସାଂ.ଶ. - ପୃ.୭୩, ପୂ.ଓ.ଭା. - ପୃ.୧୩୨୯, ଶ.କ.ଦ୍ରୁ. ୨ୟ - ପୃ. ୪୬) ।

**କମର ଝୁମ୍ପା**-*ଦେ.ବି.*- ଶ୍ରୀମନ୍ଦିର ଠାକୁରଙ୍କର କଟିଦେଶରଏକ ପ୍ରକାର ସୁନା ଅଳଙ୍କାର ।
(ଶ୍ରୀ.ଶ. - ପୃ.୪୪) ।

**କମଳପୁର**-*ଦେ.ବି.*- ଜଗନ୍ନାଥ ସଡ଼କ ପାର୍ଶ୍ୱସ୍ଥ ପୁରୀଠାରୁ ବାର କିଲୋମିଟର ଦୂରରେ ଥିବା ଏକ ପ୍ରାଚୀନ ଗ୍ରାମ । ଏହିଠାରୁ ଶ୍ରୀଜଗନ୍ନାଥଙ୍କର ପତିତପାବନ ବାନା ଦେଖାଯାଏ ।
(ଓ.ସାଂ.ଶ. - ପୃ. ୭୪) ।

**କମଳା**-*ଦେ.ବି.*- ହରିପ୍ରିୟା, ଶ୍ରେଷ୍ଠ । ସ୍ତ୍ରୀ, ଲକ୍ଷ୍ମୀ । ଶ୍ରୀମନ୍ଦିର ବେଢ଼ାରେ ପୂଜା ପାଉଥିବା ମହାଲକ୍ଷ୍ମୀ ।
(ଓ.ସାଂ.ଶ. - ପୃ.୭୪, ପୂ.ଓ.ଭା. - ପୃ.୧୩୩୩, କ୍ର.ବି.ଓ.ଶ. - ପୃ.୧୬୮, ଶ.କ.ଦ୍ରୁ. ୨ୟ - ପୃ.୨୮, ପୌ(ବ) ୧ମ - ପୃ.୨୯୧ ।

**କମଳା ବିଳାସ**-*ସଂ.ବି.*- ଶୋଭନୀୟ ଅଟ୍ଟାଳିକା । ମା ଲକ୍ଷ୍ମୀଙ୍କୁ ନେଇ ଯେ ବିଳାସ କରନ୍ତି ସେ ସ୍ୱୟଂ ବିଷ୍ଣୁ, ଶ୍ରୀଜଗନ୍ନାଥ ।
(ଓ.ସାଂ.ଶ. ପୃ ୭୪, କ୍ର.ବି.ଓ.ଶ. - ପୃ.୧୬୮) ।

**କମାରକଣା**-*ଦେ.ବି.*- ଶ୍ରୀମନ୍ଦିରରେ ସମସ୍ତ କଣ୍ଟାଖିଲ ଓ ଲୁହା ଦ୍ରବ୍ୟ ଯୋଗାଇବା ସେବକ । ଆଶ୍ୱିନମାସ ଷୋଳପୂଜା ସମୟ ଅଷ୍ଟମୀ ତିଥିରେ କାକୁଡ଼ିଖାଇଙ୍କ ନିକଟରେ ବଳି ଦେଉଥିବା ସେବକ ।
(କ୍ଷେ.ସ.) ।

**କର୍ମକାଣ୍ଡ**-*ସଂ.ବି.*- ବେଦର ଅଂଶ ବିଶେଷ । ଜୈମିନୀଙ୍କ ପୂର୍ବମୀମାଂସା ବା ଦର୍ଶନ ଶାସ୍ତ୍ରର ଗ୍ରନ୍ଥ । ବେଦର ଯେଉଁ ଅଂଶରେ ଯଜ୍ଞାଦିର ବ୍ୟବସ୍ଥା ଅଛି । ସଦାଚାର, ହିନ୍ଦୁଶାସ୍ତ୍ର ଓ ବେଦୋକ୍ତ ଧର୍ମ କର୍ମାନୁଷ୍ଠାନ ଓ ନିତ୍ୟ ନୈମିତ୍ତିକ କ୍ରିୟା କଳାପ ।
(ଓ.ସାଂ.ଶ. - ପୃ.୭୭, ପୂ.ଓ.ଭା. - ପୃ.୧୩୭୯, ପ୍ର.ଅ. ୧ମ - ପୃ.୪୮୨, ଶ.କ.ଦ୍ରୁ.୨ୟ - ପୃ.୪୬) ।

**କର୍ମଯୋଗ**-*ସଂ.ବି.*- ଭଗବତ୍ ଗୀତାର ତୃତୀୟ ଅଧ୍ୟାୟରେ ଭଗବାନ ଅର୍ଜୁନଙ୍କୁ କର୍ମଯୋଗ ସମ୍ବନ୍ଧରେ ଉପଦେଶ ପ୍ରଦାନ କରିଛନ୍ତି । ତାହାର ମର୍ମ ହେଲା ମନୁଷ୍ୟ ସଂସାରରେ କର୍ମ ନ କଲେ ଶରୀରଯାତ୍ରା ନିର୍ବାହ କରି ନ ପାରେ । ମୁକ୍ତସଙ୍ଗ, ନିଷ୍କାମ ଓ ଅଫଳାକାଙ୍କ୍ଷୀ ହୋଇ ସମସ୍ତ କର୍ମକୁ ଭଗବାନଙ୍କଠାରେ ଅର୍ପଣ କରି କର୍ତ୍ତବ୍ୟ ସାଧନ ଓ ଲୋକଶିକ୍ଷାର୍ଥ କର୍ମ କରିବା ତଥା ଇନ୍ଦ୍ରିୟମାନଙ୍କୁ ସଂଯତ କରି କାମ କ୍ରୋଧାଦି ରିପୁମାନଙ୍କୁ ଦମନ କରିବା ଏକାନ୍ତ ଦରକାର । କର୍ମ ଦ୍ୱିବିଧ-୧- ସକାମ, ୨- ନିଷ୍କାମ । ନିଷ୍କାମ କର୍ମ ଆତ୍ମଜ୍ଞାନର କାରଣ ଓ ସକାମ କର୍ମ ବିଷୟଭୋଗର କାରଣ । ସଂସାରରେ ପ୍ରତ୍ୟେକ ଲୋକଙ୍କୁ ପ୍ରଥମେ କାମନାଯୁକ୍ତ ହୋଇ ଦେବଦେବୀଙ୍କର ଅର୍ଚ୍ଚନା କରିବାକୁ ପଡ଼େ । ଏହିପରି କର୍ମ ଯୋଗରେ ଚିତ୍ତ ଶୁଦ୍ଧି ହେଲେ ଆଉ କାମନା ରହେ ନାହିଁ । ତାହାପରେ ମାନବ ଆତ୍ମଜ୍ଞାନର ସାଧକ ନିଷ୍କାମ କର୍ମ ଯୋଗରେ ପ୍ରବୃତ୍ତ ହୁଏ ଏବଂ କ୍ରମେ ସେହି ପଥରେ ଜ୍ଞାନଲାଭ କରି ବ୍ରହ୍ମ ବା ଶ୍ରୀଜଗନ୍ନାଥଙ୍କୁ ସାକ୍ଷାତ କରିପାରେ ।
(ଶ.କ.ଦ୍ରୁ. ୨ୟ - ପୃ.୪୭, ଓ.ସାଂ.ଶ. - ପୃ.୭୭, ପୂ.ଓ.ଭା - ପୃ.୧୩୮୩) ।

**କର୍ମସାକ୍ଷୀ**-*ସଂ.ବି.*- ଯେଉଁମାନେ ମନୁଷ୍ୟର ପାପ ଓ ପୁଣ୍ୟ କର୍ମମାନ ଦେଖିଥାନ୍ତି । ସୂର୍ଯ୍ୟ, ଚନ୍ଦ୍ର, ଯମ, କାଳ, ଅଗ୍ନି ପଞ୍ଚ ମହାଭୂତ ଏମାନେ ଶାସ୍ତ୍ର ଅନୁସାରେ କର୍ମସାକ୍ଷୀ ରୂପରେ କଳ୍ପିତ ।
(ପୂ.ଓ.ଭା. - ପୃ.୧୩୮୪, ଶ.କ.ଦ୍ରୁ. ୨ୟ - ପୃ.୫୪, ପା.କୋ. - ପୃ.୨୧୦) ।

**କର୍ମାଙ୍ଗୀ**-*ଦେ.ବି.*- ଏହା ମାଦଳା ପାଞ୍ଜିର ଏକ ଅଂଶ । ଏଥିରେ ଶ୍ରୀମନ୍ଦିରର ସେବକମାନଙ୍କ କାର୍ଯ୍ୟ ଓ ଦାୟିତ୍ୱ ଲିପିବଦ୍ଧ ହୋଇଥାଏ । ଏହା ଗଜପତି ରାଜା ରାମଚନ୍ଦ୍ରଦେବ(ଦ୍ୱିତୀୟ)ଙ୍କ ନିର୍ଦ୍ଦେଶରେ ପାଞ୍ଜିଲେଖା ଆରମ୍ଭ ହୋଇଥିଲା ।
(ପୁ.ବୋ. - ପୃ.୧୬୫) ।

**କରପଲ୍ଲବ**-*ଦେ.ବି.*- ଅଙ୍ଗୁଳି, ହାତଅଙ୍ଗୁଳି ବା ପାପୁଲିରେ ଥିବା ପାଞ୍ଚଅଙ୍ଗୁଳି । ପଣସପତ୍ର ଓ ଫୁଲ ଦ୍ୱାରା ପ୍ରସ୍ତୁତ ପାଞ୍ଚ ଆଙ୍ଗୁଳି ପାଇଁ ପାଞ୍ଚଟି ଫୁଲ ଝୁମ୍ପା ସହିତ ଶ୍ରୀହସ୍ତର ପୁଷ୍ପଭୂଷଣ । ଶ୍ରୀଜଗନ୍ନାଥଙ୍କ ହାତ ଆଗରେ ଦିଆଯିବା

ଚେପଟା ଓ ଗୋଲ ପତ୍ରାକାରରେ ଗ୍ରଥିତ ପୁଷ୍ପମଣ୍ଡଳ ।
(ପ୍ର.ଅ. ୧ମ - ପୃ.୪୭୩, ପୂ.ଓ.ଭା. - ପୃ. ୧୩୫୩) ।

**କରତାଳ**-*ବି*.- କାଠ ବା କଂସା ନିର୍ମିତ ଏକ ପ୍ରକାର ବାଦ୍ୟଯନ୍ତ୍ର । ସଂକୀର୍ତ୍ତନ ସମୟରେ ମୃଦଙ୍ଗ ସହ କରତାଳର ଏକାନ୍ତ ଆବଶ୍ୟକତା ଅନୁଭୂତ ହୁଏ । ଦୁଇହାତ ସାହାଯ୍ୟରେ ତାଳି ମାରିବା ।

**କରପଇଁ**-*ଦେ.ବି*.- କେତେକ ବିଶେଷ ନୀତିରେ ତଳିଛ ଓ ପ୍ରଧାନୀ ହାତରେ ହାତରଖି ବାଟ କଢ଼ାଇ ନେବା ବା କାର୍ଯ୍ୟରେ ଆଗେଇ ଯିବାକୁ କରପଇଁ କହନ୍ତି ।
(ପୁ.ବୋ. - ପୃ.୧୬୫) ।

**କରଢ଼ିଆ ମାଳ**-*ଦେ.ବି*.- ଶ୍ରୀଜୀଉଙ୍କ ଶ୍ରୀପୟର ପର୍ଯ୍ୟନ୍ତ ଲମ୍ବାଇ ଦିଆଯାଇଥିବା ଏକ ମୋଟା ଲମ୍ବ ଫୁଲମାଳ ।
(କ୍ଷେ.ସ.) ।

**କରତିଆ ସେବକ**-*ଦେ.ବି*.- ଯେଉଁମାନେ ରଥ ନିର୍ମାଣବେଳେ କାଠ ଚିରନ୍ତି ବା କାଠ କାମକରନ୍ତି ।
(ଶ୍ରୀ.ସ୍ୱ. - ପୃ.୧୦) ।

**କରଣ**-*ଦେ.ବି*.- ଲେଖକ, ମୋହରିର, କିରାଣୀ, ରାଜା ଓ ଦେବତାଙ୍କ ହିସାବ ଲେଖିବା କର୍ମଚାରୀ ଏକ ସେବକବିଶେଷ । ଦେଉଳକରଣ, ତଢ଼ାଉକରଣ ବ୍ୟତୀତ ଶ୍ରୀମନ୍ଦିରରେ ଅନ୍ୟାନ୍ୟ ବହୁ ଶ୍ରେଣୀର କରଣସେବକ ଠାକୁରଙ୍କ ସେବାରେ ଅଛନ୍ତି । ଏମାନେ ହିସାବ ରଖନ୍ତି ଓ ଖେଇ ବଣ୍ଟନ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୦୦, ପୂ.ଓ.ଭା. - ପୃ.୧୩୪୭, ଶ.ତ.ବୋ.ଅ. - ପୃ.୨୫୯) ।
(ପୂ.ଓ.ଭା. - ପୃ.୧୩୫୧) ।

**କରବାଡ଼**- ବଡ଼ଗ୍ରାମ ନିକଟସ୍ଥ କ୍ଷୁଦ୍ର ଗ୍ରାମ । ରାଜାଙ୍କ ପ୍ରତିଷ୍ଠିତ ଗ୍ରାମକୁ ଶାସନ ଓ ଅନ୍ୟମାନେ (ଯଥା- ରାଣୀ, ମନ୍ତ୍ରୀ ପ୍ରଭୃତି) ବସାଇଥିବା ଗ୍ରାମକୁ ପୁରୀ ଜିଲ୍ଲାରେ କରବାଡ଼ କହନ୍ତି । କରବାଡ଼ର ପ୍ରତିଷ୍ଠା ଶାସନରୁ ଊଣା । ଅନଙ୍ଗଭୀମଦେବଙ୍କ ସମୟରେ ବିଧିବଦ୍ଧ ଭାବେ ଷୋଳ ଶାସନ ଓ ବତିଶ କରବାଡ଼ ସୃଷ୍ଟି ହୋଇଥିଲା । ଶାସନମାନଙ୍କରେ କେବଳ ବ୍ରାହ୍ମଣ ସମ୍ପ୍ରଦାୟ ବାସ କରୁଥିବା ସ୍ଥଳେ କରବାଡ଼ରେ ବ୍ରାହ୍ମଣ ସହିତ ଅନ୍ୟ ଜାତିର ଲୋକମାନେ ବାସ କରୁଥିଲେ । ଶାସନର ବ୍ରାହ୍ମଣମାନେ ନିଷ୍କର ସମ୍ପତ୍ତି ଭୋଗ କରୁଥିବା ବେଳେ, କରବାଡ଼ର ବ୍ରାହ୍ମଣମାନେ ସମ୍ପତ୍ତିର କର ଦେଉଥିଲେ ।
(ପୂ.ଓ.ଭା. - ପୃ. ୧୩୫୪, ଶ୍ରୀ.ଜି. - ୧୦୯) ।

**କରାଳ**-*ଦେ.ବି*.- ଭୟଙ୍କର, ଭୀଷଣ, ଭୟାନକ । ରାବଣର ଅନୁଚର, ଝୁଣା, ତୈଳବିଶେଷ, ଗର୍ଜନ ତୈଳ । ପଥର ବା କାଚ ଆଦି ଯୋଡ଼ିବା ପାଇଁ ଝୁଣାରେ ତିଆରି ଏକ ପ୍ରକାର ଅଠା । ଚୁଆ, ସର୍ବରସ ତୈଳ, ମର୍ଦ୍ଦନ ତୈଳ, ଶ୍ରୀମନ୍ଦିରରେ ଅଣସର ସମୟରେ ବିଗ୍ରହମାନଙ୍କ ନିକଟରେ ଲାଗି ହୋଇଥାଏ ।
(ଶ.କ.ଦ୍ରୁ. ୨ୟ - ପୃ.୩୩, କ୍ର.ବି.ଓ.ଶ. - ପୃ. ୧୭୨, ପୂ.ଓ.ଭା - ପୃ.୧୩୬୦, ପ୍ର.ଅ.- ପୃ.୪୭୫) ।

**କରାଳ ଲାଗି**-*ଦେ.ବି*.- ଶ୍ରୀଜୀଉଙ୍କ ଶରୀରରେ ଲେପନ ଯାଉଥିବା ଚନ୍ଦନ ସହିତ ଏକ ପ୍ରକାର ଦ୍ରବ୍ୟର ମିଶ୍ରଣ ।
(କ୍ଷେ.ସ.) ।

**କରିଆ**-*ଦେ.ବି*.- ଛୋଟ ଗାମୁଛା, ଛୋଟ ଲୁଗା, ଛୋଟ ଖଦୀ, କମ୍ ଓସାର, କମ୍ ଲମ୍ବା ଅତି ପତଳା ଲୁଗା । ପତଳା ଝିନବସ୍ତ୍ର । ବିଭିନ୍ନ ପୂଜାରେ ଏହା ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ.୧୩୬୧, କ୍ର.ବି.ଓ.ଶ. ୧ମ- ପୃ. ୧୭୩, ପ୍ର.ଅ. ୧ମ- ପୃ.୪୭୫) ।

**କଳସ(ଶ)**-*ସଂ.ବି*.- ଜଳପାତ୍ର, ମାଠିଆ, କୁମ୍ଭ । ଦେଉଳର ଗମ୍ବୁଜ ଉପରେ ସ୍ଥାପିତ କୁମ୍ଭ । ମାଙ୍ଗଳିକ କାର୍ଯ୍ୟରେ ସର୍ବ ପ୍ରଥମେ ସ୍ଥାପିତ ହୋଇ ପୂଜା ହେବା ପୂର୍ଣ୍ଣକୁମ୍ଭ । ସୁନା ରୂପାରେ ତିଆରି ଜଳପାତ୍ର ବିଶେଷ । ସମସ୍ତ ମନ୍ଦିର ତଥା ପ୍ରତ୍ୟେକ ପୂଜାରେ କଳସ ସ୍ଥାପନ ଏକାନ୍ତ

ପ୍ରୟୋଜନ । ଶ୍ରୀମନ୍ଦିରର ପ୍ରତ୍ୟେକ ପୂଜାର ପ୍ରାରମ୍ଭରେ ମଧ୍ୟ କଳସ ସ୍ଥାପନର ବିଧି ରହିଛି । (ପ୍ର.ଅ. ୧ମ - ପୃ.୪୬୮, ପୂ.ଓ.ଭା. - ପୃ.୧୩୯୭, ଶ୍ରୀ.ସ୍ୱ. ୨ୟ - ପୃ.୮୯) ।

**କଲ୍‌କି**-ଦେ.ବି.- ବିଷ୍ଣୁ ବା ଶ୍ରୀଜଗନ୍ନାଥଙ୍କର ପୁରାଣ ସମର୍ଥିତ ସମ୍ଭାବ୍ୟ ଦଶମ ବା ଶେଷ ଅବତାର । ଏହି ଅବତାରରେ ସ୍ୱୟଂ ଭଗବାନ ଘୋଡ଼ାରେ ଚଢ଼ି ବାରହାତ ଖଣ୍ଡା ଦ୍ୱାରା ଦୁଷ୍ଟମାନଙ୍କୁ ସଂହାର କରିବେ ଓ ପୃଥିବୀକୁ ପାପ ଭାରରୁ ରକ୍ଷା କରିବେ ବୋଲି ଲୋକ ବିଶ୍ୱାସ କରନ୍ତି । (ପୂ.ଓ.ଭା. - ପୃ.୧୩୮୮-୮୯, କ୍ରୃ.ବି.ଓ.ଶ.- ପୃ.୧୭୬, ଓ.ସାଂ.ଶ.- ପୃ. ୭୮, ଶ.କ.ଦ୍ରୁ. ୨ୟ - ପୃ.୬୩, ପା.କୋ. - ପୃ.୨୧୩) ।

**କଳା**-ସଂ.ବି.- ଚନ୍ଦ୍ରଙ୍କର ଷୋଳ କଳା, ସୂର୍ଯ୍ୟଙ୍କର ବାର କଳା, ଅଗ୍ନିମଣ୍ଡଳର ଦଶ କଳା, ବାତ୍ସାୟନଙ୍କର ଚଉଷଠି କଳା । ସନ୍ଥ ସାହିତ୍ୟରେ କେବଳ ଈଶ୍ୱର ବା ଅବତାରମାନଙ୍କୁ କଳାର ଅନ୍ତର୍ଭୁକ୍ତ କରାଯାଇଛି । ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ଶ୍ରୀଜଗନ୍ନାଥ ହେଉଛନ୍ତି ଷୋଳ କଳାର ପ୍ରତୀକ । (ପୂ.ଓ.ଭା. - ପୃ. ୧୩୯୮) ।

**କଳାକନାଟି**-ଦେ.ବି.- ଶ୍ରୀମନ୍ଦିରରେ ପ୍ରତିଦିନ ବଡ଼ସିଂହାର, ପହୁଡ଼ ଆଳତି ସମୟରେ ଦ୍ୱାର ପାଖେ ଠିଆ ହେଉଥିବା ଛତାର ସେବକ । ପହୁଡ଼ ଆଳତି ପରେ ବିଜେ ସମୟରେ ଶୟନ ଠାକୁରଙ୍କ ସହ ଡମ୍ବରୁକୁ ବିଜେ କରନ୍ତି, ଆଳତି ସରିଲେ ଭିତରକୁ ବିଜେ କଲା ପରେ ଛତି ଭଣ୍ଡାର ଦ୍ୱାରେ ରଖନ୍ତି । ବିଗ୍ରହ ବିଜେ ସମୟରେ ଧଳା, କଳା ଛତି ଓ ଓଲାର ଧରି ଯାଆନ୍ତି । ପଟୁଆରକୁ ଶୃଙ୍ଖଳିତ କରନ୍ତି ଓ ଚକ୍ରଦିହୁଡ଼ି ଓ କନା ଆବଶ୍ୟକ ପ୍ରମାଣେ ଯୋଗାଇଥାନ୍ତି । (ଶ୍ରୀ.ସ୍ୱ. - ପୃ. ୧୪, ଶ୍ରୀ.ଜି. - ପୃ. ୧୫୫) ।

**କଳାଖଦି**-ଦେ.ବି.- ଏକ ପ୍ରକାର କଳା ରଙ୍ଗର ଖଦି ଯାହାକି ଠାକୁରଙ୍କୁ ଶ୍ରୀମନ୍ଦିରରେ କୁମାରପୂର୍ଣ୍ଣିମା ଦିନ ଲାଗି ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୪୬) ।

**କଳାଘୋଡ଼**-ଦେ.ବି.- ମାଘ ଅମାବାସ୍ୟାଠାରୁ ବସନ୍ତ ପଞ୍ଚମୀ ମଧ୍ୟରେ ଶନିବାରରେ ବା ବୁଧବାରରେ କଳାଘୋଡ଼ରେ ପଦ୍ମବେଶ ହୁଏ । ଏହାର ସମସ୍ତ ଉପକରଣ ବଡଛତା ମଠ ଯୋଗାଇଥାନ୍ତି । ଏହି ବେଶ ରାତ୍ର ଚନ୍ଦନ ଲାଗି ପରେ ବଡ଼ସିଂହାର ସମୟରେ ହୋଇଥାଏ ଏବଂ ଠାକୁର ଏହି ବେଶରେ ପହୁଡ଼ ହୁଅନ୍ତି । ମଠ ତରଫରୁ ଖିରି ଓ ଅମାଲୁ ଭୋଗ ମଧ୍ୟ ହୋଇଥାଏ । ଏହି ବେଶ ପ୍ରାୟ ୩୦୦ ବର୍ଷରୁ ପ୍ରଚଳିତ ଅଛି । ଶୀତଦିନେ ପଦ୍ମଫୁଲ ଅଭାବରୁ ସୋଲ ତିଆରି ପଦ୍ମଫୁଲରେ ମହାପ୍ରଭୁଙ୍କର ଏହି ବେଶ ହୋଇଥାଏ । ୨୦୧୧ ମସିହାରୁ ଚିନ୍ତାମଣି ଦାଶ ନାମକ ଜନୈକ ସଂସ୍କୃତ ଶିକ୍ଷକ ସ୍ୱଚେଷ୍ଟାରେ ପ୍ରାୟ ପାଞ୍ଚହଜାରରୁ ଅଧିକ ସଦ୍ୟ ବିକଶିତ ପଦ୍ମଫୁଲ ମହାପ୍ରଭୁଙ୍କର ପଦ୍ମବେଶ ପାଇଁ ଯୋଗାଇ ଦେଉଛନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ.୧୦୮) ।

**କଳାପାହାଡ**-ଦେ.ବି.- ବଙ୍ଗ ସୁଲତାନଙ୍କ ସେନାପତି । ଜନ୍ମତଃ ହିନ୍ଦୁ ବ୍ରାହ୍ମଣ । ସେ ତତ୍‌କାଳୀନ ବଙ୍ଗ ନବାବଙ୍କ କନ୍ୟାର ପ୍ରେମରେ ପଡ଼ି ମୁସଲମାନ ଧର୍ମରେ ଦୀକ୍ଷିତ ହେଲେ । ତାପରେ ହିନ୍ଦୁ ଧର୍ମର ଦେବଦେବୀଙ୍କ ଅବମାନନା କରିବା ଓ ମନ୍ଦିର ଭାଙ୍ଗିବା ତାଙ୍କ ଜୀବନର ବ୍ରତ ହେଲା । ବଙ୍ଗ ନବାବ ସୁଲେମାନ କରନାନୀ ଉତ୍କଳରେ ଅନ୍ତର୍ବିବାଦର ସୁଯୋଗ ନେଇ ଉତ୍କଳ ଅଧିକାର କରିବା ସକାଶେ ଏହାଙ୍କୁ ପଠାଇଲେ । ପ୍ରଥମେ ସେ ୧୫୬୮ ଖ୍ରୀଷ୍ଟାବ୍ଦରେ ଯାଜପୁର ଅବରୋଧ କରି ତାକୁ ଅଧିକାର କଲେ । ସେଠାରୁ କଟକ ଆସି ବାରବାଟୀ ଦୁର୍ଗ ଅବରୋଧ କଲେ । ଏହା ପରେ ଓଡ଼ିଶା ବିଜୟ ସଂପୂର୍ଣ୍ଣ କରିବା ନିମନ୍ତେ ଭୁବନେଶ୍ୱର ଓ ପୁରୀ ଆକ୍ରମଣ କଲେ । ଭୁବନେଶ୍ୱରରେ ବହୁ ମନ୍ଦିର ଓ ପ୍ରତିମୂର୍ତ୍ତି ଭାଙ୍ଗି ଧ୍ୱଂସ କଲେ । ପୁରୀର ପଣ୍ଡାମାନେ ଏହାଙ୍କ ଅମାନୁଷିକ ଅତ୍ୟାଚାରର ସମ୍ବାଦ ପାଇ ଶ୍ରୀଜଗନ୍ନାଥଙ୍କୁ ଚିଲିକା ମଧ୍ୟସ୍ଥ

ପାରିକୁଦରେ ଲୁଚାଇ ରଖିଥିଲେ । କଳାପାହାଡ଼ ପୁରୀରେ ବହୁବିଧ ଅତ୍ୟାଚାର କରିସାରି ଜଗନ୍ନାଥଙ୍କ ଅନ୍ୱେଷଣରେ ଗଲେ । ସେ କୌଣସିମତେ ଶ୍ରୀ ବିଗ୍ରହକୁ ପାଇ ମହା ଉଲ୍ଲାସରେ ତାହାଙ୍କୁ ନେଇ ଗଙ୍ଗାକୂଳରେ ଜ୍ୱଳନ୍ତ ଚିତାରେ ନିକ୍ଷେପ କଲେ । କଥିତ ଅଛି, ବିଶର ମହାନ୍ତି ଶ୍ରୀଜଗନ୍ନାଥ ଠାକୁରମାନଙ୍କର ବ୍ରହ୍ମଙ୍କୁ ମୃଦଙ୍ଗ ଖୋଳ ମଧ୍ୟରେ ଭରି ଲୁଚାଇ ଆଣିଥିଲେ । କଳାପାହାଡ଼ କୋଣାର୍କ ଯାତ୍ରା କରି ଦେବଦେବୀଙ୍କୁ ଭାଙ୍ଗି ଚୁରମାର କରିଥିଲେ । କିନ୍ତୁ ରାମଚଣ୍ଡୀ ମନ୍ଦିରରେ ଦେବୀ ତାଙ୍କୁ ମନ୍ଦିର ଜଗାଇ ଛଦ୍ମବେଶରେ ଚାଲିଯାଇଥିଲେ । ମୁକୁନ୍ଦଦେବ ୧୫୬୮ରେ ଗୋହିରା ଟିକିରୀ ଯୁଦ୍ଧରେ ମୃତ୍ୟୁବରଣ କରିଥିଲେ । କଳାପାହାଡ଼ ବାରବାଟୀ ଦୁର୍ଗରେ ପ୍ରବେଶ କରନ୍ତେ ମୁକୁନ୍ଦଦେବଙ୍କ ରାଣୀ ପ୍ରଥମେ ଉତ୍କୋଚ ପ୍ରଦାନ କରିଥିଲେ ଓ ପରେ ସେ ଆତ୍ମହତ୍ୟା କଲେ । କେବଳ ସେତିକି ନୁହେଁ, ସେ ବଙ୍ଗର ମଧ୍ୟ ଅନେକ ହିନ୍ଦୁ ମନ୍ଦିର ଲୁଣ୍ଠନ କରିବା ସଙ୍ଗେ ସଙ୍ଗେ ମନ୍ଦିର ଗୁଡ଼ିକ ଧ୍ୱସ୍ତ ବିଧସ୍ତ କରିଥିଲେ ।
(ପୂ.ଓ.ଭା. - ପୃ. ୧୨୧୨, ୧୪୦୪) ।

**କଳାବେଠିଆ**-*ଦେ.ବି.*- ଶ୍ରୀ ଜଗନ୍ନାଥଙ୍କ ରଥ ଟାଣିବା ନିମନ୍ତେ ପୁରୀରେ ବହୁ କାଳରୁ ରହିଆସୁଥିବା ଶବର ଜାତିର ସେବକ । ଏମାନେ କୃଷ୍ଣବର୍ଣ୍ଣ ଓ ଅନାବୃତ ଦେହରେ ରଥ ଟାଣିବା ବେଳେ ଏମାନଙ୍କର କଳାପିଠି ଦେଖାଯାଉଥିବାରୁ କେହି କେହି ଏମାନଙ୍କୁ କଳାପିଠିଆ ବା କଳାବେଠିଆ ବୋଲି କହିଥାନ୍ତି । ରଥଯାତ୍ରା ସମୟରେ ରଥ ଟଣାରେ ଲୋକ ଅଭାବ ହେଲେ ଏମାନେ ଆସି କାମ କରିଥାନ୍ତି ଓ ବେଠି ଖଟିଥାଆନ୍ତି ।
(ଶ୍ରୀ.ସ୍ୱ. - ପୃ. ୭୦, ପୂ.ଓ.ଭା. - ପୃ.୧୪୦୬) ।

**କଳାଭୂଇଁ**-*ଗ୍ରା.ବି.*- ଶ୍ରୀଜଗନ୍ନାଥଙ୍କ ଶ୍ରୀମୁଖର କୃଷ୍ଣବର୍ଣ୍ଣରଞ୍ଜିତ ଅଂଶ ।
(ଶ୍ରୀ.ଶ. - ପୃ.୪୩) ।

**କଳାହାଟ ଦ୍ୱାର**-*ଦେ.ବି.*- ଶ୍ରୀଜଗନ୍ନାଥ ମନ୍ଦିର ଗର୍ଭଗୃହକୁ ପ୍ରବେଶଦ୍ୱାର । ଛାମୁଦ୍ୱାର । ବଡ଼ଦ୍ୱାର ବା କଳାହାଟ ଦ୍ୱାର । ଶ୍ରୀମନ୍ଦିର ଓ ଜଗମୋହନ ମଧ୍ୟବର୍ତ୍ତୀସ୍ଥାନ ।
(ଓ.ସାଂ.ଶ. - ପୃ. ୭୮/୭୯) ।

**କଳିଙ୍ଗ**-*ସଂ.ବି.*- ପ୍ରାଚୀନ କଳିଙ୍ଗ ବିସ୍ତୃତ ଥିଲା ବୈତରଣୀ ନଦୀଠାରୁ ଦକ୍ଷିଣକୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ । ଉତ୍କଳ କଳିଙ୍ଗ ରାଜ୍ୟ ଅନ୍ତର୍ଗତ ଥିବା ଓ କଳିଙ୍ଗ ରାଜାଙ୍କର ଅନେକ ହାତୀ ଥିବା ମହାଭାରତରୁ ଜଣାପଡ଼େ । ପୁରାଣମାନଙ୍କରେ ଅଙ୍ଗ, ବଙ୍ଗ ଓ କଳିଙ୍ଗ ଏକା ସାଙ୍ଗରେ ବର୍ଣ୍ଣିତ ହୋଇଛି । ଅନୁମାନ କରାଯାଏ ଯେ ଏ ରାଜ୍ୟମାନ ପରସ୍ପର ଲଗାଲଗି ଥିଲା । ପୁରାଣାନୁସାରେ କଳିଙ୍ଗ ରାଜ୍ୟରେ ବୈତରଣୀ ନଦୀ ଥିବାର ଦେଖାଯାଏ । ଖାରବେଳଙ୍କ ଶିଳାଲିପିରୁ କଳିଙ୍ଗ ଗଙ୍ଗାର ଦକ୍ଷିଣରେ ଥିବା ଅନୁମିତ । କେହି କେହି କହନ୍ତି ଆଧୁନିକ ଓଡ଼ିଶାର ଉପକୂଳବର୍ତ୍ତୀ ପୁରୀ, କଟକ ଓ ବାଲେଶ୍ୱର ପ୍ରାଚୀନ କାଳରେ କଳିଙ୍ଗ ନାମରେ ଅଭିହିତ ହେଉଥିଲା । ଯଯାତିଙ୍କ ଶାସନପତ୍ରରୁ ଜଣାଯାଏ ଯେ କଳିଙ୍ଗ ରାଜ୍ୟ ଉତ୍କଳ, କଙ୍ଗୋଦ ଓ କଳିଙ୍ଗ ଏହି ତିନୋଟି ରାଜ୍ୟ ଘେନି ଗଢ଼ା ଯାଇଥିଲା ଓ ଏହାକୁ ତ୍ରିକଳିଙ୍ଗ କୁହାଯାଉଥିଲା । ଯଯାତିଙ୍କ ପୂର୍ବ ପୁରୁଷମାନଙ୍କ ଉପାଧି ତ୍ରିକଳିଙ୍ଗାଧିପତି ଥିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଓ ତୃତୀୟ ଶତାବ୍ଦୀଠାରୁ କଳିଙ୍ଗବାସୀମାନେ ପାରସ୍ୟ, ଚୀନ, ତିବ୍ବତ, ବ୍ରହ୍ମ, ଆସାମ, ଶ୍ୟାମ, ଜାଭା, ବାର୍ଲି, ଇଣ୍ଡୋନେସିଆରେ ବସତି ସ୍ଥାପନ କରି ସେଠାରେ କଳିଙ୍ଗସ୍ଥାପତ୍ୟ ଓ ଶିଳ୍ପବିସ୍ତାର କରିଥିବାର ପ୍ରମାଣ ସେ ସ୍ଥାନର ଭଗ୍ନାବଶେଷ ପ୍ରସ୍ତର ଖୋଦିତ ମୂର୍ତ୍ତି ଓ ମନ୍ଦିରମାନଙ୍କରୁ ବର୍ତ୍ତମାନ ମିଳୁଅଛି । ଗୋଦାବରୀ ନଦୀର ଉପତ୍ତିସ୍ଥଳ ଅଞ୍ଚଳରେ ମଧ୍ୟ କଳିଙ୍ଗ ଶିଳ୍ପର ଭଗ୍ନାବଶେଷ ଦେଖାଯାଏ । ରାମାୟଣ ମହାଭାରତର ଘଟଣାମାନ ଶିବ, ବ୍ରହ୍ମା, ଦୁର୍ଗା ଓ ଗଣେଶଙ୍କ ମୂର୍ତ୍ତିମାନ କଳିଙ୍ଗ

ଶିଳ୍ପ ପ୍ରସ୍ତୁତ ପ୍ରାଚୀନ ମନ୍ଦିରମାନଙ୍କର ଭଗ୍ନାବଶେଷରେ ଦେଖାଯାଏ । ଯେଉଁ ସମୟରେ ଭୁବନେଶ୍ୱର, କୋଣାର୍କ ମନ୍ଦିର ତିଆରି ହୋଇଥିଲା ସେହି ସମୟରେ ଜାଭା, ବାର୍ଲି ଆଦି ଦ୍ୱୀପରେ କଳିଙ୍ଗ ଶିଳ୍ପମାନ ଖୋଦିତ ହୋଇଥିବାର ଅନୁମିତ ହୁଏ । ହୁଏନ୍‌ସାଂଙ୍କ ମତରେ, କଳିଙ୍ଗ ଗଞ୍ଜାମଠାରୁ ୨୦୦ ବା ୩୦୦ ମାଇଲ ଦୂରରେ ଅବସ୍ଥିତ । ଶ୍ରୀକାକୋଲ ବା ଚିକାକୋଲ କଳିଙ୍ଗର ରାଜଧାନୀ ଥିଲା । ହରିବଂଶରୁ ଜଣାଯାଏ ଯେ କଳିଙ୍ଗ ତାମ୍ରଲିପ୍ତ ନିକଟରେ ଥିଲା ।
(ପୂ.ଓ.ଭା. - ପୃ. ୧୪୧୦) ।

**କଳିଅନ୍ଧଣା**-*ଦେ.ବି.*- ଷୋଳହାତିଆ ଲମ୍ୱ ବସ୍ତ୍ର ବିଶେଷ । ଶ୍ରୀଜଗନ୍ନାଥଙ୍କୁ ସିଂହାସନରେ ଦୃଢ଼ ଭାବରେ ଆସୀନ ବା ଉପବିଷ୍ଟ କରିବା ଲାଗି ବ୍ୟବହୃତ କରାଯାଏ ।
(ପୁ.ବୋ. - ପୃ.୧୬୬) ।

**କଳିଯୁଗ ଭେଣ୍ଟା**-*ଦେ.ବି.*- ଶ୍ରୀମନ୍ଦିରର ଦକ୍ଷିଣପଟରେ ଥିବା ପାର୍ଶ୍ୱଦେବତା ବରାହ ମୂର୍ତ୍ତି । ଏହାଙ୍କ ବାମକହୁଣୀ ଉପରେ ଭୂଦେବୀ ଓ ଦକ୍ଷିଣପାଦ ନିକଟରେ ଶ୍ରୀଦେବୀ ରହିଛନ୍ତି । ଜନସାଧାରଣଙ୍କ ବୁଝିବା ନିମନ୍ତେ ସେ ସ୍ତ୍ରୀଙ୍କୁ କାନ୍ଧରେ ବସାଇ ମା'ଙ୍କୁ ଚଲାଇ ଚଲାଇ ନେଉଛନ୍ତି । କଳିଯୁଗରେ ମଣିଷର ଅଧୋଗତିର ଏକ ପ୍ରତୀକ ରୂପରେ ଆବିର୍ଭୂତ ହୋଇଛନ୍ତି ।
(ଓ.ସାଂ.ଶ. - ପୃ. ୭୯) ।

**କଳୁଷ ନାଶନ**-*ସଂ.ବିଶ.*- ପାପ ନାଶକାରୀ; ପରମେଶ୍ୱର । ଶ୍ରୀଜଗନ୍ନାଥ କଳୁଷନାଶନ ନାମରେ ପରିଚିତ ।
(ଓ.ସାଂ.ଶ. - ପୃ. ୭୯, ପୂ.ଓ.ଭା. - ପୃ.୧୪୪) ।

**କଳ୍ପତରୁ/ବଟ/ଦ୍ରୁମ** -*ଦେ.ବି.*- ଅଭୀଷ୍ଟ ଫଳପ୍ରଦ ସ୍ୱର୍ଗୀୟ ବୃକ୍ଷ । ଦେବଲୋକର ବୃକ୍ଷ ବିଶେଷ । ଅତିଶୟ ଦାତା । ଶ୍ରୀଜଗନ୍ନାଥଙ୍କର ମୂଳରୂପ, କଳ୍ପାନ୍ତ ସ୍ଥାୟୀ, କଳ୍ପବୃକ୍ଷ । ପୁରାଣାନୁସାରେ ମହାପ୍ରଳୟ କାଳରେ ଜଗତ ଧ୍ୱଂସ ହେଲେ ମଧ୍ୟ କେବଳ କଳ୍ପତରୁ ବଂଚିରୁହେ । ଏହା ଗୋଟିଏ କଳ୍ପର ଶେଷ ପର୍ଯ୍ୟନ୍ତ ରହୁଥାଏ । ମାନସିକ କରି ଏହାରି ମୂଳରେ ଗୋଡ଼ିଟିଏ ବାନ୍ଧିଦେଲେ ମନସ୍କାମନା ପୂର୍ଣ୍ଣ ହୋଇଥାଏ ବୋଲି ଲୋକମାନଙ୍କର ବିଶ୍ୱାସ ଅଛି । ଶ୍ରୀମନ୍ଦିର ଭିତର ବେଢ଼ାରେ କଳ୍ପବଟ ଅବସ୍ଥିତ । ଭିତର ସେବାୟତ ନିଯୋଗ ସେବକମାନେ ଦୈନିକ ଏହି କଳ୍ପବଟର ସେବା କରିଥାନ୍ତି । ବୃକ୍ଷ ପରିକ୍ରମା ଓ ଦର୍ଶନ କଲେ ପୁଣ୍ୟ ଲାଭ ହୋଇଥାଏ ।
(ଓ.ସାଂ.ଶ. - ପୃ. ୮୦, ପ୍ର.ଅ. - ପୃ.୪୦/୪୧, ପୂ.ଓ.ଭା. - ପୃ.୧୪୧୭, କ୍ର.ବି.ଓ.ଶ. - ପୃ.୧୮୦, ଶ.କ.ଦ୍ରୁ. ୨ୟ - ପୃ.୬୬) ।

**କଳ୍ପବଟଠାକୁର**-*ଦେ.ବି.*- ଶ୍ରୀମନ୍ଦିରସ୍ଥ କଳ୍ପବଟକୁ କେନ୍ଦ୍ରକରି ଯେଉଁ ବଟଦେବତା ବିରାଜମାନ କରିଛନ୍ତି ସେମାନେ ହେଲେ- ବଟେଶ୍ୱର ମହାଦେବ, ବଟକୃଷ୍ଣ, ବଟବାଳମୁକୁନ୍ଦ, ବଟମାଧବ, ବଟଗଣେଶ, ବଟନାରାୟଣ, ବଟମାର୍କଣ୍ଡେୟ ଓ ବଟମଙ୍ଗଳା । ଶ୍ରୀଜଗନ୍ନାଥଙ୍କ ଦର୍ଶନ ପୂର୍ବରୁ ଏମାନଙ୍କୁ ଦର୍ଶନ କରାଯାଏ ।
(କ୍ଷେ.ସ.) ।

**କଂସପାହାରି**-*ଦେ.ବି.*- ଶ୍ରୀମନ୍ଦିର ଜୟବିଜୟ ଦ୍ୱାର ଅତିକ୍ରମ କରି ଭିତରକୁ ଗଲେ ପ୍ରଥମେ ଯେଉଁ ସ୍ଥାନ ପଡ଼େ, ସେହି ସ୍ଥାନକୁ କଂସପାହାରୀ କୁହାଯାଏ । ଜନ୍ମାଷ୍ଟମୀ ତିଥିରେ ଏହି ସ୍ଥାନରେ କୃଷ୍ଣ ଜନ୍ମ ନୀତି ଅନୁଷ୍ଠିତ ହୋଇଥାଏ । ପୁରାଣ ବର୍ଣ୍ଣନା ଅନୁସାରେ ଏହି ସ୍ଥାନକୁ କଂସର ବନ୍ଦୀଶାଳା ଭାବେ ଗ୍ରହଣ କରାଯାଇଅଛି ଏବଂ ବନ୍ଦୀଶାଳା ପ୍ରହରୀ ଭାବେ ମନ୍ଦିର କାନ୍ଥର ଦୁଇ ପାର୍ଶ୍ୱରେ ବିରାଟକାୟ ଦୁଇଟି ଦାନବର ଚିତ୍ର ରହିଛି । ଏହାକୁ କଂସ ପ୍ରହରୀ ବା ପାହାରୀ ବୋଲି କୁହାଯାଏ ।
(ଶ୍ରୀ.ଜି. - ପୃ. ୨୯) ।

**କଂସବଧ**-*ଦେ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ ଶୁକ୍ଳ ଦଶମୀ ଦିନ ଅପରାହ୍ନରେ କୃଷ୍ଣଲୀଳା ଲବଣିଖିଆ ମହାଭୋଇ ଘର ସେବକ

ସଂପ୍ରଦାୟ ଲୀଳା କରନ୍ତି । କୁଣ୍ଢେଇବେଣ୍ଟ ସାହିରେ ଥିବା ଲବଣିଖିଆ ଠାକୁରଙ୍କ ବିଜେ ପ୍ରତିମାକୁ ଆଣି ଅର୍ଘ୍ୟ ବନ୍ଦାପନା କରି ସର, ଲବଣୀ ପ୍ରଭୃତି ଭୋଗ ଲଗାନ୍ତି । ତା'ପରେ ବିଜେ ପ୍ରତିମାକୁ ଶ୍ରୀଜଗନ୍ନାଥଙ୍କ ସମ୍ମୁଖ ମହାଖଳାଠାରେ ବିଜେ କରାଇବା ପରେ ସେଠାରେ ମଲ୍ଲଯୁଦ୍ଧ, କୁବୁଜାବେଶ ହେବାପରେ ଶୀତଳ ଭୋଗ ହୁଏ । ମଣୋହି ପରେ ମଥୁରାହାଟ, ତା ପରେ ବିମାନ ଆସି ସିଂହଦ୍ୱାର ଲକ୍ଷି ଉଦର ଆଗେ ଏକ କାଠ ସିଂହାସନ ପରେ ବିଜେ ହୁଅନ୍ତି । ଏଠାରେ କୁବଳୟା ଗଜ ପ୍ରସ୍ତାବ ଓ କଂସବଧ ଲୀଳା ଏବଂ ଶେଷରେ ଉଗ୍ରସେନଙ୍କ ମୁଣ୍ଡରେ ଶାଢ଼ି ବନ୍ଧାଯାଏ । ଶୀତଳ ଭୋଗ ଓ ବନ୍ଦାପନା ପରେ ବାହୁଡ଼ା ବିଜେ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୫) ।

**କଂସାଳ**-*ଦେ.ବି.*- କଂସାରେ ତିଆରି ହୋଇଥିବା ଝାଞ୍ଜ । ସଂକୀର୍ତ୍ତନରେ କଂସାଳ ଏକାନ୍ତ ଆବଶ୍ୟକ ହୁଏ । ଶ୍ରୀମନ୍ଦିର ପରିସରରେ ଏହା ବିଶେଷତଃ ବ୍ୟବହୃତ ହୋଇଥାଏ ।
(ଓ.ସାଂ.ଶ. - ପୃ. ୯୭) ।

**କସ୍ତୁରୀ**-*ସଂ.ବି.*- ମୃଗର ନାଭିଜାତ ସୁଗନ୍ଧିତ ଦ୍ରବ୍ୟ । ମୃଗନାଭି, ମୃଗମଦ, ମୃଗୀ, ବାତାମୋଦ, ଯୋଜନଗନ୍ଧିକା, କସ୍ତୁରିକା, କାଳାଙ୍ଗୀ, ଗନ୍ଧପିଶାଚିକା, ସୁରଭୀ । କସ୍ତୁରୀ ତିନି ପ୍ରକାର ଯଥା- କପିଳା, ପିଙ୍ଗଳା ଏବଂ କୃଷ୍ଣା । ଏହି କସ୍ତୁରୀ ନେପାଳ, କାଶ୍ମୀର ଏବଂ କାମରୂପରେ ମିଳିଥାଏ । କାମରୂପରେ ଉଦ୍‌ଭବ କସ୍ତୁରୀ କୃଷ୍ଣବର୍ଣ୍ଣ ଓ ଶ୍ରେଷ୍ଠ, ନେପାଳର ନୀଳରଙ୍ଗ ଓ ମଧ୍ୟମ ଏବଂ କାଶ୍ମୀରରେ କପିଳରଙ୍ଗ ଅଧମ ପ୍ରକାର କସ୍ତୁରୀ ମିଳିଥାଏ । ଯେଉଁ କସ୍ତୁରୀ ନିଜ ଗନ୍ଧରେ କେତକୀଫୁଲର ସୁଗନ୍ଧକୁ ନଷ୍ଟ କରେ ଏବଂ ନିଆଁରେ ପୋଡ଼ିଲେ ଚମଡ଼ାପୋଡ଼ାର ଗନ୍ଧ ବାହାରେ ତାହା ଉତ୍କୃଷ୍ଟ କସ୍ତୁରୀ ବୋଲି ଜଣାଯାଏ । ଶ୍ରୀମନ୍ଦିରରେ ଏହା ପ୍ରତ୍ୟେକ ସପ୍ତାହର ବୁଧବାରରେ କିମ୍ବା ଗୁରୁବାରଦିନ ଦ୍ୱିପ୍ରହର ଧୂପ ପରେ, ବନକଲାଗିରେ ବ୍ୟବହାର କରାଯାଏ । ଏତଦ୍‌ବ୍ୟତୀତ ଅଣସର ସମୟ ଓ ନବକଳେବର ବେଳେ ମଧ୍ୟ କସ୍ତୁରୀ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୫, ଶ.କ.ଦ୍ରୁ. - ପୃ.୭୧, ପୂ.ଓ.ଭା. - ପୃ. ୧୪୩୪) ।

**କାକଭୂଷଣ୍ଡି**-*ଦେ.ବି.*- କାକ ରୂପ ଧାରଣ କରିଥିବା ଋଷି ବିଶେଷ । ଭୂଷଣ୍ଡ ଋଷି କାକ ରୂପ ଧାରଣ କରି ବିଷ୍ଣୁଙ୍କ ଉଚ୍ଛିଷ୍ଟ ଖାଇ ଚତୁର୍ଭୁଜ ଧାରଣ କରି ଅମର ମଧ୍ୟ ହୋଇଥିଲେ । ଶ୍ରୀଜଗନ୍ନାଥ ମନ୍ଦିର ବେଢ଼ାରେ ବିମଳାଙ୍କ ସମ୍ମୁଖରେ ଏ ରୂପ ଧାରଣ କରିଥିବା ଏକ କାକ ମୂର୍ତ୍ତି ରହିଅଛି । ରୋହିଣୀକୁଣ୍ଡ ମହାତ୍ମ୍ୟରେ ଏ ସମ୍ପର୍କରେ ସ୍କନ୍ଦ ପୁରାଣରେ ଉତ୍କଳଖଣ୍ଡରେ ବିସ୍ତୃତ ବର୍ଣ୍ଣନା ରହିଛି । ସତ୍ୟଯୁଗରେ ଏକ ତୃଷାର୍ତ୍ତ କାକ ଏହି କୁଣ୍ଡରେ ଥିବା ଜଳ ମଧ୍ୟରେ ବୁଡ଼ି ମୋକ୍ଷ ଲାଭ ପୂର୍ବକ ଚତୁର୍ଭୁଜ ହୋଇଥିଲେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩୯, ଓ.ସାଂ.ଶ. - ପୃ. ୮୨, ପୂ.ଓ.ଭା. - ପୃ.୧୪୪୯) ।

**କାକଡୁଆଝିଲି**-*ଗ୍ରା.ବି.*- ବିରି ଓ ଘିଅରେ ପ୍ରସ୍ତୁତ ଏକ ପ୍ରକାର ପିଠା । ଶ୍ରୀମନ୍ଦିରରେ ଏହା ଭୋଗରେ ଲାଗି ହୋଇଥାଏ ।
(ଉ.ଇ.ଅ.ଅ. - ପୃ. ୩୨୩, ପୁ.ବୋ. - ପୃ.୧୬୬) ।

**କାକରା**-*ଦେ.ବି.*- ଶ୍ରୀମନ୍ଦିରରେ ତୈଳାକ୍ତ କରି ମଶାଲ ଜାଳିବା ନିମନ୍ତେ ପ୍ରସ୍ତୁତ ଗୋଲାକାର କନା ବଳିତାବିଣ୍ଡା । ଗୁଡ଼ ପାଗରେ ଚାଉଳ ଚୂନା ବା ଅଟା ପକାଇ ଖଳି କରି ସେହି ଖଳିରୁ ଚଟକା ଚଟକା ଗୋଲ କରି ସେଗୁଡ଼ିକୁ ଘିଅରେ ଛାଣିଦେଲେ କାକରା ପିଠା ହୁଏ । ଏହା ଶ୍ରୀମନ୍ଦିରରେ ଠାକୁରଙ୍କର ନୀତିକାନ୍ତି, ଧୂପ ଅନ୍ୟାନ୍ୟ ଭୋଗ ଇତ୍ୟାଦିରେ ଲାଗି ହୋଇଥାଏ । - ଏହି କାକରା ସଦୃଶ ଏକ ସ୍ୱର୍ଣ୍ଣ ଅଳଙ୍କାର ଉପଲବ୍ଧ ଯାହାକୁ ସ୍ତ୍ରୀମାନେ କେଶ ଉପରେ କପାଳରେ ବା ତାଳୁରେ ପିନ୍ଧନ୍ତି ।
(ଶ୍ରୀ.ସ୍ୱ. - ୨ୟ - ପୃ. ୧୮୬, ପୂ.ଓ.ଭା. - ପୃ. ୧୪୪୯, ପ୍ର.ଅ. - ପୃ.୪୯୮, ଉ.ଇ.ଅ.ଅ.- ପୃ. ୩୨୩) ।

**କାକେରୀ**-*ଗ୍ରା.ବି.*- ସାନ କାକରା । ଏହା ମଧ୍ୟ ଏକ ପିଷ୍ଟକ ବିଶେଷ । ଏହା ଠାକୁରଙ୍କ ପହିଲି ଭୋଗରେ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୪) ।

**କାଖିଆ ପିଠିଆ** -*ଦେ.ବି.*- ଛୋଟ ଠାକୁର । ଓଜନ ଖୁବ୍ କମ୍ ଯାହାକୁ ଅତି ସହଜରେ କୋଳରେ କାଖ କରି ସାଥୀରେ ନେଇ ହୁଏ ।
(ଶ୍ରୀ.ଶ. - ପୃ. ୪୪) ।

**କାଙ୍ଗାଳି**-*ଦେ.ବି.*- ନିଃସ୍ୱ ତଥା କରମୁକ୍ତ ଯାତ୍ରୀ ।
(କ୍ଷେ.ସ.) ।

**କାଙ୍ଗୁଳା**-*ଦେ.ବି.*- ଗହିରିଆ ପାତ୍ର ବିଶେଷ ।
(ଓ.ସାଂ.ଶ. - ପୃ. ୮୨, ଶ.ବୋ.ଅ. - ପୃ.୨୮୧, ମା.ପା. - ପୃ.୧୨, କ୍ରି.ବି.ଶ.ସ. - ପୃ.୧୮୬, ପୂ.ଓ.ଭା. - ପୃ.୧୪୫୭) ।

**କାଛ/କାଛଟା/କାଛିଆ/କାଛା**-*ସଂ.ବି.*- କ୍ଷୁଦ୍ର ପତଳା ପରିଧାନ (ରଙ୍ଗୀନ) ଛୋଟ ଖଦୀ । ମଲ୍ଲମାନଙ୍କର ବ୍ୟବହାର୍ଯ୍ୟ ଲେଙ୍ଗୁଟୀ । ଏହା ତ୍ରିକୋଣାକାର ଏବଂ ଏହାର ଗୋଟିଏ କୋଣରୁ ଲାଙ୍ଗୁଡ଼ ଭଳି କନା ଓହଳି ଥାଏ । ତ୍ରିକୋଣାଂଶ ଦ୍ୱାରା ପଛ ପାଖ ଆବୃତ ହୁଏ ଏବଂ ଲମ୍ବିଥିବା ଅଂଶ ଶରୀରର ଗୁପ୍ତାଙ୍ଗ ଉପରେ ଘୋଡ଼ାଯାଏ । ସାଧୁସନ୍ନ୍ୟାସୀମାନେ ମଧ୍ୟ ଏହାକୁ ବ୍ୟବହାର କରିଥାନ୍ତି । ଆଖଡ଼ା ଘରେ ଶିକ୍ଷାର୍ଥୀମାନେ ଏହାର ବ୍ୟବହାର କରିଥାଆନ୍ତି ।
(ପୂ.ଓ.ଭା. - ପୃ.୧୪୬୦, ଓ.ସାଂ.ଶ. - ପୃ. ୮୨, ଶ.ତ.ବୋ.ଅ. - ପୃ.୨୮୨, ଶ୍ରୀ.ଶ. - ପୃ. ୪୪, ପୁ.ବୋ. - ପୃ.୧୬୬) ।

**କାଞ୍ଚି**-*ସଂ.ବି.*- ଘୁଙ୍ଗୁର ଲୁଗା, ଅଣ୍ଟାସୂତା, ମେଖଳା, କଟିସୂତ୍ର । ଏହା ମୋକ୍ଷ ଦାୟିକା ସପ୍ତପୁରୀ ନଗର ମଧ୍ୟରୁ ଅନ୍ୟତମ । - ଦାକ୍ଷିଣାତ୍ୟ ଦ୍ରାବିଡ଼ ଦେଶର ରାଜଧାନୀ । ପୁରୁଷୋତ୍ତମ ଦେବ କାଞ୍ଚି ଜୟ କରି କାଞ୍ଚିରୁ ପଦ୍ମାବତୀଙ୍କ ସହ ଗଣେଶ ଓ ବହୁଧନରତ୍ନପ୍ରଭୃତି ଆଣିଥିଲେ । କାଞ୍ଚି ଦୁଇଭାଗରେ ବିଭକ୍ତ-ବିଷ୍ଣୁକାଞ୍ଚି ଓ ଶିବକାଞ୍ଚି ।
(ପୂ.ଓ.ଭା. - ପୃ.୧୪୬୩, ଶ.ତ.ବୋ.ଅ. - ପୃ.୨୮୨) ।

**କାଞ୍ଚିଗଣେଶ**-*ଦେ.ବି.*- ଶ୍ରୀମନ୍ଦିର ପଶ୍ଚିମଦ୍ୱାର ପାଖରେ ଥିବା ଗଣେଶ ମୂର୍ତ୍ତି । ଏହା ଶ୍ରୀ ପୁରୁଷୋତ୍ତମ ଦେବଙ୍କର କାଞ୍ଚି ଅଭିଯାନର ବିଜୟ ସ୍ମାରକୀ ଭାବରେ ପରିଚିତ ।
(ଶ୍ରୀ.ସ୍ୱ. - ପୃ.୨୩୩) ।

**କାଞ୍ଚିଖୁରି ଗଣେଶ**-*ଦେ.ବି.*- ମାଆ ବିମଳା ମନ୍ଦିର ସମ୍ମୁଖରେ ରୋହିଣୀକୁଣ୍ଡ ସମୀପସ୍ଥ ଅଷ୍ଟଭୁଜ ବିଶିଷ୍ଟ ନୃତ୍ୟରତ ଗଣପତି ମୂର୍ତ୍ତି ।
(ଶ୍ରୀ.ସ୍ୱ. - ପୃ. ୨୩୯) ।

**କାଠଘର**-*ଦେ.ବି.*- ଶ୍ରୀମନ୍ଦିର ମଧ୍ୟରେ ଗୋଟିଏ ଘରେ ବିଭିନ୍ନ କାର୍ଯ୍ୟ ପାଇଁ କାଠ ଗଚ୍ଛିତ ଥାଏ । ଶ୍ରୀ ମନ୍ଦିର କାର୍ଯ୍ୟ ପାଇଁ ଅର୍ଥାତ୍ ରୋଷଘର ହୋମ ପାଇଁ ବା ଅନ୍ୟାନ୍ୟ ସ୍ଥାନରେ (ମନ୍ଦିର ପରିସର ମଧ୍ୟରେ) ହୋମ ପାଇଁ କାଠଘରୁ ହୋମ କାଠ ଆସେ ଓ ଆସନ ସକାଶେ ମଧ୍ୟ ଖଣ୍ଡିଏ କାଠ ଅଣାଯାଏ । ନଡ଼ିଆ ମଧ୍ୟ ଅଣାଯାଏ । ହୋମ କରିବା ବ୍ରାହ୍ମଣ କାଠ ଆସନ ତଥା ନଡ଼ିଆ ନିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୨୬) ।

**କାଠଘୋଡ଼ା**-*ଦେ.ବି.*- ବେଞ୍ଚ ସଦୃଶ ଅଢ଼େଇଫୁଟ ଉଚ୍ଚତାର କାଠ ନିର୍ମିତ ଭାଡ଼ି । ଏହା ଉପରେ ଠିଆ ହୋଇ ସେବକମାନେ ବିଗ୍ରହମାନଙ୍କୁ ବେଶ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୨୨) ।

**କାଠିଲାଗି**-*ଦେ.ବି.*- ଶ୍ରୀଜୀଉଙ୍କର ଦୈନିକ ଦନ୍ତମର୍ଜନ ବିଧି । ଏଥିପାଇଁ କେବଳ ମୁତୁରି ଦାନ୍ତକାଠି ଆବଶ୍ୟକ ହୋଇଥାଏ । ମୁତୁରି ଦାନ୍ତକାଠି ଯୋଗାଇ ଦେବା ପାଇଁ ସ୍ୱତନ୍ତ୍ର ସେବକ ତିନିଜଣ ଅଛନ୍ତି । ଏମାନଙ୍କୁ ମୁଖପଖାଳ ପଡ଼ିହାରୀ କୁହାଯାଏ । ଏହି ଦାନ୍ତକାଠି ଯୋଗାଇବା ନିମନ୍ତେ ସେମାନେ ଜମି ଭୋଗ କରିଥାନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୩) ।

**କାର୍ତ୍ତିକ ପୂର୍ଣ୍ଣିମା**-*ସଂ.ବି.*- କାର୍ତ୍ତିକ ହବିଷ୍ୟର ଶେଷଦିନ । ଏହି ପୂର୍ଣ୍ଣିମାରେ ଶ୍ରୀଜଗନ୍ନାଥ ରାଜବେଶ ହୋଇଥାନ୍ତି । କାର୍ତ୍ତିକମାସରେ ବାଳଧୂପ ମଧ୍ୟ ପୂର୍ଣ୍ଣିମା ଯାଏ ହୋଇଥାଏ ।

ଏହି ଦିନ ରାଜରାଜେଶ୍ୱର ବେଶରେ ରତ୍ନଅଳଙ୍କାର, ପୁଷ୍ପଅଳଙ୍କାର, ପଦକମାଳ ଅଧିକ ଲାଗି ହୋଇ ପାଟବସ୍ତ୍ର ଇତ୍ୟାଦିରେ ବିଗ୍ରହମାନେ ସଜ୍ଜିତ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୧,୧୫,୧୧, ପୂ.ଓ.ଭା. - ପୃ.୧୫୩୭-୩୮, ଶ୍ରୀ.ବେ.ବୈ. - ପୃ. ୩୦) ।

**କାର୍ତ୍ତିକ ବ୍ରତ**-*ସଂ.ବି.*- ଓଡ଼ିଆ ମାସ ଗଣନାରେ ସପ୍ତମମାସ କାର୍ତ୍ତିକ । ଚନ୍ଦ୍ରମାନ ତୁଳା ମାସ । ଏଇ ମାସର ପୂର୍ଣ୍ଣିମା ଦିନ ଚନ୍ଦ୍ର କୃତ୍ତିକା ନକ୍ଷତ୍ରରେ ରହନ୍ତି । କାର୍ତ୍ତିକ ମାସରେ ବ୍ରତୀ ବିଧବା ବା ଧର୍ମପ୍ରାଣ ହିନ୍ଦୁମାନଙ୍କର କର୍ତ୍ତବ୍ୟ ଓ ଆଚାର ହେଉଛି ହବିଷ୍ୟ, ପ୍ରାତଃସ୍ନାନ, ରାଇଦାମୋଦର ପୂଜା, ଜପ ଓ ଦୀପଦାନ । କାର୍ତ୍ତିକ ମାସ ପ୍ରତିପଦରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ କରାଯାଇଥାଏ । ଏହି ବ୍ରତରେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଦର୍ଶନ ସହିତ ସାଗରସ୍ନାନ ଅଣାକ୍ଷର ମନ୍ତ୍ରଜପ, ବ୍ରାହ୍ମଣ ବୈଷ୍ଣବମାନଙ୍କୁ ଭକ୍ତି ଓ ସାତ୍ତ୍ୱିକ ଆହାର ଓ ଦାନଧର୍ମ ପାଳନ କରାଯାଇଥାଏ ।
(ପୂ.ଓ.ଭା. - ପୃ. ୧୫୩୮/୧୫୩୯, ଶ.କ.ଦ୍ରୁ. ୨ୟ - ପୃ.୧୦୧/୧୦୬) ।

**କାର୍ତ୍ତିକହବିଷ୍ୟ**-*ସଂ.ବି.*- ନୈଷ୍ଠିକ ହିନ୍ଦୁ ନାରୀମାନେ କାର୍ତ୍ତିକମାସରେ ପାଳନ କରୁଥିବା ବ୍ରତ । ଅରୁଆ ଚାଉଳ, କଞ୍ଚାମୁଗ, ନଡ଼ିଆ, କଦଳୀ, ସାରୁ, ଓଉ, ଅଦା, କମଳା, ବେତକନ୍ଦା, ଅଗସ୍ତିଶାଗ ହବିଷ୍ୟାଳୀମାନେ ଏ ମାସରେ ଖାଦ୍ୟ ରୂପେ ଗ୍ରହଣ କରିଥାନ୍ତି । ତରକାରୀରେ ହଳଦୀ, ତେଲ, ଲଙ୍କାମରିଚ ଓ ମସଲା ଇତ୍ୟାଦି ପଡ଼େ ନାହିଁ କିମ୍ବା ବଘରା ହୁଏ ନାହିଁ । ଖଟା ପାଇଁ କମଳା, ରାଗ ପାଇଁ ଅଦା, ପିତା ପାଇଁ ବେତକନ୍ଦା, କସା ପାଇଁ ଅଗସ୍ତିଶାଗ ଓ ମିଠା ପାଇଁ କନ୍ଦମୂଳ ବ୍ୟବହୃତ ହୁଏ । ମାତ୍ର ଶ୍ରୀକ୍ଷେତ୍ରରେ କାର୍ତ୍ତିକ ହବିଷ୍ୟରେ ମହାପ୍ରସାଦ ସେବନରେ ହବିଷ୍ୟ ପାଳନ କରାଯାଇଥାଏ ।
(ପୂ.ଓ.ଭା. - ପୃ.୧୫୮୧) ।

**କାଣ୍ଡ ହେଙ୍ଗୁଡ଼/କାଣ୍ଡ ହେଙ୍ଗୁଳ**-*ଦେ.ବି.*- ଲୌହ ନିର୍ମିତ ପାଞ୍ଚଗୋଟି ମୁନିଆଁ ଶର । ଏହା ଠାକୁରଙ୍କ ବେଣ୍ଟ ବା ଶିକାର ନୀତି ବେଳେ ବ୍ୟବହୃତ ହୁଏ । ବସନ୍ତ ପଞ୍ଚମୀ, ଜାଗରଠାରୁ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ ଓ ଦ୍ୱାଦଶୀରେ ଠାକୁର ଶିକାରକୁ ବିଜେ କରନ୍ତି ଓ ପାଲିଙ୍କିରେ ଶ୍ରୀଜଗନ୍ନାଥବଲ୍ଲଭ ମଠକୁ ଯାଆନ୍ତି । ଶୀତଳ ଭୋଗ ଲାଗି ହେବା ପରେ ଭିତରଛ ମହାପାତ୍ର ଆଳତି, କର୍ପୂର ଆଳତି, ରାତି ଆଳତି, ସଞ୍ଜଆଳତି କରନ୍ତି । ଏହାପରେ କାଣ୍ଡ ହେଙ୍ଗଡ ନେଇ ଠାକୁରେ ବେଣ୍ଟ ପୋଖରୀକୁ ଯାଆନ୍ତି । ଶାରଦୀୟ ପୂଜାର ସପ୍ତମୀ, ଅଷ୍ଟମୀ, ନବମୀ ତିଥିରେ ମାଆ ବିମଳାଙ୍କୁ ପିନ୍ଧାଇବା ଲାଗି ରାଜ ନଅରରୁ ଆସୁଥିବା ଲାଲ୍ ରଙ୍ଗର ଶାଢ଼ୀ ।
(ପୁ.ବୋ. - ପୃ.୧୬୭) ।

**କାନପତା ହନୁମାନ**-*ଦେ.ବି.*- ଶ୍ରୀମନ୍ଦିରର ପଶ୍ଚିମଦ୍ୱାରରେ ନୀଳାଦ୍ରିବିହାରକୁ ଲାଗିଥିବା ଏକ ଛୋଟ ମନ୍ଦିରରେ ଏହି ବିଗ୍ରହ ପୂଜା ପା'ନ୍ତି ।
(ଶ୍ରୀ.ବେ.ଦେ. - ପୃ.୧୩୧) ।

**କାନିକା**-*ଦେ.ବି.*- ଘୃତପକ୍ୱ ଖେଚୁଡ଼ି । ମିଶ୍ରି ବା କନ୍ଦ ରଖିବା ପାଇଁ ଛୋଟ ମାଟି ହାଣ୍ଡି । ଶ୍ରୀଜୀଉଙ୍କ ଲାଗି ଧୂପରେ ବ୍ୟବହୃତ ଏକ ରନ୍ଧନ ଖାଦ୍ୟ । ସକାଳ ଧୂପରେ ଏହା ପ୍ରସ୍ତୁତ ହୋଇ ଭୋଗ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୯-୨୦, ପୂ.ଓ.ଭା. - ପୃ.୧୪୯୫, ପ୍ର.ଅ.୧ମ - ପୃ.୫୦୮) ।

**କାନୁଆସି ଗଡ଼ା**-*ଦେ.ବି.*- ଏକ ପ୍ରକାର ସୂତା ବସ୍ତ୍ର । ଏହା ଠାକୁରଙ୍କ ନିକଟରେ ଲାଗି ହୁଏ ।
(ଶ୍ରୀ.ଶ. - ପୃ. ୪୫) ।

**କାନ୍ତି**-*ସଂ.ବି.*- ଚୋପା ଛଡ଼ାଯାଇ ବଟା ମୁଗ ବା ବିରିରେ ଅଦା, ନଡ଼ିଆ ଓ ମିଠା ଦେଇ ପ୍ରସ୍ତୁତ କରାଯାଉଥିବା ପିଠା, ଯାହା କୋଠ ଭୋଗରେ ଠାକୁରଙ୍କୁ ଲାଗି ହୁଏ । ଏତଦ୍‌ବ୍ୟତୀତ ନବାନ୍ନ ଭୋଗ, ଅଧିବାସ, ଓଢ଼ଣଷଷ୍ଠୀ, ପୁଷ୍ୟାଭିଷେକ, ମକରଚଉରାଶୀ ଭୋଗ, ମକର, ମାଘ ଏକାଦଶୀ (ବଡ଼ସିଂହାର), ଦୋଳପୂର୍ଣ୍ଣିମା, ନୀଳାଦ୍ରି

ମହୋଦୟ, ନୃସିଂହଜନ୍ମ, ରୁକ୍ମିଣୀବିଭା, ଚମ୍ପକଦ୍ୱାଦଶୀ, ଦେବସ୍ନାନ ପୂର୍ଣ୍ଣିମା, ନେତ୍ର ଉତ୍ସବ, ଶ୍ରୀଗୁଣ୍ଡିଚା, ନନ୍ଦ ଉତ୍ସବ, ଗର୍ଭଣାସଂକ୍ରାନ୍ତି, ପ୍ରଥମାଷ୍ଟମୀ, ତୁଳାସଂକ୍ରାନ୍ତି, ଦେବ ଉତ୍ଥାପନ ଏକାଦଶୀ, ଦଶହରା ପ୍ରଭୃତି ପର୍ବଦିନ ମାନଙ୍କରେ କାନ୍ତି ଉଭୟ ବଡ଼ ହେଉ ବା ସାନ ହେଉ ପ୍ରସ୍ତୁତ ହୋଇ ଠାକୁରଙ୍କ ପାଖରେ ଭୋଗ ଲାଗିଥାଏ ।
(କ୍ରୁ.ବି.ଓ.ଶ. - ପୃ. ୧୯୦) ।

**କାନ୍ଧ ପଇତି**-*ଦେ.ବି.*- ଶ୍ରୀଜୀଉଙ୍କ ସ୍କନ୍ଧ ଦେଶରେ ଦିଆଯାଉଥିବା ଏକ ବାଇଶିହାତିଆ ଚଦର । କାନ୍ଧବସ୍ତ୍ର ବା ଉତ୍ତରୀୟ ।
(ଶ.କ.ଦ୍ରୁ. ୧ମ - ପୃ.୨୨୫, ଓ.ସାଂ.ଶ. - ପୃ. ୮୨) ।

**କାପ**-*ସଂ.ବି.*- କର୍ଣ୍ଣାଳଙ୍କାର ବିଶେଷ । ଚଟକା ବର୍ତ୍ତୁଳ କାନର ଅଳଙ୍କାର ।
(ପୂ.ଓ.ଭା. - ପୃ ୧୫୦୫, ଓ.ସାଂ.ଶ. - ପୃ ୮୨) ।

**କାମବୀଜ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ର ମତେ ପୂଜାପଦ୍ଧତିରେ ତାଙ୍କଠାରେ କାମବୀଜ ଆରୋପିତ କରାଇବା । ତାହାର ମନ୍ତ୍ର ହେଲା- "ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ନମଃ ।" ତନ୍ତ୍ରାନୁସାରେ -ଶ୍ରୀଜଗନ୍ନାଥ ହେଉଛନ୍ତି କ୍ଲୀଂ- କାମବୀଜର ପ୍ରତୀକ ।
(ଓ.ସାଂ.ଶ. - ପୃ. ୮୩) ।

**କାମ୍ପିଲ୍ୟବାସିନୀ**- କମ୍ପନର କାରଣ ସ୍ୱରୂପ ହୋଇଥିବାରୁ କାମ୍ପିଲ୍ୟବାସିନୀ । ମା' ସୁଭଦ୍ରାଙ୍କୁ କାମ୍ପିଲ୍ୟବାସିନୀ ବୋଲି କୁହାଯାଏ । ଦୁଇଶକ୍ତି ହେଉଛନ୍ତି ସଗୁଣ ଶକ୍ତି ଓ ନିର୍ଗୁଣ ଶକ୍ତି (ପ୍ରକୃତି ପୁରୁଷ) । ଏହି ଦୁଇ ଶୂନ୍ୟର ସଂଯୋଗ ଶକ୍ତି ଦୁଇ ଶୂନ୍ୟକୁ ସଂଯୋଗ କଲେ ବିସର୍ଗ (ଃ) ମାତ୍ରା ସୃଷ୍ଟି ହୁଏ । ଏହି ବିସର୍ଗ ମାତ୍ରା ହିଁ ସୁଭଦ୍ରା ।
(ଶ୍ରୀ.ଜି - ପୃ. ୬୫) ।

**କାବେରୀ କାଛି**-*ଗ୍ରା.ବି.*- ଏହା ଏକ ପ୍ରକାର ସ୍ୱତନ୍ତ୍ର କାଛି ଯାହାକି ଝୁଲଣ ଯାତ୍ରା, ରାକ୍ଷୀପୂର୍ଣ୍ଣିମା,- ଗହ୍ମାପୂର୍ଣ୍ଣିମାରେ ମଦନମୋହନଙ୍କୁ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫) ।

**କାରଣାର୍ଣ୍ଣବ**-*ସଂ.ବି.*- ପ୍ରଳୟରୂପୀ ସମୁଦ୍ର । ସିଦ୍ଧି ଲୋକର ବାହାରେ ଯେଉଁ ଚିନ୍ମୟ ଜଳପୂର୍ଣ୍ଣ ସମୁଦ୍ର ପ୍ରଭା ଆକାରରେ ପରମ ବ୍ୟୋମକୁ ବେଷ୍ଟନ କରିଅଛି ତାହା କାରଣାର୍ଣ୍ଣବ । ଏହା ନିତ୍ୟ ଓ ଚିନ୍ମୟ । ସର୍ବବ୍ୟାପ୍ତ, ଅନନ୍ତ, ବିଭୁ, କୃଷ୍ଣତନୁସମ । ଏହାର ଏକ କଣିକା ହେଉଛି ପତିତପାବନୀ ଗଙ୍ଗା ।

**କାଳ**-*ସଂ.ବି.*- ସମୟ, ଋତୁ, ସୃଷ୍ଟିର ଯୁଗ, ସୁବିଧା, ଅବସର, ମୃତ୍ୟୁ, ନାଡ଼ି, ସର୍ବସଂହାରକ, ରୁଦ୍ର, ଶନିଗ୍ରହ, ପରମାୟୁ । ବିଲୟର କାରଣ ହିଁ କାଳ । ଏହାକୁ ଦିନ, ରାତ୍ରି,ପକ୍ଷ, ମାସ ଆଦିରେ କାଳ୍ପନିକ ବିଭାଜନ କରାଗଲେ ମଧ୍ୟ ପ୍ରକୃତରେ କାଳର କୌଣସି ବିଭାଜନ ସମ୍ଭବ ନୁହେଁ । ମୃତ୍ୟୁ ଦେବତା । - ନିର୍ଦ୍ଦିଷ୍ଟ ସମୟ, -ସୁବିଧା ଅବସର,-କାଳସର୍ପ, -କ୍ଷଣ, ଦଣ୍ଡ, ପ୍ରହର, ଦିନ, ରାତି, ପକ୍ଷ, ମାସ, ଅୟନ, ମୁହୂର୍ତ୍ତ ହେଉଛି କାଳ । ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ମଧ୍ୟ ମହାକାଳର ଆଖ୍ୟାରେ ଭୂଷିତ କରାଯାଇଛି ।
(ଓ.ସାଂ.ଶ. - ପୃ. ୮୫, ପୂ.ଓ.ଭା. - ପୃ.୧୫୪୬/୧୫୪୮, ପ୍ର.ଅ. ୧ମ- ପୃ.୫୨୫, କ୍ର.ଓ.ଶ.ସ. - ପୃ.୧୯୫, ସଂ.ଭା. ୧ମ - ୧୧/୫-୧୪) ।

**କାଳରାତ୍ରି**-*ଦେ.ବି.*- କଷ୍ଟାନ୍ତ ରାତ୍ରି, ଭୟାନକ ରାତ୍ରି, ସଂହାର ରାତ୍ରି, ପ୍ରଳୟ ରାତ୍ରି, ମହାରାତ୍ରି, ରାତ୍ରିର ତୃତୀୟ ପ୍ରହର କାଳରାତ୍ରି ନାମରେ ପରିଚିତ । ଶ୍ରୀମନ୍ଦିରରେ ନବକଳେବର ସମୟରେ ବ୍ରହ୍ମ ପରିବର୍ତ୍ତନ ପରେ ପୁରୁଣା ବିଗ୍ରହମାନଙ୍କୁ କୋଇଲିବୈକୁଣ୍ଠ ଠାରେ ପାତାଳି କରିବା ରାତ୍ର ସମୟ କାଳରାତ୍ର ପରି ମନେ ହୁଏ ।
(କ୍ଷେ.ସ.) ।

**କାଳୀମୂର୍ତ୍ତି**-*ଦେ.ବି.*- ଦଶମହାବିଦ୍ୟା ମଧ୍ୟରୁ ଗୋଟିଏ ମହାବିଦ୍ୟା ଶାକ୍ତମାନଙ୍କ ମତରେ ଆଦିଶକ୍ତି । ଚତୁର୍ଭୁଜା, ଦକ୍ଷିଣ ଦିଗର ଦୁଇ ହାତରେ ଖଟାଙ୍ଗ ଏବଂ ଚନ୍ଦ୍ରହାସ ।

ବାମପାର୍ଶ୍ୱରେ ଦୁଇହସ୍ତରେ ଚର୍ମ ଏବଂ ପାଶ । ଗଳାରେ ନରମୁଣ୍ଡ, ଦେହରେ ବ୍ୟାଘ୍ରଚର୍ମ, ବଡ଼ ବଡ଼ ଦାନ୍ତ, ରକ୍ତବର୍ଣ୍ଣ ଚକ୍ଷୁ, ବିସ୍ତୃତ ମୁଖ, ସ୍ଥୁଳକର୍ଣ୍ଣ, ବାହନ କବନ୍ଧ । ପୁରାଣାନୁସାରେ କାଳୀଙ୍କର ଉଗ୍ର ଓ ଶାନ୍ତ ଦୁଇଟି ରୂପକୁ ବର୍ଣ୍ଣନା କରାଯାଇଛି । ବିଷ୍ଣୁଧର୍ମୋତ୍ତର ପୁରାଣରେ - ଭଦ୍ରକାଳୀଙ୍କର ରୂପ ଶାନ୍ତ ଓ ସୁନ୍ଦର । ଦେବୀମହାତ୍ମ୍ୟ, କାରଣାଗମ, ଚଣ୍ଡୀକଳ୍ପ, ଭବିଷ୍ୟପୁରାଣ, ଦେବୀପୁରାଣ ଇତ୍ୟାଦିରେ କାଳୀ ବା ମହାକାଳୀ ଉଗ୍ରରୂପା । କାଳୀ ମୂର୍ତ୍ତି ବିଭିନ୍ନ ପ୍ରକାରର ଯଥା- ସିଦ୍ଧକାଳୀ, ଭଦ୍ରକାଳୀ, ଗୁହ୍ୟକାଳୀ, ଶ୍ମଶାନକାଳୀ, ରକ୍ଷାକାଳୀ, ମହାକାଳୀ ଇତ୍ୟାଦି ଜ୍ୟେଷ୍ଠମାସରେ ଫଳହାରିଣୀ ଏବଂ ମାଘମାସରେ ରଟନ୍ତିକାଳୀ ରୂପରେ ପୂଜା ହୋଇଥାଆନ୍ତି । ଅଦ୍ଭୁତ ରାମାୟଣରେ ସୀତା ଶତସ୍କନ୍ଧ ରାବଣକୁ ବଧ କରିଥିଲେ ଏବଂ ରାମ ସେତେବେଳେ ସୀତାଙ୍କୁ କାଳୀ ରୂପେ ଶିବରୂପୀ ମହାଦେବଙ୍କ ଛାତିରେ ଦଣ୍ଡାୟମାନ ହୋଇଥିବାର ଦେଖିଥିଲେ । ଶ୍ରୀମନ୍ଦିରର ଭୋଗମଣ୍ଡପ ବାହାର କାନ୍ଥରେ ଏହି ଦେବୀଙ୍କ ପ୍ରତିମା ବିରାଜିତ । ପୂଜାପଣ୍ଡା ଦୈନିକ ଦେଉଳି ଭୋଗରୁ ସାନକାକରା ଭୋଗ ଏଠାରେ ଲଗାଇଥାନ୍ତି ।

ଶ୍ରୀମନ୍ଦିର ବେଢ଼ା ପରିସରରେ ମଧ୍ୟ ଅନେକ କାଳୀମୂର୍ତ୍ତି ଓ ଚିତ୍ର ପରିଲକ୍ଷିତ ହୁଏ । ଯଥା-

୧. ସ୍ତମ୍ଭକାଳି/ ଦକ୍ଷିଣ କାଳି- ଶ୍ରୀମନ୍ଦିର ଜଗମୋହନରେଥିବା ଗରୁଡ଼ ସ୍ତମ୍ଭ ନିକଟସ୍ଥ ଚତୁର୍ଦ୍ଦଶ ସ୍ତମ୍ଭର ଦକ୍ଷିଣ ଦିଗ କାନ୍ଥରେ ଏକ କ୍ଷୁଦ୍ର ମନ୍ଦିର ଭିତରେ କାଳି ବିରାଜିତ ।

୨. ଶ୍ରୀଲକ୍ଷ୍ମୀମନ୍ଦିର ଓ ନୀଳମାଧବ ମନ୍ଦିର ମଧ୍ୟସ୍ଥଳରେ ଏକ ସ୍ୱତନ୍ତ୍ର କାଳିକା ମୂର୍ତ୍ତି ମନ୍ଦିର ମଧ୍ୟରେ ବେଢ଼ାକାଳି ମୂର୍ତ୍ତି ପ୍ରତିଷ୍ଠିତ ।

୩. ମୁକ୍ତି ମଣ୍ଡପର ଏକ ଖମ୍ବ(ନୃସିଂହ ମନ୍ଦିର ସାମ୍ନା)ର ଉପରି ଭାଗ କାନ୍ଥର ଗାତ୍ରରେ ଶ୍ୟାମାକାଳିଙ୍କର ଏକ ଚିତ୍ର ।

୪. ଜଗମୋହନର ଚତୁର୍ଦ୍ଦଶ ସ୍ତମ୍ଭର ପଶ୍ଚିମ ପାର୍ଶ୍ୱରେ ଏକ କାଳିକା ବିଗ୍ରହ । ଏହା ଉତ୍ତର ପାର୍ଶ୍ୱରେ କୃଷ୍ଣକାଳି ମୂର୍ତ୍ତି ବିରାଜମାନ ।

୫. ସର୍ବମଙ୍ଗଳା / ବାଟ ମଙ୍ଗଳା ଠାକୁରାଣୀ ମନ୍ଦିର ଜଗମୋହନରେ ଥିବା ଦଶ ମହାବିଦ୍ୟା ମନ୍ଦିରରେ କାଳିକା ମୂର୍ତ୍ତି ।

୬. ଦକ୍ଷିଣ ଦ୍ୱାର ବାହାର ବେଢ଼ାରେ ଅବସ୍ଥିତ ବୁଢ଼ୀ ମା' ଠାକୁରାଣୀଙ୍କର ମନ୍ଦିର ଭିତରେ ଏକ ଚିତ୍ର ମୂର୍ତ୍ତି, ମନ୍ଦିର ଜଗମୋହନ କାନ୍ଥରେ ଏକ ବେଢ଼ାକାଳି ଓ କୋଡ଼ିଏ ଭୁଜା କାଳିଙ୍କ ଚିତ୍ର ।

୭. ମୁକ୍ତି ମଣ୍ଡପ ନିକଟରେ ଥିବା କ୍ଷେତ୍ରପାଳ ମହାଦେବଙ୍କ ମନ୍ଦିରର ପଶ୍ଚାଦ୍ ଭାଗ କାନ୍ଥରେ ପାର୍ଶ୍ୱଦେବତା ବିଗ୍ରହ ରୂପେ କାଳିକା ଦେବୀଙ୍କର ପଥର ତିଆରି ଏକ ଠିଆ ମୂର୍ତ୍ତି ।

୮. ଦକ୍ଷିଣି ଘର ପିଣ୍ଡାର ଏକ ସ୍ତମ୍ଭରେ ଷଡ଼ଭୁଜା ଭୈରବୀ କାଳିଙ୍କର ଏକ ଚିତ୍ର ।

୯. ମା' ବିମଳା ମନ୍ଦିର ଜଗମୋହନ ଭିତରେ ଶ୍ୟାମକାଳି ଓ ଭଦ୍ରକାଳିଙ୍କ ଚିତ୍ର ।

୧୦. ସୂର୍ଯ୍ୟ ମନ୍ଦିର ଭିତରେ ଏକ ପ୍ରସ୍ତର ପ୍ରଭାରେ ଶ୍ୟାମାକାଳିଙ୍କ ଚିତ୍ର ।

୧୧. ସୂର୍ଯ୍ୟମନ୍ଦିର ପାର୍ଶ୍ୱରେ ଥିବା ରାଧା ବଲ୍ଲଭ(ପ୍ରଚଳିତ ବଦ୍ରି ନାରାୟଣ) ମନ୍ଦିର ଭିତର କାନ୍ଥରେ ମା' କାଳିଙ୍କର ଏକ ଚିତ୍ର ।

୧୨. ଉତ୍ତର ଦ୍ୱାର ବାହାର ବେଢ଼ାରେ ଅବସ୍ଥିତ ମା' ଶୀତଳାଙ୍କ ମନ୍ଦିର ଭିତରେ କାଳିଙ୍କର ଏକ ପଥର ତିଆରି ମୂର୍ତ୍ତି ।

୧୩. ଶ୍ରୀମନ୍ଦିର ଶାଖା କାର୍ଯ୍ୟାଳୟ ପାର୍ଶ୍ୱରେ ଥିବା ପ୍ରତିହାରୀ ନିଯୋଗ ଭିତରେ ସିଂହବାହିନୀ କାଳିକା ଦେବୀଙ୍କର ଦୁଇଟି ଚିତ୍ର ମୂର୍ତ୍ତି ।

(ଶ୍ରୀ.ସ୍ୱ. - ପୃ. ୨୧୩, ପୌ(ବ) ୧ମ - ପୃ.୩୪୬, ଶ.କ,ଦ୍ରୁ. ୨ୟ - ପୃ.୧୧୪, ପୂ.ଓ.ଭା. - ପୃ.୧୫୬୨, ଓ.ସାଂ.ଶ. - ପୃ.୮୬, ଶ୍ରୀ.ବେ.ଦେ.ଦେ.- ପୃ. ୧୪୦) ।

**କାଳୀୟଦଳନ ଏକାଦଶୀ**-ଦେ.ବି.- ଭାଦ୍ରବ କୃଷ୍ଣ ଏକାଦଶୀରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର

କାଳୀୟଦଳନ ବେଶ ହୋଇଥାଏ । ଏହିଦିନ ଶ୍ରୀକୃଷ୍ଣ ଓ କାଳୀଙ୍କ ନିମନ୍ତେ ସ୍ୱତନ୍ତ୍ର ଓଢ଼ଣ ଲାଗି ହୋଇଥାଏ ।

(ଶ୍ରୀ.ସ୍ୱ. ୨ୟ - ପୃ.୯୨) ।

**କାଳୀୟଦଳନ ବେଶ**-*ଦେ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣ ଏକାଦଶୀ ତିଥିରେ ଠାକୁର ମଦନମୋହନ ମାର୍କଣ୍ଡ ପୁଷ୍କରିଣୀ ବିଜେ କଲା ପରେ ସେଠାରେ କାଳୀୟଦଳନ ନୀତି ଅନୁଷ୍ଠିତ ହୋଇଥାଏ । ଏହି ଦିନ ମଧ୍ୟାହ୍ନ ଧୂପ ପରେ ତିନିଖଣ୍ଡ ଆଜ୍ଞାମାଳ ଲାଗି ହୁଅନ୍ତି । ଏକାଦଶୀ ବିଧିବିଧାନ ଅନୁସାରେ ପୂଜା ହେବା ପରେ ଠାକୁର ମଦନମୋହନ ଓ ରାମକୃଷ୍ଣ ମାର୍କଣ୍ଡ ପୁଷ୍କରିଣୀକୁ ବିଜେ ହୁଅନ୍ତି । ତା ପରେ ସେଠାରେ ମାଟିମଣ୍ଡପ ସାହିର ଜଣେ ବ୍ୟକ୍ତି କୃଷ୍ଣ ହୋଇଥାଏ । ମାର୍କଣ୍ଡପୋଖରୀ ନିକଟରେ ମଞ୍ଚା ବନ୍ଧା ହୋଇ ସେଠାରେ କନାରେ ବନ୍ଧା ହୋଇଥିବା ସର୍ପ ଆଘାତ ହେଲା ପରେ ଜଣେ ଗରୁଡ଼ ବେଶରେ ଆସି ଅମୃତ ଲଡୁ ଦେଇ ବିଷ ଝାଡନ୍ତି । ଏହା ପରେ କାଳୀୟଦଳନ ନୀତି ଶେଷ ହୋଇଥାଏ । ଶୀତଳଭୋଗ ବନ୍ଦାପନା ହୋଇ ଗରୁଡ଼ ବିଜେ କରି ଜୟବିଜୟ ଦ୍ୱାରଠାରେ ଏକାଦଶୀ ଭୋଗ ହୋଇ ବନ୍ଦାପନା ପରେ ଦକ୍ଷିଣ ଘରକୁ ବିଜେ କରନ୍ତି । ପରେ ମହାପ୍ରଭୁଙ୍କ ବାଡ଼ରେ କାଳୀୟଦଳନ ବେଶ ହୋଇଥାଏ । ଏହି ବେଶରେ ଏକୋଇଶି ଫୁଟ ଲମ୍ବର ଏକ ବିରାଟକାୟ ସର୍ପ ଶ୍ରୀଜୀଉଙ୍କ ଶରୀରକୁ ଆବୃତ କରି ରଖିଥାଏ ଓ ନାଗ ସାପର ମସ୍ତକ ଉପରେ ପ୍ରଭୁଙ୍କର ଶ୍ରୀପୟର ରହିଥାଏ । ସର୍ପର ଶରୀରଟି ଦକ୍ଷିଣ ହସ୍ତ ଦେଇ ବାମ ହସ୍ତରେ ନାଗ ସାପର ଲାଞ୍ଜ ଓ ସ୍ୱର୍ଣ୍ଣପଦ୍ମ, ଦକ୍ଷିଣ ହସ୍ତରେ ଅମୃତଲଡୁ ଧାରଣ କରିଥାନ୍ତି । ଶ୍ରୀଜୀଉଙ୍କଦୁଇ ପାଦ ପାଖରେ ୨ଟି ନାଗକନ୍ୟା ଯୋଡ଼ହସ୍ତରେ ପ୍ରାର୍ଥନା କରୁଥାଆନ୍ତି । ବେଶ ଶେଷରେ ସନ୍ଧ୍ୟାଧୂପ ପରେ ଜଗନ୍ନାଥବଲ୍ଲଭ ମଠରୁ ଆସିଥିବା ବଡ଼ ଅମୃତ ଲଡୁ ପାଳିଆଖୁଣ୍ଟିଆଠାରୁ ନେଇ ପୁଷ୍ପାଳକ ଲାଗି କରନ୍ତି, ତା ପରେ ସନ୍ଧ୍ୟାଧୂପ ହୁଏ ଓ ମଦନମୋହନ ଭିତରକୁ ବିଜେ ହୁଅନ୍ତି । ପଣ୍ଡା ଆଜ୍ଞାମାଳ ଦେଲା ଉତାରେ ମହାଜନଙ୍କ ହାତରେ ଜଗମୋହନରେ ଥିବା ଖଟରେ ବିଜେ ହୁଅନ୍ତି । ଏଠାରେ କୁଣ୍ଢେଇବେଣ୍ଟ ସାହିର ଲୋକେ ଧେନୁକାସୁର ବଧ ଲୀଳା କରନ୍ତି । ବଳଭଦ୍ରଙ୍କ ବାମହସ୍ତରେ ସୋଲ ନିର୍ମିତ ପଦ୍ମକଡ଼ୀ ଓ ଦକ୍ଷିଣ ହସ୍ତରେ ଅମୃତ ଲଡୁ ରହିଥାଏ । ଦେବୀ ସୁଭଦ୍ରା ସାଧାରଣ ବେଶରେ ଥାଆନ୍ତି । ଏହି ବେଶ ଦର୍ଶନ ପାଇଁ ବହୁ ଭକ୍ତଙ୍କ ସମାବେଶ ହୋଇଥାଏ । ଏହି ବେଶରେ ଲାଗୁଥିବା ଅମୃତଲଡୁ ପ୍ରସାଦ ରୂପେ ଗ୍ରହଣ କଲେ ସର୍ପଦଂଶନ ଯୋଗ କଟିଯାଏ ବୋଲି ଲୋକ ବିଶ୍ୱାସ ରହିଛି । ଶ୍ରୀକୃଷ୍ଣାବତାର କାଳରେ କାଳୀୟଦଳନ ଲୀଳା ଏକ ବିଶେଷ ଲୀଳା । କାଳିନ୍ଦୀ ହ୍ରଦକୁ କାଳୀୟର ବିଷଜ୍ୱାଳାରୁ ମୁକ୍ତ କରିବାର କୃଷ୍ଣଲୀଳାକୁ ଏହି ଦିନ ପ୍ରକଟିତ କରାଯାଏ । ଭାଦ୍ରବ କୃଷ୍ଣ ଏକାଦଶୀରେ ଏହି କାଳୀୟଦଳନ ବେଶ ଅନୁଷ୍ଠିତ ହୁଏ । ଗଜପତି ପ୍ରତାପ ରୁଦ୍ରଦେବ ଏହି ବେଶ ପ୍ରଚଳନ କରିଥିଲେ ବୋଲି ଜଣାଯାଏ ।

(ଶ୍ରୀ.ସ୍ୱ. - ପୃ.୯୨) ।

**କାଶୀବିଶ୍ୱନାଥ**-*ଦେ.ବି.*- ଶ୍ରୀମନ୍ଦିରର ପୂର୍ବଦ୍ୱାର ଗୁମୁଟ ବାଇଶି ପାହାଚରେ ପ୍ରବେଶ କଲା ବେଳେ ବାମପଟରେ ଏହି କାଶୀବିଶ୍ୱନାଥଙ୍କ ମନ୍ଦିର ଅବସ୍ଥିତ । ଏହି ମନ୍ଦିର ପ୍ରତିଷ୍ଠା ପଛରେ ଏକ କିମ୍ବଦନ୍ତୀ ରହିଛି । ଜନୈକ ଭକ୍ତ ସେବକ ହରିହର ଖୁଣ୍ଟିଆ ବହୁ ଦିନ ଧରି କାଶୀବିଶ୍ୱନାଥଙ୍କ ଦର୍ଶନ ଅଭିଳାଷ ରଖିଥିଲେ କିନ୍ତୁ; ବାର୍ଦ୍ଧକ୍ୟ ଓ ଅର୍ଥାଭାବ ଯୋଗୁ କାଶୀ ଯାଇ ବିଶ୍ୱନାଥଙ୍କୁ ଦର୍ଶନ କରିବା ତାଙ୍କ ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ ଥିଲା । ଶେଷରେ ନିରାଶ ହୋଇ ବୃଦ୍ଧ ହରିହର ବାଇଶି ପାହାଚରେ ବସି ଏକ ଲୟରେ ବିଶ୍ୱନାଥଙ୍କୁ ପ୍ରାର୍ଥନା କଲେ । ପରିଶେଷରେ କାଶୀବିଶ୍ୱନାଥ ଖୁଣ୍ଟିଆ ସେବକଙ୍କୁ ସେହି ବାଇଶି ପାହାଚରେ ଦର୍ଶନ ଦେଲେ ।

ସେହିଦିନଠାରୁ କାଶୀବିଶ୍ୱନାଥ ବାଇଶି ପାହାଚରେ ଶ୍ରୀମନ୍ଦିରର ପ୍ରବେଶ ପଥରେ ପୂଜା ପାଇ ଆସୁଛନ୍ତି । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି ମୁତାବକ ଶ୍ରୀମନ୍ଦିରର ବାହାର ବେଢ଼ାରେ ବିଶ୍ୱନାଥ ମନ୍ଦିର ଅବସ୍ଥିତ । ଏହି ମନ୍ଦିରର ଉଚ୍ଚତା ପନ୍ଦର ଫୁଟ । ମନ୍ଦିର ମଧ୍ୟରେ ଶକ୍ତି ଓ ଲିଙ୍ଗ ଉଭୟ ପ୍ରତିଷ୍ଠିତ । ଲିଙ୍ଗର ଉଚ୍ଚତା ପ୍ରାୟ ଦଶ ଇଞ୍ଚ ଏବଂ ଶକ୍ତି ଉତ୍ତର ଦିଗାଭିମୁଖ ହୋଇ ସ୍ଥାପିତ ହୋଇଛନ୍ତି । ଶିବଲିଙ୍ଗ କଳାମୁଗୁନି ପ୍ରସ୍ତରରେ ନିର୍ମିତ । ମନ୍ଦିର ମଧ୍ୟରେ ପ୍ରସ୍ତର ନିର୍ମିତ ହର ଓ ପାର୍ବତୀ ମୂର୍ତ୍ତି ପ୍ରତିଷ୍ଠା ପୂର୍ବକ ପୂଜା ପାଉଛନ୍ତି । ଏହି ବିଗ୍ରହଙ୍କ ଉଚ୍ଚତା ପ୍ରାୟ ୧୦ ଇଞ୍ଚ । ଉତ୍ତରପୂର୍ବ କୋଣରେ ପାଦୁକାକୁଣ୍ଡ ରହିଛି । ପ୍ରବେଶ ଦ୍ୱାରର ଓସାର ମାତ୍ର ଅଢ଼େଇଫୁଟ ଏବଂ ଉଚ୍ଚତା ୪ଫୁଟ ହେବ । ଏହାର ଉପରି ଭାଗରେ ନବଗ୍ରହ ବିଗ୍ରହ ଓ କାର୍ତ୍ତିମୁଖ ସ୍ଥାପିତ ହୋଇଛି । ଦ୍ୱାରର ଦୁଇପାର୍ଶ୍ୱରେ ଦ୍ୱାରପାଳ ଭାବରେ ନନ୍ଦୀ ଓ ଭୃଙ୍ଗୀ ବିଦ୍ୟମାନ। ମନ୍ଦିର ସମ୍ମୁଖରେ ପ୍ରାୟ ୩ଫୁଟ ଦୂରରେ ଏକ ସ୍ତମ୍ଭ ଉପରେ ଏକ ବୃଷଭ (କ୍ଷୁଦ୍ର) ମୂର୍ତ୍ତି ବସିଅଛନ୍ତି । ଶ୍ରୀମନ୍ଦିରର ଦ୍ୱାରଫିଟା ନୀତି ପରେ ସକାଳେ ଏହି ମନ୍ଦିରରେ ଆଳତୀ ହୁଏ । ଠାକୁରଙ୍କ ଅଭିଷେକ ତତ୍ପରେ ଯଜମାନଙ୍କର ଜଳଲାଗି ହୋଇଥାଏ । ଏହା ପରେ କଦଳୀ, ସେଓ ଇତ୍ୟାଦି ଫଳଭୋଗ ହୁଏ । ଅପରାହ୍ନ ଚାରିଟା ପରେ ପୁନର୍ବାର ଅଭିଷେକ ହୋଇ ଚନ୍ଦନଲାଗି ବେଶ ହୋଇଥାନ୍ତି । କିଛି ସମୟ ପରେ କ୍ଷୀର ଭୋଗ ହୋଇ ବିଶ୍ୱନାଥଙ୍କ ପହୁଡ଼ ନୀତି ବଢ଼େ । ଶିବରାତ୍ରି ଦିନ ରାତ୍ରରେ ଠାକୁରଙ୍କର ଚନ୍ଦନବେଶ, ଶିବରାତ୍ରିପୂଜା, ପ୍ରସାଦ ଭୋଗ ତଥା ମହାଦୀପ ଜଳାଇବାର ବ୍ୟବସ୍ଥା ଅଛି । ଶିବ ବିବାହ ଓ ଶୀତଳଷଷ୍ଠୀ ଦିନ ଏହି ଠାକୁରଙ୍କର ଜଳଶାୟୀ ନୀତି ଅନୁଷ୍ଠିତ ହୁଏ । ଅପରାହ୍ଣରେ ଜଳ, ଫୁଲ, ବେଲପତ୍ର ଇତ୍ୟାଦି ପରିଷ୍କାର କରାଯାଇ ଚନ୍ଦନଲାଗି ଓ ବିବାହଜନିତ ବିଶେଷ ଭୋଗ କରାଯାଏ । ପ୍ରତ୍ୟେକ ସଂକ୍ରାନ୍ତି, ସୋମବାର, ଶନିବାର ଓ ଶ୍ରାବଣମାସର ସୋମବାରରେ ମନ୍ଦିର ସମ୍ମୁଖରେ ପ୍ରବଳ ଜନଗହଳି ହୁଏ । ଏପରି କି ଭକ୍ତମାନେ ଗଙ୍ଗାନଦୀରୁ ଜଳ ଆଣି କାଶୀବିଶ୍ୱନାଥଙ୍କୁ ଲାଗି କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୫୮, ଶ୍ରୀ.ବେ.ଦେ. - ପୃ. ୨୫-୨୮) ।

**କାହାଳୀ**-*ଦେ.ବି.*- ଧାତୁ ନିର୍ମିତ ପେଁକାଳୀ ବା ତୁରୀ । ଏହା ସିଧା ଓ ଲମ୍ୱ । ଏହା ମଧ୍ୟ ଭଙ୍ଗା ଓ ଖଞ୍ଜା । ପ୍ରତିଟି ମନ୍ଦିରରେ ଆଳତି, ଟେରା, ଧୂପ, ବଡ଼ସିଂହାର ପ୍ରଭୃତି ନୀତି ଓ ପ୍ରତ୍ୟେକଟି ପୂଜା ପରେ କାହାଳୀ ବାଜେ । ଶ୍ରୀମନ୍ଦିର ଯାନିଯାତ୍ରାରେ, ଠାକୁରଙ୍କ ବିଜେ ସମୟରେ, କାହାଳୀ ବାଜିଥାଏ । ସ୍ନାନଯାତ୍ରା, ରଥଯାତ୍ରା ଓ ଝୁଲଣ ପ୍ରତ୍ୟେକ ଭିତର ବାହାର ବିଜେ ସମୟରେ କାହାଳୀ ବାଜିଥାଏ । ଆଶ୍ୱିନ ମାସ ଷୋଳ ପୂଜାରେ ଶ୍ରୀବିମଳାଙ୍କ ମନ୍ଦିରରେ ସକାଳ ଧୂପ, ସନ୍ଧ୍ୟା ଧୂପ ଓ ଆଳତିରେ କାହାଳୀ ବଜାଯାଏ । ସମସ୍ତ ପର୍ବପର୍ବାଣି ଓ ବିଗ୍ରହମାନଙ୍କର ବିଜେ ସମୟରେ ମଧ କାହାଳୀ ବାଜେ । ଏତଦ୍‌ବ୍ୟତୀତ ଗଜପତିଙ୍କର ଶ୍ରୀମନ୍ଦିର ବିଜେ ସମୟରେ ମଧ କାହାଳୀ ବାଜେ ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୩, ପୂ.ଓ.ଭା. - ପୃ.୧୫୭୩, ପ୍ର.ଅ. ୧ମ - ପୃ.୫୩୬) ।

**କାହାଳିଆ ସେବକ**-*ଦେ.ବି.*- ଯେଉଁ ସେବକ ଶ୍ରୀଜୀଉଙ୍କ ନୀତି ସମୟରେ କାହାଳୀ ବଜାନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୩, ପୂ.ଓ.ଭା. - ପୃ.୧୫୭୩, ପ୍ର.ଅ. - ପୃ. ୫୩୬) ।

**କିଆପତ୍ର**-*ଦେ.ବି.*- ସୁନାରେ ତିଆରି କିଆପତ୍ର ସଦୃଶ ଅଳଙ୍କାର ବିଶେଷ । ଏହା ସୁନାବେଶ ତଥା ଅନ୍ୟାନ୍ୟ କେତେକ ନିର୍ଦ୍ଦିଷ୍ଟ ବେଶରେ ଠାକୁରଙ୍କୁ ଲାଗି ହୋଇଥାଏ ।

(ପୂ.ଓ.ଭା. - ପୃ. ୧୫୬୮) ।

**କିନାରୀ**-*ଦେ.ବି.*- ଲାଲ୍ ଧଡ଼ିଯୁକ୍ତ ଧଳା ଲୁଗା । ଏହା ଠାକୁରଙ୍କ ବସ୍ତ୍ରଭୂଷାରେ ବ୍ୟବହୃତ ହୋଇଥାଏ ।

**କିରୀଟ**-*ଦେ.ବି.*- ସୁବର୍ଣ୍ଣ ଓ ରତ୍ନ ନିର୍ମିତ କିରୀଟ । ସ୍ୱର୍ଣ୍ଣ କିରୀଟ, ମୁକୁଟ ବିଶେଷ । ଶ୍ରୀମନ୍ଦିର ଠାକୁରମାନଙ୍କର ରାଜବେଶରେ, ଲକ୍ଷ୍ମୀନାରାୟଣ ବେଶରେ, ତିନିଗୋଟି ସ୍ୱର୍ଣ୍ଣ କିରୀଟ (ମୁକୁଟ) ଲାଗି ହୋଇଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୧୬, ପୂ.ଓ.ଭା. - ପୃ.୧୫୯୬, ଓ.ସାଂ.ଶ. - ପୃ. ୮୭) ।

**କୀର୍ତ୍ତିମୁଖ**-*ଦେ.ବି.*- ପୁରାଣ କଥା ଅନୁସାରେ ଜଳନ୍ଧର ପାର୍ବତୀଙ୍କୁ ବିବାହ କରିବା ପାଇଁ ରାହୁଙ୍କୁ ଦୂତ ରୂପେ ମହାଦେବଙ୍କ ନିକଟକୁ ପଠାଇଲେ । ମହାଦେବ ଅତ୍ୟନ୍ତ କ୍ରୋଧ ହେବାରୁ ତାଙ୍କର ଭ୍ରୂମଧ୍ୟରୁ ଗୋଟିଏ ଭୀଷଣ ମୂର୍ତ୍ତି ବାହାରି ରାହୁଙ୍କୁ ଗ୍ରାସ କଲା । ରାହୁ ମହାଦେବଙ୍କର ଶରଣ ପଶିଲେ । ମହାଦେବଙ୍କ ବରରେ ଏ ଭୀଷଣ ମୂର୍ତ୍ତି ରାହୁର ମୁଣ୍ଡଟି ରଖି ଶରୀରର ଅନ୍ୟ ସମସ୍ତ ଅବୟବ ଗ୍ରାସ କଲେ । ଏହି ମୁଣ୍ଡ କୀର୍ତ୍ତିମୁଖ ନାମରେ ପରିଚିତ । ଏହି ମୁଖକୁ ଦର୍ଶନ ଓ ଅର୍ଚ୍ଚନା କରି ମନ୍ଦିରକୁ ଯିବା ବିଧେୟ । ଶିବ ମନ୍ଦିରର ଦ୍ୱାର ଦେଶରେ ଥିବା ଖୋଦିତ ମୁଣ୍ଡ 'ଏହା ରାହୁର ମୁଣ୍ଡ' । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ରଥ ଅଗ୍ରଭାଗରେ କୀର୍ତ୍ତିମୁଖ ରହିଥାଏ ।
(ପୂ.ଓ.ଭା. - ପୃ.୧୬୦୭) ।

**କୁଆଉଡ଼ା**-*ଗ୍ରା.ବି.*- କୋଠଭୋଗ ତ୍ରିଛେକ ଆଗରେ କୁଆକୁ ଉଡ଼ାଇବା ନିମନ୍ତେ କାଠ ଖଣ୍ଡେ ଧରି ଠିଆ ହୋଇଥିବା ସେବକ ।
(ପୁ.ବୋ. - ପୃ.୧୬୭) ।

**କୁତପ**-*ସଂ.ବି.*- ବ୍ରାହ୍ମଣ, ଦ୍ୱିଜ, ସୂର୍ଯ୍ୟ, ଅଗ୍ନି, କୁଶତୃଣ ଇତ୍ୟାଦି । ଦିନର ଅଷ୍ଟ ପ୍ରହର ମଧ୍ୟରୁ ଗୋଟିଏ । ଦିନର ଅଷ୍ଟମ ଭାଗରେ ସୂର୍ଯ୍ୟଙ୍କ ତେଜ ମନ୍ଥର ହେବା ହେତୁ ସେହି ସମୟକୁ କୁତପ ବୋଲି କୁହାଯାଏ । ଦିବସର ପନ୍ଦର ଭାଗରୁ ଅଷ୍ଟମ ଭାଗ ସମୟ । ଶ୍ରାଦ୍ଧର ସମୟ ।
(ଶ.କ.ଦ୍ରୁ. ୨ୟ - ପୃ.୧୪୦, ଶ.ତ.ବୋ.ଅ.- ପୃ.୩୧୪) ।

**କୁଡୁଆ**-*ଦେ.ବି.*- ଶ୍ରୀମନ୍ଦିରରେ ମହାପ୍ରସାଦ ଅନ୍ନବ୍ୟଞ୍ଜନାଦି ପାକ କରିବାର ମାଟିପାତ୍ର ବା ହାଣ୍ଡି । ମାଟିପାତ୍ର ବଡ଼ ହୋଇଥିଲେ ବାଇହାଣ୍ଡି ବା ବାହାହାଣ୍ଡି କୁହାଯାଏ । ମଧ୍ୟମା ଭଳି ହୋଇଥିଲେ କୁଡୁଆ କୁହାଯାଏ । ସାନପାତ୍ର ହୋଇଥିଲେ 'ଓଳି' ବା 'ବଡ଼ା' କୁହାଯାଏ । ଅନ୍ନ କୁଡୁଆରେ ରନ୍ଧାଯାଇ ବଡ଼ହାଣ୍ଡିରେ ଢ଼ଳାଯାଏ, କୁଡୁଆରେ ଅନ୍ନ, ତିଅଣ ଓ ଖିରି ରନ୍ଧାଯାଏ । କୁଡୁଆ ମଧ୍ୟ ନାନା ପ୍ରକାରର- ଅନ୍ନକୁଡୁଆ, ଖିରି କୁଡୁଆ, ତିଅଣ କୁଡୁଆ, ନାଗର କୁଡୁଆ, ଏମାର କୁଡୁଆ, ବସାଣ କୁଡୁଆ, ବଡ଼ମଠ କୁଡୁଆ, ସାନ ମଠ କୁଡୁଆ, ନମ୍ବରି କୁଡୁଆ, ଢ଼ଳା କୁଡୁଆ, ଭାତ କୁଡୁଆ ପ୍ରଭୃତି ।
(ଓ.ସାଂ.ଶ. - ପୃ. ୮୯, ପୂ.ଓ.ଭା. - ପୃ.୧୬୩୮) ।

**କୁତକୌତୁକ**-*ଗ୍ରା.ବି.*- ଜ୍ୟେଷ୍ଠ ଶୁକ୍ଳ ଦଶମୀରେ ରାଜେନ୍ଦ୍ରାଭିଷେକ ବିଧି ପାଳିତ ହୁଏ । ଏହିଦିନ ସନ୍ଧ୍ୟା ଧୂପ ପରେ ମଦନମୋହନ ଭିତରୁ ଆଜ୍ଞାମାଳ ପାଇ ଭୋଗବାଟ ଗଣେଶଙ୍କ ପାଖରେ ବିଜେ କରନ୍ତି । ରୁକ୍ମିଣୀ ବିବାହ ପ୍ରସ୍ତାବ ପରେ କୁତକୌତୁକ ଋଷି (ଜଣେ ସେବକ) ଦଣ୍ଡ ପ୍ରଣାମ କରି ଦୟଣାମାଳି ଦେଇଥିବା ପାଳିଆ ଖୁଣ୍ଟିଆଙ୍କଠାରୁ ଶୁକ୍ଳ ଫୁଲ ନେଇ ଆଞ୍ଜୁଳିକରି ରାସ୍ତାଯାକ ଥରକୁ ଥର ଦଣ୍ଡ ପ୍ରଣାମ କରି ଯାଆନ୍ତି । ଶୀତଳ ଭୋଗ ପରେ ଦକ୍ଷିଣି ଘରକୁ ମଦନମୋହନ ବିଜେ କରନ୍ତି । ଏତଦ୍ ବ୍ୟତୀତ ଭାଦ୍ର ଶୁକ୍ଳ ଏକାଦଶୀ ପାର୍ଶ୍ୱପରିବର୍ତ୍ତନ ଦିନ ମଇଲମ ଓ ମହାସ୍ନାନ ନୂତନ ବସ୍ତ୍ର ପରିଧାନ ପରେ ବଡ଼ସିଂହାର ବେଶ ହୁଏ । ପାଟରା ପ୍ରଦ କୁତକୌତୁକ ସୂତ୍ର ପ୍ରସାଦ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୫/୧୨୨) ।

**କୁଣ୍ଡଳ**-*ସଂ.ବି.*- କର୍ଣ୍ଣଭୂଷଣ ବିଶେଷ, ବଳୟ, କଙ୍କଣ, ଖଡ୍ଡୁ, ବଳୟାକୃତି, ବନ୍ଧନୀ, ଗୁଡ଼ାଇ ହୋଇଥିବା ଚନ୍ଦ୍ରାକୃତି, ଗୋଲାକାର ଚିହ୍ନ । ସ୍ୱର୍ଣ୍ଣ କର୍ଣ୍ଣ ଅଳଙ୍କାର । ଶ୍ରୀମନ୍ଦିରରେ ଆଶ୍ୱିନମାସ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ

ପର୍ଯ୍ୟନ୍ତ ଶ୍ରୀଜୀଉଙ୍କର ରାଧାଦାମୋଦର ବେଶ ହୋଇଥାଏ । ମାଘ ବସନ୍ତ ପଞ୍ଚମୀଠାରୁ ଫାଲଗୁନ ଦୋଳପୂର୍ଣ୍ଣିମା ପର୍ଯ୍ୟନ୍ତ ଜାମାଲାଗି ବେଶ ହୁଏ । ଜାମାଲାଗି ଓ ରାଧାଦାମୋଦର ବେଶରେ ଶ୍ରୀଜୀଉମାନେ ତିରିଶି ମୂର୍ତ୍ତି ସୁନାଅଳଙ୍କାର ବ୍ୟବହାର କରନ୍ତି । ଉକ୍ତ ତିରିଶି ମୂର୍ତ୍ତି ସୁନାଅଳଙ୍କାର ମଧ୍ୟରେ କୁଣ୍ଡଳ ଚାରି ମୂର୍ତ୍ତି ଅନ୍ୟତମ । ମାର୍ଗଶିର ଶୁକ୍ଳ ଷଷ୍ଠୀ (ଓଢ଼ଣ ଷଷ୍ଠୀ)ରୁ ମାଘ ଶୁକ୍ଳ ପଞ୍ଚମୀ (ବସନ୍ତ ପଞ୍ଚମୀ) ପର୍ଯ୍ୟନ୍ତ 'ଘୋଡ଼ଲାଗି' (ଓଢ଼ଣୀ ଲାଗି ) ବେଶ ହୁଅନ୍ତି । ଏଥିରେ ମଧ୍ୟ କୁଣ୍ଡଳ ୪ମୂର୍ତ୍ତି ଲାଗି କରାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୫/୧୬, ପ୍ର.ଅ. ୧ମ - ପୃ.୫୫୬, ପୂ.ଓ.ଭା. - ପୃ.୧୬୪୩) ।

**କୁଣ୍ଡଳିନୀ**-*ସଂ.ବି.*- ତନ୍ତ୍ରଶାସ୍ତ୍ରାନୁଯାୟୀ -ମଣିଷ ଶରୀର ମଧ୍ୟରେ ୭୨୦୦୦ ନାଡ଼ି ରହିଛି । ଏମାନଙ୍କ ମଧ୍ୟରୁ ତିନିଗୋଟି ନାଡ଼ି ପ୍ରଧାନ ଇଡ଼ା, ପିଙ୍ଗଳା, ସୁଷୁମ୍ନା । ଏମାନଙ୍କର ଉତ୍ପତ୍ତି ଗୋଟିଏ ସ୍ଥାନରୁ ଏବଂ ମିଳନ ଗୋଟିଏ ସ୍ଥାନରେ । ଏତଦ୍‌ବ୍ୟତୀତ ଏମାନେ ଉଭୟ ଉଭୟଙ୍କୁ ଆଉ ୪ଥର ସ୍ପର୍ଶ କରିଛନ୍ତି । ଉତ୍ପତ୍ତି ସ୍ଥଳ ୧, ମିଳନ ସ୍ଥଳ ୧, ସ୍ପର୍ଶ ସ୍ଥଳ ୪ ମୋଟ ୬ଟିକୁ ଷଡ଼୍‌ଚକ୍ର କୁହାଯାଏ । ଯଥା- ୧) ମୂଳାଧାର, ୨) ସ୍ୱାଧିଷ୍ଠାନ, ୩) ଅନାହତ, ୪) ବିଶୁଦ୍ଧ, ୫) ଆଜ୍ଞା, ୬) ସହସ୍ରାର । ମୂଳାଧାର ଚକ୍ରରେ ସୁଷୁମ୍ନା ନାଡ଼ି ମାଧ୍ୟରେ କୁଣ୍ଡଳିନୀ ଶକ୍ତିକୁ ଜାଗ୍ରତ କରାଇ ସହସ୍ରାରରେ ପହଞ୍ଚାଇପାରିଲେ ଜୀବନରେ ମୁକ୍ତି ବା ମୋକ୍ଷ ମିଳିଥାଏ । ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ଏହି ସହସ୍ରାର ଚକ୍ରରେ ଶ୍ରୀଜଗନ୍ନାଥ ବିଦ୍ୟମାନ ।
(ପୂ.ଓ.ଭା. - ପୃ.୧୬୪୪, ଓ.ସଂ.ଶ. - ପୃ.୮୯) ।

**କୁତ୍ତାମଚଣ୍ଡୀ**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା କୁକୁର ଉପରେ ବିରାଜିତା ଦେବୀ ମୂର୍ତ୍ତି । ଶ୍ରୀମନ୍ଦିରର ମୁକ୍ତିମଣ୍ଡପର ପୂର୍ବ ଦିଗରେ ପ୍ରତିଷ୍ଠିତ କ୍ଷେତ୍ରପାଳ ମନ୍ଦିରର ପୂର୍ବପଟ କାନ୍ଥ ସଂଲଗ୍ନ ଏକ କୁକୁର ଉପରେ ଏ ଦେବୀ ବିରାଜିତା । ସକାଳ ଧୂପରେ ବଡ଼ବାଡ଼ର ଥାଳି ଆସି ଏହାଙ୍କୁ ସମର୍ପଣ ହେଲେ ସେବକ ସେଥିରୁ କିଛି ପାଇଥାଆନ୍ତି । ଅନ୍ୟ କିଛି ଖଞ୍ଜା ନାହିଁ । ପୂର୍ବେ ଏହି 'କୁତ୍ତାମ ଚଣ୍ଡୀ' ରତ୍ନସିଂହାସନ ନିକଟସ୍ଥ ପୋଖରୀଆ ଭିତରେ ପ୍ରତିଷ୍ଠିତ ହୋଇଥିଲେ । ପରେ ବୈଷ୍ଣବମାନଙ୍କର ପ୍ରଭାବରେ ସେଠାରୁ ଅପସାରିତ ହୋଇ କ୍ଷେତ୍ରପାଳ ମନ୍ଦିରରେ ସଂସ୍ଥାପିତ ହୋଇଛନ୍ତି । ମରହଟ୍ଟା ଶାସନକାଳରେ ଏକ ଭୈରବ ମୂର୍ତ୍ତି ରତ୍ନବେଦୀ ପାର୍ଶ୍ୱରେ ରଖାଯାଇଥିଲା । ଏହା ତାନ୍ତ୍ରିକ ବିଗ୍ରହ ହୋଇଥିବାରୁ ବୈଷ୍ଣବ ବୈରାଗୀମାନେ ଏ ମୂର୍ତ୍ତି ସେଠାରୁ ଅପସାରଣ କରିବା ପାଇଁ ଦାବି କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ରତ୍ନବେଦୀ ମରାମତି ବେଳେ ଭୈରବ ମୂର୍ତ୍ତିକୁ ଅସ୍ଥାୟୀ ଭାବରେ ଘୁଞ୍ଚାଇ ଦିଆଯାଇଥିଲା । ଗୁପ୍ତରେ ବୈଷ୍ଣବ ବୈରାଗୀମାନେ ଏହି ବିଗ୍ରହଙ୍କୁ ନେଇ ଖଣ୍ଡ ଖଣ୍ଡ କରି ଭାଙ୍ଗି ସମୁଦ୍ରରେ ପକାଇ ଦେଇଥିଲେ । ଦଣ୍ଡୀ ସନ୍ନ୍ୟାସୀ ଓ ତାନ୍ତ୍ରିକମାନେ କ୍ଷୁବ୍ଧ ହୋଇ ବିରୋଧ କଲେ । ଏଣୁ ମରହଟ୍ଟା ଶାସକ ରଘୁଜୀ ଭୋନ୍‌ସଲେ ଆଉ ଏକ ମୂର୍ତ୍ତି ଗଢ଼ାଇ ଗର୍ଭଗୃହରେ ରଖିବାକୁ ଆଦେଶ ଦେଲେ । ପୁନଶ୍ଚ ବୈଷ୍ଣବ ମହନ୍ତ ଓ ସନ୍ଥମାନେ ପ୍ରବଳ ପ୍ରତିବାଦ କରିବାରୁ ଏହି ମୂର୍ତ୍ତିକୁ ସିଂହାସନ ନିକଟରେ ରଖା ନ ଯାଇ ମନ୍ଦିର ବେଢ଼ାସ୍ଥ ବାସୁଦେବଙ୍କ ପାଇଁ ଉଦ୍ଦିଷ୍ଟ ମନ୍ଦିର ମଧ୍ୟସ୍ଥ କାନ୍ଥରେ ସ୍ଥାପନ କରାଯାଇ ଥିଲା । ଇଂରେଜ ଶାସନ କାଳରେ ପୁନର୍ବାର ଏହି ମୂର୍ତ୍ତିକୁ ରତ୍ନବେଦୀ ଉପରେ ରଖାଯିବାକୁ ଇଂରେଜ ସରକାରଙ୍କୁ ନିବେଦନ କରାଯାଇଥିଲା । ମାତ୍ର ଏହା କାର୍ଯ୍ୟକାରୀ ହୋଇ ନ ଥିଲା । ଏହି ଦେବୀ ମୂର୍ତ୍ତି ମନ୍ଦିର ବେଢ଼ାରେ ପୂଜିତ ହେବା ଦିନଠାରୁ ଶ୍ରୀମନ୍ଦିରର ଭିତରେ କୁକୁର ପଶନ୍ତି ନାହିଁ ବୋଲି ବିଶ୍ୱାସ କରାଯାଏ ।
(ଶ୍ରୀ.ସ୍ୱ. - ପୃ ୨୪୧, ଶ୍ରୀ.ବେ.ଦେ. - ପୃ.୫୨) ।

**କୁନ୍ଦ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ପ୍ରତିହାରୀଙ୍କ ମଧ୍ୟରୁ ଏକ ଗୋଷ୍ଠୀ ।

(ଶ.ତ.ବୋ.ଅ. - ପୃ. ୩୧୫) ।

**କୁବଳୟାଗଜ ପ୍ରସ୍ତାବ**-*ଦେ.ବି.*- ଭାଦ୍ରବ ଶୁକ୍ଳ ଦଶମୀ ଦିନ ରାମକୃଷ୍ଣ ଲବଣିଖିଆ ଛକରୁ ଫେରି ଆସିବାର ବାଟରେ ରଜକ ପ୍ରସ୍ତାବ, ଧନୁଘର ପ୍ରସ୍ତାବ ଓ ମଲ୍ଲଯୁଦ୍ଧ ପ୍ରସ୍ତାବ ହୁଏ । ଶ୍ରୀନଅର ସମ୍ମୁଖରେ ଘଟୁଆରି କୁବୁଜା ବେଶ ସାଜି ଡାଲାରେ ଖଇର, ଗୁଆ ଆଣି ଭୋଗ କରାନ୍ତି । ଶୀତଳ ଭୋଗ ମଣୋହି ପରେ ରକ୍ଷକ ପ୍ରସ୍ତାବ ଓ ମଥୁରାହାଟ ଯୁର ହୁଏ । ଏଠାରୁ ବିଜେ କରି ଆସି ସିଂହଦ୍ୱାର ପାଖେ କାଠ ସିଂହାସନ ଉପରେ ପାଲିଙ୍କି ସହିତ ବିଜେ ହେଲେ 'କୁବଳୟା ଗଜ ପ୍ରସ୍ତାବ' ହୋଇଥାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୯୫) ।

**କୁମାରପୂର୍ଣ୍ଣିମା**-*ଦେ.ବି.*- ଆଶ୍ୱିନ ମାସର ପୂର୍ଣ୍ଣିମା । ଏହି ଦିନ ସନ୍ଧ୍ୟା ସମୟରେ କୁମାର କୁମାରୀମାନଙ୍କର ଉତ୍ସବ ଓ ଚାନ୍ଦପୂଜା ହୋଇଥାଏ । ଚନ୍ଦ୍ର ପୂଜା ହୋଇଥିବା ଭୋଗକୁ ଚାନ୍ଦ କୁହାଯାଏ । କୁମାରକୁମାରୀମାନେ ପରସ୍ପର ପାଟିରେ ଚାନ୍ଦ ଦିଆଦେଇ ହୋଇ ଚାନ୍ଦ ମିତ୍ରତା ବସନ୍ତି ଏବଂ ପରସ୍ପର ନାମ ଧରି ନ ଡ଼ାକି ଚାନ୍ଦ ବୋଲି ଡ଼କାଡ଼କି ହୁଅନ୍ତି । ଏ ଦିନ ମଧ୍ୟାହ୍ନ ଧୂପ ପରେ ଶ୍ରୀମନ୍ଦିରରେ ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ମହାଜନ ଖଟ ଶେଯରେ ବିଜେ କରାନ୍ତି । ଦଇତାପତିମାନେ ସିଂହାସନ ପରେ ଉଠି ଆଜ୍ଞାମାଳ ପାଇ ସୁଦର୍ଶନ ଠାକୁରଙ୍କୁ ଜଗମୋହନରେ ବିଜେ କରାଇ ସିଂହାସନ ତଳେ ତିନିଜଣ ପଣ୍ଡା ଓ ଜଣେ ମୁଦିରସ୍ତ ପଶା ଖେଳନ୍ତି । ମହାପ୍ରଭୁଙ୍କ ପ୍ରତିନିଧି ମୁଦିରସ୍ତ ଓ ଲକ୍ଷ୍ମୀଙ୍କ ପ୍ରତିନିଧି ମୁଦୁଲି ମହାଜନେ, ଭିତରଚ୍ଛୁ ଉଭୟେ ହିଙ୍ଗୁଳ କଉଡ଼ି ଏକୋଇଶି, ରୂପା କଉଡ଼ି ଏକଇଶି, ପଶା ଶକଟା ଖେଳମାନ ଖେଳନ୍ତି । ଏହା ପରେ ଶୀତଳମଣୋହି ବାହୁଡ଼ା ବିଜେ ପରେ ଲକ୍ଷ୍ମୀ ସିଂହାସନକୁ ଓ ମଦନମୋହନ ଦକ୍ଷିଣ ଘରକୁ ବିଜେ କରନ୍ତି । ବଡସିଂହାର ଧୂପ ପରେ ତିନିପଣ୍ଡା, ପଣ୍ଡାପତି, ମୁଦିରସ୍ତ ସିଂହାସନ ତଳେ ଜୁଆ, ପଶା, ଶକଟା ଓ କଉଡ଼ି ଖେଳନ୍ତି । ସିଂହାସନ ଉପରୁ ଉଠି ଶେଯରେ ଖେଳ ହୁଏ, ଏହି ଖେଳରେ ଲକ୍ଷ୍ମୀଙ୍କ ପାଖରେ ମହାପ୍ରଭୁ ହାରିଯିବାରୁ ନୀଳମାଧବ ମହାଜନ ହାତରେ ବିଜେ ହୋଇ ଲକ୍ଷ୍ମୀଙ୍କ ମନ୍ଦିରରେ ସାତଦିନ ବନ୍ଧା ପଡନ୍ତି । ଅଷ୍ଟମୀ ଦିନ ଅବକାଶ ପରେ ବନ୍ଧନରୁ ଫିଟି ଭିତର ସିଂହାସନକୁ ବିଜେ ହୁଅନ୍ତି । ଏ ସାତଦିନରେ ଗୁରୁବାର ଏକାନ୍ତ ନୀତି ହୋଇ ନ ଥାଏ ।

(ଶ୍ରୀ.ସ୍ୱ. ୨ୟ - ପୃ.୯୯/୧୦୦) ।

**କୁମ୍ଭାର ବିଶୋଇସେବକ**-*ଗ୍ରା.ବି.*- ଶ୍ରୀମନ୍ଦିରକୁ ବିଭିନ୍ନ ପର୍ବପର୍ବାଣିରେ ହାଣ୍ଡି କୁଡୁଆ ଯୋଗାଉଥିବା ସେବକ । ବିଶୋଇ ତିନି ଶ୍ରେଣୀର-୧ ପର୍ବଯାତ୍ରା କୁମ୍ଭାର ବିଶୋଇ, ୨ ବଲ୍ଲଭ ଓ ବାହାର ଦେଉଳ ସେବା କରୁଥିବା କୁମ୍ଭାର ବିଶୋଇ, ୩ ଦୈନିକ ସେବା କରୁଥିବା କୁମ୍ଭାର ବିଶୋଇ ।

(ଶ୍ରୀ.ସ୍ୱ. - ପୃ. ୪୫) ।

**କୁରୁବେଲି**-*ଦେ.ବି.*- ସୁଗନ୍ଧ ପୁଷ୍ପବଲ୍ଲୀ ବିଶେଷ । ସ୍ନାନବେଦୀରେ ବିଗ୍ରହମାନଙ୍କର ସ୍ନାନ ପରେ କୁରୁବେଲି ଲାଗିହୁଏ । କୁରୁବେଲି ଲଗାଇବା ଦ୍ୱାରା ସର୍ବଜନ ବଶ ହୁଅନ୍ତି ।

(ପୂ.ଓ.ଭା. - ପୃ.୧୬୮୧) ।

**କୁଶ**-*ଦେ.ବି.*- ବୈଦିକ ଶ୍ରାଦ୍ଧ ତର୍ପଣ ଆଦିରେ ବ୍ୟବହୃତ ଏକ ତୃଣ । ଏକ ପ୍ରକାର ବିଶେଷ ପବିତ୍ର ଘାସ । ବିଭିନ୍ନ ପ୍ରକାର ଧର୍ମାନୁଷ୍ଠାନରେ ଏବଂ ପୂଜାର୍ଚ୍ଚନାରେ ବ୍ୟବହୃତ ହୋଇଥାଏ । ଶ୍ରୀମନ୍ଦିରରେ ସମସ୍ତ ପୂଜା, ବିଭିନ୍ନ ପର୍ବପର୍ବାଣି, ହୋମଯଜ୍ଞାଦି ପ୍ରତିଷ୍ଠା ପ୍ରଭୃତିରେ କୁଶର ପ୍ରୟୋଗ କରାଯାଇଥାଏ । ସାଧାରଣତଃ କୁଶରେ ବଟୁ, ଆସନ ତିଆରି କରାଯାଏ । ଜନ୍ମାଷ୍ଟମୀ ଦିନ କୁଶରେ କୃଷ୍ଣଙ୍କର ନାଭି କଟା ହୋଇଥାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୬, ପୌ(ବ) ୧ମ - ପୃ. ୩୮୦, ଶ.କ.ଦ୍ରୁ. - ପୃ. ୮୯, ଶ.ତ.ବୋ.ଅ.- ପୃ.୩୨୦, ପୂ.ଓ.ଭା. - ପୃ. ୧୬୯୮) ।

**କୁଶେତ୍ରା**-*ଦେ.ବି.*- ଶ୍ରୀମନ୍ଦିର ସେବାୟତ ପତ୍ରୀଙ୍କ ମଧ୍ୟରୁ ଏକ ଗୋଷ୍ଠୀ । ଶ୍ରୀମନ୍ଦିରରେ ବାମନଜନ୍ମ ପୂଜାରେ ଏମାନେ କୁଶ ଯୋଗାଉଥିବା ପତ୍ରୀ ସେବକ । ବର୍ତ୍ତମାନ 'ସୁନାଗୋସାଇଁ' ଏ ସେବା ପୂଜା କରୁଛନ୍ତି ।
(ଶ୍ରୀ.ସ୍ୱ. ୨ୟ-ପୃ ୧୬,ପୁବୋ.-ପୃ ୧୬୮) ।

**କୁଶାଣ୍ଡି** *ଗ୍ରା.ବି.*- ଶ୍ରୀମନ୍ଦିରରେ ବିଭିନ୍ନ ସମୟରେ ହୋମଲାଗି କରାଯାଉଥିବା ଅଗ୍ନି ପୂଜା ।

**କୁଷ୍ମାଣ୍ଡ**-*ଦେ.ବି.*-ପାଣିକଖାରୁ । ନବକଳେବର ସମୟରେ ଦାରୁବିଗ୍ରହ ନିର୍ମାଣ ନିମିତ୍ତ ଲକ୍ଷଣଯୁକ୍ତ ବୃକ୍ଷକୁ ଚିହ୍ନଟ ହେଲା ପରେ ଏହା ମୂଳରେ ଭୂମି ଶୋଧନ, ଅଙ୍କୁରାରୋପଣ, ହୋମ, ଯଜ୍ଞ ଓ ବିଭିନ୍ନ ମନ୍ତ୍ରାଦି ଜପ ପରେ ବୃକ୍ଷ ମୂଳରେ ଅତ୍ୟନ୍ତ ଗୁପ୍ତ ଭାବରେ କୁଷ୍ମାଣ୍ଡକୁ ପଶୁ ରୂପେ କଳ୍ପନା କରି ତାକୁ କାଠିରେ ଚାରୋଟି ଗୋଡ଼ ଉପରେ ରଖି ବଳି ଦିଆଯାଏ ।
(ପୂ.ଓ.ଭା. - ପୃ.୧୭୦୩) ।

**କୁସୁମୀ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ଗୋଲାପୀ ରଙ୍ଗର ସୂତାବସ୍ତ୍ର । ସେନାପଟା ଲାଗିଲେ ଏହି ବସ୍ତ୍ର ଶ୍ରୀ ଅଙ୍ଗସାରା ଗୁଡ଼ାଇ ଧଳାକନାର ଡ଼ୋରରେ ଛକପକାଇ ଦିଆଯାଏ । ଫଳରେ ପହଣ୍ଡି ସମୟରେ ଶ୍ରୀଅଙ୍ଗ ରକ୍ଷା ପାଇଁ ଏହା ସାଞ୍ଜୁ ଭଳି କାମ କରେ ।
(ପୂ.ଓ.ଭା. - ପୃ.୧୭୦୬, ଓ.ସାଂ.ଶ. - ପୃ.୯୨) ।

**କୁସୁମୀ ଚାଦର**-*ଦେ.ବି.*- ଶ୍ରୀମନ୍ଦିରରେ ଆଷାଢ଼ ଅମାବାସ୍ୟା-ନେତ୍ରୋତ୍ସବ ଓ ନବଯୌବନ ଦର୍ଶନ ଦିନ ଯେଉଁ ଶୁକ୍ଳ ସଜ ଶ୍ରୀଜୀଉଙ୍କୁ ଲାଗି ହୁଏ ତନ୍ମଧ୍ୟରେ କୁସୁମୀ ଚାଦର ଛଅ ଖଣ୍ଡ ରହିଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୬୭) ।

**କୂର୍ମବେଢ଼ା ପାଚେରୀ**-*ଦେ.ବି.*- ଶ୍ରୀମନ୍ଦିରକୁ ଦୁଇଟି ପାଚେରୀ ଘେରି ରହିଛି । ବାହାର ପାଚେରୀ ମେଘନାଦ ଓ ଭିତର ପାଚେରୀ ନାମ କୂର୍ମବେଢ଼ା । ଦୁଇ ପାଚେରୀ ମଧରେ ଦୂରତା ୧୫୦ ଫୁଟ । କୂର୍ମବେଢ଼ା ପାଚେରୀ ମଧରେ ଶ୍ରୀମନ୍ଦିର ଅବସ୍ଥିତ । ୧୪୭୦ ମସିହାରେ ପୁରୁଷୋତ୍ତମ ଦେବ ଏହାକୁ ନିର୍ମାଣ କରିଥିଲେ । ଏହାର ଲମ୍ବ ଉତ୍ତର ଦକ୍ଷିଣ- ୪୨୦ ଫୁଟ, ପୂର୍ବ ପଶ୍ଚିମ- ୩୧୫ ଫୁଟ, ଉଚ୍ଚତା- ୨- ଫୁଟ । ଏଥିରେ ୨ଗୋଟି ଦ୍ୱାର ଅଛି । ଏହାର ଗୋଟିଏ ଦ୍ୱାର ଆନନ୍ଦ ବଜାରକୁ ଓ ଅନ୍ୟଟି ଆଗ୍ନେୟକୋଣରେ ପାକଶାଳାକୁ ଯାଇଅଛି ।
(ଶ୍ରୀ.ଜି. - ପୃ. ୮୦) ।

**କୂର୍ମବେଢ଼ା**-*ଦେ.ବି.*- ଶ୍ରୀ ଜଗନ୍ନାଥଙ୍କ ଶ୍ରୀମନ୍ଦିରର ଭିତରବେଢ଼ା । ଏହାକୁ ଘେରି ରହିଥିବା ପାଚେରୀକୁ କୂର୍ମ ପାଚେରୀ କୁହାଯାଏ । ସୂର୍ଯ୍ୟବଂଶୀ ଗଜପତି ରାଜା ପୁରୁଷୋତ୍ତମ ଦେବଙ୍କ ଦ୍ୱାରା ଏହା ନିର୍ମିତ ହୋଇଛି ବୋଲି ମାଦଳାପାଞ୍ଜିରେ ବର୍ଣ୍ଣିତ ।
(ଶ୍ରୀ.ସ୍ୱ. - ପୃ. ୨୧୬, ଓ.ସାଂ.ଶ. - ପୃ.୯୨, ମା.ପା. - ପୃ. ୩୪) ।

**କେକେଶୀ ବଧ**-*ଦେ.ବି.*- ଭାଦ୍ରବ ଶୁକ୍ଳ ସପ୍ତମୀଦିନ କାଳିକା ଦେବୀ ସାହିଲୋକେ କେକେଶୀ ବଧ ପ୍ରସ୍ତାବ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୪) ।

**କେତୁ**-*ସଂ.ବି.*- ନବଗ୍ରହ ମଧ୍ୟରୁ ଅନ୍ୟତମ । ଜ୍ୟୋତିଷ ଶାସ୍ତ୍ରାନୁସାରେ ଅମଙ୍ଗଳକାରୀ ଗ୍ରହ । ପୁରାଣ ମତରେ ଏ ରାକ୍ଷସର ମସ୍ତକ ରାହୁ ଓ ଅବଶିଷ୍ଟ ଅଙ୍ଗ କେତୁ । ସମୁଦ୍ର ମନ୍ଥନ ବେଳେ ଅମୃତମଣୋହୀ କରୁଥିବା ଦେବତାଙ୍କ ଗହଣରେ ଏହି ରାକ୍ଷସ ଛଦ୍ମବେଶରେ ବସି ଅମୃତପାନ କରୁଥିଲା । ବିଷ୍ଣୁ ଏହା ଦେଖି ଚକ୍ରରେ ଦୁଇଖଣ୍ଡ କରି ତାକୁ କାଟି ଦେଇଥିଲେ । ଅମୃତଗ୍ରାସ କରିଥିବାରୁ ଏହାଙ୍କର ମୃତ୍ୟୁ ହେଲା ନାହିଁ ବରଂ ଦୁଇଟି ଜୀବ ହୋଇ ବଞ୍ଚି ରହିଲା । ଚନ୍ଦ୍ରଗ୍ରହଣରେ ଆମେ କହୁ ରାହୁଗ୍ରସ୍ତ ଚନ୍ଦ୍ରଗ୍ରହଣ । ସୂର୍ଯ୍ୟପରାଗରେ ଆମେ କହୁ ସୂର୍ଯ୍ୟ କେତୁଗ୍ରସ୍ତ ସୂର୍ଯ୍ୟପରାଗ । ଶ୍ରୀଜଗନ୍ନାଥ ମନ୍ଦିରରେ ପାକ ତ୍ୟାଗ ସମୟ ଠାରୁ ଠାକୁରଙ୍କ କୌଣସି ନୀତି ହୁଏ ନାହିଁ । ଏହା ପୂର୍ବରୁ ଠାକୁର ତଡପ ଉତ୍ତରୀ ଲାଗି ହୋଇ ବସନ୍ତି । ରୋଷ ଧୋପଖାଳ

ହୋଇଥାଏ । ପରାଗ ଲାଗିଲେ ପୂଜା ପଣ୍ଡାମାନେ ଠାକୁରଙ୍କର ଗ୍ରହଣ ମହାସ୍ନାନ କରାନ୍ତି, ରୋଷରେ ହୋମ ହୁଏ । ପାଳିଆ ପୁଷ୍ପାଳକ ତିନି ବାଡରେ ଗ୍ରହଣ ପୂଜା କରନ୍ତି । ତତ୍‌ପରେ ଫୁଲ ତୁଳସୀ ଦ୍ୱାରା ବେଶ କରାଯାଏ । ଜୟ ବିଜୟ ଦ୍ୱାର ବନ୍ଦ ଥାଏ । ପୂଜା ହେବା ସମୟରେ ଭିତର ଟେରା ବନ୍ଧା ଥାଏ । ପାଳିଆ ପ୍ରତିହାରି, ଗନ୍ଧଣ ମେକା ଘରଠାକୁ ଡାକିଯାଇ ପାଳିଆ ମହାସୁଆର ଛେକ ଆଣେ । ଖଇ କୋରା ଇତ୍ୟାଦି ଶୀତଳ ଭୋଗ ଚାରିବାଡରେ ପୂଜାପଣ୍ଡାମାନେ ଭୋଗ କରନ୍ତି । ଗ୍ରହଣ ସମୟ ଦେଖି ଅନ୍ୟାନ୍ୟ ଦୈନନ୍ଦିନ ନୀତି ନିର୍ଣ୍ଣୟ କରାଯାଏ ।
(ଶ୍ରୀ.ସ୍ୱ.- ୨ୟ- ପୃ.୪୬, ଓ.ସାଂ.ଶ. - ପୃ.୯୪, ଚ.ଚି. - ପୃ.୫୩, ଶ.ତ.ବୋ.ଅ. - ପୃ. ୩୨୫) ।

**କେନ୍ଦୁଲିଖଣ୍ଡୁଆ**-*ଦେ.ବି.*- ଶ୍ରୀଜୀଉଙ୍କର ଖଣ୍ଡୁଆ ପାଟବସ୍ତ୍ର ବିଶେଷ । କେନ୍ଦୁଲିରୁ ଏହା ଆସିଥାଏ ।
(ଶ୍ରୀ.ସ୍ୱ. - ପୃ. ୭୫) ।

**କେନ୍ଦୁଲିଫେଟା**-*ଦେ.ବି.*- ନାଳିରଙ୍ଗର ପାଟ । ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁବିଲ୍ୱ ବା କେନ୍ଦୁଲିରେ ନିର୍ମିତ ଏହି ଶାଢ଼ୀ ପ୍ରସିଦ୍ଧି ଲାଭ କରିଥିଲା । ଶ୍ରୀମନ୍ଦିରରେ ଠାକୁରଙ୍କ ଜନ୍ମବାରରେ କେନ୍ଦୁଲି ଫେଟା ଲାଗି ହୁଏ । ଶ୍ରୀ ଗୁଣ୍ଡିଚାଦିନ ମଧ କେନ୍ଦୁଲି ଶାଢ଼ୀ, କେନ୍ଦୁଲି ଖଣ୍ଡୁଆ, କେନ୍ଦୁଲି ଫେଟା ଠାକୁରମାନଙ୍କୁ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୭୫, ଓ.ସାଂ.ଶ. - ପୃ.୯୪) ।

**କେୟୂର**-*ଦେ.ବି.*- ବାହୁ ଅଳଙ୍କାର ବିଶେଷ । ଶ୍ରୀଜୀଉଙ୍କର ଏକ ସ୍ୱର୍ଣ୍ଣ ଅଳଙ୍କାର ।
(ଓ.ସାଂ.ଶ. - ପୃ.୯୪, ପୂ.ଓ.ଭା. - ପୃ ୧୭୫୭) ।

**କେଳି**-*ଗ୍ରା.ବି.*- ଏକ ପ୍ରକାର ପିଠା । ଅଟାରେ ଛେନା ମିଶାଯାଇ ଗୋଲାକୃତି ଆକାରରେ ଘିଅରେ ଛଣା ଯିବା ପରେ ଗୁଡ଼ ପାଗରେ ପ୍ରସ୍ତୁତ ହୋଇଥିବା ପିଠା । କୋଠଭୋଗରେ ଏହା ପ୍ରଭୁଙ୍କୁ ଲାଗି ହୁଏ ।

**କେଳିରସାବଳୀ**-*ଦେ.ବି.*- ଶ୍ରୀ ଜୀଉଙ୍କର ଏକ ପ୍ରକାର ରସାବଳୀ ଭୋଗ ।
(କ୍ଷେ.ସ.) ।

**କ୍ଳେଶହାରକ**-*ଦେ.ବି.*- ଯୋଗ ଶାସ୍ତ୍ର ଅନୁସାରେ ୫ଟି କ୍ଳେଶ ମଣିଷ ଭୋଗ କରେ । ୧) ମାୟା/ ଅବିଦ୍ୟା, ୨) ଅହଙ୍କାର, ଅସ୍ମିତା, ୩)କ୍ରୋଧ, ରାଗ, ୪) ଈର୍ଷା, ଦ୍ୱେଷ, ୫) ମରଣ,ଭୟ । କ୍ଳେଶ ପୁଣି ସାଂସାରିକ, ମାନସିକ-ଏ ସବୁରୁ ତ୍ରାଣକର୍ତ୍ତା, ରକ୍ଷାକର୍ତ୍ତା ଭାବରେ ସ୍ୱୟଂ ଶ୍ରୀ ଜଗନ୍ନାଥଙ୍କୁ ପରିକଳ୍ପନା କରାଯାଇଛି ।
(ପୂ.ଓ.ଭା. - ପୃ.୧୮୪୨) ।

**କୋଇଲିବୈକୁଣ୍ଠ**-*ଦେ.ବି.*- ଶ୍ରୀମନ୍ଦିରର ଉତ୍ତର ଦ୍ୱାର ଆଡ଼କୁ ବାହାର ବେଢ଼ା ମଧ୍ୟରେ ଥିବା ବୃକ୍ଷ ଗୁଳ୍ମାଦି ପୂର୍ଣ୍ଣ ଗୁପ୍ତସ୍ଥାନ । ଏଠାରେ ନବକଳେବର ସମୟରେ ଜୀର୍ଣ୍ଣ ଦେବ ବିଗ୍ରହମାନଙ୍କର ସମାଧି କରାଯାଏ । ଏହା ସମ୍ଭବତଃ କୈବଲ୍ୟ ବୈକୁଣ୍ଠ ଅର୍ଥାତ୍ ମର୍ତ୍ତ୍ୟ ବୈକୁଣ୍ଠ । ଦ୍ରାବିଡ଼ ଭାଷାରେ କୋଇଲି ଶବ୍ଦର ଅର୍ଥ ମନ୍ଦିର । ବେଦାନ୍ତ ସାର ଗୁପ୍ତଗୀତାରେ ବଳରାମ ଦାସ ମୁକ୍ତିମଣ୍ଡପ ବ୍ରାହ୍ମଣଙ୍କ ସହ ବିଦ୍ୟା ବିବାଦ କରି ରାଜାଜ୍ଞାତରେ ପଡ଼ିହାରୀଙ୍କ ଦ୍ୱାରା ଗୋଟିଏ ରାତି କୋଇଲି ବୈକୁଣ୍ଠରେ ଅଟକ ଥିଲେ ବୋଲି ଉଲ୍ଲେଖ ଅଛି । ବୈଷ୍ଣବ ଲୀଳାମୃତ ଗ୍ରନ୍ଥରେ ନୃତ୍ୟ ସମୟରେ ଇଟା ଉପରେ ଚୈତନ୍ୟଙ୍କ ବାମପାଦ ପଡ଼ି ବୃଦ୍ଧାଙ୍ଗୁଳି କ୍ଷତ ହୋଇ କ୍ରମେ ଦ୍ରୁତ ସ୍ୱାସ୍ଥ୍ୟହାନି ଘଟି ଅକ୍ଷୟ ତୃତୀୟା ଦିନ ବ୍ରାହ୍ମମୁହୂର୍ତ୍ତରେ ପ୍ରାଣ ତ୍ୟାଗ କରିବା ଓ ସ୍ୱୟଂ ଗୋପନରେ ତାଙ୍କୁ କୋଇଲି ବୈକୁଣ୍ଠରେ ସମାଧି ଦେବା କଥା ଏଠାରେ ଉଲ୍ଲେଖ ଅଛି । ଧ୍ୱନି ଓ ଅର୍ଥଗତ ନିକଟତା ଦୃଷ୍ଟିରୁ କେବଳ ମୁକ୍ତିପଦ ବୈକୁଣ୍ଠ କୋଇଲି ବୈକୁଣ୍ଠରେ ରୂପାନ୍ତରିତ ହୋଇଥିବ ବୋଲି କୁହାଯାଇପାରେ । ଏହିଠାରେ ଠାକୁରମାନଙ୍କର ନୂତନ କଳେବର ହୁଏ ବୋଲି ଏହି କୁଞ୍ଜର ନାମ ଜନ୍ମକୁଞ୍ଜ । କେହି କେହି ବିଶ୍ୱାସ କରନ୍ତି ଶ୍ରୀକୃଷ୍ଣ ରାଧାଙ୍କୁ କୋଇଲି ରୂପରେ ଏହିଠାରେ ଦେଖାଦେଇଥିଲେ ।
(ଶ୍ରୀ.ସ୍ୱ - ପୃ. ୨୭୩) ।

**କୋଚାତୁଣମାହାଲା**-*ଦେ.ବି.*- ଶ୍ରୀମନ୍ଦିରର ଆନନ୍ଦ ବଜାରରେ ବାସି ତୁଉଣ ବା ପଖାଳ ନିମନ୍ତେ ନିଲାମ ମାଧ୍ୟମରେ ଆୟ ବ୍ୟବସ୍ଥା । କୋଚା-ଜଣଙ୍କଠାରୁ କିଣିଆଣି ବିକିବା, ଖୁଚୁରା ବିକ୍ରୟ ।
(ଶ.ତ.ବୋ.ଅ. - ପୃ. ୩୨୮) ।

**କୋଡ଼ପାହାଡ଼ା**-*ଦେ.ବି.*- ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ଶୀତକାଳୀନ ବସ୍ତ୍ର । ଶୀତକାଳୀନ ନୀତିରେ ମହାପ୍ରଭୁଙ୍କର ପାଦତଳୁ ରତ୍ନପଲଙ୍କ ପର୍ଯ୍ୟନ୍ତ ପ୍ରସାରିତ ଶୀତବସ୍ତ୍ର ।
(ଓ.ସାଂ.ଶ. - ପୃ. ୯୬) ।

**କୋଠ**-*ଦେ.ବି.*- ସାମୂହିକ । ଶସ୍ୟାଗାର, ଯୌଥ ସମ୍ପତ୍ତି, ପ୍ରକୋଷ୍ଠ, ଉଦର, ଧାନକୋଠି । - ଇଜିମାଇଲି -ଯାହା ସର୍ବସାଧାରଣଙ୍କର । ଶ୍ରୀମନ୍ଦିରରେ କୋଠଭୋଗର ପ୍ରଚଳନ ଅଛି ।
(ଶ.ତ.ବୋ.ଅ. - ପୃ. ୩୨୮) ।

**କୋଠକରଣ**-*ଦେ.ବି.*- ଶ୍ରୀମନ୍ଦିରର କରଣ ସେବକ । ଏହି ସେବକ ଶିରସ୍ତା ଲେଖନ୍ତି । ପର୍ବପର୍ବାଣି ଭୋଗତାଲିକା ଦେଉଳ କରଣଠାରୁ ନେଇ ରୋଷରେ ଦିଅନ୍ତି । ଚନ୍ଦନ ଯାତ୍ରା ସମୟରେ ଚାପ ଉପରେ ଛୁରୀ ଓ ଖଣ୍ଡା ଧରି ସେବା କରନ୍ତି । ଠାକୁରଙ୍କ ଭୋଗ ପ୍ରଭୃତିର ତତ୍ତ୍ୱ ନେଉଥିବା ରାଜକର୍ମଚାରୀ ଛାମୁକରଣ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪୮, ପୂ.ଓ.ଭା. - ପୃ.୧୭୮୬, କ୍ର.ବି.ଓ.ଶ. -ପୃ.୮୨୯) ।

**କୋଠକୁମ୍ଭାର**-*ଦେ.ବି.*- ଶ୍ରୀମନ୍ଦିରର କୁମ୍ଭାର ସେବକ । ଭୋଗ ନିମିତ୍ତମାଟିପାତ୍ର, କୁଡୁଆ ଇତ୍ୟାଦି ଯୋଗାଉଥିବା ସେବାୟତ ।

**କୋଠଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ଖଞ୍ଜାଭୋଗ । 'ଭଅଣ୍ଡ' ବା 'ଭୋଗମଣ୍ଡପ' ଭୋଗ କୋଠଭୋଗ ନୁହେଁ । ତାହା ସରକାରୀ ଭୋଗ କିମ୍ବା ବରାଦି ଭୋଗ । ଦେବତାଙ୍କ ନିକଟରେ ପ୍ରତିଦିନ ଭୋଗ ହେବା ନିମନ୍ତେ ଖଞ୍ଜା ଥିବା ନିର୍ଦ୍ଦିଷ୍ଟ ଭୋଗ । ଏହା ରାଜାଙ୍କ ଦ୍ୱାରା ଖଞ୍ଜା ହୋଇଥାଏ । ଦେବତାଙ୍କ ପାଣ୍ଠିରୁ ଦିଆଯାଏ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କୁ କୋଠଭୋଗଖିଆ ବୋଲି କବିମାନେ ଆଖ୍ୟା ଦେଇଛନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୧-୨୨, ପୂ.ଓ.ଭା. - ପୃ.୧୭୮୬, ଓ.ସାଂ.ଶ. - ପୃ.୯୬, ପ୍ର.ଅ. ୧ମ - ପୃ.୬୦୭) ।

**କୋଠଭୋଗ ପାଣିଆସେବକ**-*ଦେ.ବି.*- 'କୋଠଭୋଗ' ନିମନ୍ତେ ପାଣି ଯୋଗାଉଥିବା ସେବକ । ରୋଷ କୂଅରୁ ପାଣି ଆଣି କୋଠଭୋଗ ରୋଷକୁ ଯୋଗାଇବା, ନୀଳାଦ୍ରି ମହୋତ୍ସବ, ସହସ୍ରକୁମ୍ଭାଭିଷେକ ଓ ପୁଷ୍ୟାଭିଷେକରେ ଜଳ ଯୋଗାଇବା ଏମାନଙ୍କର କାର୍ଯ୍ୟ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୦) ।

**କୋଠଭୋଗ ମଠ**-*ଦେ.ବି.*- ପୁରୀର ଦୋଳମଣ୍ଡପ ସାହିସ୍ଥିତ ଏକ ମଠ । ଏକଦା ଏଠାରେ କୋଠଭୋଗ ସାମଗ୍ରୀ ରଖାଯାଉଥିଲା । ଘିଅ, ଗୁଡ଼, ଅଟା,ମଇଦା, ମସଲା, ଡ଼ାଲି, ଚାଉଳ, ପରିବା, କୋଠଭୋଗ ଡ଼ାଲା, ବିଶୁଦ୍ଧ ଜିନିଷ, ଅମୁଣିଆ ଦ୍ରବ୍ୟ ଏହି ମଠରେ ଜମା ହୋଇଥାଏ ।
(ପୁ.ବୋ. - ପୃ. ୧୬୯) ।

**କୋଠଭୋଗ ଯୋଗାଣିଆ**-*ଦେ.ବି.*- କୋଠଭୋଗ ଯୋଗାଣିଆ- ଠାକୁରଙ୍କ କୋଠଭୋଗ ନିମନ୍ତେ ଅମୁଣିଆ ଭୋଗ ଯୋଗାଇବା ସେବକ । କୋଠ ଗୋଦାମରୁ ଭୋଗ ଜିନିଷ, କାଠୁରିଆଠାରୁ କାଠ ଆଦି ରୋଷ ପାଇକ କିମ୍ବା ଦିଅନ୍ତି । ଚାଉଳ ବଛା କରଣଙ୍କ ପାଖରେ ଚାଉଳ ଦିଅନ୍ତି । ନବାଙ୍କ ଦିନ ଚାଉଳ ମପାଇ ଚାଉଳ ମେଲାଣ କରନ୍ତି ।
(ପୁ.ବୋ. - ପୃ. ୧୬୯) ।

**କୋଠଭୋଗ ରୋଷ**-*ଦେ.ବି.*- ଶ୍ରୀମନ୍ଦିରରେ କୋଠଭୋଗ ରନ୍ଧନ ନିମନ୍ତେ ଶ୍ରୀମନ୍ଦିର ରୋଷଶାଳା ଅନ୍ତର୍ଗତ ଦଶଟି ରୋଷେଇ ଘର ।
(ପୁ.ବୋ.- ପୃ.୧୬୯) ।

**କୋପରା**-*ଦେ.ବି.*- ବଡ଼ସିଂହାର ସମୟରେ ଶ୍ରୀମୁଖ ସିଂହାରୀ ସୁନା କୋପରାରେ (ସୁନା

ଗିନାରେ)କର୍ପୂର ମିଶ୍ରିତ ଜଳରେ 'ଝୋଲି ଲୁଗା' ବୁଡ଼ାଇ ଶ୍ରୀମୁଖମାନ ପୋଛନ୍ତି । (ପୁ.ବୋ. - ପୃ.୧୭୦) ।

**କୋଠସୁଆଁସିଆସେବକ**-*ଦେ.ବି.*- ଶ୍ରୀମନ୍ଦିର ଭିତରେ ବିଭିନ୍ନ ପର୍ବପର୍ବାଣିରେ ଯେତେ ଘର ତିଆରି କରାଯାଇଥାଏ ସେଠାରେ ଏହି ସେବକମାନେ ଚାନ୍ଦୁଆ ବାନ୍ଧିଥାନ୍ତି । ଏମାନେ ଦୋଳପୂର୍ଣ୍ଣିମାରେ ନାଟଘର, ଦୋଳବେଦୀରେ ଚାନ୍ଦୁଆ, ବେଣ୍ଟ ବନ୍ଧାରେ ଚାନ୍ଦୁଆ, ଚନ୍ଦନ ଅନୁକୂଳରେ ଚାନ୍ଦୁଆ ବାନ୍ଧିବା, ହୋମଶାଳା କରିବା, ଜଳକ୍ରୀଡ଼ା ପାଇଁ ଛାମୁଣ୍ଡିଆ କରିବା, ରକ୍ମିଣୀ ବିଭାରେ ଚାନ୍ଦୁଆ, ସ୍ନାନପୂର୍ଣ୍ଣିମାରେ ଚାରମାଳ, ସ୍ନାନ ବେଦୀରେ ଚାନ୍ଦୁଆ (ଧୋପଖାଳ ପରେ), କନକମୁଣ୍ଡି ତିଆରି, ଚକା ଗଡ଼ାଇବା, ତାଟି ବାନ୍ଧିବା, ଫିଟାଇବା, ରଥମଣ୍ଡଣିରେ କାମ କରିବା, କଳସ ଲଦିବା, ରଥ ଉପରକୁ ଚାଙ୍ଗଡ଼ା ଓ ଭଣ୍ଡାର ସିନ୍ଧୁକ ନେବା ଆଣିବା, ଗୁଣ୍ଡିଚା ମନ୍ଦିରକୁ ଖଟଶେଯ ନେବା ଆଣିବା, ବାହୁଡ଼ା ପାଇଁ ଚାରମାଳ ବାନ୍ଧିବା ଫିଟାଇବା, ଏକାଦଶୀରେ ଚାରି ଆଶ୍ରମରେ ଚାନ୍ଦୁଆ, ବଳଭଦ୍ର ଜନ୍ମରେ ଚାନ୍ଦୁଆ, କୃଷ୍ଣ ଜନ୍ମରେ ଦୋଳି ଲଗାଇବା, କାଳି (ସର୍ପ)ର ଗଣ୍ଡି ତିଆରି କରିବା, ସାତପୁରୀରେ ତାଳତାଟ, ଷୋଳ ପୂଜାରେ ଦେବୀଙ୍କ ନିକଟରେ ଛାମୁଣ୍ଡିଆ, ସଙ୍ଖୁଡ଼ି ଭୋଗ ନିମନ୍ତେ ଅସ୍ଥାୟୀ ରୋଷଘର, କାର୍ତ୍ତିକରେ ଗରୁଡ଼ଙ୍କ ନିକଟରେ ଖୁଆଡ଼ ଘର ଆଦି କରିବା, ନବକଳେବରର ସମାଧି ଖୋଳିବା, ବାନ୍ଧିବା, ଟାଣିବା ଆଦି କାର୍ଯ୍ୟ କରୁଥିବା ସେବକ । (ଶ୍ରୀ.ସ୍ୱ. - ପୃ.୨୮/୨୯) ।

**କୋଥଳି**-*ଦେ.ବି.*- ମୋଟା କନାର ଥଳି । ତିଳକ ଓ ପୂଜାର ଉପାଦାନ ରଖିବା ମୁଣି । ପ୍ରାଚୀନ କାଳରେ ଏହାର ବହୁଳ ବ୍ୟବହାର ଥିଲା । (ପୂ.ଓ.ଭା. - ପୃ.୧୭୯୪, ଓ.ସାଂ.ଶ. - ପୃ.୯୬) ।

**କୋରମଣ୍ଡା ବିଶୋଇ**-*ଦେ.ବି.*- ରାଜ କର୍ମଚାରୀ ବିଶେଷ । ସମ୍ପ୍ରତି କେହି ନାହାନ୍ତି । (ପୁ.ବୋ. - ପୃ.୧୭୦) ।

**କୋଦଣ୍ଡ**-*ଦେ.ବି.*- ଧନୁ, ଭ୍ରୁଲତା । ବିବାହ ଶୋଭାଯାତ୍ରାରେ ପୂର୍ବେ ଲୋକେ ସବାରୀ ଓ ପାଲିଙ୍କି ବ୍ୟବହାର କରୁଥିଲେ । ଗଜପତି ମହାରାଜା ଛେରାପହଁରା କରିବା ଲାଗି ଗଲେ ସବାରୀ ବା ତମଯାନରେ ଯାଆନ୍ତି । ଏହି ସବାରୀ ବା ପାଲିଙ୍କିର ସେବକମାନେ ସମାନ ଉଚ୍ଚତା ବିଶିଷ୍ଟ ନ ହୋଇ ବି ପାରନ୍ତି । କେହି କେହି ଅସମାନ ଉଚ୍ଚତା ବିଶିଷ୍ଟ ଥାଆନ୍ତି । ଶ୍ରୀ ଜଗନ୍ନାଥଙ୍କ ବିମାନବାହକ ମଧ୍ୟରେ ମଧ୍ୟ କେହି କେହି ଡ଼େଙ୍ଗା ଗେଡା ଥାଆନ୍ତି । ଏଣୁ ଡ଼େଙ୍ଗାମାନେ ଗେଡ଼ାଲୋକଙ୍କ ସହ କାନ୍ଧ ମିଶାଇ ସବାରୀ ବାହିବାକୁ ହେଲେ ସେମାନଙ୍କୁ ଧନୁ ପରି ବଙ୍କା ହେବାକୁ ପଡ଼େ । ଏହି ନଇଁ ପଡ଼ିବା ଅବସ୍ଥାକୁ 'କୋଦଣ୍ଡ' କୁହାଯାଏ । (ଓ.ସାଂ.ଶ. - ପୃ. ୯୬) ।

**କୋରା**-*ଦେ.ବି.*- କୋରା ହୋଇଥିବା ନଡ଼ିଆ ଶସର କ୍ଷୁଦ୍ର କ୍ଷୁଦ୍ର ଅଂଶବିଶେଷ । ଗୁଡ଼ ବା ଚିନିରେ ପାଗ ହୋଇ ଅଳେଇଚ ସହ ନଡ଼ିଆ କୋରାରେ ପ୍ରସ୍ତୁତ ଏକ ମିଷ୍ଟାନ୍ନ । ଶ୍ରୀମନ୍ଦିରର ବିଗ୍ରହମାନଙ୍କ ମାଜଣା ଓ ଏକାନ୍ତରେ ଏହା ଭୋଗ ହୋଇଥାଏ । ପଙ୍‌କ୍ତି ଭୋଗରେ, ବିମଳା ଠାକୁରାଣୀଙ୍କଠାରେ, ଗର୍ଭଣା ସଂକ୍ରାନ୍ତିରେ, ଝୁଲଣରେ, ଗଣେଶ ଚତୁର୍ଥୀ ପ୍ରଭୃତି ପୂଜାରେ କୋରା ଅନ୍ୟାନ୍ୟ ମିଷ୍ଟାନ୍ନ ସହିତ ବ୍ୟବହୃତ ହୁଏ । ବାହାର ବେଢ଼ାରେ ଥିବା ଏକ ଘରେ ଅମଣିଆ କୋରା ଭୋଗ ତିଆରି ହୁଏ । (ଶ୍ରୀ.ସ୍ୱ. - ପୃ.୨୫୨) ।

**କୋଳି ବିକା**-*ଦେ.କ୍ରି.*- ଭାଦ୍ର କୃଷ୍ଣ ଦଶମୀ ତିଥିରେ ଠାକୁର ରାମକୃଷ୍ଣ ବଡ଼ଛତା ମଠ ଆଗରେ କାଠ ସିଂହାସନ ଉପରେ ବିଜେ ହେବା ପରେ ଜଣେ ଲୋକ ଶବରୁଣୀ ବେଶ ହୁଏ । ଗୁଆ କୋଳି ନଡ଼ିଆ ମିଶାଇ ଏକତ୍ର କରି ନିମ୍ନମତେ ଡ଼ାକେ- "ପାଣିର ଫଳ

ସିଙ୍ଗଡ଼ାର କୋଳି-ଖାଇବ ଆସ ଏ ପୁଏ" । ଭିତରଛ ମହାପାତ୍ର ଉକ୍ତ ଶବରୁଣୀଠାରୁ କୋଳି ନେଇ ରୂପା ପିଙ୍ଗଣରେ ରଖି ରାମକୃଷ୍ଣଙ୍କୁ ସମର୍ପଣ କରି ମଣୋହି କରାନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ.୯୧) ।

**କୋଷ ରକ୍ଷକ**-*ଦେ.ବି.*- ଶ୍ରୀ ମନ୍ଦିରର କୋଠରୀ, ମେକାପ ସେବକ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୦୯) ।

**କୃତ୍ତିକା ଦୀପାବଳୀ**-*ଦେ.ବି.*- ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ ଦିନ ସନ୍ଧ୍ୟାଧୂପ ବଢ଼ିଲା ପରେ ସୁଧୁସୁଆର ସିଂହାସନ ତଳେ ପାଣିରେ ସଫା କରିବା ପରେ ଭଣ୍ଡାର ମେକାପ ଚାଉଳରେ ଗୋଟିଏ କଦମ୍ବ ଗଛ ସିଂହାସନ ତଳେ କରନ୍ତି । ଗଛର ମୂଳ ବଡ଼ଠାକୁର ବାଡ଼କୁ ଓ ଆଗ ପରମେଶ୍ୱର ବାଡ଼କୁ ହୁଏ । ଗଛ ମୂଳରେ ଘିଅ ଦୀପ ନଅଟି ବସେ, ମଧ୍ୟରେ ନଅଟି ଓ ଆଗରେ ନଅଟି, ଏହି ରୂପେ ସତେଇଶିଟି ଦୀପ ଓ ତିନି ଗୋଟି ସୁନା କର୍ପୂର ଆଳତି ମୋଟରେ ତିରିଶିଟି ବସେ । ପଣ୍ଡା ଚାଉଳ ସଂସ୍କାର କରି ପୂଜା କଲା ପରେ ସିଂହାସନ ଉପରକୁ ଉଠି ପଣ୍ଡା, ପତି, ମୁଦିରସ୍ତ ବନ୍ଦାପନା କରନ୍ତି । ତିନି ଜଣ ପାଳିଆପଣ୍ଡା ମହାଦୀପ ହାତରେ ଧରି ଜୟବିଜୟ ଦ୍ୱାର ଭିତର ପାଖେ ଆସ୍ଥାନ ପଢ଼ିଆରୀ କରିଥିବା ଚାଉଳଘରକୁ ସଂସ୍କାର କରି ପାଣି ଛଡ଼ାନ୍ତି । ସତେଇଶଟି ମହାଦୀପକୁ ଚୂନରା ହାତକୁ ଦିଅନ୍ତି । ଏ ଉତ୍ତାରେ ଚୂନରା ବଡ଼ଦେଉଳ ଉପରେ ମହାଦୀପ ଜାଳନ୍ତି ଓ ଚନ୍ଦ୍ର ଉଦିଆ ଜାଳି ରାଜାଙ୍କୁ ଆଶୀର୍ବାଦ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୦୨, ମା.ପା. - ପୃ. ୬୧) ।

**କୃଷ୍ଣ**-*ସଂ.ବି.*- ବିଷ୍ଣୁଙ୍କର ଅଷ୍ଟମ ଅବତାର । ବସୁଦେବ ଓ ଦେବକୀଙ୍କ ସନ୍ତାନ । ନନ୍ଦଗୃହରେ ଯଶୋଦାଙ୍କ ପୁତ୍ର ରୂପରେ ପରିପାଳିତ । କଂସାଦି ଅସୁରମାନଙ୍କର ସଂହାରକ । ରାଧା ଓ ଗୋପୀମାନଙ୍କ ପ୍ରେମିକ, ପାଣ୍ଡବଙ୍କ ସହାୟକ ଓ ଅର୍ଜ୍ଜୁନଙ୍କର ସଖା ଥିଲେ । ଏହାଙ୍କର ଲୌକିକ ଜୀବନ ତିନିଭାଗରେ ବିଭକ୍ତ -୧) ବ୍ରଜଲୀଳା, ୨) ମଥୁରାଲୀଳା, ୩) ଅନ୍ତ୍ୟଲୀଳା (ଦ୍ୱାରିକା ଓ ପ୍ରଭାସ ଲୀଳା) । ଶ୍ରୀକୃଷ୍ଣ ଓ ଶ୍ରୀ ଜଗନ୍ନାଥଙ୍କ ମଧ୍ୟରେ ଅଭେଦତ୍ୱ ପରିକଳ୍ପନା କରାଯାଇଛି । ମହାଭାରତରେ କୁହାଯାଇଛି 'କୃଷ୍ଣସ୍ତୁ ଭଗବାନ୍ ସ୍ୱୟଂ' - କୃଷ୍ଣ (ଜଗନ୍ନାଥ) ହେଉଛନ୍ତି ସ୍ୱୟଂ ଭଗବାନ ।

(ଶ୍ରୀ.ସ୍ୱ. - ପୃ. ୮୯, ପୂ.ଓ.ଭା. - ପୃ.୧୭୩୪, ଓ.ସାଂ.ଶ. - ପୃ.୯୨) ।

**କୃଷ୍ଣ ଚତୁର୍ଦ୍ଦଶୀ**-*ଦେ.ବି.*- ଭାଦ୍ରବ କୃଷ୍ଣ ଚତୁର୍ଦ୍ଦଶୀ । ଏ ଦିନ କୃଷ୍ଣଜନ୍ମ ଯାତ୍ରା ହୋଇଥାଏ । ଦ୍ୱିପ୍ରହର ଧୂପ ପରେ କୁମ୍ଭାରପଡ଼ା ଆଲାମଚଣ୍ଡୀ ମନ୍ଦିରରୁ କୁମ୍ଭାର ବିଶୋଇମାନେ ବାଘମୁହାଁ ବାନ୍ଧି ସାତପୁରି, ତାଡ ଓ ପିଠା ଆଣି ଶ୍ରୀମନ୍ଦିର ଅଚିନ୍ତାପହଣ୍ଡ ପାଖେ ରଖନ୍ତି ଓ ତାହା ଠାକୁରଙ୍କୁ ଭୋଗ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ.୯୩) ।

**କୃଷ୍ଣଜନ୍ମ**-*ସଂ.ବି.*- ଶ୍ରୀକୃଷ୍ଣ ବିଷ୍ଣୁଙ୍କର ଅଷ୍ଟମ ଅବତାର । ଭାଦ୍ରବ କୃଷ୍ଣ ଅଷ୍ଟମୀ ତିଥିରେ ତାଙ୍କର ଜନ୍ମ । ଏ ଦିନ ବୈଷ୍ଣବମାନଙ୍କର ବ୍ରତ । ଶ୍ରୀମନ୍ଦିରରେ ଏହି ଦିନ ସନ୍ଧ୍ୟା ଧୂପ ବେଶରେ ତଢ଼ାଉ ୬ ମୂର୍ତ୍ତି ଲାଗି ହୁଅନ୍ତି । ସନ୍ଧ୍ୟା ଧୂପ ପରେ ଜୟବିଜୟ ଦ୍ୱାର ବନ୍ଦ ହୁଏ । ଦୁଆର ଆଗରେ ପଞ୍ଚବର୍ଣ୍ଣ ମୁରୁଜରେ ସର୍ବତ୍ର ଭଦ୍ର-ମଣ୍ଡଳ ଲେଖା ହୁଏ । ସୁଦୁସୁଆର ମଣ୍ଡଳ ପାଖରେ ପୂଜା କରନ୍ତି । ଚିତ୍ରକାର ଗୋଟିଏ କୃଷ୍ଣଜନ୍ମ ପଟି ଦେଇଥିବା ବଣିଆ ଦେବା ରୂପା ପଦ୍ମ ପାଖୁଡ଼ା ମଣ୍ଡଳ ଉପରେ ପଣ୍ଡା ରଖନ୍ତି । ପାଖୁଡ଼ାରେ ନଅମୂର୍ତ୍ତି ଚିତ୍ର ଥାଏ । ଦେବକୀ, ବସୁଦେବ, ନନ୍ଦ, ଯଶୋଦା, ଲକ୍ଷ୍ମୀ, ଉଗ୍ରସେନ, ବଳଭଦ୍ର, ଗାର୍ଗବ ଋଷି ଓ କୃଷ୍ଣ । ଗୋଟିଏ କୃଷ୍ଣ ମୂର୍ତ୍ତି (ସୁନା ପ୍ରତିମା) ମଣ୍ଡଳ ଉପରେ ରଖି ନଅଟି ପନ୍ତି ଭୋଗ ବଢ଼ା ହୁଏ । ଏହା ପରେ ଅନ୍ୟାନ୍ୟ ବିଧିବିଧାନରେ ପୂଜା ହେଲା ପରେ ଦୁଇଜଣ ମହାଜନ ଲୁଗା ଘୋଡ଼ାଇ ହୋଇ ଦେବକୀ ବସୁଦେବ ବେଶ ହୋଇ

ଜନ୍ମଚକଡ଼ାଠାରେ ଶ୍ରୀକୃଷ୍ଣଙ୍କୁ ଜନ୍ମ କରାନ୍ତି । ମୁଦିହସ୍ତେ ପ୍ରସାଦ ଲାଗି କରାନ୍ତି । ତା ପରେ ମଣୋହୀ ହୁଏ ଏବଂ କର୍ପୂର ଆଳତି ହୁଏ । ଏହା ପରେ ଭଣ୍ଡାର ମେକାପ ଦେଇଥିବା ରୂପା ଥାଳିରେ କୃଷ୍ଣ (ମଦନମୋହନ) ବିଜେ ହୋଇ ମହାଜନ ହାତରେ ଦେବକୀ ବସୁଦେବ ସଙ୍ଗେ ଜଗମୋହନ ଦେଇ ସରସ୍ୱତୀଙ୍କ ଆଗ ଯମୁନା ବେଦୀଠାରେ ବିଜେ କରାନ୍ତି । ପୂଜା ପଣ୍ଡା ବଂଶରୁ ଜଣେ ଉଗ୍ରସେନ ବେଶରେ ଭେଟ ହୋଇ ଦଣ୍ଡ ପ୍ରଣାମ କରନ୍ତି । ବେହେରା ଖୁଣ୍ଟିଆ ଠାକୁରଙ୍କ ଶିର ଉପରେ ସପ୍ତଫେଣା ବାସୁକୀ ଧରି ଚାଲନ୍ତି । ଉଗ୍ରସେନ ଦଣ୍ଡ ପ୍ରଣାମ ପରେ ମୁଦିରସ୍ତ ପ୍ରସାଦ ଲାଗି ଓ ବନ୍ଦାପନା କରନ୍ତି । ଏହା ପରେ ଠାକୁର ଘଣ୍ଟା, ଛତା, କାହାଳୀ ସହ ନାଭିକଟା ମଣ୍ଡପଠାରେ ଖଟଶେଯ ଉପରେ ବିଜେ କରନ୍ତି । ଦକ୍ଷିଣ ଘରୁ ରାମକୃଷ୍ଣଙ୍କୁ ଆଣି ଶେଯରେ ବିଜେ କରାହୁଏ । ପଣ୍ଡା ବସୁଧାରା ଦେଇ କୁଶରେ ନାଭିଛେଦନ କରି ପଞ୍ଚାମୃତରେ ମହାସ୍ନାନ କରାନ୍ତି । ପଞ୍ଚୋପଚାର, ଶୀତଳଭୋଗ (କୋଠ ରାଶିଲଡୁ) ମଣୋହି ପରେ ବନ୍ଦାପନା ହୁଏ । ଏହା ପରେ ଷୋଡ଼ଷ ଉପଚାର ପୂଜା, ମଣୋହି ଓ ବନ୍ଦାପନା କରାଯାଏ । ଶ୍ରୀମନ୍ଦିରରେ ଏହି ଉତ୍ସବ ବିଧିମତେ ମହାସମାରୋହରେ ପାଳିତ ହୋଇଥାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୮୯, ପୂ.ଓ.ଭା. - ପୃ.୧୭୩୮) ।

**କୃଷ୍ଣବଳରାମ ବେଶ**-*ଗ୍ରା.ବି.*- ଶ୍ରୀମନ୍ଦିରରେ ଭାଦ୍ର କୃଷ୍ଣ ତ୍ରୟୋଦଶୀ ଦିନ ଠାକୁର କୃଷ୍ଣବଳରାମ ବେଶ ହୁଅନ୍ତି । ଏହି ବେଶରେ ଜଗନ୍ନାଥଙ୍କୁ କୃଷ୍ଣ ଭାବରେ ବଳଭଦ୍ରଙ୍କୁ ବଳରାମ ଭାବରେ ସୁସଜ୍ଜିତ କରାଯାଏ । ସୁଭଦ୍ରା ଚତୁର୍ଭୁଜ ଧାରଣ କରି ପଦ୍ମାସନରେ ପାଶ, ଅଙ୍କୁଶ, ଅଭୟ, ବରଦ ଧାରଣ କରି ଉପବେଶନ କରନ୍ତି । ଉଭୟ କୃଷ୍ଣ (ଜଗନ୍ନାଥ) ଏବଂ ବଳରାମ (ବଳଭଦ୍ର) କାଠ ନିର୍ମିତ ଦୁଇଗୋଡ଼ ଲଗାଇ ଦୁଇଗୋଡ଼କୁ ଛନ୍ଦି ରହିଥାନ୍ତି । ଜଗନ୍ନାଥଙ୍କର ଗୋଟିଏ ହାତରେ ସୁବର୍ଣ୍ଣ ବଂଶୀ ଓ ଅନ୍ୟ ହସ୍ତରେ ପଦ୍ମ ଥାଏ । ବଳରାମଙ୍କ ଡାହାଣ ହାତରେ ଶିଙ୍ଗା ଓ ବାମ ହସ୍ତରେ ପଦ୍ମ ଥାଏ । କିରୀଟ ଉପରେ ସୋଲରେ ନିର୍ମିତ ସପ୍ତଫେଣିଆ ସର୍ପ ବିରାଜମାନ କରିଥାଏ । ହସ୍ତ ମଧ କାଠରେ ନିର୍ମିତ । ଏହି ବେଶରେ ଜଗନ୍ନାଥ ଓ ବଳଭଦ୍ର ଗୋଟିଏ ଗୋଟିଏ ପାଗ ପିନ୍ଧିଥାନ୍ତି । ସେହି ପାଗ ଦ୍ୱୟ କିରୀଟଯୁକ୍ତ ହୋଇଥାଏ । ରତ୍ନସିଂହାସନ ଉପରେ ଖଞ୍ଜାଯାଇଥିବା ଏକ କ୍ଷୁଦ୍ର କାଷ୍ଠ ନିର୍ମିତ ତଥା ଜରି ଜମ୍ବୁରାରେ ଆଚ୍ଛାଦିତ ସିଂହାସନରେ ଚକାମୁଣ୍ଡି ପକାଇ ପ୍ରଭୁ (ପଦ୍ମାସନରେ) ଉପବେଶନ କରନ୍ତି । ବାଙ୍କଚୂଳ କିରୀଟ ଉପରେ ପତ୍ରଲଗା କଦମ୍ବ ଫୁଲ ଶୋଭା ପାଏ । ଶ୍ରୀପୟର, ପାଉଜି, ବାଙ୍କି, ପାହୁଡ଼, ଗୋଡ଼ମୁଦି, ମଲ୍ଲୀକଡ଼, ଚନ୍ଦ୍ରଚିତା, ନାକଚଣା, ହାତଫେର, ଖଡୁ ଇତ୍ୟାଦିରେ ସାରା ଶରୀର ଶୋଭା ପାଇଥାଏ । ସୁଭଦ୍ରାଙ୍କ ମସ୍ତକରେ ମଧ ଏକ କିରୀଟ ଶୋଭାପାଏ । ସବୁ ଠାକୁରଙ୍କ କିରୀଟରେ କଦମ୍ବଫୁଲ ଆଉ ପତ୍ର ବହୁପରିମାଣରେ ଲାଗିଥାଏ । ଉଭୟ ବଳଭଦ୍ର ଓ ଜଗନ୍ନାଥଙ୍କ ଦୁଇପାର୍ଶ୍ୱରେ ନନ୍ଦ, ଉପନନ୍ଦ, ବସୁଦେବ, ଗୋପାଳ ବାଳକମାନେ, ଗୋପୀ, ବ୍ରହ୍ମା, ସହସ୍ର ଚକ୍ଷୁ ଇନ୍ଦ୍ର, ନାରଦ, ରୋହିଣୀ, ଯଶୋଦାଙ୍କୁ ଦଣ୍ଡାୟମାନ ଭଙ୍ଗୀରେ ରଖାଯାଏ । ଠାକୁରଙ୍କ ଆଗରେ ଚାରିଗୋଟି ଗାଈ ଦଣ୍ଡାୟମାନ ଭଙ୍ଗୀରେ ଠିଆ ହୋଇଥାନ୍ତି । ଏହି କୃଷ୍ଣବଳରାମ ବେଶ ଦ୍ୱିପ୍ରହର ଧୂପ ପରେ ଆରମ୍ଭ ହୋଇ ସନ୍ଧ୍ୟା ଧୂପ ପର୍ଯ୍ୟନ୍ତ ରହେ । ଏହି ବେଶରେ କ୍ଷୀରି ଓ ଅମାଲୁ ଭୋଗ ଲାଗେ । କୃଷ୍ଣ ବଳରାମ ବେଶ ଥାଇ ଠାକୁରଙ୍କ ସନ୍ଧ୍ୟାଧୂପ ହୁଏ । ତା'ପରେ

ସାହାଣମେଲା ସାଧାରଣ ଦର୍ଶନ ପାଇଁ କରାଯାଏ । ଏହି ବେଶର ସାମଗ୍ରୀଗୁଡ଼ିକ ଶ୍ରୀମନ୍ଦିରସ୍ଥ ନୀଳାଚଳ ଉପବନ ପଛପାର୍ଶ୍ୱରେ ଏକ ସ୍ୱତନ୍ତ ବେଶ କୋଠରୀରେ ସାଇତି ରଖାଯାଇଛି । ଏହି ବେଶରେ ଜଗନ୍ନାଥଙ୍କୁ କୃଷ୍ଣ ଓ ବଳରାମଙ୍କୁ ରାମ (ବଳରାମ) ଭାବରେ ପରିକଳ୍ପନା କରାଯାଇଛି । ସୁଭଦ୍ରା ଚତୁଃହସ୍ତ ଶୋଭିନୀ ଦେବୀ ଭାବରେ ପରିକଳ୍ପନା କରାଯାଇ ତାଙ୍କର ଚାରିଗୋଟି ହସ୍ତରେ ପାଶ, ଅଙ୍କୁଶ, ଅଭୟ ଓ ବରଦ ରଖାଯାଇଛି । ସେ ଧ୍ୟାନରତା ତେଣୁ ଭୁବନେଶ୍ୱରୀ ଭାବରେ ପ୍ରତୀୟମାନ ହୁଅନ୍ତି । ପୂର୍ବରୁ ହେଉଥିବା ଗିରିଗୋବର୍ଦ୍ଧନ ବେଶ ସ୍ଥଳେ ଏହି ବେଶ ଏବେ କରାଯାଉଛି । ପୂର୍ବେ ଏହି ତିଥିରେ ଓଡ଼ିଆ ମଠ ତରଫରୁ ଗିରିଗୋବର୍ଦ୍ଧନ ବେଶ କରାଯାଉଥିଲା । ଏହି ଦିନ ସନ୍ଧ୍ୟା ଧୂପ ପରେ ପାଣି ପଡ଼ିବା ପରେ ଦକ୍ଷିଣି ଘରୁ ମଦନମୋହନ ଭିତରକୁ ବିଜେ କରି ଆଜ୍ଞାମାଳ ପାଇ ମହାଜନ ହାତରେ ଜଗମୋହନ ଖଟରେ ବିଜେ କରନ୍ତି । ଗୌଡ଼ବାଡ଼ ସାହି ଲୋକେ ଅନ୍ନ ପ୍ରଥା ପ୍ରସ୍ତାବ କରନ୍ତି । ଏହା ପରେ ଶୀତଳ ଭୋଗ ହୋଇ ବନ୍ଦାପନା ସାରି ଦକ୍ଷିଣି ଘରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୯୨, ଶ୍ରୀଜ.ବେ.ର. - ପୃ. ୬୦) ।

**କୃଷ୍ଣଲୀଳା**-*ଦେ.ବି.*- ବିଷ୍ଣୁଙ୍କ ଅଷ୍ଟମ ଅବତାରରେ ଶ୍ରୀକୃଷ୍ଣ ଧରଣୀରେ ଜନ୍ମ ଗ୍ରହଣ କରି ଯେଉଁ କାର୍ଯ୍ୟମାନ କରିଥିଲେ ତାହା ଗୋପଲୀଳା, ମଥୁରାଲୀଳା, ଦ୍ୱାରକାଲୀଳା ଏବଂ ସର୍ବୋପରି କୃଷ୍ଣଲୀଳା ନାମରେ ପରିଚିତ । ଭାଦ୍ରବ ଶୁକ୍ଳ ଷଷ୍ଠୀ ତିଥିରେ ସନ୍ଧ୍ୟା ଧୂପ ପରେ ମଦନମୋହନ ନାଟପା ମନ୍ଦିର ଖଟ ଉପରେ ବିଜେ କଲେ ମାର୍କଣ୍ଡେଶ୍ୱର ସାହିର ଲୋକେ ବିମ୍ବାସୁରବଧ ପ୍ରସ୍ତାବ କରନ୍ତି । ପୂର୍ବଦିନମାନଙ୍କ ପରି ଶୀତଳ ଭୋଗ ବନ୍ଦାପନା ହୋଇ ଫେରିଲା ପରେ ସପ୍ତମୀଦିନ କାଳୀକା ଦେବୀ ସାହି ଲୋକେ କେଶିବଧ ପ୍ରସ୍ତାବ କରନ୍ତି । ଏ ସମସ୍ତ ଲୀଳା କୃଷ୍ଣଲୀଳା ନାମରେ ପରିଚିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୪) ।

**କୃଷ୍ଣାଗୁରୁ ବୃକ୍ଷ**-*ସଂ.ବି.*- କୃଷ୍ଣାଗୁରୁ ବୃକ୍ଷ ହେଉଛି କଳାରଙ୍ଗର ଚନ୍ଦନ ବୃକ୍ଷ । ଏହି ବୃକ୍ଷକୁ ମଧ 'ହରିଚନ୍ଦନ' ବୋଲି କହିଥାନ୍ତି । ପ୍ରମାଣ ମିଳେ ଯେ ନୀଳମାଧବ ୮୪ ଅଙ୍ଗୁଳ ବିଶିଷ୍ଟ ପ୍ରତିମା ଏହି କୃଷ୍ଣାଗୁରୁ ବୃକ୍ଷମୂଳେ ବିରାଜମାନ କରିଥିଲେ ।
(ଶ୍ରୀମନ୍ଦିର, ଜୁଲାଇ, ୧୯୮୯, ପୃ. ୬୫) ।

**କ୍ଳୀଂ**-*ଦେ.ବି.*- ଜଗନ୍ନାଥ ବା ଶ୍ରୀକୃଷ୍ଣଙ୍କ କାମବୀଜ,ଏକ ବୀଜମନ୍ତ ।
(ଓ.ସାଂ.ଶ. - ପୃ.୯୭, ପୂ.ଓ.ଭା. - ପୃ.୧୮୪୧, ପ୍ର.ଅ. - ପୃ.୬୨୭) ।

**କୈବଲ୍ୟ**-*ସଂ.ବି.*- କେବଳ ଭାବ । ଦେହ ଓ ଇନ୍ଦ୍ରିୟ ତ୍ୟାଗ କରି ଆତ୍ମାର କେବଳତ୍ୱ । ପରମାତ୍ମାଙ୍କ ସହିତ ଜୀବାତ୍ମାର ମିଳନ । ପୂର୍ଣ୍ଣାନନ୍ଦ । ଅଖଣ୍ଡ ଆନନ୍ଦ । ସଂସାର ମୁକ୍ତି, ଦୁଃଖ ନିବୃତ୍ତି ରୂପ ମୋକ୍ଷ । ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥଙ୍କର ଅନ୍ନଭୋଗ ବା ମହାପ୍ରସାଦ । କଳିଯୁଗରେ ଶ୍ରୀଜଗନ୍ନାଥଙ୍କର କୈବଲ୍ୟ (ମହାପ୍ରସାଦ) କଣିକା ମୁମୂର୍ଷୁ ଲୋକଙ୍କ ମୁହଁରେ ଦେଇ ପରଲୋକ ପ୍ରାପ୍ତିର ପଥ ସୁଗମ କରିଦିଆଯାଏ ।
(କୃ.ବି.ଓ.ଶ. - ପୃ.୧୪୯, ପୂ.ଓ.ଭା. - ପୃ.୧୨୦୧) ।

**କୈବଲ୍ୟ ହାଟ**-*ଦେ.ବି.*- କୈବଲ୍ୟ ବିକ୍ରୀ ହେବା ସ୍ଥାନ ଅର୍ଥାତ୍ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ ଥିବା ଆନନ୍ଦ ବଜାର ।
(କ୍ଷେ.ସ.) ।

**କୈବଲ୍ୟ ପସରା**-*ଦେ.ବି.*- କୈବଲ୍ୟ ବିକ୍ରୀ ନିମନ୍ତେ ବିଭିନ୍ନ ଦ୍ରବ୍ୟ କୁଡୁଆ, ହାଣ୍ଡିରେ ଏକତ୍ର ରଖିବା ପାତ୍ର ।
(କ୍ଷେ.ସ.) ।

**କୈଳାସ ଘଟଣା**-*ଦେ.ବି.*- ଏକ ପ୍ରକାର ମନ୍ଦିର ନିର୍ମାଣ ପଦ୍ଧତି । ଶ୍ରୀବତ୍ସ ଖଣ୍ଡଶାଳ ।
(କ୍ଷେ.ସ.) ।

**କୈଳାସପତି ମହାଦେବମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ାରେ ଗୋପେଶ୍ୱର ମନ୍ଦିରର ଉତ୍ତର ପାର୍ଶ୍ୱରେ କୈଳାସପତି ମହାଦେବଙ୍କ ମନ୍ଦିର ଅବସ୍ଥିତ । ଏକ ଉଚ୍ଚ ସିଂହାସନରେ ଦେବଦେବ ମହାଦେବ ଉପବେଶନ କରିଛନ୍ତି । ପାର୍ବତୀ, ଗଣେଶ, କାର୍ତ୍ତିକେୟ, ନନ୍ଦୀ, ଭୃକୁଟୀ ଏବଂ କୈଳାସବାସୀଗଣ ଏଠାରେ ବିରାଜିତ । ଅଣସର ସମୟରେ ଲଗା ଯାଉଥିବା ଶିବ, ମହାଲକ୍ଷ୍ମୀ ଓ ବୈଷ୍ଣବ ମୂର୍ତ୍ତି ଚିତ୍ରିତ ତାଟି ଏହିଠାରେ ରଖାଯାଏ । କ୍ରମ କରି ଶିବ, ମହାଲକ୍ଷ୍ମୀ ଓ ବିଷ୍ଣୁଚିତ୍ର ରଖାଯାଉଥିବାରୁ ବଳଭଦ୍ରଙ୍କୁ ଶିବ, ସୁଭଦ୍ରାଙ୍କୁ ମହାଲକ୍ଷ୍ମୀ ଓ ଜଗନ୍ନାଥଙ୍କୁ ବିଷ୍ଣୁ ଭାବରେ ପରିକଳ୍ପନା କରାଯାଇଛି ।
(ଓ.ସାଂ.ଶ. - ପୃ. ୭୨) ।

**କୌମୋଦକୀ**-*ସଂ.ବି.*- ବିଷ୍ଣୁଙ୍କର ଗଦା । ଏହା ବରୁଣ ଶ୍ରୀବିଷ୍ଣୁଙ୍କୁ ଦେଇଥିଲେ । ଖାଣ୍ଡବ ବନ ଦହନ ସମୟରେ ଅଗ୍ନି ବରୁଣଙ୍କଠାରୁ ଏହି ଗଦା ଏବଂ ସୁଦର୍ଶନ ଚକ୍ର ଆଣି କୃଷ୍ଣଙ୍କୁ ପ୍ରଦାନ କରିଥିଲେ ।
(ପୂ.ଓ.ଭା. - ପୃ.୧୮୧୮, ଶ.କ.ଦ୍ରୁ ୨ୟ ପୃ. ୨୦୯, ପୌ(ବ) ୧ମ- ପୃ. ୪୧୬) ।

**କୌମୁଦୀ ମହୋତ୍ସବ**-*ଦେ.ବି.*- କୁମାରପୂର୍ଣ୍ଣିମା ଦିନ ପୁରୀରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଫୁଲ, ଚନ୍ଦନ, କର୍ପୂର ଦ୍ୱାରା ଅର୍ଚ୍ଚନା କରି ରାତ୍ରିରେ ନାନା ପ୍ରକାରର ପିଠା, ନାରିକେଳ ପଣା ଦେଇ ପୂଜା କରିବାର ଉତ୍ସବ ।
(ଓ.ସାଂ.ଶ. - ପୃ.୯୭, ଶ୍ରୀ.ସ୍ୱ. ୨ୟ - ପୃ.୯୯/୧୦୦, ପୂ.ଓ.ଭା. - ପୃ. ୧୮୧୮) ।

●

# ଖ

**ଖଇ**-*ଦେ.ବି.*- ଧାନକୁ ଭାଜିଲେ ଖଇ ହୁଏ । ଶ୍ରୀଜଗନ୍ନାଥଙ୍କ ଝୁଲଣ ଯାତ୍ରାରେ ଏହା ଭୋଗ କରାଯାଏ ।
(ଶ୍ରୀ.ସ୍ୱ. - ପୃ. ୧୯୨, ପୂ.ଓ.ଭା. - ପୃ.୧୮୮୦) ।

**ଖଇର ଚୂଳ**-*ଦେ.ବି.*- ଶ୍ରୀମନ୍ଦିରରେ ଏକପ୍ରକାର ପିଷ୍ଟକ ବିଶେଷ । ଚାଉଳଚୁନା, ଗୁଡ଼ ଓ ଗୋଲମରିଚରେ ତିଆରି ବଡ଼ଚୂଳିଆ ଲଡୁ । ଏହା ଠାକୁରଙ୍କର କୋଠଭୋଗରେ ଓ ଦ୍ୱିପ୍ରହର ଧୂପରେ ଲାଗିହୁଏ । ଏତଦ୍‌ବ୍ୟତୀତ ଅନେକ ବିଶିଷ୍ଟ ପୂଜାପର୍ବରେ ମଧ ଠାକୁରଙ୍କ ଭୋଗରେ ଲାଗି କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୯୩, ୧୯୪, ୧୯୧, ୧୯୦, ୧୮୯, ୧୮୫, ୧୮୩, ୧୮୨, ୧୮୦, ୧୮୧, ୧୭୯, ୧୭୭, ପୂ.ଓ.ଭା.- ପୃ.୧୮୮୩) ।

**ଖଜା**-*ଦେ.ବି.*- ମଇଦା, ଚିନି ଓ ଘିଅରେ ତିଆରି ହୋଇଥିବା ପିଠା । ମକର ସଂକ୍ରାନ୍ତିରେ ଦେବତାଙ୍କୁ ଖଜା ବା ତିଲୁଆ ଭୋଗ ହୁଏ । ଏହାକୁ ଫେଣି ବୋଲି କୁହାଯାଏ ।
(କୃ.ବି.ଓ.ଶ.- ପୃ.୨୩୬, ପୂ.ଓ.ଭା. - ପୃ.୧୮୯୧, ପ୍ର.ଅ. ୧ମ - ପୃ.୬୪୬) ।

**ଖଞ୍ଜାଜମି**-*ଦେ.ବି.*- ଶ୍ରୀମନ୍ଦିରର ସେବକମାନଙ୍କ ପାଇଁ ଜମିଖଞ୍ଜା ଯାଇଛି । ସେମାନେ ଠାକୁରଙ୍କ ସେବା କରି ଖଞ୍ଜାଜମି ଭୋଗଦଖଲ କରନ୍ତି । ସେବାୟତମାନଙ୍କୁ ସେମାନଙ୍କର ଜୀବିକା ନିର୍ବାହ କରିବା ନିମନ୍ତେ ପାରିଶ୍ରମିକ ପ୍ରତିବଦଳରେ କିଛି ଜମି ଯୋଗାଇ ଦିଆଯାଇଥାଏ । ଏହାକୁ ଖଞ୍ଜା ଜମି କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬) ।

**ଖଟଣି**-*ଦେ.ବି.*- ବରାଦିଆ ମହାପ୍ରସାଦ । ଦେବତାଙ୍କ ନିକଟରେ ଖଞ୍ଜାଥିବା ଦୈନିକ ଭୋଗ । ରାଜା ଓ ଦେବତାଙ୍କ ସେବାରେ ନିୟୋଜିତ ଭୃତ୍ୟ ଦଳଙ୍କୁ ଖଟଣିଆ କହନ୍ତି । ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ସେବାକାରୀଙ୍କୁ କାବ୍ୟସାହିତ୍ୟରେ ଖଟଣି ସାମନ୍ତ ବୋଲି କୁହାଯାଏ ।
(ପୁ.ବୋ. - ପୃ.୧୭୧, ପୂ.ଓ.ଭା. - ପୃ.୧୮୯୯, କୃ.ଓ.ଶ.- ପୃ.୨୩୭, ପ୍ର.ଅ. - ୧ମ - ପୃ.୬୪୮) ।

**ଖଟଣି ବୈଷ୍ଣବ**-*ଦେ.ବି.*- ଶ୍ରୀମନ୍ଦିରର ବଡ଼ଛତା ମଠର ସାଧୁସନ୍ଥ । ଶ୍ରୀମନ୍ଦିରରେ ପ୍ରଭୁଙ୍କ ମଙ୍ଗଳ ଆଳତିରେ ଠାକୁରଙ୍କ ନାମ ଭଜନ କରନ୍ତି ।

**ଖଟଣି କିଙ୍କର**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଅଙ୍ଗ ଲଗା ସେବକ । ଆଜ୍ଞାକାରୀ ଭୃତ୍ୟ ।
(ଓ.ସାଂ.ଶ.- ପୃ. ୯୯) ।

**ଖଟଶେଯ ମେକାପସେବା**-*ଦେ.ବି.*- ଶ୍ରୀମନ୍ଦିରର ଠାକୁରଙ୍କ ରତ୍ନ ପଲଙ୍କ ଦାୟିତ୍ୱରେ ଥିବା ସେବକ । ରାତ୍ର ପହୁଡ଼ ସମୟରେ ଜୟବିଜୟ ଦ୍ୱାରରେ ତମ୍ବରୁ ପକାନ୍ତି । ତା'ପରେ ଶୟନକୁ ଠାକୁର ବିଜେ ହୁଅନ୍ତି । ରତ୍ନ ପଲଙ୍କ ଭିତରକୁ ନେଇ ସିଂହାସନ ତଳେ ରଖନ୍ତି । ଏହା ଠାକୁରଙ୍କ ବ୍ୟବହାର ପରେ ପୁନଶ୍ଚ ଖଟ ଶେଯ ଘରେ ସାଇତି ରଖନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୮) ।

**ଖଟୁଆନିତିଆନି**-*ଦେ.ବି.*- ଆଶ୍ୱିନ ଷୋଳପୂଜା ମଧ୍ୟରେ ଶୁକ୍ଳ ସପ୍ତମୀ, ଅଷ୍ଟମୀ ଓ ନବମୀ ତିନିଦିନ ଶ୍ରୀମନ୍ଦିରରୁ ବିମଳାଙ୍କ ପାଖେ ସଙ୍ଖୁଡ଼ି ଭୋଗ ପାଇଁ ବ୍ୟବହୃତ ହେଉଥିବା ମାଛ । ମାଛ ଶବ୍ଦ ଶ୍ରୀମନ୍ଦିର ମଧ୍ୟରେ ପ୍ରୟୋଗରେ ବାରଣ ଥିବାରୁ ଏହା ଖଟୁଆନିତିଆନି ନାମରେ ଶ୍ରୀମନ୍ଦିର ଭାଷାରେ ପ୍ରଚଳିତ ।
(ଶ୍ରୀ.ସ୍ୱ. - ପୃ. ୯୮) ।

**ଖଟୁଲି/ଖଟୁଳି**-*ଦେ.ବି.*- ଶ୍ରୀମନ୍ଦିରର ଗର୍ଭଗୃହରେ ଶାଳଗ୍ରାମ ଆଦି ଦେବତା ଓ ଭାଗବତ ଗ୍ରନ୍ଥ ଯେଉଁ କ୍ଷୁଦ୍ର କାଷ୍ଠାସନ ଉପରେ ରଖାଯାଇଥାଏ । ଏହା ଏକ କ୍ଷୁଦ୍ର ଠାକୁର ବିମାନ ।
(ଓ.ସାଂ.ଶ.- ପୃ.୯୯, ପ୍ର.ଅ. ୧ମ - ପୃ.୬୪୮, ପୂ.ଓ.ଭା. - ପୃ.୧୯୦୨, କ୍ରୁ.ଓ.ଶ.ସ.- ପୃ.୨୩୮) ।

**ଖଟୁଳି ସେବକ**-*ଦେ.ବି.*- ଯେଉଁ ସେବକ ଠାକୁରଙ୍କ ଅବକାଶ ନୀତିରେ ଶ୍ରୀମନ୍ଦିର ପୋଖରିଆ ମଧ୍ୟଭାଗରେ ତିନିଗୋଟି ଖଟୁଳି ରଖନ୍ତି । ଅନ୍ୟ ନୀତିମାନଙ୍କରେ ମଧ ଖଟୁଳି ଯୋଗାଇବା ଏହି ସେବକଙ୍କ କାର୍ଯ୍ୟ ।
(ଶ୍ରୀ.ସ୍ୱ. - ପୃ. ୪୦) ।

**ଖଡ଼କା**-*ଦେ.ବି.*- ଖଡ଼କା ସେବକ ଠାକୁରଙ୍କ ଭୋଗ ଛେକ ସ୍ନାନ ମଣ୍ଡପକୁ ଆସିବାବେଳେ ଆଗେ ଆଗେ ରାସ୍ତାରେ ଚୂନପାଣି ପକାନ୍ତି ଓ ରାସ୍ତା ପରିଷ୍କାର ରଖନ୍ତି । ଠାକୁର ବିଜେ ପୂର୍ବରୁ ରାସ୍ତା ପରିଷ୍କାର କରିବା ଏମାନଙ୍କ କାର୍ଯ୍ୟ ।
(ଶ୍ରୀ.ଶ- ପୃ. ୫୧) ।

**ଖଡ଼ା**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଏକ ପ୍ରକାର ବସ୍ତ୍ର । ଏହା ବାର କିମ୍ବା ଷୋଳ ହାତ ଲମ୍ବ ଓ ଦେଢ଼ ହାତ ଓସାର ବିଶିଷ୍ଟ ।
(ପୂ.ଓ.ଭା. - ପୃ.-୧୯୦୬) ।

**ଖଡ଼ିକା ସଂସ୍କାର**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଶ୍ରୀଜୀଉଙ୍କ ରଥଯାତ୍ରା ସମୟରେ ପୁରୀ ଗଜପତି ଛେରାପହଁରା ପୂର୍ବରୁ ରାଜଗୁରୁ ସୁନା ଖଡ଼ିକା ପହଁରାକୁ ସଂସ୍କାର କରନ୍ତି । ଏହାକୁ ଖଡ଼ିକା ସଂସ୍କାର କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୭୦) ।

**ଖଡ଼ିପ୍ରସାଦ ଲାଗି**-*ଦେ.ବି.*- ଶ୍ରୀଜୀଉ ଅଣସରରେ ଥିବା ସମୟରେ ଶ୍ରୀମୁଖ ଚିତ୍ରଣରେ ବ୍ୟବହୃତ ଖଡ଼ି ଆଦି ସାମଗ୍ରୀର ଅବଶେଷ । ଅଣସର ତ୍ରୟୋଦଶୀ ଦିନ ଦତ୍ତ ମହାପାତ୍ରଙ୍କ ଘରୁ ଘଣ୍ଟ, ଛତା, କାହାଳୀରେ ଖଡି ପ୍ରସାଦ ମନ୍ଦିରକୁ ଆସେ । ଖଡ଼ି ଲାଗି ପରେ ଖଡ଼ି ପ୍ରସାଦ ଶ୍ରୀନଅରକୁ ପଟୁଆରରେ ଯାଏ ।
(ଶ୍ରୀ.ସ୍ୱ. - ପୃ. ୬୩) ।

**ଖଡ଼ିକା ସୁଆଁସିଆ**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଜଗମୋହନ ଓଳାଇ ସଫା କରୁଥିବା ସେବକ ବିଶେଷ ।
(ଉ.ଇ.ଅ.ଅ. - ପୃ. ୩୪୭) ।

**ଖରଡ଼ା**-*ଦେ.ବି.*- ଶ୍ରୀକ୍ଷେତ୍ରର ରଥଯାତ୍ରା ସମୟରେ ରଥର ଗତିରୋଧ କରିବା ନିମନ୍ତେ ଏକ ବଡ଼ କାଠଗଡ । ରଥର ଚକ ତଳେ ପକାଇ ରଥକୁ ଅଟକାଇ ରଖାଯାଏ । ରଥବ୍ରେକ ।
(ପୁ.ବୋ.- ପୃ.୧୭୨, ପୂ.ଓ.ଭା. - ପୃ.୧୯୪୩) ।

**ଖରବାଡ଼**-*ଦେ.ବି.*- ଶ୍ରୀମନ୍ଦିରର ଭିତରକାଠ ଓ ବାହାର କାଠ ସ୍ଥାନ, ଯେଉଁଠାରେ ଦୀପ ଦାନ କରାଯାଏ । ଏହାଛଡ଼ା ରତ୍ନବେଦୀ ନିକଟରେ ଓ ଅନବସର ସମୟରେ ଅଣସର ପିଣ୍ଡିରେ ମଧ ଅଖଣ୍ଡଦୀପ ଜଳାଯାଏ ।
(କ୍ଷେ.ସ.) ।

**ଖଣ୍ଡମଣ୍ଡା**-*ଦେ.ବି.*- ଶ୍ରୀଜୀଉଙ୍କ ଭୋଗରେ ଲାଗି ହେଉଥିବା ଏକ ପ୍ରକାର ପିଷ୍ଟକ ବିଶେଷ । ମଇଦା, ଚାଉଳ ଚୂନା ମିଶି ଏହି ପିଠା ପ୍ରସ୍ତୁତ ହୁଏ । ମକର ସଂକ୍ରାନ୍ତିରେ ଲାଗିହୁଏ ।
(ଶ୍ରୀ.ସ୍ୱ. - ପୃ. ୧୭୬) ।

**ଖଣ୍ଡଶାକର ଯୋଗାଣିଆ**-*ଦେ.ବି.*- ଶ୍ରୀମନ୍ଦିରରେ ଖଇ, କୋରା, ଶାକର, ଫେଣି ଆଦି ଯୋଗାଉଥିବା ଗୁଡ଼ିଆ ସେବକ ।
(ପୁ.ବୋ. - ପୃ. ୧୭୧) ।

**ଖଣ୍ଡୁଆ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ବ୍ୟବହୃତ ଲାଲ ରଙ୍ଗର ପାଟବସ୍ତ୍ର । ଖଣ୍ଡୁଆ, ପାଟ ବା ଟସର ସୂତାରେ ବୁଣାଯାଇ ତହିଁରେ ନାନାଦି ପଶୁ, ପକ୍ଷୀ, ଜୀବ, ମନୁଷ୍ୟ, ବୃକ୍ଷ, ଲତା, ମନ୍ଦିର ଓ ଦେବତାଙ୍କର ଚିତ୍ର ଭିନ୍ନ ଭିନ୍ନ ରଙ୍ଗରେ ଖୁବ୍ କୁଶଳତାର ସହ ଚିତ୍ରିତ ହୋଇଥାଏ । ଓଡ଼ିଶାର କେତେକ ଗଡ଼ଜାତର ତନ୍ତୀମାନେ ଅତି ଉତ୍କୃଷ୍ଟ ଚିତ୍ର ବିଚିତ୍ର ଖଣ୍ଡୁଆ ବୁଣୁଥିଲେ ।
(ଶ୍ରୀ.ସ୍ୱ. - ପୃ. ୧୬୨,୧୬୫, ପୂ.ଓ.ଭା. - ପୃ.୧୯୨୫) ।

**ଖଣ୍ଡୁଆଗଡ଼ି**-*ଦେ.ବି.*- ଶ୍ରୀମନ୍ଦିରରେ ପହଡ଼ ଆଳତି ପରେ ଶ୍ରୀମୁଖରେ ଲାଗି ହେଉଥିବା ଖଣ୍ଡୁଆ ।

**ଖଦୀ ଚାମର**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କୁ ପଙ୍ଖା କରିବା ନିମନ୍ତେ ବ୍ୟବହୃତ ଚଉଡ଼ା ଖଣ୍ଡୁଆ ।
(କ୍ଷେ.ସ.) ।

**ଖଦୀ ବିଞ୍ଚଣା ସେବକ**-*ଦେ.ବି.*- ଖଦୀ ଚାମର ବିଞ୍ଚୁଥିବା ସେବକ ବିଶେଷ ।
(କ୍ଷେ.ସ.) ।

**ଖଦୀ ପ୍ରସାଦ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ଅଙ୍ଗ ଲାଗି ଏକ ବସ୍ତ୍ର ବିଶେଷ ।
(କ୍ଷେ.ସ.) ।

**ଖମ୍ବ ଗାୟତ୍ରୀ**-*ଦେ.ବି.*- ଶ୍ରୀମନ୍ଦିରର ଜଗମୋହନରେ ବିଜେ କରିଥିବା ଠାକୁରାଣୀ । ପାଳିଆ ପୂଜାପଣ୍ଡା ଏହାଙ୍କୁ ପ୍ରତିଦିନ ପୂଜା କରନ୍ତି । ବାହାର ଦେଉଳ ଭୋଗରୁ ମଝାଳ କାକରା ଏକ ମୂର୍ତ୍ତି ଭୋଗ ଲାଗେ ।
(ଶ୍ରୀ.ସ୍ୱ. - ପୃ. ୨୧୨)

**ଖମ୍ବ ଦକ୍ଷିଣକାଳୀ**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଜଗମୋହନ ଖମ୍ବରେ ଏହି ଦେବୀଙ୍କର ଆସ୍ଥାନ । ଏହାଙ୍କୁ ପାଳିଆ ପୂଜାପଣ୍ଡା ପ୍ରତ୍ୟହ ବାହାର ଦେଉଳ ଭୋଗରୁ ଏକ ମୂର୍ତ୍ତି ବଡ଼ କାକରା ପୂଜା କରି ଖେଇ ରୂପେ ନିଅନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୧୨)

**ଖମ୍ବ ନୃସିଂହ**-*ଦେ.ବି.*- ଏହି ଠାକୁରଙ୍କ ଆସ୍ଥାନ ଶ୍ରୀମନ୍ଦିରସ୍ଥ ଜଗମୋହନ ଖମ୍ବରେ । ପ୍ରତ୍ୟହ ବାହାର ଦେଉଳ ଭୋଗରୁ ଦୁଇଟି ବଡ଼ କାକରା ସମର୍ପଣ ହୁଏ ।
(ଶ୍ରୀ.ସ୍ୱ. - ପୃ. ୨୧୨) ।

**ଖମ୍ବ ବିମଳା**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଜଗମୋହନର ଏକ ସ୍ତମ୍ଭରେ ବିମଳା ଠାକୁରାଣୀ ବିଦ୍ୟମାନ ।
(ଶ୍ରୀ.ସ୍ୱ. - ପୃ. ୨୧୨) ।

**ଖମ୍ବ ଶୀତଳା**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଜଗମୋହନ ସ୍ତମ୍ଭରେ ବିରାଜମାନ ଥିବା ଦେବୀ ।
(ଶ୍ରୀ.ସ୍ୱ. - ପୃ. ୨୧୨) ।

**ଖସାଗଡ଼ା**-*ଦେ.ବି.*- ଶ୍ରୀଜୀଉଙ୍କ ଶ୍ରୀଅଙ୍ଗରେ ଖଳି ଲଗାଯାଇ ଗୁଡ଼ାଇ ଦିଆଯାଉଥିବା ଶ୍ୱେତ ବସ୍ତ୍ର ।
(କ୍ଷେ.ସ.) ।

**ଖର୍ହିକଟା ମଣ୍ଡପ**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଏକ ମଣ୍ଡପ ବିଶେଷ । ଭୋଇ ବଂଶର ରାଜା ଦିବ୍ୟସିଂହଦେବ (୧୬୮୮-୧୭୧୬) ଏହି ମଣ୍ଡପ ନିର୍ମାଣ କରିଥିବାର ଜଣାଯାଏ । ଏହାର ଅନ୍ୟ ନାମ ନାଭି କଟା ମଣ୍ଡପ ।
(ପୁ.ବୋ. - ପୃ. ୨୭୩) ।

**ଖିରା**-*ଦେ.ବି.*- କ୍ଷୀର, ଛେନା, କଦଳୀ ଓ ଚିନି ସହିତ ଗୋଲମରିଚ, ଅଦା, ଅଳେଇଚଗୁଣ୍ଡ ମିଶ୍ରଣରେ ଏହା ପ୍ରସ୍ତୁତ । ଏହା ଠାକୁରଙ୍କ ଜେଓଡ଼ ଭୋଗରେ ଲାଗି କରାଯାଏ । ଖୁବ୍ ଘନ ହୋଇ ଆଉଟା ହୋଇ ଖିରି ପରି ଗାଢ଼ ହୋଇଥିବା ଦୁଧ, ରାବିଡ଼ି ।
(ଶ୍ରୀ.ସ୍ୱ. - ପୃ. ୧୯୨, ପୂ.ଓ.ଭା. - ପୃ. ୧୯୯୪) ।

**ଖିରି**-*ଦେ.ବି.*- ଅରୁଆ ଚାଉଳ, ଚିନି, କ୍ଷୀର, ଅଳେଇଚ ଇତ୍ୟାଦି ଦ୍ୱାରା ପ୍ରସ୍ତୁତ କ୍ଷୀରିଭୋଗ । ଶ୍ରୀଜୀଉଙ୍କ ପଦ୍ମବେଶ ଦିନ ଖିରୀ ଭୋଗ ଲାଗି ହେବାର ବିଶେଷ ବିଧି ଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. , ପୂ.ଓ.ଭା. - ପୃ.୧୯୯୪) ।

**ଖିରିସା**-*ଦେ.ବି.*- ଚାଉଳ, କ୍ଷୀର, ଚିନି ମିଶ୍ରିତ ସିଦ୍ଧ ହୋଇଥିବା ମିଷ୍ଟ ଦ୍ରବ୍ୟ । ଏହା ଠାକୁରଙ୍କ ଭୋଗରେ ଲାଗି ହୁଏ । ଚାଉଳ ଓ ନଡ଼ିଆକୋରାର ରସ ଓ ଗୁଡ଼ ଦେଇ ତିଆରି ହେବା ପତଳା ଅଟକାଳି ।
(ପୂ.ଓ.ଭା. - ପୃ.୧୯୯୫/୧୮୫୯) ।

**ଖୁଆଡ଼ଘର**-*ଦେ.ବି.*- କାର୍ତ୍ତିକ ଶୁକ୍ଳ ଏକାଦଶୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଜାଙ୍କର ଦୀପ ଜଳିବା ପାଇଁ ଗରୁଡ଼ଙ୍କ ପାଖରେ କୋଠ ସୁଆଁସିଆ ନିର୍ମିତ ତାଟି ଘର ।
(ଓ.ସାଂ.ଶ.- ପୃ.୧୦୧) ।

**ଖୁରିଜଗା**-*ଦେ.ବି.*- ଶ୍ରୀମନ୍ଦିରରେ ଘଣ୍ଟା ଧରି ଦଣ୍ଡଲିତା ସମୟ ନିର୍ଦ୍ଧାରଣ କରୁଥିବା ସେବକ ।

**ଖୁରି ନାଏକ**-*ଦେ.ବି.*- ଗ୍ରହ ବିପ୍ର । ଶ୍ରୀମନ୍ଦିରର ଜ୍ୟୋତିଷ । ପ୍ରତିଦିନ ଅବକାଶ ସମୟରେ ଠାକୁରଙ୍କୁ ସେହିଦିନର ନକ୍ଷତ୍ର ବିଚାର କରି

ଶୁଣାନ୍ତି । ଦୋଳପୂର୍ଣ୍ଣିମାରେ ଶ୍ରୀଛାମୁରେ ପାଞ୍ଜିପାଠ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ଖୁରୀ**-*ଦେ.ବି.*- ସମୟ ମାପିବା ପାଇଁ ବ୍ୟବହୃତ ଛିଦ୍ର ଯୁକ୍ତ ପାତ୍ର । ମାଟିର ଘଡ଼ି । ସମୟର ଏକ ପରିମାପକ । ଛୋଟ ଜଳପାତ୍ର ବିଶେଷ । ଘଡ଼ିରେ ବାଲି ଓ ଜଳ ଦ୍ୱାରା ସମୟ ନିର୍ଦ୍ଧାରିତ ହେବାରୁ ଖୁରିର ଅର୍ଥ ସମୟ ଭାବରେ ଚିହ୍ନିତ ହୋଇଛି ।
(ପୁ.ବୋ. -ପୃ. ୧୭୫, ପୂ.ଓ.ଭା. - ପୃ.୨୦୧୬) ।

**ଖୁସି**-*ଦେ.ବି.*- ଶ୍ରୀମନ୍ଦିରର ଏକ ପ୍ରକାର ପିଷ୍ଟକ ବିଶେଷ । ଚାଉଳ ଚୁନା ଓ ସିଠାରେ ତିଆରି ଏକ ପ୍ରକାର ପିଠା । ଶ୍ରୀମନ୍ଦିରର ଗୁଡ଼ିଆ ସେବକମାନେ ଏହାକୁ ତିଆରି କରନ୍ତି ଓ ଶ୍ରୀଜୀଉଙ୍କୁ ମଧ ମକରରେ ଅର୍ପଣ କରାଯାଏ ।
(ଶ୍ରୀ.ସ୍ୱ- ୨ୟ-ପୃ.୭୧, ପୂ.ଓ.ଭା. - ପୃ.୨୦୨୦) ।

**ଖୁଣ୍ଟିଆ(ରୁକ୍ମିଣୀ ହରଣ)**-*ଦେ.ବି.*- ଶ୍ରୀମନ୍ଦିରରେ ଜ୍ୟେଷ୍ଠ ଶୁକ୍ଳପକ୍ଷ ଏକାଦଶୀରେ ରୁକ୍ମିଣୀ ହରଣ ଏବଂ ବିବାହ ସମ୍ପନ୍ନ ହୁଏ । ସକାଳ ଧୂପ ପୂଜା ସମୟରେ ଦକ୍ଷିଣି ଘରେ ମଦନମୋହନ ବେଶ ଆରମ୍ଭ ହୁଏ । ସକାଳ ଧୂପ ପୂଜା ବଢ଼ିଲା ପରେ ପୂଜାପଣ୍ଡା ଶ୍ରୀଜଗନ୍ନାଥଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ନେଇ ଲକ୍ଷ୍ମୀ ଠାକୁରାଣୀଙ୍କୁ ଦିଅନ୍ତି । ଏ ଉତ୍ତାରେ ମହାଜନେ ଲକ୍ଷ୍ମୀଙ୍କୁ ହାତରେ ବିଜେ କରାଇ ସାତ ପାହାଚଠାରେ ଥିବା ପାଲିଙ୍କିରେ ବିଜେ କରାଇବା ଏବଂ ବିମାନ ବଡୁମାନେ ପାଲିଙ୍କି ନେଇ ଲକ୍ଷ୍ମୀମନ୍ଦିରରେ ରଖନ୍ତି । ଏହାପରେ ବିଧିବିଧାନ ଅନୁଯାୟୀ ପୂଜା କାର୍ଯ୍ୟ ହୁଏ ଏବଂ ପଞ୍ଚାମୃତରେ ମହାସ୍ନାନ ମାଜଣା ଓ ବନଲାଗି ହୁଏ । ରୁକ୍ମିଣୀ ହରଣ ପାଇଁ ସ୍ୱତନ୍ତ୍ର ଜଣେ ଖୁଣ୍ଟିଆ ନିଯୁକ୍ତି ହୋଇଥାନ୍ତି । ସେ ବିଧିବିଧାନ ଅନୁଯାୟୀ ରୁକ୍ମିଣୀ ହରଣ ନୀତି ସମ୍ପନ୍ନ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୨) ।

**ଖୁଣ୍ଟିଆ ବିଲେଇଜଗା**-*ଦେ.ବି.*- ଭୋଗ ଆସିବା ଠାରୁ ଟେରା ଫିଟିବା ପର୍ଯ୍ୟନ୍ତ ଭୋଗ ଦ୍ରବ୍ୟକୁ ନଜର ଦେବା, ବିଲେଇ ଘଉଡ଼େଇବା ଏମାନଙ୍କ କାର୍ଯ୍ୟ ।
(ପୁ.ବୋ.- ପୃ.୧୭୫) ।

**ଖୁଣ୍ଟିଆସେବା**-*ଦେ.ବି.*- ଏମାନେ ପୂର୍ବେ ଶ୍ରୀଜଗନ୍ନାଥଙ୍କ ସେବକ ଥିବାରୁ ରାଜା ବା ଦେବତାମାନଙ୍କର ଅତିନିକଟରେ ଥାଆନ୍ତି । ଦେବତା ବିଜେ କଲାବେଳେ ଏମାନେ ଆପେ ଆପେ ସାଧାରଣ ଲୋକଙ୍କୁ ପାଖେଇ ଯିବାକୁ ସାବଧାନ କରୁଥାଆନ୍ତି । ଏମାନେ ହାତରେ ବେତ ଧରି ବାଟ କଢ଼େଇ ନିଅନ୍ତି । ଏମାନେ ପାଳିଆ ଖୁଣ୍ଟିଆ, ବେହେରା ଖୁଣ୍ଟିଆ, ବିଲେଇ ଜଗା ଖୁଣ୍ଟିଆ, ରୁକୁଣା ହରଣ ଖୁଣ୍ଟିଆ, ଘୋଡା ବାରିକ ଖୁଣ୍ଟିଆ ପ୍ରଭୃତି ବିଭିନ୍ନ ଶ୍ରେଣୀର ଅଟନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୯, ପୁ.ବୋ- ପୃ.୧୭୩, ଓ.ସାଂ.ଶ.- ପୃ.୧୦୧, ପୂ.ଓ.ଭା. - ପୃ.୨୦୦୬, ପ୍ର.ଅ. ୧ମ- ପୃ.୬୭୩ , ପୁ.ବୋ- ପୃ.୧୭୫) ।

**ଖୋଇ**-*ଦେ.ବି.*- ଶ୍ରୀମନ୍ଦିର ଠାକୁରଙ୍କ ସେବାର ପ୍ରାପ୍ୟ ଭାବେ ମିଳୁଥିବା ଭୋଗର ଏକ ଅଂଶ । ଶ୍ରୀମନ୍ଦିରରୁ ଶ୍ରୀନଅରକୁ ଦୈନିକ ଯିବା ଠାକୁରଙ୍କ ଭୋଗ ପ୍ରସାଦ, ଶ୍ରୀଜୀଉଙ୍କ ସେବା ସମ୍ପୃକ୍ତ ବ୍ୟକ୍ତିଙ୍କୁ ମିଳୁଥିବା ମହାପ୍ରସାଦ ଯାହାଙ୍କ ଦୈନିକ ଭୋଗ ପାଇବା ଏକ ବିଧି ବା ନିୟମ । ଆଦି ଶଙ୍କରାଚାର୍ଯ୍ୟ ମହାପ୍ରଭୁଙ୍କ ରୀତି ନୀତିରେ ଆମୂଳଚୂଳ ସଂସ୍କାର ଆଣିଥିବାରୁ ଶଙ୍କରାଚାର୍ଯ୍ୟ ମଠକୁ ପ୍ରତ୍ୟହ ଗୁରୁ ଥାଳି ଖୋଇଯାଏ । ଏହା ମାଦଳାପାଞ୍ଜିରେ ଉଲ୍ଲେଖ ରହିଛି । ବିଶେଷତ୍ୱ ଏହିକି, ପୁରୀର ସମସ୍ତ ମଠ

ଶ୍ରୀମନ୍ଦିରକୁ ପ୍ରତ୍ୟହ 'ଖେଇ' ଦେଉଥିବା ବେଳେ ଏକମାତ୍ର ଶଙ୍କରାଚାର୍ଯ୍ୟ ମଠକୁ ଶ୍ରୀମନ୍ଦିରରୁ ତିନି ଧୂପରେ 'ଖେଇ' ଯାଇଥାଏ ।
(ପୁ.ବୋ.- ପୃ.୧୭୫, ପୂ.ଓ.ଭା. - ପୃ.୨୦୨୧, ମା.ପା. - ପୃ. ୪) ।

**ଖେଇକାର**-*ଦେ.ବି.*- ଶ୍ରୀମନ୍ଦିରର ସେବକମାନେ ଶ୍ରୀଜୀଉଙ୍କ ଭୋଗର ଏକ ଏକ ଅଂଶ ନିଜର ସେବାର ପ୍ରାପ୍ୟ ସ୍ୱରୂପ ନେଇଥାନ୍ତି । ଏହାକୁ ଖେଇ କହନ୍ତି । ଯେଉଁ ସେବକ ଏହି ଖେଇ ଭୋଗର ଅଂଶ ଗ୍ରହଣ କରନ୍ତି ତାଙ୍କୁ ଖେଇକାର ବୋଲି କହନ୍ତି ।
(ପୁ.ବୋ. - ପୃ.୧୭୫) ।

**ଖେଚେଡ଼ି**-*ଦେ.ବି.*- ଘିଅ ମସଲା, କୋରା ନଡ଼ିଆ, ହଳଦୀ, ଡାଲି ପ୍ରଭୃତି ମିଶି ରନ୍ଧା ହୋଇଥିବା ଅନ୍ନ । ଶ୍ରୀମନ୍ଦିରରେ ବିମଳା ଠାକୁରାଣୀଙ୍କ ଷୋଡ଼ଶ ପୂଜାରେ ଏବଂ ସକାଳ ଧୂପରେ ଏହା ଲାଗି କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦,୨୩) ।

**ଖୋଳବଡ଼ା**-*ଦେ.ବି.*- ଶ୍ରୀମନ୍ଦିରର ଏକ ପ୍ରକାର ଭୋଗଦ୍ରବ୍ୟ ବିଶେଷ । ଏହା ଶ୍ରୀଜୀଉଙ୍କ ପୂଜାରେ ଲାଗି ହୁଏ ।
(ଶ୍ରୀ.ଶ.- ପୃ.୫୩) ।

**ଖୋଲାଘର**-*ଦେ.ବି.*- ଏହି ଘର ଅନ୍ୟ କୌଣସି କାର୍ଯ୍ୟ ପାଇଁ ବ୍ୟବହୃତ ହୁଏ ନାହିଁ । ଅଧିକାଂଶ ସମୟରେ ଏହା ବନ୍ଦ ଥାଏ । କିନ୍ତୁ ଆଶ୍ୱିନ ମାସରେ ଦେବୀଙ୍କର ଷୋଳପୂଜା ସମୟରେ ଏଠାରେ ଡାଟ ରଖାଯାଏ ।
(ପୂ.ଓ.ଭା. - ପୃ. ୨୦୪୩) ।



# ଗ

**ଗଇଁଠା**-*ଦେ.ବି.*- ଚାଉଳଚୂନାକୁ ପ୍ରଥମେ ଗରମ ପାଣିରେ ସିଝାଇ ସେ ଖଳିକୁ ହାତରେ ବଳି ଛୋଟ ଛୋଟ ଗୁଳା କରି ପାଣିରେ ସିଝାଇ ତିଆରି କରିବା ପିଠା । ବକୁଳ ଅମାବାସ୍ୟା, ପହିଲି ଭୋଗରେ ଶ୍ରୀଜଗନ୍ନାଥଙ୍କ ପାଖରେ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୨, ପୂ.ଓ.ଭା. - ପୃ. ୨୦୪୯) ।

**ଗଇଁଠାଳ**-*ଦେ.ବି.*- ବିବାହ ସମୟରେ ବିବାହ ବେଦୀରେ ବର ପାଞ୍ଚି ଓ କନ୍ୟାର ବଉଳପାଟକୁ ସଂଯୁକ୍ତ କରିବା ନିମନ୍ତେ ପକାଯିବା ଗଣ୍ଠି । ଶ୍ରୀମନ୍ଦିରରେ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ନୀଳାଦ୍ରିବିଜେ ଦିନ ଦ୍ୱାରଫିଟା ପରେ ମନ୍ଦିରରେ ପ୍ରବେଶ କରି ଭଣ୍ଡାର ଦ୍ୱାରଠାରେ ଲକ୍ଷ୍ମୀଙ୍କ ପାଖରେ ବିଜେ ହେଲେ ରୁକ୍ମିଣୀ ବିବାହର ଗଇଁଠାଳ ଭିତରଛ ମହାପାତ୍ର ଫିଟାନ୍ତି । ଜ୍ୟେଷ୍ଠ ଶୁକ୍ଳପକ୍ଷ ଦ୍ୱାଦଶୀ (ଚମ୍ପକ ଦ୍ୱାଦଶୀ)ରେ ରୁକ୍ମିଣୀ ବିବାହ ଅନୁଷ୍ଠିତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୮୧/୧୨୩) ।

**ଗଉଡ଼**-*ଦେ.ବି.*- ଶ୍ରୀମନ୍ଦିରରେ ମକର ପୂର୍ବଦିନ ନବାଙ୍କରେ ଛୋଟରାୟପୁରଠାରେ ଗଉଡ଼ମାନେ ବିଭିନ୍ନ ସ୍ଥାନରୁ ସଂଗୃହୀତ ଦୁଗ୍ଧ କୋଠମହାଭୋଇ ନିକଟରେ ବାଘ ମୁହଁ ପିନ୍ଧି ଦେଇଥାନ୍ତି । ମହାଭୋଇ ଘଣ୍ଟ, ଛତା, କାହାଳୀ ସହ ଉକ୍ତ ଦୁଗ୍ଧ ଭାରମାନ ଜଗନ୍ନାଥବଲ୍ଲଭ ମଠ ନିକଟକୁ ନିଅନ୍ତି । ସେଠାରେ ଭିତରଛ ମଣୋହି କରାନ୍ତି । ପରେ ପରମେଶ୍ୱର ଦୁଗ୍ଧ ଭାରମାନଙ୍କୁ ଘେନି ନାଟ ମନ୍ଦିର ଆଗରେ ଦୁଗ୍ଧକୁ ଗରମ କରନ୍ତି । ତତ୍‌ପରେ ନନ୍ଦମନ୍ଦିର (ଲକ୍ଷ୍ମୀ ମନ୍ଦିର) ଖଟ ଉପରେ ବିଜେ କରି ପ୍ରସାଦ ଲାଗି ଓ ବନ୍ଦାପନା ହୋଇ ଦକ୍ଷିଣି ଘରକୁ ବାହୁଡ଼ା ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୬/୧୦୮, ପୂ.ଓ.ଭା. - ପୃ. ୨୦୫୨) ।

**ଗଉରୀବେତ**-*ଦେ.ବି.*- ଗ୍ରାମଦେବୀଙ୍କ ମନ୍ଦିରରେ ପାର୍ବଣ ଦିନ ନିର୍ଜନ ରାତିରେ ବିଜେ ବେଳେ ଏହି ବେତ ଧାରଣ କରିଥାନ୍ତି ବୋଲି ଲୋକଙ୍କର ବିଶ୍ୱାସ । ଅଚ୍ୟୁତାନନ୍ଦ ଦାସଙ୍କ 'ଗୋପାଳ ଓଗାଳ'ରେ ଏ ବେତର ଉତ୍ପତ୍ତି ସମ୍ପର୍କରେ ଉଲ୍ଲେଖ ଅଛି । ଶ୍ୱେତରାଜଙ୍କ ଯଜ୍ଞ ଶେଷରେ ଯଜ୍ଞକୁଣ୍ଡରେ ବେତ ଉପୁଜିଲା । ବ୍ରହ୍ମା ବିଶ୍ୱକର୍ମାଙ୍କ ଦ୍ୱାରା ସେ ବେତକୁ କଟାଇ ଦେବଦେବୀଙ୍କୁ ବାଣ୍ଟିଥିଲେ । ପ୍ରଥମେ ସେ ଗୋଟିଏ ବେତ ଗଉରୀଙ୍କୁ ଦେଲେ । ଏଣୁ ଏ ବେତ ଗଉରୀବେତ ନାମରେ ଖ୍ୟାତ । ଦ୍ୱିତୀୟ ଓ ତୃତୀୟ ବେତ ଜୟ ବିଜୟଙ୍କୁ ଦେଲେ । ଦଣ୍ଡନାଚରେ 'ପରଭା' ନୃତ୍ୟକାରୀ ଗଉରୀବେତ ଧାରଣ କରନ୍ତି । ଶ୍ରୀମନ୍ଦିର ମଧ୍ୟରେ ପ୍ରତିହାରୀ, ମୁଦୁଲି ଆଦି ସେବକ ଧରିଥିବା ଯାଉଁଳି ବେତ । ଏହି ବେତରେ ସେବକମାନେ ପ୍ରତ୍ୟେକ ଦର୍ଶକ ଓ ଭକ୍ତଙ୍କୁ ବେତମାଡ଼ କରନ୍ତି । ବିଶ୍ୱାସ ଯେ ଏ ଗଉରୀ ବେତ ଦେହରେ ବାଜିଲେ ବହୁପ୍ରକାର ପାପ, ଦୋଷ ଓ ଅମଙ୍ଗଳ କଟିଯାଇ ପୁଣ୍ୟ, ସୁଖ ଓ ମଙ୍ଗଳ ମିଳିଥାଏ । ଆଶ୍ୱିନ ପୂଜାରେ ଏହି ବେତକୁ ପୂଜା କରାଯାଏ । ଶୀତଳ ଭୋଗ ଅର୍ପଣ ହୁଏ । ଦୁର୍ଗାଙ୍କ ସଙ୍ଖୁଡ଼ିଭୋଗ ବେଳେ ଏ ବେତକୁ ପହଡ଼ କରାଯାଇ ଦଶହରା ଦିନ ଉଠାଯାଏ ।
(ଶ୍ରୀ.ସ୍ୱ.୨ୟ- ପୃ. ୮୯-୯୦, ଓ.ସାଂ.ଶ.- ପୃ.୧୦୩, ପୂ.ଓ.ଭା. - ପୃ. ୨୦୫୪, ପ୍ର.ଅ. ୧ମ- ପୃ. ୬୮୪, କ.କ.ଶ.ସ.- ପୃ. ୨୫୪) ।

**ଗଙ୍ଗବଂଶ**-*ଦେ.ବି.*- ଓଡ଼ିଶାର ପ୍ରାଚୀନ ରାଜବଂଶ । ଉତ୍କଳର ଗଙ୍ଗବଂଶୀୟ ରାଜାମାନେ ୧୦୪୨ଠାରୁ ଖ୍ରୀ.୧୪୩୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏମାନେ ଦାକ୍ଷିଣାତ୍ୟର କର୍ଣ୍ଣାଟକ ଦେଶରୁ ଆସି ପ୍ରଥମେ ଦକ୍ଷିଣ କଳିଙ୍ଗ ଅଧିକାର କରି ଗଙ୍ଗବାଡ଼ି ବର୍ତ୍ତମାନ ପାରଳାଖେମୁଣ୍ଡି ରାଜ୍ୟର ମୁଖଲିଙ୍ଗ ନଗର ନାମକ ସ୍ଥାନରେ ରାଜତ୍ୱ କଲେ । ଏମାନେ ଚନ୍ଦ୍ରବଂଶୀ ରାଜା ବୋଲି ପରିଚୟ ଦେଉଥିଲେ । ଏହି ବଂଶର ପଞ୍ଚମ ରାଜା କାମାର୍ଣ୍ଣବ ଦେବ ସମସ୍ତ କଳିଙ୍ଗ ଅଧିକାର କରି ଉଡ୍ର ବର୍ତ୍ତମାନ କଳାହାଣ୍ଡି ବସ୍ତର ଅଧିକାର କଲେ । ଷଷ୍ଠ ରାଜା ଅନନ୍ତବର୍ମ ଚୋଳଗଙ୍ଗ ବା ଚୁଡ଼ଗଙ୍ଗଦେବ ଉତ୍କଳ ଅଧିକାର କଲେ । ଉତ୍କଳ ସିଂହାସନରେ ଏ ଗଙ୍ଗବଂଶର ପ୍ରଥମ ରାଜା ଗଙ୍ଗବଂଶ ଓ ତା' ପରବର୍ତ୍ତୀ ସୂର୍ଯ୍ୟବଂଶର ରାଜତ୍ୱରେ ଉତ୍କଳ ଗୌରବମୟ ରାଜ୍ୟ ରୂପେ ପରିଚିତ ଥିଲା । ସେତେବେଳେ ଉତ୍କଳ ରାଜ୍ୟର ସୀମା ପଶ୍ଚିମରେ କଳାହାଣ୍ଡି ଓ ବସ୍ତର, ପୂର୍ବରେ ସମୁଦ୍ର, ଉତ୍ତରରେ ଗଙ୍ଗା ଓ ଦକ୍ଷିଣରେ ରାମେଶ୍ୱର ସେତୁବନ୍ଧ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଗଙ୍ଗ ବଂଶର ଶେଷ ରାଜା ଅପୁତ୍ରିକ ଥିବାରୁ କପିଳେନ୍ଦ୍ରଦେବ ସିଂହାସନ ଆରୋହଣ କରି ସୂର୍ଯ୍ୟବଂଶ ପ୍ରତିଷ୍ଠା କଲେ । ଗଙ୍ଗବଂଶ ସମୟରେ କଟକ ଓଡ଼ିଶାର ରାଜଧାନୀ ଥିଲା । ଏହି ବଂଶର ରାଜାମାନେ ବହୁ ମନ୍ଦିର ନିର୍ମାଣ, ଦେବଦେବୀ ପ୍ରତିଷ୍ଠା, ପୁଷ୍କରିଣୀ ଖନନ, ବ୍ରାହ୍ମଣ ଶାସନ ପ୍ରତିଷ୍ଠା, ରାଜ୍ୟଜୟ, ସାହିତ୍ୟ ଓ ଧର୍ମଚର୍ଚ୍ଚା କରୁଥିଲେ । ଚୋଳଗଙ୍ଗ ଦେବ ଶ୍ରୀମନ୍ଦିର ନିର୍ମାଣ ଆରମ୍ଭ କରିଥିଲେ ଓ ତାଙ୍କପୌତ୍ର ଅନଙ୍ଗଭୀମଦେବଙ୍କ ସମୟରେ ଏହା ସମାପ୍ତ ହୋଇଥିଲା ।
(ପୂ.ଓ.ଭା. - ପୃ.୨୦୫୬) ।

**ଗଙ୍ଗା**-*ସଂ.ବି.*- ହିମାଳୟର ଗଙ୍ଗୋତ୍ରୀ ଶୃଙ୍ଗରୁ ବାହାରି ଦକ୍ଷିଣ ଓ ପୂର୍ବ ଅଭିମୁଖେ ଗତିକରି ଉତ୍ତରପ୍ରଦେଶ, ବିହାର, ବଙ୍ଗ ଦେଇ ବଙ୍ଗୋପସାଗରରେ ପଡ଼ିଥିବା ନଦୀ । ହୁଗୁଳି ଗଙ୍ଗାର ଶାଖାନଦୀ ଅଟନ୍ତି । ଶ୍ରୀମନ୍ଦିର ବେଢ଼ାରେ ରୋଷ ପରିସର ମଧ୍ୟରେ ଥିବା ଏକ କୂପର ନାମ । ଏଥିରୁ ଜଳ ସଂଗ୍ରହ କରାଯାଇ ଅଭଡ଼ା ଅନ୍ନ, ଡାଲି, ତରକାରୀ ଓ ଅନ୍ୟାନ୍ୟ ଭୋଗରନ୍ଧନ କାର୍ଯ୍ୟ ହୋଇଥାଏ ।
(ପୂ.ଓ.ଭା. - ପୃ.୨୦୫୮) ।

**ଗଙ୍ଗାଜଳ**-*ଦେ.ବି.*- କରମୁକ୍ତ ଯାତ୍ରୀ । ଏମାନେ ଗଙ୍ଗାଜଳ ଆଣି ଶ୍ରୀଲୋକନାଥଙ୍କୁ ଅଭିଷିକ୍ତ କରାନ୍ତି ଓ ଶ୍ରୀଜଗନ୍ନାଥ ଦର୍ଶନ କରିସାରି ଫେରନ୍ତି । (ପୂ.ଓ.ଭା - ପୃ. ୨୦୫୮) ।

**ଗଜଉଦ୍ଧାରଣ ବେଶ**-*ଦେ.ବି.*- ଶ୍ରୀମନ୍ଦିରରେ ମାଘ ପୂର୍ଣ୍ଣିମା ଦିନ ଏହି ବେଶ ଶ୍ରୀଜୀଉ ହୋଇଥାନ୍ତି । ଏହି ବେଶ ନିମନ୍ତେ ସାତ ଜଣ ସେବକ ଆବଶ୍ୟକ ହୁଅନ୍ତି । ମଧ୍ୟାହ୍ନ ଧୂପ ଓ ମଇଲମ ପରେ ଘଟୁଆରୀ ଘରୁ ଚନ୍ଦନ ଆଣି ସର୍ବାଙ୍ଗ କରନ୍ତି । ଲକ୍ଷ୍ମୀ ଠାକୁରାଣୀ ମହାଜନଙ୍କ ହାତରେ ଦକ୍ଷିଣିଘରଠାରେ ପଡ଼ିଥିବା ଖଟ ଶେଯ ଉପରେ ବିଜେ କରନ୍ତି । ଏହାପରେ ତିନି ବାଡ଼ରେ ଗଜ ଉଦ୍ଧାରଣ ବେଶ ହୁଏ । ଏହାପରେ ଲକ୍ଷ୍ମୀ ଦେବୀ ସିଂହାସନକୁ ବିଜେ କରନ୍ତି, କର୍ପୂରଲାଗି, ସନ୍ଧ୍ୟା ଆଳତି, ବେଶ ପରେ ଭୋଗ ଲାଗେ ଓ ସାଧାରଣ ଦର୍ଶନ ହୁଏ । ଦର୍ଶନ ପରେ ମହାସ୍ନାନ ଓ ପରେ ଅନ୍ୟାନ୍ୟ ନୀତି ହୋଇଥାଏ ।
ଶ୍ରୀମନ୍ଦିରରେ ଭୌମବଂଶର ରାଣୀ ବକୁଳ ମହାଦେବୀ ଏହି ବେଶ ପ୍ରଥମେ ପ୍ରଚଳନ କରିଥିଲେ । କିଛିଦିନ ବନ୍ଦ ହେବା ପରେ ରାଜା ରାମଚନ୍ଦ୍ର ଦେବ (୧୫୭୫)ରେ ପୁଣି ଏହି ବେଶ ପୁନଃ ପ୍ରଚଳନ କଲେ । ପରେ ରାଣୀଙ୍କ ତତ୍ତ୍ୱାବଧାନରେ ଏହି ବେଶ କରାଯାଉଥିଲା । ପରେ ବାସୁଦେବ ବାବାଜୀ ଓ ତତ୍ପରେ ରାୟ ବାହାଦୂର ରମେଶ ଚନ୍ଦ୍ର ମିତ୍ର ଏହି ବେଶ କରାଇଥିଲେ । ୧୯୭୭ ମସିହାରୁ ଟ୍ରଷ୍ଟି ବେଶ ବନ୍ଦ କରିବାରୁ ଶ୍ରୀମନ୍ଦିର ମିଳିତ ଅନ୍ନଦାନ କମିଟି ଦୁଇବର୍ଷ ଏହି ବେଶ କଲେ । ୧୯୭୯ ମସିହାରୁ ଓଡ଼ିଶାର ଶିଳ୍ପପତି ଶ୍ରୀମତୀ ଇଲା ପଣ୍ଡା ଏହି ବେଶ ନିମନ୍ତେ ଶ୍ରୀମନ୍ଦିର

ପାଣିକୁ ଅର୍ଥଦାନ କରିବା ପରଠାରୁ ଏହାର ସୁଧରେ ପ୍ରତିବର୍ଷ ଏହି ବେଶ ହେଉଅଛି । ଭିତରଛ, ତଳିଛ, ପୁଷ୍ପାଳକ ନିଯୋଗ ଖୁଣ୍ଟିଆ ଓ ମେକାପଙ୍କ ସହଯୋଗରେ ଏହି ବେଶ କରାଯାଉଛି । ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ପରେ ଠାକୁରମାନଙ୍କ ଗଜ ଉଦ୍ଧାରଣ ବେଶ ସମ୍ପୂର୍ଣ୍ଣ ହେବା ପରେ କ୍ଷୀର ଓ ଅମାଲୁ ଭୋଗ ଓ ସନ୍ଧ୍ୟା ଧୂପ କରାଯାଏ । ସନ୍ଧ୍ୟାଧୂପ ପରେ ସାଧାରଣ ଦର୍ଶନ ଓ ସାହାଣ ମେଲା ଅନୁଷ୍ଠିତ ହୁଏ । (ଶ୍ରୀ.ସ୍ୱ. ୨ୟ – ପୃ. ୧୧୦, ଶ୍ରୀଜ.ବେ.ର. – ପୃ. ୧୧୨) ।

**ଗଜପତି ମହାରାଜା**-*ଦେ.ବି.*- ଭାରତର ଅନ୍ୟାନ୍ୟ ରାଜବଂଶ ଅଶ୍ୱପତି, ନରପତି, ଛତ୍ରପତି ରୂପେ ସ୍ୱୀକୃତି ପାଇଥିବା ସ୍ଥଳେ ଓଡ଼ିଶାର ପୁରୀ ରାଜବଂଶ 'ଗଜପତି' ଉପାଧିରେ ଭୂଷିତ ହୋଇଛନ୍ତି । ସୂର୍ଯ୍ୟ ବଂଶର ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମୟରୁ ଗଜପତି ପରମ୍ପରା ସୃଷ୍ଟି ହୋଇଅଛି । ପୁରୀର ରାଜା ଗଜପତି 'ଠାକୁର ରାଜା' ବା ଶ୍ରୀଜଗନ୍ନାଥଙ୍କ 'ଚଳନ୍ତି ପ୍ରତିମା' ବା 'ଚଳନ୍ତି ବିଷ୍ଣୁ' ମର୍ଯ୍ୟାଦା ଲାଭ କରିଛନ୍ତି । ସେ ଶ୍ରୀମନ୍ଦିରକୁ ବିଜେ କଲେ ତାଙ୍କୁ ବିଷ୍ଣୁଙ୍କ ଭଳି କେତେକ ସମ୍ମାନ ପ୍ରଦାନ କରାଯାଏ । ଗଜପତି ମହାରାଜା ଠାକୁର ରାଜା ବା ଆଦ୍ୟ ସେବକ ହୋଇଥିବାରୁ ସେ କେବଳ ରାଜକୀୟ ଉପଚାରରେ ମନ୍ଦିର ବେଢ଼ାକୁ ପ୍ରବେଶ କରିପାରନ୍ତି । ଶ୍ରୀଜଗନ୍ନାଥଙ୍କ ସ୍ନାନଯାତ୍ରା, ରଥଯାତ୍ରାରେ ଛେରାପହଁରା କରନ୍ତି । ସଂପ୍ରତି ସରକାରଙ୍କ ଶ୍ରୀମନ୍ଦିର ପରିଚାଳନା କମିଟିରେ ଗଜପତି ସ୍ଥାୟୀ ଅଧକ୍ଷ ରୂପେ କାର୍ଯ୍ୟ ନିର୍ବାହ କରନ୍ତି । ବର୍ତ୍ତମାନ ପୁରୀ, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି ଓ ପାରଳାଖେମୁଣ୍ଡିର ରାଜାମାନେ 'ଗଜପତି' ଉପାଧି ଲାଭ କରିଛନ୍ତି । ପୁରୀ ରାଜା, ବୀର ଶ୍ରୀଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀରାଧିବୀରବର ପ୍ରତାପଶ୍ରୀ...' ଉପାଧି ବ୍ୟବହାର କରୁଥିଲେ । ବର୍ତ୍ତମାନ ଗଜପତି ମହାରାଜା ହେଉଛନ୍ତି ଦିବ୍ୟସିଂହ ଦେବ । ଏହି ରାଜା ମନ୍ଦିରର ଆଦ୍ୟ ସେବକ । ରଥଯାତ୍ରାରେ ଓ ବାହୁଡ଼ାରେ ତିନିରଥରେ ଛେରାପହଁରା କରନ୍ତି ଓ ରାଜ ସେବା ନୀତି କରନ୍ତି । ଚାପ ଉପରେ ପ୍ରଥମ ଦିନ ଓ ଶେଷ ଦିନ, ସ୍ନାନବେଦୀ ଓ ଦୋଳବେଦୀରେ ଛେରାପହଁରା କରନ୍ତି । ଏହାଙ୍କ ଅନୁପସ୍ଥିତିରେ ମୁଦିରସ୍ତ ଏ ସେବା କରନ୍ତି । ରାଜା ମନ୍ଦିରକୁ ବିଜେ କଲେ ରାଜନୀତି ସେବା କରିବେ (ଦୋଳପୂର୍ଣ୍ଣମୀ ଓ ବାମନଜନ୍ମ) । ମନ୍ଦିରକୁ ବିଜେ କଲେ ବିଷ୍ଣୁଙ୍କ ସହିତ କେତେକ ସମ୍ମାନ ପ୍ରଦର୍ଶନ କରାଯାଉଥିବାରୁ ଏହାଙ୍କୁ ଚଳନ୍ତି ବିଷ୍ଣୁ ବୋଲି ସମ୍ବୋଧନ କରାଯାଏ । ଯାତ୍ରୀମାନେ ଏହାଙ୍କୁ ଦର୍ଶନ କରି ଭେଟି ଦେଲେ ସେ ତାହା ବ୍ୟକ୍ତିଗତ ଭାବେ ଗ୍ରହଣ କରନ୍ତି ।

ପରିଛା ସୁନାବେତ ଧରି ପାଖରେ ଥିବେ । ଏହାଙ୍କ ରାଣୀ ଏହାଙ୍କ ସହ ମନ୍ଦିରକୁ ବିଜେ କଲେ ତାଙ୍କର ସବାରି ଭିତରେ ବଟ ଯାଏ ଯିବ ଓ ମୁଦିରସ୍ଥ ତାହାଙ୍କ ସହ ରହି ଦର୍ଶନ କରାନ୍ତି । ନବକଳେବର ସମୟରେ ଦଇତା ଓ ବ୍ରାହ୍ମଣମାନଙ୍କୁ ଗୁଆ ଟେକି ଦିଅନ୍ତି । ଲକ୍ଷ୍ମୀ-ନାରାୟଣଙ୍କ ଭେଟରେ ନଅର ଦୁଆରେ ବନ୍ଦାପନା କରନ୍ତି । ଚମ୍ପକ ଦ୍ୱାଦଶୀ ଦିନ ବରକନ୍ୟାଙ୍କୁ ନିଜର ଦ୍ୱାରକୁ ପାଛୋଟି ନିଅନ୍ତି ଓ ରାଜନୀତି କରନ୍ତି । ଏମାନଙ୍କ ନଅରକୁ ରାଜପ୍ରସାଦ ଓ ଖଡ଼ି ପ୍ରସାଦ ବିଜେ ହୁଏ ଓ ସେଠାରେ ରାଜା ଶାଢ଼ି ଦିଅନ୍ତି । ପ୍ରତ୍ୟେକ ଦିନ ମଙ୍ଗଳ ଆଳତି ପ୍ରସାଦ, ପହୁଡ଼ର ଜଗନ୍ନାଥଙ୍କ ବାଡ଼ର ପଇଡ଼, ମାଳଚୂଳ ଚର୍ଚ୍ଚାଇତ ସେବକ ନଅରକୁ ନେଇ ଦିଅନ୍ତି । ପାଳିଆ ମୁଖ ପଖାଳ ପଡ଼ିଆରୀ ଦୈନିକ ଅବକାଶ ଜଳ ନେଇ ଦିଏ । ପ୍ରତ୍ୟେକ ଧୂପରେ, ପର୍ବପର୍ବାଣିମାନଙ୍କରେ, ଶ୍ରାଦ୍ଧ ଓ ସ୍ୱନକ୍ଷତ୍ରରେ ବଡୁମହାପାତ୍ର ଏହାଙ୍କ ନଅରକୁ ଟାଟ ନେଇ ଦିଅନ୍ତି । ଏହା ବାଦେ ଦୈନିକ ରାଜାଙ୍କୁ, ରାଣୀଙ୍କୁ ଓ ଜେମାମଣିଙ୍କୁ ପସରାରୁ

ଖେଇ ମିଳେ । ଏହା ମନ୍ଦିର କୋଠଭୋଗ, ପସରାଠାରୁ ପୃଥକ୍ । ରାଜା, ରାଣୀ ଓ ତାଙ୍କର ସନ୍ତାନଙ୍କ ସ୍ୱ-ନକ୍ଷତ୍ରରେ ମନ୍ଦିରରେ ଅଧିକା ଭୋଗ ହୋଇ ନଅରକୁ ଡାଟ ଯାଏ । ଏହି ସେବା ପୁରୀ ରାଜବଂଶର ବଂଶାନୁକ୍ରମିକ ସେବା ଓ ଏହା ସହ ତାଙ୍କର ମନ୍ଦିର ପରିଚଳନାଗତ ପଦବୀ ସହିତ କିଛି ସମ୍ପର୍କ ନାହିଁ । ଗଜପତି ରାଜାଙ୍କ ବଂଶର ପ୍ରଚଳିତ ନିୟମ ଜ୍ୟେଷ୍ଠପୁତ୍ର (ଜେନାମଣି) ଏହି ସେବାର ଉତ୍ତରାଧିକାରୀ ହୁଅନ୍ତି । କେବଳ ପୁରୁଷ ଉତ୍ତରାଧିକାରୀ ରାଜା ହୋଇ ସେବା କରିପାରିବେ । ସ୍ତ୍ରୀ ଔରସ ହେଲେ ଏହି ସେବା କରିପାରିବେ ନାହିଁ । ତେଣୁ ପରମ୍ପରାରୁ ରାଜାଙ୍କ ପୁତ୍ର ନ ଥିଲେ ପୋଷ୍ୟପୁତ୍ର ଗ୍ରହଣ କରନ୍ତି । ଯଦି ଅଭିଷେକ ହୋଇ ନ ଥାନ୍ତି ଏହାଙ୍କ ସେବା ଯେତେଦୂର କରାଯାଇପାରେ ମୁଦିରସ୍ତ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୩, ଶ୍ରୀ.ସ୍ୱ. ୧ମ - ପୃ. ୧୨, ପୂ.ଓ.ଭା. -ପୃ. ୨୦୬୭, ଶ୍ରୀ.ଜି. - ପୃ. ୧୦୦) ।

**ଗଜପତିଙ୍କ ରାଜନୀତିସେବା**-*ଦେ.ବି.*-ପବିତ୍ର ରଥଯାତ୍ରା ସମୟରେ ମହାପ୍ରଭୁ ପହଣ୍ଡି ହୋଇ ରଥାରୂଢ଼ ହେଲା ପରେ ମାଳଚୂଳ ହୋଇ ପୂଜାର୍ଚ୍ଚନା ହୋଇଥାଏ । ରଥ ଟଣା ପୂର୍ବରୁ ଗଜପତି ମହାରାଜା ରୌପ୍ୟଖଚିତ ତାମଯାନରେ ଶ୍ରୀନଅରରୁ ଆସି ପ୍ରଥମେ ତାଳଧ୍ୱଜ ରଥରେ, ତା'ପରେ ଦେବଦଳନ ଓ ଶେଷରେ ନନ୍ଦିଘୋଷ ରଥକୁ ବିଜେ କରିଥାନ୍ତି । ରାଜା ପ୍ରଥମେ ତାଳଧ୍ୱଜ ରଥରେ ବଳଭଦ୍ରଙ୍କୁ ନିଉଛାଳି ହୋଇ ଧଳାବସ୍ତ୍ର ପ୍ରଦାନ କରିବା ସହିତ ତାଙ୍କୁ ମାଳଚୂଳ ଲାଗି କରି ପୁଷ୍ପାଞ୍ଜଳି, କର୍ପୂର ଆଳତି, ଚାମର ସେବା, ଆଲଟ ସେବା ଓ ବନ୍ଦାପନା କରନ୍ତି । ଏହା ଗଜପତିଙ୍କର ରାଜନୀତି ସେବା ନାମରେ ପରିଚିତ ।
(ଶ୍ରୀ.ଜି. - ପୃ. ୨୫୫) ।

**ଗଜଲକ୍ଷ୍ମୀ**-*ଦେ.ବି.*- ଯେଉଁ ଲକ୍ଷ୍ମୀ ମୂର୍ତ୍ତିଙ୍କର ଦୁଇପାଖରେ ଦୁଇଟି ଗଜ କଳସରେ ଜଳ ଢାଳୁଥାଆନ୍ତି ।
(ପୂ.ଓ.ଭା. - ପୃ. ୨୦୭୧) ।

**ଗଜା**-*ଦେ.ବି.*- ମଇଦା, ଚିନି ଓ ଘିଅ ପ୍ରସ୍ତୁତ ଏକ ଭୋଗଦ୍ରବ୍ୟ ବିଶେଷ । ଏହା କୋଠ ଭୋଗରେ ଲାଗି ହୁଏ । ମଇଦା ବା ଅଟା ବା ଚାଉଳ ଚୂନାକୁ ଭାଜି ତହିଁରେ ପାଣି ମିଶାଇ ଚକଟି ଖଳିକୁ ଗୋଲ ଲମ୍ବା ବା ଚଉକୋଣିଆ କରି କାଟି ଘିଅରେ ଛାଣି ଶିରାରେ ପକାଇ ପ୍ରସ୍ତୁତ କରାଯିବା ମିଷ୍ଟାନ୍ନ ବିଶେଷ । ଶ୍ରୀଜଗନ୍ନାଥଙ୍କର କୋଠଭୋଗ ବ୍ୟତୀତ ନନ୍ଦୋତ୍ସବ, ପ୍ରଥମାଷ୍ଟମୀ, ବିମଳା ଠାକୁରାଣୀଙ୍କ ଷୋଳପୂଜା, ଶ୍ରୀଗୁଣ୍ଡିଚାର ସଞ୍ଜୁଡ଼ିଭୋଗ, ନେତ୍ରୋତ୍ସବ, ଚମ୍ପକ ଦ୍ୱାଦଶୀ, ରୁକ୍ମିଣୀ ହରଣ, ନୃସିଂହଜନ୍ମ ନୀଳାଦ୍ରି ମହୋଦୟ, ଦମନକ ଚତୁର୍ଦ୍ଦଶୀ, ଅକ୍ଷୟ ତୃତୀୟା, ପୁଷ୍ୟାଭିଷେକ ପ୍ରଭୃତିରେ ଲାଗିହୁଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୭୧-୧୯୫, ପୂ.ଓ.ଭା.- ପୃ.୨୦୭୧) ।

**ଗଜାମୁଗ**-*ଦେ.ବି.*- ଶ୍ରୀମନ୍ଦିରର ବିଭିନ୍ନ ପର୍ବପର୍ବାଣିରେ ପାଣିରେ ବତୁରି ଗଜା ହୋଇଥିବା ଗୋଟାମୁଗ ଗର୍ଭଣା ସଂକ୍ରାନ୍ତି, ପ୍ରଥମାଷ୍ଟମୀ, ଚିତାଲାଗି ଅମାବାସ୍ୟା, ଦେବସ୍ନାନ, ନେତ୍ରୋତ୍ସବ, ଗୁଣ୍ଡିଚାଘର ଭୋଗ, ହେରାପଞ୍ଚମୀ, ଅକ୍ଷୟତୃତୀୟା, ଦମନକ ଚତୁର୍ଦ୍ଦଶୀ, ରାମଜନ୍ମ, ଦୋଳପୂର୍ଣ୍ଣିମା ପ୍ରଭୃତିରେ ଠାକୁରଙ୍କୁ ଧୂପରେ ଲାଗିହୁଏ ।
(ପୂ.ଓ.ଭା. - ପୃ.୨୦୭୨) ।

**ଗଡ଼ଘାଲି ଶୋଇବା**-*ଦେ.ବି.*- ଭୂମିରେ ଶୋଇ ଶ୍ରୀଜୀଉଙ୍କୁ ପ୍ରଣାମ କରିବା । ଯେକୌଣସି ଅବସ୍ଥାରେ ମଧ୍ୟ ତଳୁ ନ ଉଠିବା ।
(ପ୍ର.ବୋ.-ପୃ.୧୭୬) ।

**ଗଣେଶ**-*ସଂ.ବି.*- ମହାଦେବ ଓ ପାର୍ବତୀଙ୍କ ପୁତ୍ର । ବିଦ୍ୟାର ଅଧିଷ୍ଠାତୃ ଦେବ ଓ ସମସ୍ତ ବିଘ୍ନ ନାଶକ । ଏହାଙ୍କର ଅନ୍ୟନାମ ଗଣନାଥ, ଗଣପତି, ଗଣାଗ୍ରଣୀ, ଗଣାଧିପ, ଗଣେଶ୍ୱର, ଗଣେଶାନ, ଗଣନାୟକ, ଏକଦନ୍ତ, ଏକଦଂଷ୍ଟ୍ର, ଗଜାସ୍ୟ, ଗଜବଦନ, ବିଘ୍ନରାଜ, ବିନାୟକ, ହୟଗ୍ରୀବ, ଦ୍ୱୈମାତୁର, ଲମ୍ବୋଦର, ହେରମ୍ବ, ଗଜାନନ, ବିଘ୍ନେଶ,

ପରଶୁପାଣି, ଆଖୁଗ, ସୂର୍ପକର୍ଣ୍ଣ । ଶ୍ରୀମନ୍ଦିର ଭିତରେ ଅନେକ ଗଣେଶ ମୂର୍ତ୍ତି ଓ ଚିତ୍ର ପୂଜା ଉପାସନା ହେଉଥିବାର ଜଣାଯାଏ । ଭିତର ବେଢ଼ାରେ ଥିବା ୧. କଛବଟ ଗଣେଶ, ୨. ଭଣ୍ଡ ଗଣେଶ, ୩. ଜଳକ୍ରୀଡ଼ା ମଣ୍ଡପ ନିକଟସ୍ଥ ନଟ ଗଣେଶ, ୪. ମା' ବିମଳା ମନ୍ଦିର ପ୍ରବେଶ ଦ୍ୱାର ବାମ ପାର୍ଶ୍ୱରେ ଥିବା ନୃତ୍ୟ ଗଣେଶ, ୫. ହରି ସହଦେବ ମନ୍ଦିର ଦକ୍ଷିଣ ପାର୍ଶ୍ୱସ୍ଥ ବଟ ଗଣେଶ, ୬. ବଟମଙ୍ଗଳା ମନ୍ଦିର ଜଗମୋହନରେ ଥିବା କ୍ଷୁଦ୍ର ଗଣେଶ, ୭. ପଞ୍ଚ ମହାଦେବ ମନ୍ଦିର ମାର୍କଣ୍ଡେଶ୍ୱର ମନ୍ଦିର କ୍ଷୁଦ୍ର ଗଣେଶ, ୮. ଇନ୍ଦ୍ରାଣି ଦେବୀଙ୍କ ପ୍ରବେଶ ଦ୍ୱାରସ୍ଥ ବାମ ପାଖରେ ଥିବା ଏକ ଦକ୍ଷିଣାଭିମୁଖୀ କ୍ଷୁଦ୍ର ଗଣେଶ, ୯. ମୁକ୍ତିମଣ୍ଡପର ଖମ୍ବରେ ଥିବା ଚାରୋଟି ଗଣେଶ ମୂର୍ତ୍ତି, ୧୦. ପଶ୍ଚାତ୍ ଭାଗରେ ଥିବା ସରଘର ଗଣେଶ ମୂର୍ତ୍ତି, ୧୧. ଶ୍ରୀମନ୍ଦିର ଦକ୍ଷିଣି ଘର ବାରଣ୍ଡାର କ୍ଷୁଦ୍ର ଗଣେଶ, ୧୨. ମୁଖ୍ୟମନ୍ଦିର ବିମାନର ଉପରେ ଥିବା ଦକ୍ଷିଣାଭିମୁଖୀ ଗଣେଶ, ୧୩. ପାଦୁକ କୁଣ୍ଡ ଉପରେ ଥିବା ଗଣେଶ, ୧୪. ମହାଲକ୍ଷ୍ମୀ ମନ୍ଦିର ଜଗମୋହନର ଉତ୍ତରପଟ କାନ୍ଥରେ ପଞ୍ଚମୁଖୀ ଗଣେଶ, ୧୫. ସୂର୍ଯ୍ୟମନ୍ଦିର ଜଗମୋହନର ଉତ୍ତରପଟ କାନ୍ଥରେ ଥିବା କ୍ଷୁଦ୍ର ଗଣେଶ, ୧୬. ଦଧିବାମନ ମନ୍ଦିର ପଛପଟ ସରଘରେ ଥିବା କ୍ଷୁଦ୍ର ଗଣେଶ, ୧୭. ବଳି ପାତାଳ ମନ୍ଦିର ପଛପଟ ସରଘରେ ଥିବା କ୍ଷୁଦ୍ର ଗଣେଶ, ୧୮. ପାତାଳେଶ୍ୱର ମନ୍ଦିର ଭିତରେ ଥିବା ଗଣେଶ, ୧୯. ପ୍ରତିହାରୀ ନିଯୋଗ ଭିତରେ ଚାରୋଟି ଗଣେଶ ମୂର୍ତ୍ତି ରହିଛନ୍ତି । ତନ୍ମଧ୍ୟରୁ ତିନିଟି ଦକ୍ଷିଣାଭିମୁଖୀ ଓ ଗୋଟିଏ ପଶ୍ଚିମାଭିମୁଖୀ, ୨୦. ଭୋଗମଣ୍ଡପ ଭିତରପଟ ରାଧାକୃଷ୍ଣ ମନ୍ଦିର ଭିତରେ ଥିବା ଷଡ଼ଭୁଜ ଗଣେଶ, ୨୧. ଭୋଗମଣ୍ଡପ ପାର୍ଶ୍ୱରେ ଥିବା କେତେକ ଗଣେଶ ମୂର୍ତ୍ତି, ୨୨. ସତ୍ୟନାରାୟଣ ପାର୍ଶ୍ୱରେ ଥିବା ଶ୍ରୀ ଗଣେଶମୂର୍ତ୍ତି, ୨୩. ଜଗମୋହନ ପ୍ରଥମ ଖମ୍ବରେ ଚର୍ଚ୍ଚା ଗଣେଶଙ୍କ ଚିତ୍ର ପ୍ରତିମା ଗରୁଡ଼ ସ୍ତମ୍ଭର ପଛପଟେ ଜଗମୋହନ କାନ୍ଥରେ ଥିବା ଶିବ ମୂର୍ତ୍ତିର ଦକ୍ଷିଣ ପାର୍ଶ୍ୱରେ ଥିବା କ୍ଷୁଦ୍ର ଗଣେଶ ।

ସେହିପରି ଶ୍ରୀମନ୍ଦିରର ବାହାର ବେଢ଼ା ଭିତରେ ଥିବା ଗଣେଶ ମୂର୍ତ୍ତି ଯଥା- ୧. ସିଂହଦ୍ୱାର ଗୁମୁଟ ବାମ ପାଶ୍ୱସ୍ଥ କାନ୍ଥରେ ଥିବା ଶ୍ରୀ ଗଣେଶଙ୍କ ଚିତ୍ର ପ୍ରତିମା, ୨. ବାଇଶି ପାହାଚ କାଶୀ ବିଶ୍ୱନାଥ ମନ୍ଦିରର ଦକ୍ଷିଣ ପାର୍ଶ୍ୱଦେବତା ଶ୍ରୀ ଗଣେଶ, ୩. ଦକ୍ଷିଣପଟ କାନ୍ଥରେ ଏକ ଚିତ୍ର ପ୍ରତିମା, ନୃସିଂହ ମନ୍ଦିର ଭିତରେ ଥିବା ଗଣେଶ, ୪. ଗୁମୁଟ ବାମପଟସ୍ଥ ଗଣେଶ ଚିତ୍ର ପ୍ରତିମା, ୫. ଆନନ୍ଦ ବଜାରର ସରକାରୀ ପସରା ଗୃହ ମଧ୍ୟସ୍ଥ ଗଣେଶ ମୂର୍ତ୍ତି, ୬. ଦକ୍ଷିଣ ଦ୍ୱାର ଗୁମୁଟ ଘରେ ଥିବା ଏକ କ୍ଷୁଦ୍ର ଗଣେଶ ମୂର୍ତ୍ତି । ଡାହାଣ ପଟେ ଥିବା ଏକ ଗଣେଶ ଚିତ୍ର ପ୍ରତିମା, ୭. ରୋଷ ପରିସରରେ ଥିବା ଏକ ଗଣେଶ ମୂର୍ତ୍ତି, ୮. ରୋଷ ପରିସର ମଧ୍ୟରେ ଥିବା ଗଙ୍ଗା ଯମୁନା କୂପ ନିକଟସ୍ଥ କାନ୍ଥରେ ଥିବା ପ୍ରସ୍ତର ନିର୍ମିତ ଗଣେଶ ମୂର୍ତ୍ତି, ୯. ରୋଷଘର ମୁଖ୍ୟ ଦ୍ୱାର ବାମ ପାର୍ଶ୍ୱରେ ଥିବା ରୋଷ ଗଣେଶ ମୂର୍ତ୍ତି, ୧୦. ପଶ୍ଚିମ ଦ୍ୱାର ଗୁମୁଟ ଭିତରସ୍ଥ ଅଷ୍ଟଭୁଜ କ୍ଷୁଦ୍ର ଗଣେଶ ମୂର୍ତ୍ତି, ୧୧. ନୀଳାଚଳ, ଉପବନ ପ୍ରବେଶ ଦ୍ୱାର ଚାରିଧାମ ମନ୍ଦିର ଭିତରେ ଥିବା ଗଣେଶ ମୂର୍ତ୍ତି, ୧୨. ନୀଳାଚଳ ଉପବନର ଚକ୍ର ନାରାୟଣ ମନ୍ଦିର ମଧ୍ୟସ୍ଥ ଗଣେଶ ମୂର୍ତ୍ତି, ୧୩. ଶ୍ରୀମନ୍ଦିରର ଉତ୍ତର ଦ୍ୱାର ପ୍ରବେଶ ନିକଟସ୍ଥ ଏକ କ୍ଷୁଦ୍ର ଗଣେଶ ମନ୍ଦିର, ୧୪. ଉତ୍ତର ଦ୍ୱାର ବେଢ଼ାସ୍ଥ ସୋମନାଥ ମନ୍ଦିର ବାମପାର୍ଶ୍ୱସ୍ଥ ଶ୍ରୀଗଣେଶ ବିଗ୍ରହ, ୧୫. ଶୀତଳା ମନ୍ଦିର ଭିତରସ୍ଥ ଏକ ଗଣେଶ ମୂର୍ତ୍ତି, ୧୬. ଈଶାନେଶ୍ୱର ମନ୍ଦିରରେ ଥିବା ଗଣେଶଙ୍କର ଚିତ୍ର ପ୍ରତିମା, ୧୭. କୋଇଲି ବୈକୁଣ୍ଠର ଡାହାଣ ପାର୍ଶ୍ୱସ୍ଥ ମହାଦେବଙ୍କ ମନ୍ଦିରର ଅଷ୍ଟଭୁଜ ଗଣେଶ ମୂର୍ତ୍ତି, ୧୮. ଉତ୍ତର ଦ୍ୱାର

ବାମପାର୍ଶ୍ୱରେ ଥିବା ପର୍ଶୁନାଥ ଓ ଧବଳେଶ୍ୱର ମନ୍ଦିରରେ ଥିବା ଏକ କ୍ଷୁଦ୍ର ଗଣେଶ ଓ କାନ୍ଥରେ ଥିବା ଚିତ୍ରମାନ ଦୃଶ୍ୟମାନ ହୋଇଥାଆନ୍ତି ।
(କ୍ଷେ.ସ., ଶ୍ରୀ.ବେ.ଦେ. - ପୃ. ୧୩୫-୧୩୬, ପୂ.ଓ.ଭା. - ପୃ. ୨୦୯୭) ।

**ଗଣେଶଚତୁର୍ଥୀ**-*ଦେ. ବି.*- ଭାଦ୍ରବ ଶୁକ୍ଳ ଚତୁର୍ଥୀ । ବ୍ରହ୍ମପୁରାଣ ଅନୁସାରେ ନାରାୟଣ ଅଭିଶପ୍ତ ହୋଇ ଗଣେଶ ଚତୁର୍ଥୀ ରାତିରେ ଚନ୍ଦ୍ରକିରଣରେ ଥାଆନ୍ତି ଓ ସେ ରାତ୍ରରେ ଚନ୍ଦ୍ରଙ୍କୁ ଦର୍ଶନ କଲେ ଉକ୍ତ ଅଭିଶାପ ଦର୍ଶନକାରୀ ବ୍ୟକ୍ତି ଉପରେ ପଡ଼େ । ଗଣେଶ ଚତୁର୍ଥୀ ରାତିରେ ଉଦିତ ଚନ୍ଦ୍ରକୁ ନଷ୍ଟଚନ୍ଦ୍ର ବୋଲାଯାଏ ଓ ତାଙ୍କୁ ଦେଖିବା ନିଷେଧ । ଶ୍ରୀମନ୍ଦିରରେ ଏହିଦିନ ସନ୍ଧ୍ୟାଧୂପ ପରେ ବଟଗଣେଶଙ୍କ ପାଖରେ ତଳିଛ ମହାପାତ୍ର ଓ ଭିତରଛ ଭୋଗ ବନ୍ଦାପନା ଓ ଶୀତଳ ଭୋଗ କରନ୍ତି । ତା'ପରେ ସରସ୍ୱତୀ ମନ୍ଦିରରେ ଭୁବନେଶ୍ୱରୀଙ୍କ ପାଖରେ ଶୀତଳ ଭୋଗ ଓ ବନ୍ଦାପନା ହୁଏ । ମୁଳିଆ ଓ ସୁଆଁସିଆଁ ଦେଇଥିବା ଭଦ୍ରାସନ ପରେ ବେହରଣ କରଣମାନଙ୍କ ମାଦଳାପାଞ୍ଜି ରଖାଯାଇ ପତନି ଓ ମାଳ ଲାଗି ହୋଇ ଶୀତଳ ଭୋଗ ଲାଗିହୋଇ ବନ୍ଦାପନା ସାରିବା ପରେ ୨୨ଟି ନଡ଼ିଆ ଉକ୍ତ କରଣମାନେ ଭାଙ୍ଗିଥାନ୍ତି ।
(ପୂ.ଓ.ଭା. - ପୃ.୨୦୯୭, ଶ୍ରୀ.ସ୍ୱ. ୨ୟ - ପୃ.୯୪, ପ୍ର.ଅ. ୧ମ- ପୃ.୬୯୫) ।

**ଗଦିପ୍ରସାଦ**-*ଦେ. ବି.*- ସ୍ନାନ ପୂର୍ଣ୍ଣିମା ଦିନ ଜଳଛେକ ଆସିବା ପରେ ମୁଦିରଥ, ଠାକୁରଙ୍କୁ ଗଦି ପ୍ରସାଦ (ତୁଳାରେ ପ୍ରସ୍ତୁତ କରାଯାଇଥିବା ମୁଚୁଳା) ଲାଗି କରାନ୍ତି ।
(ପୁ.ବୋ.-୧୭୬) ।

**ଗଦିଫେଟା** *ଦେ. ବି.*- ନାଲିଧଡି ଥିବା ଧଳାରଙ୍ଗର ଚେମେଡ଼ି ବସ୍ତ୍ର । ସକାଳ ପୂଜା ଉପଚାରାଦିରେ ଶ୍ରୀଜଗନ୍ନାଥଙ୍କ ବସ୍ତ୍ର ଭାବରେ ଅର୍ପିତ ହୁଏ । ଠାକୁରଙ୍କର ଚମ୍ପକ ଦ୍ୱାଦଶୀ, ସ୍ନାନପୂର୍ଣ୍ଣିମାରେ ପୁଷ୍ୟାଭିଷେକ, ବସନ୍ତ ପଞ୍ଚମୀ, ଭୀଷ୍ମ ଏକାଦଶୀ, ଅକ୍ଷୟ ତୃତୀୟା, ଦୋଳଯାତ୍ରା ପ୍ରଭୃତିରେ ବ୍ୟବହୃତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪୭/୧୪୮, ୧୪୯, ପୁ.ବୋ. - ପୃ.୧୭୬, ଓ.ସାଂ.ଶ. - ପୃ.୧୦୫) ।

**ଗଣ୍ଡୁଷଜଳ**-*ଦେ. ବି.*- ଅବକାଶରେ ଦନ୍ତ ମାର୍ଜନା ନୀତି ପରେ ଗୋକର୍ଣ୍ଣାକୃତି ହସ୍ତରେ ଠାକୁରଙ୍କୁ ବାରଥର ଜଳ ସମର୍ପିତ ହୁଏ ।
(ପୁ.ବୋ. - ପୃ.୧୭୬) ।

**ଗଣ୍ଡୁଷ ମସଲା**-*ଦେ. ବି.*- ଠାକୁରଙ୍କ ଜନ୍ମ ବିଧିରେ ନୈବେଦ୍ୟ ପାଇଁ ଗୋଲମରିଚ, ଜୀରା, ଅଦା ଓ ଚିନି ଇତ୍ୟାଦି ମସଲା ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୯) ।

**ଗନ୍ଧ**-*ସଂ. ବି.*- ସୁଗନ୍ଧ ପଦାର୍ଥର ଯେଉଁ ସତ୍ତା ବା ଗୁଣ ଆଘ୍ରାଣ କରାଯାଏ । ଶ୍ରୀମନ୍ଦିରରେ କସ୍ତୁରୀ, କର୍ପୂର, ଅଗୁରୁ, ଚନ୍ଦନ, କୁସୁମ ଇତ୍ୟାଦି ପଞ୍ଚଗନ୍ଧ ରୂପେ ଲାଗିହୁଏ ।
(ପୂ.ଓ.ଭା. -୨୧୨୦) ।

**ଗନ୍ଧଣ ମେକାପ**-*ଦେ. ବି.*-ଶ୍ରୀମନ୍ଦିରରେ ରୋଷ ପାଇଁ ମସଲା ପ୍ରସ୍ତୁତ କରିବା ଓ ସର ଘରୁ ପଣାଭୋଗ ଆଣି ଠାକୁରଙ୍କୁ ଯୋଗାଉଥିବା ସେବକ । ଏହି ସେବକ ଗୋଦାମଘରୁ ରୋଷକୁ ଜିନିଷ ବୋହିନେବା କାର୍ଯ୍ୟ ମଧ୍ୟ କରନ୍ତି ।
(ପୁ.ବୋ.-ପୃ. ୧୭୬) ।

**ଗର୍ଭଉଦକ ବନ୍ଦାପନା**-*ଦେ. ବି.*- ଭାଦ୍ରବ କୃଷ୍ଣପକ୍ଷ ସପ୍ତମୀ । ଏହି ଦିନ ସନ୍ଧ୍ୟା ଆଳତି ବେଶରେ ତିନି ଠାକୁର ଠାକୁରାଣୀ ତଡ଼ାଉ ଛଅ ମୂର୍ତ୍ତି ସୁନା ଅଳଙ୍କାର ଲାଗି ହୁଅନ୍ତି । ଅଣସର ପିଣ୍ଡିଠାରେ ଯେଉଡ଼ ଭୋଗ ଶାଗ, ତରକାରୀ, ପିଠା, ଝିଲି, ଓରିଆ, କ୍ଷିରୀ ଇତ୍ୟାଦି ରୋଷରୁ ଆସି ଛାମୁରେ ରଖାଯାଏ । ମୁଦିରସ୍ତ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ପ୍ରସାଦ ଲାଗି କରାନ୍ତି । ତିନିଜଣ ପୂଜା ପଣ୍ଡା ପଞ୍ଚୋପଚାରରେ ପୂଜା କରନ୍ତି । ପଣ୍ଡା, ପତି ଓ ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି । ମହାପ୍ରଭୁଙ୍କ ବାଡ଼ରେ ଗୋଟିଏ ଅଧିକ ବନ୍ଦାପନା ହୁଏ । ଏହାକୁ "ଗର୍ଭଉଦକ

ବନ୍ଦାପନା" କୁହାଯାଏ । ଏହାପରେ ଅନ୍ୟାନ୍ୟ ଦୈନନ୍ଦିନ ନୀତି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୮୯) ।

**ଗର୍ଭମୁଦ**-ଦେ.ବି.- ଗର୍ଭଗୃହ ପରି ତରଙ୍ଗାୟିତ ଶୈଳୀରେ ମୁଦା ହୋଇଥିବା ଛାତ ।
(ଶ୍ରୀ.ଶ.- ପୃ.୫୫) ।

**ଗର୍ଭଣା ସଂକ୍ରାନ୍ତି**- ତୁଳା ସଂକ୍ରାନ୍ତି । ଶ୍ରୀମନ୍ଦିରରେ ଏହି ଦିନ ସକାଳ ଧୂପ ଓ ଭୋଗମଣ୍ଡପ ଧୂପ ପରେ ୩ ବାଡ଼ ମଇଲମ ହୋଇ ମହାସ୍ନାନ ଶେଷ ହେଲା ପରେ ନୂଆ ଲୁଗା ଲାଗି ହୁଏ । ଘଟୁଆରୀ ଘରୁ ଘଣ୍ଟ ଛତା କାହାଳୀ ସହ ପଣ୍ଡା ପତି ମୁଦିରସ୍ତ ଚନ୍ଦନ ଆଣି ସର୍ବାଙ୍ଗ ବିଜେ କରାନ୍ତି । ବେଶ ହୋଇ ୬ ମୂର୍ତ୍ତି ଅଳଙ୍କାର ଲାଗି ହୁଅନ୍ତି । ମଧ୍ୟାହ୍ନ ଧୂପ ପରେ ପ୍ରସାଦ ଲାଗି କରାଯାଏ । ଷୋଡ଼ଶ ଉପଚାର ଭୋଗ, ଟେରା ପଡ଼ିବା ପରେ ଜଣେ ପଣ୍ଡା ଉଠି ରୋଷ ପାଇକ ହାତରେ ଭିତରୁ ଏକ ଓଳି ଓରିଆ (ସଙ୍କୁଡ଼ି) ବାହାର କରିଆଣି ମନ୍ଦିର ଚତୁଃପାର୍ଶ୍ୱରେ ବଳି ଦିଅନ୍ତି । ତା'ପରେ ଭୋଗ ସାରି ଆଳତି ବଢ଼େ ଓ ତିନି ବାଡ଼ରେ ବନ୍ଦାପନା ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୧) ।

**ଗଭାମାଳ** - ଦେ. ବି.- ଶ୍ରୀଜୀଉଙ୍କ ମସ୍ତକ ନିମିତ୍ତ ସୁବାସିତ ପୁଷ୍ପ ଘେରା ସହିତ ସଂଯୁକ୍ତ ପେଟ୍ଟାଏ ତୁଳସୀ ।
(ଓ.ସାଂ.ଶ.- ପୃ.୧୦୫) ।

**ଗମ୍ଭୀରା**-ଦେ.ବି.- ଗୁପ୍ତ ଅନ୍ଧକାରମୟ ଦେବାଳୟ । ଜଳାକବାଟି ନ ଥିବା ଘର । ମନ୍ଦିରର ଆଭ୍ୟନ୍ତରକୁ ଗମ୍ଭୀରା ଓ ଭିତରକୁ ଗମ୍ଭୀରା ଘର କୁହାଯାଏ । ଶ୍ରୀକ୍ଷେତ୍ରରେ ଶ୍ରୀଚୈତନ୍ୟ କାଶୀ ମିଶ୍ର ଘର ଗମ୍ଭୀରାରେ ବାସ କରୁଥିଲେ । ତାହା ଅଦ୍ୟାପି ଚୈତନ୍ୟ ପନ୍ଥୀଙ୍କ ପବିତ୍ର ସ୍ଥାନ ରୂପେ ବିବେଚିତ । ଏଠାରେ ତାଙ୍କ ପାଦୁକା ଓ ବ୍ୟବହୃତ ଜିନିଷ ରଖାହୋଇଛି ।
(ଓ.ସାଂ.ଶ.- ପୃ.୧୦୫/୧୦୬) ।

**ଗରାବଡୁ ସେବା**-ଦେ.ବି.- ଶ୍ରୀମନ୍ଦିରର ଏହି ସେବକମାନେ ପ୍ରତ୍ୟେହ ସକାଳୁ ଆସି ଶ୍ରୀଜୀଉଙ୍କ ମଙ୍ଗଳ ଆଳତି ଓ ମଇଲମ ଆରମ୍ଭରେ ପୁଷ୍ପଳକଙ୍କୁ ହାତୁଆଣି ଦିଅନ୍ତି । ଅବକାଶ ପୂଜା ପରେ ଝରିରେ ପାଣି ନେଇ ରଖନ୍ତି । ପୋଖରୀଆରେ ପୂଜା ଜଳ ଓ ସୁବାସ ଜଳ ଯୋଗାନ୍ତି । ଏପରି କି ସକାଳଧୂପ, ମଧ୍ୟାହ୍ନଧୂପ, ସନ୍ଧ୍ୟାଧୂପ, ବଡ଼ସିଂହାର ଓ ଅତିରିକ୍ତ ପୂଜାରେ ଝରି ଲଗାନ୍ତି ଓ ଘଷାଜଳ ତିଆରି କରି ପୂଜାସ୍ଥାନରେ ରଖନ୍ତି । ତାପରେ ବିଡ଼ିଆ ମଣୋହି ବେଳେ ଝରି ଓ ଜଳ ଯୋଗାନ୍ତି । ସ୍ନାନପୂର୍ଣ୍ଣିମାରେ ୧୦୮ ଗରା ଜଳ ୪ ବାଡ଼ରେ ଅଧିବାସ ଘରୁ ସ୍ନାନବେଦୀକୁ ବିଜେ କରାନ୍ତି । ନୀଳାଦ୍ରି ମହୋଦୟରେ ବା ପ୍ରତିଷ୍ଠା ଦିବସରେ ଜଳ ବିଜେ କରାନ୍ତି । ପୁଷ୍ୟାଭିଷେକ ପୂର୍ବରାତ୍ର ଘିଅ ଓ ଜଳ ପାଳିଆ ଗରାବଡୁ ମଣତିରେ ରଖନ୍ତି ଓ ପୂର୍ଣ୍ଣମୀ ଦିନ ଗରମ ଦେବା ପରେ ୧୦୮ କଳସ ଭିତରକୁ ବିଜେ କରାନ୍ତି । ସଂସ୍କାର ପରେ ଅଧିବାସ ଘିଅ ଓ ଜଳକୁ ଦର୍ପଣରେ ଲାଗି କରାନ୍ତି । ରଥ ଛେରାପହଁରା ବେଳେ ରାଜାଙ୍କୁ ହାତୁଆଣି ଦିଅନ୍ତି ଓ ମହାସ୍ନାନ, ଯାତ୍ରାଙ୍ଗି, ନୂଆଲୁଗା ଲାଗି, ଚନ୍ଦନ, ଘୋଡ଼ାଲାଗି, ଖଇକୋରା ଭୋଗ, ରାଜନୀତି ସେବା କରିଥାଆନ୍ତି । ଦଇତାପତି ସର୍ବାଙ୍ଗ ବନ୍ଦାପନା ଓ ଦଇତା ସିଂହାସନକୁ ଉଠି ନୀତି କଲେ ସେମାନଙ୍କୁ ହାତୁଆଣି ଦେଇଥାନ୍ତି । ଶାଢ଼ିବନ୍ଧା ବ୍ରାହ୍ମଣ ସେବକ ବ୍ରତ ପରେ ସାବାଳକ ହୋଇ ଶାଢ଼ି ବନ୍ଧାଇ ସେବା କରିଥାନ୍ତି ।
(ଶ୍ରୀ.ସ୍ୱ. - ପୃ.୧୫୨, ପୃ. ୨୦-୨୩-୨୬-୨୭) ।

**ଗରୁଡ଼ଧ୍ୱଜ**-ଦେ.ବି.- ଭଗବାନ ବିଷ୍ଣୁଙ୍କର ଏକ ନାମ ବିଶେଷ । ନନ୍ଦିଘୋଷ ରଥର ଅନ୍ୟନାମ ।
(ଓ.ସାଂ.ଶ.-ପୃ. ୧୦୬) ।

**ଗରୁଡ଼ ଶୟନ**-ଦେ.ବି.- ପୁରାଣରେ ବର୍ଣ୍ଣିତ ଅଛିଯେ, ଦେବଦେବୀମାନେ ଯେପରି ଶୟନ କରିଥାନ୍ତି ସେହିପରି ବାହନମାନେ ମଧ୍ୟ ଶୟନ କରନ୍ତି ବୋଲି ଶାସ୍ତ୍ରରେ ବର୍ଣ୍ଣିତ । ଶ୍ରୀମନ୍ଦିରରେ ଆଷାଢ଼ ଶୁକ୍ଳ ଏକାଦଶୀରେ ବିଷ୍ଣୁ ଶ୍ରୀଜଗନ୍ନାଥ

ଶୟନ କଳାପରେ ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ଗରୁଡ଼ ଶୟନ କରିଥାନ୍ତି । ଶ୍ରୀ ଗରୁଡ଼ଙ୍କର ମହାସ୍ନାନ ସାମଗ୍ରୀ ପର୍ବ ଯାତ୍ରା ଯୋଗାଣିଆ ଯୋଗାଇଥାଏ । ନିମ୍ନଲିଖିତ ସେବକମାନଙ୍କ ଦ୍ୱାରା ଏହି ନୀତି କାର୍ଯ୍ୟ ସମ୍ପନ୍ନ ହୁଏ । ୧. ପର୍ବଯାତ୍ରା ଯୋଗାଣିଆ, ୨. ପୂଜାପଣ୍ଡା, ୩. ସୁଦୁ ସୁଆର । ଏହିଦିନ ସନ୍ଧ୍ୟା ଧୂପ ପରେ ଗରୁଡ଼ଙ୍କଠାରେ ପର୍ବଯାତ୍ରା ଯୋଗାଣିଆ ଦେଇଥିବା ମହାସ୍ନାନ ସାମଗ୍ରୀ ସୁଦୁସୁଆର ପୂଜା କରିବା ପରେ ଜଣେ ପୂଜାପଣ୍ଡା ମହାସ୍ନାନ କରାଇବା ପରେ ଶୀତଳ ଭୋଗ ହୋଇ ତତ୍‌ପରେ ଆଳତୀ ବନ୍ଦାପନା ହୁଏ ଓ ଗରୁଡ ଶୟନ ନୀତି ପାଳିତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୮୩) ।

**ଗରୁଡ଼ସେବକ**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତ୍ୟେକ ଦିନ ଅବକାଶ ପରେ ଏହି ସେବକ ବିମଳାଙ୍କ କୂଅରୁ ଗରାରେ ପାଣି ଆଣି ଗରୁଡ଼ଙ୍କୁ ଚୁଆ ଚନ୍ଦନ ଲଗାଇ ସ୍ନାନ ପରେ ବସ୍ତ୍ର ପିନ୍ଧାଇ ବେଶ କରିଥାଆନ୍ତି । ସକାଳ ଧୂପରେ ଖେଚେଡ଼ି 'ସର୍ପାମଣୋହି' କରାଇ ମଧାହ୍ନ ଧୂପରେ ଦୁଇଟି ସାନ ଆରିଷା ମଣୋହି କରାନ୍ତି ।ଏହାଙ୍କୁ ମଧ ଚୂନରା ସେବକ କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ.୬୨/୬୩) ।

**ଗରୁଡ଼ସ୍ତମ୍ଭ**-*ସଂ.ବି.*- ଶ୍ରୀମନ୍ଦିରର ଜଗମୋହନ ଓ ଭୋଗମଣ୍ଡପ ମଧ୍ୟବର୍ତ୍ତୀ ନାଟମନ୍ଦିରର ପୂର୍ବଦିଗରେ ଗରୁଡ଼ସ୍ତମ୍ଭ ଅବସ୍ଥିତ । ଦଶଫୁଟ ଉଚ୍ଚତା ବିଶିଷ୍ଟ ଏହି ସ୍ତମ୍ଭ ଉପରେ କଳା ମୁଗୁନି ପଥରର ଏକ ଯୋଡ଼ହସ୍ତ ଗରୁଡ଼ମୂର୍ତ୍ତି ଶୋଭା ପାଉଅଛି । ପାଞ୍ଚଫୁଟ ଲମ୍ବରେ ପାଞ୍ଚଫୁଟ ଓସାରର ଏକ ପୀଢ଼ ଉପରେ ଖମ୍ବଟି ଦଣ୍ଡାୟମାନ । ଏହି ପୀଢ଼ର ଉଚ୍ଚତା ଭୂମି ପତନଠାରୁ ପ୍ରାୟ ଦୁଇଫୁଟ ହେବ । ପୀଢ଼ ଉପରୁ ସାତଫୁଟ ଉଚ୍ଚରେ ଏକ ବଇଠି ଉପରେ ଗରୁଡ଼ ବିଗ୍ରହ ବିଦ୍ୟମାନ ସ୍ତମ୍ଭଟିର ମଧ୍ୟବର୍ତ୍ତୀ ଅଂଶ ତଳ ଓ ଉପର ଅଂଶ ଅପେକ୍ଷା ସାମାନ୍ୟ ସରୁ ହୋଇଅଛି ।

ଗରୁଡ଼ କଶ୍ୟପ ଋଷିଙ୍କ ଔରସରୁ ବିନତାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ । ବିନତାଙ୍କୁ ଦୁଇ ପୁତ୍ର ମଧ୍ୟରୁ ଗରୁଡ଼ ଓ ଅରୁଣ । ଏକଦା ବିନତା ଓ ସପତ୍ନୀ କଦ୍ରୁ ଉଚ୍ଚୈଶ୍ରବା ଅଶ୍ୱର ବର୍ଣ୍ଣ ବିଷୟରେ ଜିଦ୍ ମରାମରି ହୋଇ ବିନତା ହାରିଯାଇଥିଲେ, ଏଣୁ ସର୍ତ୍ତାନୁସାରେ କଦ୍ରୁଙ୍କର ଦାସୀ ହୋଇ ରହିଲେ । କଦ୍ରୁ ଆଦେଶ କରିଥିଲେ କି ଗରୁଡ଼ ଇନ୍ଦ୍ରଙ୍କଠାରୁ ଅମୃତ ଆଣି କଦ୍ରୁଙ୍କୁ ଦେଲେ ତାଙ୍କର ମାତା ବିନତା ମୁକ୍ତିଲାଭ କରିବେ । ଗରୁଡ଼ ସ୍ୱର୍ଗକୁ ଯାଇ ଇନ୍ଦ୍ରଙ୍କୁ ଯୁଦ୍ଧରେ ପରାସ୍ତ କରି ଅମୃତ ଆଣି ଦେବାରୁ ବିନତା ଦାସୀତ୍ୱରୁ ମୁକ୍ତ ହୋଇଥିଲେ । ଇନ୍ଦ୍ର ଆସି ସଙ୍ଗେ ସଙ୍ଗେ ଅମୃତ ନେଇଯାଇଥିଲେ । କୁଶରେ ଲାଗିଥିବା ଅମୃତକୁ ସର୍ପମାନେ ଚାଟୁଚାଟୁ ତାଙ୍କର ଜିହ୍ୱା ଦୁଇଫାଳ ହୋଇଯାଇଥିଲା ।

ଗରୁଡ଼ଙ୍କର ପକ୍ଷ ବଡ଼ ଓ ନାକ ମଧ ବଡ଼ । ସେ ସର୍ପମାନଙ୍କର ଶତ୍ରୁ ଓ ବିନାଶକାରୀ, ପ୍ରବଳ ପରାକ୍ରମୀ ବୀର, ପକ୍ଷୀମାନଙ୍କର ରାଜା ଓ ବିଷ୍ଣୁଙ୍କର ବାହନ । ଏଣୁ ସେ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଯୋଡ଼ହସ୍ତରେ ବିନମ୍ର ସହ ଖମ୍ବ ଉପରେ ପ୍ରଭୁଙ୍କର ଆଦେଶ ଅପେକ୍ଷାରେ ଉପବିଷ୍ଟ । କେତେକଙ୍କ ମତରେ ଖମ୍ବଟି ଏକ କାଠଗଣ୍ଡି । ପଲଂଖାଛାଡ଼ି ଯାଇଥିବା ମଧମ ଆକାରର ଗଛର ଚେର ଉପରୁ ଶାଖାମୂଳ ପର୍ଯ୍ୟନ୍ତ ସମଗ୍ର ଗଣ୍ଡି । କାଠଗଣ୍ଡିଟିରେ ଫାଟ, ଶିରା ଓ ଗଣ୍ଠି ଯେପରି ଥାଏ, ଖମ୍ବଟି ଦେଖିବାକୁ ଠିକ୍ ସେହିପରି । ଏହା ମଧ ପ୍ରସ୍ତରୀଭୂତ ଏକ ବୃକ୍ଷର ଜୀବାଶ୍ମ ବା ଫସିଲ ହୋଇପାରେ । ଭକ୍ତମାନେ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରି ନ ପାରିଲେ ଏହି ଗରୁଡ଼ସ୍ତମ୍ଭକୁ ଆଲିଙ୍ଗନ କରି ବିଶେଷ ଆନନ୍ଦ ଲାଭ କରିଥାନ୍ତି । ଅତୀତରେ ଯେତେ ସାଧୁ, ସନ୍ଥ, ଧର୍ମପ୍ରଚାରକ ଓ ସନ୍ନ୍ୟାସୀ ଶ୍ରୀପୁରୁଷୋତ୍ତମଧାମକୁ ଆସିଛନ୍ତି ସମସ୍ତେ ଶ୍ରୀଜଗନ୍ନାଥଙ୍କୁ ଏହି ଗରୁଡ଼ସ୍ତମ୍ଭ ନିକଟରୁ ଦର୍ଶନ କରି ତୃପ୍ତି ଲାଭ କରିଛନ୍ତି ।
(ପୂ.ଓ.ଭା. - ପୃ. ୨୧୫୩, ଶ୍ରୀ.ଶ୍ରୀ. - ପୃ.୩୪୧) ।

**ଗରୁଡ଼ସ୍ତମ୍ଭ ନିକଟରେ ଚତୁର୍ଦ୍ଧାମୂର୍ତ୍ତି ଦର୍ଶନ -** *ଦେ.ବି.-* ଉତ୍ତର ଦ୍ୱାରର ବାହାର ବେଢ଼ାରୁ କୂର୍ମବେଢ଼ା ମଧ୍ୟକୁ ଆସି ଶ୍ରୀଜଗନ୍ନାଥ ମନ୍ଦିରର ନାଟ ମନ୍ଦିର ମଧ୍ୟକୁ ପ୍ରବେଶ କରିବାକୁ ହୋଇଥାଏ । ନାଟମନ୍ଦିରର ଏକ ସ୍ତମ୍ଭ ଉପରେ ଶ୍ରୀଜଗନ୍ନାଥଙ୍କ ବାହନ ଗରୁଡ଼ ବିରାଜମାନ । ନାଟମନ୍ଦିରର ପୂର୍ବ ପଶ୍ଚିମ ଦୈର୍ଘ୍ୟ ପ୍ରାୟ ସତଷଠି ଫୁଟ ଏବଂ ଉତ୍ତର ଦକ୍ଷିଣର ଦୈର୍ଘ୍ୟ ସତଷଠି ଫୁଟ । ଏହି ନାଟମନ୍ଦିରର ଚାରିଧାଡ଼ିରେ ଷୋଳଟି ଖମ୍ବ ଅଛି । ନାଟ ମନ୍ଦିରର ଉତ୍ତର କାନ୍ଥରେ, ଛାତରେ ଓ ଖମ୍ବରେ ବିଭିନ୍ନ ଦେବଦେବୀଙ୍କର ଚିତ୍ର ଓ ମୂର୍ତ୍ତି ରହିଛି । ଗରୁଡ଼ଖମ୍ବର ପୂର୍ବକୁ ଅର୍ଥାତ୍ ଏହାର ପଶ୍ଚାତ୍ ଭାଗରେ ଉଭୟ ପାର୍ଶ୍ୱରେ ବ୍ରହ୍ମା ଓ ଶିବ ଯୋଡ଼ହସ୍ତରେ ଦଣ୍ଡାୟମାନ । ଗରୁଡ଼ସ୍ତମ୍ଭର ଦକ୍ଷିଣକୁ ପ୍ରଭୁ ଜଗନ୍ନାଥ ଓ ବଳଭଦ୍ରଙ୍କ କାଞ୍ଚି ଅଭିଯାନର ମୂର୍ତ୍ତି ବିଦ୍ୟମାନ । ଧଳା କଳା ଘୋଡ଼ା ଚଢ଼ି କାଞ୍ଚି ଯୁଦ୍ଧରେ ରାଜା ପୁରୁଷୋତ୍ତମ ଦେବଙ୍କୁ ସହାୟତା କରିବା ପାଇଁ ଯାଉଥିବା ବେଳେ ରତ୍ନମୁଦି ବନ୍ଧାଦେଇ ମାଣିକ ଗଉଡୁଣୀଠାରୁ ଦହି ଖାଇବା ଦୃଶ୍ୟ ଏଥିରେ ସୂଚିତ ହୋଇଛି । ଗରୁଡ଼ ଖମ୍ବ ନିକଟରେ ବା ପଶ୍ଚାତ୍ ଭାଗରେ ଦଣ୍ଡାୟମାନ ହୋଇ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରିବାର ବିଧି ରହିଥିବା ବିଷୟ ପ୍ରାୟ ସର୍ବଜନ ବିଦିତ । ସମସ୍ତ ଭକ୍ତବୃନ୍ଦ ବିଶେଷକରି ଦୀନକୃଷ୍ଣ ଦାସ ଓ ଶ୍ରୀଚୈତନ୍ୟ ଏହିଠାରେ ଦଣ୍ଡାୟମାନ ହୋଇ ପ୍ରଭୁଙ୍କୁ ଦର୍ଶନ କରୁଥିଲେ ।

**ଗହଣବିଜେ**-*ଦେ.ବି.-* ରାଣୀ, ଦାସୀ ଓ ଅନ୍ୟ ପରିଚାରିକାଙ୍କ ଗହଣରେ ରାଜାଙ୍କର ଶ୍ରୀମନ୍ଦିରକୁ ବିଜେ ।
(କ୍ଷେ.ସ.) ।

**ଗହ୍ମାପୂର୍ଣ୍ଣିମା**-*ଦେ.ବି.-* ଶ୍ରାବଣ ପୂର୍ଣ୍ଣିମା । ଶ୍ରୀମନ୍ଦିରରେ ଏହିଦିନ ଠାକୁରଙ୍କ ନୀତି ପାଇଁ ବୋଇରାଣୀ ପତନୀ, ଷଷ୍ଠୀ, ମାର୍କଣ୍ଡ ଓ ବରୁଣ ପୂଜା ସାମଗ୍ରୀ, ସୁନା ଲାଗିଥିବା ପାଟରାକ୍ଷୀ, ଗୁଆରମାଳି, ପାତ୍ର ସଜ ଓ ମାଳାର୍ପଣ ସାମଗ୍ରୀମାନ ଯୋଗାଇ ଦିଆଯାଇଥାଏ । ଘଟୁଆରୀ, ପୁଷ୍ପାଳକ, ପଣ୍ଡା, ପତିମହାପାତ୍ର, ମୁଦିରସ୍ତ, ଆସ୍ଥାନ ପଢ଼ିଆରୀ ବା ସୁଦୁସୁଆର, ପାଳିଆ ପଢ଼ିହାରୀ, ଦୁଆର ନାଏକ, ଦଇତାପତି, ଚାଙ୍ଗଡ଼ା ମେକାପ, ବିମାନବଡ୍ଡୁ, କୁମ୍ଭାର ବିଶୋଇ, ପାଳିଆ ମେକାପ, ସୁଆରବଡ୍ଡୁ ଓ ଅନ୍ୟାନ୍ୟ ସେବକମାନେ ଏହି ଦିନର ସ୍ୱତନ୍ତ୍ର କାର୍ଯ୍ୟକୁ ସମ୍ପନ୍ନ କରିଥାନ୍ତି । ମଧ୍ୟାହ୍ନ ଧୂପ ବନ୍ଦାପନା ଓ ମଙ୍ଗଳାର୍ପଣ ପରେ ପାଳିଆ ଖୁଣ୍ଟିଆ ଲଣ୍ଡାବର୍ତ୍ତଠାରେ ସୁଦର୍ଶନଙ୍କୁ ବିଜେ କରାଇବା ପାଇଁ ଦଇତାପତିମାନଙ୍କୁ ଡାକନ୍ତି । ମହାପ୍ରଭୁଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ସୁଦର୍ଶନଙ୍କୁ ଦିଆଯାଇ ମାଳଚୂଳ ଓ ବିବିଧ ସ୍ୱର୍ଣ୍ଣଅଳଙ୍କାର ସହ ବିମାନବଡ୍ଡୁମାନେ ବିମାନରେ ସୁଦର୍ଶନଙ୍କୁ ମାର୍କଣ୍ଡଙ୍କଠାକୁ ନିଅନ୍ତି । ଏହି ମଣ୍ଡପ ଉପରେ କୁମ୍ଭାର ବିଶୋଇ ଦେଇଥିବା ଚିକିଟା ମାଟିରେ ସୁଦୁସୁଆର ବଳଭଦ୍ର ମୂର୍ତ୍ତି ନିର୍ମାଣ କରନ୍ତି । ପୂଜାପଣ୍ଡା ତାହାଙ୍କୁ ଜୀବନ୍ୟାସ ଦେଇ ବିଧି ମୁତାବକ ତାଙ୍କର ଜାତକର୍ମ କରାନ୍ତି । ମୁଦିରଥ ପ୍ରସାଦ ଲାଗି କରାନ୍ତି । ପୂଜାପଣ୍ଡା ପଞ୍ଚୋପଚାରରେ ପୂଜା କରି ଶୀତଳ ମଣୋହି କରାଇ ବନ୍ଦାପନା ପରେ ବଳଭଦ୍ର ପିତୁଳାଙ୍କୁ ଜଳରେ ବିସର୍ଜନ କରାଯାଏ । ଏହାପରେ ସୁଦର୍ଶନଙ୍କୁ ବିମାନରେ ଚାରି ଆଶ୍ରମ ବୁଲାଇ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୮୮) ।

**ଗ୍ରହଣନୀତି**-*ଦେ.ବି.-* ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ଶ୍ରୀମନ୍ଦିରରେ କରାଯାଉଥିବା ବିଶେଷ ନୀତି । ଏହି ଦିନମାନଙ୍କରେ ପାକତ୍ୟାଗ ସମୟଠାରୁ ଠାକୁରଙ୍କର କୌଣସି ନୀତି ହୁଏ ନାହିଁ । ପାକତ୍ୟାଗ ପୂର୍ବରୁ ଠାକୁର ତଡ଼ପ ଉତ୍ତରି ଲାଗି ହୋଇ ବସନ୍ତି । ରୋଷ ସବୁ ସଫା ହୋଇଥାଏ । ଗ୍ରହଣ ବା ପରାଗ ଲାଗିଲେ ପୂଜାପଣ୍ଡାମାନେ ଠାକୁରଙ୍କର ଗ୍ରହଣ ମହାସ୍ନାନ କରାନ୍ତି । ରୋଷଘରେ ହୋମହୁଏ । ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା ହୁଏ । ପାଳିଆ ପୁଷ୍ପାଳକମାନେ ତିନି ବାଡ଼ରେ

ଗ୍ରହଣ ନୀତି କରନ୍ତି । ଏହି ବେଶ ଲୁଗା, ଫୁଲ ଓ ତୁଳସୀ ଦ୍ୱାରା ହୁଏ । ଜୟବିଜୟ ଦ୍ୱାର ବନ୍ଦ ଥାଏ । ଟେରା ବନ୍ଧା ହୁଏ । ପାଳିଆ ମହାସୁଆର ଛେକ ଆଣିଲା ପରେ ଖଇ, କୋରା ଇତ୍ୟାଦି ଶୀତଳ ଭୋଗ ଚାରି ବାଡ଼ରେ ଲାଗି ହୁଏ । ଗ୍ରହଣ ସମୟ ଦେଖି ଅନ୍ୟାନ୍ୟ ଦୈନନ୍ଦିନ ନୀତି ନିର୍ଣ୍ଣୟ ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୪୬) ।

**ଗାଧୁଆବେଳ**-*ଦେ.ବି.*- ସାଧାରଣତଃ ଯେଉଁ ସମୟରେ ଭିନ୍ନ ଭିନ୍ନ ବ୍ୟକ୍ତି, ପଶୁପକ୍ଷୀ ସ୍ନାନ କରନ୍ତି ସେହି ସମୟକୁ ସେହି ନାମ ଯୁକ୍ତ ଗାଧୁଆବେଳ କୁହାଯାଏ । ଗାଁ ଭୁଆସୁଣୀଙ୍କ ଗାଧୁଆବେଳ ପ୍ରାୟ ସକାଳ ସାତଟା, କଅଁଳ ଗାଧୁଆବେଳ ପ୍ରାୟ ଦିନ ନଅଟା, ଟାଣ ଗାଧୁଆବେଳ ପ୍ରାୟ ଦିନ ଏଗାରଟା, ମୂଲିଆ ଗାଧୁଆବେଳ ପ୍ରାୟ ଦିନ ବାରଟା, ଗାଈ ଗାଧୁଆ ବେଳ ଅପରାହ୍ନ ଚାରିଟା, ଚଢ଼େଇ/କୁଆ ଗାଧୁଆ ବେଳ ସନ୍ଧ୍ୟା ପାଞ୍ଚଟା । ଶ୍ରୀଜଗନ୍ନାଥ ଏ ରାଜ୍ୟର ଅଧିଷ୍ଠାତା ଦେବତା । ଲୋକେ ତାଙ୍କୁ ନିଜ ପରିବାରର ମୁରବୀ ବୋଲି ଗ୍ରହଣ କରିଥାନ୍ତି । ତେଣୁ ତାଙ୍କର ମଧ୍ୟ ଗାଧୁଆ ବେଳ ରହିଛି । ସ୍ନାନ ବିଧି ଅବକାଶ ପୂର୍ବାହ୍ନ ଛଅ ଘଣ୍ଟା ଠାରୁ ଛଅ ଘଣ୍ଟା ତିରିଶ ମିନିଟ ମଧ୍ୟରେ । (ପୂ.ଓ.ଭା. - ୨୧୯୫, ଶ୍ରୀ.ସ୍ୱ. ୨ୟ - ପୃ.୧୩) ।

**ଗାୟତ୍ରୀ**-*ସଂ.ବି.*- ପ୍ରସିଦ୍ଧ ବୈଦିକ ମନ୍ତ୍ର । ଏହାର ଅନ୍ୟନାମ ସାବିତ୍ରୀ ମନ୍ତ୍ର । ବ୍ରାହ୍ମଣ ଏହି ମନ୍ତ୍ର ଦ୍ୱାରା ପ୍ରତିଦିନ ସକାଳେ, ସନ୍ଧ୍ୟାରେ ଓ ମଧ୍ୟାହ୍ନରେ (ତ୍ରିସନ୍ଧ୍ୟାରେ) ଉପାସନା କରନ୍ତି । "ଓଁ ଭୂର୍ଭୁବଃ ସ୍ୱଃ ତତ୍ ସବିତୁ ର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧିୟୋ ଯୋ ନଃ ପ୍ରଚୋଦୟାତ୍ ।" ଏହି ମନ୍ତ୍ରର ଆଦ୍ୟରେ ପ୍ରଣବ ବୀଜ ବା ଓଁ ଏବଂ ୩ଟି ମହାବ୍ୟାହୃତି ବୀଜ "ଭୂଃ ଭୁବଃ ଓ ସ୍ୱଃ" ଯୋଗ କରି ତତ୍‌ପରେ ଉପରୋକ୍ତ ଗାୟତ୍ରୀ ମନ୍ତ୍ର ଉଚ୍ଚାରଣ ପୂର୍ବକ ଗାୟତ୍ରୀ ପୁରଶ୍ଚରଣ କରନ୍ତି । ଶ୍ରୀମନ୍ଦିର ବେଢ଼ାରେ ଥିବା ଭୁବନେଶ୍ୱରୀ ମନ୍ଦିରର ନାଟମଣ୍ଡପର ପାର୍ଶ୍ୱରେ ଷଷ୍ଠୀ ସାବିତ୍ରୀ ସହ ଗାୟତ୍ରୀ ଦେବୀଙ୍କ ବିଗ୍ରହ ପୂଜା ପାଉଛନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୨୩୧, ପୂ.ଓ.ଭା. - ପୃ. ୨୨୦୧) ।

**ଗାୟଣୀ**-*ଦେ.ବି.ସ୍ତ୍ରୀ.*- ଶ୍ରୀମନ୍ଦିରରେ ଠାକୁରଙ୍କର ସେବିକା ବିଶେଷ । ଏମାନେ ଦୁଇ ଶ୍ରେଣୀ । ଭିତର ଗାୟଣୀ ଓ ବାହାର ଗାୟଣୀ । ଏମାନଙ୍କୁ ମାହାରୀ ବୋଲି ସମ୍ବୋଧନ କରାଯାଇଥାଏ । ମାହାରୀ ଠାକୁରଙ୍କ ସାମ୍ନାରେ ଗୀତଗୋବିନ୍ଦ ଗାନ କରି ନୃତ୍ୟ କରୁଥିବା ସେବିକା । ଆଳତି ସମୟରେ ଭିତର ଗାୟଣୀ କଳାହାଟ ଦୁଆର ଜଗନ୍ନାଥଙ୍କ ପାର୍ଶ୍ୱରେ ରହି ଗାନ କରନ୍ତି । ଫାଲଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସମ୍ପ୍ରଦା ମାହାରୀ ଓ ମୁଦିରସ୍ତ ମଧ୍ୟରେ ଫଗୁଖେଳ ହୁଏ । ରୁକ୍ମିଣୀ ହରଣରେ ମଧ୍ୟ ଲକ୍ଷ୍ମୀଙ୍କ ମନ୍ଦିରଠାରୁ ଠାକୁରାଣୀ ପାଲିଙ୍କିରେ ବିଜେ ହୋଇ ମାହାରୀଙ୍କୁ ସଙ୍ଗରେ ଘେନି ଗ୍ରାମଦେବତୀ ପୂଜା କରିବା ପାଇଁ ବିମଳାଙ୍କ ମନ୍ଦିରକୁ ଆସିଥାନ୍ତି । ଆଷାଢ଼ ଶୁକ୍ଳ ଦ୍ୱାଦଶୀ ନୀଳାଦ୍ରିବିଜେ ଦିନ ଶ୍ରୀଜଗନ୍ନାଥ ସିଂହଦ୍ୱାରକୁ ଆସିଲେ ଦ୍ୱାର ଫିଟାଇ ଦିଅନ୍ତି । ତା'ପରେ ଠାକୁର ଭିତରକୁ ବିଜେ କଲେ ଜୟବିଜୟ ଦ୍ୱାର ବନ୍ଦ କରିଦିଅନ୍ତି । ଲକ୍ଷ୍ମୀଙ୍କ ତରଫରୁ ଦେବଦାସୀମାନେ ଦ୍ୱାର ବନ୍ଦ କରନ୍ତି । ଦଇତା ଓ ଦେବଦାସୀଙ୍କ ମଧ୍ୟରେ ବଚନିକା ଆରମ୍ଭ ହୁଏ ଓ ଦେବଦାସୀମାନେ ଦଇତାଙ୍କୁ ଥଟ୍ଟା, ମଜା ଗମାତ ବା ଲଣ୍ଡଭଣ୍ଡ କରିଥାନ୍ତି । ତା'ପରେ ଦ୍ୱାରଫିଟା ଓ ପରେ ଅନ୍ୟାନ୍ୟ ନୀତି ହୁଏ । ଚନ୍ଦନଯାତ୍ରା ଚାପ ଉପରେ ମାହାରୀ ଗାୟାଣୀଙ୍କର ଆବଶ୍ୟକତା ଥାଏ । (ଶ୍ରୀ.ସ୍ୱ. ୨ୟ - ପୃ.୨୮/୮୦-୮୧/୧୧୯) ।

**ଗାରଦଘର**-*ଦେ.ବି.*- ଶ୍ରୀମନ୍ଦିର ନୀତି ପରିଚାଳନା କାର୍ଯ୍ୟ ଚାଲିଥିବା ଏକ ମଣ୍ଡପ । ଭିତରେ ଥିବା ଗାରଦ ନାରାୟଣ ଠାକୁରଙ୍କୁ ଦୈନିକ ପୂଜା ହୁଏ । ବର୍ତ୍ତମାନ ମନ୍ଦିରର ଆରକ୍ଷୀ ବାହିନୀ ଏଠାରେ ଅବସ୍ଥାନ କରୁଛନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୨୧୬) ।

**ଗାଲମାଧବ**-*ଦେ.ବି.*- ପୁରାଣରେ ବର୍ଣ୍ଣିତ ଅଛି ଯେ, ବିଷ୍ଣୁଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ଶୂନ୍ୟବାଣୀ ଅନୁସାରେ ମନ୍ଦିର ନିର୍ମାଣ କରି ପ୍ରତିଷ୍ଠା କରିବା ନିମନ୍ତେ ନାରଦଙ୍କ ସହ ବ୍ରହ୍ମାଙ୍କୁ ଆମନ୍ତ୍ରଣ କରି ଆଣିବା ନିମନ୍ତେ ସ୍ୱର୍ଗକୁ ଗଲେ, କିନ୍ତୁ ସେ ସମୟରେ ବ୍ରହ୍ମା ସନ୍ଧ୍ୟାତର୍ପଣ କରୁଥିବା ହେତୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦଣ୍ଡେ ଅପେକ୍ଷା କରିବାକୁ ପଡ଼ିଲା । ସନ୍ଧ୍ୟାତର୍ପଣ ଶେଷ କରି ଇନ୍ଦ୍ରଦ୍ୟୁମ୍ନ ନାରଦ ସହ ବ୍ରହ୍ମାଙ୍କୁ ମର୍ତ୍ତ୍ୟକୁ ଧରି ଆସିଲେ । ଏତେବେଳକୁ ବହୁବର୍ଷ ମର୍ତ୍ତ୍ୟରେ ଅତିବାହିତ ହୋଇଯାଇଥିଲା ।

ଏହି ସମୟରେ ଗାଲମାଧବ ନାମକ ଜଣେ ରାଜା ଅଶ୍ୱପୃଷ୍ଠରେ ବାଲୁକା କୁଦ ଉପରେ ଯାଉ ଯାଉ ଅଶ୍ୱର ଖୁରାକୁ ଏକ ଧାତବ ପଦାର୍ଥ ବାଧା ହେବାରୁ ରାଜା ତାକୁ ଖୋଳାଇ ଏକ ସୁନ୍ଦର ମନ୍ଦିର ଆବିଷ୍କାର କରିଥିଲେ । ପ୍ରତିଷ୍ଠାତାଙ୍କର ନାମ ବିବରଣୀ କିଛି ନ ଥିବା ହେତୁ ସେ ଏକ ବିଷ୍ଣୁ ମୂର୍ତ୍ତି ଆଣି ସେଠାରେ ସ୍ଥାପନ କରି ପୂଜାର୍ଚ୍ଚନା ଆରମ୍ଭ କଲେ । ଇନ୍ଦ୍ରଦ୍ୟୁମ୍ନ ମର୍ତ୍ତ୍ୟକୁ ଫେରି ଉକ୍ତ ମନ୍ଦିରର ନିର୍ମାତା ବୋଲି ଦାବି କରିବାରୁ ଗାଲମାଧବ ନିଜର ମନ୍ଦିର ବୋଲି ଯୁକ୍ତି କରିଥିଲେ । ରୋହିଣୀ କୁଣ୍ଡସ୍ଥ ଚତୁର୍ଭୁଜ ଭୂଷଣ୍ଡ କାକ, ନାଡ଼ିଜଙ୍ଘବକ ଓ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀର ଅକୁପାର କଚ୍ଛପ ଇନ୍ଦ୍ରଦ୍ୟୁମ୍ନଙ୍କ ସପକ୍ଷରେ ସାକ୍ଷ୍ୟ ଦେବାରୁ ବ୍ରହ୍ମା ଜାଣିଲେ ମନ୍ଦିରର ନିର୍ମାତା ପ୍ରକୃତରେ ରାଜା ଇନ୍ଦ୍ରଦ୍ୟୁମ୍ନ । ମିଛ କହିଥିବା ହେତୁ ବ୍ରହ୍ମା ଗାଲମାଧବଙ୍କୁ ଅଭିଶାପ ଦେଇଥିଲେ । ଯଜ୍ଞବେଦୀ ଉପରେ ଗଡ଼ା ହୋଇ ରହିଥିବା ଦାରୁ ମୂର୍ତ୍ତିଙ୍କୁ ବୈଶାଖ ଶୁକ୍ଳ ଅଷ୍ଟମୀ ତିଥିରେ ମନ୍ଦିରକୁ ଆଣି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇଥିଲେ ।

(ଶ୍ରୀ.ଜି. - ପୃ. ୧୨) ।

**ଗିଲାପ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କର ଏକ ବସ୍ତ୍ର ବିଶେଷ । ଲାଲ ରଙ୍ଗ କନାର ଏକ ଆଚ୍ଛାଦନ । (ଶ୍ରୀ.ଶ.- ପୃ.୫୫) ।

**ଗୀତଗୋବିନ୍ଦ**-*ସଂ.ବି.*- କବି ଜୟଦେବକୃତ ସୁଲଳିତ ଛନ୍ଦରେ ରଚିତ ରାଧାକୃଷ୍ଣ ଲୀଳା ବିଷୟକ ସଂସ୍କୃତ ଗୀତିକାବ୍ୟ । ଏଥିରେ ସଂସ୍କୃତ ଶ୍ଳୋକ ଓ ସଙ୍ଗୀତ ମାଧ୍ୟମରେ ଦଶ ଅବତାର ଓ ଶ୍ରୀକୃଷ୍ଣଙ୍କର ବିଶିଷ୍ଟ ଲୀଳାମାନ ରହିଛି । ବଡ଼ଶୃଙ୍ଗାର ବେଶ ସମୟରେ 'ଗୀତଗୋବିନ୍ଦ' ଲେଖା ହୋଇଥିବା ବାରଲାଗି ପାଟ ଶ୍ରୀଅଙ୍ଗରେ ଲାଗି କରାଯାଏ । ଶ୍ରୀଜଗନ୍ନାଥଙ୍କ ଗାନ ଆଳତି ସମୟରେ ଭିତର ଗାୟଣୀ କଳାହାଟ ଦୁଆରେ ଜଗନ୍ନାଥଙ୍କ ପାର୍ଶ୍ୱରେ ରହି ଗୀତଗୋବିନ୍ଦ ଗାନ କରନ୍ତି ଓ ବୀଣାକାର ବଡ଼ଠାକୁରଙ୍କ ପାର୍ଶ୍ୱରେ ବୀଣା ବଜାଏ ।

(ଶ୍ରୀ.ସ୍ୱ. ୨ୟ - ପୃ.୨୮, ପୂ.ଓ.ଭା. - ପୃ.୨୨୨୪) ।

**ଗୀତଗୋବିନ୍ଦ ସେବକ**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ସେବକ ଚନ୍ଦନଲାଗି ସମୟରେ ଭିତର କାଠ ପାଖରେ ଗୀତଗୋବିନ୍ଦ ପାଠ କରନ୍ତି ।

(ଶ୍ରୀ.ସ୍ୱ. - ପୃ. ୪୦) ।

**ଗୀତା**-*ସଂ.ବି.*- ସଂସ୍କୃତ ମହାଭାରତ ଅନୁସାରେ କୁରୁକ୍ଷେତ୍ର ଯୁଦ୍ଧ ସ୍ଥଳରେ ଅର୍ଜୁନଙ୍କୁ ଶ୍ରୀକୃଷ୍ଣ ଯେଉଁ ଉପଦେଶ ପ୍ରଦାନ କରିଥିଲେ ଓ ଦୁହିଁଙ୍କ ମଧ୍ୟରେ ଆତ୍ମବିଦ୍ୟା ସମ୍ବନ୍ଧରେ ଯେଉଁ ଆଲୋଚନା ଓ କଥୋପକଥନ ହୋଇଥିଲା ତାହା ହେଉଛି ଶ୍ରୀମଦ୍‌ଭଗବତ୍ ଗୀତା ।

(ପୂ.ଓ.ଭା. - ପୃ.୨୨୨୫) ।

**ଗୁଆ**-*ଦେ.ବି.*- ବିଭିନ୍ନ ପୂଜା ଓ ବ୍ରତ ବିବାହାଦି ମଙ୍ଗଳ କାର୍ଯ୍ୟରେ ଏକ ପବିତ୍ର ଫଳ ରୂପେ ଗ୍ରହଣ କରାଯାଏ ଓ ବନ୍ଧୁ ନିମନ୍ତ୍ରଣ ଆଦି କାର୍ଯ୍ୟରେ ବ୍ୟବହୃତ ହୁଏ । ବୈଦିକ ଅନୁଷ୍ଠାନରେ ଏହା ଏକ ପ୍ରଥମ ଓ ପ୍ରଧାନ ଅଙ୍ଗ । ଏହା କଟା ହୋଇ ପାନ ସଙ୍ଗେ ଖିଆଯାଏ । ଶ୍ରୀମନ୍ଦିରରେ ଧୂପ ପରମ୍ପରାରେ ଟେରା ଫିଟିବା ପୂର୍ବରୁ ଶ୍ରୀଜଗନ୍ନାଥଙ୍କୁ ବିଡ଼ିଆ ମଣୋହିରେ ଖିଲିପାନ ଅର୍ପଣ କରାଯାଏ । ଏହି ଖିଲିପାନରେ ଅଳେଇଚ, ଲବଙ୍ଗ, କର୍ପୂର, ଯାଇପତ୍ରି ସହ ଶୁଖିଲା ଗୁଆ ମଧ ଲାଗି ହୁଏ । ହଡ଼ପ ନାଏକ ବନ୍ଧାବିଡ଼ିଆ

ତିନିଠାକୁରଙ୍କ ପାଖରେ ଗୂଆବଟାରେ ଦିଅନ୍ତି । ଏହା ବିଡ଼ିଆ ମଣୋହି ନାମରେ ପରିଚିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦, ପୂ.ଓ.ଭା. - ପୃ୨୨୨୬) ।

**ଗୁଆଲି**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ସେବକ ପରମ୍ପରାରେ ବିବାହର ତୃତୀୟ ଦିନ ବରକନ୍ୟାଙ୍କ ପରିକ୍ରମା । ଶ୍ରୀଜଗନ୍ନାଥଙ୍କ ବିବାହନୀତି ଓ ବ୍ରାହ୍ମଣ ସେବକଙ୍କ ବିବାହରେ ଏହି ରୀତି କେବଳ ପୁରୀରେ ଅନୁସୃତ ହୁଏ । (କ୍ଷେ.ସ.) ।

**ଗୁଆଟେକା**-*ଦେ.ବି.*- ଶ୍ରୀନଅରଠାରେ ବନଯାଗ ଯାତ୍ରୀ ଦଳ ପହଞ୍ଚିବା ପୂର୍ବରୁ ଶ୍ରୀଗଜପତି ମହାରାଜା ତାଙ୍କ ଶ୍ରୀହସ୍ତରେ ନବକଳେବରର ବରଣ କାର୍ଯ୍ୟ ପାଇଁ ଗୁଆ ନଡ଼ିଆ ଇତ୍ୟାଦି ରାଜଗୁରୁଙ୍କ ହାତକୁ ଟେକି ଦେଇଥା'ନ୍ତି । ବନଯାଗ ଦଳ ରାଜନବରରେ ପହଞ୍ଚିଲେ ରାଜଗୁରୁ ସେହି ଶୁଭ ଗୁଆ ଏବଂ ନଡ଼ିଆ ଆଦିକୁ ବିଶ୍ୱାବସୁଙ୍କୁ ପ୍ରଦାନ କରନ୍ତି । ଏଥିପୂର୍ବରୁ ରାଜଗୁରୁ ବନଯାଗର ଯାଜ୍ଞିକ ଆଚାର୍ଯ୍ୟ ଏବଂ ଅନ୍ୟାନ୍ୟ ସ୍ୱୀକୃତ ଶ୍ରୋତ୍ରିୟ ବ୍ରାହ୍ମଣମାନଙ୍କୁ ବରଣୀୟ ଦ୍ରବ୍ୟ ପ୍ରଦାନ କରି ବନଯାଗର ଶୁଭାନୁଷ୍ଠାନ ପାଇଁ ଗଜପତିଙ୍କ ତରଫରୁ ଅନୁରୋଧ ଜଣାନ୍ତି । ଏହି ବିଧିର ଲୋକାଚାରରେ ନାମ ହେଉଛି 'ଗୁଆଟେକା' ।
(ମ.ନ. - ପୃ. ୪୮) ।

**ଗୁଗୁଳ**-*ସଂ.ବି.*- ସୁଗନ୍ଧ ଧୂପ ଦ୍ରବ୍ୟ ବିଶେଷ । ଏହା ସିନ୍ଧୁ, ରାଜପୁତନା ଓ ଓଡ଼ିଶାରେ ମଧ ମିଳେ । ଓଡ଼ିଶାରେ ଏହାର ନାମ ଶିଳା ଗଛ । ଏହାର ଛାଲ (କାଗଜ ପରି ପତଳା) ଗଛରୁ ଝଡ଼େ । ଶାଖାର ପ୍ରାନ୍ତରେ ପତ୍ର ଧରେ । ଏ ଗଛର ରସ ସୁଗନ୍ଧ, ଶୀତକାଳରେ ଗଛର ଛାଲରେ କଣା କଲେ ସୂତା ପରି ରସ ବାହାରେ । ଏ ରସ ଶୁଖିଲେ ଗୁଗୁଳ ହୁଏ । ଏହାକୁ ନିଆଁରେ ପକାଇ ଧୂପ ଦେଲେ ସୁଗନ୍ଧ ବାହାରେ । ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ପର୍ବପର୍ବାଣିରେ ଏହାର ବ୍ୟବହାର କରାଯାଏ ।
(ପୂ.ଓ.ଭା. - ପୃ.୨୨୩୦) ।

**ଗୁଜୁରାତି**-*ଦେ.ବି.*- ସୁଗନ୍ଧ ମଞ୍ଜି ବିଶେଷ । ବଡ଼ ଗୁଜୁରାତିକୁ ଅଳେଇଚ କୁହାଯାଏ । ଏହା ଭାରତର ଦକ୍ଷିଣପୂର୍ବ ଅଞ୍ଚଳରେ ଜନ୍ମେ । ଏହା ହଳଦୀ ଜାତୀୟ ଗୁଳ୍ମର କୋଷମୟ ଫଳ । ଏହାର ଉପରି ଭାଗରେ ଧଳାଚୋପା ଓ ଭିତରେ କଳା କଳା ଦାନା ଥାଏ । ଶ୍ରୀମନ୍ଦିରରେ ପ୍ରତି ଧୂପପରେ ଶ୍ରୀଜଗନ୍ନାଥଙ୍କୁ ବିଡିଆ ଖିଲିପାନ ମଣୋହିରେ ଗୁଜୁରାତି, ଅଳେଇଚ, ଲବଙ୍ଗ ପ୍ରଭୃତି ବ୍ୟବହାର କରାଯାଏ । ଏତଦ୍ ବ୍ୟତୀତ ଏହି ସବୁକୁ ମସଲା ରୂପେ ଶ୍ରୀମନ୍ଦିରରେ ବ୍ୟବହାର କରାଯାଇ ବ୍ୟଞ୍ଜନ ଓ ବିଭିନ୍ନ ପ୍ରକାର ପିଷ୍ଟକ ପ୍ରସ୍ତୁତ କରାଯାଇଥାଏ ।
(ପୂ.ଓ.ଭା. - ପୃ. ୨୨୩୧, ଶ୍ରୀ.ସ୍ୱ. - ପୃ. ୨୦) ।

**ଗୁଡ଼**-*ସଂ.ବି.* - ଆଖୁରସ ଦୋରୁଅକୁ ଆଉଟି ବହଳ କରି ଏହା ପ୍ରସ୍ତୁତ କରାଯାଏ । ଗୁଡ଼ ତିନି ପ୍ରକାର । ୧. ଭେଲି ଗୁଡ଼, ୨. ଛେଦା ଗୁଡ଼, ୩. ଝରା ଗୁଡ଼ । ଶ୍ରୀମନ୍ଦିରରେ ମିଷ୍ଟାନ୍ନପିଷ୍ଟକ ପ୍ରସ୍ତୁତିରେ ଗୁଡ଼ର ଆବଶ୍ୟକ ଅଧିକ ।

**ଗୁଡବଣା**-*ଦେ.ବି.*- ଗୁଡ଼ ପ୍ରସ୍ତୁତ ବେଳେ ଗୁଡ଼କୁ ଢାଳି ଯେଉଁ ମାଟିପାତ୍ରରେ ରଖାଯାଏ ତାକୁ ଗୁଡ଼ବଣା କୁହାଯାଏ ।
(ପୂ.ଓ.ଭା. - ପୃ.୨୨୩୬) ।

**ଗୁଡ଼ିଆ**-*ଦେ.ବି.*- ଗୁଡ଼ରେ ମିଷ୍ଟାନ୍ନ ପ୍ରସ୍ତୁତ କରିବା ଜାତି । ଏମାନେ ଉଖୁଡ଼ାଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ମିଠେଇ ତିଆରି କରନ୍ତି । ଏମାନେ ବୈଶ୍ୟ ବା କାଶ୍ୟପ ଗୋତ୍ରୀ । ଏମାନଙ୍କର ଚାରି ଜାତି । ଯଥା- ୧. ଉଦରଖି, ୨. ହଳଦିଆ, ୩. ଝୁମୁକା, ୪. ମଇରା । ଝୁମୁକା ଜାତି ଛଡ଼ା ଅନ୍ୟ ତିନି ଜାତିର ସ୍ତ୍ରୀ ନାକରେ କିଛି ଅଳଙ୍କାର ପିନ୍ଧନ୍ତି ନାହିଁ । ଗଣେଶ ଏମାନଙ୍କ ଇଷ୍ଟଦେବ । ଶ୍ରୀମନ୍ଦିରର ରୋଷଘରେ ଠାକୁରଙ୍କ ନିମନ୍ତେ ରୋଷ କର୍ମ, ମିଷ୍ଟାନ୍ନ ଭୋଗ ଓ ପିଷ୍ଟକ ତିଆରି ପାଇଁ ଗୁଡ଼ିଆ ସେବକ ମଧ ନିଯୁକ୍ତି ପାଇଛନ୍ତି ।
(ପୂ.ଓ.ଭା. - ପୃ. ୨୨୩୮) ।

**ଗୁଣା**-ଦେ.ବି.- ସ୍ତ୍ରୀମାନଙ୍କ ନାକରେ ପିନ୍ଧାଯିବା ବର୍ତ୍ତୁଳାକାର ଅଳଙ୍କାର ବିଶେଷ । ଏହା ଗୁଣା ବା ନାକଚଣା ରୂପେ ପରିଚିତ । କେତେକ ନାକ ଦୁଇପୁଡ଼ାରେ ଦୁଇ ଅଳଙ୍କାର ଗୁଣା ଓ ବସୁଣୀ ନାମକ ଦୁଇଟି ଅଳଙ୍କାର ବ୍ୟବହାର କରନ୍ତି । ସାଧାରଣତଃ ନାକର ବାମପୁଡ଼ାରେ ଗୁଣା ଓ ଡାହାଣପୁଡ଼ାରେ ବସୁଣୀ ଓ ନୋଥ ପିନ୍ଧାଯାଏ । ଗୁଣା ମଧ ଅନେକ ପ୍ରକାରର ଯଥା- ଖଣ୍ଡିଗୁଣା, ମାଠଗୁଣା, ଫୁଲଗୁଣା, ମୟୂରବସା ଗୁଣା ଓ ଯାଉଁଳି ଗୁଣା । ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ଦେବୀ ସମସ୍ତଙ୍କ ନାକରେ ଗୁଣା ନାକଚଣା ଅଳଙ୍କାର ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ.୨୨୪୪-୪୫) ।

**ଗୁଣ୍ଠନ**-ଦେ.ବି.- ବେଷ୍ଟନ, ଆବରଣ, ଲୁଚାକନା, ଉତ୍ତରୀୟ । ଶ୍ରୀଜୀଉ ଭଉଁରୀ ପୁଷ୍ପାଭିଷେକରେ ଚଦର, ପତନୀ, ଘୋଡ଼ା, ପାହାଡ଼ା ପ୍ରଭୃତି ବ୍ୟବହାର କରିଥାନ୍ତି ।
(ପୂ.ଓ.ଭା. - ପୃ. ୨୨୪୭) ।

**ଗୁଣ୍ଡିଚା**-ଦେ.ବି.- ଇନ୍ଦ୍ରଦ୍ୟୁମ୍ନଙ୍କ ପତ୍ନୀ ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ତିନିଟି ରଥରେ ବସି ସାତଦିନ ନିମନ୍ତେ ଆଡ଼ପ ମଣ୍ଡପକୁ ଯାତ୍ରା କରନ୍ତି । ରାଜା ଇନ୍ଦ୍ରଦ୍ୟୁମ୍ନ ଓ ରାଣୀ ଗୁଣ୍ଡିଚା ଦେବୀ ଏ ଉତ୍ସବର ପ୍ରତିଷ୍ଠାତ୍ରୀ । ଯେଉଁ ଯେଉଁ ସ୍ଥାନମାନଙ୍କରେ ଶ୍ରୀଜଗନ୍ନାଥ ବିଗ୍ରହ ପ୍ରତିଷ୍ଠିତ ସେ ସ୍ଥାନରେ ମଧ ଗୁଣ୍ଡିଚା ଯାତ୍ରା ଉତ୍ସବ ପାଳିତ ହୁଏ ।
(ପୂ.ଓ.ଭା. - ପୃ.୨୨୪୯) ।

**ଗୁଣ୍ଡିଚା ମନ୍ଦିର**- ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ରଥରେ ଗୁଣ୍ଡିଚା ଘରକୁ ଯାତ୍ରା କରିବା ଉତ୍ସବକୁ ଗୁଣ୍ଡିଚା ଯାତ୍ରା କୁହାଯାଏ । ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରାରେ ସାତ ଦିନ ବିଶ୍ରାମ ନେଉଥିବା ସ୍ଥାନକୁ ଶ୍ରୀଗୁଣ୍ଡିଚା ମଣ୍ଡପ ମନ୍ଦିର କୁହାଯାଏ । ଏହି ଗୁଣ୍ଡିଚା ମଣ୍ଡପ ପୂର୍ବ-ଐଶାନ୍ୟ କୋଣରେ ଅବସ୍ଥିତ । ଗୁଣ୍ଡିଚା ମନ୍ଦିରକୁ ଯାତ୍ରୀମାନେ ପଶ୍ଚିମ ଦ୍ୱାରବାଟେ ପ୍ରବେଶ କରନ୍ତି । ଡାହାଣ ପଟେ ପଡ଼େ ବାଞ୍ଚାବଟ ବା କଳ୍ପବଟ । ତା'ପରେ ବାମପଟେ ଦ୍ୱାରାବତୀ ମର୍ତ୍ତ୍ୟବୈକୁଣ୍ଠପୁରୀ । ତାଙ୍କ ନିକଟରେ ସାକ୍ଷୀଗୋପାଳ । ଦକ୍ଷିଣପଟ ଗୁମୁଟ ଅତିକ୍ରମ କରି ବିଜେ ଦ୍ୱାରରେ ପହଞ୍ଚିଲେ ପଡ଼େ ମୂଳ ଗୁଣ୍ଡିଚା ମଣ୍ଡପ । ଏହା ତିନି ଭାଗରେ ବିଭକ୍ତ ରତ୍ନବେଦୀ, ଜଗମୋହନ ଓ ଯଜ୍ଞମଣ୍ଡପ ବା ଭୋଗମଣ୍ଡପ । ଗୁଣ୍ଡିଚା ଯାତ୍ରା ସମୟରେ ରତ୍ନବେଦୀ ଉପରେ ଚତୁର୍ଦ୍ଧାମୂର୍ତ୍ତି ସାତଦିନ କାଳ ବିରାଜମାନ କରିଥାନ୍ତି । ଜଗମୋହନ ଯଜ୍ଞମଣ୍ଡପ ଛାତଟି ଚାରୋଟି ସ୍ତମ୍ଭ ଉପରେ ଅଧିଷ୍ଠିତ । ଗୋଟିକିଆ କଳାମୁଗୁନି ପଥରରେ ନିର୍ମିତ ପ୍ରତ୍ୟେକଟି ସ୍ତମ୍ଭର ଉଚ୍ଚତା ପଚିଶ ଫୁଟ ଓ ପୋତା ମଧ ପଚିଶ ଫୁଟ । ଏହା ନିକଟରେ ଗରୁଡ଼ସ୍ତମ୍ଭର ଉଚ୍ଚତା ପ୍ରାୟ ବାର ଫୁଟ । ଜଗମୋହନର ଦକ୍ଷିଣ ପାର୍ଶ୍ୱରେ ଅସ୍ଥାୟୀ ଭାବେ ଅଛନ୍ତି ଲକ୍ଷ୍ମୀ ଓ ଶନି ମୂର୍ତ୍ତି । ବାମ ପାର୍ଶ୍ୱରେ ଯଜ୍ଞନାଥ ମସ୍ତକରେ ଅନନ୍ତ ଓ କୋଳରେ ଲକ୍ଷ୍ମୀ ଏବଂ ଇନ୍ଦ୍ରସଭାରେ ଦେବଗଣଙ୍କ ମୂର୍ତ୍ତି ଚିତ୍ର ବିରାଜମାନ । ଏହି ମଣ୍ଡପ ମହାବେଦୀ ଉପରେ ରାଜା ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କରାଇଥିବାରୁ ଏହାର ନାମ ଯଜ୍ଞମଣ୍ଡପ । ଏହା ଏକଦା ଯଜ୍ଞମଣ୍ଡପ ଗୁଣ୍ଡିଚା ମଣ୍ଡପ ଥିଲା । ଏହାର ଆରାଧ ଦେବତା ଥିଲେ ନୃସିଂହ । ଏହି ମଣ୍ଡପର ବାମପଟେ ରହିଛି ବାହୁଡ଼ା ଦ୍ୱାର । ଲକ୍ଷ୍ମୀଙ୍କ ଆଗମନର ସ୍ମୃତି ଅର୍ଥେ (ହେରାପଞ୍ଚମୀ ଦିନ) ଦକ୍ଷିଣ ଦ୍ୱାରର ନାମ ନାକଚଣା ଦ୍ୱାର କୁହାଯାଏ । ଗୁଣ୍ଡିଚା ମଣ୍ଡପର ଉତ୍ତରପାର୍ଶ୍ୱରେ ପାର୍ଶ୍ୱଦେବତା ଏବଂ ଦକ୍ଷିଣ ପାର୍ଶ୍ୱରେ ମଧ ଅନେକ ଦେବ ଦେବୀଙ୍କ ଚିତ୍ର ଦେଖିବାକୁ ମିଳେ । ଗୁଣ୍ଡିଚା ମଣ୍ଡପର ଦକ୍ଷିଣପୂର୍ବ କୋଣରେ ରୋଷଘର ବିଦ୍ୟମାନ । ଏହି କ୍ଷେତ୍ରଟି ପ୍ରାରମ୍ଭିକ ଅବସ୍ଥାରେ ଗୋଟିଏ ଆବରଣଯୁକ୍ତ ମଣ୍ଡପ ଭଳି ହୋଇଥିବାରୁ ତାହାକୁ ଗୁଣ୍ଡିଚା ମଣ୍ଡପ ବା ଆଡ଼ପ ମଣ୍ଡପ

କୁହାଯାଏ । କିମ୍ବଦନ୍ତୀ ଅନୁଯାୟୀ ଜଣାଯାଏ ଯେ, ଇନ୍ଦ୍ରଦ୍ୟୁମ୍ନଙ୍କର ମହାରାଣୀ ଗୁଣ୍ଡିଚାଦେବୀଙ୍କର ଅନୁରୋଧକ୍ରମେ ଏହିଯାତ୍ରା ପ୍ରଚଳିତ ହୋଇଥିଲା ଏବଂ ଗୁଣ୍ଡିଚାରାଣୀଙ୍କୁ ଦର୍ଶନ ଦେବା ପାଇଁ ଶ୍ରୀଜଗନ୍ନାଥ ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଏହି ଯାତ୍ରା କରିଥିଲେ । ଶ୍ରୀମନ୍ଦିରରେ ବିଭିନ୍ନ ଦେବଦେବୀଙ୍କର ରଥଯାତ୍ରା ଅନୁଷ୍ଠିତ ହୁଏ । ଯାହା କି ଗୁଣ୍ଡିଚାଯାତ୍ରା ଯଥା- ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଶ୍ରୀଜଗନ୍ନାଥଙ୍କର 'ଶ୍ରୀଗୁଣ୍ଡିଚା' ଚୈତ୍ର ଶୁକ୍ଳ ଷଷ୍ଠୀରେ ସୂର୍ଯ୍ୟ ନାରାୟଣଙ୍କର 'ଚୈତ୍ର ଗୁଣ୍ଡିଚା', ଚୈତ୍ର ଶୁକ୍ଳ ଅଷ୍ଟମୀ ତିଥିରେ ଈଶାନେଶ୍ୱର ମହାଦେବଙ୍କର 'ଶିବଗୁଣ୍ଡିଚା' ଓ ଦୁର୍ଗାପୂଜା ଅବସରରେ ଦୁର୍ଗାମାଧବଙ୍କର ଅଷ୍ଟ ଦିବସ ବ୍ୟାପୀ ଦେବୀ ଗୁଣ୍ଡିଚା ।

ଇନ୍ଦ୍ରଦ୍ୟୁମ୍ନ ସରୋବରରେ ସ୍ନାନ ସାରି ଗୁଣ୍ଡିଚା ମଣ୍ଡପରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କଲେ ଯେଉଁ ଫଳ ମିଳେ, ତାହା ମଧ୍ୟ ଉଲ୍ଲେଖନୀୟ । ବିଦେଶାଗତ କୌଣସି ଧର୍ମପ୍ରାଣ ହିନ୍ଦୁବ୍ୟକ୍ତିଙ୍କ ଦ୍ୱାରା ବ୍ରାହ୍ମଣ୍ୟ ଧର୍ମର ପ୍ରତିଷ୍ଠା ଓ ଦେବ ବିଗ୍ରହ ସ୍ଥାପନ ତଥା ପୂଜା ଆରାଧନା ଆଦି ବିଧିବିଧାନଗୁଡ଼ିକ ଆମର ଆଦିମ ସଭ୍ୟତା ଉପରେ ପ୍ରଭାବ ପକାଇଥିବା ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନ ପାରେ । ବହୁ ବାଦାନୁବାଦ ସତ୍ତ୍ୱେ ଶ୍ରୀଗୁଣ୍ଡିଚା ମନ୍ଦିର ସମ୍ବନ୍ଧୀୟ କିମ୍ବଦନ୍ତୀ ଲୋକମୁଖରେ ବହୁଳ ଭାବେ ପ୍ରଚାରିତ ଓ ପ୍ରସାରିତ କାରଣ ପ୍ରଚଳିତ ଧାର୍ମିକ ପ୍ରଥା, ଆଚାର, ଲୌକିକ ପରମ୍ପରା ଓ ଧର୍ମବିଶ୍ୱାସ ଅନୁସରଣୀୟ ।

(କ୍ଷେ.ସ.) ।

**ଗୁଣ୍ଡିଚା ଯାତ୍ରା**-*ଦେ.ବି.*- ଶ୍ରୀଜଗନ୍ନାଥ ସଂସ୍କୃତିରେ ଗୁଣ୍ଡିଚା ଯାତ୍ରା ଚାରି ଥର ଅନୁଷ୍ଠିତ ହୋଇଥାଏ, ଯଥା- ସୌର ଗୁଣ୍ଡିଚା, ଶୈବ ଗୁଣ୍ଡିଚା, ଶ୍ରୀଗୁଣ୍ଡିଚା ଓ ଶାକ୍ତ ଗୁଣ୍ଡିଚା । ସୌର ଗୁଣ୍ଡିଚା- ବସନ୍ତ ପଞ୍ଚମୀଠାରୁ ମାଘ ସପ୍ତମୀ ପର୍ଯ୍ୟନ୍ତ ସୂର୍ଯ୍ୟ ନାରାୟଣଙ୍କ ରଥଯାତ୍ରାକୁ ସୌର ଗୁଣ୍ଡିଚା କୁହାଯାଏ । ଶୈବ ଗୁଣ୍ଡିଚା- ଚୈତ୍ରମାସ ଶୁକ୍ଳ ଅଷ୍ଟମୀ ତିଥିରେ ଈଶାନେଶ୍ୱର ମହାଦେବଙ୍କ ରଥଯାତ୍ରାକୁ ଶୈବ ଗୁଣ୍ଡିଚା କୁହାଯାଏ । ଶ୍ରୀଗୁଣ୍ଡିଚା - ଆଷାଢ଼ମାସ ଶୁକ୍ଳଦ୍ୱିତୀୟାଠାରୁ ଦଶମୀ ପର୍ଯ୍ୟନ୍ତ ନବଦିନ ବ୍ୟାପୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରାକୁ ଶ୍ରୀଗୁଣ୍ଡିଚା କୁହାଯାଏ । ଶାକ୍ତ ଗୁଣ୍ଡିଚା- ଆଶ୍ୱିନ ମାସ ଶୁକ୍ଳ ପ୍ରତିପଦାଠାରୁ ନବମୀ ପର୍ଯ୍ୟନ୍ତ ଦୁର୍ଗାମାଧବଙ୍କ ରଥଯାତ୍ରାକୁ ଶାକ୍ତ ଗୁଣ୍ଡିଚା କୁହାଯାଏ । ଏହି ଚାରି ଗୁଣ୍ଡିଚା ମଧ୍ୟରେ ଶ୍ରୀଗୁଣ୍ଡିଚା ହେଉଛି ସର୍ବଶ୍ରେଷ୍ଠ ତଥା ବିଶ୍ୱବିଖ୍ୟାତ ଗୁଣ୍ଡିଚା ଯାତ୍ରା ।

(ଶ୍ରୀ.ସ୍ୱ. ୨ୟ - ପୃ. , ଶ୍ରୀ.ଜି. - ପୃ. ୨୪୧) ।

**ଗୁପ୍ତ ଗୁଣ୍ଡିଚା**-*ଦେ.ବି.*- ଜଗନ୍ନାଥ ଭାଇ ଓ ଭଉଣୀଙ୍କ ସହିତ ଶ୍ରୀଗୁଣ୍ଡିଚା ଯାତ୍ରା କରିଥିବାରୁ ଲକ୍ଷ୍ମୀ ଅସନ୍ତୁଷ୍ଟ ହୋଇଥାନ୍ତି । ଏଣୁ ଲକ୍ଷ୍ମୀ ଆଶ୍ୱିନ ମାସ ଶୁକ୍ଳ ପ୍ରତିପଦଠାରୁ ନବମୀ ପର୍ଯ୍ୟନ୍ତ ମାଧବଙ୍କ ସହିତ ଦୁର୍ଗା ରୂପରେ ଯାତ୍ରା କରିଥିବାରୁ ଏହା 'ଗୁପ୍ତ ଗୁଣ୍ଡିଚା' ବା ଶାକ୍ତ ଗୁଣ୍ଡିଚା ନାମରେ ଅଭିହିତ ।

(ଶ୍ରୀ.ସ୍ୱ. ୨ୟ - ପୃ. ୯୯, ଶ୍ରୀ.ପ.ସେ.ପୂ. - ପୃ. ୧୨୦) ।

**ଗୁପ୍ତ ବୃନ୍ଦାବନ**- କୋଇଲି ବୈକୁଣ୍ଠ ମଧ୍ୟସ୍ଥିତ ଜନ୍ମକୁଞ୍ଜଠାରୁ ପଶ୍ଚିମଦ୍ୱାର ପର୍ଯ୍ୟନ୍ତ ବିସ୍ତାରିତ ପ୍ରଭୁଙ୍କର ପୁଷ୍ପୋଦ୍ୟାନ ଗୁପ୍ତ ବୃନ୍ଦାବନ ନାମରେ ନାମିତ ।

(ମ.ନ. - ପୃ. ୯୬) ।

**ଗୁମୁଟ**-*ଦେ.ବି.* - ଚାରିଆଡ଼ ବନ୍ଦ ଥିବା କ୍ଷୁଦ୍ର ଦ୍ୱାର ବିଶିଷ୍ଟ ଛୋଟ ଘର । ଆଲୋକ ଓ ବାୟୁଚାଳନ ବିହୀନ ଗୃହ । ଗମ୍ବୁଜାକୃତି ଘର । ଗୁମ୍ଫାକୃତି ସଂକୀର୍ଣ୍ଣ ଘର । ଶ୍ରୀମନ୍ଦିରର ସିଂହଦ୍ୱାର ଏକ ଗୁମୁଟ ଅଟେ ।

(ପୂ.ଓ.ଭା. - ପୃ.୨୨୫୮) ।

**ଗୁରୁ**-*ସଂ.ବି.*- ଯେ ଧର୍ମ କର୍ମାଦିର ପଥ ଶିଷ୍ୟଙ୍କ ନିକଟରେ ପ୍ରକାଶ କରନ୍ତି । ଗୁରୁ ଅନେକ, ଯଥା- ଶିକ୍ଷାଗୁରୁ, ଦୀକ୍ଷାଗୁରୁ, ଆଚାର୍ଯ୍ୟ, ଅଧ୍ୟାପକ, ଧର୍ମୋପଦେଷ୍ଟା, ମନ୍ତ୍ରଦାତା,

ପୂର୍ବପୁରୁଷ, ପୁରୋହିତ, ସମ୍ମାନାର୍ହ ବ୍ୟକ୍ତି, ପିତାମାତା ଆଦି ଗୁରୁଜନ । ଶାସ୍ତ୍ରାନୁସାରେ ଜନ୍ମଦାତା, କନ୍ୟାଦାତା, ମନ୍ତ୍ରଦାତା, ଜ୍ୟେଷ୍ଠଭ୍ରାତା, ଅନ୍ନଦାତା ଓ ଭୟତ୍ରାତା ଏମାନେ ଏବଂ ଏମାନଙ୍କ ସ୍ତ୍ରୀ ମଧ ଗୁରୁ ଅଟନ୍ତି । ଆର୍ଯ୍ୟମାନେ ଗୁରୁଙ୍କୁ ଦେବତା ରୂପେ ଗ୍ରହଣ କରୁଥିଲେ । ବିଦଗ୍ଧ ବା ପଣ୍ଡିତମାନଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ ଗୁରୁଙ୍କ ଗୁରୁ ରୂପେ କଳ୍ପିତ ।
(ଓ.ସାଂ.ଶ.-ପୃ.୧୦୯, ପୂ.ଓ.ଭା. - ପୃ.୨୨୬) ।

**ଗୁରୁପୁଷ୍ୟାଯୋଗ**-*ସଂ.ବି.*- ଗୁରୁବାର ଦିନ ପୁଷ୍ୟା ନକ୍ଷତ୍ର ପଡ଼ିବା ଶୁଭଯୋଗ । ଏ ଯୋଗରେ ଅଭିଷେକାଦି ଶୁଭକାର୍ଯ୍ୟମାନ ଅନୁଷ୍ଠିତ ହୁଏ ।
(ପୂ.ଓ.ଭା. - ପୃ. ୨୨୬୪) ।

**ଗୁରୁବାର**-*ସଂ.ବି.*- ବୃହସ୍ପତିଙ୍କ ବାର । ଲକ୍ଷ୍ମୀଙ୍କର ବାର । ହିନ୍ଦୁମାନଙ୍କ ମତରେ ଏହା ଲକ୍ଷ୍ମୀବାର ହୋଇଥିବାରୁ ଲୋକେ ଏହି ଦିନକୁ ଏକ ପବିତ୍ର ଦିନ ରୂପେ ଗ୍ରହଣ କରନ୍ତି ଓ ଏହି ଦିନ ଲକ୍ଷ୍ମୀପୂଜା ହୁଏ । ଓଡ଼ିଶାରେ ମାର୍ଗଶିର ମାସ ଗୁରୁବାର ଲକ୍ଷ୍ମୀପୂଜା ନିମନ୍ତେ ଖ୍ୟାତ । ଏହି ବ୍ରତକୁ ମାଣବସା ଗୁରୁବାର କୁହାଯାଏ । ଏହି ଦିନ ଶ୍ୱେତଧାନ ଉପରେ ମାଣବସାଯାଇ ଶ୍ରୀଲକ୍ଷ୍ମୀଙ୍କୁ ପୂଜା ଆରାଧନା କରାଯାଏ । ଶ୍ରୀମନ୍ଦିରରେ ପ୍ରତ୍ୟେକ ଗୁରୁବାର ଦିନ ମାଜଣାମଣ୍ଡପରେ ରତ୍ନସିଂହାସନରୁ ଲକ୍ଷ୍ମୀ ଓ ସରସ୍ୱତୀଙ୍କୁ ଅଣାଯାଇ ଦକ୍ଷିଣିଘରୁ ମଦନମୋହନଙ୍କୁ ଆଣି ମାଜଣା ମଣ୍ଡପରେ ବିଜେ କରାଇ ତିନିସରା ଦହି ଓ କୋରା ମଣୋହି କରାଇ ଅକ୍ଷତ ବନ୍ଦାପନା କରାଯାଏ ।
(ଶ୍ରୀ.ସ୍ୱ. - ପୃ. ୪୦, ଓ.ସାଂ.ଶ.- ପୃ.୧୦୯, ପୂ.ଓ.ଭା. - ପୃ.୨୨୬୫) ।

**ଗୋଛିକାରସେବା**-*ଦେ.ବି.*- ଏ ସେବକମାନେ ଗୌରୀ ବେତଧରି ଜୟବିଜୟ ଦ୍ୱାର ଜଗନ୍ତି । ମନ୍ଦିରକୁ ନିଷେଧ ସମୟରେ ଦ୍ୱାରଠାରେ ଭିତରକୁ ଯାତ୍ରୀ ଯିବା ନିଷେଧ ବା ବାରଣ କରନ୍ତି । ପୂର୍ବରେ ଶାଢ଼ୀ ବନ୍ଧାରେ, ଚାମର, ଆଲଟ ସେବାରେ, ବୃତଭେଟି ଓ ଯାତ୍ରୀମାନେ ଜୟ ବିଜୟଙ୍କୁ ଭେଟିଦେଲେ ଏମାନେ ଗ୍ରହଣ କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୪-୬୫) ।

**ଗୋଟିପୁଅ ନାଚ**-*ଦେ.ବି.*- ରାମଚନ୍ଦ୍ରଦେବଙ୍କ ସମୟରେ ଶ୍ରୀମନ୍ଦିରକୁ ବିଧର୍ମୀମାନଙ୍କ କବଳରୁ ରକ୍ଷା କରିବା ପାଇଁ ଯାଗା ଆଖଡ଼ାର ସୃଷ୍ଟି ହୋଇଥିବା ଜଣାଯାଏ । ସାହିର ବଳିଷ୍ଠ ଯୁବକମାନଙ୍କୁ ବିଭିନ୍ନ ପ୍ରକାର ସମର କୌଶଳ ଶିକ୍ଷା ଏହି ଯାଗା ଘରେ ଦିଆଯାଉଥିଲା ଓ ଦୈନିକ ସକାଳୁ ଯାଗା ଘରମାନଙ୍କରେ ଖେଚେଡ଼ି ରନ୍ଧା ଯାଇ ସେମାନଙ୍କୁ ଖାଇବାକୁ ଦିଆଯାଉଥିଲା । ଯାଗାମାନଙ୍କରେ କୁସ୍ତି କସରତ କରୁଥିବା ଯୁବକଙ୍କ ଗୋଡ଼ ହାତରେ ସାହିର ଛୋଟ ଛୋଟ ପିଲା ତେଲ ମାଲିସ କରୁଥିଲେ । ଏହି ପିଲାମାନଙ୍କୁ ଆଖଡ଼ା ପିଲା କୁହାଯାଏ । ରାତିରେ ସେମାନେ ନୃତ୍ୟଗୁରୁମାନଙ୍କଠାରୁ ନୃତ୍ୟ ଶିକ୍ଷା କରୁଥିଲେ । ଏମାନଙ୍କୁ ଦକ୍ଷିଣିପିଲା କୁହାଯାଏ । ଗ୍ରାମାଞ୍ଚଳ ଦେବଦେବୀଙ୍କ ସମ୍ମୁଖରେ ନାଚ କରୁଥିବା ପିଲା ହିଁ ଗୋଟି ପିଲା । ତତ୍‌ପରେ ଦେବଦାସୀ ନୃତ୍ୟ ଅନୁକରଣରେ ଗୋଟିପୁଅ ନୃତ୍ୟ ଆରମ୍ଭ ହେଲା । ପ୍ରଥମେ ମଠ ଓ ମନ୍ଦିର ପ୍ରାଙ୍ଗଣରେ ନୃତ୍ୟ ଅନୁଷ୍ଠିତ ହେଲା । କ୍ରମେ ଏହା ପ୍ରସାର ଲାଭ କରି କଟକ, ପୁରୀ, ଗଞ୍ଜାମ ଜିଲାର ଜମିଦାର ଓ ସମ୍ଭ୍ରାନ୍ତ ବଂଶୀୟ ଧନୀ ବ୍ୟକ୍ତିମାନେ ଗୋଟିପୁଅ ନୃତ୍ୟର ପ୍ରସାର ପ୍ରଚାର ଓ ପୃଷ୍ଠପୋଷକତା କଲେ । ଓଡ଼ିଶାର ବୈଷ୍ଣବ କବି ଯଥା- ଦେବଦୁର୍ଲଭଦାସ, ଉପେନ୍ଦ୍ରଭଞ୍ଜ, ବନମାଳୀ ପଟ୍ଟନାୟକ, ଅଭିମନ୍ୟୁ ସାମନ୍ତସିଂହାର, ଭକ୍ତଚରଣ, ଗୋପାଳକୃଷ୍ଣ ପଟ୍ଟନାୟକ, କବିସୂର୍ଯ୍ୟ ବଳଦେବ ପ୍ରଭୃତି କବିଙ୍କର ବୈଷ୍ଣବ ଧର୍ମଭାବ ଓ ରାଧାକୃଷ୍ଣଙ୍କ ପ୍ରେମଲୀଳାକୁ ଆଧାର କରି ଗୀତ ରଚନା କରି ଗୋଟିପୁଅ ନାଚର ପ୍ରସାର ଓ ପ୍ରଚାର କରାଇଲେ । ଶ୍ରୀମନ୍ଦିରରେ ଠାକୁରଙ୍କ ଚନ୍ଦନଯାତ୍ରା, ଝୁଲଣଯାତ୍ରା, ଦୋଳଯାତ୍ରାରେ ଗୋଟିପୁଅମାନେ ନୃତ୍ୟ

ପ୍ରଦର୍ଶନ କରି ଦେବଦାସୀ ନୃତ୍ୟଧାରାକୁ ଉଜ୍ଜୀବିତ କରାଇଥିଲେ । (ଶ୍ରୀ.କି. - ପୃ. ୩୫୭) ।

**ଗୋଦାମଘର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା ଏକ ଗୃହ । ଏଠାରେ ସବୁ ଜିନିଷ ଜମା ହୋଇଥାଏ । ଦରକାରୀ ଜିନିଷମାନ ପୂର୍ବଦିନଠାରୁ କଢ଼ାଯାଇ ରୋଷରେ ମହାସୁଆର ଜିମାରେ ରଖାଯାଏ । ଗୋଦାମରେ ଜଣେ ଦାରୋଗା ଓ ତିନିଜଣ ଯୋଗାଣିଆ ମଧ୍ୟ ରହିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ.୨୨୨) ।

**ଗୋପାଳବଲ୍ଲଭ ଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜାପରେ ଗୋପାଳବଲ୍ଲଭ ଭୋଗ ଅଣସର ପିଣ୍ଡି ପରେ ଲାଗି ହୁଏ । ଏହି ଭୋଗରେ ପାଗଖଇ, ନଡ଼ିଆକୋରା, ପାଚିଲା କଦଳୀ, ଗୁଆମଣ୍ଡା, ଦହି, ମାଖନ, ପାଚି ନଡ଼ିଆ ଓ ପଇଡ଼ ଭୋଗ ହେବାର ବିଧି ପ୍ରଚଳିତ ଅଛି । ଯଦିଓ ବର୍ତ୍ତମାନ ଏଥିରୁ କେତେକ ଜିନିଷ ଭୋଗରେ ଲାଗୁନାହିଁ । ଏହା ପଞ୍ଚୋପଚାର ନୀତିରେ ଭୋଗ ହୁଏ ଓ ଭିତର କାଠ ପାଖରେ ବାହାର ଟେରା ପ୍ରତିହାରୀ ବାନ୍ଧିଥାନ୍ତି । ଅଣସର ସମୟରେ ବଲ୍ଲଭ ଭୋଗ ବସେ ନାହିଁ । ଧନୁ ମାସରେ ପହିଲି ଭୋଗ ସହିତ ମିଶିକରି ହୁଏ । ଦୋଳପୂର୍ଣ୍ଣିମା ଓ ସ୍ନାନପୂର୍ଣ୍ଣିମା ଦିନ ବଲ୍ଲଭ ଭୋଗ ଅଲଗା ନ ହୋଇ ସକାଳ ଧୂପ ସହ ମିଶି କରି ହୋଇଥାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୭) ।

**ଗୋପାଳି**- ମାଦଳାପାଞ୍ଜି ମତେ ମହାରାଜା ଶୋଭନ ଦେବଙ୍କ ଦୁଇ ଅଙ୍କରେ ରକ୍ତବାହୁ ଆକ୍ରମଣ ହେତୁ ପରମେଶ୍ୱରଙ୍କୁ ସୁନୁପୁର ଗୋପାଳିକୁ ସ୍ଥାନାନ୍ତର କରାଯାଇଥିଲା । ଗୋଟିଏ ମଣ୍ଡପ ଉପରେ ପରମେଶ୍ୱର ବିଜେକରି ରହିଲେ ପଇଁଚାଳିଶ ବର୍ଷ, ତାହାପରେ ସେବକମାନେ ତାଙ୍କୁ ପାତାଳି କଲେ । (ମ.ନ. - ପୃ. ୨୩) ।

**ଗୋବର୍ଦ୍ଧନ**-*ଦେ.ବି.*- ମଥୁରା ନିକଟସ୍ଥ ଏକ ପ୍ରସିଦ୍ଧ ପର୍ବତ । ଏହି ପର୍ବତକୁ ବୈଷ୍ଣବ ଆଚାର୍ଯ୍ୟମାନେ କୃଷ୍ଣତୁଲ୍ୟ ମନେକରନ୍ତି । ସେମାନେ ଏ ପର୍ବତରେ ଆରୋହଣ କରନ୍ତି ନାହିଁ । ପୁରାଣକାରଙ୍କ ମତରେ ଶ୍ରୀକୃଷ୍ଣ ବସନ୍ତ ଋତୁରେ ଗୋବର୍ଦ୍ଧନ ପର୍ବତ ଉପରେ ରାସଲୀଳା କରିଥିଲେ । ଗୋବର୍ଦ୍ଧନ ପର୍ବତକୁ ଶ୍ରୀକୃଷ୍ଣ ବାମ ହାତର କାଣି ଆଙ୍ଗୁଳିରେ ଟେକିଧରି ଗୋପବାସୀଙ୍କୁ ସାତଦିନ ବ୍ୟାପୀ ପ୍ରବଳ ବୃଷ୍ଟିରୁ ରକ୍ଷା କରିଥିଲେ । ଗୋପପୁରରେ ଇନ୍ଦ୍ରପୂଜା ବଦଳରେ ଏହି ଗୋବର୍ଦ୍ଧନ ପୂଜାର ପ୍ରଚଳନ କୃଷ୍ଣଙ୍କ ଦ୍ୱାରା ହୋଇଥିଲା । (ଓ.ସାଂ.ଶ.- ପୃ.୧୧୨) ।

**ଗୋବର**-*ଦେ.ବି.*- ହିନ୍ଦୁ ଶାସ୍ତ୍ର ମତରେ ଗୋବର ପବିତ୍ର ପଦାର୍ଥ । ଅପରିଷ୍କୃତ ଓ ଅଶୁଦ୍ଧ ସ୍ଥାନକୁ ଗୋବରରେ ଲିପି ତାକୁ ଶୁଦ୍ଧ କରାଯାଏ । ଏହା ସେବା କଲେ ଶରୀରରୁ ପାପଜନିତ ମଳ ଦୂର ହୁଏ । ହୋମ ବୈଦିକ ଯଜ୍ଞାଦି ପୂଜାରେ ଗୋବରର ଆବଶ୍ୟକତା ଅଛି । (ପୂ.ଓ.ଭା. - ପୃ. ୨୩୨୩) ।

**ଗୋବରଲିପା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ନବକଳେବରରେ ଦାରୁ ନିର୍ଦ୍ଧାରିତ ହୋଇସାରିଲା ପରେ ଦାରୁଙ୍କ ଚାରିପାଖରେ ପ୍ରଥମେ ଗୋବର ଲିପା ହୋଇ ଅନ୍ୟାନ୍ୟ କାର୍ଯ୍ୟକ୍ରମ କରାଯାଏ । (କ୍ଷେ.ସ.) ।

**ଗୋବିନ୍ଦ ଦ୍ୱାଦଶୀ**-*ସଂ.ବି.*- ପୁଷ୍ୟାନକ୍ଷତ୍ରଯୁକ୍ତ ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀ । ଏହା ପ୍ରାୟ ବାରବର୍ଷରେ ଥରେ ପଡ଼େ । ଏହି ଦିନ ଶ୍ରୀକ୍ଷେତ୍ର ନିକଟସ୍ଥ ମହୋଦଧିରେ ସ୍ନାନ କରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପୁଣ୍ୟଫଳ ମିଳିଥାଏ । (ପୂ.ଓ.ଭା. - ପୃ.୨୩୨୬) ।

**ଗୋମେଦ**-*ସଂ.ବି.*- ରକ୍ତପୀତ ବର୍ଣ୍ଣ ମଣି ବିଶେଷ । ବର୍ଣ୍ଣଭେଦରେ ଏହା ଚାରି ପ୍ରକାର । ଧଳା, ଈଷତ୍ ହଳଦିଆ, ନାଲି ଓ ଗାଢ଼ ନୀଳ ବର୍ଣ୍ଣ । ଏ ନବରତ୍ନ ମଧ୍ୟରୁ ଏକତମ । ଏହା ହିମାଳୟ ପର୍ବତ ଓ ସିନ୍ଧୁ ନଦୀରେ ମିଳେ । ସୁଶ୍ରୁତଙ୍କ ମତରେ ଗୋଳିଆ ପାଣିରେ ଏ ମଣି ପକାଇଲେ ପାଣି ନିର୍ମଳ ହୁଏ । ଏ ମଣି ରାହୁଙ୍କ ଅତିପ୍ରିୟ ମଣି । ଶ୍ରୀଜଗନ୍ନାଥଙ୍କର

ଅନେକ ସ୍ୱର୍ଣ୍ଣ ଓ ରତ୍ନ ଅଳଙ୍କାରରେ ଗୋମେଦ ଲାଗିଥିବା ଦେଖାଯାଏ ।
(ପୂ.ଓ.ଭା. - ପୃ.୨୩୨୯) ।

**ଗୋରୋଚନା**-*ସଂ.ବି.*- ଗୋରୁଙ୍କ ମସ୍ତକରୁ ପ୍ରାପ୍ତ ପୀତବର୍ଣ୍ଣ ବସ୍ତୁ । ହିନ୍ଦୁମାନେ ଏହାକୁ ଘୋରି ଚନ୍ଦନ ଓ ସିନ୍ଦୂର ପରି କପାଳରେ ଚିତା କରନ୍ତି । ଏହା ଏକ ମାଙ୍ଗଳିକ ଦ୍ରବ୍ୟ ରୂପେ ପରିଗଣିତ ଓ ଅଷ୍ଟଗନ୍ଧର ଅନ୍ତର୍ଗତ । ତନ୍ତ୍ର ମତରେ ଏହା ମଙ୍ଗଳଜନକ, କାନ୍ତିବର୍ଦ୍ଧକ, ଦାରିଦ୍ର୍ୟନାଶକ ଓ ବଶୀକରଣ ଉପଚାର । ଗୋରୋଚନା ଗାଢ଼ ହଳଦିଆ, ଦାନାଦାର ଓ କଠିନ ଅଟେ । ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ପୂଜାଦିରେ ଏହା ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ.୨୩୩୫) ।

**ଗୋଲମରିଚ**-*ଦେ.ବି.*- ରନ୍ଧନର ମସଲା ବିଶେଷ । ଶ୍ରୀମନ୍ଦିର ପାକଶାଳାରେ ବ୍ୟଞ୍ଜନ ପ୍ରସ୍ତୁତିରେ ବ୍ୟବହୃତ ହୁଏ ଏବଂ ରଥ ଉପର ଅଧରପଣାରେ ମଧ୍ୟ ଏହା ବ୍ୟବହୃତ ହୋଇଥାଏ ।

**ଗୋଲକଧାମ**-*ଦେ.ବି.*- କୋଇଲି ବୈକୁଣ୍ଠ ।
(ମ.ନ. - ପୃ. ୯୭) ।

**ଗୋଲୋକ ବିଶ୍ରାମ**-*ଦେ.ବି.*- ବ୍ରହ୍ମ ପରିବର୍ତ୍ତନ ପରେ ପୁରୁଣା ବିଗ୍ରହମାନଙ୍କୁ ଶ୍ରୀମନ୍ଦିରର କୋଇଲି ବୈକୁଣ୍ଠ ଦେବଶ୍ମଶାନରେ ଶିଆଳି ଲଟାତଳେ ସମାଧି ଦିଆଯାଏ । ଏହାକୁ ବିଗ୍ରହମାନଙ୍କର ଗୋଲୋକ ବିଶ୍ରାମ ବୋଲି କୁହାଯାଏ ।
(କ୍ଷେ.ସ., ଶ୍ରୀ.ଶ୍ରୀ. - ପୃ. ୪୮) ।

**ଗୋସାଇଁ**-*ଦେ.ବି.*- ପ୍ରଭୁ, ସ୍ୱାମୀ, ମାଲିକ, ବ୍ରାହ୍ମଣ । ଏକ ସମ୍ପ୍ରଦାୟ ବିଶେଷ । ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ଗୋସାଇଁ ବୋଲି ସମ୍ବୋଧନ କରାଯାଇଛି ।
(ପୂ.ଓ.ଭା. - ପୃ. ୨୩୪୬) ।

**ଗୋସାଣୀଯାତ**-*ଦେ.ବି.*- ଶ୍ରୀକ୍ଷେତ୍ରର ଏହା ଅନ୍ୟତମ ପ୍ରସିଦ୍ଧ ଯାତ । ଆଶ୍ୱିନ ଶୁକ୍ଳ ଅଷ୍ଟମୀଠାରୁ ଦଶମୀ ପର୍ଯ୍ୟନ୍ତ ମୃତ୍ତିକାରେ ଗୋସାଣୀ ମୂର୍ତ୍ତିମାନ ନିର୍ମାଣ କରାଯାଇ ଶୋଭାଯାତ୍ରା ଓ ଉତ୍ସବ ପାଳନ କରାଯାଏ ।
(ପୂ.ଓ.ଭା. - ପୃ.୨୩୪୭) ।

**ଗୌଡ଼ୀୟ ବୈଷ୍ଣବ**-*ଦେ.ବି.* - ଚୈତନ୍ୟ ମତାବଲମ୍ବୀ ବୈଷ୍ଣବ ସଂପ୍ରଦାୟ । ଏମାନଙ୍କ ବେକରେ ମାଳା ଓ ମୁଣ୍ଡରେ ଚଇତନ ଚୁରୁକିଥାଏ । ଚୈତନ୍ୟଦେବଙ୍କ ଦେହତ୍ୟାଗ ପରେ ତଦୀୟ ଭକ୍ତମଣ୍ଡଳୀ ଦ୍ୱାରା ଏ ସମ୍ପ୍ରଦାୟ ଗଠିତ ହୋଇଥିଲା । ଗଙ୍ଗାଠାରୁ ଋଷିକୂଲ୍ୟା ପର୍ଯ୍ୟନ୍ତ ଯେଉଁ ଗଉଡ଼ମାନେ ଅଚ୍ୟୁତାନନ୍ଦ ଦାସ ଓ ତାଙ୍କ ଶିଷ୍ୟ ପ୍ରଶିଷ୍ୟଙ୍କ ଦ୍ୱାରା ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଛନ୍ତି ସେମାନେ ଗୌଡ଼ୀୟ ବୈଷ୍ଣବ । ଏହି ସଂପ୍ରଦାୟର ବୈଷ୍ଣବମାନେ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରିଥାନ୍ତି ।
(ପୂ.ଓ.ଭା. - ପୃ.୨୩୫୦) ।

**ଗୌରାଙ୍ଗ**-*ଦେ.ବି.*- ନବଦ୍ୱୀପରେ ଫାଲଗୁନ ପୂର୍ଣ୍ଣିମା ଦିନ ଶ୍ରୀଚୈତନ୍ୟଙ୍କ ଜନ୍ମ ।ପିତା ଜଗନ୍ନାଥ ମିଶ୍ର ଓ ମାତା ଶଚୀ ଦେବୀ । ଶ୍ରୀଚୈତନ୍ୟ ଅଠଚାଳିଶ ବର୍ଷକାଳ ସେ ମାନବ ଲୀଳା ପ୍ରକଟ କରିଥିଲେ । ପିଲାଦିନୁ ସେ ଗୌରାଙ୍ଗ ନିମାଇଁ ଓ ଗୋରାଆଦି ନାମରେ ପରିଚିତ ଥିଲେ । ବଲ୍ଲଭାଚାର୍ଯ୍ୟଙ୍କ କନ୍ୟା ଲକ୍ଷ୍ମୀପ୍ରିୟାଙ୍କ ସହ ତାଙ୍କର ବିବାହ ହୋଇଥିଲା । ଅଳ୍ପଦିନ ଭିତରେ ଲକ୍ଷ୍ମୀପ୍ରିୟା ମୃତ୍ୟୁବରଣ କରିବାରୁ ସେ ସନାତନ ପଣ୍ଡିତଙ୍କ କନ୍ୟା ବିଷ୍ଣୁପ୍ରିୟାଙ୍କୁ ବିବାହ କରିଥିଲେ । ପିତାଙ୍କ ମୃତ୍ୟୁ ପରେ ସେ ଗୟା ଯାଇଥିଲେ । ଏଠାରେ ସେ ଈଶ୍ୱରୀ ପୁରୀଙ୍କ ଠାରୁ ଦୀକ୍ଷା ନେଇ ସନ୍ନ୍ୟାସ ଗ୍ରହଣ କରିଥିଲେ । ଖ୍ରୀ.୧୫୦୯ରେ ସେ ପୁରୀ ଆସିଲେ । ପୁରୀର ତତ୍କାଳୀନ ଗଜପତି ପ୍ରତାପରୁଦ୍ରଦେବଙ୍କୁ ଶିଷ୍ୟତ୍ୱ ପ୍ରଦାନ କରି ୧୫୩୩ରେ ଇହଲୀଳା ସମ୍ବରଣ କରିଥିଲେ । ଶ୍ରୀଚୈତନ୍ୟଦେବଙ୍କ ଶରୀର ଗୌରବର୍ଣ୍ଣ ଥିବାରୁ ତାଙ୍କୁ ଗୌରାଙ୍ଗ ଗୌରାଙ୍କ ବୋଲି ଡାକୁଥିଲେ ।
(ଓ.ସାଂ.ଶ.- ପୃ.୧୧୫, ପୂ.ଓ.ଭା.- ପୃ.୨୩୫୪) ।

# ଘ

**ଘଟ-**_ସଂ.ବି.-_ କଳସ, ମାଠିଆ, କୁମ୍ଭ, ଗଜକପୋଳ, ମସ୍ତକ, ମସ୍ତିଷ୍କ, ଶରୀର, ପ୍ରାଣ, ଜୀବନ । ମୃତବ୍ୟକ୍ତିର ଶୁଦ୍ଧିକ୍ରିୟାରେ ମାଠିଆ ତ୍ରିକାଠିଆ ଉପରେ ନଅଦିନ ପର୍ଯ୍ୟନ୍ତ ସ୍ଥାପିତ ହୋଇ ଦଶମ ଦିନ ପାଣିରେ ଫିଙ୍ଗାଯାଏ । ଝଙ୍କଡ଼ର ସାରଳା, କାକଟପୁର ମଙ୍ଗଳା ଓ ଅସୁରେଶ୍ୱରର ହରଚଣ୍ଡୀ ଆଦି ଠାକୁରାଣୀଙ୍କ ପୂଜା ସମୟରେ ସ୍ଥାପିତ ଘଟ ଉପରେ ବିଭିନ୍ନ ଫୁଲ ଆଦି ଖଞ୍ଜି ଉକ୍ତ ଘଟକୁ ପ୍ରାଣପଣେ ବୁଲାଇ ଗୋଡ଼ରେ ରଣପା ବାନ୍ଧି ଭିକ୍ଷା ମାଗନ୍ତି । ଯେକୌଣସି ପୂଜା ପାଇଁ ଘଟ ବା କୁମ୍ଭର ଆବଶ୍ୟକତା ପଡ଼ିଥାଏ । ଶ୍ରୀମନ୍ଦିରରେ ରଥପ୍ରତିଷ୍ଠା, ନବକଳେବର ବେଳେ ଦାରୁସଂଗ୍ରହ, ଦାରୁ ପ୍ରତିଷ୍ଠା, ଲାଗି ଯଜ୍ଞ, ହୋମ ପ୍ରଭୃତିରେ ପ୍ରଥମେ ଘଟ ସ୍ଥାପନ କରାଯାଇ ପୂଜା କରାଯାଏ ।
(ଓ.ସାଂ.ଶ- ପୃ.୧୧୬, ପୂ.ଓ.ଭା. - ପୃ.୨୩୮୦) ।

**ଘଟକାର-**_ଦେ.ବି.-_ ଘଟକାରୀ ବ୍ୟକ୍ତି, ଘଟୁଆ, କୁମ୍ଭାର, ମାଟିପାତ୍ର ଗଢୁଥିବା ଲୋକ, ଈଶ୍ୱର ।
(ଓ.ସାଂ.ଶ.- ପୃ.୧୧୬, ପୂ.ଓ.ଭା. - ପୃ. ୨୩୮) ।

**ଘଟଣା-**_ଗ୍ରା.ବି.-_ ଅକସ୍ମାତ ଘଟଣା, ରଚନା, ନିର୍ମାଣ, ଗଠନ । ଦାରୁ ବିଗ୍ରହ ନିର୍ମାଣ ପଦ୍ଧତିର ବର୍ଣ୍ଣନା ଥାଇ, ଦାରୁ ଘଟଣା ନାମରେ ଏକ ପୋଥି ରହିଛି । ବ୍ୟାପାର ଯାହା ଘଟେ ।
(ପୁ.ବୋ.-ପୃ.୧୮୩, ପୂ.ଓ.ଭା. - ପୃ.୨୩୮୧) ।

**ଘଟପରିବର୍ତ୍ତନ-**_ଦେ.ବି.-_ ଶ୍ରୀମନ୍ଦିରରେ ନବକଳେବରରେ ନୂତନ ବିଗ୍ରହ ନିର୍ମିତ ହେବା ପରେ ବ୍ରହ୍ମ ପରିବର୍ତ୍ତନ ହୋଇଥାଏ । ଆଷାଢ଼ କୃଷ୍ଣ ଚତୁର୍ଦ୍ଦଶୀ ଦିନ ବିଶେଷ ଯଜ୍ଞ ସମାହିତ ହୋଇ ନୂତନ ଠାକୁରଙ୍କର ସ୍ନାନ ଓ ପ୍ରାଣନ୍ୟାସ ଏହି ତିଥିରେ କରାଯାଏ । ଶ୍ରୀସୂକ୍ତ ଓ ପୁରୁଷସୂକ୍ତରେ ବେଦବେଦ୍ୟ ଜଗନ୍ନାଥ ବୋଧନ କରାଯାଏ । ଶ୍ରୀ ଗଜପତି ମହାରାଜା ଯଜ୍ଞରେ ପୂର୍ଣ୍ଣାହୁତି ପ୍ରଦାନ କରନ୍ତି । ଦାନ, ଆଳତି, ପୁଷ୍ପାଞ୍ଜଳି ଯଥା ବିଧି ଅନୁଷ୍ଠିତ ହୁଏ । ତା'ପରେ ଶୋଧହୁଏ । ପୂର୍ବରୁ ସନ୍ଧ୍ୟା ଆଳତି ଓ ବଡ଼ସିଂହାର ଧୂପ ବଢ଼ିସାରିଥାଏ । ସେହିଦିନ ନିଶାର୍ଦ୍ଧରେ ଗୁପ୍ତରେ ଘଟ (ବ୍ରହ୍ମ) ପରିବର୍ତ୍ତନ କରାଯାଏ । ଚାରିଦ୍ୱାର ବନ୍ଦ ଗୃହେ ଓ କେବଳ ପତି ମହାପାତ୍ର ଏବଂ ତିନିଜଣ ଦଇତାପତିଙ୍କ ଛଡା ଆଉ କେହି ନଥାନ୍ତି । ବାହାରେ ତିନି ବାଡରେ ବାଡଗ୍ରାହୀ, ଦଇତା ଏମାନଙ୍କ ବ୍ୟତୀତ ଆଉ କେହି ନଥାନ୍ତି । ବାହାର ଜଗି ରହନ୍ତି କେବଳ ଦେଉଳକରଣ । ଏହି ସମୟରେ ସମଗ୍ର ମନ୍ଦିର ଅନ୍ଧକାର କରିଦିଆଯାଏ । ନୂତନ ବିଗ୍ରହ ପହଣ୍ଡି ହୋଇ ନିର୍ମାଣ ମଣ୍ଡପରୁ ଅଣସର ପିଣ୍ଡିକୁ ଆସନ୍ତି । ଶୁଭବେଳା ଦେଖି ବ୍ରହ୍ମ ପରିବର୍ତ୍ତନ ହୁଏ । ଏହି ଶୁଭ ବେଳା ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ନିର୍ଣ୍ଣୟ କରନ୍ତି । ଦାରୁଙ୍କ ନାଭି କମଳରେ ଏ' ବ୍ରହ୍ମ ଥିବାରୁ ଏହାଙ୍କର ନାମ ଦାରୁବ୍ରହ୍ମ । ଏହାପରେ ନୂତନ ବିଗ୍ରହଙ୍କ ଅଙ୍ଗରେ ଅଙ୍ଗରାଗ ଲେପନ କରାଯାଏ ।
(କ୍ଷେ.ସ.) ।

**ଘଟସ୍ଥାପନ-**_ଦେ.ବି.-_ କୌଣସି ଦେବଦେବୀଙ୍କ ପରିବର୍ତ୍ତେ ମୂର୍ତ୍ତି ରୂପେ କଳ୍ପିତ ଗୋଟିଏ ଜଳପୂର୍ଣ୍ଣ କୁମ୍ଭ ସ୍ଥାପନ ହୋଇଥାଏ ।
(ପୂ.ଓ.ଭା. - ପୃ.୨୩୮୩) ।

**ଘଟୁଆଳ-**_ଦେ.ବି.-_ ନାଉରିଆ । ପରମ ପୁରୁଷ, ପୁରୁଷଶ୍ରେଷ୍ଠ ।
(ଓ.ସାଂ.ଶ.- ପୃ.୧୧୭) ।

**ଘଟୁଆରୀ ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ସେବା ପୂଜା ପାଇଁ ଚାରି ପ୍ରକାରର ଘଟୁଆରୀ ସେବକ ଅଛନ୍ତି । ଯଥା- ଅଁଅଁଳା ଘଟୁଆରୀ, ଚନ୍ଦନ ଘଟୁଆରୀ, ପର୍ବଯାତ୍ରା ଘଟୁଆରୀ ଓ ବଇଠା ଘଟୁଆରୀ ।

**ଘଣା**-*ଦେ.ବି.*- ତୈଳବୀଜ/ଶସ୍ୟାଦିରୁ ତୈଳ ନିଷ୍କାସନ କରିବା ନିମନ୍ତେ ତୈଳପେଡ଼ା ଯନ୍ତ୍ର । ଅଣସର ସମୟରେ (ଦେବସ୍ନାନ ପୂର୍ଣ୍ଣିମାଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ) ଦିଅଁଙ୍କଠାରେ ଲାଗି ହେଉଥିବା ପାଟଡୋର ।
(କ୍ରି.ଓ.ଶ.ସ.- ପୃ. ୨୯୦, ପ୍ରା.ଅ. ୧ମ - ପୃ. ୭୯୯, ପୂ.ବୋ. - ପୃ. ୧୮୩, ପୂ.ଓ.ଭା. - ପୃ. ୨୩୮୯) ।

**ଘଣାଲାଗି**-*ଦେ.ବି.*- ଅଣସର ତ୍ରୟୋଦଶୀଠାରୁ ଠାକୁରଙ୍କୁ ମୋଟା ପାଟଡୋର ଲାଗି ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ବର୍ଷେ ଲାଗିହେଲେ ପରବର୍ତ୍ତୀ ବଡ଼ଠାକୁର ଶ୍ରୀବଳଭଦ୍ରଙ୍କୁ ଲାଗି ହୋଇଥାଏ । କିନ୍ତୁ ଶ୍ରୀସୁଭଦ୍ରାଙ୍କର ପ୍ରତିବର୍ଷ ଲାଗି ହେବାର ବିଧି ରହିଛି । ପଚିଶ ହାତ ଲମ୍ବର ମୋଟା ପାଟଡୋର ଏହି ଅଣସର ନୀତିରେ ଠାକୁରମାନଙ୍କୁ ଲାଗି ହୋଇଥାଏ ।
(ଶ୍ରୀ.ଶ.- ପୃ. ୫୯) ।

**ଘନଶ୍ୟାମ**-*ଦେ.ବି.*- ଭଗବାନ ଶ୍ରୀକୃଷ୍ଣ- ନୀଳମେଘ ଭଳି ଗାଢ଼ ଶ୍ୟାମଳବର୍ଣ୍ଣ ଶରୀର ବିଶିଷ୍ଟ ।
(ଓ.ସାଂ.ଶ.- ପୃ.୧୧୭) ।

**ଘଣ୍ଟ**-*ଦେ.ବି.*- ବାଦ୍ୟ ବିଶେଷ । ଶ୍ରୀମନ୍ଦିରରେ ଦୈନିକ ନୀତି ଓ ବିଭିନ୍ନ ପୂଜା ପର୍ବାଣିରେ ଘଣ୍ଟ ବାଦ୍ୟ ହୋଇଥାଏ ।

**ଘଣ୍ଟଘୋଡ଼ାଇ ରଖିବା**-*ଦେ.ବି.*- କୌଣସି ବ୍ୟକ୍ତିକୁ ସମ୍ପୂର୍ଣ୍ଣ ଆପଦରୁ ଭଗବାନ ରକ୍ଷା କରିବା । ସାରଳା ମହାଭାରତର ଦ୍ରୋଣପର୍ବରେ ବର୍ଣ୍ଣିତ ଅଛି ଯେ ମହାଭାରତ ଯୁଦ୍ଧ ଚାଲିଥିବା ବେଳେ ଏକ ଭରତିଆ ପକ୍ଷୀ ଆସି ଯୁଦ୍ଧକ୍ଷେତ୍ରରେ ଡିମ୍ବ ପାରିଥିଲା । ତାହା ଉପରେ ରକ୍ତନଦୀ ବୋହିଲେ ଡିମ୍ବଟି ନଷ୍ଟ ହୋଇଯିବ, ଏହି ଆଶଙ୍କାରେ ପକ୍ଷୀମାତା ପ୍ରଭୁଙ୍କୁ ସ୍ମରଣ କରିବାରୁ ପ୍ରଭୁ କୃଟ କଲେ । ଯୁଦ୍ଧକ୍ଷେତ୍ରରେ ଅଶ୍ୱତ୍ଥମା ହାତୀର ବେକରୁ ଘଣ୍ଟିଟି ଛିଣ୍ଡି ସେହି ଡିମ୍ବକୁ ଆବୃତ କରିଲା ଓ ଘଣ୍ଟି ଉପରେ ସାତତାଳ ଗଭୀରର ରକ୍ତନଦୀ ବୋହିଗଲା, ତଥାପି ଘଣ୍ଟ ଘୋଡ଼ା ହୋଇଥିବାରୁ ଡିମ୍ବଟି ଅକ୍ଷୁଣ୍ଣ ରହିଲା ଓ କାଳକ୍ରମେ ଡିମ୍ବରୁ ଛୁଆ ହେଲା । ଯୁଦ୍ଧପରେ ଲୋକେ ଯୁଦ୍ଧକ୍ଷେତ୍ରରୁ ଘଣ୍ଟିକି ଟେକି ଦେବାରୁ ଏହି ମଧ୍ୟରେ ଥିବା ଛୁଆଟି ଉଡ଼ିଗଲା । ଏଣୁ ଏ ପ୍ରବଚନଟି ପ୍ରଚଳିତ ଅଛି । ଏହି ସେବକମାନେ ଶ୍ରୀମନ୍ଦିରରେ ପ୍ରତ୍ୟହ ତିନିଧୂପରେ ଘଣ୍ଟ ବଜାଇବେ । ରଥ ଓ ସ୍ନାନରଥ ଛାଡ଼ି ସମସ୍ତ ପର୍ବପର୍ବାଣିରେ ଘଣ୍ଟ ବଜାଇବେ ।
(ପୂ.ଓ.ଭା. - ପୃ.୨୩୯୦) ।

**ଘଣ୍ଟଛତା ସର୍ବାଙ୍ଗ**-*ଦେ.ବି.*- ଘଣ୍ଟଛତା କାହାଳୀ ସହିତ ଠାକୁରଙ୍କୁ ଲାଗି ହେବା ନିମନ୍ତେ ଯାଉଥିବା ଚନ୍ଦନ ।
(ଶ୍ରୀ.ଶ.- ପୃ. ୫୮) ।

**ଘଣ୍ଟଛତା ଭୋଗ**-*ଦେ.ବି.*- ଘଣ୍ଟଛତା ଓ କାହାଳୀ ସହିତ ଆଗରେ ଚଳିଛ୍ଛ ଓ ପ୍ରଧାନୀଙ୍କ ହାତ ପଇଠରେ କେତେକ ବିଶେଷ ଦିନରେ ନିଆଯିବା ଭୋଗ ବା ନୈବେଦ୍ୟ ।
(ପୂ.ବୋ.- ପୃ. ୧୮୩) ।

**ଘଣ୍ଟବାଜଣା ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଘଣ୍ଟ ବଜାଉଥିବା ଏକ ସେବକ ବିଶେଷ ।
(ପୂ.ବୋ.- ପୃ.୧୮୩, ଶ୍ରୀ.ସ୍ୱ. - ପୃ. ୩୩) ।

**ଘଣ୍ଟସେବା**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତ୍ୟହ ତିନିଧୂପରେ (ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାରେ) ଘଣ୍ଟ ବଜାଇବେ । ରଥ ଓ ସ୍ନାନ ଯାତ୍ରା ଛାଡ଼ି ବାକି ସବୁ ପର୍ବପର୍ବାଣି, ଯାତ୍ରା, ବେଢ଼ରେ ଘଣ୍ଟ ବଜାଇବେ, ଯଥା- ବିମଳା ଷୋଳପୂଜା ଓ ତ୍ରିକାଳ ପୂଜା, ପ୍ରତି ଗୁରୁବାର ମାଜଣା ଓ ଏକାନ୍ତ, ପାର୍ଶ୍ୱଦେବୀ ସରସ୍ୱତୀ, ଗଣେଶ, ସୂର୍ଯ୍ୟମନ୍ଦିର, ଅନନ୍ତ, ନୃସିଂହ, ମହାବୀର

ଇତ୍ୟାଦିଙ୍କ ପର୍ବପର୍ବାଣି, ପ୍ରତ୍ୟେକ ଆଜ୍ଞାମାଳ ଯିବା ବେଳେ (ରଥ ଆଜ୍ଞାମାଳ ମଧ୍ୟ) ପ୍ରତ୍ୟେକ ବିଜେ, ସ୍ନାନପୂର୍ଣ୍ଣିମାରେ ଜଳଛେକ ବିଜେ ହାତୀବେଶ, ପ୍ରତ୍ୟେକ ବେଢ଼, ସାତପୁରି, ଖଳିଖଡ଼ି ବିଜେ, ଶୋଲ ଚିତା ଆଣିବା, ମକର ଓ ସାତପୁରୀରେ ହାଣ୍ଡି ତାଡ଼ ଆଣିବା, ପ୍ରସାଦ ନଅରକୁ ନେବା, ଚାପଚଳନ ଓ ଯେଉଁସବୁରେ କାହାଳି ବିଜେରେ ସମସ୍ତ ସମୟରେ ଘଣ୍ଟ ବଜାଇବେ । କାମ ନ କଲେ ଖେଇ ବନ୍ଦ ହୋଇପାରେ ଓ ସେହି ନିଯୋଗର ଅନ୍ୟ ବ୍ୟକ୍ତି ନିଯୁକ୍ତ କରାଯାଏ ।

ଏହି ଘଣ୍ଟୁଆ ସେବକମାନେ ସ୍ନାନପୂର୍ଣ୍ଣିମା ଦିନ ଠାକୁରଙ୍କ ରତ୍ନସିଂହାସନରୁ ସ୍ନାନବେଦୀକୁ ଓ ବେଦୀଠାରୁ ଅଣସର ପିଣ୍ଡିକୁ ବିଜେ କାଳରେ ଘଣ୍ଟ ବଜାନ୍ତି । ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ବିଜେ, ଗୁଣ୍ଡିଚା ଘରକୁ ବିଜେ ଓ ନୀଳାଦ୍ରି ବିଜେ ସମୟରେ, ରଥ ଦକ୍ଷିଣମୋଡ଼, ରଥଟଣା ଓ ବିଜେ ପ୍ରତିମାଙ୍କ ରଥ ବିଜେ (ରାମକୃଷ୍ଣ ଓ ମଦନମୋହନ) ସମୟରେ ଘଣ୍ଟ ବଜାନ୍ତି ।

ଏହି ସେବକ ବୈଷ୍ଣବାଗ୍ନି ପାଇବେ । ଶାଢ଼ି ପାଇବେ । କିନ୍ତୁ ଶାଢ଼ି ବନ୍ଧା ସେବା ନୁହେଁ । କାମ ତ୍ରୁଟି କଲେ ପାଉଣା ବନ୍ଦ ହୋଇ ଅନ୍ୟ କଂସାରି ସେବକ ନିଯୁକ୍ତ ହୋଇପାରିବେ । ଭଟି ମୁଣ୍ଡା କଂସାରି ସେବକମାନେ ଆସି ଉପରୋକ୍ତ କାର୍ଯ୍ୟ କରିଥାନ୍ତି ।

(ଶ୍ରୀ.ସ୍ୱ. ୨ୟ – ପୃ. ୩୮/୪୨) ।

**ଘଣ୍ଟା**-*ଦେ.ବି.*- ପିଟା ଘଣ୍ଟା ବା ବାଦ୍ୟ । ଶ୍ରୀମନ୍ଦିରରେ ବିଭିନ୍ନ ପର୍ବପର୍ବାଣିରେ ଏହା ବାଦନ କରାଯାଇଥାଏ ।

**ଘଣ୍ଟି**-*ଦେ.ବି.*- ପୂଜାରେ ବ୍ୟବହୃତ ବେଣ୍ଟଲଗା ବାଦ୍ୟବିଶେଷ । ଶ୍ରୀମନ୍ଦିରର ବିଭିନ୍ନ ପୂଜା, ହୋମଯଜ୍ଞ ପ୍ରଭୃତିରେ ଏହା ବ୍ୟବହାର ହୋଇଥାଏ ।

**ଘର**-*ଦେ.ବି.* - ଗୃହ, ଭବନ, ବାସସ୍ଥାନ ବା କୌଣସି ଜୀବର ଆଶ୍ରୟସ୍ଥଳ । ଶ୍ରୀମନ୍ଦିର ପରିସର ମଧ୍ୟରେ ଅନେକ ପ୍ରକାର ଘର ଅଛି । ଯଥା-

୧. ଖାଲିଘର/ମଣୋହିଘର- ପୁରୀ ଶ୍ରୀମନ୍ଦିର ପରିସର ମଧ୍ୟରେ ଏକ ଘର, ପୁରୀ ଗଜପତି ରାଜା ଦେଉଳକୁ ଆସିଲେ ଏହି ଘରେ ମହାପ୍ରସାଦ ମଣୋହି କରୁଥିଲେ । ଏଣୁ ଏହାକୁ ମଣୋହି ଘର ମଧ୍ୟ କୁହାଯାଏ । ବର୍ତ୍ତମାନ ଏଠାରେ ଚର୍ଚ୍ଚାବାଲା ବସାଉଠା କରନ୍ତି ।

୨. ଖୁଆଡ଼ଘର- ଶ୍ରୀମନ୍ଦିରର ଗରୁଡ଼ଙ୍କ ପାଖରେ ନିର୍ମିତ ଟାଟିଘର । କାର୍ତ୍ତିକ ଶୁକ୍ଳ ଏକାଦଶୀରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏଠାରେ ଗଜପତିଙ୍କ ତରଫରୁ ଦୀପ ଜଳେ ।

୩. ଖୋଲାଘର- ଖୋଲାଘର ଅନ୍ୟ କୌଣସି କାର୍ଯ୍ୟ ନିମନ୍ତେ ବ୍ୟବହାର ହୁଏ ନାହିଁ । କେବଳ ଖୋଲପୂଜା ସମୟରେ ଏହି ଘରେ ଟାଟ ଖୋଲାଯାଏ ।

୪. ଗାରଦ ଘର- ଶ୍ରୀମନ୍ଦିର ନୀତି ପରିଚାଳନା କାର୍ଯ୍ୟ ଚାଲିଥିବା ଏକ ମଣ୍ଡପ । ମନ୍ଦିର ପୋଲିସ ଏଠାରେ ରହନ୍ତି । ଏହି ଘରେ ହିଁ ଗାରଦ ନାରାୟଣ ଅବସ୍ଥାନ କରିଛନ୍ତି । ଭିତର ଘରେ ଥିବା ଗାରଦ ନାରାୟଣ ଠାକୁରଙ୍କୁ ଦୈନିକ ପୂଜା ହୁଏ ।

୫. ଗୋଦାମଘର- ଶ୍ରୀମନ୍ଦିର ଭିତର ବେଢ଼ାରେ ଏହି ଘରଟି ଅବସ୍ଥିତ । ଏହି ଘରେ ସମସ୍ତ ଜିନିଷ ଜମା ରହେ । ପୂର୍ବଦିନଠାରୁ ନଡ଼ପ (ଦିଆ) ହୁଏ । ଏଠାରେ ଜଣେ ଦାରୋଗା ନିଯୁକ୍ତ ଥାଆନ୍ତି ।

୬. ଘେନାଣଘର- ରୋଷ ପରିସର ମଧ୍ୟରେ କୋଠଭୋଗ ସାମଗ୍ରୀ ରହିବା ଘର ।

୭. ଚାଙ୍ଗଡ଼ାଘର- ଶ୍ରୀଜୀଉଙ୍କ ଲୁଗା ଓ ପୋଷାକ ଭଣ୍ଡାରରୁ ଆସି ସାଇତା ଯିବା ଘର । ଏହା ଚାଙ୍ଗଡ଼ା ମେକାପଙ୍କ ଦାୟିତ୍ୱରେ ଥାଏ ।

୮. ଚୂନାକୁଟା ଘର- ଶ୍ରୀଜୀଉଙ୍କ ମଙ୍ଗଳ ଆଳତି ଓ ଅନ୍ୟାନ୍ୟ ନୀତି ପାଇଁ ମୁରୁଜ ପ୍ରସ୍ତୁତ ନିମନ୍ତେ ବାହାରେ ଥିବା ଦୁଇ ବଖୁରିଆ ଘର । ଏଠାରେ ରାଜାଙ୍କ ତରଫରୁ ମଜୁରୀ ଦିଆଯାଇ ଚୂନା କୁଟାଯାଏ । ଗୋଦାମରୁ ଚାଉଳ ଅଣାଯାଇ ଆବଶ୍ୟକ ଅନୁପାତରେ ଏଠାରେ ଚୂନା କୁଟାଯାଏ ।

୯. ଝୁଣାକୁଟା ଘର- ଶ୍ରୀମନ୍ଦିରର ଭିତର ବେଢ଼ାରେ ଥିବା ଏହି ଘରେ ଠାକୁରମାନଙ୍କ ନୀତି ମୁତାବକ ଝୁଣା କୁଟାଯାଏ । ସୁଦସୁଆର ଏହି କାର୍ଯ୍ୟ ନିର୍ବାହ କରିଥାନ୍ତି ।

୧୦. ଦକ୍ଷିଣିଘର- ବିଜେ ପ୍ରତିମା ଏହି ଘରେ ଅବସ୍ଥାନ କରନ୍ତି । ଏହିଠାରେ ରାମ, ଲକ୍ଷ୍ମଣ, ସୀତା, ହନୁମାନଙ୍କର ଚଳନ୍ତି ବିଗ୍ରହ ରହିଛନ୍ତି । ରାମନବମୀ, ମହାବୀର ଜୟନ୍ତୀ ଓ ବେଣ୍ଟ ବା ଶିକାର ନୀତିରେ ବିଜେ ହୁଅନ୍ତି । ଶ୍ରୀ ନାରାୟଣ ତାଙ୍କ ଚଳନ୍ତି ବିଗ୍ରହ ସାଗର ବିଜେ (ଅମାବାସ୍ୟା) ସମୟରେ ହୁଅନ୍ତି । ମଦନମୋହନ ଓ ରାମକୃଷ୍ଣ ଚନ୍ଦନଯାତ୍ରା ଓ ଅନ୍ୟାନ୍ୟ ପର୍ବରେ ମଧ ବିଜେ ହୁଅନ୍ତି । ଦୋଳଯାତ୍ରାରେ ଦୋଳଗୋବିନ୍ଦ ବିଜେ ହୋଇଥାନ୍ତି ।

୧୧. ଦହିଦୁଧଘର- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ଏହି ଘରେ ପୂର୍ବେ ଦହି ଦୁଧ ରହୁଥିଲା । ବର୍ତ୍ତମାନ ସ୍ୱାସ୍ଥ୍ୟ ପରିମଳ ବିଭାଗ ଦାୟିତ୍ୱରେ ରହିଅଛି ।

୧୨. ଦାରୁଘର- ଏହି ଘରଟି ଶ୍ରୀମନ୍ଦିରର ବାହାର ବେଢ଼ାରେ ଅବସ୍ଥିତ । ନବକଳେବର ସମୟରେ ସଂଗୃହୀତ ଦାରୁ ଏହିଘରେ ରହନ୍ତି ।

୧୩. ଧାନକୁଟା ଘର- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ଏହି ଘରେ ଶ୍ରୀଜୀଉଙ୍କ ଧାନ କୁଟାଯାଏ ।

୧୪. ଧାନଘର- ଶ୍ରୀମନ୍ଦିରର ଧାନ ଗଚ୍ଛିତ ରହୁଥିବା ଘର । ବର୍ତ୍ତମାନ ଭଗ୍ନ ଅବସ୍ଥାରେ ଅଛି ।

୧୫. ନିକାପ ସରଘର- ଶ୍ରୀଜୀଉଙ୍କ ନନ୍ଦୋତ୍ସବ ଓ କୃଷ୍ଣଲୀଳା ଅବସରରେ ଶୀତଳଭୋଗ ରଖାଯିବା ଘର ।

୧୬. ପଲଙ୍କ ଘର- ଶ୍ରୀଜୀଉମାନଙ୍କ ଶୟନ ନିମନ୍ତେ ବ୍ୟବହାର୍ଯ୍ୟ ପଲଙ୍କ ଓ ବିଛଣା ଇତ୍ୟାଦି ରହେ । ଏହି ଘରକୁ ଖଟ ଶେଯ ଘର ମଧ କୁହାଯାଏ । ଏହି ଘରର ଦାୟିତ୍ୱ ଖଟଶେଯ ମେକାପଙ୍କ ଦାୟିତ୍ୱରେ ଥାଏ ।

୧୭. ପାଣିଛତ୍ର ଘର- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ଏକ ଘର । ଏହି ଘରେ ରଥର ସାରଥୀଙ୍କୁ ରଖାଯାଏ । ରଥ ପାଇଁ ନିଶଙ୍ଖୁଡ଼ି ଭୋଗ ଏଠାରେ ପ୍ରସ୍ତୁତ ହୁଏ ।

୧୮. ପାଳିଆ ସରଘର- ପୂଜାପଣ୍ଡା ନିଯୋଗର ସେବକମାନେ ଯେଉଁସ୍ଥାନରେ ସେବାପୂଜା ନିମନ୍ତେ ଅପେକ୍ଷା କରିଥାନ୍ତି ।

୧୯. ପାହାଡ଼ଘର- ଠାକୁରଙ୍କ ଲୁଗାପଟା ରହିବା ଘର ବା ଚାଙ୍ଗଡ଼ା ଘର ।

୨୦. ପୁରାଣ ପଣ୍ଡା ଘର- ଯେଉଁ ଘରେ ପୁରାଣପଣ୍ଡାମାନେ ପତିତପାବନ ଠାକୁରଙ୍କର ସେବା ପୂଜା କରନ୍ତି ।

୨୧. ଫୁଲବଟା ଘର- ଶ୍ରୀଜୀଉମାନଙ୍କ ଲାଗି ହେବା ନିମନ୍ତେ ଫୁଲ ଓ ତୁଳସୀ ପ୍ରଭୃତି ଯେଉଁ ଘରେ ଖୁଣ୍ଟିଆଙ୍କ ଜିମା ରଖାଯାଏ ।

୨୨. ବଲ୍ଲଭ ସରଘର- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ଏହି ଘରେ ବଲ୍ଲଭ ତିଆରି ହୋଇ ବଡ଼ଦେଉଳ ବେଢ଼ାରେ ଥିବା ଅନ୍ୟ ଦେଉଳ ଓ ବାହାର ଖଞ୍ଜାରେ ଥିବା ଦେଉଳକୁ ଯୋଗାଇ ଦିଆଯାଏ । ବଲ୍ଲଭ ଯୋଗାଣିଆ ଏହି କାର୍ଯ୍ୟ ସମ୍ପାଦନ କରନ୍ତି ।

୨୩. ବଲ୍ଲଭଘର- ବଲ୍ଲଭ ଭୋଗ ସାମଗ୍ରୀ ରହୁଥିବା ଘର ।

୨୪. ବାସନଘର- ଶ୍ରୀମନ୍ଦିରରେ ଯେଉଁ ସ୍ଥାନରେ ଶ୍ରୀଜୀଉମାନଙ୍କର ବ୍ୟବହୃତ ବାସନ ମୁଦୁଲି ଜିମା ରଖାଯାଏ ।

୨୫. ବିମାନ ସରଘର- ଏହି ଘରେ ଶ୍ରୀଜୀଉଙ୍କ ବିମାନ ଓ ପାଲିଙ୍କି ଇତ୍ୟାଦି ବିମାନବଡୁଙ୍କ ଜିମାରେ ରହେ ।

୨୬. ଭଣ୍ଡାରଘର- ବାହାର ଭଣ୍ଡାର ଘର । ଏହି ଭଣ୍ଡାରରେ ଶ୍ରୀଜୀଉଙ୍କର ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ ଘୋଡ଼ ବସ୍ତ୍ର ଅଳଙ୍କାର ଇତ୍ୟାଦି ରହେ ।

୨୭. ଭିତର ଭଣ୍ଡାରଘର- ଶ୍ରୀମନ୍ଦିର ଭିତର ଭଣ୍ଡାର ଘର ମଧରେ ଥିବା ଟ୍ରେଜେରୀରେ ଶ୍ରୀଜୀଉମାନଙ୍କ ମୂଲ୍ୟବାନ ଅଳଙ୍କାର, ବସ୍ତ୍ର, ବାସନ ଓ ପୋଷାକ ରହିଅଛି । ଏହି ଭଣ୍ଡାର ଘରର ରକ୍ଷକ ସ୍ୱୟଂ ଲୋକନାଥ ।

୨୮. ମଣ୍ଡଣି ଘର- ଶ୍ରୀମନ୍ଦିରର ଭିତର

ବେଢ଼ାରେ ଥିବା ଗୃହ । ଏହି ଘର ମଧ୍ୟରେ ଗୋପେଶ୍ୱର, ମହାଦେବ, ନନ୍ଦ, ଯଶୋଦା, ଦେବକୀ, ଦାମ, ସୁଦାମ, ରାମ, ବଳରାମ, ଗୋପାଳ, ନୃସିଂହ, ହନୁମାନ ପ୍ରଭୃତି ଅଛନ୍ତି ।

୨୯. ସରଘର- ସରଘରେ ଶୁଖିଲା ମହାପ୍ରସାଦ ବିକ୍ରୟ ହୁଏ ।

୩୦. ରାହାସଘର- ଗୁଣ୍ଡିଚାଘର ।

୩୧. ଶୟନଘର- ହରିଶୟନ ନୀତି ବଢ଼ାଯାଉଥିବା ଘର । ଏଠାରେ ଚତୁର୍ମାସ୍ୟା ଠାକୁର ଶୟନ ଏକାଦଶୀଠାରୁ ଉତ୍‌ଥାପନ ଏକାଦଶୀ ପର୍ଯ୍ୟନ୍ତ ଅବସ୍ଥାନ କରନ୍ତି ।

୩୨. ଭଣ୍ଡାରଘର- ନାନା ପ୍ରକାର ବ୍ୟବହାର୍ଯ୍ୟ ପଦାର୍ଥର ସଞ୍ଚିତ ଘର ।

୩୩. ହଡ଼ପ ଘର- ଶ୍ରୀମନ୍ଦିରରେ ହଡ଼ପ ନାହାକ ଶ୍ରୀଜୀଉମାନଙ୍କ ପାଇଁ ପାନ ଯୋଗାଇବା ନିମନ୍ତେ ବ୍ୟବହାର କରୁଥିବା ଘର ।

୩୪. ଅଠର ଘର- ପ୍ରତ୍ୟେକ ସେବକ ଗୋଷ୍ଠୀଙ୍କ ପାଇଁ ଉଦ୍ଦିଷ୍ଟ ।

୩୫. କବିରିଘର- ପଣ୍ଡାଙ୍କ କାର୍ଯ୍ୟାଳୟ ।

୩୬. କୋରାଘର- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ଏହି ଘରେ ଅମୋଣିହା କୋରା ଭୋଗ ତିଆରି ହୁଏ ।

(କ୍ଷେ.ସ.) ।

**ଘରୁଆକରଣ**-*ଦେ.ବି.*- ଖୋର୍ଦ୍ଧା ରାଜଧାନୀ ଥିବା ସମୟରେ ଶ୍ରୀମନ୍ଦିରରୁ ରାଜନଅର ଓ ରାଜନଅରରୁ ଶ୍ରୀମନ୍ଦିର ମଧ୍ୟରେ ଖବର ନେବା ଦେବା କାର୍ଯ୍ୟ କରୁଥିବା ସେବକ ।

(ଶ୍ରୀ.ଶ.- ପୃ. ୫୯) ।

**ଘଷାଜଳ**-*ଦେ.ବି.*- ଚନ୍ଦନ, ଜାଇଫଳ ମିଶ୍ରିତ ଜଳ । ଶ୍ରୀବିଗ୍ରହଙ୍କ ଠାରେ ମଣୋହି ପରେ ବିଡ଼ିଆ ଓ ଘଷାଜଳ ଅର୍ପଣ ଏକ ରାଜକୀୟ ରୀତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୪) ।

**ଘାଗୁଡ଼ି ଘଣ୍ଟି**-*ଦେ.ବି.*- ଅଳଙ୍କାର ରୂପେ ବ୍ୟବହୃତ । କ୍ଷୁଦ୍ର ଘଣ୍ଟି ବା ଘୁଙ୍ଗୁର । ପାଦଭୂଷଣ ବିଶେଷ, କଟି ଭୂଷଣ ।

(ଓ.ସାଂ.ଶ.- ପୃ. ୧୧୭) ।

**ଘାଟ**-*ସଂ.ବି.*- ନଈଘାଟ- ଯେଉଁଠାରେ ନଈ ପାରି ହେବା ପାଇଁ ଲୋକେ ଡଙ୍ଗା ବ୍ୟବହାର କରନ୍ତି । ବନ୍ଦର, ସମୁଦ୍ରକୂଳରେ ଜାହାଜ ଲାଗିବା ସ୍ଥଳ । ଗମନାଗମନ ତଥା ବାଣିଜ୍ୟ ବ୍ୟବସାୟ ନିମନ୍ତେ ନଦୀ ଅତିକ୍ରମ କରିବା ସ୍ଥାନ । ଅତୀତରେ ଶ୍ରୀକ୍ଷେତ୍ର ପ୍ରାୟ ସବୁଦିଗରୁ ଜଳାବୃତ ଥିଲା । ବଡ଼ଶଙ୍ଖରୁ ବଳଗଣ୍ଡି ମଧ୍ୟରେ ନଦୀଟିଏ ପ୍ରବାହିତ ହୋଇ ବାଙ୍କି ମୁହାଣରେ ପଡ଼ିଥିଲା । ଗଙ୍ଗବଂଶୀ ବୀର ନରସିଂହଦେବ ଏହାକୁ ଖୋଳାଇଥିଲେ । ଅଠରନଳା, ଚାରିନଳା, ଅମୃତପୁରନଳା ଆଦି ବନ୍ଧାଇଥିଲେ । ପୁରୀକୁ ମୁଖ୍ୟ ପ୍ରବେଶ ଦ୍ୱାର ଥିଲା ଅଠରନଳା ଘାଟ ଓ ଲୋକନାଥ ଘାଟ, ଉତ୍ତରଦିଗରୁ ଆସୁଥିବା ଯାତ୍ରୀ ଅଠରନଳା ଘାଟ ଓ ଦକ୍ଷିଣ ଦିଗରୁ ଆସୁଥିବା ଯାତ୍ରୀ ଲୋକନାଥ ଘାଟ ଦେଇ ପୁରୀରେ ପ୍ରବେଶ କରୁଥିଲେ । ଅଠରନଳା ଘାଟ ପାଖରେ ବଡ଼ଦୁଆର ନାମରେ ଏକ ବଡ଼ ଫାଟକ ଥିଲା । ସେଠାରେ ଶ୍ରୀକ୍ଷେତ୍ରକୁ ପ୍ରବେଶ ପାଇଁ ଯାତ୍ରୀମାନଙ୍କର ଭିଡ଼ ଲାଗୁଥିଲା । ପୁରୀକୁ ଏହି ମୁଖ୍ୟ ପ୍ରବେଶ ଦ୍ୱାର ବ୍ୟତୀତ ଆଉ କେତୋଟି ଘାଟ ମଧ୍ୟ ଥିଲା । କୁଜଙ୍ଗ, କନିକା ଓ ଆଖପାଖ ଅଞ୍ଚଳର ଯାତ୍ରୀ କାଳୁଘାଟ (ବର୍ତ୍ତମାନ ପୁରୀ କୋଣାର୍କର ସଂଯୋଗ ପଥରେ) ଦେଇ ଆସୁଥିଲେ । ଏହା ୱେବ୍ ସାହେବଙ୍କ ବିବରଣୀରୁ ଜଣାଯାଏ । ମଙ୍ଗଳାଘାଟ ମଧ୍ୟ ଏକ ପ୍ରବେଶ ପଥ ଥିଲା । କର୍ମାଙ୍ଗୀରେ ହୁଳୁହୁଳିଆ ଘାଟର ସୂଚନା ମିଳେ । ଜେଲ୍‌ଖାନାରୁ କୁମ୍ଭାରପଡ଼ା ରାସ୍ତାର ପାଖାପାଖି ଅଞ୍ଚଳରେ ହରିଣୀଘାଟ ରୂପେ ପରିଚିତ ଥିଲା ।

(ପୁ.ବୋ.- ପୃ.୧୮୫) ।

**ଘାଟଗୁମାସ୍ତା**-*ଦେ.ବି.*- ପୂର୍ବେ ପୁରୀଯାତ୍ରୀଙ୍କଠାରୁ ଘାଟମାନଙ୍କରେ ଘାଟ ପାଉଣା ସଂଗ୍ରହ କରୁଥିବା ଯାତ୍ରୀ ଗୁମାସ୍ତା ।

(ପୁ.ବୋ.- ପୃ. ୧୮୫) ।

**ଘାଟ ଛାଡ଼ପତ୍ର**-*ଦେ.ବି.*- ଯେଉଁ ଆଦେଶପତ୍ର ଦେଖି ଘାଟରେ ଯାତ୍ରୀମାନଙ୍କୁ ଶ୍ରୀକ୍ଷେତ୍ର ମଧ୍ୟକୁ ପ୍ରବେଶ କରିବାର ଅଧିକାର ମିଳୁଥିଲା । (ପୁ.ବୋ.- ପୃ. ୧୮୫) ।

**ଘାଟଛୁଟି**-*ଦେ.ବି.*- ଯେଉଁଦିନ ଘାଟ ବନ୍ଦଥାଏ ସେହିଦିନକୁ ଘାଟଛୁଟି କୁହାଯାଏ । (ପୁ.ବୋ.- ପୃ. ୧୮୫) ।

**ଘାଟପଢ଼ିଆରୀ**-*ଦେ.ବି.*- ଶ୍ରୀକ୍ଷେତ୍ରର ଚାରିଘାଟ ଯଥା : ଅଠରନଳା, ଲୋକନାଥ, ମଙ୍ଗଳା ଓ ବାଲୁରେ ନିଯୁକ୍ତ ପ୍ରତିହାରୀ । (ପୁ.ବୋ.- ପୃ. ୧୮୫) ।

**ଘାଟ ପୃଷ୍ଟି**-*ଦେ.ବି.*- ଘାଟ ନିକଟରେ କର ଆଦାୟ ନିମନ୍ତେ ନିଯୁକ୍ତ କର୍ମଚାରୀ । (ପୁ.ବୋ.- ପୃ. ୧୮୫) ।

**ଘାଣ୍ଟତିଅଣ**-*ଦେ.ବି.*- ଆଶ୍ୱିନ କୃଷ୍ଣ ଅଷ୍ଟମୀ ଦିନ ଦ୍ୱିତୀୟା ଓଷା । କୃଷ୍ଣ ନବମୀ ଦିନ ଅର୍ଥାତ୍ ଓଷାର ପରଦିନ ଘାଣ୍ଟ ତିଅଣ ହୁଏ । ଓଷାରେ ଯେଉଁ ୨୧ ପ୍ରକାର ଫଳ ପରିବା ପୂଜା ହୋଇଥାଏ ତାହାହିଁ ନବମୀ ଦିନ ତିଅଣ ହୁଏ । ଏହାକୁ ଘାଣ୍ଟ ତିଅଣ କୁହାଯାଏ । ଏହା ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଘରେ ପ୍ରଚଳିତ ଅଛି । ଦ୍ୱିତୀୟା ଓଷା ମଧ୍ୟ ଶ୍ରୀମନ୍ଦିରରେ ପାଳିତ ହୁଏ । (ପୂ.ଓ.ଭା. - ପୃ. ୨୪୨୦) ।

**ଘାଟୁଆ**-*ଦେ.ବି.*- ଘାଟରେ ରେଳ କିମ୍ବା ବସ୍‌ରେ ଯାତ୍ରୀ ସଂଗ୍ରହ କରିବା ଗୁମାସ୍ତା । (ଶ୍ରୀ.ଶ.- ପୃ. ୫୧) ।

**ଘିଅ**-*ଦେ.ବି.*- ବସାଦହିକୁ ମନ୍ଥନ କରି ସେଥିରୁ ଲହୁଣୀ ବାହାର କରାଯାଏ ଏବଂ ଏହି ଲହୁଣୀକୁ ନିଆଁ ଉପରେ ବସାଇ ସେଥିରୁ ପାଣି ଅଂଶ ମରିଗଲେ ଯେଉଁ ନିର୍ମଳ ଈଷତ୍ ହଳଦିଆ ତରଳ ପଦାର୍ଥ ରହିଯାଏ ତାହାହିଁ ଘିଅ । ସାମାନ୍ୟ ଥଣ୍ଡାରେ ଘିଅ ବସିଯାଏ ଓ ସାମାନ୍ୟ ଗରମ ପାଇଲେ ତରଳିଯାଏ । ଘିଅରେ ହିନ୍ଦୁମାନଙ୍କର ହୋମାଦି କର୍ମ ଓ ପଞ୍ଚାମୃତ ପ୍ରସ୍ତୁତ କରାଯାଏ । ଶ୍ରୀମନ୍ଦିରର ପ୍ରତ୍ୟେକ ପୂଜାକାର୍ଯ୍ୟ ହୋମ, ଯଜ୍ଞ ଘୃତ ଦ୍ୱାରା ହିଁ ହୋଇଥାଏ । ବିଭିନ୍ନ ଖାଦ୍ୟ ପଦାର୍ଥ ଓ ପିଷ୍ଟକ ଘିଅରେ ପ୍ରସ୍ତୁତ ହୋଇ ବିଗ୍ରହମାନଙ୍କୁ ଲାଗି କରାଯାଏ । ଏତଦ୍‌ବ୍ୟତୀତ ନୀଳାଦ୍ରି ମହୋଦୟ ଦିନ ବିଗ୍ରହମାନେ ଘୃତରେ ସ୍ନାନ କରିଥାନ୍ତି । (ପୂ.ଓ.ଭା. - ପୃ.୨୪୨୫) ।

**ଘିଅକୋରୁଅ**-*ଦେ.ବି.*- ଲହୁଣୀକୁ ନିଆଁରେ ବସାଇ ଘିଅ ବାହାର କରିବା ବେଳେ ପାକପାତ୍ରର ତଳେ ଯେଉଁ କଠିନ ପଦାର୍ଥ ଦରଜଳା ହୋଇ ବସିଯାଇଥାଏ ତାହାକୁ ଘିଅ କୋରୁଅ କୁହାଯାଏ । ଏହାକୁ ବିଭିନ୍ନ ପିଠା ପ୍ରସ୍ତୁତିରେ ପୁର ରୂପେ ବ୍ୟବହାର କରାଯାଏ । (ପୂ.ଓ.ଭା. - ପୃ. ୨୪୨୫) ।

**ଘିଅଦୀପ**-*ଦେ.ବି.*- ଶ୍ରୀମନ୍ଦିରରେ ଏବଂ ଅନ୍ୟାନ୍ୟ ସମସ୍ତ ଦେବାଳୟରେ ଭକ୍ତମାନେ ସକାଳେ ଓ ସନ୍ଧ୍ୟାରେ କିମ୍ବା ଯେତେବେଳେ ମନ୍ଦିର ପ୍ରବେଶ କରନ୍ତି, ସେତେବେଳେ ମନ୍ଦିର ପରିସରରେ ଘିଅ ଦୀପ ଜଳାନ୍ତି । (ପୂ.ଓ.ଭା. - ପୃ. ୨୪୨୫) ।

**ଘିଅପରସା ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଥାଳି ସୁଆର ରାନ୍ଧିସାରି ଥାଳି ଦେଲେ ମୁଡୁମୁଳ କରିବେ । ମଧ୍ୟାହ୍ନ ଧୂପରେ ଥାଳି ପକାଇ ସାରି ଛେକ ନେବେ । ସବୁ ଥାଳି ପଡ଼ିସାରିବା ପରେ ଜଗିଆ ମହାସୁଆରଠାରୁ ଘିଅ ନେଇ ତାଙ୍କ ସହିତ ଯାଇ ଥାଳିମାନଙ୍କରେ ଘିଅ ପକାନ୍ତି । ଏମାନଙ୍କ ପାଳିରେ ଛାମୁ ଦିହୁଡ଼ି ସେବା ପଡ଼ିଲେ ଏମାନେ ସେହି ସେବା କରନ୍ତି । ମକର ଦିନ ଅନ୍ୟାନ୍ୟ ପନ୍ତିବଡୁମାନଙ୍କ ସହିତ ମକର ଥାଳି ଧରି ବଡ଼ଦେଉଳକୁ ତିନିବେଢ଼ା ବୁଲନ୍ତି । ମକରରେ ପ୍ରସାଦ ଖାଇ ବନ୍ଦାପନା ବଢ଼ିଲା ପରେ ୩ ବାଡ଼ ପାଳିଆ ପନ୍ତିବଡୁ ବେହେରା, ବିଡୁଆ, ପାଳିଆ ତିନି ଥାଳି ନେଇ ବିମଳା ମନ୍ଦିରରେ ବିମଳାଙ୍କୁ ସମର୍ପଣ କରାଇ ପାହାଡ଼ା ବା ତାଟ ଘରେ ବଡୁ ମାରଫତରେ ମଣାଇ ଦିଅନ୍ତି । ସାତପୁରୀରେ ଭିତରେ ପ୍ରସାଦ ଥାଇ ବନ୍ଦାପନା ବଢ଼ିଲା

ଉତ୍ତାରେ ସାତପୁରୀ ଟାଟ ପନ୍ତିବନ୍ଧୁ ଚାରି ନାୟକ ଜଗମୋହନକୁ ନିଅନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୬୬) ।

**ଘିଅପାଳିଆ ମେକାପ**-*ଦେ.ବି.*- ଶ୍ରୀମନ୍ଦିରରେ ଆଳତି ନିମନ୍ତେ ଯେଉଁ ସେବକ ଘିଅ ରଖିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ.୧୮୦/୧୮୮) ।

**ଘିଉଡ଼ି**-*ଦେ.ବି.*- ଶ୍ରୀମନ୍ଦିରର ଠାକୁରଙ୍କ ପୂଜା ନିମନ୍ତେ ପ୍ରସ୍ତୁତ ଏକ ପ୍ରକାର ପିଷ୍ଟକ । ଅଟାରେ ଲୁଣ ଖୁରୁମା ଭଳି ଚକା ଚକା କରି ଘିଅରେ ଭାଜି ଗୁଡ଼ ପାଗରେ ପ୍ରସ୍ତୁତ ପିଠା । ଏହା ପଣାସଂକ୍ରାନ୍ତିରେ ସକାଳ ଓ ଦ୍ୱିପ୍ରହରର ଧୂପ ତଥା ଅନ୍ୟାନ୍ୟ ନୀତିମାନଙ୍କରେ ଠାକୁରଙ୍କୁ ଲାଗେ । ଘିଉଡ଼ି ଅଙ୍ଗ ବାସଓଳି ଓ ଘିଉଡ଼ି ସାନଓଳି- ଚିତାଲାଗି ଅମାବାସ୍ୟାରେ ବ୍ୟବହୃତ ହୋଇଥାଏ । ପଣାସଂକ୍ରାନ୍ତିରେ ମଧ ଏହା ଠାକୁରଙ୍କୁ ଅର୍ପଣ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ- ପୃ.୧୮୦/୧୮୮, ପୁ.ବୋ.- ପୃ.୧୮୫) ।

**ଘିନାଡ଼ୀ**-*ଦେ.ବି.*- ଶ୍ରୀମନ୍ଦିରର ଏକ ପ୍ରକାର ମିଷ୍ଟାନ୍ନ ଭୋଗ ବିଶେଷ । ଘିଅ ପ୍ରସ୍ତୁତି ନାଡି । ଏହା କୋଠଭୋଗରେ ଲାଗି ହୁଏ । ଫଗୁଦଶମୀ, ଦୋଳପୂର୍ଣ୍ଣିମା, ମକର ଚଉରାଶୀ ଭୋଗ, ପୁଷ୍ୟାଭିଷେକ, ନେତ୍ରୋତ୍ସବ, ନନ୍ଦୋତ୍ସବ, ଦେବସ୍ନାନ ପୂର୍ଣ୍ଣିମା ପ୍ରଭୃତିରେ ଠାକୁରଙ୍କ ପାଖରେ ଭୋଗ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୭୩-୧୮୧/୧୯୩, ଶ୍ରୀ.ଶ.- ପୃ.୫୯) ।

**ଘୁମୁସୁର ମଠ**-*ଦେ.ବି.*- ଶ୍ରୀମନ୍ଦିରର ଦୈନନ୍ଦିନ କାର୍ଯ୍ୟରେ ଓ ନୀତି ତଥା ପର୍ବପର୍ବାଣୀରେ ପୁରୀରେ ଥିବା ପ୍ରାୟ ସମସ୍ତ ମଠ ଅଳ୍ପ ବହୁତ ସଂଶ୍ଳିଷ୍ଟ । ଘୁମୁସୁର ମଠ, ହେରାପଞ୍ଚମୀ, ଚକ୍ରବୁଲା ଏକାଦଶୀ, ବାଡିନରସିଂହ ଶୁକ୍ଳ ନବମୀ, ଗହ୍ମା ପୂର୍ଣ୍ଣିମା, ମଥୁରାହାଟ (କଂସବଧ ଦଶମୀ), ବାଡୀ ନରସିଂହ, ଚୈତ୍ର ଶୁକ୍ଳ ପଞ୍ଚମୀ ଇତ୍ୟାଦି ପର୍ବମାନଙ୍କରେ ଠାକୁରଙ୍କ ପନ୍ତି ଭୋଗ କାର୍ଯ୍ୟରେ ଅଂଶଗ୍ରହଣ କରିଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୧୨୯, ୧୩୨, ୧୩୩, ୧୩୪, ୧୩୭, ୧୪୩) ।

**ଘୃତାଚୀ**-*ସଂ.ବି.*- ପୁରାଣ ବର୍ଣ୍ଣିତ ଜଣେ ଅପ୍‌ସରାଙ୍କ ନାମ । ଅଗ୍ନିରେ ଆହୁତି ଢାଳିବା ପାଇଁ ବ୍ୟବହୃତ ଶ୍ରୁବ ।
(ଓ.ସାଂ.ଶ.- ପୃ.୧୧୭) ।

**ଘେନାଣ ସରଘର**-*ଦେ.ବି.*- ରୋଷ ପରିସର ମଧ୍ୟରେ କୋଠଭୋଗ ରୋଷକୁ ଲାଗି ଏକ ସ୍ୱତନ୍ତ୍ର ଘର । ଯେଉଁଠାରେ କୋଠଭୋଗ ସାମଗ୍ରୀ ରହେ ।
(ପୁ.ବୋ.- ପୃ. ୧୮୫) ।

**ଘୋଡ଼ ଦର୍ଶନ**-*ଦେ.ବି.*- ପରଦାବାଡ଼ ମଧ୍ୟରେ ବିଗ୍ରହ ଦର୍ଶନ ।
(ପୁ.ବୋ.- ପୃ. ୧୮୫) ।

**ଘୋଡ଼ଲାଗି**-*ଦେ.ବି.*- ଠାକୁରଙ୍କ ଶ୍ରୀଅଙ୍ଗରେ ଶୀତବସ୍ତ୍ର ଲାଗି ହେବା । ଶ୍ରୀମନ୍ଦିରରେ ମାର୍ଗଶିର ଓଢ଼ଣ ଷଷ୍ଠୀଠାରୁ ବସନ୍ତପଞ୍ଚମୀ ପର୍ଯ୍ୟନ୍ତ ଠାକୁରଙ୍କୁ ଘୋଡ଼ (ଶୀତବସ୍ତ୍ର) ଲାଗିହୁଏ । ଘୋଡ଼ଲାଗି ସମୟରେ ପୂଜାପଣ୍ଡାମାନେ ମଧ୍ୟାହ୍ନଧୂପ ଛଡ଼ା ଅନ୍ୟ ଧୂପମାନଙ୍କରେ ସିଂହାସନ ଉପରେ ନ ବସି ପୋଖରୀଆର ତଳେ ବସି ପୂଜା କରନ୍ତି । ଏହି ନୀତି ବେଳେ ସପ୍ତାହର ଭିନ୍ନ ଭିନ୍ନ ଦିନରେ ଠାକୁରଙ୍କୁ ଭିନ୍ନ ଭିନ୍ନ ରଙ୍ଗର ଘୋଡ଼ ଲାଗି ହୋଇଥାଏ । ବିଭିନ୍ନ ଦିବସରେ ବିଭିନ୍ନ ରଙ୍ଗର ଘୋଡ଼ ଠାକୁରଙ୍କୁ ଲାଗି ହୁଏ । ଯଥା- ରବିବାର- ଲାଲ୍ ରଙ୍ଗର ଘୋଡ଼, ସୋମବାର- କଳାଛିଟ ମିଶା ଶୁକ୍ଳ ଘୋଡ଼, ମଙ୍ଗଳବାର- ବାରପଟିଆ (ପାଞ୍ଚରଙ୍ଗ) ମିଶା ଲାଲ୍ ଘୋଡ଼, ବୁଧବାର- ସବୁଜରଙ୍ଗର ଘୋଡ଼, ଗୁରୁବାର- ବସନ୍ତ ରଙ୍ଗର ଘୋଡ଼, ଶୁକ୍ରବାର- ଶୁଭ୍ରରଙ୍ଗର ଘୋଡ଼, ଶନିବାର- କଳାରଙ୍ଗର ଘୋଡ଼ । ଏହି ସମୟରେ ଠାକୁରଙ୍କ ଝୋବା କଣ୍ଠି ଲାଗିହୁଏ ନାହିଁ । ତ୍ରିଶାଖା-ଦୁଇ, କୁଣ୍ଡଳ-ଚାରି, ତଡ଼ଗି- ଦୁଇ ଅଳଙ୍କାର ଲାଗି ହୁଏ । ବସନ୍ତ ପଞ୍ଚମୀଠାରୁ ଫଗୁଦଶମୀ ପର୍ଯ୍ୟନ୍ତ ଠିଆଘୋଡ଼ଲାଗି ହୁଅନ୍ତି । ଘୋଡ଼ ବେଶରେ ଟାଡା (ସୂତା ବସ୍ତ୍ର) ଖଣ୍ଡୁଆପାଟ, ଭେଲଭେଟ୍‌ର ଘୋଡ଼, ଫୁଟା ମଫଲର, ଟୋପର (ଟୋପି) ଇତ୍ୟାଦି

ବ୍ୟବହୃତ ହୁଏ । ଏହି ଘୋଡ଼କୁ ପାରମ୍ପରିକ ଦରଜୀମାନେ ତିଆରି କରନ୍ତି । ତିନି ଠାକୁରଙ୍କ ନିମନ୍ତେ ଚଉଦ ହାତ ଲମ୍ବ ଓ ତିନି ହାତ ଓସାରର ଚାରି ଖଣ୍ଡ ପାଟ ଆବଶ୍ୟକ ପଡ଼ିଥାଏ । ଘୋଡ଼ ବେଶରେ ଠାକୁରମାନେ ସୁନା ଅଳଙ୍କାର ଲାଗି ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୪୪) ।

**ଘୋଡ଼ା/ଘୋଡ଼ିଆ**-*ଦେ.ବି.*- ଉଚ୍ଚରେ କାମ କରିବା ପାଇଁ ଏଭ ଉଚ୍ଚା ମେଞ୍ଚ । ଏକ ପ୍ରକାର ଉଚ୍ଚ କାଠ ତିଆରି ଭାଡ଼ି । ରତ୍ନସିଂହାସନ ଉପରେ ଏହା ଉପରେ ଠିଆ ହୋଇ ସେବକମାନେ ଠାକୁରଙ୍କ ବେଶ କରିଥାନ୍ତି । ଏହାକୁ ମଧ୍ୟ ଘୋଡ଼ତି କୁହାଯାଏ ।
(ପୂ.ଓ.ଭା. - ପୃ.୨୪୪୯, ପୁ.ବୋ.- ପୃ.୧୮୪) ।

**ଘୋଡ଼ାବାରିକ ଖୁଣ୍ଟିଆ**-*ଦେ.ବି.*- ଘୋଡ଼ା ନିଆ ଆଣ କରୁଥିବା ସେବକ । ଚୌକି ଆଦିର ବ୍ୟବହାର କରିଥାନ୍ତି ।
(ପୁ.ବୋ. - ପୃ. ୧୮୫) ।

**ଘୋଳ**-*ଦେ.ବି.*- ପାଣିମିଶା ଲହୁଣୀକଢ଼ା ତରଳ ଦହି । ବିଭିନ୍ନ ପୂଜା ଓ ଟଙ୍କତୋରାଣିରେ ଏହା ବ୍ୟବହାର ହୋଇଥାଏ ।
(କ୍ଷେ.ସ.) ।

**ଘୋଷ**-*ଦେ.ବି.*- ଗମ୍ଭୀର ବା ଧ୍ୱନି ।
(କ୍ଷେ.ସ.) ।

**ଘୋଷଯାତ୍ରା**-*ଦେ.ବି.*- ଘୋଷର ଅର୍ଥ ଆଭୀରପଲ୍ଲୀ, ଗୋପାଳ, କଂସା, ମେଘ, ଧ୍ୱନି । ଶ୍ରୀଜଗନ୍ନାଥଙ୍କ ରଥ ନନ୍ଦିଘୋଷର ଯାତ୍ରା ବା ଘୋଷଯାତ୍ରା ।
(ପ୍ର.ଅ. ୧୨ - ପୃ. ୮୧୮, କ୍ଷୁ.ଓ.ଶ.ସ. - ପୃ. ୨୯୭, ପୂ.ଓ.ଭା - ପୃ. ୨୪୫୮, ପୁ.ବୋ.- ପୃ.୧୮୫) ।

**ଘୋଷରା ପାଉଛ**-*ଦେ.ବି.*- ଦେବାଳୟରେ ଉଚ୍ଚରୁ ନିମ୍ନକୁ ଆସିବା ନିମନ୍ତେ ପ୍ରବେଶ ପଥରେ ଢାଲୁ ରାସ୍ତା ବା ଗଡ଼ାଣିଆ ପାହାଚ ।
(ପୂ.ଓ.ଭା. - ପୃ.୨୪୫୮) ।





**ଚଅଁର**-*ଦେ.ବି.*- ଚମରୀ ଗାଈର ଲାଙ୍ଗୁଳର ଲମ୍ବ ଲୋମ ପୁଚ୍ଛକୁ ଏକତ୍ର କରି ବନ୍ଧା ଯାଇ ଏହା ତିଆରି ହୁଏ । ଚଅଁରର ଯେଉଁ ପାଖରେ ଲୋମଗୁଡ଼ିକ ଗୋଛା ହୋଇ ବନ୍ଧା ହୋଇଥାଏ, ସେହିପାଖରେ ଗୋଟିଏ ଧାତୁର ବା କାଠର ବେଣ୍ଟ ଲାଗିଥାଏ । କୃଷ୍ଣ ଓ ଶ୍ୱେତବର୍ଣ୍ଣର ଚାମର ବା ଚଅଁରର ଉପଲବ୍ଧ ହୋଇଥାଏ । ରାଜା ଓ ଦେବତାଙ୍କ ସେବାରେ ଚଅଁର ଲାଗେ । ଚଅଁରର ବେଣ୍ଟକୁ ଧରି ତାକୁ ଇତସ୍ତତଃ ସଞ୍ଚାଳିତ କରାଯାଏ । ଏହାକୁ ଚଅଁର ଢାଳିବା ବା ଚଅଁର ପକାଇବା କୁହନ୍ତି । ଶୁଣ୍ଢରେ ଚଅଁର ଧରି ତାକୁ ଇତସ୍ତତଃ ଚାଳନ କରିବା ପାଇଁ କେତେକ ହାତୀଙ୍କୁ ମଧ୍ୟ ତାଲିମ ଦିଆଯାଇଥାଏ । ଠିଆପାଲାକାର ଗାୟକ ଅଭିନୟ କରିବା ବେଳେ ଚଅଁର ଧରି ଥାଆନ୍ତି । ପ୍ରତ୍ୟେକ ଦେବ ମନ୍ଦିରରେ ଏପରିକି ଶ୍ରୀଜଗନ୍ନାଥଙ୍କର ମଧ୍ୟ ଆଲଟ ଚାମର ସେବା ପ୍ରଚଳିତ ଅଛି । ଶ୍ରୀମନ୍ଦିରରେ କେତେକ ମଠାଧୀଶଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ରାଜାଙ୍କ ଦ୍ୱାରା ଚାମର ସେବାର ଅଧିକାର ପ୍ରଦତ୍ତ ହୋଇଥିବା ଦେଖାଯାଏ ।
(ପୂ.ଓ.ଭା. - ପୃ. ୨୪୬୪) ।

**ଚଅଁର ପକେଇବା**-*ଦେ.କ୍ରି.*- ବଡ଼ କରିବା, ସମ୍ମାନ ଦେବା । ଚାମର ଦ୍ୱାରା ବିଞ୍ଚିବା ।
(ପୂ.ଓ.ଭା. - ପୃ. ୨୪୬୪) ।

**ଚଇତପୁନେଇ**-*ଦେ.ବି.*- ଏହା କୈବର୍ତ୍ତମାନଙ୍କର ଏକ ପର୍ବ । ଏଥିରେ ସେମାନେ ଘୋଡ଼ାର ରୂପରେ ଏକ ଖୋଳକରି ଅଣ୍ଟା ପର୍ଯ୍ୟନ୍ତ ତାହା ମଧ୍ୟରେ ପଶି ଘୋଡ଼ା ଉପରେ ଚଢ଼ିବାର ଅଭିନୟ କରି ନିଜେ ନାଚିବା ଦ୍ୱାରା ଘୋଡ଼ାକୁ ନଚାନ୍ତି । ସ୍ଥାନେ ସ୍ଥାନେ ଚଇତି ଘୋଡ଼ାମାନଙ୍କର ମେଳଣ ହୁଏ । କିମ୍ବଦନ୍ତୀ ଅଛି ଯେ, ଶ୍ରୀରାମଚନ୍ଦ୍ର ବନବାସ କରିବା ସମୟରେ ତାଙ୍କୁ ଯେଉଁ ଧୀବର ଡଙ୍ଗାରେ ବସାଇ ସରଯୂ ନଦୀ ପାରି କରାଇଥିଲେ, ଶ୍ରୀରାମଚନ୍ଦ୍ର ତାଙ୍କୁ ଏକ ଘୋଡ଼ା ପୁରସ୍କାର ରୂପେ ଦେଇଥିଲେ । ସେହିଦିନରୁ କୈବର୍ତ୍ତମାନେ ଘୋଡ଼ାର ରୂପ ନିର୍ମାଣ କରି ପୂଜା କରିଆସୁଛନ୍ତି । ଏଥିରେ ଚଢ଼େଇଆ ଚଢ଼ଉଣୀ ବେଶ ହୋଇ ନାଚନ୍ତି ଓ ଗୀତ ମଧ୍ୟ ବୋଲନ୍ତି । ପୁରୀ ଶ୍ରୀମନ୍ଦିରରେ ଚୈତ୍ର ପୁନେଇ ଦିନ ଲଙ୍କାପୋଡ଼ି ପ୍ରସ୍ତାବ ହୁଏ । ଦୋଳ ମଣ୍ଡପ ସାହି ଲୋକ ଲଙ୍କାପୋଡ଼ି ପ୍ରସ୍ତାବ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୬, ପୂ.ଓ.ଭା. - ପୃ.୨୪୬୬) ।

**ଚଉତରା**-*ଦେ.ବି.*- ଚାନ୍ଦିନୀ । ବସିବା ପାଇଁ ପ୍ରଶସ୍ତ ମେଲା ଚତୁଷ୍କୋଣ ପୀଠ । ଗୃହସ୍ଥର ବ୍ୟବହାରୀୟ ଜଳସଂଗ୍ରହ କରି ରଖିବା ନିମନ୍ତେ ପ୍ରଶସ୍ତ ଚତୁଷ୍କୋଣ ଜଳକୁଣ୍ଡ ।
(ପୂ.ଓ.ଭା. - ପୃ. ୨୪୭୨, କ୍ର.ବି.ଓ.ଶ.ସ.- ପୃ. ୨୯୮, ପ୍ର.ଅ.- ୧ମ- ପୃ. ୮୨୧) ।

**ଚଉଦ ମାଦଳ**-*ଦେ.ବି.*- ପୁରୀ ସହରରେ ଥିବା ଚୈତନ୍ୟ ଭକ୍ତ ସମ୍ପ୍ରଦାୟଗଣ ଚଉଦଖଣ୍ଡି ମାଦଳ ବା ମୃଦଙ୍ଗ ଓ ଝାଞ୍ଜ ବଜାଇ ନଗର ଓ ଜଗନ୍ନାଥଙ୍କ ବେଢ଼ାରେ ସଂକୀର୍ତ୍ତନ କରିଥାନ୍ତି ।
(ପୂ.ଓ.ଭା. - ପୃ. ୨୪୭୩) ।

**ଚଉବ୍ୟୂହ**-*ଦେ.ବି.*- ପରମବ୍ରହ୍ମ ଶକ୍ତିଙ୍କର ଚାରିଗୋଟି ଦୃଶ୍ୟମାନ ରକ୍ଷା ବଳୟ । ଯଥା- ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ । ଶ୍ରୀକ୍ଷେତ୍ର ତଥା ନିତ୍ୟ ଲୀଳାକ୍ଷେତ୍ରରେ ଏମାନେ ଚଉବ୍ୟୂହ ରୂପେ ବିରାଜିତ ।
(ଓ.ସାଂ.ଶ.- ପୃ. ୧୧୯) ।

**ଚଉପଟ**-*ଦେ.ବି.*- ନବକଳେବର ପାଇଁ ଦାରୁ ନିମନ୍ତେ ସଂଗ୍ରହ କରାଯାଉଥିବା ମୁଖ୍ୟଗଣ୍ଡି ଗଡ଼ । ଗଡ଼ କରାଯାଇଥିବା ଦାରୁର ମଞ୍ଜ ଅଂଶ । ଗୋଲାକାର କାଠଗଣ୍ଡିକୁ କରତରେ କାଟି ପଳଖ ଅଂଶକୁ କାଢ଼ି ଦିଆଯାଇ ଚଉପଟ କରାଯାଏ ।
(ପୂ.ଓ.ଭା. - ପୃ. ୨୪୭୪, ପ୍ର.ଅ. ୧ମ - ପୃ. ୮୨୨) ।

**ଚଉବାହା**-*ଦେ.ବି.*- ଚତୁର୍ଭୁଜ ବିଶିଷ୍ଟ । ପରମପୁରୁଷ ବିଷ୍ଣୁ । ଚଉବାହା ଯାହାଙ୍କର, ଶଙ୍ଖ ଚକ୍ର ଗଦା ପଦ୍ମ ଧାରୀ ମହାବାହୁ ଶ୍ରୀଜଗନ୍ନାଥ ।
(ଓ.ସାଂ.ଶ.- ପୃ. ୧୧୯, ପୂ.ଓ.ଭା.- ପୃ. ୨୪୭୭, ପ୍ର.ଅ. ୧ମ ପୃ. ୮୨୨) ।

**ଚଉଁରା**-*ଦେ.ବି.*- ଗୃହ ସଂଲଗ୍ନ ଯେଉଁ ମାଟି, ପଥର ବା ଇଟା ନିର୍ମିତ ସ୍ତୂପରେ ତୁଳସୀ ବୃକ୍ଷ ଲଗାହୋଇଥାଏ । ହିନ୍ଦୁ ଗୃହସ୍ଥ ପ୍ରତିଦିନ ସ୍ନାନ କରି ତୁଳସୀ ଚଉଁରାରେ ପାଣି ଦିଅନ୍ତି ଓ କୁଳବଧୂମାନେ ପ୍ରତିଦିନ ବିଶେଷତଃ ଗୁରୁବାର, ଏକାଦଶୀ ଓ କାର୍ତ୍ତିକ ମାସରେ ସକାଳୁ ଉଠି ଗୋବର ପାଣିରେ ଚଉଁରା ମୂଳକୁ ଲିପନ୍ତି । କାର୍ତ୍ତିକ ମାସରେ ବିଧବାମାନେ ଲିପା ଚଉଁରା ମୂଳରେ ମୁରୁଜ ଦେଇ ରାଧା ଦାମୋଦରଙ୍କୁ ପୂଜା କରନ୍ତି ଓ ନୈବେଦ୍ୟାଦି ବାଢ଼ନ୍ତି । କୁମାର ପୂର୍ଣ୍ଣମା, କାଞ୍ଜିଅଁଳା, ନାଗଲ ଚଉଠି, ସୋମନାଥ ବ୍ରତ ଆଦି ଉପଲକ୍ଷେ ଏଠାରେ ଭୋଗ ହୁଏ । ପଣା ସଂକ୍ରାନ୍ତି ଦିନ ତୁଳସୀ ଚଉଁରା ଉପରେ ଛାମୁଣ୍ଡିଆ ବାନ୍ଧି ତୁଳସୀ ଗଛ ଉପରେ ଏକ ଶିକାରେ ସଚ୍ଛିଦ୍ର ଘଡ଼ି ଟଙ୍ଗାଯାଏ । ସନ୍ଧ୍ୟାରେ ଗୃହବଧୂ ଓ ଗୃହିଣୀମାନେ ଚଉଁରା ମୂଳେ ସଞ୍ଜବତୀ ବସାନ୍ତି । କାର୍ତ୍ତିକ ମାସରେ ବହୁ ସଧବା ଓ ବିଧବା ହବିଷ ପୁରୀରେ କରନ୍ତି ଓ ଶ୍ରୀମନ୍ଦିର ପରିସରରେ ତୁଳସୀ ଚଉଁରା ମୂଳେ ରାଇଦାମୋଦର ପୂଜା କରନ୍ତି ଓ କାର୍ତ୍ତିକ ପୁରାଣ ପଢ଼ନ୍ତି ଓ ଶୁଣନ୍ତି ।
(ପୂ.ଓ.ଭା. - ପୃ. ୨୪୭୮) ।

**ଚଉଁରୀବେଣ୍ଟ**-*ଦେ.ବି.*- ଶ୍ରୀମନ୍ଦିର ଠାକୁରଙ୍କର ଏକ ପ୍ରକାରର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ.- ପୃ. ୬୧) ।

**ଚଉସମ**-*ଦେ.ବି.*- ଚାରିଗୋଟି ସୁଗନ୍ଧ ଦ୍ରବ୍ୟର ସମାହାର । ଯଥା- ଚନ୍ଦନ, ଅଗୁରୁ(କର୍ପୂର), କସ୍ତୁରୀ ଓ କୁଙ୍କୁମ । ଶ୍ରୀମନ୍ଦିର ଠାକୁରଙ୍କ ଶ୍ରୀଅଙ୍ଗରେ ବ୍ୟବହୃତ ବାସଯୁକ୍ତ ଲେପନ । ଚାରିଗୋଟି ଶ୍ଳେଷ୍ମା ନିବାରକ ଔଷଧ ଦ୍ରବ୍ୟର ଚୂର୍ଣ୍ଣ । ଯଥା- ଶୁଣ୍ଠି, ପିପ୍ପଳୀ, ଗୋଲମରିଚ ଓ ବଚ । ଆୟୁର୍ବେଦରେ ଲବଙ୍ଗ, ହରିଦ୍ରା, ସନ୍ଧେିବ ଓ କୁଆଣି ।
(କ୍ରୁ.ବି.ଓ.ଶ.ସ. - ପୃ. ୩୦୦, ପ୍ର.ଅ. ୧ମ - ପୃ. ୮୨୩, ପୂ.ଓ.ଭା. - ପୃ. ୨୪୮୦) ।

**ଚଉସରା**-*ଦେ.ବି.*- ଏକ ଚାରି ସରିଆ ମାଳ । ଶ୍ରୀଜଗନ୍ନାଥଙ୍କର ଅଧରଠାରୁ ଶ୍ରୀପୟର ପର୍ଯ୍ୟନ୍ତ ଲମ୍ବି ରହିଥାଏ ।
(ପୂ.ଓ.ଭା. - ପୃ. ୨୪୮୦, ଓ.ସାଂ.ଶ.- ପୃ. ୧୨୦) ।

**ଚଉସରି ରତ୍ନମାଳା**-*ଦେ.ବି.*- ଚାରିସରିଆ ସୁନାର ହାର ବା ରତ୍ନମାଳା ।
(ଓ.ସାଂ.ଶ.- ପୃ. ୧୨୦) ।

**ଚକଓଳି**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ାସ୍ଥ ଆନନ୍ଦବଜାରରେ ଅଭଡ଼ା ସହ ଯେଉଁ ଓଳିରେ ଡାଲି ତିଅଣ ବିକ୍ରୟ କରାଯାଏ ।
(ପୁ.ବୋ.- ପୃ. ୧୮୬) ।

**ଚକଟା ଭୋଗ**- ଶ୍ରୀମନ୍ଦିରରେ ଅଣସର ସମୟରେ ରାଘବ ଦାସ ମଠରୁ ଆସିଥିବା ଧୂଆମୁଗ ଓ ପଣସ ପ୍ରତ୍ୟେହ ବଡ଼ସିଂହାର ବେଶ ପରେ ଓ ପହୁଡ଼ ପୂର୍ବରୁ ଅଣସର ଠାକୁରଙ୍କୁ ଲାଗି ହୁଏ । ଏହାଛଡ଼ା ମହୀପ୍ରକାଶ ମଠ, ଏମାର ମଠ, ଓଡ଼ିଆ ମଠ ଓ ସୁନାଗୋସେଇ ମଠ ତରଫରୁ ଖଞ୍ଜା ମୁତାବକ ଚକଟା ଭୋଗ ଯୋଗାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୨, ଶ୍ରୀ.ଜି. - ପୃ. ୨୧୩) ।

**ଚକା**-*ଦେ.ବି.*- ଚକଡ଼ା । ଗୋଲାକାର ପଦାର୍ଥର ଅଧିକୃତ ସ୍ଥାନ । ବସିବା ନିମନ୍ତେ ଚକ୍ରାକାର

ପୀଢ଼ା । ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ନାନପୂର୍ଣ୍ଣିମାରେ ସ୍ନାନମଣ୍ଡପରେ ଯେଉଁ ଗୋଲ ପଥରରେ ବସି ସ୍ନାନ କରନ୍ତି । ଏତଦ୍‌ବ୍ୟତୀତ ଅଣସର ଘରେ ଏବଂ ରଥ ଉପରେ ମଧ ଚକା ଉପରେ ଅବସ୍ଥାନ କରିଥାନ୍ତି । ରତ୍ନସିଂହାସନ ତଥା ଆଡ଼ପ ମଣ୍ଡପସ୍ଥ ସିଂହାସନ ଉପରେ ଶ୍ରୀଜଗନ୍ନାଥ ଚତୁର୍ଦ୍ଧା ବିଗ୍ରହଙ୍କ ବିଜେ ମଧ ଚକା ଉପରେ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨, ପୂ.ଓ.ଭା. - ପୃ. ୨୪୮୪) ।

**ଚକାଅପସର**-ଦେ.ବି.- ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ଚକାରେ ଲାଗିଥିବା ଗଦି ।
(କ୍ଷେ.ସ.) ।

**ଚକା ଅପସର ସେବକ** -ଦେ.ବି.- ଶ୍ରମନ୍ଦିରର ଏକ ସେବକ ସମ୍ପ୍ରଦାୟ । ଯେଉଁମାନେ ସ୍ନାନପୂର୍ଣ୍ଣିମା ପୂର୍ବଦିନ ଦରଜି ତିଆରି କରିଥିବା ଅପସର ବା ତକିଆ ବ୍ୟବହାର ପାଇଁ ସ୍ନାନମଣ୍ଡପକୁ ନେବେ ଓ ଠାକୁର ଫେରି ଆସିଲେ ସେମାନେ ଆଣି ଗାରଦରେ ଫେରସ୍ତ ରଖିବେ । ଦରଜିମାନେ ନୂତନ କନାରେ ନିର୍ମାଣ କରି ଏହି ତକିଆଗୁଡ଼ିକୁ ଅଣସର ପିଣ୍ଡିରେ ବିଜେ କରିଥିବା ଠାକୁରମାନଙ୍କୁ ବ୍ୟବହାର କରିବା ପାଇଁ ନେତ୍ରୋତ୍ସବ ପୂର୍ବଦିନ ଦଇତାଙ୍କୁ ଦେବେ । ପୁନରାୟ ଶ୍ରୀଗୁଣ୍ଡିଚା ଦିନ ବିଗ୍ରହ ରଥକୁ ବିଜେ ହେବା ପରେ ତକିଆମାନଙ୍କୁ ରଥରେ ଦେବେ ।
(ଶ୍ରୀ.ସ୍ୱ. ୩ୟ - ପୃ. ୧୨) ।

**ଚକାଆଖି**-ଦେ.ବି.- ଶ୍ରୀଜଗନ୍ନାଥଙ୍କର ଗୋଲାକାର ଚକ୍ଷୁ । ଶ୍ରୀଜଗନ୍ନାଥ ଚକାଡୋଳା ନାମରେ ପରିଚିତ ।
(ପୂ.ଓ.ଭା. - ପୃ. ୨୪୮୪/୮୫) ।

**ଚକ୍ରଉହାଡ଼**-ଦେ.ବି.- ଶ୍ରୀମନ୍ଦିରରେ ପ୍ରତ୍ୟେକ ଏକାଦଶୀରେ ତିନି ଜଣ ଚୂନରା ମହାଦୀପ, ଚନ୍ଦ୍ର ଉଦିଆ ଧରି ମନ୍ଦିର ଉପରକୁ ଉଠନ୍ତି । ସଙ୍ଗରେ ନଡ଼ିଆକତା ଲଗାଇ ନିଆଁ ନେଇଥାନ୍ତି । ଦଧିନଉତି ତଳେ ଠିଆ ହୋଇ ତୁଳସୀ ଚନ୍ଦନ ନୀଳଚକ୍ରକୁ ଲାଗିକରି ଚାରିପଟେ ତିନିଘେରା ବୁଲନ୍ତି ଓ ଚନ୍ଦ୍ରଉଦିଆ ପ୍ରତ୍ୟେକ ଦିଗରେ ୩ଟି ଲେଖାଏଁ ଜାଳନ୍ତି । ବୁଲିବା ସମୟରେ ମହାପ୍ରଭୁ ପୁରୀ ରାଜାଙ୍କୁ (ନାମଧରି) ଶଙ୍ଖେ ପୂରାଇ ଚକ୍ର ଆଢୁଆଳ କରନ୍ତୁ' ବୋଲି ହରିବୋଲ ଡାକ ଦିଅନ୍ତି । ଟିକିଲିର (ଆଠଗଡ଼ର ରାଜାଙ୍କ ବଂଶଧର ସ୍ୱରୂପ) ନାମ ମଧ ମହାଦୀପ ସମୟରେ ଡକାଯିବାର ପରମ୍ପରା ରହିଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୨, ପୂ.ଓ.ଭା. - ପୃ. ୨୪୮୯) ।

**ଚକ୍ରତୀର୍ଥ**-ଦେ.ବି.- ସ୍କନ୍ଦ ପୁରାଣୋକ୍ତ- ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ର ଦ୍ୱାରା ନିର୍ମିତ ପ୍ରଭାସ କ୍ଷେତ୍ରସ୍ଥ ତୀର୍ଥ ବିଶେଷ । ବୃନ୍ଦାବନସ୍ଥ ତୀର୍ଥ ବିଶେଷ । ପୁରୀର ସମୁଦ୍ର ତଟସ୍ଥ ତୀର୍ଥ । ପୁରୀ ସମୁଦ୍ର ତଟରେ ବାଙ୍କି ମୁହାଣ ପାର୍ଶ୍ୱରେ ଚକ୍ର ନାରାୟଣଙ୍କ ମନ୍ଦିର ଅଛି । ଯାତ୍ରୀମାନେ ଏଠାରେ ସମୁଦ୍ର ବାଲିରେ ତିନୋଟି ଦେଉଳ ତୋଳି ପୂଜା କରନ୍ତି । ପୁରାଣରେ ବର୍ଣ୍ଣିତ ଅଛି, ଯଦୁବଂଶ ଧ୍ୱଂସ ପରେ ଶ୍ରୀକୃଷ୍ଣ ନିଜ ପୁତ୍ର ପ୍ରଦ୍ୟୁମ୍ନଙ୍କୁ ଦେଖି ତାଙ୍କ ଶିରଚ୍ଛେଦ ପାଇଁ ସୁଦର୍ଶନଙ୍କୁ ପଠାଇଲେ । ସୁଦର୍ଶନ କାର୍ଯ୍ୟସାରି ଶ୍ରୀକୃଷ୍ଣଙ୍କ ହାତକୁ ଫେରି ନ ଆସି ଅନ୍ତର୍ଦ୍ଧାନ ହୋଇଗଲେ । ପାଣ୍ଡବମାନେ ହିମାଳୟ ଯାତ୍ରା କାଳରେ ବାଟରେ ସୁଦର୍ଶନଙ୍କୁ ପଡ଼ିଥିବାର ଦେଖି ତାଙ୍କୁ ଆଣି ମହୋଦଧିରେ ନିକ୍ଷେପ କଲେ । ସେହିଦିନଠାରୁ ସେହି ସ୍ଥାନର ନାମ ଚକ୍ରତୀର୍ଥ ହୋଇଛି । ନୀଳାଦ୍ରି ମହୋଦୟ ଗ୍ରନ୍ଥରେ ଅଛି ବାଙ୍କିରୁ ନଦୀଟିଏ ବାହାରି ଏହିଠାରେ ସମୁଦ୍ରରେ ମିଶିଛି । ପ୍ରାଚୀ ଉପତ୍ୟକାରେ ଥିବା ଚକ୍ରତୀର୍ଥରେ ଚକ୍ରଧର ଘୋର ତପସ୍ୟା କରିଥିଲେ ବୋଲି ପୁରାଣ ପ୍ରସିଦ୍ଧି ଅଟେ ।
(ପ୍ରାଚୀ ନଦୀର ଐତିହାସିକ ବିଭବ, ପୃ. ୧୬୩, ପୂ.ଓ.ଭା. - ପୃ. ୨୪୮୯, ପ୍ର.ଅ. ୧ମ- ପୃ. ୮୨୫, ଓ.ସାଂ.ଶ.- ପୃ. ୧୨୦) ।

**ଚକ୍ରଦିହୁଡ଼ି**-*ଦେ.ବି.*- ମସାଲ । ଠାକୁରଙ୍କ ବିଜେ ଯାତ୍ରାରେ ଯାଉଥିବା ମସାଲ ବା ଦିହୁଡି ।
(ପୁ.ବୋ.- ୧୮୭) ।

**ଚକ୍ରଦିହୁଡ଼ି ସେବା**-*ଦେ.ବି.*- ଶ୍ରୀଠାକୁରଙ୍କ ମଧ୍ୟାହ୍ନ ଧୂପ ପରେ ଠାକୁର ଯେବେ ବିଜେ ହେବେ, ସେଥିରେ ଯେଉଁ ସେବକ ଚକ୍ରଦିହୁଡ଼ି ଧରି ଯାଆନ୍ତି ।
(ପୁ.ବୋ.- ପୃ. ୧୮୭) ।

**ଚକ୍ରଦିହୁଡ଼ିଆ ଅଣସର ଚୂନା ସେବକ** - ଚକ୍ରାକୃତିର ଦିହୁଡ଼ି ଧରୁଥିବା ସେବକ । ମଧ୍ୟାହ୍ନ ଧୂପରେ ବିଗ୍ରହମାନେ ଯେତେବେଳେ ବିଜେ ହୁଅନ୍ତି ସେହି ସମୟରେ ଏହି ସେବକ ଚକ୍ର ଦିହୁଡ଼ି ଧରି ଚାଲିବେ । ସ୍ନାନଯାତ୍ରା, ରଥପହଣ୍ଡି, ନୀଳାଦ୍ରି ବିଜେ ପହଣ୍ଡି, ଦୟଣାଚୋରି, ଚାପ, ଦୋଳ, ରୁକ୍ମିଣୀ ହରଣ, ବିବାହ ବେଦୀ ଇତ୍ୟାଦିରେ ଦିହୁଡ଼ି ଜାଳିବେ । ଏହାଙ୍କର ଆଉ ଏକ ସେବା ଅଣସର ଚୂନା ସେବା ଅଛି । ଅଣସର ଖଳି ଲାଗି ପାଇଁ ଆବଶ୍ୟକ ଗହମ ଲକ୍ଷ୍ମୀଙ୍କ ଜଗମୋହନରେ ତାହାକୁ ଚୂରି ଚୂନା କରିଦିଅନ୍ତି ।
(କ୍ଷେ.ସ.) ।

**ଚକ୍ରବୁଲା**-*ଦେ.ବି.*- ଶ୍ରାବଣ କୃଷ୍ଣ ଏକାଦଶୀ ଦିନ ଶ୍ରୀହସ୍ତରୁ ସୁବର୍ଣ୍ଣ ଚକ୍ରକୁ ଚାରି ଆଶ୍ରମ ବୁଲେଇ ନେବା ବିଧି । ଯଥା- ବାଲିସାହି-ଭୃଗୁ ଆଶ୍ରମ, ଗୌଡ଼ବାଡ଼ ସାହି-କଣ୍ଡୁ ଆଶ୍ରମ, ମାର୍କଣ୍ଡେଶ୍ୱର ସାହି-ମାର୍କଣ୍ଡ ଆଶ୍ରମ, ଦୋଳମଣ୍ଡପ ସାହି-ଅଙ୍ଗିରା ଆଶ୍ରମ । କାରଣ ଏହିଦିନ ନିର୍ମିତ ନୂତନ ବୃହତ୍ ନୀଳଚକ୍ର ମନ୍ଦିର ଉପରେ ପୁନଃ ସ୍ଥାପିତ ହୋଇଥିଲେ ।
(ଶ୍ରୀ.ଜି. - ପୃ. ୭୧ ) ।

**ଚକ୍ରଦାଣ୍ଡି**-*ଦେ.ବି.*- ସାହିଯାତରେ ନାଗା ପାହୁଲ ପକାଇବା ବେଳେ ଏକ ବିଶେଷ ଭଙ୍ଗୀରେ ଘୁରିଯିବାକୁ ଚକ୍ରଦାଣ୍ଡି କୁହାଯାଏ ।
(ପୁ.ବୋ.- ପୃ. ୪୨) ।

**ଚକ୍ରମଣୋହି**-*ଦେ.ବି.*- ଶ୍ରୀମନ୍ଦିରରେ କୌଣସି କାରଣରୁ ନୀଳଚକ୍ରରେ ଧ୍ୱଜା ନ ଥିଲେ ଶ୍ରୀଜଗନ୍ନାଥଙ୍କୁ କୌଣସି ଭୋଗ ଅର୍ପଣ କରାଯାଏ ନାହିଁ । ଶ୍ରୀମନ୍ଦିରରେ କୌଣସି କାରଣରୁ ଶ୍ରୀଜୀଉମାନଙ୍କୁ ଭୋଗ ସମର୍ପଣ ହୋଇ ନ ପାରିଲେ ପୂଜକ ନୀଳଚକ୍ରଙ୍କ ଉଦ୍ଦେଶ୍ୟରେ ନୀଳଚକ୍ରକୁ ଦେଖାଇ ସମର୍ପଣ କରାଯାଏ । ଏହାକୁ ଚକ୍ରମଣୋହି କୁହାଯାଏ ।
(ଉ.ପ୍ର. ରଥ ବିଶେଷାଙ୍କ ଜୁଲାଇ ୧୯୯୭, ପୃ. ୫୨) ।

**ଚଖା**-*ଦେ.ବି.*- ବିବାହ ନିମନ୍ତେ ଅଧିକ ଝିଅ ଦେଖିବା । ହିସାବ କଷିବା ଲୋକ । କିଛି ନ ଜାଣି ଆନନ୍ଦ ବଜାରରେ ସୁଆରଙ୍କଠାରୁ ମହାପ୍ରସାଦ ଚାଖୁଥିବା ଭକ୍ତ ।
(ପୁ.ବୋ.- ପୃ. ୪୨) ।

**ଚଙ୍ଗଡ଼**-*ଦେ.ବି.*- ଚଞ୍ଚଳ, ଫୂର୍ତ୍ତିବାଜ ଲୋକ ।
(ପୁ.ବୋ.- ୪୨) ।

**ଚର୍ଚ୍ଚା**-*ଗ୍ରା.ବି.*- ଶ୍ରୀମନ୍ଦିର ଭିତରେ ଅନ୍ୟାନ୍ୟ ସେବକମାନଙ୍କୁ କାର୍ଯ୍ୟ ସମୟରେ ଡକାହକା କରି କାର୍ଯ୍ୟରେ ନିଯୁକ୍ତ କରାଉଥିବା ସେବକ ।
(ଶ୍ରୀ.ସ୍ୱ. ୮ମ - ପୃ. ୧୫୮) ।

**ଚର୍ଚ୍ଚା ଅମିନ**-*ଗ୍ରା.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ସମସ୍ତ ନୀତିକାନ୍ତିର ତତ୍ତ୍ୱ ନେଉଥିବା ସେବକ ।
(କ୍ଷେ.ସ.) ।

**ଚର୍ଚ୍ଚାଇତକରଣ ସେବକ**-*ଦେ.ବି.*- ଏ ସେବକ ନିତ୍ୟ ଶ୍ରୀମନ୍ଦିର ଦ୍ୱାର ଫିଟା ପୂର୍ବରୁ ପହୁଡ଼ ଯାଏ ଉପସ୍ଥିତ ରହି ସେବକମାନଙ୍କୁ ଡକାଡକି କରି ନିୟମିତ ରୂପେ ନୀତି ଚାଲୁ କରନ୍ତି । ସେବକମାନେ ଶାଢ଼ୀ ବନ୍ଧାଇବା ବେଳେ ଚାଙ୍ଗଡ଼ା ମେକାପଠାରୁ ଶାଢ଼ୀ ନେଇ ପାଟଯୋଷୀ ବା ଭିତରଛ ମହାପାତ୍ରଙ୍କୁ ଦିଅନ୍ତି । ଲେଙ୍କା, ପ୍ରଧାନ, ପାଇକ ଏହାଙ୍କ ନିର୍ଦ୍ଦେଶରେ କାମ କରନ୍ତି । ପହିଲି ଭୋଗ ମାସରେ ୩୫୦ ବଡ଼ି କଣ୍ଟେଇ ସେବକମାନଙ୍କୁ ବାଣ୍ଟନ୍ତି । ସେବକ ହାଜର ନ ଥିଲେ ଡକାଇ ହାଜର କରାଇବା ଏହାଙ୍କ ପ୍ରଧାନ କାମ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୮) ।

**ଚର୍ଚ୍ଚାଗଣେଶ**-*ଦେ.ବି.*- ଶ୍ରୀମନ୍ଦିର ଜଗମୋହନର ପ୍ରଥମ ଖମ୍ବ (ମୁକ୍ତୁଲି ଦ୍ୱାରପାଖ)ରେ ଶ୍ରୀଗଣେଶଙ୍କର ଯେଉଁ ଚିତ୍ର ପ୍ରତିମା ରହିଛନ୍ତି ତାହାଙ୍କୁ ଚର୍ଚ୍ଚା ଗଣେଶ କୁହାଯାଏ । ବାହାର ଦେଉଳି ଭୋଗରୁ କାକରା ଏକମୂର୍ତ୍ତି ଭୋଗ ଲାଗେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୨, ଶ୍ରୀ.ବେ.ଦେ. - ପୃ. ୧୩୫) ।

**ଚର୍ଚ୍ଚା ପାଇକ**-*ଦେ.ବି.*- ଗୋପାଳବଲ୍ଲଭ ଭୋଗ ପାଇଁ ଭୋଗ ଡାକିଯିବା ସେବକ । ଏହି ସେବକ ସକାଳ ଧୂପରେ ପାଳିଆ ପୂଜାପଣ୍ଡା ଓ ଭୋଗମଣ୍ଡପ ପ୍ରତିହାରୀଙ୍କୁ ଯଥା ସମୟରେ ନୀତିକାନ୍ତିରେ ନିୟୋଜିତ କରନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ.୬୬) ।

**ଚଞ୍ଚୁ ଶାଢ଼ୀ**-*ଦେ.ବି.*- ଏକ ବିଶେଷ ଶାଢ଼ୀବନ୍ଧାରେ ବ୍ୟବହୃତ ହେଉଥିବା ସୂତା ଶାଢ଼ୀ ।
(ଶ୍ରୀ.ଶ.-ପୃ. ୬୨) ।

**ଚଟକ**-*ଦେ.ବି.*- ଯମେଶ୍ୱରଙ୍କ ନିକଟରେ ଥିବା ଏକ ପାହାଡ଼/କୁଦ/ବାଲିସ୍ତୁପ ।
(ଶ୍ରୀ.ଶ.- ପୃ. ୬୨) ।

**ଚଟା**-*ଗ୍ରା.ବି.*- ହାଣ୍ଡି କୁଡୁଆର ଏକ ଅଳଙ୍କରଣ ।
(ଶ୍ରୀ.ଶ.- ପୃ. ୬୨) ।

**ଚଢ଼େଇନେଦା**-*ଦେ.ବି.*- ଛପନ ଭୋଗ ମଧ୍ୟରୁ ଏହା ଏକ ମିଷ୍ଟ ଦ୍ରବ୍ୟ ।
(ଶ୍ରୀ.ସ୍ୱ. - ପୃ. ୧୦୨) ।

**ଚଣାପୁଅ**-*ଗ୍ରା.ବି.*- ବଡ଼ସୁଆର ଗୋଷ୍ଠୀର ସେବକବିଶେଷ ।
(ଶ୍ରୀ.ଶ. - ପୃ. ୬୨) ।

**ଚଣ୍ଡ ମାଠପୁଳି**-*ଗ୍ରା.ବି.*- ମାଠପୁଳି ଭୋଗରୁ ପୂଜାପଣ୍ଡା ପାଇବା ନିମନ୍ତେ ଥିବା ଚଣ୍ଡ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧) ।

**ଚଣ୍ଡୀ**-*ସଂ.ବି.*- ଦୁର୍ଗା, ପାର୍ବତୀଙ୍କର ଅସୁର ବିଧ୍ୱଂସୀ ଦଶଭୁଜା ବିଶିଷ୍ଟ ଅବତାର । ଓଡ଼ିଶାର ଆଠଗୋଟି ସ୍ଥାନରେ ଚଣ୍ଡୀଙ୍କର ପ୍ରଧାନ ବିଗ୍ରହ ଅଛନ୍ତି । ସେଗୁଡ଼ିକ ହେଲେ- ୧. ବାଣପୁରରେ ଭଗବତୀ, ୨. ପୁରୀରେ ବିମଳା, ୩. କାକଟପୁରରେ ମଙ୍ଗଳା, ୪. ଝଙ୍କଡ଼ରେ ଶାରଳା, ୫. ଯାଜପୁରରେ ବିରଜା, ୬. ବାଙ୍କୀରେ ଚର୍ଚ୍ଚିକା, ୭. ସମ୍ବଲପୁରରେ ସମଲାଇ, ୮. ତାଳଚେରରେ ହିଙ୍ଗୁଳା । ନବକଳେବର ସମୟରେ ଦାରୁ ସଂଗ୍ରହ ବେଳେ କାକଟପୁର ମଙ୍ଗଳାଙ୍କ ପାଖରେ ଚଣ୍ଡୀପାଠ କରାଯାଏ ।
(ପୂ.ଓ.ଭା. - ପୃ. ୨୫୧୬) ।

**ଚତୁର୍ଦ୍ଦଶ ଭୁବନ**-*ସଂ.ବି.*- ହିନ୍ଦୁ ଶାସ୍ତ୍ରାନୁସାରେ ସାତଗୋଟି ସ୍ୱର୍ଗ ଓ ସାତଗୋଟି ପାତାଳ । ଏହିପରି ଚଉଦଟି ସଂସାର ବା ଲୋକ । ସାତ ସ୍ୱର୍ଗ- ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପ ଓ ସତ୍ୟ । ସାତ ପାତାଳ- ଅତଳ, ସୁତଳ, ବିତଳ, ତଳାତଳ, ମହାତଳ, ରସାତଳ, ପାତାଳ ଶ୍ରୀଜଗନ୍ନାଥ ଚଉଦ ଭୁବନର ସମସ୍ତ ଘଟଣା / ବାର୍ତ୍ତା ଜାଣନ୍ତି ।
(ପୂ.ଓ.ଭା. - ପୃ. ୨୫୨୫) ।

**ଚତୁର୍ଦ୍ଦଶୀ**-*ସଂ.ବି.*- ଅମାବାସ୍ୟା ଓ ପୂର୍ଣ୍ଣିମାର ପୂର୍ବ ଦିବସ । ଏହି ଦିନମାନଙ୍କରେ ଶିବପୂଜା ଓ ବିଷ୍ଣୁଙ୍କର ପୂଜା କରାଯାଇ ବେଢ଼ା ପରିକ୍ରମା କରାଯାଏ । ଚତୁର୍ଦ୍ଦଶୀମାନଙ୍କ ମଧ୍ୟରେ ନିମ୍ନଲିଖିତ ୧୫ଟି ବିଶେଷ ରୂପେ ପାଳନ କରାଯାଇଥାଏ । ୧. ବୈଶାଖ ଶୁକ୍ଳପକ୍ଷ- ନୃସିଂହ ଚତୁର୍ଦ୍ଦଶୀ, ୨. ଜ୍ୟେଷ୍ଠ କୃଷ୍ଣପକ୍ଷ- ସାବିତ୍ରୀ ଚତୁର୍ଦ୍ଦଶୀ, ୩. ଜ୍ୟେଷ୍ଠ ଶୁକ୍ଳପକ୍ଷ- ଚମ୍ପକ ଚତୁର୍ଦ୍ଦଶୀ, ୪. ଆଷାଢ଼ କୃଷ୍ଣପକ୍ଷ- ଶ୍ରୀଜଗନ୍ନାଥଙ୍କ ନେତ୍ରୋତ୍ସବ ଚତୁର୍ଦ୍ଦଶୀ ଓ ନବଯୌବନ ଦର୍ଶନ, ୫. ଆଷାଢ଼ ଶୁକ୍ଳପକ୍ଷ- ଶିବ ଶୟନ ଚତୁର୍ଦ୍ଦଶୀ, ୬. ଶ୍ରାବଣ ଶୁକ୍ଳପକ୍ଷ- ପବିତ୍ରାରୋପଣ ଚତୁର୍ଦ୍ଦଶୀ, ୭. ଭାଦ୍ର କୃଷ୍ଣପକ୍ଷ- ଅଘୋରା ଚତୁର୍ଦ୍ଦଶୀ, ୮. ଭାଦ୍ର ଶୁକ୍ଳପକ୍ଷ- ଅନନ୍ତ ଚତୁର୍ଦ୍ଦଶୀ, ୯. କାର୍ତ୍ତିକ କୃଷ୍ଣପକ୍ଷ- ନରକଭୂତ ଚତୁର୍ଦ୍ଦଶୀ, ୧୦. କାର୍ତ୍ତିକ ଶୁକ୍ଳପକ୍ଷ- ଶିବଉତ୍ଥାପନ ଚତୁର୍ଦ୍ଦଶୀ, ୧୧. ମାର୍ଗଶିର ଶୁକ୍ଳପକ୍ଷ- ପାଷାଣ ଚତୁର୍ଦ୍ଦଶୀ, ୧୨. ମାଘ କୃଷ୍ଣପକ୍ଷ- ରଟନ୍ତୀ ଚତୁର୍ଦ୍ଦଶୀ, ୧୩. ଫାଲଗୁନ କୃଷ୍ଣପକ୍ଷ- ଶିବ ଚତୁର୍ଦ୍ଦଶୀ, ୧୪. ଚୈତ୍ର

କୃଷ୍ଣପକ୍ଷ- ସୁହୀ ଚତୁର୍ଦ୍ଦଶୀ, ୧୫. ଚୈତ୍ର ଶୁକ୍ଳ- ଦମନକ ଚତୁର୍ଦ୍ଦଶୀ । ଶ୍ରୀମନ୍ଦିରରେ ଏହି ଚତୁର୍ଦ୍ଦଶୀମାନଙ୍କରେ ବିଭିନ୍ନ ପୂଜା ଉପାସନା କରାଯାଇଥାଏ ।
(ପୂ.ଓ.ଭା. - ପୃ. ୨୫୨୫) ।

**ଚତୁର୍ଦ୍ଧାମ**- *ସଂ.ବି.*- ଭାରତରେ ହିନ୍ଦୁମାନଙ୍କର ପ୍ରସିଦ୍ଧ ଚାରିଟି ତୀର୍ଥକେନ୍ଦ୍ର । ପୂର୍ବରେ- ଶ୍ରୀଜଗନ୍ନାଥ ଧାମ-ପୁରୀ, ପଶ୍ଚିମରେ- ଶ୍ରୀଦ୍ୱାରକାନାଥ ଧାମ-ଦ୍ୱାରକା, ଉତ୍ତରରେ- ଶ୍ରୀବଦ୍ରିନାଥ ଧାମ-ଉତ୍ତରାଖଣ୍ଡ, ଦକ୍ଷିଣରେ - ଶ୍ରୀରାମନାଥ ଧାମ- ରାମେଶ୍ୱରମ୍ ।
(ପୂ.ଓ.ଭା. - ପୃ. ୨୫୨୬) ।

**ଚତୁର୍ଦ୍ଧାମୂର୍ତ୍ତି**- ରତ୍ନସିଂହାସନରେ ଥିବା ଚତୁର୍ଦ୍ଧା ମୂର୍ତ୍ତି ଯଥା- ଶ୍ରୀବଳରାମ, ଦେବୀ ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନ । ଶ୍ରୀ ବଳରାମ ଧବଳ ବର୍ଣ୍ଣ ଉଚ୍ଚତା - ସାତ ଫୁଟ ଏକ ଇଞ୍ଚ, ଦେବୀ ସୁଭଦ୍ରା ହଳଦୀବର୍ଣ୍ଣ ଉଚ୍ଚତା - ଚାରି ଫୁଟ ଚାରି ଇଞ୍ଚ, ଶ୍ରୀଜଗନ୍ନାଥ / କୃଷ୍ଣ ବର୍ଣ୍ଣ ଉଚ୍ଚତା- ସାତ ଫୁଟ, ଶ୍ରୀ ସୁଦର୍ଶନ ରକ୍ତବର୍ଣ୍ଣ ଉଚ୍ଚତା - ସାତ ଫୁଟ ।
(ଶ୍ରୀ.ଜି. - ପୃ. ୬୨) ।

**ଚତୁର୍ମାସ୍ୟା ଠାକୁର**-*ଗ୍ରା.ବି.*- ଶୟନ ଠାକୁର । ଶୟନ ଏକାଦଶୀଠାରୁ ଉତ୍ଥାନ ଏକାଦଶୀ ପର୍ଯ୍ୟନ୍ତ ଏହା ଠାକୁର ଶୟନ କରୁଥିବାରୁ ଏହାଙ୍କୁ ଚତୁର୍ମାସ୍ୟା ଠାକୁର କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୧୧) ।

**ଚତୁର୍ଯୁଗ**-*ଦେ.ବି.*- ପୁରାଣ ବର୍ଣ୍ଣିତ ଚାରି ଯୁଗ ଯଥା ସତ୍ୟ, ତ୍ରେତା, ଦ୍ୱାପର ଓ କଳି ।
(ଓ.ସାଂ.ଶ.- ପୃ. ୧୨୩) ।

**ଚତୁଷ୍ପାଦ ଯୋଗ**-*ଦେ.ବି.*- ଏକ ଶୁଭଯୋଗ । ଆଷାଢ଼ ଶୁକ୍ଳ ପଞ୍ଚମୀ ମଘା ନକ୍ଷତ୍ରରେ ଶ୍ରୀଜଗନ୍ନାଥଙ୍କର ସମାଗମ ଓ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ଏହି ଚତୁର୍ବିଧ ମିଳନରେ ଏ ଯୋଗ ପଡ଼େ ।
(ଓ.ସାଂ.ଶ.- ପୃ. ୧୨୩) ।

**ଚନ୍ଦନ**-*ସଂ.ବି.*- ସୁଗନ୍ଧ କାଠ । ଚନ୍ଦନ ଦକ୍ଷିଣ ଭାରତର କ୍ଷୁଦ୍ର ଅରଣ୍ୟରେ ଜନ୍ମିବା ନାତିଉଚ୍ଚତର ଶ୍ୟାମଳ ତରୁ । ପଥୁରିଆ ଭୂମିରେ ଏ ଗଛ ବଢ଼ିଥାଏ । ଗଛର ମଞ୍ଜକାଠ ସୁଗନ୍ଧ । ପଥରରେ ପାଣିଦେଇ ଘଷିଲେ ସୁବାସ ବିଚ୍ଛୁରିତ ହୁଏ । ପ୍ରତ୍ୟେକ ଦେବତାଙ୍କ ପାଇଁ ଏହା ଅତ୍ୟନ୍ତ ଆବଶ୍ୟକୀୟ କିନ୍ତୁ ପୂଜା ସମୟରେ କାଠର ବର୍ଣ୍ଣ ଓ ସୁବାସ ଅନୁସାରେ ଶ୍ରୀଗଣ୍ଡ ବା ଶ୍ୱେତ ଚନ୍ଦନ, ଶବର ଚନ୍ଦନ, ହରିଚନ୍ଦନ ବା ପୀତ ଚନ୍ଦନ, ରକ୍ତ ଚନ୍ଦନ, ବର୍ବର ଚନ୍ଦନ, ଅଗୁରୁ ଚନ୍ଦନ, ଶ୍ରେଣୀ ବିଧାନ କରାଯାଇଅଛି । ଶ୍ରୀଜଗନ୍ନାଥଙ୍କର ଦୈନନ୍ଦିନ ନୀତି କାର୍ଯ୍ୟରେ ଚନ୍ଦନ ପ୍ରତ୍ୟହ ପ୍ରତି ପୂଜାରେ ଆବଶ୍ୟକ ହୁଏ ଏବଂ ଚନ୍ଦନ ଘଟୁଆରୀ ନାମକ ସେବକ ଏହା ଯୋଗାନ୍ତି ।
(ପୂ.ଓ.ଭା. - ୨୫୩୧) ।

**ଚନ୍ଦନଅର୍ଗଳି**-*ଦେ.ବି.*- ରତ୍ନସିଂହାସନ ପଛପଟ ଗଳିକୁ ଚନ୍ଦନ ଅର୍ଗଳି କୁହାଯାଏ । ଭିତର ପୋଖରିଆରୁ ଜଗନ୍ନାଥଙ୍କ ରତ୍ନସିଂହାସନ ପଛରେ ଥିବା ରାସ୍ତା ।
(ପୂ.ଓ.ଭା. - ପୃ. ୨୫୩୧) ।

**ଚନ୍ଦନଗୁଡ଼ା**-*ଦେ.ବି.*- ଶ୍ରୀମନ୍ଦିର ଚନ୍ଦନଯାତ୍ରା ସମୟରେ ରାତ୍ର ଚନ୍ଦନ ବେଳେ ଦଶହାତ ଲମ୍ବ ତିନି ହାତ ଓସାର ବିଶିଷ୍ଟ ସୂତାବସ୍ତ୍ର ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୦) ।

**ଚନ୍ଦନ ଘଟୁଆରୀ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର କେତେକ ନୀତିରେ ଘଣ୍ଟ, ଛତା, କାହାଳୀ ସହ ଚନ୍ଦନ ଘଟୁଆରୀଙ୍କ ଘରଠାରୁ ରୂପା ପିଙ୍ଗଣରେ ଶ୍ରୀମନ୍ଦିରକୁ ଚନ୍ଦନ ଅଣାଯାଏ । ଘଟୁଆରୀ ପ୍ରତ୍ୟେକ ଦିନ ସ୍ନାନଶୌଚ ହୋଇ ନିଜ ଘରେ ଅଧିକ କିଛି ଚନ୍ଦନ ଘୋରି କେଉଁ ପୂଜାରେ ଚନ୍ଦନ ଲାଗିବ ତାହା ଦରକାରମତେ ଯୋଗାନ୍ତି । ସୂର୍ଯ୍ୟପୂଜା, ଦ୍ୱାରପାଳ ପୂଜା, ବଲ୍ଲଭ, ତିନି ଧୂପ, ଚନ୍ଦନଲାଗି, ବଡ଼ସିଂହାର, ପୁଷ୍ପାଞ୍ଜଳି ଓ ବିଭିନ୍ନ ପର୍ବଯାତ୍ରାରେ ମଙ୍ଗଳାର୍ପଣ ବନ୍ଦାପନା ସର୍ବାଙ୍ଗ ଚନ୍ଦନଲାଗି ଇତ୍ୟାଦିରେ ଦରକାରମତେ ଅଧିକା ଚନ୍ଦନ ଘୋରି ଯୋଗାନ୍ତି । ପ୍ରତ୍ୟେକ ଏକାଦଶୀ ଓ ଚନ୍ଦନ

ବଇଆଳିଶି ଦିନ, ସ୍ନାନପୂର୍ଣ୍ଣିମା, ଅଣସର ସର୍ବାଙ୍ଗ ଓ ଅକ୍ଷୟ ତୃତୀୟାରେ ଅଧିକ ଚନ୍ଦନ ଘୋରା ହୁଏ । ରୂପା ପିଙ୍ଗଣରେ ଚନ୍ଦନ, ରାତ୍ରି ଚନ୍ଦନ ଲାଗି ପାଇଁ ପାଳିଆ ମେକାପକୁ ଦିଆଯାଏ । ଅନ୍ୟ ସମୟରେ ଚନ୍ଦନ ଅର୍ଗଳି ପାଖରେ ପତ୍ରୀ ହାତକୁ ଚନ୍ଦନ ଦେଇଥାଆନ୍ତି । ଠାକୁରଙ୍କୁ ଚନ୍ଦନ ଲାଗି ହେବା ପରେ ଏହାଙ୍କ କାମ ସରିଥାଏ । ବେଶି ଚନ୍ଦନ ଘୋରା ଆବଶ୍ୟକ ହେଲେ ବ୍ରାହ୍ମଣ ଦ୍ୱାରା ଚନ୍ଦନ ଘୋରା ହୋଇଥାଏ ।

(ଶ୍ରୀ.ସ୍ୱ. ୩ୟ - ପୃ. ୫୯) ।

**ଚନ୍ଦନ ବିଜେ**-*ଦେ.ବି.*- ଶ୍ରୀମନ୍ଦିରରେ ଘଟୁଆରୀଙ୍କ ସର ଘରୁ କାହାଳୀ ପଟୁଆରରେ ଯେଉଁ ଚନ୍ଦନ ଆସି ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗିହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୬୬) ।

**ଚନ୍ଦନବୁଡ଼ା**-*ଗ୍ରା.ବି.*- ଚନ୍ଦନଯାତ୍ରା ବୟାଳିଶ ଦିନ ଆଲଟ ଲାଗି ପୂର୍ବରୁ ଠାକୁରଙ୍କୁ ଲାଗି ହେଉଥିବା ବସ୍ତ୍ର ।

(ଶ୍ରୀ.ସ୍ୱ. - ପୃ. ୧୨୦) ।

**ଚନ୍ଦନବେଢ଼ା**-*ଗ୍ରା.ବି.*- ଏହା ନରେନ୍ଦ୍ର ଚକଡ଼ା ବା ନରେନ୍ଦ୍ର ପୁଷ୍କରିଣୀ, ଯେଉଁଠି ଠାକୁରଙ୍କ ଚନ୍ଦନଯାତ୍ରା ବା ଜଳକ୍ରୀଡ଼ା ହୁଏ ।

(ଶ୍ରୀ.ସ୍ୱ. - ୨ୟ - ପୃ. ୧୧୮) ।

**ଚନ୍ଦନମଇଲମ**-*ଦେ.ବି.*- ଦୈନିକ ବଡ଼ସିଂହାର ନୀତିରେ ପୂଜା ହେବା ପୂର୍ବରୁ ଠାକୁରଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲାଗି ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୮, ପୁ.ବୋ. - ପୃ. ୧୮୯) ।

**ଚନ୍ଦନଯାତ୍ରା**-*ଦେ.ବି.*- ଅକ୍ଷୟ ତୃତୀୟା (ବୈଶାଖ ଶୁକ୍ଳ ତୃତୀୟା)ଠାରୁ ଚନ୍ଦନ ଯାତ୍ରା ଶ୍ରୀମନ୍ଦିରରେ ଆରମ୍ଭ ହୋଇ ଜ୍ୟୈଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଦୀର୍ଘ ବଇଆଳିଶ ଦିନ ଧରି ଅନୁଷ୍ଠିତ ହୋଇଥାଏ । ଏହା ଦୁଇ ଭାଗରେ ବିଭକ୍ତ । ଯଥା- ଜଳକେଳି ଓ ଚନ୍ଦନଲାଗି । ପ୍ରଥମ ଏକୋଇଶି ଦିନ ଜଳକେଳି ଯୋଗୁ ଏହା ବାହାର ଚନ୍ଦନ ଓ ଶେଷ ଏକୋଇଶି ଦିନ ଭିତର ଚନ୍ଦନ ନାମରେ କଥିତ । ମଣିବିମାନରେ ମଦନମୋହନ, ଭୂଦେବୀ, ଶ୍ରୀଦେବୀ ଲକ୍ଷ୍ମୀ, ସରସ୍ୱତୀ, ଗଜଦନ୍ତ ପାଲିଙ୍କିରେ ରାମକୃଷ୍ଣ ନରେନ୍ଦ୍ର ପୁଷ୍କରିଣୀକୁ ଯାତ୍ରା କରନ୍ତି । ସିଂହଦ୍ୱାରରେ ଯମେଶ୍ୱର, ମାର୍କଣ୍ଡେୟ, ଲୋକନାଥ, କପାଳମୋଚନ ଓ ନୀଳକଣ୍ଠ ପଞ୍ଚ ମହାଦେବ ରୂପକ ପଞ୍ଚପାଣ୍ଡବ ସ୍ୱ ସ୍ୱ ବିମାନରେ ଏହାଙ୍କ ସହିତ ମିଶି ସାତଟି ଯାନରେ ଦଶ ଅବତାର ଦେବତା ଯାତ୍ରା କରନ୍ତି । ବାଟରେ ଦେବପ୍ରତିମାମାନେ ଜଗନ୍ନାଥବଲ୍ଲଭରେ ଚୂଡ଼ଙ୍ଗଦେବଙ୍କୁ ଛଡ଼ା ପ୍ରସାଦ ଦେଇ ସେହି ମଠରୁ ଜଳ ସହିତ ଚୂଡ଼ଙ୍ଗ ହନୁମାନଙ୍କୁ ସଙ୍ଗରେ ନେଇଯାଆନ୍ତି । ରାମକୃଷ୍ଣ ବଡ଼ଚାପରେ ସ୍ୱ ଆସନରେ ବିଜେ ପରେ ପଞ୍ଚଶମ୍ଭୁ ତାଙ୍କ ପଶ୍ଚାତ୍ ଆସନରେ ବିଜେ କରନ୍ତି । ଦ୍ୱିତୀୟ ରାତ୍ର ଚନ୍ଦନଲାଗି ବଢ଼ିବା ପରେ ପାଳିଆ ମେକାପ ତିନିଗୋଟା ରୂପା ପିଙ୍ଗଣରେ ରାଘବଦାସ ଦେଇଥିବା ଚନ୍ଦନ ଓ ମନ୍ଦିର ଅଫିସରୁ ଆସିଥିବା ଚନ୍ଦନ ପିତ୍ତଳ ହଣ୍ଡାରେ ରଖି ଭୋଗ ମଣ୍ଡପକୁ ନିଆଯାଏ । ଏହି ଚନ୍ଦନଯାତ୍ରା ଓ ଆଲଟ ଲାଗି ବୟାଳିଶ ଦିନ । ବାହାର ଚନ୍ଦନ ଏକୋଇଶି ଦିନ ଓ ଭିତର ଚନ୍ଦନ ଏକୋଇଶି ଦିନ । ଠାକୁରଙ୍କ ନିର୍ଦ୍ଧାରିତ ନୀତିନିୟମ ଅନୁସାରେ ଚନ୍ଦନଯାତ୍ରା ସମ୍ପନ୍ନ ହୋଇଥାଏ ।

(ଶ୍ରୀ.ସ୍ୱ. ୨ୟ- ପୃ. ୧୧୯) ।

**ଚନ୍ଦନଯାତ୍ରାରେ ଶ୍ରୀଜୀଉଙ୍କ ବେଶ**- ବାହାର ଚନ୍ଦନଯାତ୍ରାରେ ମୋଟ ଦଶଗୋଟି ଚଳନ୍ତି ପ୍ରତିମା ଭାଗ ନିଅନ୍ତି । ସେମାନେ ହେଲେ ମଦନମୋହନ, ଲକ୍ଷ୍ମୀ, ସରସ୍ୱତୀ, ରାମକୃଷ୍ଣ ଓ ପଞ୍ଚଶିବ । ଏହି ଚନ୍ଦନଯାତ୍ରାରେ ମଦନମୋହନଙ୍କୁ ଏକୋଇଶି ଦିନରେ କୋଡ଼ିଏ ବେଶ କରାଯାଏ । ୧୯ତମ ଦିବସରେ ବେଶ କରାଯାଏ ନାହିଁ । ସେହି କୋଡ଼ିଏ ବେଶ ହେଲା- ୧. ଅକ୍ଷୟ ତୃତୀୟା - ନଟବର ବେଶ, ୨. ଚତୁର୍ଥୀ ତିଥି- ହରିଜନ୍ମ ବେଶ, ୩. ପଞ୍ଚମୀ

ତିଥି- ରାଜାଧିରାଜ ବେଶ, ୪. ଷଷ୍ଠୀ ତିଥି- ଖଟଦୋଳି ବେଶ, ୫. ସପ୍ତମୀ ତିଥି- ଗୋମତୀକୃଷ୍ଣ ବେଶ, ୬. ଅଷ୍ଟମୀ ତିଥି- ବସ୍ତ୍ରାଚାରଣ ବେଶ, ୭. ନବମୀ ତିଥି- ବସ୍ତ୍ରାହରଣ ବେଶ, ୮. ଦଶମୀ ତିଥି- ଅଘାସୁର ବଧ ବେଶ, ୯. ଏକାଦଶୀ ତିଥି- ଚକ୍ର ନାରାୟଣ ବେଶ, ୧୦. ଦ୍ୱାଦଶୀ ତିଥି- ନାବକେଳି ବେଶ, ୧୧. ତ୍ରୟୋଦଶୀ ତିଥି - ରାହାସମଣ୍ଡଳୀ ବେଶ, ୧୨. ଚତୁର୍ଦ୍ଦଶୀ ତିଥି- ନୃସିଂହବେଶ, ୧୩. ବୈଶାଖ ପୂର୍ଣ୍ଣମା - କନ୍ଦର୍ପ ରଥ ବେଶ, ୧୪. ପ୍ରତିପଦ ତିଥି- ଷଡ଼ଭୁଜ ଗୌରାଙ୍ଗ ବେଶ, ୧୫. ଦ୍ୱିତୀୟା ତିଥି- ରଘୁନାଥ ବେଶ, ୧୬. ତୃତୀୟା ତିଥି- ଗୋବର୍ଦ୍ଧନ ପୂଜା ବେଶ, ୧୭. ଚତୁର୍ଥୀ ତିଥି- ଗୋବର୍ଦ୍ଧନ ଧାରଣ ବେଶ, ୧୮. ପଞ୍ଚମୀ ତିଥି- ବସ୍ତ୍ର ହରଣ ବେଶ, ୧୯. ଷଷ୍ଠୀ ତିଥି- ବେଶ ନାହିଁ, ୨୦. ସପ୍ତମୀ ତିଥି- ଗଜଉଦ୍ଧାରଣ ବେଶ, ୨୧. ଅଷ୍ଟମୀ ତିଥି-କୁଞ୍ଜବିହାରୀ ବେଶ ।
(ଶ୍ରୀ.ଜି. - ପୃ. ୨୨୫) ।

**ଚନ୍ଦନଲାଗି**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତ୍ୟେକ ଦିନ, ବିଭିନ୍ନ ଯାତ୍ରା, ବେଶ ଦିନ ଓ ବିଶେଷତଃ ଉତ୍ସବ ଦିନଗୁଡ଼ିକରେ ତଥା ଅଣସର ଏକାଦଶୀ ଦିନ ଦଇତା ଓ ପତି ମହାପାତ୍ର ଠାକୁରଙ୍କୁ ଚନ୍ଦନଲାଗି କରାଇବା ବିଧି ଓ ନୀତି ପ୍ରଚଳିତ । ପ୍ରତ୍ୟହ ସନ୍ଧ୍ୟାଧୂପ ପରେ ଠାକୁରମାନଙ୍କ ପୂର୍ବ ବେଶ ବଦଳା ଯାଇ ଚନ୍ଦନ ଲାଗି ପାଇଁ ବସ୍ତ୍ର ପିନ୍ଧାଇ ଦିଆଯାଏ । ଏହି ବସ୍ତ୍ରର ଲମ୍ବ ୧୦ ହାତ, ଓସାର- ୩ ହାତ, ଏହା ଶୁକ୍ଳବର୍ଣ୍ଣର । ଏହାକୁ ଚନ୍ଦନ ଗଡ଼ା କୁହାଯାଏ । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ପ୍ରତ୍ୟହ ରାତ୍ର ୧୦ଟା ସମୟରେ ଠାକୁରମାନଙ୍କର ମଇଲମ ଓ ଚନ୍ଦନ ଲାଗି ହେବା ନିୟମ । ଘଟୁଆରୀ ଚନ୍ଦନଘୋରି ୩ଗୋଟି ରୂପା ପିଙ୍ଗଣରେ ରଖି ଓଲାଗି ହେବା ପରେ ପାଳିଆ ମେକାପ ହାତଧୋଇ ଘଟୁଆରୀଠାରୁ ଉକ୍ତ ରୂପା ପିଙ୍ଗଣ ତିନିଗୋଟି ନେଇ ସିଂହାସନ ନିକଟକୁ ଯିବା ସମୟରେ ପାଳିଆ ମେକାପ ହାତ ଧୋଇ ଘଟୁଆରୀଠାରୁ ଉକ୍ତ ରୂପାପିଙ୍ଗଣ ତିନିଗୋଟି ନେଇ ସିଂହାସନ ନିକଟକୁ ଯିବା ସମୟରେ ପାଳିଆ ପ୍ରତିହାରୀ ଆଗରେ ବେତ ଧରି ଦର୍ଶନାର୍ଥୀମାନଙ୍କୁ ଆଡେଇ ଦେଇ ରତ୍ନସିଂହାସନ ସମ୍ମୁଖକୁ ନେଇଯାଆନ୍ତି । ଏହାପରେ ଗରାବଡୁ ପାଳିଆ, ପାଳିଆ ପୁଷ୍ପାଳକମାନଙ୍କୁ ହାତ ଧୋଇବାକୁ ପାଣି ଦିଅନ୍ତି । ପାଳିଆ ମେକାପ ରୂପା ପିଙ୍ଗଣ ନେଇ ସିଂହାସନ ଉପରେ ରଖନ୍ତି । ପାଳିଆ ପୁଷ୍ପାଳକମାନେ ଚନ୍ଦନକୁ ସଂସ୍କାର କରି ଠାକୁରମାନଙ୍କ ଅଙ୍ଗରେ ଲାଗି କରନ୍ତି । ଏହି ଚନ୍ଦନ ଲାଗି ସମୟରେ ପାଳିଆ ଖୁଣ୍ଟିଆ ବେତ ଧରି 'ମଣିମା', 'ମଣିମା' ଡାକ ଦେଉଥାଆନ୍ତି । ଏହାପରେ ହଡ଼ପ ନାୟକ ଠାକୁରଙ୍କୁ ବିଡ଼ିଆ ମଣୋହି କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪, ୨୬, ୬୬, ୧୧୮, ଶ୍ରୀଜ.ବେ.ର. - ପୃ. ୨୬) ।

**ଚନ୍ଦ୍ରଉଦିଆ**-*ଦେ.ବି.*- ବାଣ ବିଶେଷ । ଯେଉଁ ବାଣକୁ ଜାଳିଲେ ଚନ୍ଦ୍ରୋଦୟ ହେଲା ଭଳି ଧଳା ଆଲୋକ ବିଛୁରିତ ହୋଇଥାଏ । ତିନି ଜଣ ଚୂନରା ମହାଦୀପ, ଚନ୍ଦ୍ର ଉଦିଆ ଧରି ଶ୍ରୀମନ୍ଦିର ଉପରକୁ ଉଠନ୍ତି ସାଥିରେ ନଡ଼ିଆକତା ଲଗାଇ ନିଆଁ ନେଇଥାନ୍ତି । ଦଧିନଉତି ତଳେ ଠିଆହୋଇ ତୁଳସୀ ଚନ୍ଦନ ନୀଳଚକ୍ରକୁ ଲାଗି କରି ଚାରିପଟେ ତିନିଘେରା ବୁଲନ୍ତି ଓ ଚନ୍ଦ୍ର ଉଦିଆ ପ୍ରତ୍ୟେକ ଦିଗରେ ତିନିଟି ଲେଖାଏଁ ଜାଳନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୪୨/୪୩, ପୂ.ଓ.ଭା. - ପୃ. ୨୫୩୫) ।

**ଚନ୍ଦ୍ରଉଦିଆ ବଳିତା**-*ଦେ.ବି.*- କଦଳୀ ବାସୁଙ୍ଗାରେ ନୂଆ କନାଗୁଡ଼ାଇ ବଳିତା ତିଆରି କରାଯାଏ ଓ ତିନିଟି ରୂପା କଳସରେ ଥିବା ଘିଅରେ ରଖାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୨) ।

**ଚନ୍ଦ୍ରକାନ୍ତି**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ପାଖରେ ଭୋଗ ଲାଗୁଥିବା ଏକ ମିଠା ପିଠା ବିଶେଷ । ଏହା ମଧ୍ୟ ଏକ ଆଭରଣ ବିଶେଷ ।
(ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୨୬୦) ।

**ଚନ୍ଦ୍ରସୂର୍ଯ୍ୟ**-*ଗ୍ରୀ.ବି.*- ଶ୍ରୀମନ୍ଦିର ଠାକୁରଙ୍କର କାମାଳାଗି ବେଶ ଶ୍ରୀ ରାଧାଦାମୋଦର ବେଶରେ ଓ ସୁନାବେଶରେ ଚନ୍ଦ୍ରସୂର୍ଯ୍ୟ ସୁବର୍ଣ୍ଣ ଅଳଙ୍କାର ଲାଗି ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫) ।

**ଚପକିନ୍**- ଚପକିନ୍ ହେଉଛି ଆଜାନୁଲମ୍ବିତ ଚିପା କୁର୍ତ୍ତା । ଛେରାପହଁରା ସମୟରେ ଗଜପତି ମହାରାଜ ଶ୍ୱେତ ଚିପା ପାଇଜାମା, ଚପକନ୍ ବ୍ୟବହାର କରି ଆସନ୍ତି । ମୁଣ୍ଡରେ ଶୁଭ୍ର ପଗଡ଼ି ଓ ପରଚୂଳ ରକ୍ତବର୍ଣ୍ଣର ପାଖୁଡ଼ା ଓ କଟି ଦେଶରେ ରାଜଦଣ୍ଡ ଖଡ଼୍ଗ ଥାଏ ।
(ପୂ.ଓ.ଭା. - ପୃ. ୨୫୪୫) ।

**ଚମ୍ପକ ଚତୁର୍ଦ୍ଦଶୀ**-*ସଂ.ବି.*- ଜ୍ୟେଷ୍ଠମାସ ଶୁକ୍ଳ ଚତୁର୍ଦ୍ଦଶୀ । ଶ୍ରୀମନ୍ଦିରରେ ସକାଳେ ଚାରମାଳ ବନ୍ଧା ସରିବା ପରେ ଦଇତାମାନେ ପତିମହାପାତ୍ରଙ୍କ ସହ ସିଂହାସନ ଉପରକୁ ଯାଇ ମାଳଫୁଲ ମଇଲମ କରି ରୁନ୍ଧା ହୋଇଥିବା ରସିକଶିକୁଳି ଓ ଶୁଆଥଣ୍ଟିଆ ମଇଲମ କରି ଭଣ୍ଡାର ମେକାପକୁ ଦେବେ ଓ ସେନାପଟା ଲାଗି କରାଇବେ । ସୁଦର୍ଶନଙ୍କୁ ସିଂହାସନ ଉପରେ ବିଜେ କରାଇବା ପରେ ଦୈନନ୍ଦିନ ଆଳତି ହୁଏ । ଚାରଲଗା ଯୋଗୁ ଅଣସର ପିଣ୍ଡିରେ ଅବକାଶ ନୀତି ହେବା ଭିତରେ ବେଶ ହୁଏ । ସମସ୍ତ ଧୂପରେ ଚାର ଥିବା ଯୋଗୁ ମୁରୁଜ ନ ପଡ଼ି ଜୟବିଜୟ ଦ୍ୱାର ବନ୍ଦ ରହି ଅଣସର ପିଣ୍ଡିରେ ଭୋଗ ହୁଏ । ସନ୍ଧ୍ୟା ଧୂପ ପରେ ଦକ୍ଷିଣି ଘରଠାରେ ପଣ୍ଡା, ପତି, ମୁଦିରସ୍ତ ଥାଇ ମଦନମୋହନ ଓ ରୁକ୍ମିଣୀ ବିବାହର ଚତୁର୍ଥୀ ହୋମ ହୋଇ ପରେ ବରକନ୍ୟା ଭିତରକୁ ବିଜେ କରନ୍ତି । ଏହାପରେ ମଙ୍ଗଳ ଆଳତୀ ହୋଇ ସ୍ନାନଯାତ୍ରା ବିଜେ ଆରମ୍ଭ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୪, ପୂ.ଓ.ଭା. - ପୃ. ୨୫୫୪) ।

**ଚମ୍ପକ ଦ୍ୱାଦଶୀ**-*ସଂ.ବି.*- ଏ ଦିନ ଚମ୍ପାଫୁଲ ଦ୍ୱାରା ବିଷ୍ଣୁଙ୍କୁ ପୂଜା କରିବାର ବିଧି । ଏହିଦିନ ହେଉଛି ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ । ରୁକ୍ମିଣୀ ବିବାହର ପରଦିନ । ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ଦ୍ୱାରା ଏହିଦିନ ଶ୍ରୀକ୍ଷେତ୍ରରେ ନୃସିଂହଙ୍କୁ ପ୍ରତିଷ୍ଠା କରିଥିଲେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୮, ପୂ.ଓ.ଭା. - ପୃ. ୨୫୫୪) ।

**ଚମ୍ପା**-*ଦେ.ବି.*- ଶ୍ରୀମନ୍ଦିର ରୋଷଘର ଅଗ୍ନି ବା ବୈଷ୍ଣବାଗ୍ନିର ନାମ ।
(କ୍ଷେ.ସ.) ।

**ଚରଣାମୃତ**-*ସଂ.ବି.*- ଦେବଦେବୀ, ବ୍ରାହ୍ମଣ, ଗୁରୁଜନଙ୍କର ପାଦ ପ୍ରକ୍ଷାଳନ ଜଳ, ଯେଉଁ ଜଳକୁ ଭକ୍ତ ପାନକରେ । ଗୋଡ଼ଧୁଆ ପାଣି, ପାଦୁକ, ପାଦୋଦକ । ଚରଣାମୃତ ପିଇବାକୁ ଭକ୍ତିରେ ଚରଣାମୃତ ସେବା କରିବା ବୋଲାଯାଏ ।
(ପୂ.ଓ.ଭା. - ପୃ. ୨୫୬୪) ।

**ଚରୁ**-*ଦେ.ବି.*- ହୋମ ନିମନ୍ତେ ପ୍ରସ୍ତୁତ ଅନ୍ନକୁ ଚରୁ କୁହାଯାଏ । ହୋମାଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଘୃତ ଢଳା ହେବା ବେଳେ ତହିଁ ସଙ୍ଗେ ଅଗ୍ନିରେ ଏହି ପାୟସାନ୍ନ ବା ମିଷ୍ଟାନ୍ନ ଅର୍ପଣ କରାଯାଏ । ହୋମାଗ୍ନିରେ ଦିଆଯିବା ପାଇଁ ଦୁଗ୍ଧ, କନ୍ଦ ଓ ଚାଉଳ ଏକତ୍ର ରନ୍ଧା ହୋଇଥିବା ଅନ୍ନ ।
(ପୂ.ଓ.ଭା. - ପୃ. ୨୫୭୦) ।

**ଚରୁହୋତା**-*ଦେ.ବି.*- ପୂଜାପଣ୍ଡା: ଯେ କି ଚରୁ ପ୍ରସ୍ତୁତ କରନ୍ତି ଓ ବିଗ୍ରହଙ୍କୁ ଅର୍ପଣ କରନ୍ତି ।
(ଶ୍ରୀ.ସ୍ୱ. ୧ମ- ପୃ. ୪୨-୪୬) ।

**ଚଳନ୍ତି ଦେବୀ**-*ଦେ.ବି.*- ଶ୍ରୀମନ୍ଦିରରେ ମାହାରୀଙ୍କୁ ଚଳନ୍ତି ଦେବୀ ବୋଲି କୁହାଯାଇଥାଏ ।
(କ୍ଷେ.ସ.) ।

**ଚଳନ୍ତି ପ୍ରତିମା**-*ସଂ.ବି.*- ବିଜେ ପ୍ରତିମା । ପ୍ରତିନିଧି ରୂପେ ସ୍ଥାପିତ ଦେବମୂର୍ତ୍ତି । ଯେଉଁ ଦେବମୂର୍ତ୍ତିମାନ ଅଚଳ ଅର୍ଥାତ୍ ସ୍ଥାନାନ୍ତରିତ ହେବା ଅସମ୍ଭବ । ଦେବାଳୟମାନଙ୍କରେ ସେହି ମୂର୍ତ୍ତିମାନଙ୍କର ପ୍ରତିନିଧି ରୂପେ କ୍ଷୁଦ୍ର ଅବୟବ ବିଶିଷ୍ଟ ଓ ସ୍ଥାନାନ୍ତର ହେବା ଯୋଗ୍ୟ ମୂର୍ତ୍ତିମାନ ରଖାଯାଇ ପୂଜା କରାଯାଏ । ଯାନିଯାତ୍ରା ସମୟରେ ପ୍ରକୃତ

ଦେବବିଗ୍ରହମାନଙ୍କୁ ବିମାନାଦିରେ ଉତ୍ସବସ୍ଥଳକୁ ନିଆଯାଏ । ଶ୍ରୀମନ୍ଦିର ଶ୍ରୀଜଗନ୍ନାଥଙ୍କର ଦାରୁମୂର୍ତ୍ତି ଅତ୍ୟନ୍ତ ଓଜନଦାର ଏଣୁ ବିମାନରେ ନେବା ସମ୍ଭବ ନୁହେଁ । ଏଣୁ ତାଙ୍କର ଚଳନ୍ତୀ ପ୍ରତିମା ମଦନମୋହନ ଅଛନ୍ତି ଯେ ବିମାନରେ ଯାତ୍ରା କରନ୍ତି । ସେହିପରି ପ୍ରତ୍ୟେକ ଠାକୁରଙ୍କ ଚଳନ୍ତୀ ପ୍ରତିମା ବା ବିଜେ ପ୍ରତିମା ମନ୍ଦିରରେ ପୂଜା ପାଉଛନ୍ତି । ଶ୍ରୀମନ୍ଦିରର ଦକ୍ଷିଣି ଘରେ ଏହି ଚଳନ୍ତୀ ପ୍ରତିମାମାନେ ପୂଜା ପାଉଛନ୍ତି ।
(ପୂ.ଓ.ଭା. - ପୃ. ୨୫୮୨, ଶ୍ରୀ.ସ୍ୱ. ୨ୟ - ପୃ. ୪୩) ।

**ଚଳନ୍ତି ବିଷ୍ଣୁ**-*ଦେ.ବି.*- ଭକ୍ତମାନେ ଶ୍ରୀମନ୍ଦିରରେ ଶ୍ରୀବିଗ୍ରହଙ୍କୁ ସବୁ ସମୟରେ ଦର୍ଶନ କରିପାରନ୍ତି ନାହିଁ । ଏଣୁ ମନ୍ଦିର ନିର୍ମାଣ କରିଥିବା ରାଜାଙ୍କୁ ଦର୍ଶନ କରି ଓ ଭକ୍ତି ଅର୍ପଣ କରିଥାଆନ୍ତି । କାରଣ ସେ ଠାକୁରଙ୍କର ପ୍ରଥମ ସେବକ । ତେଣୁ ତାଙ୍କୁ ଭକ୍ତି ଅର୍ଘ୍ୟ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଚଳନ୍ତି ବିଷ୍ଣୁ ରୂପେ ସମ୍ମାନ ପ୍ରଦାନ କରାଯାଏ ।
(କ୍ଷେ.ସ.) ।

**ଚଲୁ**-*ସଂ.ବି.*- ଗଣ୍ଡୂଷ । ବ୍ରାହ୍ମଣମାନେ ଭୋଜନାଦି ପୂର୍ବେ ଓ ପରେ କରୁଥିବା ଆଚମନ ।
(ପୂ.ଓ.ଭା. - ୨୫୮୯) ।

**ଚଲାକି**-*ଦେ.ବି.*- ପୁରୀକ୍ଷେତ୍ରକୁ ଆସୁଥିବା ପାଦଚଲାଯାତ୍ରୀ ।
(କ୍ଷେ.ସ.) ।

**ଚାଉଳବଛାକରଣ ସେବକ**-*ଦେ.ବି.*- ଦୈନିକ ଠାକୁରଙ୍କ ସକାଳ ଓ ମଧ୍ୟାହ୍ନ ଧୂପରେ ଦିଆଯାଉଥିବା ଚାଉଳ ଓ କଞ୍ଚାମୁଗକୁ ନିଜେ ଲୋକଙ୍କ ଦ୍ୱାରା ବାଛି ସଫା କରନ୍ତି ଓ ମୁଗ ଭାଙ୍ଗି ଚୋପା କାଢ଼ି ସଫା କରି କୋଠଭୋଗ ଥାଳି ଓ ତୁଣ ସୁଆରଙ୍କୁ ଦେଇ ନିଜେ କିଛି ଚାଉଳ ଓ ମୁଗ ପ୍ରାପ୍ୟ ରୂପେ ପାଆନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୭୦) ।

**ଚାଉଳବଡୁ**-*ଦେ.ବି.*- ଶ୍ରୀମନ୍ଦିର ରୋଷ ଶାଳାରେ ରୋଷ ଚାଉଳ ସଫା କରିବା ସେବକ ବିଶେଷ ।
(କ୍ଷେ.ସ.) ।

**ଚାଉଳ ମେଲାଣ**-*ଦେ.ବି.*- ଶ୍ରୀମନ୍ଦିରରେ ନବାନ୍ନ ଦିନ ସନ୍ଧ୍ୟା ଆଳତି ପରେ ସିଂହଦ୍ୱାର ଚକଡ଼ା ଉପରେ ଚାଉଳ ମେଲାଣ ପାଇଁ ପାହାଡ଼ା ପଡ଼େ । ଧାନଘରଠାରୁ ଏଠାରେ ଚାଉଳ ବିଜେ ହୁଅନ୍ତି । ଏହାକୁ ଚାଉଳ ମେଲାଣ କହନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦) ।

**ଚାଚେରୀ**-*ଦେ.ବି.*- ଦୋଳପୂର୍ଣ୍ଣିମାର ପୂର୍ବଦିନ ଅବିର, ପିଚକାରୀ ଓ ମୁଦିରସ୍ତଙ୍କ ଝିମିରି ଫଗୁ ୩ ବାଡ଼ରେ ଲାଗି ହୋଇ କରତାଳି ଧ୍ୱନିରେ ହୋଲି ଉତ୍ସବ ପାଳିତ ହୁଏ । ଏହା ବସନ୍ତୋତ୍ସବ ନାମରେ ପରିଚିତ । ଏହାକୁ ଚାଚେରୀ ଖେଳ କହନ୍ତି । ଶ୍ରୀଜୀଉଙ୍କର ଆଜ୍ଞାମାଳ ପରେ ବିମାନରେ ଚଳନ୍ତି ପ୍ରତିମା ଦୋଳଗୋବିନ୍ଦଙ୍କୁ ଧରି ଏହି ଖେଳ ହୋଇଥାଏ ।
(ପୂ.ଓ.ଭା. - ପୃ. ୨୬୦୩, ଶ୍ରୀ.ସ୍ୱ. ୨ୟ - ପୃ. ୧୧୧) ।

**ଚାଚେରୀ ବେଶ**- ଶ୍ରୀମନ୍ଦିରରେ ଫଗୁଣ ମାସର ଶୁକ୍ଳ ଦଶମୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ରତ୍ନସିଂହାସନସ୍ଥିତ ଶ୍ରୀବିଗ୍ରହମାନଙ୍କର ଚାଚେରୀ ବେଶ ଅନୁଷ୍ଠିତ ହୁଏ । ଦ୍ୱିପ୍ରହର ଧୂପପରେ ଏହି ବେଶ କରାଯାଏ । ବେଶରେ ବିଗ୍ରହମାନେ ଲାଲବର୍ଣ୍ଣର ବସ୍ତ୍ର ପିନ୍ଧନ୍ତି । ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ଭୁଜଦ୍ୱୟରେ ଯୁକ୍ତହୁଏ ସୁନାର ନଳିଭୁଜ । ଜଗନ୍ନାଥଙ୍କ ନଳିଭୁଜରେ ଶଙ୍ଖଚକ୍ର ଓ ବଳଭଦ୍ରଙ୍କ ନଳିଭୁଜରେ ହଳମୂଷଳ ଖୋଦିତ ହୋଇଥାଏ ।

ଚାଚେରୀ ବେଶରେ ପିନ୍ଧିଥିବା ଅଳଙ୍କାରମାନ ହେଲା- ଗିଳିମାଳି ତାବିଜମାଳି, କୁଣ୍ଡଳ (ମୁଖର ଦୁଇ ପାର୍ଶ୍ୱରେ) ମସ୍ତକ ଶୀର୍ଷରେ (ଚନ୍ଦ୍ରିକା), ଅଣ୍ଟାରେ ଅଣ୍ଟାପୋଟି ଓ ଓଡ଼ିଆଣି । ଏହି ବେଶରେ ସୁଭଦ୍ରା ଚନ୍ଦ୍ରସୂର୍ଯ୍ୟ ଓ ତଡ଼ଗି ଲାଗି ହୁଅନ୍ତି । ଚାଚେରୀ ବେଶ ସନ୍ଧ୍ୟାଧୂପ ପରେ ଓହ୍ଲାଇ ଦିଆଯାଏ ।

ଚାଚେରୀବେଶ ସମୟରେ ଫଗୁଖେଳ ଓ ଚାଚେରୀ ଭୋଗ ହୁଏ । ଶ୍ରୀଜୀଉମାନଙ୍କର ଚାଚେରୀ ବେଶ ପରେ ଚଳନ୍ତି ପ୍ରତିମା

ଦୋଳଗୋବିନ୍ଦ ଭୂଦେବୀ, ଶ୍ରୀଦେବୀ ବେହେରଣ ଦ୍ୱାର ପାଖରେ (ଦକ୍ଷିଣ ପଟଦ୍ୱାର) ନାଲିବସ୍ତ୍ର ପିନ୍ଧନ୍ତି ଓ ବେଶ ହୁଅନ୍ତି । ବାହାର ଭୋଗ ପରେ ବିଜେ ପ୍ରତିମାମାନଙ୍କୁ ରତ୍ନସିଂହାସନକୁ ଅଣାଯାଏ । ସେଠାରେ ଖଇକୋରା ଭୋଗ କରାଯାଏ । ଏହାପରେ ମହାପ୍ରଭୁଙ୍କ ବାଡ଼ରେ ସିନ୍ଦୂର, ଚନ୍ଦନ, ଫଗୁ, ଝିମିରି ଫଗୁ, ପ୍ରସାଦ ଲାଗି ଓ ବନ୍ଦାପନା ହୋଇ ଆଉ ଗୋଟିଏ କର୍ପୂର ଆଳତୀ ହୋଇଥାଏ । ତତ୍‌ପରେ ଚଳନ୍ତି ପ୍ରତିମାମାନେ ଆଜ୍ଞାମାଳ ପାଇ ରତ୍ନସିଂହାସନରୁ ଓହ୍ଲାଇ ଜୟବିଜୟ ଦ୍ୱାରକୁ ଗମନ କରନ୍ତି । ସେଠାରୁ ଫଗୁଖେଳ ଓ ବନ୍ଦାପନା ପରେ କର୍ପୂର ଆଳତୀ କରାଯାଏ । ସେଠାରେ ଚଳନ୍ତି ପ୍ରତିମାମାନେ ବିମାନରେ ବିଜେ କରି ଜଗନ୍ନାଥବଲ୍ଲଭ ମଠକୁ ଗମନ କରନ୍ତି । ଜଗନ୍ନାଥ ବଲ୍ଲଭରେ ଭୋଗ ଓ ଜଉଡ଼ାବ ବଢ଼ିବା ପରେ ବାହୁଡ଼ା ବିଜେ କରିଆସନ୍ତି । ଏଥିରେ ଫଗୁ ରଖାଯାଇ ସଂସ୍କାର ପରେ ମୁଦିରଥ ତିନିବାଡ଼କୁ ଛାଟନ୍ତି । ଡାବ ଫାଟି ଶ୍ରୀଅଙ୍ଗ ଫଗୁରେ ରଞ୍ଜିତ ହୁଏ । ମନ୍ଦିରରେ ରୁନ୍ଧା ଖୋଲାଯିବା ପରେ ଲକ୍ଷ୍ମୀ ସରସ୍ୱତୀ ଶ୍ରୀମନ୍ଦିରକୁ ଦୋଳଗୋବିନ୍ଦ ଦକ୍ଷିଣ ଘରକୁ ବିଜେ କରନ୍ତି । ଚାଚେରୀ ଭୋଗ ମଧ୍ୟରେ ସାନ ଆରିସା, ବଡ଼ ଆରିସା, ଧଉଳା ଘିନାଡ଼ି, ମରିଚିନଡ୍ଡୁ, ଖୁରୀ ଇତ୍ୟାଦି ପ୍ରଧାନ ଅଟେ । ଚାଚେରୀ ଭୋଗ ଓ ଚାଚେରୀ ଭ୍ରମଣ ଏହା ବହିରାଗତ ଦେବତାମାନଙ୍କ ଉଦ୍ଦେଶ୍ୟରେ ସର୍ବତ୍ର କରାଯାଉଥିବା ବେଳେ ଜଗନ୍ନାଥଙ୍କର ଚାଚେରୀ ଭୋଗ ଓ ଚାଚେରୀ ବେଶ କରାଯାଏ । ଜଗନ୍ନାଥଙ୍କର ପ୍ରତିନିଧି ଭାବେ ଦୋଳଗୋବିନ୍ଦ ଓ ରାଧାଙ୍କ ପରିବର୍ତ୍ତେ ଲକ୍ଷ୍ମୀ ସରସ୍ୱତୀ ଚାଚେରୀ ଭ୍ରମଣରେ ଭାଗ ନିଅନ୍ତି । ସର୍ବତ୍ର ଶ୍ରୀରାଧାଙ୍କର ଓ ଶ୍ରୀକୃଷ୍ଣଙ୍କର ଚାଚେରୀ ବୁଲାପାଳିତ ହେଉଥିବା ବେଳେ ଶ୍ରୀକ୍ଷେତ୍ରରେ ଶ୍ରୀଦୋଳ ଗୋବିନ୍ଦ ଓ ଶ୍ରୀଦେବୀ, ଭୂଦେବୀଙ୍କର ଚାଚେରୀ ଯାତ୍ରା ଓ ଭୋଗ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ଏହା ଶ୍ରୀମନ୍ଦିରର ମାହାତ୍ମ୍ୟ ଓ ଶ୍ରୀକ୍ଷେତ୍ରର ପ୍ରାଧାନ୍ୟକୁ ପୃଥକ୍ ଭାବେ ଦର୍ଶାଇଛନ୍ତି । (ଶ୍ରୀଜ.ବେ.ର.- ପୃ. ୧୧୫) ।

**ଚାଚେରୀ ଭୋଗ**-*ଶ୍ରୀ.ବି.*- ଶ୍ରୀମନ୍ଦିରରେ ଦୋଳ ସମୟରେ ଚାଚେରୀ ବେଶରେ ଠାକୁରଙ୍କୁ ଅର୍ପଣ କରାଯାଉଥିବା ଭୋଗ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୧) ।

**ଚାଙ୍ଗଡ଼ା**-*ଦେ.ବି.*- ଡାଲା ବା ଚାଙ୍ଗୁଡ଼ି । ଶ୍ରୀମନ୍ଦିରରେ ଅବକାଶ ସମୟରେ ବିଗ୍ରହମାନଙ୍କ ପରିଧେୟ ବା ବସ୍ତ୍ର ରଖାଯିବା ଚାଟ । ଏଥିରେ ପୂଜା ଉପକରଣର ସମସ୍ତ ଦ୍ରବ୍ୟ ସହିତ ହେବାର ବିଧି ଅଛି । (ପୂ.ଓ.ଭା. - ପୃ. ୨୬୦୨) ।

**ଚାଙ୍ଗଡ଼ାକରଣ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ପାଖରେ ବ୍ୟବହୃତ ହେଉଥିବା ଶାଢ଼ିମାନଙ୍କର ହିସାବ ରଖନ୍ତି, ଏହା ବ୍ୟତୀତ ଧୋବାଘରକୁ ଦିଆଯାଇଥିବା ଠାକୁରଙ୍କ ଲୁଗାର ହିସାବ ରଖନ୍ତି । ଭଣ୍ଡାରଘର ଓ ଚାଙ୍ଗଡ଼ାଘରର ଦୈନିକ ଜମାଖର୍ଚ୍ଚ ଲେଖନ୍ତି । ସେବକମାନଙ୍କ ଶାଢ଼ୀବନ୍ଧା ପାଇଁ ଏହାଙ୍କ ଓ ଦେଉଳକରଣଙ୍କ ମୁକାବିଲାରେ ଚାଙ୍ଗଡ଼ା ଘରୁ ଶାଢ଼ୀ ଦିଆଯାଏ । କେହି ଯାତ୍ରୀ ନୀଳଚକ୍ରରେ ଧ୍ୱଜା ବନ୍ଧାଇବାକୁ ଆସିଲେ ତାହାଠାରୁ ନିର୍ଦ୍ଧାରିତ ଅର୍ଥ ରଖି ମନ୍ଦିର ପାଉଣା ଦେଉଳକରଣଙ୍କ ଦସ୍ତଖତରେ ଧ୍ୱଜା ଆଣି ଚୂନରା ଦ୍ୱାରା ବନ୍ଧାଇ ଦିଅନ୍ତି । (ଶ୍ରୀ.ସ୍ୱ. - ପୃ. ୧୦୨/୧୦୩) ।

**ଚାଙ୍ଗଡ଼ା ଘର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ମଧ୍ୟସ୍ଥ ଏକ ଗୃହ । ଠାକୁରଙ୍କ ଲୁଗା ଓ ପୋଷାକ ଭଣ୍ଡାର ଘରୁ ଅଣାହୋଇ ଏହି ଘରେ ସାଇତା ହୁଏ । ଏହା ଚାଙ୍ଗଡ଼ା ମେକାପଙ୍କ ଜିମାରେ ଥାଏ । ଏହି ଘରେ ବସ୍ତ୍ର ଅଳଙ୍କାରାଦି ରଖାଯାଇଥିବାରୁ ଏହାକୁ ଗନ୍ତାଘର କହନ୍ତି । (ପୂ.ଓ.ଭା. - ପୃ. ୨୬୦୨, ଶ୍ରୀ.ସ୍ୱ. ୨ୟ - ପୃ. ୨୧୧) ।

**ଚାଙ୍ଗଡ଼ା ମେକାପ ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ସକାଳ ମଙ୍ଗଳ ଆରତିଠାରୁ ବଡ଼ସିଂହାର ବେଶ

ପର୍ଯ୍ୟନ୍ତ ଏହାଙ୍କର ସେବା ରହିଥାଏ । ପ୍ରତ୍ୟେକ ମଙ୍ଗଳମରେ ଚାଙ୍ଗଡ଼ାଘରୁ ଲୁଗା ଆଣି ପଶୁପାଳକଙ୍କୁ ଦେବା ଓ ଉଲାଗି ଲୁଗା ଧୋଇବା ପାଇଁ ଦିଅନ୍ତି ଓ ପାଟପତନି ମହାସେଠିକୁ ଦିଅନ୍ତି । ରାଜାଙ୍କୁ ଗଦି ପ୍ରସାଦ ତାଟ ଦିଅନ୍ତି । ପୂଜା ଅନୁଯାୟୀ ଶ୍ରୀବିଗ୍ରହଙ୍କ ପାଇଁ ଏହି ସେବକ ଚାଙ୍ଗଡ଼ା ଘରୁ ସୂତା ଶାଢ଼ୀ ଓ ପାଟଶାଢ଼ୀ ଦେଇଥାନ୍ତି । ଚାମର ସେବା ମଧ୍ୟ କରନ୍ତି ଓ ହାତପୋଛା ପାଇଁ ଖଦୀ ଯୋଗାନ୍ତି । ସୁଆରବଡୁ ସେବାରେ ଚକା ଅପସର ସେବା କରନ୍ତି । ସ୍ନାନପୂର୍ଣ୍ଣିମା, ଗୁଣ୍ଡିଚା ଓ ବାହୁଡ଼ାରେ ଚକା ଅପସର ନେଇ ଠାକୁରଙ୍କ ବିଜେ ସ୍ଥାନରେ ରଖନ୍ତି । (ଶ୍ରୀ.ସ୍ୱ. ୧ମ - ପୃ. ୧୩୨) ।

**ଚାଟିଭାତ**-*ଦେ. ବି.*- ଶ୍ରୀମନ୍ଦିର ଠାକୁରଙ୍କର ଅନ୍ନଭୋଗ ବିଶେଷ । ସରା ମଧ୍ୟରେ ସମାନ ଅନ୍ନ ରଖାଯାଇଥିବା ଭୋଗ । (ଶ୍ରୀ.ଶ. - ପୃ. ୬୫) ।

**ଚାଣ୍ଡାଳ**-*ଦେ. ବି.*- ନିଷାଦ, ଚଣ୍ଡାଳ, ହାଡ଼ି । ମହାଶ୍ମଶାନ ବା ସ୍ୱର୍ଗଦ୍ୱାରରେ ଶବ ସଂସ୍କାର କାର୍ଯ୍ୟ ତଦାରଖ ପାଇଁ ନିଯୁକ୍ତ ବ୍ୟକ୍ତି ଚାଣ୍ଡାଳ ନାମରେ ପରିଚିତ । ଗଜପତିମହାରାଜ ରଥଯାତ୍ରା ସମୟରେ ଠାକୁରଙ୍କର ରଥରେ ଛେରାପହଁରା କରନ୍ତି । ପହଁରା କରିବା ସାଧାରଣତଃ ଏକ ନୀଚ କାର୍ଯ୍ୟ । ଏଣୁ ଏ ଛେରାପହଁରା କାର୍ଯ୍ୟକୁ ଚାଣ୍ଡାଳ କାର୍ଯ୍ୟ କୁହାଯାଏ । (ପୂ.ଓ.ଭା. - ପୃ. ୨୬୦୭, ଓ.ସାଂ.ଶ.- ପୃ. ୧୨୫) ।

**ଚାତୁର୍ମାସ୍ୟା ବ୍ରତ**-*ଦେ. ବି.*- ହରିଶୟନ କରିଥିବା ଚାରିମାସ ଆଷାଢ଼ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ କିମ୍ବା କର୍କଟ ସଂକ୍ରାନ୍ତିଠାରୁ ବିଛା ସଂକ୍ରାନ୍ତି ପର୍ଯ୍ୟନ୍ତ ଏହି ବ୍ରତ ପାଳନ କରାଯାଏ । ଏହି ସମୟରେ ତ୍ରିସନ୍ଧ୍ୟାରେ କୃଷ୍ଣ, ହରି, ନୃସିଂହ, କେଶବଙ୍କ ନାମ ଜପ, ନିର୍ମାଲ୍ୟ ଭୋଜନ, ବ୍ରାହ୍ମଣଙ୍କୁ ଅନ୍ନଦାନ ଓ ଶ୍ରୀକ୍ଷେତ୍ରରେ ପଞ୍ଚତୀର୍ଥରେ ସ୍ନାନ ଦ୍ୱାରା ଭଗବାନ ଶ୍ରୀକୃଷ୍ଣ ପ୍ରୀତ ହୋଇଥାଆନ୍ତି ବୋଲି ସ୍କନ୍ଦ ପୁରାଣରେ ବର୍ଣ୍ଣିତ । (କ୍ଷେ.ସ.) ।

**ଚାପ**-*ଦେ. ବି.*- ରାଜା ବା ଦେବତାଙ୍କ ଯାତ୍ରା ଉପଲକ୍ଷେ ସଜ୍ଜିତ ନୌକା । ଶ୍ରୀମନ୍ଦିର ଠାକୁରଙ୍କ ନରେନ୍ଦ୍ର ପୁଷ୍କରିଣୀରେ ଜଳକ୍ରୀଡ଼ା ନିମନ୍ତେ ସୁସଜ୍ଜିତ ବ୍ୟବହୃତ ନୌକା ବିଶେଷ । (ଶ୍ରୀ.ସ୍ୱ. ୨ୟ ଭାଗ - ପୃ. ୧୧୫) ।

**ଚାପଗୀତ**-*ଦେ. ବି.*- ଚନ୍ଦନ ଚାପ ଉପରେ ଦେବଦାସୀ ମାନଙ୍କର ସମବେତ ସଙ୍ଗୀତ ଚାପଗୀତ ନାମରେ କଥିତ ।

**ଚାପଦଳେଇ**-*ଦେ. ବି.*- ଏହି ସେବକ ବିଭିନ୍ନ ଘାଟ ଜଗୁଥିଲେ । ଏତଦ୍‌ବ୍ୟତୀତ ଚନ୍ଦନ ଏକୋଇଶି ଦିନରେ ମଦନମୋହନ ଓ ରାମକୃଷ୍ଣଙ୍କ ଦୁଇ ଚାପରେ ଚାରି ନୌକା ବାହାନ୍ତି । (ଶ୍ରୀ.ସ୍ୱ. - ପୃ. ୭୮) ।

**ଚାପ ବେହେରା ସେବା**-*ଦେ. ବି.*- ଚନ୍ଦନଯାତ୍ରା ସମୟରେ କାର୍ଯ୍ୟବାହୀ ସେବକ । ଚନ୍ଦନ ଏକୋଇଶି ଦିନ ଠାକୁରଙ୍କ ଚାପ ଆଗେ ଆଗେ ବଜନ୍ତୀ ଡଙ୍ଗା ବାହି ନିଅନ୍ତି । ଠାକୁରଙ୍କ କାଳୀୟଦଳନ ପର୍ବନୀତି ବେଳେ ମାର୍କଣ୍ଡ ପୁଷ୍କରିଣୀରେ ଡଙ୍ଗା ବାହନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୭୪/୭୫) ।

**ଚାପସରି**-*ଦେ. ବି.*- ଶ୍ରୀମନ୍ଦିର ଠାକୁରଙ୍କ କଣ୍ଠର ସୁବର୍ଣ୍ଣ ଅଳଙ୍କାର ବିଶେଷ । (ପୂ.ଓ.ଭା. - ପୃ. ୨୬୧୫) ।

**ଚାର**-*ଦେ. ବି.*- ତାଳ କିମ୍ବା ନଡ଼ିଆ ଗଛର ଗଣ୍ଡିରେ ତିଆରି ଘୋଷରା ପାହାଚ । ଦେଉଳ ବା କୋଠାର ଛାତ ଓ ରଥ ଆଦି ଉଚ୍ଚ ସ୍ଥାନକୁ କାଠ ପଥର ଇତ୍ୟାଦି ଉଠାଇବା ପାଇଁ ପ୍ରସ୍ତୁତ ପାହାଡ଼ିଆ ସିଡି । ଶ୍ରୀମନ୍ଦିରରେ ରତ୍ନବେଦିରୁ ତଳକୁ ଆସିବା ଓ ଚଢ଼ିବା କାଳରେ (ଗୁଣ୍ଡିଚା ଓ ସ୍ନାନପୂର୍ଣ୍ଣିମା) ରଥକୁ ଚଢ଼ିବା ଓ ଓହ୍ଲାଇବା ସମୟରେ, ଜନ୍ମବେଦୀକୁ ଆରୋହଣ ଓ ଅବରୋହଣ କାଳରେ ଏହି ଚାରମାଳର ବ୍ୟବହାର ହୋଇଥାଏ । ରଥର ଚକ ସଂଖ୍ୟା ଅନୁସାରେ ଚାରମାଳର ଓସାର ନିର୍ଦ୍ଧାରିତ ହୋଇଥାଏ । (ପୂ.ଓ.ଭା. - ପୃ. ୨୬୧୯, କ୍ଷେ.ସ.) ।

**ଚାରଗଣେଶ**-*ଦେ.ବି.*- ନରେନ୍ଦ୍ର ପୁଷ୍କରିଣୀ କୋଣରେ ଗୁରୁଜ ଜାଗା ପରିସରରେ ଥିବା ଏକ ଗଣେଶ ମୂର୍ତ୍ତି । ଶ୍ରୀମନ୍ଦିର ନିର୍ମାଣ ସମୟରେ ଏହାଙ୍କ ନିକଟରୁ ଚାର ବନ୍ଧାଯିବା କଥା ବିଶ୍ୱାସ କରାଯାଏ ।
(ପୁ.ବୋ.- ପୃ.୧୯୧, ଶ୍ରୀ.ଶ.- ପୃ. ୬୬) ।

**ଚାରମାଳ**-*ଦେ.ବି.*- ଘୋଷରା ତାଳଗଡ଼ର ପାହାଚ ତଳେ ବନ୍ଧା ଯାଉଥିବା ଚାରିଗୋଟି ଦୃଢ଼ କାଠଗଡ଼କୁ ମାଳ କୁହାଯାଏ । ମାଳ ଓ ଚାରକୁ ମିଶାଇ ଚାରମାଳ ବୋଲାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୦/୭୧) ।

**ଚାରି ଆଶ୍ରମ**-*ଦେ.ବି.*- ଶ୍ରୀକ୍ଷେତ୍ରର ବାଲିସାହିସ୍ଥ- ଭୃଗୁ ଆଶ୍ରମ, ଗୌଡ଼ବାଡ଼ ସାହିସ୍ଥ - କଣ୍ଡୁ ଆଶ୍ରମ, ମାର୍କଣ୍ଡେଶ୍ୱର ସାହିସ୍ଥ - ମାର୍କଣ୍ଡ ଆଶ୍ରମ, ଦୋଳମଣ୍ଡପ ସାହିସ୍ଥ - ଅଙ୍ଗିରା ଆଶ୍ରମ, ଚାରିଆଶ୍ରମ ରୂପେ ଖ୍ୟାତ । କେତେକ ପର୍ବନୀତି ବେଳେ ଏଠାକୁ ଠାକୁରଙ୍କ ବିଜେ ପ୍ରତିମା ତଥା ସୁଦର୍ଶନ ଓ ନୃସିଂହ ବିଜେ କରନ୍ତି ।
(ଶ୍ରୀ.ସ୍ୱ.- ପୃ. ୨/୮୫) ।

**ଚାରିଦ୍ୱାର**-*ଦେ.ବି.*- ଶ୍ରୀମନ୍ଦିରର ଚାରିଦ୍ୱାର ଯଥା- ପୂର୍ବଦ୍ୱାର- ସିଂହଦ୍ୱାର, ପଶ୍ଚିମଦ୍ୱାର- ବ୍ୟାଘ୍ର ଦ୍ୱାର, ଦକ୍ଷିଣ ଦ୍ୱାର- ଅଶ୍ୱ ଦ୍ୱାର, ଉତ୍ତର ଦ୍ୱାର- ହସ୍ତୀଦ୍ୱାର । କେହି କେହି ତତ୍ତ୍ୱାନୁସନ୍ଧିତ୍ସୁ ପୂର୍ବଦ୍ୱାରକୁ- ଧର୍ମଦ୍ୱାର, ପଶ୍ଚିମଦ୍ୱାରକୁ- କାମ ଦ୍ୱାର, ଉତ୍ତର ଦ୍ୱାରକୁ- ମୋକ୍ଷ ଦ୍ୱାର ଓ ଦକ୍ଷିଣ ଦ୍ୱାରକୁ- ଅର୍ଥ ଦ୍ୱାର କହିଥାଆନ୍ତି ।
(ଓ.ସାଂ.ଶ.- ପୃ.୧୨୭) ।

**ଚାରିମଠ**-*ଦେ.ବି.*- ନନ୍ଦମଠ, ସ୍ୱରୂପମଠ, ଚୈତନ୍ୟମଠ ଓ ପ୍ରକାଶ ମଠକୁ ନେଇ ଚାରିମଠ କୁହାଯାଏ ।
(ଓ.ସାଂ.ଶ. - ପୃ. ୧୨୭) ।

**ଚାମରସେବା**-*ଦେ.ବି.*- ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ଏହି ସେବା ବ୍ୟକ୍ତିଗତ ସେବା ମଧ୍ୟରେ ଅନ୍ତର୍ଭୁକ୍ତ । ବ୍ୟକ୍ତିଗତ ସେବାରେ ଯେଉଁ ତେୟାଅଶି ଜଣ ବ୍ୟକ୍ତିଗତ ତଥା ଆନୁଷ୍ଠାନିକ ସେବା ରହିଛି, ପ୍ରାୟ ଅଧିକାଂଶ ସେମାନଙ୍କ ମଧ୍ୟରୁ ଚାମର ସେବା କରିଥାନ୍ତି । ଚମରୀ ଗାଈ ଲାଞ୍ଜରେ ନିର୍ମିତ ଚାମରରେ ଜୀଉଙ୍କ ପାଖରେ ଚାମର ସେବା କରାଯାଏ । ଓଢ଼ଣ ଷଷ୍ଠୀ ଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ଚାମର ସେବା ହୁଏ ନାହିଁ । ଏତଦ୍‌ବ୍ୟତୀତ ବର୍ଷସାରା ଶ୍ରୀଜୀଉଙ୍କ ଧୂପ ସମୟରେ ଓ ଅନ୍ୟ ଉପଯୁକ୍ତ ସମୟରେ ଚାମର ସେବା କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୬, ଶ୍ରୀ.ଜି. - ପୃ. ୬୭) ।

**ଚାହାଣି ମଣ୍ଡପ**-*ଦେ.ବି.*- ଏହା ଶ୍ରୀମନ୍ଦିର ବେଢ଼ା ଆନନ୍ଦବଜାରସ୍ଥିତ ଏକ ମଣ୍ଡପ । ବାହୁଡ଼ାଦିନ ଲକ୍ଷ୍ମୀ ଏଠାରେ ଉପସ୍ଥିତ ହୋଇ ଜଗନ୍ନାଥଙ୍କ ରଥକୁ ଚାହିଁ ଓ ତାହାପରେ ନଅର ଦ୍ୱାରକୁ ଲକ୍ଷ୍ମୀ ନାରାୟଣ ଭେଟ ନିମନ୍ତେ ବିଜେ କରନ୍ତି । ଏହା ରଥ ପ୍ରତିଷ୍ଠା ମଣ୍ଡପ । ରଥଯାତ୍ରା ଦିନ ଦେଉଳ ପୁରୋହିତଙ୍କ ଦ୍ୱାରା ଏଠାରେ ରଥ ପ୍ରତିଷ୍ଠା ହୋମ ହୁଏ ।
(ପୂ.ଓ.ଭା. - ପୃ.୨୬୩୩, ଓ.ସାଂ.ଶ.- ପୃ. ୧୨୮, ଶ୍ରୀ.ସ୍ୱ. ୨ୟ - ପୃ. ୭୯) ।

**ଚିକ୍‌କଣ**-*ଦେ.ବି.*- କ୍ଷୀରା, ରସାବଳୀ ।
(ପୁ.ବୋ.- ପୃ. ୪୩) ।

**ଚିଟା**-*ଦେ.ବି.*- ପୁରୀ ଯାତ୍ରୀ ଗୁମାସ୍ତାଙ୍କ ଦୈନିକ ପାଉଣା । ଏହା ପ୍ରାଚୀନତମ ଚଳଣି ।
(ଶ୍ରୀ.ଶ.- ପୃ. ୬୬, ପୂ.ଓ.ଭା. - ପୃ. ୨୬୪୧, ପ୍ର.ଅ. ୧ମ - ପୃ. ୮୭୫) ।

**ଚିତ୍ରକାର**-*ଦେ.ବି.*- ଶ୍ରୀମନ୍ଦିରରେ ଏମାନେ ରଙ୍ଗକାର, ଚିତ୍ରକାର ଶାଢ଼ୀ ବନ୍ଧା ଶୂଦ୍ର ସେବକ । ଅକ୍ଷିତୃତୀୟା ଓ ଭଉଁରୀ ଦିନ ଏମାନେ ବଢ଼େଇମାନଙ୍କ ସହ ଶାଢ଼ୀ ପାଆନ୍ତି । ଏମାନେ ବାହାର ବନକ ସେବକ, ରୁକ୍ମିଣୀ ହରଣ ପାଇଁ ବେଦୀ, ମାଜଣା ମଣ୍ଡପ, ସ୍ନାନପୂର୍ଣ୍ଣିମା ପାଇଁ ସ୍ନାନମଣ୍ଡପ, ଝୁଲଣ ପାଇଁ ଝୁଲଣ ମଣ୍ଡପ, ଷୋଳପୂଜା ପାଇଁ ବିମଳା ମନ୍ଦିର, ଚନ୍ଦନ ପାଇଁ ଚନ୍ଦନ ମଣ୍ଡପ, ଜଗତି ଆଦି ଚିତ୍ର କରନ୍ତି । ଅଣସର ପଟି, ପତିତପାବନ ପଟି ଏମାନଙ୍କ ଘରୁ ଘଣ୍ଟ, ଛତା, କାହାଳି ପଟୁଆରରେ ଆସେ ।

ଜନ୍ମାଷ୍ଟମୀରେ କୃଷ୍ଣପଟି, କଂସ ପାହାଡ଼ି, ବାମନଜନ୍ମରେ ବାମନ ପଟି, ଦୟଣାଚୋରିରେ କନ୍ଦର୍ପ ପଟି ଆଦି ଚିତ୍ର କରନ୍ତି ।

ଏମାନେ ବିଭିନ୍ନ ଶ୍ରେଣୀରେ ବିଭକ୍ତ । ୧. ରୂପକାର ନିଯୋଗ, ୨. ଚିତ୍ରକାର ମହାରଣା, ୩. ପଟି ଚିତ୍ରକାର, ୪. ବିଶ୍ୱାବସୁ କୁଳ ନାୟକ, ୫. ସୁଦୁ ସୁଆର ନିଯୋଗ । ଚିତ୍ରକାର ମହାରଣା ରଥତ୍ରୟର ଚିତ୍ରାଙ୍କନ କରିଥାଆନ୍ତି । ରଥର ବିଭିନ୍ନ ସ୍ଥାନରେ ଚିତ୍ରାଙ୍କନ ପାଇଁ ଏମାନଙ୍କୁ ମୁଖ୍ୟତଃ ଅଭିଜ୍ଞ, ମଧ୍ୟମ ଓ ନୂତନ କ୍ରମରେ ତିନିଶ୍ରେଣୀରେ ବିଭକ୍ତ କରାଯାଇଛି । ଏମାନେ ଚିତ୍ରାଙ୍କନ ପାଇଁ ହିଙ୍ଗୁଳ, ଗେରୁ, ହରିତାଳ, ଶଙ୍ଖ, ଷଢ଼େଇକଳା, ତୁତିଆ, ଆଦି ଉପାଦାନ ଉପକରଣ ବ୍ୟବହାର କରିଥାନ୍ତି । ସେମାନେ ପୁରୀର ମୁଖ୍ୟ ସାହି ମଧରୁ ହରଚଣ୍ଡୀ ସାହିରେ ବାସ କରୁଥିବା ଚିତ୍ରକାରମାନେ ବଳଭଦ୍ରଙ୍କ ତାଳଧ୍ୱଜ ରଥ, ଦୋଳମଣ୍ଡପ ସାହିରେ ବାସ କରୁଥିବା ଚିତ୍ରକାରମାନେ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଓ ବାଲିସାହିରେ ବାସ କରୁଥିବା ଚିତ୍ରକାରମାନେ ଦେବୀ ସୁଭଦ୍ରା ଦେବଦଳନ ରଥର ସମସ୍ତ କାର୍ଯ୍ୟ କରିଥାନ୍ତି ।

(ଶ୍ରୀ.ସ୍ୱ. - ପୃ. ୩୭, ଶ୍ରୀ.ଜି. - ପୃ. ୩୪୭) ।

**ଚିତଉ**-*ଦେ.ବି.*- ଚାଉଳ ଚୂନା ଓ ନଡ଼ିଆ ମିଶ୍ରିତ ପ୍ରସ୍ତୁତ ପିଠା । ଚାଉଳକୁ ବାଟି ପିଠଉ କରି ସେହି ପିଠଉକୁ ନିଆଁ ଉପରେ ପଲମ ବା ତେଲୁଣି ଢାଳି ତା' ଉପରେ ଗୋଟିଏ ସରା ଘୋଡ଼ାଇ ଦିଆଯାଏ ଏବଂ ସରା ଉପରେ ପାଣି ଛିଞ୍ଚାଯାଇ ସରା ଚାରିପଟରେ ଓଦାକନା ଦିଆଯାଏ । ଏହି ପିଠା ବାଷ୍ପ ଦ୍ୱାରା ସିଦ୍ଧ ହୁଏ । ଏହାର ଦେହଯାକ ଛିଦ୍ର ହୋଇଥାଏ ଓ ଉପର ପାଖ ଫୁଲିଥାଏ ।

(ପୂ.ଓ.ଭା. - ପୃ. ୨୬୪୫, ପ୍ର.ଅ. ୧ମ - ପୃ. ୮୭୬, ଶ୍ରୀ.ଚେ.ଦୀ. - ପୃ. ୨୬୦) ।

**ଚିତା**-*ଦେ.ବି.*- କପାଳ ଓ ଦେହର ବିଭିନ୍ନ ଅଂଶରେ ଅଙ୍କନ କରାଯାଇଥିବା ତିଳକ ଓ ଚନ୍ଦନର ନାନା ପ୍ରକାର ଚିହ୍ନ । ଶ୍ରୀମସ୍ତକରେ କପାଳର ଚିତା ସ୍ଥାନରେ ଲାଗି ହେଉଥିବା ଅଳଙ୍କାର । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ନିମନ୍ତେ ଯଥାକ୍ରମେ ହୀରା, ନୀଳା ଓ ମାଣିକ୍ୟ ଚିତା ରହିଛି । ସ୍ନାନପୂର୍ଣ୍ଣିମା ପୂର୍ବରୁ ଏଗୁଡ଼ିକ କାଢ଼ି ନିଆଯାଇ ରଥରେ ସୁନା ଓ ପଥର ବସା ସୋଲ ଚିତା ଲାଗି ହୁଏ ।

(ଓ.ସାଂ.ଶ. - ପୃ. ୧୨୮) ।

**ଚିତାଲାଗି ଅମାବାସ୍ୟା**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରାବଣ ମାସର ଅମାବାସ୍ୟା । ଏହି ଦିନ ବଳଭଦ୍ରଙ୍କର ନୀଳଚିତା, ସୁଭଦ୍ରାଙ୍କର ନାଲିଚିତା ଓ ଶ୍ରୀଜଗନ୍ନାଥଙ୍କର ଧଳା (ହୀରା) ଚିତା ପାଟଡୋରରେ ବନ୍ଧାହୋଇ ଚିତାଲାଗି ଅମାବାସ୍ୟା ନୀତି ପାଇଁ ଭଣ୍ଡାରଘରୁ ଆସେ । ପାଳିଆ ଖୁଣ୍ଟିଆ, ପୁଷ୍ପାଳକ, ପାଳିଆମେକାପ, ଭଣ୍ଡାର ମେକାପ, ତଢ଼ଉକରଣ, ଦେଉଳକରଣ, ପଉଦାର, ତାଟଲେଙ୍କା, ଦଇତାପତି, ସୁଦୁସୁଆର, ପାଟରା, ଚାଙ୍ଗଡ଼ା ମେକାପ, ପୂଜାପଣ୍ଡା, ପତ୍ରି, ମୁଦିରସ୍ତ ଓ ଅନ୍ୟାନ୍ୟ ସେବକମାନେ ଏହି କାର୍ଯ୍ୟରେ ନିଯୁକ୍ତ ଥାଆନ୍ତି । ବଣିଆମାନଙ୍କୁ ଡକାଇ ତାଟଲେଙ୍କା ଦ୍ୱାରା ରୋଷରୁ ନିଆଁ ଯୋଗାଇ ଚିତା ସଫା କରାଯାଏ । ସମସ୍ତ ନୀତି ପରେ ହୀରା ଚିତାମାନ ଶ୍ରୀଠାକୁରଙ୍କୁ ଲାଗିହୁଏ । ଏହିଦିନ ଶ୍ରୀଜଗନ୍ନାଥଙ୍କର ଚିତାଲାଗି ହେବା ସହ ମହାପ୍ରଭୁଙ୍କ ନିକଟରେ ଚିତଉପିଠା ଲାଗିହୁଏ । ହିନ୍ଦୁ ଗୃହସ୍ଥମାନେ ମଧ ଚିତଉ ପିଠା କରି ଦେବଦେବୀଙ୍କୁ ସମର୍ପଣ କରି ଏହି ଉତ୍ସବ ପାଳନ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୮୪-୮୫/୧୮୮, ଶ୍ରୀ.ଶ.- ପୃ. ୬୬, ପୂ.ଓ.ଭା. - ପୃ. ୨୬୪୮, ପ୍ର.ଅ. ୧ମ - ପୃ. ୮୭୬) ।

**ଚିରାଳ**-*ଦେ.ବି.*- କପଡ଼ାରେ ତିଆରି ପତାକା ।

(ଓ.ସାଂ.ଶ. - ପୃ. ୧୨୯, ପୂ.ଓ.ଭା. ୩ୟ - ପୃ. ୨୬୭୬) ।

**ଚିଲାମାରି ଆଣିବା**-*ଦେ.ବି.*- ଯାତ୍ରୀଙ୍କୁ (ଚିଲଭଳି) ଆଖି ପିଛୁଳାକେ ଆଣିବା ।

(ପୁ.ବୋ.-ପୃ. ୪୩) ।

**ଚୂଡ଼ଙ୍ଗଦେବ ତାଟ**-*ଦେ.ବି.*- ଶ୍ରୀମନ୍ଦିର ପ୍ରମୁଖ ନିର୍ମାତା ଚୋଡ଼ଗଙ୍ଗଦେବଙ୍କ ଉଦ୍ଦେଶ୍ୟରେ ଶ୍ରୀଜଗନ୍ନାଥଙ୍କୁ ଲାଗି ହେଉଥିବା ତାଟ ।
(ଶ୍ରୀ.ଶ. - ପୃ. ୬୬) ।

**ଚୂଡ଼ାମଣି**-*ଦେ.ବି.*- ମୁକୁଟର ପ୍ରଧାନ ମଣି ।
(ପୂ.ଓ.ଭା. - ପୃ. ୨୭୦୮) ।

**ଚୂତପତ୍ର**-*ଦେ.ବି.*- ଆମ୍ରପତ୍ର । ଶୁଭକର୍ମ ବେଳେ ତଥା ପୂଜାଦିରେ କଳସରେ ବ୍ୟବହୃତ ହୁଏ ।
(ଓ.ସାଂ.ଶ.- ପୃ. ୧୩୦) ।

**ଚୂନରା ସେବକ**-*ଦେ.ବି.*- ଶ୍ରୀମନ୍ଦିରରେ ଧ୍ୱଜା ବାନ୍ଧିବା ଓ ଗରୁଡ଼ଙ୍କ ସେବା କରୁଥିବା ସେବକ । ଠାକୁରଙ୍କ ଅବକାଶ ନୀତି ବଢ଼ିଲା ପରେ ବିମଳାଙ୍କ କୂଅରୁ ପାଣି ଆଣି ଗରୁଡ଼ଙ୍କୁ ସ୍ନାନ କରାନ୍ତି । ପୂର୍ବେ ମନ୍ଦିରରେ ଚୂନ ଲଗାଉଥିଲେ ବୋଲି ଚୂନରା ଭାବେ ପରିଚିତ । ଏକାଦଶୀରେ ଦେଉଳ ଶିଖରରେ ମହାଦୀପ ଉଠାଇବା, ନୀଳଚକ୍ରରେ ଧ୍ୱଜା ବାନ୍ଧିବା, ମକର ସଂକ୍ରାନ୍ତି ଦିନ ଚୂନ ଓ ଗେରୁ ଲଗାଇବା, କନକମୁଣ୍ଡି ଉପରେ, ସିଂହାସନ ଉପରେ, ଅଣସର ସମୟରେ ପନ୍ତି ଉପରେ, ଅଣସର ପିଣ୍ଡି ଉପରେ, ଦକ୍ଷିଣି ଘରେ ସ୍ନାନବେଦୀ ଓ ଗୁଣ୍ଡିଚା ଘରେ ଚାନ୍ଦୁଆ ବାନ୍ଧିବା ଓ ଦେବ ଦୀପାବଳୀରେ ତିନିଦିନ ଦେଉଳରେ ଦୀପ ଜାଳିବା ଏହାଙ୍କ କାର୍ଯ୍ୟ । ସକାଳ ଧୂପରେ ପନ୍ତିବଡୁ ଠାରୁ ଦୁଇ ଥାଳି ଖେଚେଡ଼ି ଆଣି ସର୍ପାମଣୋହି କରନ୍ତି । ମଧ୍ୟାହ୍ନ ଧୂପରେ ସାନ ଆରିଷା ଦୁଇଟି ଆଣି ଗରୁଡ଼ଙ୍କୁ ମଣୋହି କରାନ୍ତି । ଏହାକୁ ଚୂନରା ମୁଦୁଲି ସେବକ ବୋଲି କୁହାଯାଏ ।
(ପୁ.ବୋ. - ପୃ. ୧୯୨) ।

**ଚୂନାକୁଟାଘର**-*ଦେ.ବି.*- ଶ୍ରୀ ଠାକୁରଙ୍କର ମଙ୍ଗଳ ଆଳତି ଓ ଅନ୍ୟାନ୍ୟ ନୀତି ପାଇଁ ମୁରୁଜ ପ୍ରସ୍ତୁତ ନିମନ୍ତେ ବାହାରେ ଥିବା ଦୁଇ ବଖୁରିଆ ଘର । ଏଠାରେ ରାଜାଙ୍କ ତରଫରୁ ମଜୁରୀ ଦିଆଯାଇ ଚୂନା କୁଟାଯାଏ । ଗୋଦାମରୁ ଚାଉଳ ଅଣାଯାଇ ଆବଶ୍ୟକ ଅନୁପାତରେ ଏଠାରେ ଚୂନା କୁଟାଯାଏ । ପ୍ରତ୍ୟହ ମୁରୁଜ ସକାଶେ ଅଧସେର ଚୂନା ଓ ଆଳତି ସକାଶେ ଅଟାବଟା ପ୍ରସ୍ତୁତ ହୋଇ ସୁଆରବଡୁଙ୍କ ଦ୍ୱାରା ଠାକୁରଙ୍କ ପୂଜା ନୀତିରେ ଲାଗେ ।
(ଶ୍ରୀ.ସ୍ୱ. - ପୃ. ୨୬୦) ।

**ଚୂନାମୁଣ୍ଡି**-*ଦେ.ବି.*- ଚୂନାକୁଟା ପାଇଁ କ୍ଷୁଦ୍ର ମଣ୍ଡପ । ଶ୍ରୀମନ୍ଦିର ରୋଷ ପରିସରରେ ଗୋଟିଏ ଓ ଗୁଣ୍ଡିଚା ଘର ରୋଷଘରେ ଅନ୍ୟଟି ଚୂନାକୁଟା ପାଇଁ ଜାଗା ରହିଛି । ଚୂନା କୁଟିବା ଲୋକ ମୁହଁରେ ବାଘମୁହାଁ ବାନ୍ଧିଥାଏ ଓ ପାଦରେ କନା ବାନ୍ଧିଥାଏ । ଏଠାରେ ଢିଙ୍କିରେ ବଡୁରା ଚାଉଳ ମଧ କୁଟା ହୁଏ ।
(ଶ୍ରୀ.ସ୍ୱ. - ପୃ. ୭୦, ପୁ.ବୋ. - ପୃ. ୧୯୨) ।

**ଚୂନାମୁଣ୍ଡି ସମର୍ଥା**-*ଦେ.ବି.*- ଏମାନେ ଚାଉଳ ଚୂନା ଓ ଅଟା ଯୋଗାନ୍ତି ଓ ଭୋଗ ପ୍ରସ୍ତୁତ ସ୍ଥାନକୁ ମଧ ବୋହି ନିଅନ୍ତି ।
(ଶ୍ରୀ.ଶ. - ପୃ. ୬୭) ।

**ଚୂଳକେରା**-*ଦେ.ବି.*- ଶ୍ରୀ ଠାକୁରଙ୍କର ଏକ ସୁବର୍ଣ୍ଣ ଅଳଙ୍କାର ବିଶେଷ ।
(ଶ୍ରୀ.ଶ. ପୃ. ୬୭) ।

**ଚୂଳପତ୍ରୀ**-*ଦେ.ବି.*- ଠାକୁରଙ୍କର ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ. - ପୃ. ୬୭) ।

**ଚୂଳଲାଗି**-*ଦେ.ବି.*- ଜଗନ୍ନାଥଙ୍କ ମସ୍ତକରେ ଲାଗି ହେଉଥିବା ତୁଳସୀ ଦ୍ୱାରା ପ୍ରସ୍ତୁତ ଟୋପି । ବସ୍ତ୍ର ଦ୍ୱାରା ନିର୍ମିତ ଚୂଳ । ଏହା ରଥଯାତ୍ରା ବେଳେ ସେନାପଟା ଲାଗି ପରେ ଲାଗି ହୁଅନ୍ତି । ଚାଙ୍ଗଡ଼ା ଘରୁ ଏହି ଚୂଳ ଯୋଗାଇ ଦିଆଯାଇଥାଏ ।
(ଶ୍ରୀ.ଶ. - ପୃ. ୬୭) ।

**ଚୂହାଣ**-*ଦେ.ବି.*- ଶ୍ରୀମନ୍ଦିରର ସକଳ କୋଠାର ଧାନ କାଢ଼ି କୁଟି ପାଛୁଡ଼ି ଚୂନା ସମର୍ଥାଙ୍କୁ ଯୋଗାନ୍ତି । ଧାନ ଦେବା ନେବାର ହିସାବ ରଖନ୍ତି । ଏବେ ଏପରି ନାମଧାରୀ ସେବକ ନାହାନ୍ତି । ଏ ସମ୍ଭବତଃ ଖମାର କରଣ ସେବା କରୁଥିଲେ ।
(ଶ୍ରୀ.ଜି. - ପୃ. ୧୫୪) ।

**ଚେମେଢ଼ି**-*ଦେ.ବି.*- ବିଗ୍ରହମାନଙ୍କ ଲାଗି ପତଳା ସୂତାର ନାଲିକନାଯୁକ୍ତ ବସ୍ତ୍ର ବା କରିଆ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪୯) ।

**ଚେମେଣି ଦୁଆର**-*ଦେ.ବି.*- ପୁରୀ ଶ୍ରୀମନ୍ଦିରର ଉତ୍ତର ଦ୍ୱାର ।
(ଶ୍ରୀ.କି.- ପୃ. ୧୯) ।

**ଚେହେଲି**-*ଦେ.ବି.*- ରକ୍ତ ପିତ୍ତ ଓ ସବୁଜ ବର୍ଣ୍ଣ ମିଶା ଆଠହାତ ଲମ୍ବ ଓ ତିନିହାତ ବିଶିଷ୍ଟ ଏକ ରେଶମ ବସ୍ତ୍ର । ଏହା ଅଣସର ଭିତରେ ସର୍ବାଙ୍ଗ ନୀତିରେ ଠାକୁରଙ୍କୁ ଲାଗିହୁଏ ।
(ଶ୍ରୀ.ସ୍ୱ. - ପୃ. ୧୪୮) ।

**ଚୈତନ୍ୟ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ଏକ ମନ୍ଦିର ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୪୬) ।

**ଚୈତ୍ର ଗୁଣ୍ଡିଚା**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା ସୂର୍ଯ୍ୟ ଦେବଙ୍କର ଚୈତ୍ର ଶୁକ୍ଳ ଷଷ୍ଠୀ ଦିନ ସୂର୍ଯ୍ୟଙ୍କ ରଥଯାତ୍ରା ହୁଏ । ଏହାର ଅନ୍ୟନାମ ସୌର ଗୁଣ୍ଡିଚା ବା ଚୈତ୍ର ଗୁଣ୍ଡିଚା । ଏହିଦିନ ସୂର୍ଯ୍ୟଙ୍କର ପୂଜା ଉପାସନା କରାଯାଇ ଖୀରି କାକରା ସହ ପଞ୍ଚୋପଚାର ପୂଜାରେ ମଣୋହି କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୨, ଓ.ସାଂ.ଶ.- ପୃ. ୧୩୧) ।

**ଚୋରିକବାଟ**-*ଦେ.ବି.*- ଶ୍ରୀମନ୍ଦିରର ଚାରିଦୁଆରରେ ଥିବା ବଡ଼କବାଟ ମଧ୍ୟରେ ଥିବା ଛୋଟ କବାଟ । ମୁଖ୍ୟ କବାଟ ବନ୍ଦ ଥିବା ବେଳେ ଏହା ମଧ୍ୟ ଦେଇ ସେବାୟତମାନେ ଯାତାୟାତ କରନ୍ତି । ଏହାକୁ ଚୋରି ଦୁଆର ମଧ୍ୟ କୁହାଯାଏ ।
(ପୂ.ଓ.ଭା. - ପୃ. ୨୬୪୦) ।

**ଚୋରିନେତ**-*ଦେ.ବି.*- ଠାକୁରଙ୍କ ଶ୍ରୀଅଙ୍ଗରେ ରକ୍ତର ପ୍ରତୀକ ଭାବରେ ବ୍ୟବହୃତ ଲୋହିତ ବସ୍ତ୍ର ।
(ପୁ.ବୋ.- ପୃ. ୧୯୨) ।

**ଚୋଳଗଙ୍ଗଦେବ**-*ଦେ.ବି.*- ଗଙ୍ଗବଂଶର ପ୍ରତିଷ୍ଠାତା ବା ପ୍ରଥମ ରାଜା ଚୋଳଗଙ୍ଗ ଦେବ । ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ, କିନ୍ତୁ ମନ୍ଦିର ଅସମ୍ପୂର୍ଣ୍ଣ ଅବସ୍ଥାରେ ସେ ଇହଲୀଳା ସମ୍ବରଣ କରିଥିଲେ । ଚନ୍ଦ୍ରବଂଶୀୟ ରାଜା । ଏହାଙ୍କ ମାତାଙ୍କ ନାମ 'ଗଙ୍ଗା' ଥିବାରୁ ତାହାଙ୍କ ନାମାନୁସାରେ ଏହି ବଂଶଟି ଗଙ୍ଗବଂଶ ନାମରେ ପରିଚିତ । ସେ ପ୍ରଥମରେ ଦାକ୍ଷିଣାତ୍ୟରେ ରାଜତ୍ୱ କରୁଥିଲେ । ସେ କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣକେଶରୀ ବା ସିଦ୍ଧେଶ୍ୱର କେଶରୀଙ୍କୁ ପରାସ୍ତ କରି ରାଜା ହେଲେ । ସେ ନିଜ ନାମାନୁସାରେ ପୁରୀରେ ଚୁଡ଼ଙ୍ଗ ସାହି ବସାଇଥିଲେ । ଜଗବନ୍ଧୁ ସିଂହଙ୍କ ପ୍ରାଚୀନ ଉତ୍କଳ ଅନୁସାରେ ସେ ସତୁରି ବର୍ଷ ରାଜତ୍ୱ କରିଥିଲେ । ଅସାଧାରଣ ବୀର ତଥା ବିଦ୍ୟାନୁରାଗୀ ଥିଲେ । ତାଙ୍କ ସମୟରେ ଶତାନନ୍ଦ 'ସୂର୍ଯ୍ୟସିଦ୍ଧାନ୍ତ' ରଚନା କରିଥିଲେ ।
(ପୂ.ଓ.ଭା. - ପୃ. ୨୬୩୮) ।

●



**ଛଡ଼ାଫୁଲ**-*ଦେ.ବି.*- ଦେବତାଙ୍କଠାରେ ସମର୍ପିତ ହେବା ପରେ ଯେଉଁ ଫୁଲ ଶରୀରରୁ କଢ଼ାଯାଇଥାଏ । ଛଡ଼ା ବେଲପତ୍ର ଓ ଛଡ଼ାମାଳ ଇତ୍ୟାଦି ଉଲାଗି ଫୁଲ ।
(ପ୍ର.ଅ. ୧ମ - ପୃ. ୯୧୪, ପୂ.ଓ.ଭା. - ପୃ.୨୭୬୨, ଓ.ସାଂ.ଶ.- ପୃ.୧୩୨) ।

**ଛଡ଼ିଦାର**-*ଦେ.ବି.*- ବାଟ ଗୁମାସ୍ତା ବା ପଣ୍ଡା ଗୁମାସ୍ତା । ମୁଣ୍ଡରେ ପଗଡ଼ି ଓ ହାତରେ ଛଡ଼ି ଧରି ଦୂର ବାଟରେ ଯାତ୍ରୀ ସଂଗ୍ରହ ପାଇଁ ବୁଲୁଥିବା ପଣ୍ଡା ।
(ପୁ.ବୋ.-ପୃ.୧୯୨, ପୂ.ଓ.ଭା.- ପୃ.୨୭୬୨) ।

**ଛତରଛାଳ**-*ଦେ.ବି.*- ବିକ୍ଷିପ୍ତ ହୋଇଯିବା । ଇତଃସ୍ତତଃ ହୋଇ ପଡିବା ।
(ପୁ.ବୋ.- ପୃ.୪୪) ।

**ଛତା**-*ଦେ.ବି.*- ଛତ୍ର, ଛତି, ମଠ । ତାଳପତ୍ର ବା କନାରେ ନିର୍ମିତ ଓ କେନ୍ଦ୍ରରେ ତଳଆଡ଼କୁ ଗୋଟିଏ ଦଣ୍ଡ ବା ବେଣ୍ଟ ଥିବା ଗୋଲାକାର ଶରୀରାବରଣ ବସ୍ତୁ । ପରିବ୍ରାଜକ ସାଧୁମାନେ ନିଜ ନିଜର ଆସ୍ଥାନ ଉପରେ ପୋତିଥିବା କନାର ବଡ଼ଛତା । ଦେବତା ବା ସମ୍ରାଟଙ୍କ ଅଧିକାର ଜ୍ଞାପକ ଛତି । ଶ୍ରୀଜୀଉ ବେଢ଼ା ପରିକ୍ରମା କରିବା ସମୟରେ କିମ୍ବା ମନ୍ଦିର ବାହାରକୁ ଯିବାକୁ ହେଲେ ଘଣ୍ଟ, କାହାଳୀ, ଛତ୍ର, ଛତି ସହ ଯାତ୍ରା କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୪୬, ପୂ.ଓ.ଭା. - ପୃ.୨୭୬୬) ।

**ଛତାର ସେବକ**-*ଦେ.ବି.*- ଶ୍ରୀଠାକୁର ବିଜେ ହେବା ସମୟରେ ଛତା ଧରି ଠିଆ ହେଉଥିବା ସେବକ । ଏହି ସେବକଙ୍କୁ ଛତାର ସେବକ କୁହାଯାଏ । ନିତ୍ୟ ବଡ଼ସିଂହାର, ପହୁଡ଼, ଆଳତି ସମୟେ ଶୟନ ଠାକୁରଙ୍କ ନିକଟରେ ଛତିଧରି ଠିଆ ହୁଅନ୍ତି । ପହୁଡ଼ ଆଳତି ପରେ ବିଜେ ସମୟରେ ଭିତରକୁ ବିଜେ କରି ଛତି ଭଣ୍ଡାର ଦ୍ୱାରେ ରଖନ୍ତି । ପ୍ରତି ବାହାର ଓ ଭିତର ବିଜେ, ବେଢ଼ା, ସର୍ବାଙ୍ଗ, ଚନ୍ଦନବିଜେ, ସ୍ନାନପୂର୍ଣ୍ଣିମାରେ ଜଳ ଆଣିବା, ଜଳ ବିଜେ ସମୟରେ ଓ ଅନ୍ୟ ଯେଉଁ ସମୟରେ କାହାଳୀ ବାଜେ ସେ ସମୟରେ ଛତି ଧରନ୍ତି । ରାଜାଙ୍କ ବିଜେ କାଳରେ ସିଂହଦ୍ୱାରଠାରୁ ଛତି ସେବା କରନ୍ତି । ଏମାନେ ଛତି, ଓଲାର, ତରାସ ଓ ବଳାକନାଟି ଏହିପରି ଚାରି ପ୍ରକାର ଛତ୍ର ସେବା କରନ୍ତି । ଚନ୍ଦନ, ଦୋଳ, ଦଶହରା, ରଥ, ବିମଳାଙ୍କ ପୂଜା, ସୁଦର୍ଶନ ବିଜେ ଓ ଅନ୍ୟାନ୍ୟ ବାହାର ବିଜେରେ ଛତି ଧରନ୍ତି । ଚନ୍ଦନଯାତ୍ରା ଏକୋଇଶି ଦିନ, ରାମକୃଷ୍ଣଙ୍କ ସହ ଚାପରେ ଯାଆନ୍ତି । ସ୍ନାନପୂର୍ଣ୍ଣିମାରେ ସୁଦର୍ଶନ ଓ ସୁଭଦ୍ରାଙ୍କ ସହ ଗୁଣ୍ଡିଚାରେ ରାଜପ୍ରାସାଦ ଯିବା ବେଳେ ସାତପୁରୀ ଓ ମକରରେ କୁମ୍ଭାରଘରୁ ତାଡ଼ ଆଣିବା, ରଥକୁ ଶୋଳଚିତା ଖଡ଼ି ଓ ଖଳି ଆଣିବା, ଅଣସର ପଟି ଆଣିଲା ବେଳେ ଓଲାର ନିଅନ୍ତି । ଧଳାଛତି ଶ୍ରୀଜଗନ୍ନାଥଙ୍କ ଆଡ଼େ, କଳାଛତି ବଡ଼ଆଡ଼େ ଓ ଓଲାର - ମଝିଆଡ଼େ ବ୍ୟବହୃତ ହୁଏ । ଏମାନେ ଶାଢ଼ୀବନ୍ଧା ବ୍ରାହ୍ମଣ ସେବକ ।
(କ୍ର.ବି.ଶ.ସ. ୧ମ - ପୃ.୩୩୦, ଶ୍ରୀ.ସ୍ୱ. -ପୃ. ୧୪/୧୫) ।

**ଛତିଶାନିଯୋଗ**- ପରମ ବିଷ୍ଣୁ ଭକ୍ତ ଅନଙ୍ଗଭୀମଦେବ ବର୍ତ୍ତମାନର ବଡ଼ଦେଉଳ ପ୍ରତିଷ୍ଠା କରି ରତ୍ନବେଦୀ ଉପରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସ୍ଥାପନ କରିଥିଲେ । ଏହି ବିଗ୍ରହମାନଙ୍କର ପୂଜାନୀତିକୁ ଶୃଙ୍ଖଳିତ ଭାବରେ ସମ୍ପାଦନ କରିବା ନିମନ୍ତେ ସମସ୍ତ ସେବକମାନଙ୍କୁ ଛତିଶି ଭାଗରେ ବିଭକ୍ତ କରି ଛତିଶାନିଯୋଗ ସ୍ଥାପନ କରିଥିଲେ । ତାଙ୍କ ଅଧୀନରେ ଛତିଶାପାଟକ

ଛତିଶାନିଯୋଗ ଭାବରେ ନିଯୁକ୍ତ ହୋଇ ଶ୍ରୀଜୀଉଙ୍କ ସେବା କାର୍ଯ୍ୟ କରୁଥିଲେ । ଏହି ନିଯୋଗମାନଙ୍କୁ ଛତିଶାନିଯୋଗ କୁହାଯାଉଥିଲା । ଏମାନଙ୍କ ସଂଖ୍ୟା ଛତିଶି ନ ହୋଇ ଯଥେଷ୍ଟ ବେଶି ଥିଲା ।

୧. ଦଖଲୀରାଜଗୁରୁ ନିଯୋଗ, ୨. ପ୍ରୋହିତ ଖଟିଣି ନିଯୋଗ, ୩. ପାଢ଼ଶି ଶିରୋପା ନାହାକ, ୪. ଭିତରଛ ନିଯୋଗ, ୫. ତଲୁଛ ନିଯୋଗ, ୬. ମୁଦ୍ରହସ୍ତ ଖଟଣି ନିଯୋଗ, ୭. ପଶୁପାଳକ ଖଟଣି ନିଯୋଗ, ୮. ମହାଜନ ଖଟଣି ନିଯୋଗ, ୯. ପାଣିଛଡ଼ା ପଣ୍ଡା ନିଯୋଗ, ୧୦. ଖୁଣ୍ଟିଆ ଖଟଣି ନିଯୋଗ, ୧୧. ନିକାପ ଖଟଣି ନିଯୋଗ, ୧୨. ପନ୍ତିବଡୁସୁଆର ନିଯୋଗ, ୧୩. ସୁଆର ବଡୁ ସେବକ, ୧୪. ପତ୍ରିବଡୁ ଖଟଣି ସେବକ, ୧୫.ଗରାବଡୁ ଖଟଣି ସେବକ, ୧୬. ହଡ଼ପ ନାହକ ଖଟଣି ସେବକ, ୧୭. ଶୁଦ୍ଧ ସୁଆର ଖଟଣି ସେବକ, ୧୮. ମୁଦୁଲି ଖଟଣି ସେବକ, ୧୯. ଦତ୍ତ ଖଟଣି ସେବକ, ୨୦. ବିମାନବଡୁ ଖଟଣି ସେବକ, ୨୧. ରନ୍ଧାସୁଆର ଖଟଣି ସେବକ, ୨୨. ପଢ଼ିଆରୀ ଖଟଣି ସେବକ, ୨୩. ସାବତ ନିଯୋଗ, ୨୪. ପରଯାତ୍ରୀ ଯୋଗାଣିଆ, ୨୫. ଦୟଣାମାଳି, ୨୬. ଚକାଅସରପ ଖଟଣି ସେବକ, ୨୭. ଚୂନରା ଖଟଣି ସେବକ, ୨୮. ବଜନ୍ତି ଖଟଣି ସେବକ, ୨୯. କାହାଳିଆ ଖଟଣି ସେବକ, ୩୦. ଘଣ୍ଟୁଆ ଖଟଣି ସେବକ, ୩୧. ଭଜନି ନିଯୋଗ, ୩୨. ଦକ୍ଷିଣା ବୈଷ୍ଣବ, ୩୩. ରବାଦିଆ, ୩୪. ମାଦେଳିଆ ଖଟଣି ସେବକ, ୩୫. ଦତ୍ତ ନିଯୋଗ, ୩୬. ପତିମହାପାତ୍ର ନିଯୋଗ, ୩୭. ଦଇତା ନିଯୋଗ, ୩୮. ବିନ୍ଧାଣୀ ନିଯୋଗ, ୩୯. ଦରଜି ନିଯୋଗ, ୪୦. ଛତାର ଖଟଣି ସେବକ, ୪୧. ଖରକା ନିଯୋଗ, ୪୨. ଜରିପଟୁକା, ୪୩. ଅଙ୍ଗାରୁଆ, ୪୪. ବିରିବୁହା, ୪୫. ଚୂନା ମୁଣ୍ଡା, ୪୬. ବଡୁଆ, ୪୭. ରନ୍ଧକାମ ଦୁହଡ଼ିଆ, ୪୮.ଚକ୍ର ଦୁହୁଡ଼ିଆ, ୪୯. ପାଣିଆ ପଟ, ୫୦. ଦରପଣିଆ, ୫୧. ଲେଙ୍କା, ୫୨. କୋଠ ସୁଆଁସିଆ, ୫୩. ଧୋବା ବଡୁ, ୫୪. ତାଟ ବଡୁ, ୫୫. ପ୍ରଧାନୀ ୫୬. ବଲ୍ଲଭ ଯୋଗାଣିଆ, ୫୭. ମହାଭୋଇ, ୫୮. ବାରଗୋଠିଆଳ, ୫୯. ଫାରକ ମୁଦୁଲି, ୬୦. କୋଠ କୁମ୍ଭାର, ୬୧. ବିଡ଼ିଆଯୋଗାଣିଆ, ୬୨. ମଣ୍ଡଳି, ୬୩. ରନ୍ଧକାମ ବିନ୍ଧାଣି, ୬୪. ପାଟରା, ୬୫. ଉପାଙ୍ଗିଆ ସେବକ, ୬୬. ମାହାରୀ, ୬୭. ବୈକଣ୍ଠା ଜ୍ୟୋତିଷ, ୬୮. ଖୁରିଜଗା, ୬୯. ବୀଣାକାର, ୭୦. ଚିତ୍ରକାର, ୭୧. କଂସାରି୭୨. ତାମ୍ବରା, ୭୩. ଅଷ୍ଟଲୋହି, ୭୪. ଦଉଡ଼ିବଳା, ୭୫. ଚାପବନ୍ଧାଇ, ୭୬. ଗୁଆରି ପ୍ରଧାନ, ୭୭. ଚୁହାଣ, ୭୮. ବେଣ୍ଟ ବନ୍ଧାରାଉତ, ୭୯. କାମରା କଣ୍ଟା, ୮୦. କଳା କନାଟି, ୮୧. ଡାହୁକ, ୮୨. ମହାଶ୍ରମ ରାଜନିଯୋଗ, ୮୩. ସରକାରୀ ମହାପାତ୍ର, ୮୪. ମାନସିଂହ ମହାପାତ୍ର, ୮୫. ସଭାରେଖ ମହାପାତ୍ର, ୮୬. କୋଠ କରଣ, ୮୭. ଦେଉଳ କରଣ, ୮୮. ତଡ଼ାଉ କରଣ, ୮୯. ବଇଠି କରଣ, ୯୦. ଚାଉଳବଛା କରଣ, ୯୧. ଘରୁଆ କରଣ, ୯୨. ପାଞ୍ଜିଆ କରଣ, ୯୩. ଚର୍ଚ୍ଚା କରଣ, ୯୪. ଧୋବ ପଖାଳ, ୯୫. ରୋଷ ପାଇକ, ୯୬. ଖଣ୍ଡସାକର ଯୋଗାଣିଆ, ୯୭. ପରଖତିଆ(ପିତଳକୁଣ୍ଡ ଧୋଇବା ସେବକ) ।

(ଅନାମ ପତ୍ରିକା ୧୯ ସଂଖ୍ୟା ମେ-୧୯୮୩ ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ମନ୍ଦିରର ସେବକ ଖଟଣୀ ନିଯୋଗ କର୍ମାଙ୍ଗୀ, ପୃ. - ୧୮) ।

**ଛତିଶା ନିଯୋଗ-** ଇଂରେଜମାନେ ଓଡ଼ିଶା ଅଧିକାର କଲେ ୧୮୦୩ ଖ୍ରୀଷ୍ଟାବ୍ଦରେ, ସେତେବେଳକୁ ଛତିଶା ନିଯୋଗ ସେବା ବହୁ ପରିମାଣରେ ବୃଦ୍ଧି ପାଇଥିଲା । ତତ୍କାଳୀନ ପୁରୀ ଜିଲ୍ଲାପାଳ ସି.ଗ୍ରୋମ ୧୮୦୫ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର ସମ୍ବନ୍ଧରେ ଯେଉଁ ରିପୋର୍ଟ କଟକ ପ୍ରଦେଶର କମିଶନର ଥୋମାସ ଫରଟେସ

କ୍ୟୁଙ୍କୁ ପ୍ରଦାନ କରିଥିଲେ । ତାଲିକାରେ ଛତିଶାନିଯୋଗ ବୃଦ୍ଧି ପାଇ ପ୍ରାୟ ୨୫୦ ନିଯୋଗ ହୋଇଥିବା ଲେଖିଛନ୍ତି । ଓଡ଼ିଶା ସରକାରଙ୍କ ସ୍ପେଶାଲ ରିପୋର୍ଟରେ ଉଲ୍ଲେଖ କରାଯାଇଛି କି ଉକ୍ତ ତାଲିକା ଅନୁସନ୍ଧାନ ସତ୍ତ୍ୱେ ମିଳୁ ନଥିବାରୁ ସେବାୟତ ସଂପ୍ରଦାୟର ପୂର୍ଣ୍ଣ ତାଲିକା ଦେଇପାରିଲେ ନାହିଁ । ପୂର୍ଣ୍ଣ ତାଲିକାରେ ସେବକ ସଂପ୍ରଦାୟର ୨୪୮ ଜଣ ସେବାୟତଙ୍କ ନାମ ପ୍ରକାଶିତ ହୋଇଛି ।

୧. ମୁଦିରସ୍ତ, ୨. ପୂଜାରୀ ପଣ୍ଡା, ୩. ହୋମ ପାଳିଆ ପଣ୍ଡା, ୪. ରକ୍ମିଣୀ ପତ୍ରିକା ପଣ୍ଡା, ୫. ସିଂହାରୀ ପୁଷ୍ପାଳକ, ୬. ଛତିଶାନିଯୋଗ ନାୟକ, ୭. ତଳିଛ ମହାପାତ୍ର, ୮. ଅଣସର ଘର ସେବକ, ୯. ଧୂବକାନ୍ତ ଦେବସେବକ, ୧୦. ଭିତରଛ ମହାପାତ୍ର, ୧୧.ମୁଦୁଲି ମହାଜନ, ୧୨. ବୀରବର ବନସେବକ, ୧୩. ମୂଷାଧୂରତ ସେବକ, ୧୪. ନନ୍ଦ ସେବକ, ୧୫. ଭୀଷ୍ମକରାଜା ସେବକ, ୧୬. ଦଇତାପତି ସେବକ, ୧୭. ପତି ମହାପାତ୍ର, ୧୮. ପୁଷ୍ପାଞ୍ଜଳି ବନ୍ଧାପନା ସେବକ, ୧୯. ଦିଗଧାତ୍ରୀ ଠାକୁରାଣୀ ସେବକ, ୨୦. ତ୍ରିମୁଖୀ ସିଂହାରି ଦଣ୍ଡ ସେବକ, ୨୧. ମହାଜନ ସେବକ, ୨୨. ଦକ୍ଷିଣଘର ମେକାପ, ୨୩. ଦୋଳଗୋବିନ୍ଦ ଦେବ ସେବକ, ୨୪. ରଘୁନାଥ ସେବକ, ୨୫. ଜୟଗୋପାଳ ସେବକ, ୨୬. ଅଦିତି କଶ୍ୟପ ସେବକ, ୨୭. ଦଶରଥ କୌଶଲ୍ୟା ସେବକ, ୨୮. ବାସୁଦେବ ଦେବକୀ ସେବକ, ୨୯. ଭିତର ଭଣ୍ଡାର ସେବକ, ୩୦. ରନ୍ନ ବିଞ୍ଚାଣୀ ସେବକ, ୩୧. ବାହାର ଭଣ୍ଡାର ମେକାପ, ୩୨. ଛାମୁ ଖୁଣ୍ଟିଆ ସେବକ, ୩୩. ବେହେରା ଖୁଣ୍ଟିଆ, ୩୪. ମଣ୍ଡଣି ଖଣ୍ଟିଆ, ୩୫. ଗୁଳୁଣା ଖୁଣ୍ଟିଆ, ୩୬. ଘୋରା ବାରିକ ଖୁଣ୍ଟିଆ, ୩୭. ମାରଗର ଜାଗା ଖୁଣ୍ଟିଆ, ୩୮. ଚଣଗ୍ରହ ମେକାପ, ୩୯. ଅଖଣ୍ଡ ମେକାପ, ୪୦. ଖଟଶେଯ ମେକାପ, ୪୧. ପତ୍ରିବଡୁ, ୪୨. ମୁଦରାହ(ମୁଦ୍ରା) ସେବକ, ୪୩. ଗରାବଡୁ, ୪୪. ବାହାର ଗରାବଡୁ, ୪୫. ସୁଆର ବଡୁ, ୪୬. ଭୋଗସୀତା (ସାଇତା), ୪୭. ପରୀକ୍ଷା ବଡୁ, ୪୮. ଭିତରବଡୁ, ୪୯. ଶୁଦ୍ଧ ସୁଆର ସେବକ, ୫୦. ଅଣସର ଶୁଦ୍ଧ ସୁଆର, ୫୧. କୁରୁପ ନାଏକ, ୫୨. ବିଡ଼ିଆ ଯୋଗାଣିଆ, ୫୩. ଡମ୍ବୁରିଆ ସେବକ, ୫୪. ଦଣ୍ଡପହର ସେବକ, ୫୫. ଚକାଅପସର ସେବକ, ୫୬. ଆରତିକୋଣ ସେବକ, ୫୭. ଶ୍ରୀମୁଖ ପ୍ରକ୍ଷାଳନ ପଡ଼ିଆରୀ, ୫୮. ଜୟମଙ୍ଗଳ ଦ୍ୱରିତ ସେବକ, ୫୯. ପୁରାଣ ପଣ୍ଡା ସେବକ, ୬୦. ତୀର୍ଥ ସେବକ, ୬୧. କର୍ମଣିଆ ସେବକ, ୬୨. ଦଣ୍ଡଛତ୍ର ସେବକ, ୬୩. କୋଲାଛତ୍ର ସେବକ, ୬୪. କୁଟୁଣିଛତ୍ର ସେବକ, ୬୫. ତ୍ରାସ ସେବକ(ତରାସିଆ), ୬୬. ନିତିଲୁର ସେବକ, ୬୭. ମେଘ ଡମ୍ବରୁ ସେବକ, ୬୮. ଆସ୍ଥାନ ପଡ଼ିଆରୀ, ୬୯. ଖଟତାଟି ସେବକ, ୭୦. ମହାସୁଆର, ୭୧. ସାନମହାସୁଆର ନିଯୋଗ, ୭୨. ପନ୍ତିବଡୁ, ୭୩. ପିଠା ସୁଆର, ୭୪. ବଡୁ ସୁଆର, ୭୫. ତୋଳା ବଡୁ, ୭୮. ଥାଳି ସୁଆର, ୭୭. ମାଲପୁଆସୁଆର, ୭୮. କୋଠଭୋଗ ଜଗିଆ, ୭୯. ମାରଫୁଲି ପରିଛା, ୮୦. ରୋଷେଇ ପାଇକ, ୮୧. ଭାର ବୋହା, ୮୨. ତୋଷାବୁଟି, ୮୩. ହାଣ୍ଡିଯୋଗାଣିଆ, ୮୪. ପୁଷ୍ପାଞ୍ଜଳି ଦେହୁରିଆ, ୮୫. ଛାମୁ ଦେହୁରିଆ, ୮୬. ପଡ଼ିଆରୀ ନିଯୋଗ, ୮୭. ଗୋଛିକାର, ୮୮. ଦୋସରୁ ନାଏକ, ୮୯. ସାହି ନାୟକ, ୯୦. ତାରକ, ୯୧. ଚିତ୍ରକାର ମୁଦୁଲି, ୯୨. ଦେଶ ପ୍ରଧାନ, ୯୩. ପାଣିଆ ଆପଟ, ୯୪. ମହାଭୋଇ, ୯୫. ରସ ମେକାପ, ୯୬. କୋଠ ଭୋଗ ଯୋଗାଣିଆ, ୯୭. ପର୍ବଯାତ୍ରା ଯୋଗାଣିଆ, ୯୮. ଗୋପାଳ ବଲ୍ଲଭ ଯୋଗାଣିଆ, ୯୯. ବାହାର ଦେହୁରୀ ଭୋଗ ସୁଆର, ୧୦୦. ଘଟୁଆରୀ ସେବକ, ୧୦୧. ତିଳମରା ଘଟୁଆରି, ୧୦୨. ଧ୍ୱଜଙ୍ଗଗୋଗୁଲ, ଘଟୁଆରି, ୧୦୩. ଚନ୍ଦ୍ରଦ୍ୱୀପ ଘଟୁଆରୀ ସେବକ, ୧୦୪. ଅଖଣ୍ଡ ପହଣ୍ଡ ଦାସ

ସେବକ, ୧୦୫. ଦୁଆରୀ ସେବକ, ୧୦୬. ଗୁଣ୍ଡିଚା ନଗର ଦୁଆରି, ୧୦୭. ଚାପ ଦୁଆରି, ୧୦୮. ଦର୍ପଣିଆ ସେବକ, ୧୦୯. ପାଟରା ମାଜରା, ୧୧୦. ପ୍ରସାଦ ପୁରୁଆ, ୧୧୧. ରୋଷ ପାଣିକୁଣ୍ଡ ସେବକ, ୧୧୨. ବଟର ମୁଦ ପାଣିକୁଣ୍ଡ ସେବକ, ୧୧୩. ଲୁଗା ଧୋତ, ୧୧୪. ଚୂନରା ଓ ଧ୍ୱଜ ପଣ୍ଡା, ୧୧୫. ଦୟଣା ମାଳି, ୧୧୬. ଧାନ ସେବକ, ୧୧୭. ବିମାନ ବଡୁ ସେବକ, ୧୧୮. ପୂଜାତୁଳସୀ ସେବକ, ୧୧୯. କୋଠଭୋଗ ପାଳିଆ, ୧୨୦. ହାଡୋଳା ବଡୁ, ୧୨୧. ଶାଳଗ୍ରାମ ସେବକ, ୧୨୨. କୂଆ ଦୁଆରିଆ, ୧୨୩. ଧଉତ ପଖାଳିଆ, ୧୨୪. ଅନୁଗ୍ରହ ସେବକ, ୧୨୫. ରାବରିଆ, ୧୨୬. ଚୁନାକୁଟା ସମର୍ଥା, ୧୨୭. ଗୋବର ପକା, ୧୨୮. ବିରିବଟା ସମର୍ଥା, ୧୨୯. ଚାଉଳବଛା ସେବକ, ୧୩୦. ଚୁନାମପା, ୧୩୧. ଘଣ୍ଟୁଆ, ୧୩୨. କାହାଳିଆ, ୧୩୩. ବୀଣାକାର, ୧୩୪. ମଣ୍ଡଣିବନ୍ଧା ସେବକ, ୧୩୫. ପର୍ବଯାତ୍ରା ଆପଟା, ୧୩୬. ମକର ବଡ଼ଗୁଡିଆ, ୧୩୭. ଶିକୁଳି ମାଝୀ, ୧୩୮. ପିତଳ କାମମଜା, ୧୩୯. କର୍ତ୍ତ ମୁଦୁଲି, ୧୪୦. ମହାସୁଗନ୍ଧ ଦେଉଳି ସେବକ, ୧୪୧. ଛାମୁଝାଟିଆ, ୧୪୨. ଖୁରୀ ନାଏକ, ୧୪୩. କୁମ୍ଭାର ବିଶୋଇ, ୧୪୪. ଚୁରି ଖଣ୍ଡାଇ ସେବକ, ୧୪୫. ଉପଚାର ଚାମର ସେବକ, ୧୪୬. କମାର ବାଜିଆ ସେବକ, ୧୪୭. ସୁତସଉ ବୁଲି ସେବକ, ୧୪୮. ତୀରକମାଣ ସେବକ, ୧୪୯. ରତ୍ନ ପାଦୁକା ସେବକ, ୧୫୦. ଖଦୀ ସେବକ, ୧୫୧. ତୁଳଚାମର ସେବକ, ୧୫୨. ତିଳ ଆଲଟ ସେବକ, ୧୫୩. ଫୁଲଝର ସେବକ, ୧୫୪. ପ୍ରଧାନି ସେବକ, ୧୫୫. ଶଙ୍ଖ ସେବକ, ୧୫୬. ବେହେରା ସେବକ, ୧୫୭. ବୁରଗୁମା ଶଙ୍ଖ, ୧୫୮. ପାଇକ ସେବକ, ୧୫୯. ନାଖ(ଲାଖ) ବିନ୍ଧା ସେବକ, ୧୬୦. ଶିକାର ବିନ୍ଧା ସେବକ, ୧୬୧. ଶିବ ଚିତା ସେବକ, ୧୬୨. ଚିନରା ସେବକ, ୧୬୩. ରତ୍ନବିନ୍ଧାଣୀ ସେବକ, ୧୬୪. ଟମରା ବିନ୍ଧାଣୀ, ୧୬୫. ପାଟବଉଦ ସେବକ, ୧୬୬. ଅଗୁର ଯୋଗିଆ, ୧୬୭. ବଟବଟାଳିଆ, ୧୬୮. ବଇରକ ସେବକ, ୧୬୯. ବରୁଣୀ ବିଶ୍ୱକର୍ମା, ୧୭୦. ରୂପକାର ସେବକ, ୧୭୧. ଚିତ୍ରକାର ସେବକ, ୧୭୨. ବାହାର ସେବକ, ୧୭୩. ଶୁହୋଟରୋଗଡଅଜା, ୧୭୪. ହାଟ ସେବକ, ୧୭୫. ହରତି ସେବକ, ୧୭୬. ବାହୁଟ ସେବକ, ୧୭୭. ପଥୁରିଆ ସେବକ, ୧୭୮. ଖରକା ସୁଆରିଆ, ୧୭୯. ନଳାଗଡୁ, ୧୮୦. ମୂଳିଧା ସୁଆଁସିଆ, ୧୮୧. କୋଠ ସୁଆସିଆ, ୧୮୨. ଦହି ସେବକ, ୧୮୩. ଦଣ୍ଡଛତ୍ର ସିକା, ୧୮୪. ଗଦିସିଆ, ୧୮୫.ତାଟ ଓଲାରସିଆ, ୧୮୬. ବାହୁଟ ତ୍ରମ୍ବ ସେବକ, ୧୮୭. ପାଲରା, ୧୮୮. ଭିତର ମୁଗୁରି ସେବକ, ୧୮୯. ଗୁଣବନାଟ ସେବକ, ୧୯୦. ଗଛକଟା ସେବକ, ୧୯୧. ପାଉରି ମେକାପ, ୧୯୨. ଆଇକନାକି ସେବକ, ୧୯୩. ବଗସମଜଳ ସେବକ, ୧୯୪. ତେଲଙ୍ଗା ବାଜାକାର, ୧୯୫. ଟମକିଆ ସେବକ, ୧୯୬. ମୁଦୁଲିଆ ସେବକ, ୧୯୭. ସମ୍ପ୍ରଦା ନିଯୋଗ, ୧୯୮. ନର୍ତ୍ତକୀ, ୧୯୯. ଶଙ୍ଖୁ ସେବକ, ୨୦୦. ପୁନଶିଖା ମଶାଲ ଧରା, ୨୦୧. ତୁଳାବୁଣା, ୨୦୨. ହଣ୍ଡୁରା ସେବକ, ୨୦୩. ଜଉରା ସେବକ, ୨୦୪. ଦୋଳି ଖଟଣ ସେବକ, ୨୦୫. ହାତୀ ମାହୁନ୍ତ ସେବକ, ୨୦୬. ନାଗରଚି ସେବକ, ୨୦୭. ନାହାବାହା, ୨୦୮. ଇନ୍ଦ୍ରଦ୍ୟୁମ୍ନ ଖଡ଼ିକା, ୨୦୯. ଜ୍ୟୋତିଷ ବ୍ରହ୍ମଚାରୀ, ୨୧୦. ଗୋ ରଖବାଲା, ୨୧୧. ମହାସେଠୀ ସେବକ ବା ରଜକ, ୨୧୨. ରଥଭୋଇ ସେବକ, ୨୧୩. ରଥ ରଶିଭଙ୍ଗା, ୨୧୪. ବାହାର ପଡଦାର, ୨୧୫. ଦେଉଳି ପୁରୋହିତ ସେବକ, ୨୧୬. ଦେଉଳକରଣ ସେବକ, ୨୧୭.

ତଢ଼ାଉପଟ୍ଟନାୟକ ସେବକ, ୨୧୮. ଭଣ୍ଡାର ନାୟକ ସେବକ, ୨୧୯. ଚାଙ୍ଗଡ଼ା କରଣ ସେବକ, ୨୨୦. ତଣ୍ଡକାର ବର୍ଦ୍ଧନ ସେବକ, ୨୨୧. ଡଗରା ବରୁଣ ସେବକ, ୨୨୨. ରୋଷ ଅମୀନ ସେବକ, ୨୨୩. ରୋଷ ବଇଠିକରଣ ସେବକ, ୨୨୪. ଚିଟାଉ ସେବକ, ୨୨୫. ପିଣ୍ଡିକାସେଠ ସେବକ, ୨୨୬. ମାପସ୍ତକରଣ ସେବକ, ୨୨୭. ରୋଷକରଣ ସେବକ, ୨୨୮. ଦେଶକରଣ ସେବକ, ୨୨୯. ନିର୍ମାଲ୍ୟକରଣ ସେବକ, ୨୩୦. ପଟ୍ଟନାୟକ କରଣ ସେବକ, ୨୩୧. ପ୍ରଥମ ପରିଛା ସେବକ, ୨୩୨. ସତେଇଶି ହଜାରୀ ପରିଛା ସେବକ, ୨୩୩. ପଶ୍ଚିମ ଦ୍ୱାର କରଣ ସେବକ, ୨୩୪. ସେତେଇଶିହଜାରୀ ବଇଠି କରଣ ସେବକ, ୨୩୫. ଭୋଗ ଗୁମାସ୍ତା ସେବକ, ୨୩୬. ପର୍ବଯାତ୍ରା ଗୁମାସ୍ତା ସେବକ, ୨୩୭. ଖରଶୋଧ ସେବକ, ୨୩୮. ଚାରଚଇତ ସେବକ, ୨୩୯. ପରିଛାମାନଙ୍କର ଚାରି ଗୁମାସ୍ତା, ୨୪୦. ଧ୍ୱଜ ଶାଡ ସେବକ, ୨୪୧. ଶୁକି ଗୁମାସ୍ତା, ୨୪୨. ସକଳିଆ ସେବକ ।

ଇଂରେଜ ଶାସନ ସମୟରେ ପୁରୀ ଜିଲ୍ଲାପାଳ ଗ୍ରୋମ ସାବ ମନ୍ଦିର ସମ୍ପର୍କୀୟ ରିପୋର୍ଟରେ ୨୫୦ ଜଣ ସେବକଙ୍କ ନାମ ଦେଇଛନ୍ତି । ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସ ପୂର୍ଣ୍ଣ ତାଲିକାରେ ୨୪୮ ଜଣ ସେବାୟତଙ୍କ ନାମ ପ୍ରକାଶିତ କରିଛନ୍ତି । ଏଣୁ ୬ ଜଣ ସେବକ ହେଲେ, ୧. ତୁଳସିଆ, ୨. ଚକାଅପସର,୩. ବେହେରା, ୪. ଟମକିଆ, ୫. ଶଙ୍ଖ, ୬. ହାଟକରଣ ।

ଏହି ସେବକ ତାଲିକାରେ କେତେକ ପଦାଧିକାରୀ ଏବଂ କର୍ମଚାରୀଙ୍କ ନାମ ମଧ୍ୟ ଲିପିବଦ୍ଧ ହୋଇ ରହିଅଛି । ପୁଣି କେତେକ ନାମ ଏକାଧିକବାର ପ୍ରୟୋଗ ହୋଇଥିବାରୁ ଜାଣିବା କଷ୍ଟକର ।

(Charles Grome's Report on the Temple of Jagannath 10th June 1805 Orissa State Archives 1st Edition 2002.) ।

**ଛତିଶା ନିଯୋଗ**-ଦେ.ବି.- ପୁରୀ ଶ୍ରୀଜଗନ୍ନାଥଙ୍କର ଓ ଅନ୍ୟ ପ୍ରସିଦ୍ଧ ଦେବତାମାନଙ୍କର ସବୁ ଶ୍ରେଣୀର ଶୂଦ୍ର ଓ ବ୍ରାହ୍ମଣ ସେବକ । ସମ୍ଭବତଃ ଏ ସେବକମାନେ ପ୍ରଥମେ ଛତିଶ ଶ୍ରେଣୀରେ ବିଭକ୍ତ ହେଲେ, ବର୍ତ୍ତମାନ କିନ୍ତୁ ଦେଖାଯାଏ ଯେ, ପୁରୀ ବଡ଼ଦେଉଳରେ ୯୭ ଶ୍ରେଣୀର ଭିନ୍ନ ଭିନ୍ନ ଜାତୀୟ ସ୍ତ୍ରୀ ଓ ପୁରୁଷ ସେବକ/କର୍ମଚାରୀ ଅଛନ୍ତି । ଯଥା- ୧. ଛେରାପହଁରା ସେବା- ସ୍ୱୟଂ ଗଜପତି ମହାରାଜା । ୨. ମୁଦିରଥ- ରାଜାଙ୍କର ପ୍ରତିନିଧି (ରାଜାଙ୍କ ଅନୁପସ୍ଥିତିରେ ସେବା କାର୍ଯ୍ୟ ଚଳାଇବା) । ୩. ପୂଜାପଣ୍ଡା- ନୈବେଦ୍ୟ ଦେବା । ୪. ଭିତରଛ ମହାପାତ୍ର- ଦେଉଳ ଦୁଆର ଫିଟାଇବା, ଭୋଗ ସମୟରେ ଜଗିବା ଓ ବେଶ କରିବା । ୫. ତଳଛ ମହାପାତ୍ର- ପରିଛାଙ୍କ ପ୍ରତିନିଧି । ୬. ପୁଷ୍ପାଳକ- ବେଶ କରିବା । ୭. ଦଇତା- ସିଂହାସନରୁ ଦେବତାଙ୍କୁ ନେଇ ରଥରେ, ବାହୁଡାରେ ବିଜେ କରାଇବା ସହିତ ଅଣସର ସେବା । ୮. ପାଳିଆ ମହାପାତ୍ର- ଅଣସର ସମୟରେ ସେବା । ୯. ମୁଦୁଲି ଜୟବିଜୟ ଦ୍ୱାରେ ଜଗୁଆଳ ଓ ଭଣ୍ଡାର ଜଗୁଆଳି । ୧୦. ମହାଜନ- ପାର୍ଶ୍ୱଦେବତାଙ୍କୁ ନରେନ୍ଦ୍ରକୁ ନେବା ଆଣିବା କରିବା । ୧୧. ମୁଖସିଂହାର ଦନ୍ତ- ତିନିଦିଅଁଙ୍କର ମୁଖଚିତ୍ର କରିବା । ୧୨. ଭଣ୍ଡାର ମେକାପ- ଦେବତାଙ୍କ ପୋଷାକ, ଅଳଙ୍କାର ଓ ଭଣ୍ଡାରର ଜିନିଷ ଜଗିବା । ୧୩. ଚାଙ୍ଗଡ଼ା ମେକାପ- ଦେବତାଙ୍କ ପୋଷାକ ଓ ଅଳଙ୍କାରମାନ ପିନ୍ଧାଇବା ପାଇଁ ଡାଲାରେ ସଜାଇବା । ୧୪. ଖୁଣ୍ଟିଆ- ପୁଷ୍ପାଳକଙ୍କୁ ଡାକିବା, ଘୋଡ଼ାଙ୍କ ଖବର ବୁଝିବା । ୧୫. ଅଖଣ୍ଡ ମେକାପ- ପ୍ରଦୀପ ଜଳାଇବା । ୧୬. ଗରାବଡୁ- ପୂଜାପଣ୍ଡାଙ୍କ ନିକଟରେ ପାଣିଗରା ରଖିବା । ୧୭. ପତ୍ରୀବଡୁ- ପୂଜାପଣ୍ଡାଙ୍କ ନିକଟରେ ଫୁଲ ତୁଳସୀ ରଖିବା । ୧୮. ପନ୍ତିବଡୁ- ପୂଜାର ନୈବେଦ୍ୟ ପୂଜାପଣ୍ଡାଙ୍କ ନିକଟରେ ରଖିବା । ୧୯. ସୁଆରବଡୁ-

ପୂଜାସ୍ଥାନ ଝାଡ଼ିବା ଓ ଦେବତାଙ୍କ ଆଗରେ ଭୋଗ ଥୋଇବା । ୨୦. ହଡ଼ପ ନାୟକ- ଭୋଗପରେ ଦେବତାଙ୍କୁ ପାନମସଲା ଯୋଗାଇବା । ୨୧. ସୁଦୁସୁଆର- ଭୋଗ ମାରା ହେଲେ ତାହା ଉଠାଇ ନେବା । ୨୨. ଜଗିଆ- ଭୋଗ ସମୟରେ ପହରା ଦେବା । ୨୩. ମୁଖପଖାଳ ପଢ଼ିଆରୀ- ଦେବତାଙ୍କୁ ଦାନ୍ତକାଠି ଓ ମୁହଁଧୁଆ ପାଣି ଯୋଗାଇବା । ୨୪. ଆସ୍ଥାନ ପଢ଼ିଆରୀ- ପର୍ବ ସମୟରେ ଡାକଦେବା । ୨୫. ପଟଶେଯ ମେକାପ- ଦେବତାଙ୍କ ଶଯ୍ୟାରଚନା କରିବା । ୨୬. ପୁରାଣପଣ୍ଡା- ପୁରାଣ ପାଠ କରିବା । ୨୭. ଡମ୍ବରୁ ସେବକ- ଜୟବିଜୟ ଦ୍ୱାର ନିକଟରେ ମେଘଡମ୍ବରୁ ବା ଟୁଲ ଯୋଗାଇବା । ୨୮. ସୁଆର- ପାକାଦି କାର୍ଯ୍ୟ କରିବା । ୨୯. ବିରିବୁହା ସୁଆର- ସମର୍ଥାଠାରୁ ରାନ୍ଧିବା ପାଇଁ ଜିନିଷ ନେଇ ସୁଆରକୁ ଦେବା । ୩୦. ମହାସୁଆର- ଭୋଗ ରାନ୍ଧିବାର ପ୍ରଧାନ ପାଚକ । ୩୧. ରୋଷପାଇକ- ରୋଷଘରେ ଆଲୁଅ ବ୍ୟବସ୍ଥା କରିବା ଓ ଭୋଗ ସଙ୍ଗେ ସଙ୍ଗେ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଆସିବା । ୩୨. ଶିକାଧୂଆ ସୁଆର- ରୋଷଘରୁ ଭୋଗ ହେବା ପାଇଁ ପଦାର୍ଥମାନ ମନ୍ଦିର ମଧ୍ୟରୁ ଯେଉଁ ଶିକାରେ ବୁହାହୁଏ ତାକୁ ଧୋଇବା । ୩୩. ବାହାର ଦେଉଳ ସୁଆର- ଜଗନ୍ନାଥଙ୍କ ବେଢ଼ା ମଧ୍ୟରେ ଥିବା ଅନ୍ୟ ଦେବତାଙ୍କୁ ଭୋଗ କରିବା । ୩୪. ପଢ଼ିଆରୀ, ଗୋଛିକାର ଓ ଦୁଆର ନାୟକ- ଦେଉଳର ଚାରିଦୁଆର ଜଗିବା ଓ ଅମଣିଆ ଆସିଲାବେଳେ ଦକ୍ଷିଣ ଦ୍ୱାରରେ ବାଜେ ଲୋକଙ୍କ "ଆଡହୋ'' ବୋଲି ଆଦେଶ ଦେବା । ୩୫. ପ୍ରସାଦବଡୁ- ଶୁଖୁଲି ଅମୁଣିଆ ଦିଅଁଙ୍କ ଆଗରେ ରଖିବା । ୩୬. ଛତାଧରା- ଯାତ୍ରା ସମୟରେ ଧଳା ଓ କଳା ଛତି ବୁହାଇବା । ୩୭. ତରାସିଆ- ଯାତ୍ରା ସମୟରେ ତ୍ରାସ ଧରିବା । ୩୮. ଫାଟକ- ଭଣ୍ଡାର ଜଗିଆ । ୩୯. ବିମାନବଡୁ- ଯାତ୍ରାଦିରେ ଦେବତାମାନଙ୍କ ବିମାନ କାନ୍ଧେଇବା । ୪୦. ଛାମୁ ଦିହୁଡ଼ିଆ- ଠାକୁରଙ୍କ ଆଗରେ ମଶାଲ ଧରିବା । ୪୧. ପାଣିଆ- ରୋଷେଇ ପାଇଁ ଜଳ ଯୋଗାଇବା । ୪୨. ପାଣିଆ ପଟ- ପାଣି ବୁହାଇବା ଓ ବାସନ ମାଜିବା । ୪୩. ଲୁଗାଧୁଆ- ଠାକୁରଙ୍କ ଲୁଗା ଧୋଇବା ଓ ଶୁଖାଇବା । ୪୪. ଘଟୁଆରୀ- ଚନ୍ଦନ ଘୋରିବା । ୪୫. ଚୂନରା- ଗରୁଡ଼ ପ୍ରତିମାଙ୍କ ସେବା କରିବା । ଏକାଦଶୀ ଦିନ ଦେଉଳ ଉପରକୁ ମହାଦୀପ ଉଠାଇବା ଓ ପତାକା ବାନ୍ଧିବା । ୪୬. ଧୋପଖାଳିଆ- ରୋଷ ଧୋଇ ସଫା କରିବା । ୪୭. ଅଙ୍ଗାରୁଆ- ରୋଷଘରୁ ଅଙ୍ଗାର/ପାଉଁଶ କାଢ଼ିବା । ୪୮. ସମର୍ଥା- ରୋଷ ପାଇଁ ଡାଲି ରଗଡ଼ିବା । ୪୯. ଗୁବାଡିଆ- ରୋଷ ଅଗଣା ଓଳାଇବା । ୫୦. ପରୀକ୍ଷାବଡୁ- ପୂଜାପଣ୍ଡାଙ୍କ ପାଖରେ ପୂଜାବାସନ ରଖିବା । ୫୧. ପଧାନୀ- ପରିଛାଙ୍କ ହାତକୁ ସୁନାବେତ ଦେବା ଓ ମୁକ୍ତିମଣ୍ଡପ ବ୍ରାହ୍ମଣଙ୍କୁ ଭୋଜନ ଦେବା । ୫୨. ଲେଙ୍କା- ପିଆଦା । ୫୩. ଦଳବେହେରା- ପ୍ରହରୀଙ୍କ ସରଦାର । ୫୪. ପାଇକ- ପ୍ରହରୀ । ୫୫. ଦ୍ୱାରୀ- ଦ୍ୱାର ରକ୍ଷକ । ୫୬. ବୀଣାକାର- ବୀଣାବାଦକ । ୫୭. କାହାଳିଆ । ୫୮. ମହୁରିଆ- ତୁରୀବାଦକ । ୫୯. ଘଣ୍ଟୁଆ ଘଣ୍ଟ ବଜାଇବା ସେବକ ।୬୦. ତୁଳାବଟା/ହାଣ୍ଡି ଯୋଗାଣିଆ- ଭଣ୍ଡାରକୁ ଓ ରୋଷକୁ ହାଣ୍ଡି ଦେବା ଓ ସନ୍ଧ୍ୟାଧୂପ ଅମଣିଆ ବୁହାହେବା ବେଳେ ଦୀପ ଦେଖାଇବା । ୬୧. ଟମକିଆ- ବଜନ୍ତ୍ରୀ ବାଜାକାର । ୬୨. ନାଗରଚି । ୬୩. ନହବତୀବାଲା- ନାଗରଚି । ୬୪. ଚାଉଳବଛା । ୬୫. ଖଡ଼ିକା ସୁଆସିଆ- ଜଗମୋହନ ଓଳାଇବା । ୬୬. ନଳାହୁଗୁଡ଼ା- ନଳାର ପାଣି ସଫା କରିବା । ୬୭. ଶଙ୍ଖୁଆ । ୬୮. ମାଦଳୀ- ଦେବଦାସୀଙ୍କ ନାଟ ବେଳେ ମାଦଳ ବଜାଇବା । ୬୯.

ଦାରୀ, ମାହାରୀ, ତଳି ସେବକ - ନର୍ତ୍ତକୀ । । ୭୦. ଭିତର ଗାଉଣୀ- ଶ୍ରୀଜଗନ୍ନାଥଙ୍କ ଚନ୍ଦନଯାତ୍ରା ବେଳେ ଗୀତ ବୋଲିବା । ୭୧. ଦର୍ପଣିଆ- ପୂଜାବେଳେ ଶ୍ରୀଜୀଉଙ୍କ ଆଗରେ ଦର୍ପଣ ଦେଖାଇବା । ୭୨. ବିନ୍ଧାଣି- ବଣିଆ । ୭୩. ବଢ଼େଇ - କାଠ କାମ କରିବା, କାଠକୁ କରତରେ ଚିରିବା । ୭୪. କୁମ୍ଭାର ବିଶୋଇ- ହାଣ୍ଡି ଯୋଗାଇବା । ୭୫. ପଥୁରିଆ- ମିସ୍ତ୍ରୀ । ୭୬. କରତି । ୭୭. ରୂପକାର- ମୂର୍ତ୍ତି ଗଢ଼ିବା । ୭୮. ଚିତ୍ରକର- ରଙ୍ଗ କରିବା । ୭୯. ସୁଆଁସିଆ- ରୋଷରୁ ଛୁଆଣି ଓ ମୂଲିଆ କାମ କରିବା । ୮୦. ଚାପଦଳେଇ- ଚନ୍ଦନଯାତ୍ରା ସମୟରେ ଚାପ ଚଳାଇବା । ୮୧. ଦରଜୀ/ସିପୁଟି- ସିଲେଇ କାମ । ୮୨. ପାତ୍ର- ମାଳା ଗୁନ୍ଥିବା । ୮୩. ତଅଁରା- କଂସା ବାସନ ତିଆରି କରିବା । ୮୪. ମାହୁନ୍ତ- ହସ୍ତୀଚାଳକ । ୮୫. ଗୁଣବଳୁଆ- ଦଉଡ଼ି ବଳିବା । ୮୬. ବୋଝିଆ- କୁମ୍ଭାରଘରୁ କୁଡୁଆ ଆଣିବା । ୮୭. ଚକ୍ର ଦିହୁଡ଼ିଆ- ଚକ୍ରମଶାଲ ଧରିବା । ୮୮. ତୁଳାଭିଣା । ୮୯. ଦୋଶାଖା- ଦୁଇଶାଖାଯୁକ୍ତ ମଶାଲ ଧରିବା । ୯୦. ଖୁରିଘର ନାୟକ- ସମୟଜ୍ଞାପକ ଘଣ୍ଟା ବଜାଇବା । ୯୧. ଭଣ୍ଡାର ନାୟକ- ଭଣ୍ଡାରର ହିସାବ ଲେଖିବା । ୯୨. ତଡ଼ଉ- ମୋହରିର । ୯୩. ଦେଉଳକରଣ- ମାଦଳାପାଞ୍ଜି ଓ ହିସାବ ଲେଖିବା । ୯୪. ଚାଙ୍ଗଡ଼ାକରଣ- ଭଣ୍ଡାରର ଲାଗିବସ୍ତ୍ର ଓ ଅଳଙ୍କାର ହିସାବ ରଖିବା । ୯୫. ମଢ଼ିଆଳ ମହାସେଠୀ- ଲୁଗା କାଚିବା । ୯୬. ପାଳିଆ ମାହାର- ବେଢ଼ା ସଫା କରିବା । ୯୭. ଛତିଶା ନିଯୋଗ ନାୟକ- ଛତିଶା ନିଯୋଗମାନଙ୍କର ଅଧ୍ୟକ୍ଷ । ଏଥିରେ ପରିଛା, ପରକରଣ, ପତ୍ରୀ, ଗରାବଡୁ ଆଦି କେତେଗୁଡ଼ିଏ ନାମ ନାହିଁ । ବୋଧହୁଏ ଦେଉଳକରଣ ଓ ପରକରଣ ଏକ ପତ୍ରୀବଡୁ ଓ ପତ୍ରୀ ଏକ । ପରିଛା- ମନ୍ଦିର ପରିଚାଳନା, ସେବା, ଯାତ୍ରାଦି ତନଖିବାର ସର୍ବଶ୍ରେଷ୍ଠ ରାଜକର୍ମଚାରୀ । ବୋଧହୁଏ ୯୭ ଶ୍ରେଣୀ ମଧ୍ୟରୁ ବିଶିଷ୍ଟ ୩୬ଟି ଯୋଗୁ ଛତିଶା ନିଯୋଗର ଶବ୍ଦ ଚଳିଅଛି ।

(ପୂ.ଓ.ଭା. - ପୃ.୨୭୭୦) ।

**ଛତିଶା ନିଯୋଗ-** ୧. ପାଣିଛଡ଼ା ପଣ୍ଡା ସେବକ ସେବା, ୨. ପୁଷ୍ପାଳକ ସେବା, ୩. ଛାମୁଖୁଣ୍ଟିଆ ସେବା, ୪. ଶ୍ରୀମୁଖ ସିଂହାରୀମାନ ସେବା, ୫. ଚାଙ୍ଗଡ଼ା ମେକାପ ସେବା.୬. ଭିତର ଭଣ୍ଡାର ମେକାପ ସେବା, ୭. ଅଖଣ୍ଡ ମେକାପ ସେବା, ୮. ଶଯ୍ୟା ମେକାପ ସେବା, ୯. ସୁଆରବଡୁ ସେବା, ୧୦. ପତ୍ରୀବଡୁ ସେବା, ୧୧. ଭିତର ଗରାବଡୁ ସେବା, ୧୨. ବାହାର ଗରାବଡୁ ସେବା, ୧୩. ହଡ଼ପ ନାୟକ ସେବା, ୧୪. ପାନ ଯୋଗାଣିଆ ସେବା, ୧୫. ମୁଦୁସୁଆର ସେବା, ୧୬. ବ୍ରାହ୍ମଣ କରଟିଆ ମୁଦୁଲି ସେବା, ୧୭. ସନ୍ଧ୍ୟାଧୂପ ଜୟମଙ୍ଗଳ ଆଳତି ସେବା, ୧୮. ପ୍ରସାଦ ବଡୁ ସେବା, ୧୯. ଫୁଲବଡୁ ସେବା, ୨୦. ବିମାନବଡୁ ସେବା,୨୧. ଦରପଣିଆ ସେବା, ୨୨. ପୁରାଣପଣ୍ଡା ସେବା, ୨୩. ଧ୍ୱଜାଧରା ସେବକ ସେବା, ୨୪. ସୁନାଚନ୍ଦ୍ର ସୂର୍ଯ୍ୟ କଳାପାଟ ରୋଷ ସେବକ ସେବା, ୨୫. ଉପଚାର ଚାମର ସେବକ ସେବା, ୨୬. ଉତ୍ପାଳଟ ସେବକ ସେବା, ୨୭. ଖଦି ବିନ୍ଧିବା ସେବକ ସେବା, ୨୮. ସୁନା ବେତ ସେବକ ସେବା, ୨୯. ପାହାନ୍ତି କବାଟ ଫିଟା ସେବକ ସେବା, ୩୦. ଦଅଣାମାଳି ଗୋଛାୟତ ସେବକ ସେବା, ୩୧. ସୁନା ରୂପା ତମ୍ବା କଂସା ଯୋଗାଡ଼ ମହାସେବକ ସେବା, ୩୨. ପାଣିଆ ପାଟ ସେବକ ସେବା, ୩୩. ରତ୍ନକମ ବିନ୍ଧାଣୀ ସେବକ ସେବା, ୩୪. ସୁନାରୂପା ମାଠକମ ବିନ୍ଧାଣୀ ସେବକ ସେବା, ୩୫. ସୋଲ, ବିଡ଼ା ବିନ୍ଧାଣୀ ସେବକ ସେବା, ୩୬. ଚୂନରା ମହାରଣା ସେବକ ସେବା, ୩୭. ସିପୁଟି ମହାରଣା ସେବକ ସେବା, ୩୮. ଘଣ୍ଟ ବାଜଣା ସେବକ ସେବା, ୩୯. ବୀର କାହାଳିଆ

ସେବକ ସେବା, ୪୦. ପାହାନ୍ତି ଅବକାଶ ନିଦ୍ରାଆଳସ୍ୟ ଭାଙ୍ଗିବା ସେବକ ସେବା ବା ପାଣି ଶଙ୍ଖୁଆ ସେବକ ସେବା, ୪୧. ଧୂପ ଶଙ୍ଖ ମହୁରିଆ ସେବକ ସେବା, ୪୨. ଯୋଡ଼ି କାହାଳିଆ ସେବକ ସେବା, ୪୩. ମାଦେଳି ମୃଦଙ୍ଗ ସେବକ ସେବା, ୪୪. ଉପଙ୍ଗିଆ ସେବକ ସେବା, ୪୫. ବାଇଁସିକାର ସେବକ ସେବା, ୪୬. ଚଉଷଠି ସମ୍ପ୍ରଦା ସେବକ ସେବା, ୪୭. ମୀନନାୟକ ସେବକ ସେବା, ୪୮. ଗୀତଗାଣ ସେବକ ସେବା, ୪୯. ଯନ୍ତ୍ରକାର ସେବକ ସେବା, ୫୦. ଭବାଦି ସେବକ ସେବା, ୫୧. ବଢ଼େଇ ମହାରଣା ସେବକ ସେବା, ୫୨. କରତି ମହାରଣା ସେବକ ସେବା, ୫୩. ସୁନା ଦିହୁଡ଼ି ସେବକ ସେବା, ୫୪. ତାମ୍ବରା ମହାରଣା ସେବକ ସେବା, ୫୫. କଂସାରି ମହାରଣା ସେବକ ସେବା, ୫୬. ଅଷ୍ଟଲୋହି ମହାରଣା ସେବକ ସେବା, ୫୭. ପାଟରା ବିନ୍ଧାଣି ସେବକ ସେବା, ୫୮. ସୁଗନ୍ଧ ଘଟୁଆରୀ ସେବକ ସେବା, ୫୯. ରୋଷ ଛତିଶା ନିଯୋଗ ସେବକ ସେବା, ୬୦. ପିଠା ସୁଆର ସେବକ ସେବା, ୬୧. ବଗଡ଼ା ପିଠା ସେବକ ସେବା, ୬୨. ମହାସୁଆର ସେବକ ସେବା, ୬୩. ଖିରି ସୁଆର ସେବକ ସେବା, ୬୪. ତିଅଣ ସୁଆର ସେବକ ସେବା, ୬୫. ପଣା ସୁଆର ସେବକ ସେବା, ୬୬. ପାଚେଲି ସୁଆର ସେବକ ସେବା, ୬୭. ତୋଳାବଡୁ ସେବକ ସେବା, ପନ୍ତିବଡୁ ସେବକ ସେବା, ୬୯. ଭିତର ବେଢ଼ା ସେବକ ସେବା, ୭୦. ଭୋଗମଣୋହି ଘର ସେବକ ସେବା, ୭୧. ଘିଅ ପରସା ସେବକ ସେବା, ୭୨. ବ୍ରାହ୍ମଣ ସମର୍ଥା ସେବକ ସେବା, ୭୩. ଶୂଦ୍ର ସମର୍ଥା ସେବକ ସେବା, ୭୪. ରୋଷ ସରଘର ମେକାପ ସେବକ ସେବା, ୭୫. କୁଆଉଡ଼ା ସେବକ ସେବା, ୭୬. ତୂଳାବତୀ ସେବକ ସେବା, ୭୭. ରୋଷଦ୍ୱାର ଜଗିଆ ବ୍ରାହ୍ମଣ ପାଇକ ସେବା, ୭୮. ରୋଷ ସରଘର ଜଗିଆ ଶୂଦ୍ର ସେବକ ସେବା, ୭୯. ରୋଷ ଧୋପଖାଳିଆ ସେବକ ସେବା, ୮୦. ରୋଷ ଅଙ୍ଗାରିଆ ସେବକ ସେବା, ୮୧. ରୋଷ ଭଣ୍ଡାର ମେକାପ ସେବକ ସେବା, ୮୨. ପାହାଡ଼ାଘର ମେକାପ ସେବକ ସେବା, ୮୩. ଦୁଆର ନାୟକ ସେବକ ସେବା, ୮୪. ଛତା ସେବକ ସେବା, ୮୫. ସୁଆଁସିଆ ସେବକ ସେବା, ୮୬. ସୁଆଁସ ସରଘର ମେକାପ ସେବକ ସେବା, ୮୭. ବେଣ୍ଟ ବିନ୍ଧା ରାଉତ ସେବା, ୮୮. ଆୟା ମହାଜନ ସେବକ ସେବା, ୮୯. ଭଣ୍ଡାର ଦ୍ୱାର ସେବକ ସେବା, ୯୦. ସିଂହଦ୍ୱାର ପ୍ରତିହାରୀ ସେବକ ସେବା, ୯୧. ପରଯାତ୍ରା ପ୍ରତିହାରୀ ସେବକ ସେବା, ୯୨. ଆସ୍ଥାନ ପ୍ରତିହାରୀ ସେବକ ସେବା, ୯୩. ବୃନ୍ଦାବନ ନାୟକ ସେବକ ସେବା, ୯୪. ମଣ୍ଡଣି ଖୁଣ୍ଟିଆ ସେବକ ସେବା, ୯୫. ଚାପଦଳାଇ ସେବକ ସେବା, ୯୬. ଆରତିଆ ସେବକ ସେବା, ୯୭. ହାଟ ସେବକ ସେବା, ୯୮. ପଦ୍ମ କଦଳୀ ତୋଟା ସେବକ ସେବା, ୯୯. ତୋଟାମାନଙ୍କର ମାଳି ଚାରି ସେବକ ସେବା, ୧୦୦. କ୍ଷେତ୍ରବୈଦ୍ୟ ସେବକ ସେବା, ୧୦୧. ଶସ୍ତ୍ରବୈଦ୍ୟ ସେବକ ସେବା, ୧୦୨. ଦୁଧଘର ସେବକ ସେବା, ୧୦୩. ଦୁଧଘର ଜଗିଆ ପାଇକ ସେବା, ୧୦୪. ଭିଆଣ ନିଯୋଗ ବିଶୋଇ ସେବା, ୧୦୫. ଗଉଡ଼ ନିଯୋଗ ବିଶୋଇ ସେବକ ସେବା, ୧୦୬. କୁମ୍ଭାର ନିଯୋଗ ବିଶୋଇ ସେବକ ସେବା, ୧୦୭. ଅମୃତମଣୋହି ଖଟିବା ବିଶୋଇ ସେବକ ସେବା, ୧୦୮. ଗୁଆଟିଆ ବିଶୋଇ ସେବକ ସେବା, ୧୦୯. ପାଟହାତୀ ମାହୁନ୍ତ ସେବକ ସେବା, ୧୧୦. ଧାନଘର ସେବକ ସେବା, ୧୧୧. କୋଟାଇତ ସେବକ ସେବା, ୧୧୨. ତୁଉଣିଆ ମୁଦୁଲି ସେବକ ସେବା, ୧୧୩. ଧାନଘର ଜଗିଆ ସେବକ ସେବା, ୧୧୪. ଦେଉଳ ଆୟତନ ଭିତର ବାହାର ସେବକ ସେବା, ୧୧୫. ଗୁହାରିଆ

ପ୍ରଧାନୀ ସେବକ ସେବା, ୧୧୬. ଚକୁରିଆ ଲେଙ୍କା ସେବା, ୧୧୭. ତୀର୍ଥମାଟିଆ ସେବକ, ୧୧୮. କ୍ଷେତ୍ର ଜଗିଆ ମାଝି ସେବା, ୧୧୯. ବାଦ୍ୟକାର ସେବା, ୧୨୦. ଭୋଗ ପରୀକ୍ଷା ପଣ ସେବା ।

ସ୍ୱାଧୀନତା ପରେ ଓଡ଼ିଶା ସରକାର ୧୯୫୨ ମସିହାରେ ଶ୍ରୀମନ୍ଦିର ପରିଚାଳନା ପାଇଁ ଏକ ଆଇନ ପ୍ରଣୟନ କରିଥିଲେ । ଏହା ପୁରୀ ଜଗନ୍ନାଥ ମନ୍ଦିର ପ୍ରଶାସନ ଆଇନ ୧୯୫୨ ନାମରେ କରାଯାଇଛି । ଏହି ଆଇନ ଅନୁଯାୟୀ ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି (SriJagannath Temple Records of Rights) ପ୍ରଣୀତ ହୋଇଛି । ଏଥିରେ ୧୧୯ ପ୍ରକାର ସେବକ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ସେବା କରିବା ପାଇଁ ନିଯୁକ୍ତ ହୋଇଛନ୍ତି ।

୧. ଗଜପତି ମହାରାଜା, ୨. ପରିଛା ଓ ରାଜଗୁରୁ, ୩. ପାଟଯୋଷୀ ମହାପାତ୍ର, ୪. ଭିତରଛ ମହାପାତ୍ର, ୫. ତଳିଛ ମହାପାତ୍ର, ୬. ମୁଦିରସ୍ତ, ୭. ପୁରୋହିତ, ୮. ପୂଜାପଣ୍ଡା, ୯. ବଡପଣ୍ଡା, ୧୦. ପୁଷ୍ପାଳକ, ୧୧. ମହାଜନସେବା, ୧୨. ମୁଦ୍ରା ସେବା, ୧୩. ଖୁଣ୍ଟିଆ ସେବା, ୧୪. ଭଣ୍ଡାର ମେକାପ, ୧୫. ପାଳିଆ ମେକାପ, ୧୬. ଅଖଣ୍ଡ ମେକାପ, ୧୭. ଚାଙ୍ଗଡ ମେକାପ, ୧୮. ଖଟଶେଜ ମେକାପ, ୧୯. ପ୍ରତିହାରୀ ସେବା, ୨୦. ଦଇତା ସେବା, ୨୧. ପତି ମହାପାତ୍ର, ୨୨. ପତ୍ରିବଡୁ, ୨୩. ଗରାବଡୁ, ୨୪. ସୁଆର ବଡୁ, ୨୫. ଜ୍ୟୋତିଷ ଖୁରୀ ନାୟକ, ୨୬. ମୁଖ ପଖାଳ, ୨୭. ଘଟୁଆରୀ, ୨୮. ଗୋଛିକାର, ୨୯. ସୁନା ଗୋସ୍ୱାମୀ, ୩୦. ମୁଦୁଲି ସେବା, ୩୧. ଆଳତୀ ବଳିତା ସେବା, ୩୨. ପୁରାଣ ପଣ୍ଡା, ୩୩. ଦତ୍ତ ମହାପାତ୍ର, ୩୪. ଲୁଗାଧୁଆ ପାଣିକୁଣ୍ଡ ସେବକ, ୩୫. ବଲ୍ଲଭ ଯୋଗାଣିଆ, ୩୬. ବିମାନ ବଡୁ, ୩୭. ଅଣସର ସୁଧସୁଆର, ୩୮. ହଡପ ନାଏକ, ୩୯.ବିଡିଆ ଯୋଗାଣିଆ, ୪୦. ଖଟୁଳି ସେବକ, ୪୧. ଆସ୍ଥାନ ପଢ଼ିହାରୀ, ୪୨. କୋଠଭୋଗ ଯୋଗାଣିଆ, ୪୩. ପ୍ରଧାନୀ, ୪୪. ପାଇକ, ୪୫. ଲେଙ୍କା ସେବକ, ୪୬. ସୁଆର ମହାସୁଆର, ୪୭. ସୁଆର ନିଯୋଗ, ୪୮. ଜଗିଆ ମହାସୁଆର, ୪୯. ବଡୁ ସୁଆର, ୫୦. ପନ୍ତି ବଡୁ, ୫୧. ଅମାଲୁ ତୋଳା ପୁରଖରଡା, ୫୨. ତୋଳା ବଡୁ, ୫୩. ରୋଷ ପାଇକ, ୫୪. ବାହାରଦେଉଳି ସୁଆର, ୫୫. ବାହାର ଦେଉଳି ଯୋଗାଣିଆ, ୫୬.ରୋଷ ଧୋପଖାଳିଆ, ଅଙ୍ଗାରୁଆ, ଗୋବର ପାଣିଆ, ୫୭. ହାଣ୍ଡି ଯୋଗାଣିଆ ତୋଳାବତୀ ସେବା, ୫୮. ବରିବଟା ସମର୍ଥା, ୫୯. କୋଠଭୋଗ ପାଣିଆ, ୬୦. ପନିକିକଟା, ୬୧. ଗନ୍ଧଣ ନିକାପ, ୬୨. ବିରି ବୁହା ସେବକ, ୬୩. ଦଉଡି ବୋଳା, ୬୪. ଚୂନରା, ଗରୁଡ. ମହାଦୀପ, ଧ୍ୱଜବନ୍ଧା, ୬୫. ସାବୁତ ନିଯୋଗ, ୬୬. ପାଣିଆପଟ, ୬୭. ମଣ୍ଡଣି ସେବା, ୬୮. ଚକା ଅପସର, ୬୯, ମୂଳିଆ ସୁଆଁସିଆ, ୭୦. ବୀଣାକାର, ୭୧. ଦର୍ପଣିଆ ବଇରଖିଆ, ୭୨. କୋଠ ସୁଆଁସିଆ, ୭୩. ମହାଭୋଇ, ୭୪. ଗୀତଗୋବିନ୍ଦ, ୭୫. ଭିତର ଗାଆଣୀ ଦେବଦାସୀ, ୭୬. ସମ୍ପ୍ରଦା ନିଯୋଗ, ୭୭. ଦୟଣାମାଳି, ୭୮. ମାଦେଳି, ୭୯. ପ୍ରସାଦ ବଡୁ, ୮୦. ଡାଟୁଆ, ୮୧. ପତରବନ୍ଧା, ୮୨. ବୈଜୟନ୍ତୀ ସେବା, ୮୩. ଛତାର ସେବା, ୮୪. କାହାଳିଆ, ୮୫. ଶଙ୍ଖୁଆ, ୮୬. ପର୍ବଯାତ୍ରା ଯୋଗାଣିଆ, ୮୭. ଚିତ୍ରକାର, ୮୮. ରୂପକାର, ୮୯. ବଣିଆ ସେବକ, ୯୦. ତାମରା ବିଶୋଇ ସେବକ, ୯୧. କରତିଆ, ୯୨. ବେଣ୍ଟବିନ୍ଧା ପାଇକ, ୯୩. ପାଟରା ବିଶୋଇ, ୯୪. କଳା ବେଠିଆ, ୯୫. ଦରଜି ସେବା, ୯୬. କୁମ୍ଭାର ବିଶୋଇ, ୯୭. ରଥଭୋଇ ସେବକ, ୯୮. ମାଳଚୂଳ, ୯୯. ବାଣୁଆ, ୧୦୦. ଚକ୍ର ଦିହୁଡିଆ, ୧୦୧. ଓଝା ମହାରଣା, ୧୦୨. ଘଣ୍ଟସେବା, ୧୦୩. ଘଣ୍ଟୁଆ, ୧୦୪. ରଥ ଡାହୁକ, ୧୦୫. ବଢ଼େଇ

ସେବକ, ୧୦୬. ବୈଦ୍ୟ ସେବକ, ୧୦୭. ଅମୋଣିହା ଛତାର ସେବକ, ୧୦୮. ଛାମୁ ଦିହୁଡ଼ିଆ, ୧୦୯. ଚାପ ବେହେରା ଦଳେଇ, ୧୧୦. ଚାପ ଦଳେଇ, ୧୧୧. ମାପ ସାଇତା କରଣ ସେବକ, ୧୧୨. ତଡ଼ାଉ କରଣ, ଭଣ୍ଡାର କରଣ, ଚାଙ୍ଗଡା କରଣ, ଶିଠ କରଣ, ଧ୍ୱଜା କାମକରଣ, ୧୧୩. ଦେଉଳ କରଣ, ୧୧୪. ବଇଠି କରଣ, ୧୧୫. କୋଠ କରଣ, ୧୧୬. ଚର୍ଚ୍ଚାଇତ କରଣ, ୧୧୭. ଦୟଣା ପତ୍ରୀ ସେବା, ୧୧୮. ଚାଉଳ ବଛା କରଣ ସେବକ, ୧୧୯. ବ୍ୟକ୍ତିଗତ ସେବା, ୧୨୦. ବେହେରା କରଣ ସେବା ।

୧୯୫୨ ମସିହାରେ ପ୍ରସ୍ତୁତ କରାଯାଇଥିବା ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ୧୧୯ ପ୍ରକାର ସେବା ଥିବା ସ୍ୱତ୍ୱଲିପିରେ ପ୍ରକାଶିତ ହୋଇଅଛି । ଏଥିରେ ଉଲ୍ଲେଖ ହୋଇନ ଥିବା ବେହେରାକରଣ ସେବାକୁ ୧୯୮୮ ମସିହାରେ ପୁନଃ ପ୍ରଚଳନ କରାଯାଇଛି । ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି ମୁତାବକ ୧୨୦ ପ୍ରକାର ସେବା ଓ ସେବକଙ୍କ ତାଲିକାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ତନ୍ମଧ୍ୟରୁ ଅନେକ ସେବା ବର୍ତ୍ତମାନ ବିଲୁପ୍ତ ହୋଇଛି । ଉଦାହରଣସ୍ୱରୂପ ଖଟୁଲି ସେବା, ପାଇକ ସେବା, ଗୀତଗୋବିନ୍ଦ ସେବା, ପରିଛା ସେବା, ବୀଣାକାର ସେବା, ସୁଆର ନିଯୋଗ ନାୟକ, ପନିକିପଟା ସେବା, ଭିତରଗାଆଣୀ ଦେବଦାସୀ, ସମ୍ପ୍ରଦା ନିଯୋଗ, ମାଦେଳି ସେବା, ପତରବନ୍ଧା ସେବା, ବୈଜୟନ୍ତୀ, କଳାବେଠିଆ, ଶଙ୍ଖୁଆ ସେବା, କୁମ୍ଭାର ବିଶୋଇ, ବାଣୁଆ ସେବା, ମାପସାଇତାକରଣ ସେବା, କୋଠକରଣ, ଚର୍ଚ୍ଚାଇତକରଣ, ଦଉଡ଼ିବୋଲା ସେବା ବହୁଦିନ ହେଲା ବନ୍ଦ ହୋଇଯାଇଛି । ଏହିସବୁ ସେବାର ବିଲୁପ୍ତ ପଛରେ ଅନେକ କାରଣ ଥିଲେ ମଧ୍ୟ ତନ୍ମଧ୍ୟରୁ ମୁଖ୍ୟ କାରଣ ହେଉଛି ବଂଶର ଉତ୍ତରାଧିକାରୀ ନ ଥିବା, ଆର୍ଥିକ ଦୁରବସ୍ଥା, ଜାଗିର ଓ ଅନ୍ୟାନ୍ୟ ଭୂସମ୍ପତ୍ତି ସ୍ୱତ୍ୱଲିପିର ପ୍ରଚଳନ ଠାକୁରଙ୍କ ନୀତିରେ ବିଭ୍ରାଟ ସୃଷ୍ଟି ହେବା ଏବଂ ନୀତି ବନ୍ଦ ହେବା । (ଶ୍ରୀମନ୍ଦିର ସ୍ୱତ୍ୱଲିପି) ।

**ଛତିଶାନିଯୋଗ(ରଥ)**-*ଦେ.ବି.*- ଶ୍ରୀମନ୍ଦିର ପରିଚାଳନାରେ ପାଟଯୋଶୀ ମହାପାତ୍ର ଓ ଭଣ୍ଡାର ନାୟକଙ୍କର ପୂର୍ବେ ବହୁତ କ୍ଷମତା ଥିଲା । ବର୍ତ୍ତମାନ ତାହାର ଅଧିକାଂଶ ଲୋପ ହୋଇଛି । ସେ ପୁଷ୍ପାଳକ ଶ୍ରେଣୀ ସେବକ ଅଟନ୍ତି । ମନ୍ଦିର କର୍ତ୍ତୃପକ୍ଷଙ୍କ ସମସ୍ତ ଆଦେଶ ତାଲିମ କରିବା ଓ ସେବକମାନଙ୍କ କାର୍ଯ୍ୟ ତଦାରଖ ଏହାଙ୍କ କର୍ତ୍ତବ୍ୟର ପରିସର ଅଟେ । ସେ ମଧ୍ୟ ଶାଢ଼ୀ ବନ୍ଧା କାର୍ଯ୍ୟ ସମ୍ପନ୍ନ କରନ୍ତି । ଶ୍ରୀ ଜଗନ୍ନାଥଙ୍କର ବିଭିନ୍ନ ଯାତ୍ରା, ପର୍ବପର୍ବାଣି, ଭୋଗକାର୍ଯ୍ୟ ଇତ୍ୟାଦି ସେବା ନିର୍ବାହ କରିବା ପାଇଁ ବିଭିନ୍ନ ନିଯୋଗ ସମ୍ପ୍ରଦାୟ ରହିଅଛନ୍ତି । ମନ୍ଦିର ସମ୍ପର୍କୀୟ ବିଭିନ୍ନ ପ୍ରାମାଣିକ ଗ୍ରନ୍ଥରେ ସେମାନଙ୍କର ସୂଚନା ମଧ୍ୟ ପ୍ରଦାନ କରାଯାଇଅଛି ।

ରଥ ଛତିଶା ନିଯୋଗ- ଅନଙ୍ଗଭୀମଦେବ ରଥ ଛତିଶା ଖଞ୍ଜିଥିଲେ । ସେମାନେ ହେଲେ- ୧. ରଥକାର ନାୟକ, ୨. ତଳ ବଢ଼େଇ, ୩. ଭାଇ ବଢ଼େଇ, ୪. ରୂପଖଞ୍ଜା ବଢ଼େଇ, ୫. ମୁଣ୍ଡିମରା ମହାରଣା, ୬. ଡାମରା, ୭. କରତିଆ, ୮. ଗରଗରିଆ, ୯. ଦିହୁଡ଼ିଆ, ୧୦. ପିଣ୍ଡିକିଆ, ୧୧. ଜୟଶାଳିଆ, ୧୨.ଖୁଣ୍ଟିଆ, ୧୩. ପହଣ୍ଡିଆ, ୧୪. ଦୋଳିଆ, ୧୫. ଜଗିଆ, ୧୬. ବଡ଼କାଠିଆ, ୧୭. ରଥଜଗିଆ, ୧୮. ରଥଘଣ୍ଟୁଆ, ୧୯. ରଥ ମୁଦୁଲି, ୨୦. ରଥ ବଜନ୍ତ୍ରୀ, ୨୧. ରଥ ଖରକା, ୨୨. ରଥ ଦଳାଇ, ୨୩. ରଥ ଭୋଇ, ୨୪. ରଥ ଗାଇକ, ୨୫. ଚୋପଦାର, ୨୬. ଚିତ୍ରକାର, ୨୭. ଧ୍ୱଜକାର, ୨୮. ଛତ୍ରକାର, ୨୯. ଚକଅପସର ଯୋଗିଆ, ୩୦. ଦରଜୀ, ୩୧. ସୂତଲୀ, ୩୨. କମାରକଣ୍ଟା, ୩୩. ଦଉଡ଼ିବଳା, ୩୪. ଚାପଦଳାଇ, ୩୫. ବଇଠାରୁ, ୩୬. ଡାହୁକ । (ଉତ୍କଳ ପ୍ରସଙ୍ଗ ରଥ ବିଶେଷାଙ୍କ ୧୯୯୯) ।

ଉପରୋକ୍ତ ଛତିଶା ଷଷ୍ଠିଶାରେ ପରିଣତ ହୋଇଅଛି ।

୧. ଅବିରଜଳା ନାୟକ- ଚୈତ୍ର କୃଷ୍ଣ ୨ୟା ଦିନ ଦଶପଲ୍ଲାର ରାଜବାଟିକୁ ଦୋଳ ଅବିର ନେଇ ଯାଆନ୍ତି । ୨. କାଠକଟା ନାୟକ- ପୁରୀ ନଅରରୁ କାଠ ଯୋଗାଣ ନିମିତ୍ତ ହୁକୁମନାମା ନେଇ ଦଶପଲ୍ଲା ଯାଆନ୍ତି । ୩. ଚର୍ଚ୍ଚାଇତ ପାଇକ- ଜଗନ୍ନାଥଙ୍କ ଧ୍ୱଜା, ଧଣ୍ଡାମାଳ ମହାପ୍ରସାଦ ଆଦି ନେଇ ଦଶପଲ୍ଲା, ରଣପୁର ଅରଣ୍ୟର ଅରଣ୍ୟ ନାୟକଙ୍କୁ କାଠ କାଟିବା ପାଇଁ ଅନୁମତି ଦିଅନ୍ତି । ୪. କଟାଳି ନାୟକ- ଶୁଭଦିନ ଦେଖି କାଠ କାଟନ୍ତି । ୫. ପଟାଳି ଲେଙ୍କା- ମହାପ୍ରସାଦ, ଖଣ୍ଡୁଆ ପତାକାଦି ନେଇ ପୂର୍ବରୁ କାଠକଟାସ୍ଥଳୀକୁ ଯାଇଥାଆନ୍ତି । ୬. ଭେଳାଦଳାଇ- ଶୁଭ ମୁହୂର୍ତ୍ତରେ କାଠଭେଳା ବାନ୍ଧନ୍ତି । ୭. ପଟାଳି ଦଳାଇ- ଶ୍ରୀଜଗନ୍ନାଥଙ୍କ ପତାକା ନେଇ ନଈରେ ପଟାଳି ଛାଡ଼ନ୍ତି । ୮. ପଟାଳି ଘଣ୍ଟୁଆ- ପଟାଳି ଉପରେ ଘଣ୍ଟ ବଜାଇ ଆଣନ୍ତି । ୯. କାଠ ଗଣତିଆ- ରଥକାଠ ପୁରୀରେ ଲାଗିଲେ ଗଣତି କରି କୂଳରେ ସଜାଇ ରଖନ୍ତି । ୧୦. ପଟାଳି ଜଗିଆ- ରୋକାଦଣ୍ଡାରେ ପଟାଳି ବାନ୍ଧନ୍ତି ଓ ନଈରେ ଭାସି ନ ଯିବା ପାଇଁ ଘାଟରେ ବାନ୍ଧନ୍ତି । ୧୧. ମଠଶଗଡ଼ିଆ- ଏମାର, ରାଘବଦାସ, ଓଡ଼ିଆ ଆଦି ମଠର ଶଗଡ଼ିଆ କାଠକୁ ମହାଖଳାକୁ ଆଣନ୍ତି । ୧୨. ପାଳିଆ ଗଡ଼ନାୟକ- ଆବଶ୍ୟକ ହେଲେ ହାତୀ ଶୁଣ୍ଢରେ ନଈରୁ କାଠ ଉଠାଇ କୂଳରେ ରଖନ୍ତି । ୧୩. ଛାମୁଡିଆ ସୁଆଁସିଆ- ମହାଖଳାରେ ଛାମୁଡିଆ ବାନ୍ଧନ୍ତି । ୧୪. ମହାଖଳା ପାଳକ । ୧୫. ମହାଖଳା ନାୟକ- ଚକ୍ର, ହଳ ଓ ପଦ୍ମଚିହ୍ନ ଦେଇ କାଠଗୁଡ଼ିକ ଅଲଗା ଅଲଗା କରନ୍ତି । ୧୬. ମହାଖଳା ଅମିନ- ରଥକାରଙ୍କ କାର୍ଯ୍ୟ ତଦାରଖ କରନ୍ତି । ୧୭. ମହାଖଳା ପରିଛ ଶାସ୍ତ୍ରାନୁସାରେ ରଥର ବିଭିନ୍ନ ଅବୟବ ପାଇଁ କାଠ ଠିକ୍ କରନ୍ତି । ୧୮. ମହାକାଠ ଦିହୁଡ଼ିଆ । ୧୯. ଅନୁକୂଳ ମହାରଣା (୩ଜଣ)- ଅକ୍ଷୟ ତୃତୀୟା ଦିନ ରଥ ଅନୁକୂଳ ପାଇଁ ୩ଟି କାଠ ରଖନ୍ତି । ୨୦. ବାଡ଼ ବଢ଼େଇ- କାଠ ଗଣତି କରି ପୃଥକ୍ ଭାବେ ସଜାଇ ରଖନ୍ତି । ୨୧. ପାହି ମହାରଣା- ବାର ଅନୁସାରେ କାମ କରିବାକୁ ନଳାକୁ ନଳା କାଠ ଖଞ୍ଜି ରଖନ୍ତି । ୨୨. ଭାଇ ମହାରଣା- ପୁରୀ ପାଖ ଗ୍ରାମରୁ ଆସି ବଞ୍ଚା କାଠ ଖାଉଟି ଦ୍ରବ୍ୟାଦି ସାମାନ୍ୟ ପାରିଶ୍ରମିକ ନେଇ ରଥ ନିର୍ମାଣରେ ସହାୟତା କରନ୍ତି । ୨୩. ତୁମ୍ବକଟା ମହାରଣା- ତୁମ୍ବ ମହାରଣା ତୁମ୍ବ ନାଳୀ ଫିଟାନ୍ତି । ୨୪. କରତିଆ ନାୟକ- କରତୀ ସାହିର ବାସିନ୍ଦା । ହାତ କରତରେ ରଥକାଠ ଚିରନ୍ତି । ୨୫. ଓଲମ ଭେଣ୍ଡିଆ- ରଥ ନିୟାମକ ନିୟମିତ କାଠ ପ୍ରସ୍ତୁତ କରନ୍ତି । ୨୬. ନାହକା ବସାଣ- ଖୁଣ୍ଟ ତିଆରି କରି ରଥରେ ବସାନ୍ତି । ୨୭. ରଥ ଭୋଇ ନାୟକ- ଏମାନେ ବାଉରୀ ବଢ଼େଇକୁ କାଠ ଯୋଗାଇ ଦିଅନ୍ତି । ୨୮. ବାଡ଼ଭୋଇ- ପ୍ରତିବାଡ଼ରେ କାର୍ଯ୍ୟ କରୁଥିବା ଭୋଇ । ୨୯. ଛେକା କାଠିଆ- ମାପ ଆବଶ୍ୟକତା ଅନୁଯାୟୀ ରଥକାଠ ଛେକ ଲଗାଇ ସଜାଇ ରଖୁଥିବା ଭୋଇ । ୩୦. ଜନ୍ତା ଭେଣ୍ଡିଆ- ଜନ୍ତାର ଅର୍ଥ ଯେଉଁ ଖାଲରେ ଚକ କଷା ଯାଏ । ୩୧. ସାଙ୍ଗୀ ନାୟକ- ଏମାନେ କାଠ, ତୁମ୍ବ ଓ ଚକ ଆଦି ଦଉଡ଼ିରେ ବାନ୍ଧି ବାଉଁଶ ସାହାଯ୍ୟରେ କାନ୍ଧରେ ନିଅନ୍ତି । ୩୨. ଜନ୍ତାକୋରା ମୁଣ୍ଡିଆ- ଜନ୍ତା କୋରା ମୁଣ୍ଡିଆରେ ଚକ ଛେକନ୍ତି । ୩୩. ମାଲ ସୁଆଁସିଆ- ମାଲବୋହି ଯଥାସ୍ଥାନରେ ରଖନ୍ତି । ୩୪. କୋଠ ସୁଆଁସିଆ- ସବୁପ୍ରକାର ଅସ୍ଥାୟୀଶାଳା, ଛାମୁଣ୍ଡିଆ, ଚାରମାଳ ରଥଖଳାରେ ଛାମୁଣ୍ଡିଆ ବାନ୍ଧନ୍ତି ଓ ଚାନ୍ଦୁଆ ବାନ୍ଧନ୍ତି । ୩୫. କମାର କଣ୍ଟା ଓଝା ନାୟକ- ଲୁହାକଣ୍ଟା, ଚକାବଳା, ଦୋମୁଖା, କୁରାଣ୍ଡିଆ ପ୍ରଭୃତି ମହାଫଳାର ଅସ୍ଥାୟୀ ଖଳାରେ ତିଆରି କରି ଯୋଗାନ୍ତି । ୩୬. କୋରାମୁଣ୍ଡିଆ- କାଠ କୋରାମୁଣ୍ଡିଆ

ପ୍ରୟୋଗ କରି ରଥର ଚକ ଓ ଅନ୍ୟାନ୍ୟ ଅଙ୍ଗକୁ ସଜାଡ଼ନ୍ତି । ୩୭. ରୂପକାର । ୩୮. ରୂପ ଖଞ୍ଜା ବଢ଼େଇ । ୩୯. ଚିତ୍ରକାର- ରଥର ବିଭିନ୍ନ ଅଂଶରେ ଚିତ୍ର କରନ୍ତି, ୪୦. ଦରଜୀ ନିଯୋଗ ନାୟକ- ରଥର ମଣ୍ଡଳି, ଚାନ୍ଦୁଆ ଘେର ଧ୍ୱଜ ନେତ ତିଆରି କରନ୍ତି । ୪୧. ମଣ୍ଡଣି- ରଥରେ ମଣ୍ଡନ କରନ୍ତି । ୪୨. ଜଉଶାଳିଆ- କାଠି, ଅର, ଫରୁଆରେ ଜୟଶାଳା ରଙ୍ଗ ଦିଅନ୍ତି । ୪୩. ଦତ୍ତ ମହାପାତ୍ର । ୪୪. ରଙ୍ଗଣ ନାୟକ- ଜରି ଜମ୍ଭୁରାରେ ରଥ ମଣ୍ଡନ କରନ୍ତି । ୪୫. ବଳା ଆଣ୍ଟିଆ- ରକ୍ଷିପଟାରୁ ପାରାଭାଡ଼ି ପର୍ଯ୍ୟନ୍ତ ବାଉଁଶ ଛେକନ୍ତି । ୪୬. ସୁଦ ସୁଆର ନାୟକ । ୪୭. ଦଉଡ଼ିବଳା ପାତ୍ର- ରଥ ଦଉଡ଼ି ବଳି ଯୋଗାନ୍ତି । ୪୮. ପାଟଡୋରି ନାୟକ- ଅହ୍ଲୁଣିଆ ଲାଗି ପାଟଡୋର ବୋଳି ଯୋଗାନ୍ତି । ୪୯. ରୁଦ୍ଧାଫଟା ବେଦନାୟକ- ଏମାନେ ରୁଦ୍ଧଫିଟା ପୂର୍ଣ୍ଣ କରି ବହନାଦି କାର୍ଯ୍ୟ କରନ୍ତି । ୫୦. ଅହ୍ଲୁଣିଆ ମହାରଣା ନାୟକ- ସେନାପଟା ବାହୁଟ ଛନ୍ଦନ୍ତି । ୫୧. ତାମ୍ବରା ନାୟକ- ତମ୍ବାରେ ବାହୁଟ ପଟାକୁ ସଂଯୋଗ କରନ୍ତି । ୫୨. ବକୁଳବନ ପାହି ମହାରଣା- ସାକ୍ଷୀଗୋପାଳ ବକୁଳବନରୁ କାଠ କାଟି ଯୋଗାନ୍ତି । ୫୩. ଘୋଷ ଘଣ୍ଟୁଆ- ପୁରୀର ଓ ଘଣ୍ଟିମୁଣ୍ଡାର ଘଣ୍ଟୁଆମାନେ ରଥରେ ପହଣ୍ଡି ପକାନ୍ତି । ୫୪. ଡାହୁକ । ୫୫. କମାଣି । ୫୬. କଳାବେଠିଆ । ୫୭. ଖରକା- ସେବାସ୍ଥଳ ବହିର୍ଦେଶ ଓ ରଥଦାଣ୍ଡ ପରିଷ୍କାର କରନ୍ତି । ୫୮. ଆରତ ଜଗିବା- ରଥ ଚଳାଇବା ବେଳେ ରଥର କୌଣସି ଅଂଶ ଭାଙ୍ଗିଲେ ସଙ୍ଗେ ସଙ୍ଗେ ମରାମତି କରିବା । ୫୯. ଖୁରୁଗିଆ- ରଥ କୌଣସିଠାରେ ଅକଡ଼ ପଡ଼ିଲେ ମାଟି କାଢ଼ି ଚକକୁ ଠିକ୍ ବାଟରେ ପକାଇବା । ୬୦. ମହଣପାଗିଆ ନାୟକ- ରଥର କନକମୁଣ୍ଡାଇରୁ ପାଣି ନ ଯୋଗାଇବା ପାଇଁ ନାଭି କନାରେ ମହଣ, ଝୁଣା ଗିଲାପ ଦେଇଥାଆନ୍ତି । (ପ୍ରା.ଉ. - ପୃ. ୫୨୨) ।

**ଛତିଶା ନିଯୋଗ (ରୋଷ)-** ୧. ପିଠା ସୁଆର, ୨. ବଗଡ଼ା ପିଠା ସୁଆର, ୩. ମହାସୁଆର, ୪. ଖିରି ସୁଆର, ୫. ତିଅଣ ସୁଆର, ୬. ପଣା ସୁଆର, ୭. ପାଚେଳି ସୁଆର, ୮. ତୋଳାବଡୁ ସୁଆର, ୯. ପନ୍ତିବଡ଼ା, ୧୦. ବଡୁ, ୧୧. ଭିତର ବଡ଼ ସେବକ, ୧୨. ଘିଅ ପରସା ସେବକ, ୧୩. ବ୍ରାହ୍ମଣ ସମର୍ଥା, ୧୪. ଶୂଦ୍ର ସମର୍ଥା, ୧୫. ରୋଷଘର ମେକାପ, ୧୬. କୁଆ ଅଡ଼ା ସେବକ, ୧୭. ତୋଳାବଟୀ ସେବକ, ୧୮. ରୋଷଦ୍ୱାର ଜଗିଆ, ୧୯. ବ୍ରାହ୍ମଣ ପାଇକ, ୨୦. ଶୂଦ୍ର ପାଇକ, ୨୧. ରୋଷ ଧୋପଖାଳ ପାଇକ, ୨୨. ରୋଷ ଅଙ୍ଗାରିଆ ସେବକ । ଏତିକି ସେବକଙ୍କ ତଥ୍ୟ ରୋଷ ଛତିଶା ନିଯୋଗ ପ୍ରସଙ୍ଗରେ ପ୍ରଦତ୍ତ । (ପୂ.ଓ.ଭା. - ୨୭୬୯) ।

**ଛତିଶାନିଯୋଗ ନାଏକ-**ଦେ.ବି.- ପଟ୍ଟଯୋଶୀ ମହାପାତ୍ର ଛତିଶା ନିଯୋଗ ନାଏକ ଭାବେ ପ୍ରତ୍ୟହ ମଙ୍ଗଳ ଆଳତି ପୂର୍ବରୁ ବେହରଣକୁ ଆସି ଶ୍ରୀଜୀଉଙ୍କ ନୀତି ଓ ସେବା ସୂଚାରୁ ରୂପେ ପରିଚାଳନା କରିଥାଆନ୍ତି । କାର୍ଯ୍ୟ, ନୀତି ବା ସେବାରେ କୌଣସି ତ୍ରୁଟି ହେଲେ କର୍ତ୍ତୃପକ୍ଷଙ୍କୁ ଜଣାଇଥାଆନ୍ତି । ସେବାୟତମାନଙ୍କୁ ବାସନ୍ଦ, ଜୋରିମାନା ବା ଅନ୍ୟ ଆଦେଶ ଜାରି କରଥାଆନ୍ତି ।

**ଛତ୍ର-**ଦେ.ବି.- ଅନ୍ନ ଜଳାଦି ଦାନ ବ୍ୟବସ୍ଥା । ଯଜ୍ଞ । ଜଳଛତ୍ର । ଛତ୍ର ଆଚ୍ଛାଦନ, ଆବରଣ । ଅନ୍ନଛତ୍ର, ଜଳଛତ୍ର, ମେଳା, ଧର୍ମଶାଳା । ଯେଉଁ ସ୍ଥାନରେ ସମସ୍ତଙ୍କର ପ୍ରବେଶ ଅଧିକାର ଓ ଭୋଗାଧିକାର ଅଛି । ରାଜା ବା ଠାକୁରଙ୍କ ଉପରେ ଅଳଙ୍କାର ରୂପେ ଖଞ୍ଜାଯିବା ସୁନା ଓ ରୂପାର ଛତି । (ପୂ.ଓ.ଭା. - ପୃ. ୨୭୭୩, ପୁ.ବୋ.- ପୃ.୨୦୦, କ୍ରମବିକଶିତ ଓ.ସାଂ.ଶ. - ପୃ.୩୩୨, ପ୍ର.ଅ. ୧ମ- ପୃ.୯୧୭) ।

**ଛତ୍ରତରାସ-**ଦେ.ବି.- ପର୍ବପର୍ବାଣି ଓ ଯାନିଯାତ୍ରାରେ ଛତି ଧାରଣ କରୁଥିବା ସେବକକୁ

କୁହାଯାଏ ଛତ୍ର ତରାସ । ଯେଉଁ ଛତ୍ର (ଛତା) ସୂର୍ଯ୍ୟଙ୍କ ତ୍ରାସ (ରୋସ)ରୁ ରକ୍ଷାକରେ । (ଶ୍ରୀ.ସ୍ୱ. ୩ୟ - ପୃ. ୧୫) ।

**ଛତ୍ରଭୋଗ**-*ଦେ.ବି.*- ଯାତ୍ରୀ ଯଜମାନ ଅତିଥି, ସାଧୁ, ସନ୍ନ୍ୟାସୀ ବ୍ରାହ୍ମଣ ବୈଷ୍ଣବ ତଥା ଅଭ୍ୟାଗତମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଭୋଗମଣ୍ଡପରେ ହେଉଥିବା ଭୋଗ । ଏହି ଭୋଗ ଗରୁଡ଼ ସ୍ତମ୍ଭ ପଛରେ ଭୋଗ ମଣ୍ଡପରେ ହୁଏ । ଏହି ଭୋଗ ମଠ ସୁଆର ଓ ଅନ୍ୟାନ୍ୟମାନଙ୍କ ବରାଦ ଅନୁଯାୟୀ ହୁଏ । ଏହାକୁ ମଧ ଭୋଗମଣ୍ଡପ ଧୂପ କୁହାଯାଏ । ଏହି କାର୍ଯ୍ୟ ପାଇଁ ତେରଜଣ ସେବକ ଆବଶ୍ୟକ ହୋଇଥାନ୍ତି । ଏହି ଭୋଗ ପଞ୍ଚୋପଚାରରେ ପୂଜା କରାଯାଏ । ଏହି ଭୋଗ ନିମନ୍ତେ ତିନିଜଣ ପୂଜାପଣ୍ଡା ଉତ୍ତରାଭିମୁଖୀ ହୋଇ ପଛକୁ ପଛ ବସନ୍ତି । ମହାପ୍ରଭୁଙ୍କ ବାଡ଼ (ଶ୍ରୀଜଗନ୍ନାଥ)ରେ ପୂଜାପଣ୍ଡା ଆଗରେ ତାଙ୍କ ପଛରେ ସୁଭଦ୍ରାଙ୍କ ବାଡ଼ରେ ପୂଜାପଣ୍ଡା ଓ ତାଙ୍କ ପଛରେ ବଳଭଦ୍ରଙ୍କ ପୂଜାପଣ୍ଡା ବସି ପୂଜା କରନ୍ତି । ଛତ୍ରଭୋଗ ସମୟରେ ଟେରା ବନ୍ଧା ହୁଏ ନାହିଁ । ବୀଣାଦି ବାଦ୍ୟ ବାଜେ ନାହିଁ । ପୁରାଣପଣ୍ଡା ପୁରାଣ ପଢ଼ନ୍ତି ନାହିଁ । ଏ' ଧୂପରେ କିଛି ନିର୍ଦ୍ଦିଷ୍ଟ ଭୋଗ ମଧ ନାହିଁ । ଯେ ଯାହା ସମର୍ପଣ କଲା ତାହା ଭୋଗ ହୁଏ । ଓଡ଼ିଶା ବଙ୍ଗଳା ସୀମାବର୍ତ୍ତୀ ଏକ ସ୍ଥାନ । (ଶ୍ରୀ.ସ୍ୱ. ୨ୟ - ପୃ. ୨୨) ।

**ଛତ୍ର ମଣ୍ଡପ**-*ଦେ.ବି.*- ଛତ୍ର ମଣ୍ଡପକୁ ଭୋଗ ମଣ୍ଡପ ମଧ କୁହାଯାଏ । (ପୁ.ବୋ. - ପୃ.୨୭୪) ।

**ଛପନ ଭୋଗ**-*ଦେ.ବି.*- ୧. ଅଟକାଳି, ୨. ଅମାଲୁ, ମାଲପୁଆ, ୩. ଆରିସା- ପାଗ ଆରିସା, ସୁଆର ଆରିସା, ସାନ ଆରିସା, ବଡ଼ ଆରିସା, ତାଟ ଆରିସା, ୪. ଏଣ୍ଡୁରି, ନକ୍ଷତ୍ର ଏଣ୍ଡୁରି, ମୁଆଁ ଏଣ୍ଡୁରି, ୫. କଦମ୍ବା କଡ଼ମ୍ବା, ୬. କାକରା, ସରକାକରା, ବଡ଼କାକରା, ସାନକାକରା, ୭. କାନ୍ତି- ଚନ୍ଦ୍ରକାନ୍ତି, ବଡ଼କାନ୍ତି, ସାନ କାନ୍ତି, ୮. କେଳି - ହଂସକେଳି, ୯. କୋରା- ବଲ୍ଲଭ କୋରା, ଶ୍ରୀହସ୍ତ କୋରା, ୧୦. ଖଇରଚୂଳ, ୧୧. ଖଜା- ଅରଖଫୁଲିଆ ଖଜା, କୁରୁଜାତକ ଖଜା, ପାରିଜାତକ ଖଜା, ମେଣ୍ଢାସିଙ୍ଗିଆ ଖଜା, ସରସଟା ଖଜା, ଚଢ଼େଇଲଦା (ନେଦା) ଖଜା, ଅଧାଚଢ଼େଇନେଦା ଖଜା, ୧୨. ଖିରି, ସେବତି ଖିରି, ବୁନ୍ଦିଆ ଖିରି, ୧୩. ଖିରିସା- ବଡ଼ ଖିରିସା, ୧୪. ଖୁରୁମା, ଲୁଣ ଖୁରୁମା, ୧୫. ଖେଚୁଡ଼ି- କାନିକା ଖେଚୁଡ଼ି, ଲୁଖୁରା ଖେଚୁଡ଼ି, ଅଙ୍ଗବାସ ଖେଚୁଡ଼ି, ଓଳି ଖେଚୁଡ଼ି, ସାନଓଳି ଖେଚୁଡ଼ି ଓ କର୍ମାବାଇ ଖେଚୁଡ଼ି, ୧୬. ଗଇଣ୍ଠା, ୧୭. ଗଜା- ସାନଗଜା, ବଡ଼ଗଜା, ୧୮. ଗୋଟାଳି, ୧୯. ଚକଟା- କଦଳୀ ଚକଟା, ଛେନା ଚକଟା, ୨୦. ଚକୁଳି- ସରୁ ଚକୁଳି, ବଡ଼ ଚକୁଳି, ମାଠ ଚକୁଳି, ୨୧. ଚିଡୋଉ, ୨୨. ଛୁଞ୍ଚିପତ୍ର, ୨୩. ଜଗନ୍ନାଥ ବଲ୍ଲଭ, ୨୪. ଜେନାମଣି, ୨୫. ଝିଲି- କାକତୁଆଝିଲି, ବଡ଼ଝିଲି, ସାନଝିଲି, ସେବତୀଝିଲି, ୨୬. ଟାକୁଆ, ୨୭. ଡାଲିମ୍ବ ନ୍ନଭଙ୍ଗା), ୨୮. ତାଡ଼ିଆ- ଛେନା ତାଡ଼ିଆ, ୨୯. ତ୍ରିପୁରୀ, ୩୦. ଧଉଳା - ପୁଷ୍ପାଳକ ଧଉଳା, ସାନ ଧଉଳା, ୩୧. ନାଡ଼ି- ବଡ଼ନାଡ଼ି, ସାନ ନାଡ଼ି, ପଟ ନାଡ଼ି, ଘିନାଡ଼ି, ୩୨. ପଣସୁଆ, ୩୩. ପଣା- ସରପଣା, ଛେନାମରିଚ ପଣା, ୩୪. ପାଚିଡ଼ି- ଅଦା ପାଚିଡ଼ି (ମୂଳା, ମଞ୍ଜା, ଅମୃତଭଣ୍ଡା, ପାଣିକଖାରୁ), ୩୫. ପାପୁଡ଼ି- ସରପାପୁଡ଼ି, ୩୬. ପାଲୁଅ - ପାଲୁଅ ପଖାଳ, ପାଲୁଅ ଖିରି, ପାଲୁଅ କଟା, ପାଲୁଅ ମଣ୍ଡା, ୩୭. ପଖାଳ- ଦହି ପଖାଳ, ଟଭା ପଖାଳ, ୩୮. ପିଠା- ପୋଡ଼ପିଠା, ବଡ଼ପିଠା, ସାନ ପିଠା, କଦଳୀ ପିଠା, ମହାବୀର ପିଠା, ଭୋଗ ପିଠା, ସୁଆର ପିଠା, ଖଡ଼ିକାମରା ପିଠା, ଛେନା ପିଠା, କାନ୍ତି ପିଠା, ସାତପୁରୀ ପିଠା, ୩୯. ପୁରୀ- ଚଉତା ପୁରୀ, ବଡ଼ ପୁରୀ, ୪୦. ପୁଳି- ସରପୁଳି, କଅଁଳପୁଳି, ମାଠ ପୁଳି, ଚଣ୍ଡ ମାଠପୁଳି, ପିଠାପୁଳି, ମିଠାପୁଳି, ସାନପୁଳି,

୪୧. ଫେଣି- ଲୁଣ ଫେଣି, ବଡ଼ ଫେଣି, ୪୨. ବଡ଼ା- ବଡ଼ବଡ଼ା, ସାନବଡ଼ା, ୪୩. ବଳୀବାମନ, ୪୪. ଭଜା- ସରଭଜା, ୪୫. ମଣ୍ଡା- ଖୁଆମଣ୍ଡା, ଖଣ୍ଡମଣ୍ଡା, ସରମଣ୍ଡା, ଅତରଛମଣ୍ଡା, ଉଦୁରୁଛିମଣ୍ଡା, ଫେଣିମଣ୍ଡା, ୪୬. ମନୋହର- ତାଟ ମନୋହର, ଭୋଗମନୋହର, ସୁଆର ମନୋହର, ୪୭. ମହାଦେଈ, ୪୮. ମାଣ୍ଡୁଅ- ଛେନା ମାଣ୍ଡୁଅ, ୪୯. ମୋହନଭୋଗ, ୫୦. ରସାବଳୀ- ଅମୃତ ରସାବଳୀ, ଅମୃତ ଦୁଧ ରସାବଳୀ, ୫୧. ରାଧାବଲ୍ଲଭୀ, ୫୨. ଲଡୁ- ନଡ଼ିଆଲଡୁ, ମଗଜଲଡୁ, ମରିଚଲଡୁ, ଶ୍ରୀଗୋପାଳଲଡୁ, ୫୩. ଲହୁଣିଆ, ୫୪. ଲକ୍ଷ୍ମୀବିଳାସ, ୫୫. ସରସ୍ୱତୀଆ, ୫୬. ହଂସବଲ୍ଲଭ । ଧାର୍ଯ୍ୟ ୫୬ଟି ଭୋଗ ୧୫୬ ମଧରେ ପ୍ରଚଳିତ । ଏଥିମଧରୁ ବିଭାଗ ଅନୁସାରେ ୫୬ଟିକୁ ୫୬ ଭୋଗ କୁହାଯାଏ ।

ମାଦଳାପାଞ୍ଜି ଅନୁସାରେ ସମୁଦାୟ ଭୋଗ ୪୩୫ ପ୍ରକାର ଥିଲା । ପରେ ତାହା କମି ୧୫୦ ପ୍ରକାର ରହିଛି । ପ୍ରଧାନତଃ ଭୋଗ ଦ୍ରବ୍ୟର ସଂଖ୍ୟା ୫୬ ପ୍ରକାର ହୋଇଥିବାରୁ ଏହାକୁ ୫୬ ଭୋଗ କୁହାଯାଏ । ୬ ପ୍ରକାର ଅନ୍ନ, ୬ ପ୍ରକାର ଡାଲି, ୮ ପ୍ରକାର ତରକାରୀ, ୮ ପ୍ରକାର ପିଠା, ୨୦ ପ୍ରକାର କ୍ଷୁଦ୍ର ପିଠା, ୮ ପ୍ରକାର ପାୟସ ମୋଟ ୫୬ ପ୍ରକାର ରାଜଭୋଗ ।

ଯଥା- ୧. କାନିକା, ୨. ଅଦାହେଙ୍ଗୁ, ୩. ନଡ଼ିଆ ଖେଚେଡ଼ି, ୪. ସରୁଅନ୍ନ, ୫. ହଳଦୀ ଖେଚେଡ଼ି, ୬. ଖେଚେଡ଼ି, ୭. ହରଡ଼ଡାଲି, ୮. ପଢଳମୁଗ, ୯. ବଳିବାମନ ମୁଗ (ଗୋଟା ମୁଗ), ୧୦. ଡାଲମା, ୧୧. ପଞ୍ଚବର୍ଣ୍ଣ ଡାଲମା, ୧୨. ବିରି ଡାଲି, ୧୩. ମହୁର, ୧୪. ବେଶର, ୧୫. ଶାଗ, ୧୬. ମଧୁରଚି, ୧୭. ରସା, ୧୮. ମରିଚିପାଣି, ୧୯. ଶାକରା, ୨୦. ମେଥିପିଠା, ୨୧. ଗଜା, ୨୨. ଖଜା, ୨୩. ଖଇରଚୂଳ, ୨୪. ଖୁରୁମା, ୨୫. ମନୋହର, ୨୬. କାକରା, ୨୭. କେଳି, ୨୮. ସରପୁଳି, ୨୯. ପାପୁଡ଼ି, ୩୦. ପାପୁଡ଼ିଖଜା, ୩୧. ପାରିଜାତ, ୩୨. ତ୍ରିପୁରି, ୩୩. ତ୍ରିପୁରିଶାକର, ୩୪. ଶୃଙ୍ଗାଶାକର, ୩୫. ମାଲପୁଆ, ୩୬. ମାଠପୁଳି, ୩୭. କାକତୁଆ ଝିଲି, ୩୮. ହଂସକେଳି, ୩୯. ଯେନାମଣି, ୪୦. ସୁଆରି, ୪୧. ବଡ଼ା, ୪୨. ବୁନ୍ଦିଆ, ୪୩. ସୁଆର ପିଠା, ୪୪. ସାତପଟିଆ ପିଠା, ୪୫. ଫେଣି, ୪୬. ଲକ୍ଷ୍ମୀବିଳାସ, ୪୭. ଶ୍ୱେତଫେଣି, ୪୮. ବିରିକରାରି, ୪୯. ବଲ୍ଲଭ, ୫୦. ଚଢ଼େଇନେଦା, ୫୧. ବଡ଼ିଖିରିସା, ୫୨. ଖିରି, ୫୩. ରସାବଳୀ, ୫୪. ମାଣ୍ଡୁଅ, ୫୫. ଛେନା, ଖଇ, ୫୬. ଲୁଣି ଖୁରୁମା ।

(ଶ୍ରୀ.ପ.ସେ.ପୂ. - ପୃ. ୩୪୭) ।

**ଛାଚିପାନ**-*ଦେ.ବି.*- ଏକ ପ୍ରକାର ସୁଗନ୍ଧି ପାନ । ମକର ସଂକ୍ରାନ୍ତି ଦିନ ଶ୍ରୀଜିଉଙ୍କ ପାଖରେ ଲାଗି କରାଯାଏ ।

**ଛାଟିଆ**-*ଦେ.ବି.*- ଚଉକିଆ, ପାଇକ, ବେତ୍ରଧାରୀ ଶାନ୍ତି ରକ୍ଷକ, ଚୌକିଦାର । ଶ୍ରୀମନ୍ଦିର ଭିତରେ ପହରା ଦେବା ପାଇଁ ହାତରେ ବେତ ଧରିଥିବା ସେବକ ।

(ପୂ.ଓ.ଭା. - ପୃ.୨୭୯୩, ପ୍ର.ଅ. ୧ମ- ପୃ.୬୯) ।

**ଛାଡ଼ଖାଇ**-*ଦେ.ବି.*- କାର୍ତ୍ତିକ ପୂର୍ଣ୍ଣିମାର ପର ଦିବସ । ମାର୍ଗଶିର କୃଷ୍ଣ ପ୍ରତିପଦ । ହବିଷିଆଳିମାନେ କାର୍ତ୍ତିକମାସଯାକ ବ୍ରତ କରିଥିବା ଯୋଗୁ ଯେଉଁ ଯେଉଁ ଖାଦ୍ୟ ଛାଡ଼ିଥାଆନ୍ତି, ତାହା ଛାଡ଼ଖାଇ ଦିନ ଖାଆନ୍ତି । ଶ୍ରୀମନ୍ଦିରରେ ଛାଡ଼ଖାଇ ଦିନ ମଧ୍ୟାହ୍ନ ଧୂପ ପରେ ଭଣ୍ଡାର ଲୋକନାଥ ମନ୍ଦିରର ପାଳିଆ ସେବକମାନଙ୍କ ସହ ଲୋକନାଥ ମନ୍ଦିରକୁ ବିଜେ ହୋଇ ସେଠାରେ ଭୋଗ ବନ୍ଦାପନା ପରେ ବାହୁଡ଼ା ବିଜେ ହୋଇଥାନ୍ତି

(ଶ୍ରୀ.ସ୍ୱ. ୨ୟ - ପୃ.୧୦୨, ପୂ.ଓ.ଭା. - ପୃ.୨୭୯୫) ।

**ଛାମୁ**-*ଦେ.ବି.*- ରାଜାଙ୍କ ସମ୍ମୁଖରେ ସଦାସର୍ବଦା ଉପସ୍ଥିତ ରହୁଥିବା ବ୍ୟକ୍ତି । ରାଜାଙ୍କୁ ଆପଣ

ପରିବର୍ତ୍ତେ ଛାମୁ ବୋଲି ସମ୍ବୋଧନ କରାଯାଏ ।
(କ୍ରି.ଓ.ଶ.ସ. ୧ - ପୃ.୬୬୩, ପୂ.ଓ.ଭା. - ପୃ.୨୮୦୮, ପୁ.ବୋ.- ପୃ.୨୦୦, ଓ.ସାଂ.ଶ.- ପୃ.୧୩୪, ପ୍ର.ଅ. ୧ମ- ପୃ.୯୨୬) ।

**ଛାମୁକରଣ**-*ଦେ.ବି.*- ରାଜାଙ୍କ ପାଖରେ କାମ କରୁଥିବା ବ୍ୟକ୍ତି ବିଶେଷ । ରାଜା ନିକଟରେ ସର୍ବଦା ଉପସ୍ଥିତ ଥିବା ଘରୋଇ ହିସାବପତ୍ର ରଖୁଥିବା କର୍ମଚାରୀ । ରାଜାଙ୍କ ନିକଟରେ କାଗଜ ପେଶ୍ କରୁଥିବା ବ୍ୟକ୍ତି ବା ପେସ୍କାର । **ଛାମୁକରଣ**- ରାଜାଙ୍କ ଅନ୍ୟାନ୍ୟ କାର୍ଯ୍ୟ ସହିତ ମନ୍ଦିର ବିଗ୍ରହ ଓ ପୂଜାନୀତି ବିଷୟ ରାଜାଙ୍କ କର୍ଣ୍ଣଗୋଚର କରାନ୍ତି ।
(ପୂ.ଓ.ଭା. - ପୃ.୨୮୦୮) ।

**ଛାମୁଖୁଣ୍ଟିଆ**-*ଦେ.ବି.*- ଶ୍ରୀମନ୍ଦିର କର୍ମାଙ୍ଗୀ ଅନୁଯାୟୀ ତିନି ଦୋସଡ଼ା ଓ ଯୋଡ଼ା ବେତ ଧରି ସିଂହାସନ ପାଖେ ଜାଗ୍ରତ ରହିଥିବା ସେବକ । ଛାମୁରୁ ବାହାର ନ ହେବା, ଅଣସର ପଟି ଦ୍ୱାରା ଆକଟି ରହିବା, ରୋଷ ଅନ୍ନ ଜଗିବା, ଛେକ ଆସିବା ବେଳେ ଆକଟ ଦୃଷ୍ଟି ଦେବା ଆଦି ଏହାଙ୍କର କାର୍ଯ୍ୟ । ମନ୍ଦିର ସ୍ୱତ୍ୱଲିପିରୁ ଜଣାପଡ଼େ ଯେ, ବର୍ତ୍ତମାନ ପାଳିଆ ଖୁଣ୍ଟିଆ ଛାମୁ ଖୁଣ୍ଟିଆ ସେବା କରୁଛନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୮୮) ।

**ଛାମୁଖୁଣ୍ଟିଆ ସେବକ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ପାଖରେ ବେତ ଧରି ଜାଗ୍ରତ ରହୁଥିବା ବ୍ୟକ୍ତି । ଯୋଡ଼ାବେତ ଧରିସିଂହାସନ ପାଖେ ଆକଟ ଜାଗ୍ରତ ରହିବା ସେବକ । ଏହି ସେବକ ଠାକୁରଙ୍କ ବିଜେ ବେଳେ ମଣିମା ଡାକଦେଇ ଠାକୁରଙ୍କ ଆଗେ ଆଗେ ଚାଲନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିମନ୍ତେ ପ୍ରତ୍ୟହ ଫୁଲ କରପଲ୍ଲବ ଇତ୍ୟାଦି ଆଣି ସରଘରେ ସାଇତି ରଖନ୍ତି । ଅବକାଶ ବେଳକୁ ସିଂଘାରୀମାନଙ୍କୁ ଡାକି ଆଣନ୍ତି ଏବଂ ଅଣସର ଦ୍ୱାର ଜଗନ୍ତି ।
(ପୂ.ଓ.ଭା. - ପୃ.୨୮୦୮, ଶ୍ରୀ.ସ୍ୱ.- ପୃ.୯୦, ପୁ.ବୋ.- ପୃ.୨୦୦) ।

**ଛାମୁ ଚିଟାଉ**-*ଦେ.ବି.*- ରାଜାଙ୍କ ଚିଠି ଛାମୁ ଚିଟାଉ ନାମରେ ପରିଚିତ । ରାଜାଙ୍କ ଆଦେଶପତ୍ର । ଯେଉଁ ଆଦେଶପତ୍ର ସ୍ୱୟଂ ରାଜାଙ୍କ ଶ୍ରୀହସ୍ତରେ ଲେଖା ହୋଇ ପ୍ରେରିତ ହୋଇଥାଏ । ଏହାକୁ ମଧ୍ୟ ସନନ୍ଦ କୁହାଯାଏ । ଶ୍ରୀମନ୍ଦିର ଭିତରେ ଭୋଗ ଦେବା ପାଇଁ ବିଭିନ୍ନ ମଠବାଡ଼ିକୁ ଛାମୁ ଚିଟାଉ ପ୍ରଦାନ କରିଥାନ୍ତି ।
(ଶ୍ରୀ.ସ୍ୱ., ୨ୟ - ପୃ. ୧୮, ପୂ.ଓ.ଭା. - ପୃ.୨୮୦୮, ପ୍ର.ଅ.- ୧ମ- ପୃ.୯୨୬) ।

**ଛାମୁଚଣ୍ଡୀ**-*ଦେ.ବି.*- ଆଶ୍ୱିନ ମାସ ଷୋଳପୂଜାରେ ମା' ବିମଳାଙ୍କ ଜଗମୋହନରେ ସପ୍ତଶତୀ ଚଣ୍ଡୀପାଠ କରୁଥିବା ବ୍ରାହ୍ମଣ ବିଶେଷ ।
(ଶ୍ରୀ.ଶ.- ପୃ.୬୯) ।

**ଛାମୁଛାଡ଼**-*ଦେ.ବି.*- ଦେବତା ମହାରାଜାଙ୍କ ବିଜେ ସମୟରେ ଯିବାବାଟରୁ ଘୁଞ୍ଚି ଯିବା ବା ଆଡେଇ ହୋଇ ଯିବା ପାଇଁ ନିର୍ଦ୍ଦେଶ ସୂଚକ ଶବ୍ଦ ।
(ଶ୍ରୀ.ସ୍ୱ. ୨ୟ-ପୃ.୨୫) ।

**ଛାମୁଦିହୁଡ଼ି**-*ଦେ.ବି.*- ରାଜା/ଠାକୁରଙ୍କ ଆଗରେ ବ୍ୟବହୃତ ହେଉଥିବା ମଶାଲ । ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ପରେ ଠାକୁରଙ୍କୁ ପ୍ରତ୍ୟେହ ଭିତର ଓ ବାହାର ବିଜେରେ ଦକ୍ଷିଣି ଘରୁ ଭିତରକୁ ଗଲାବେଳେ ସମ୍ମୁଖରେ ଜଳୁଥିବା ମଶାଲ । ରଥରେ ସନ୍ଧ୍ୟାଠାରୁ ବଡ଼ସିଂହାର ପର୍ଯ୍ୟନ୍ତ ଦିହୁଡ଼ି ଜଳୁଥାଏ । ସ୍ନାନଯାତ୍ରା ବିଜେ ଓ ବାହୁଡ଼ା ପହଣ୍ଡିରେ ମଧ୍ୟ ଦିହୁଡ଼ି ଜାଳିବାର ବ୍ୟବସ୍ଥା ଥିଲା ।
(ପୂ.ଓ.ଭା. - ପୃ.୨୮୦୯) ।

**ଛାମୁ ଦିହୁଡ଼ିଆ ସେବକ**-*ଦେ.ବି.*- ଯେଉଁ ବ୍ୟକ୍ତି ରାଜା ବା ଦେବତାଙ୍କ ଆଗେ ଆଗେ ମଶାଲ ଧରିଯାଏ । ଏପରି କି ଗଜପତି ମହାରାଜାଙ୍କ ସମ୍ମୁଖ ଭାଗରେ ଦିହୁଡ଼ି ଧରି ଯିବା ସେବକଙ୍କୁ ମଧ୍ୟ ଛାମୁ ଦିହୁଡ଼ିଆ କୁହାଯାଏ ।
(ପୂ.ଓ.ଭା. - ପୃ.୨୮୦୯) ।

**ଛାମୁଦ୍ୱାର**-*ଦେ.ବି.*- ସଦର ଦରଓ୍ୱାଜା । ଶ୍ରୀମନ୍ଦିରର କଳାହାଟ ଦ୍ୱାର, ଗର୍ଭଗୃହ ଦ୍ୱାର ।
(ପୂ.ଓ.ଭା. - ପୃ.୨୮୦୯, ପ୍ର.ଅ. ୧ମ- ପୃ.୯୨୬) ।

**ଛାମୁ ପଢ଼ିହାରୀ**-*ଦେ.ବି.*- ଶ୍ରୀମନ୍ଦିରର ପଢ଼ିହାରୀ ସେବକ ବିଶେଷ । ଭୋଗ ଡାକିଯିବା, ଛେକ ଓ ବାଟ ଦେଖି ପହଣ୍ଡି କଢ଼ାଇ ନେବା ସେବକ ବିଶେଷ ।
(ଶ୍ରୀ.ଶ.- ପୃ.୬୯) ।

**ଛାମୁଲେଙ୍କା**-*ଦେ.ବି.*- ଶ୍ରୀଜୀଉଙ୍କ ଆଗରେ ଚକ୍ରଧରି ଚାପକୁ ଯାଉଥିବା ଲେଙ୍କା ।
(ପୁ.ବୋ.-ପୃ.୨୦୦) ।

**ଛାଚି ସାକର**-*ଦେ.ବି.*- ଏକ ପ୍ରକାର ପିଷ୍ଟକ ଭୋଗ ।
(ଶ୍ରୀ.ଶ.- ପୃ.୬୯) ।

**ଛୁଆଁ ମହାସ୍ନାନ**-*ଦେ.ବି.*- ଶ୍ରୀମନ୍ଦିର ଭିତରେ ଅକସ୍ମାତ କୁକୁର ପ୍ରବେଶ କଲେ, ଶବ ଦେଖାଗଲେ ଠାକୁରଙ୍କ ନୀତି ବନ୍ଦ ରଖାଯାଏ । ନୀତିର ଉପକରଣ ବାହାରକୁ ବାହାର କରାଯାଏ । ଠାକୁରମାନଙ୍କର ବଡ଼ ମହାସ୍ନାନର ବ୍ୟବସ୍ଥା ହୁଏ । ଜୟବିଜୟ ଦ୍ୱାରଠାରୁ ଭିତର ପୋଖରିଆ ପର୍ଯ୍ୟନ୍ତ ଉତ୍ତମ ରୂପେ ଧୁଆଯାଇ ଚୂନପାଣି ପଡ଼େ । ପାଳିଆ ମେକାପ ରତ୍ନ ସିଂହାସନ ସଫା କରନ୍ତି । ଏହାପରେ ସିଂହାସନ ତଳେ ମହାସ୍ନାନ ପୂଜା ହୋଇ ମହାସ୍ନାନ ହୁଏ । ଏହା ପୂର୍ବରୁ ସମସ୍ତ ରୋଷ ଧୋପଖାଳ ହୁଏ । ରୋଷ ଆଡ଼େ ଥିବା ସମସ୍ତ ଭୋଗ, ପାଣି ପଶିଥିବା ସମସ୍ତ ଜିନିଷ, କଟାବଟା ପଦାର୍ଥମାନ, ପାଣିହାଣ୍ଡି, ଶିକା ଓ ବାଉଁଶ ପ୍ରଭୃତି ବାହାର କରାହୁଏ । ପୁନର୍ବାର ରୋଷରେ ହୋମ ହୁଏ । ସୂର୍ଯ୍ୟପୂଜା ଓ ଦ୍ୱାରପାଳ ପୂଜା କଲାପରେ ଯେଉଁ ନୀତିଠାରୁ ବନ୍ଦ ହୋଇଥାଏ ତାର ଆରମ୍ଭ ହୋଇ କ୍ରମାନ୍ୱୟରେ ଅନ୍ୟାନ୍ୟ ସମସ୍ତ ନୀତି ହୁଏ । ଭୋଗ ପୂର୍ବ ବସିଥିବା ସମୟରେ ଯଦି ଉପରୋକ୍ତ ଦୁର୍ଘଟଣା ଘଟେ ତାହାହେଲେ ଅମୁଣିଆ ପରିଚ୍ଛା ଭିତରଛ ପୂଜାପଣ୍ଡାମାନଙ୍କୁ କହିଲେ ପୂଜାପଣ୍ଡାମାନେ ପୂଜାରୁ ଉଠି ଆସିବେ । ଶୁଦ୍ଧ ସୁଆରମାନେ ମାରାହୋଇଥିବା ଭୋଗମାନଙ୍କୁ ଭିତରୁ ବାହାର କରି ବେହରଣ ତଳେ ଏକତ୍ର କରାଇବେ । ପରେ ଧୋପଖାଳ ହୋଇ ମହାସ୍ନାନ ବଢ଼ିବ । ମନ୍ଦିର କର୍ମଚାରୀ ଆସି ଉକ୍ତ ଭୋଗମାନଙ୍କୁ ନେଇ ମନ୍ଦିର ବାହାରେ ପୋତି ଦିଅନ୍ତି । ପାର୍ଶ୍ୱଦେବଦେବୀମାନଙ୍କର ମହାସ୍ନାନ ହୁଏ । ଏହାର ସମସ୍ତ ଖର୍ଚ୍ଚ ମନ୍ଦିର କର୍ତ୍ତୃପକ୍ଷ ବହନ କରନ୍ତି । ଭିତର କାଠ ପାଖର ସିଂହାସନ ପର୍ଯ୍ୟନ୍ତ ସ୍ଥାନରେ ଯଦି କୌଣସି ଲୋକ ମଳ ତ୍ୟାଗ କରେ, ପରିସ୍ରା କରେ କିମ୍ୱା ଛେପ ପକାଏ, ତାହାହେଲେ ଭିତର ଓ ବାହାର ଧୋପଖାଳ ହୋଇ ଚୂନ ପାଣି ପଡ଼ିଲେ ପୁଷ୍ପାଳକମାନେ ଯାଇ ଠାକୁରଙ୍କୁ ମୈଲମ କରନ୍ତି । ଶୁଦ୍ଧ ସୁଆର ବଡ଼ ମହାସ୍ନାନ କରାନ୍ତି । ଠାକୁରମାନଙ୍କର ମହାସ୍ନାନ ହୋଇ ଅନ୍ୟାନ୍ୟ ନୀତି ହୁଏ । ମଳ ତ୍ୟାଗ ହୋଇଥିବା ସ୍ଥାନରେ ଧୋପଖାଳ ପରେ ନଅ ଥର ଲିହଣ ମରାହୁଏ ଓ ସେଠାରେ ଚୂଆ ପଡ଼େ । ଦର୍ଶନ ସମୟରେ କିମ୍ୱା ଅନ୍ୟ ସମୟରେ ଯଦି କେହି ଶ୍ରୀଜୀଉଙ୍କୁ ହାତ ବଢ଼ାଇ ଛୁଇଁଦିଏ, ତାହାହେଲେ ଉକ୍ତ ଲୋକଠାରୁ ଅର୍ଥ ଆଦାୟ ହୋଇ ମହାସ୍ନାନ ଇତ୍ୟାଦି କରାଯାଏ । ମହାସ୍ନାନ ବଢ଼ିଲା ପରେ ଅନ୍ୟାନ୍ୟ ନୀତି ହୁଏ । ମନ୍ଦିର ଭିତରକୁ ବିଧର୍ମାବଲମ୍ବୀ ଲୋକଙ୍କର ପ୍ରବେଶ ନିଷେଧ ଅଛି । ପଙ୍ଗୁ ଲୋକମାନଙ୍କୁ ମନ୍ଦିର ପ୍ରବେଶ ନିଷେଧ ଅଛି । କେହି ଜୋତା ଓ ମୋଜା ଗୋଡ଼ରେ ପିନ୍ଧି ମନ୍ଦିରକୁ ପ୍ରବେଶ କରିପାରିବେ ନାହିଁ । ଫଟୋ କ୍ୟାମେରା ମଧ ଭିତରକୁ ନେଇପାରିବେ ନାହିଁ । ଅରୁଣସ୍ତମ୍ଭ ଡେଇଁ ଜୋତା/ଚମଡ଼ା ଜିନିଷ ନେବା ନିଷେଧ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୭) ।

**ଛୁରୀଖଣ୍ଡା ସେବା**-*ଦେ.ବି.*- ଅଙ୍ଗରକ୍ଷୀ ସେବା । ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଏକ ମର୍ଯ୍ୟାଦାଜନକ ସେବା, ଦେଉଳକରଣଙ୍କ ଦ୍ୱାରା ଏହା ସମ୍ପନ୍ନ କରାଯାଇଥାଏ । ଛୁରୀ ଖଣ୍ଡା ସୂର୍ଯ୍ୟବଂଶୀୟ ରାଜାମାନଙ୍କର ପ୍ରତୀକ ଭାବେ ଏହା ଅଭିଲେଖାଦିରୁ ସୂଚନା ମିଳେ ।
(ଓ.ସାଂ.ଶ.- ପୃ.୯୩, ପୁ.ବୋ.-ପୃ.୨୦) ।

**ଛେକ**-*ସଂ.ବି.*- ଛେଦନ କରିବା । ଶ୍ରୀମନ୍ଦିରରେ ଶିକା, ବାହୁଙ୍ଗି ଦ୍ୱାରା ଠାକୁରଙ୍କ ଭୋଗଲାଗି ନିମନ୍ତେ ଅନ୍ନ ପ୍ରସାଦ ବୁହାଯିବା । କୋଠ ଭୋଗରେ ତିନି ଜଣ ପାଳିଆ ଭୋଗ ବୋହିବାକୁ ତ୍ରିଛେକ କୁହାଯାଏ । ସ୍ନାନ ପୂର୍ଣ୍ଣିମା, ପୁଷ୍ପାଭିଷେକ, ନୀଳାଦ୍ରି ମହୋଦୟରେ ଗରାବଡୁମାନେ ଅଧିବାସ ହୋଇଥିବା ଜଳ ନେବାକୁ ଜଳଛେକ କୁହାଯାଏ ।
(ପୁ.ବୋ.- ପୃ.୨୦୧, ପୂ.ଓ.ଭା. - ପୃ.୨୮୩୯) ।

**ଛେକ ଛୁଆଁଇବା**-*ଦେ.ବି.*- ରୋଷ କାର୍ଯ୍ୟରେ ଯୋଗ ଦେବା ନିମନ୍ତେ ପ୍ରଥମ ଛେକ ଛୁଇଁବା । ରୋଷ କାର୍ଯ୍ୟରେ ଯୋଗ ଦେଇଥିବା ସୁଆର ଗୋଷ୍ଠୀର ସେବକ ସ୍ନାନ ପୂର୍ଣ୍ଣିମା ଦିନ ପ୍ରଥମ କରି ଛେକ ବୁହାନ୍ତି ବା ହାତରେ ନେଇ ବିଗ୍ରହଙ୍କ ପାଖରେ ରଖନ୍ତି ।
(ପୁ.ବୋ.- ପୃ.୨୦୧) ।

**ଛେକ ଡିଆଁଇବା**-*ଦେ.ବି.*- ଛେକ ବା ଠାକୁରଭୋଗ ନିମନ୍ତେ ଅହୁଣିଆ ଭୋଗ ବୁହାବେଳେ ଜଣେ ସେବକ ନିଜ କାନ୍ଧରୁ ଅନ୍ୟ ଜଣଙ୍କ କାନ୍ଧକୁ ଦେବା ।
(ପୁ.ବୋ.- ପୃ.୨୦୧) ।

**ଛେଦ**-*ଦେ.ବି.*- ଶ୍ରୀମନ୍ଦିରରେ ଆଶ୍ୱିନ ଶୁକ୍ଳ ସପ୍ତମୀ, ଅଷ୍ଟମୀ ଓ ନବମୀରେ ବିମଳାଙ୍କ ପାଖରେ ପ୍ରତ୍ୟହ ରାତ୍ର ତିନିଟାରେ ଛେଦ ପଡ଼େ । ବିମଳାଙ୍କ କୂପ ପାଖରେ ଛେଦପଡ଼ି ପୂଜକ ଠାକୁରାଣୀଙ୍କୁ ସରାଏ ରକ୍ତ ଅର୍ପଣ କରିଥାଏ । ମାନସିକ ଛେଦ ପେଜନଳା ବାହାରେ କାକୁଡ଼ିଖାଇଙ୍କ ନିକଟରେ ପଡ଼େ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୮) ।

**ଛେଦପକା ନୀତି**-*ଦେ.ବି.*- ଆଶ୍ୱିନ ସପ୍ତମୀ, ଅଷ୍ଟମୀ, ନବମୀ - ଏହି ତିନିଦିନରେ ପ୍ରତ୍ୟେହ ଦୁଇଟି ବୋଦା ବିମଳାଙ୍କ ଉଦ୍ଦେଶ୍ୟରେ ବଳି ପଡ଼ିଥାଏ । ଏହି ଛଅଟି ବୋଦାକୁ ଯଥାକ୍ରମେ- ମହାଶ୍ରମ ବୋଦା, ସେନାପତି ବୋଦା, ମଙ୍ଗୁମଠ ବୋଦା, ବଡ଼ ଓଡ଼ିଆ ମଠ ବୋଦା, ବୀର ହରେକୃଷ୍ଣପୁରର ମହାଜନଙ୍କ ବୋଦା ଓ ଜମିଦାର ଖୁଣ୍ଟିଆଙ୍କ ବୋଦା ରୂପେ ଦେବୀଙ୍କୁ ସମର୍ପିତ କରାଯାଇ କେତେକ ଗୁପ୍ତ ପୂଜା କରାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୮, ଶ୍ରୀ.ଜି. - ପୃ. ୨୦୧) ।

**ଛେଦା**-*ଦେ.ବି.*- ଗୁଡ଼ରେ ରହୁଥିବା ସାନ ସାନ ଟୁକୁରା ଆଖୁ ଚୋପା । କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ । ଉତ୍ତମ ରୂପେ ବସି ନ ଥିବା ବସା ଦହି ଓ ଏଥିରେ ଖଣ୍ଡଖଣ୍ଡିଆ ଅଂଶ ଭାସୁଥାଏ । ଶ୍ରୀମନ୍ଦିରରେ ବସ୍ତ୍ର ପିନ୍ଧି ସେବକମାନେ ସେବା କରନ୍ତି ।
(ପୂ.ଓ.ଭା. - ପୃ.୨୮୪୩) ।

**ଛେନାପଟା**-*ଦେ.ବି.*- ପୁରୁଷର ବ୍ୟାୟାମପୃଷ୍ଟ ବକ୍ଷ ।
(ପୁ.ବୋ.- ପୃ.୪୪) ।

**ଛେରାପହଁରା**-*ଦେ.ବି.*- ଶ୍ରୀଜଗନ୍ନାଥ ମହାପ୍ରଭୁ ରଥରେ ବିଜେ ହେଲାପରେ ଗଜପତି ମହାରାଜା ଛେରାପହଁରା କରନ୍ତି । ତାଙ୍କର ଅନୁପସ୍ଥିତିରେ ମୁଦିରସ୍ତ କରିପାରନ୍ତି । ଛେରାପହଁରା ନୀତି ସମୟରେ ନିମ୍ନ ସେବକ ରଥ ଉପରେ ଉପସ୍ଥିତ ରହିବା ବିଧି । ୧. ପୁରୀ ରାଜା, ୨. ଦୟଣାମାଳି, ୩. ଭଣ୍ଡାର ମେକାପ, ୪. ଘଟୁଆରୀ, ୫. ରାଜଗୁରୁ, ୬. ଗରାବଡୁ, ୭. ଚିତ୍ରକାର, ୮. ସର୍ବଯାତ୍ରା ଯୋଗାଣିଆ, ୯. ପତ୍ରିବଡୁ, ୧୦. ତଳିଛ ମହାପାତ୍ର, ୧୧. ପୁଷ୍ପାଳକ, ୧୨. ପହରାବାଲା, ୧୩. ଭୋଇମାନେ, ୧୪. ଦଇତାପତି, ୧୫. ପୂଜାପଣ୍ଡା, ୧୬. ମୁଦିରଥ ।
ଆମନ୍ତ୍ରିତ ହୋଇ ଗଜପତି ମହାରାଜା ରୂପା ତାମଜାନରେ ସିଂହଦ୍ୱାର ସମ୍ମୁଖସ୍ଥ ରଥ ପାଖକୁ ଆସନ୍ତି । ଶ୍ରୀଜୀଉଙ୍କୁ ଦଣ୍ଡ ପ୍ରଣାମ ହୋଇ ଗରାବଡୁଠାରୁ ହାତୁଆଣି ନେଇ ନିଉଛାଳି ହୋଇ ପୁଷ୍ପାଞ୍ଜଳି ଅର୍ପଣ କରନ୍ତି ।
ସୁନା ଆଳତିରେ କର୍ପୂର ଦେଇ ରାଜା ଆଳତି କରନ୍ତି । ରାଜଗୁରୁ ସୁନା ଖଡ଼ିକା ସଂସ୍କାର କରି ରାଜାଙ୍କୁ ଦିଅନ୍ତି । ଦୟଣାମାଳି ଶୁକ୍ଳଫୁଲ ରୂପା

ପିଙ୍ଗଣରେ ଭଣ୍ଡାର ମେକାପକୁ ଦିଅନ୍ତି । ସେ ରଥ ଚାରିପଟେ ଶୁକ୍ଲଫୁଲ ପକାନ୍ତି ଓ ରାଜା ସୁନାପହଁରାରେ ପହଁରା କାର୍ଯ୍ୟ କରନ୍ତି । ଘଟୁଆରୀ ଚନ୍ଦନ ପାଣି ଭଣ୍ଡାର ମେକାପକୁ ଦିଅନ୍ତି । ରାଜଗୁରୁ ସଂସ୍କାର କଲାପରେ ଦେଲେ ରାଜା ରଥ ଚାରିପଟେ ଏହାକୁ ପକାନ୍ତି । ପୁନଶ୍ଚ ରାଜଗୁରୁ ସଂସ୍କାର କରି ଚନ୍ଦନଗୁଣ୍ଡ ରାଜାଙ୍କୁ ଦେଲେ, ରାଜା ଏହାକୁ ମଧ ରଥ ଚାରିପଟେ ପକାନ୍ତି । ଏହିପରି ୩ଟି ରଥରେ ରାଜା ଛେରାପହଁରା ନୀତି ସମ୍ପନ୍ନ କରନ୍ତି । ଏହାପରେ ରଥଟଣା ପ୍ରସ୍ତୁତି ଆରମ୍ଭ ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୭୦) ।

**ଛେଲୁଆ**-*ଦେ.ବି.* - କୁଡୁଆର ଭଙ୍ଗାଅଂଶ ବା ତଳଖଣ୍ଡ ଯେଉଁଥିରେ ଭକ୍ତମାନେ ଅଭଡ଼ା ନେଇ ଖାଆନ୍ତି ।

(କ୍ଷେ.ସ.) ।



# ଜ

**ଜଉତାବ**-*ଦେ.ବି.*- ଜଉରେ ତିଆରି କୁମ୍ଭା ଭଳି ଛୋଟ ଛୋଟ କଣା ଥିବା ଏକ ଗୋଲାକାର ପାତ୍ର । ଏଥିରେ ଫଗୁ ରଖାଯାଇ ସଂସ୍କାର ହେବା ପରେ ମୁଦିରଥ ତିନିବାଡ଼ରେ ଫଗୁ ଖେଳନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୦୯) ।

**ଜଗଜ୍ଜନନୀ**-*ସଂ.ବି.*- ଜଗଦମ୍ବା, ସୃଷ୍ଟିର ମାତାସ୍ୱରୂପା, ଦୁର୍ଗା, କାଳୀ, ଦେବୀ ସୁଭଦ୍ରା । (ପୂ.ଓ.ଭା. - ପୃ. ୨୮୫୬) ।

**ଜଗତ**-*ଦେ.ବି.*- ବିଶ୍ୱ, ସଂସାର, ପୃଥିବୀ, ସୃଷ୍ଟି, ଯାହା ଗତିଶୀଳ ଓ ଅସ୍ଥାୟୀ । ଶ୍ରୀଜଗନ୍ନାଥ ଜଗତର ନାଥ ରୂପେ ପରିକଳ୍ପିତ । (ଓ.ସାଂ.ଶ. - ପୃ. ୧୩୭) ।

**ଜଗତବଲ୍ଲଭ** -*ଦେ.ବି.*- ଶ୍ରୀମନ୍ଦିରସ୍ଥ ସୂର୍ଯ୍ୟଦେବଙ୍କୁ ଜଗତବଲ୍ଲଭ ବୋଲି ସମ୍ବୋଧନ କରାଯାଏ । (ଶ୍ରୀ.ଶ.- ପୃ. ୭୦) ।

**ଜଗତମାତା**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ବିମଳାଙ୍କୁ ଜଗତମାତା ବୋଲି କୁହାଯାଏ । (ଶ୍ରୀ.ଶ. - ପୃ. ୭୦) ।

**ଜଗତି**-*ଦେ.ବି.*- ପୋଖରୀ ମଧ୍ୟରେ ଥିବା କ୍ରୀଡ଼ାମନ୍ଦିର । କୋଠଘର, ଅଟ୍ଟାଳିକା, ଉଚ୍ଚପୀଠ । ଚାହାଣିମଣ୍ଡପ । (ପୂ.ଓ.ଭା.- ପୃ. ୨୮୫୮) ।

**ଜଗନ୍ନାଥବଲ୍ଲଭ**-*ଦେ.ବି.*- ରାୟରାମାନନ୍ଦ ବିରଚିତ ଏକ ନାଟକ ଗ୍ରନ୍ଥ । ପୁରୀର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ଭୋଗ ଲାଗୁଥିବା ଏକ ପ୍ରକାର ମିଷ୍ଟାନ୍ନ । ଶ୍ରୀମନ୍ଦିର ବହିର୍ଦେଶରେ ଥିବା ଏକ ଉଦ୍ୟାନ । ପୁରୀର ଏକ ପ୍ରସିଦ୍ଧ ମଠ । ଏ ମଠ ସଂଲଗ୍ନ ବଗିଚାକୁ ଚନ୍ଦନଯାତ୍ରା ସମୟରେ ଓ ଅନ୍ୟାନ୍ୟ ପର୍ବାଣୀ ନୀତି ସମୟରେ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ମଦନମୋହନ ବିଜେ କରନ୍ତି । ମାଳତୀ ପାଟପୁର ଷ୍ଟେସନ ପାଖ ଜଗନ୍ନାଥବଲ୍ଲଭ ଗ୍ରାମରୁ ଶ୍ରୀଗୁଣ୍ଡିଚା, ବାହୁଡ଼ା ଓ ଏକାଦଶୀରେ ମାଳଚୂଳ, ନବାଙ୍କ ଦିନ ବାରହାତିଆ ମାଳ, ଚନ୍ଦନ ବୟାଳିଶ ଦିନ ଅଳକା ଓ ସ୍ନାନପୂର୍ଣ୍ଣମୀ ଦିନ ଚୂଳ ଯାଏ । ଏହି ମାଳଚୂଳ ସେବା ପାଇଁ ଅମୃତମଣୋହି ସମ୍ପତ୍ତି ଓ ବିଭିନ୍ନ ଜାଗିରି ରହିଛି । ମହାରଣା ମାଳଚୂଳ ପାଇଁ ନିଶୁଣି ଓ ପଞ୍ଜର ତିଆରି କରନ୍ତି । ବଜନ୍ତରୀ ବାଜା ବଜାଇ ଆଗରେ ଯାଆନ୍ତି । ମାଳିମାନେ ବାଘମୁହଁ ବାନ୍ଧି କଦଳୀପତ୍ର ଘୋଡ଼ାଇ ମାଳଚୂଳ ଆଣନ୍ତି । (ପୂ.ଓ.ଭା. - ପୃ. ୨୮୬୧, ଓ.ସାଂ.ଶ.- ପୃ. ୧୩୭, ଶ୍ରୀ.ସ୍ୱ. ୨ୟ - ପୃ. ୪୫, ପ୍ର.ଅ. ୨ୟ- ପୃ.୯୪୦) ।

**ଜଗନ୍ନାଥ**-*ଦେ.ବି.*- ଜଗତର ନାଥ, ନାରାୟଣ, ଭଗବାନ, ପରମେଶ୍ୱର, ବିଷ୍ଣୁ, ପରମବ୍ରହ୍ମ । ଓଡ଼ିଶାର ରାଷ୍ଟ୍ରଦେବତା । ଭାରତର ଏକତମ କ୍ଷେତ୍ର ଶ୍ରୀପୁରୁଷୋତ୍ତମ ନାମରେ ବିରାଜିତ ଓ ପୂଜିତ ବିଷ୍ଣୁ ବିଗ୍ରହ । ଏହା ଭାରତର ଚାରିଗୋଟି ପୁଣ୍ୟ ଧାମ ମଧ୍ୟରୁ ଅନ୍ୟତମ । ଜଗନ୍ନାଥ ଓଡ଼ିଶାର ପୁରୀଜିଲା ସମୁଦ୍ରକୂଳରେ ପୁରୀ ବା ପୁରୁଷୋତ୍ତମ ସହରରେ ଅବସ୍ଥିତ । ପୁରାଣ ମତରେ ଜଗନ୍ନାଥ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କର ଦାରୁବ୍ରହ୍ମ ରୂପ । ଏହା ଜଗନ୍ନାଥ ଧାମ ପୁରୀ ବା ପୁରୁଷୋତ୍ତମ କ୍ଷେତ୍ର ଭାବରେ ଖ୍ୟାତ । (ଓ.ସାଂ.ଶ.- ପୃ. ୧୩୬, ପୂ.ଓ.ଭା. - ପୃ. ୨୮୬୦, ପ୍ର.ଅ. ୨ୟ - ପୃ. ୯୪୦, କ୍ର.ବି.ଓ.ଶ.ସ.- ୧ମ - ପୃ.୩୪୩, ଶ୍ରୀ.ସ୍ୱ. ୨ୟ - ପୃ. ୩୧/୩୪) ।

**ଜଗନ୍ନାଥତତ୍ତ୍ୱ**-*ଦେ.ବି.*- ଯୁଗ ଯୁଗର ସଂସ୍କୃତି ଭାବଧାରାର ପରମ୍ପରା, ସାମ୍ୟମୈତ୍ରୀର ପ୍ରାଧାନ୍ୟ, ସର୍ବଧର୍ମ ସମନ୍ୱୟ, ସର୍ବଜନ

କଲ୍ୟାଣ, ପକ୍ଷପାତ ବିରହିତ ସମଦୃଷ୍ଟି ଓ ସହିଷ୍ଣୁତା ଜଗନ୍ନାଥ ତତ୍ତ୍ୱର ବୈଶିଷ୍ଟ୍ୟ । ଏଣୁ ଜଗନ୍ନାଥ ହିଁ ସର୍ବଜନ ନାଥ ଅର୍ଥାତ୍ ଜଗତର ନାଥ । ଦାରୁ ରୂପୀ ଜଗନ୍ନାଥଙ୍କ ତତ୍ତ୍ୱ ଗୁହ୍ୟ ଓ ତାଙ୍କ ଅବସ୍ଥିତି ମଧ ଗୁହ୍ୟ । ବିଷ୍ଣୁଙ୍କର ଭୋଗଭୂମି ଶ୍ୱେତଦ୍ୱୀପ ଯେପରି ଏକ ସ୍ୱକୀୟ ଆଳୟ, ଏହି କର୍ମଭୂମି ଜମ୍ବୁଦ୍ୱୀପ ମଧରେ ଏହି ସ୍ଥାନ ମଧ ତାଙ୍କର ଏକ ସ୍ୱକୀୟ ଆଳୟ । ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହିଁ କୃଷ୍ଣ, ବଳରାମ ଓ ସୁଭଦ୍ରା ରୂପେ ପ୍ରକଟିତ । ପୁନଶ୍ଚ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଯଥାକ୍ରମେ ବିଷ୍ଣୁ, ମହେଶ୍ୱର ଓ ବ୍ରହ୍ମାଙ୍କ ପ୍ରତୀକ । ଶ୍ରୀକ୍ଷେତ୍ରର ଅଧିଷ୍ଠାତ୍ରୀ ବିମଳା ଥିବାରୁ ଶାକ୍ତ ଉପାସନାର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । ସତୀଙ୍କର ନାଭି ଏହି ସ୍ଥାନରେ ପଡ଼ିଥିବାରୁ ଏହି କ୍ଷେତ୍ର ମଧ ନାଭିକ୍ଷେତ୍ର ନାମରେ ନାମିତ । ବିମଳା ଶିବରୂପୀ ବଳରାମଙ୍କ ଶକ୍ତି । ଶାକ୍ତ ମତରେ ଭୈରବ ଚକ୍ରରେ କେବଳ ମହାପ୍ରସାଦ ହୋଇପାରିବ । ଏହି ଚକ୍ର ଭିତରେ ଜାତି, ବର୍ଣ୍ଣ ନିର୍ବିଶେଷରେ ଭୈରବୀଙ୍କ ପ୍ରସାଦ ଏକ ପାତ୍ରରୁ ଉଚ୍ଛିଷ୍ଟାନୁଚ୍ଛିଷ୍ଟ ବିଚାରରେ ସେବା କରାଯାଇପାରିବ । ପୁରାଣରେ ମଧ ଜଗନ୍ନାଥଙ୍କୁ ଭୈରବ ବୋଲି କୁହାଯାଇଛି । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ଅନ୍ନଭୋଗ ପୁନଃ ବିମଳାଙ୍କୁ ସମର୍ପଣ ହେଲେ, ଏହା ମହାପ୍ରସାଦ ହୋଇଥାଏ । ଜଗନ୍ନାଥ ମନ୍ଦିରର ଭୋଗମଣ୍ଡପର ଉତ୍ତରବାଡ଼ରେ ଦ୍ୱାରର ପୂର୍ବପଟକୁ ଏକ ପୀଠ ବା ସିଂହାସନ ଉପରେ ଶିବ, ମହିଷାସୁରମର୍ଦ୍ଦିନୀ ଦୁର୍ଗା ଓ ଜଗନ୍ନାଥ ମୂର୍ତ୍ତି ଅବସ୍ଥାପିତ । କୋଣାର୍କ ମନ୍ଦିରରେ ମଧ ତାଦୃଶ ମୂର୍ତ୍ତି ଦେଖିବାକୁ ମିଳେ । ଏହା ଶୈବ, ଶାକ୍ତ ଓ ବୈଷ୍ଣବ ଉପାସନାର ସମନ୍ୱୟ ପ୍ରତୀକ । ପରେ ସୂର୍ଯ୍ୟରୂପୀ ସୁଦର୍ଶନର ଯୋଗଦାନ ଚତୁର୍ଦ୍ଧାମୂର୍ତ୍ତିର ଆତ୍ମପ୍ରକାଶ । ଗାଣପତ୍ୟ ଧର୍ମର ପ୍ରଭାବରୁ ଜ୍ୟେଷ୍ଠପୂର୍ଣ୍ଣମୀରେ ଗଜବେଶ ଓ ମାଘପୂର୍ଣ୍ଣମୀରେ ଗଜ ଉଦ୍ଧାରଣ ବେଶ ଅନୁଷ୍ଠିତ ହୁଏ । "ଗଣେ ନାରାୟଣେ ରୁଦ୍ରେ ଅମ୍ବିକେ ଭାସ୍କରେ ତଥା..." ପଞ୍ଚଦେବତା ଉପାସନାର ସମନ୍ୱୟ ଭାବ ମଧ ଏଠାରେ ପରିଲକ୍ଷିତ । ବିଭିନ୍ନ ଶାସ୍ତ୍ର ଅନୁସାରେ ନେତ୍ର ହିଁ ତ୍ରିମୂର୍ତ୍ତିର ପ୍ରତୀକ । ଡୋଳା ମଧସ୍ଥ ଶୁଭ୍ରଅଂଶ ବଳଭଦ୍ର, ତା'ର ଉପର କଳା ଅଂଶ ସୁଭଦ୍ରା ଓ ପିତୁଳା ଶ୍ରୀଜଗନ୍ନାଥ ଅଟେ । ଶ୍ରବଣ, ନୟନ ଅଧର ନାସିକା - ଚତୁର୍ଦ୍ଧା ମୂର୍ତ୍ତିର ପରିଚାୟକ । ଶ୍ରବଣ- ବଳଭଦ୍ର, ନୟନ - ଜଗନ୍ନାଥ, ଅଧର - ସୁଭଦ୍ରା, ନାସିକା- ସୁଦର୍ଶନ ଅଟନ୍ତି । ଚତୁର୍ଦ୍ଧାମୂର୍ତ୍ତି ମଧ ଚାରିବର୍ଣ୍ଣ । ଶୁକ୍ଳ - ବଳଭଦ୍ର, ପୀତ - ଜଗନ୍ନାଥ, ହରିତ - ସୁଭଦ୍ରା, ଲୋହିତ- ସୁଦର୍ଶନ ଅଟନ୍ତି । ଚାରିବେଦ ମଧ ଚତୁର୍ଦ୍ଧାମୂର୍ତ୍ତିଙ୍କର ପ୍ରତୀକ । ବଳଭଦ୍ର - ସାମବେଦ, ସୁଭଦ୍ରା - ଋକ୍, ଶ୍ରୀଜଗନ୍ନାଥ - ଯଜୁର୍ବେଦ ଓ ସୁଦର୍ଶନ ଅଥର୍ବ ବେଦ ଅଟନ୍ତି । ତ୍ରିମୂର୍ତ୍ତି ମଧ ତ୍ରିବୀଜର ପ୍ରତୀକ । ଶ୍ରୀଂ ବୀଜ - ବଳଭଦ୍ର, ହ୍ରୀଂବୀଜ- ସୁଭଦ୍ରା, କ୍ଳୀଂ ବୀଜ ଜଗନ୍ନାଥ ଅଟନ୍ତି । ଏହା ମଧ ବର୍ଣ୍ଣିତ ଅଛି ଯେ "ରାଧା ସ୍ୱୟଂ ଜଗନ୍ନାଥ ରାଧିକା ସ୍ଥୂଳ ରୂପିଣୀ ।" ରାଧା ଜଗନ୍ନାଥଙ୍କ ଶରୀରରେ ସର୍ବଦା ବିରାଜମାନ । ତ୍ରିବୀଜ ମଧରେ ଶ୍ରୀକାର ପରାବୀଜ, ହ୍ରୀଂକାର ରାମବୀଜ, କ୍ଳୀଂକାର କାମବୀଜ ଅଟେ । ହରେ ବଳଭଦ୍ର, ରାମ ସୁଭଦ୍ରା, କୃଷ୍ଣଜଗନ୍ନାଥ ହରେ ମଧ ସୁଦର୍ଶନ ଅଟେ । ପୁନଶ୍ଚ ଓଁକାର ସୁଦର୍ଶନର ପ୍ରତୀକ ବୋଲି ଧରାଯାଇଛି । ଜଗନ୍ନାଥ ଚାରି ଅକ୍ଷରରେ ମଧ ଚତୁର୍ଦ୍ଧାମୂର୍ତ୍ତି ବିଦ୍ୟମାନ । 'ଜ' ଜଗନ୍ନାଥ, 'ଗ' ବଳଭଦ୍ର, 'ନ୍ନ' ସୁଭଦ୍ରା, 'ଥ' ସୁଦର୍ଶନ ଅଟନ୍ତି । ହରେକୃଷ୍ଣ ମନ୍ତ୍ରରେ ମଧ ଚତୁର୍ଦ୍ଧାମୂର୍ତ୍ତି ବିଦ୍ୟମାନ । ହ- ଅକ୍ଷର ସୁଭଦ୍ରା - ଗୁପ୍ତ ରୂପ ଏ' ରାଧିକା, ର- ଅକ୍ଷର ବଳଭଦ୍ର, କୃ - ଅକ୍ଷର କୃଷ୍ଣଦେହୀ ଜଗନ୍ନାଥ, ଷ - ଅକ୍ଷର ସୁଦର୍ଶନ ଅଟନ୍ତି । ଓଁକାର ବ୍ରହ୍ମ ବୋଲି

ପ୍ରତିପାଦିତ ହୋଇଅଛି । ଓଁକାର - ଅ, ଉ ଓ ମ । ଅ'କାର ବ୍ରହ୍ମାତ୍ମକ, ଉକାର - କ୍ରିଷ୍ଣାତ୍ମକ, ମ କାର - ଶିବାତ୍ମକ । ଏଣୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱରର ସମଷ୍ଟି ହିଁ 'ଓଁ' ଅଟନ୍ତି । ପୁଣି ଏହି ତିନି ଅକ୍ଷରରେ ସତ୍ୱ, ରଜ, ତମ, ସତ୍ୟ ଓ ତ୍ରେତୟା, ଦ୍ୱାପର, ଭୁଃ, ଭୁବଃ, ସ୍ୱଃ ପ୍ରଭୃତିକୁ ବୁଝାଏ । ରୁଦ୍ର ଯାମଳାରେ ସୁଭଦ୍ରା ଶକ୍ତି ଓ ଭୈରବୀ ଏବଂ ଜଗନ୍ନାଥ ଭୈରବ ରୂପରେ ପରିକଳ୍ପିତ । ଜଗନ୍ନାଥ ଓ ସୁଭଦ୍ରା ଏ ସ୍ଥଳରେ ଏକ, ଅଭିନ୍ନ ଏବଂ ଅଦ୍ୱୈତ ରୂପରେ ପରିକଳ୍ପିତ । ପୁରୁଷ ପ୍ରକୃତି ରୂପରେ ସେମାନେ ଅବସ୍ଥାପିତ । କୃଷ୍ଣ ବଳରାମ ବ୍ରହ୍ମ ରୂପରେ ପରିକଳ୍ପିତ ହେଲେ, ସୁଭଦ୍ରା ସେମାନଙ୍କର ଶକ୍ତି ରୂପରେ ଗଣ୍ୟ । ଜଗନ୍ନାଥ, ବଳଭଦ୍ର ସୁଭଦ୍ରା ଓ ସୁଦର୍ଶନ- ଏମାନେ ପୌରାଣିକ ଦେବତା ହୋଇପାରନ୍ତି । ମାତ୍ର ଏଠାରେ ସେମାନଙ୍କର ମୂର୍ତ୍ତି ପରିକଳ୍ପନାରେ ବିଶ୍ୱସୃଷ୍ଟିର ପ୍ରତୀକତା ସୁସ୍ପଷ୍ଟ ଭାବେ ଅଙ୍କିତ । ଏହି ମୂର୍ତ୍ତି ଚତୁଷ୍ଟୟ ବାସ୍ତବରେ ପ୍ରତୀକାତ୍ମକ ମୂର୍ତ୍ତି । ଏମାନେ ବିଶ୍ୱ ସୃଷ୍ଟି ଧାରାର ପ୍ରତୀକ ।
(ଶ୍ରୀ.ଶ୍ରୀ. ୧ମ - ପୃ. ୭୦) ।

**ଜଗନ୍ନାଥ ଦାସ**-*ଦେ.ବି.*- ପଞ୍ଚସଖା ମଧ୍ୟରୁ ଅନ୍ୟତମ । ଓଡ଼ିଆ ଭାଗବତର ରଚୟିତା ଓ ଜଣେ ପ୍ରଧାନ ବିଷ୍ଣୁ ଭକ୍ତ । ପୁରୀ ଜିଲ୍ଲା କପିଳେଶ୍ୱରପୁର ଗ୍ରାମରେ ଏହାଙ୍କର ଜନ୍ମ ଏବଂ ଜାତିରେ ବ୍ରାହ୍ମଣ ଓ ଶ୍ରୀଚୈତନ୍ୟଙ୍କର ସମସାମୟିକ ଥିଲେ । ଶ୍ରୀଚୈତନ୍ୟ ଯେତେବେଳେ ପ୍ରଥମେ ଶ୍ରୀକ୍ଷେତ୍ରକୁ ଆସିଥିଲେ ସେତେବେଳେ ଜଗନ୍ନାଥ ଦାସ ଉଣେଇଶି ବର୍ଷର ଯୁବକ ମାତ୍ର । ଚୈତନ୍ୟ ଜଗନ୍ନାଥଙ୍କୁ ମନ୍ଦିରରେ ଦର୍ଶନ କରିବାକୁ ଆସିଲା ବେଳେ ଜଗନ୍ନାଥ ଦାସ ମନ୍ଦିର ବେଢ଼ା ମଧ୍ୟସ୍ଥ କଳ୍ପବଟମୂଳେ ୧୦ମ ସ୍କନ୍ଦ ଓଡ଼ିଆ ଭାଗବତର ବ୍ରହ୍ମସ୍ତୁତି ଅଂଶ ପାଠ କରୁଥାଆନ୍ତି । ଚୈତନ୍ୟ ସେଥିରେ ମୁଗ୍ଧ ହୋଇ ପ୍ରତିଦିନ କିଛିକ୍ଷଣ ସେଠାରେ ବସି ଭାଗବତ ଶୁଣିବାକୁ ଲାଗିଲେ ଏବଂ ଏହାଙ୍କ ଭାଗବତ ସ୍ତୁତିରେ ବିମୁଗ୍ଧ ହୋଇ ଜଗନ୍ନାଥ ଦାସଙ୍କୁ 'ଅତିବଡ଼ି ଉପାଧି' ପ୍ରଦାନ କରିଥିଲେ । ପୁରୀ ଓଡ଼ିଆ ମଠ ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ । ଭାଗବତ, ମନଶିକ୍ଷା ଓ ଜଗନ୍ନାଥ କାରିକା ଇତ୍ୟାଦି ଗ୍ରନ୍ଥମାନ ଏହାଙ୍କ ଦ୍ୱାରା ରଚିତ ।
(ପୂ.ଓ.ଭା. - ପୃ. ୨୮୬୧) ।

**ଜଗବନ୍ଧୁ**-*ସଂ.ବି.*- ଶ୍ରୀଜଗନ୍ନାଥ ମହାପ୍ରଭୁ ।
(ପୂ.ଓ.ଭା. - ପୃ. ୨୮୬୦) ।

**ଜଗମୋହନ**-*ଦେ.ବି.*- ଶ୍ରୀମନ୍ଦିର ଗର୍ଭଗୃହ ସମ୍ମୁଖରେ ଦର୍ଶକମାନଙ୍କ ଦର୍ଶନାର୍ଥେ ନିର୍ମିତ ଏକ ଗୃହ । ଭିତର କାଠ ଅର୍ଗଳିଠାରୁ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଏହା ବିସ୍ତୃତ । ଏହିଠାରୁ ଯାତ୍ରୀମାନେ ଶ୍ରୀଜୀଉଙ୍କୁ ଦର୍ଶନ କରନ୍ତି । ନାଟମଣ୍ଡପରେ ପହୁଡ଼ ଓ ଭୋଗମଣ୍ଡପ ସମୟ ବ୍ୟତୀତ ମଙ୍ଗଳ ଆଳତି ଓ ଶୟନ ଆଳତି ପୂର୍ବରୁ ମଠବାଡ଼ିମାନଙ୍କ ତରଫରୁ ଏଠାରେ ସଂକୀର୍ତ୍ତନ ହୁଏ । ଭକ୍ତମାନେ ଏହିଠାରେ ଠାକୁରଙ୍କୁ ସ୍ତବ, ସ୍ତୋତ୍ର, ଜଣାଣ କରିବା ସହିତ ମଙ୍ଗଳ ଆଳତି ସମୟରେ ଗୀତଗୋବିନ୍ଦ ଓ ଦଶାବତାର ଗାନ କରନ୍ତି । ଏହାର ଚାରିଗୋଟି ଦ୍ୱାର ଅଛି । ଯଥା ପୂର୍ବଦ୍ୱାର, ଜୟବିଜୟ ଦ୍ୱାର, ପଶ୍ଚିମ ଦ୍ୱାର କଳାହାଟ ଦ୍ୱାର, ଉତ୍ତରଦ୍ୱାର ମହାପ୍ରଭୁଙ୍କ ରତ୍ନ ଭଣ୍ଡାରକୁ ରାସ୍ତା, ଦକ୍ଷିଣ ଦ୍ୱାର ମୁକ୍ତି ମଣ୍ଡପ ଆଡକୁ ରାସ୍ତା ।
(ପୂ.ଓ.ଭା. - ପୃ. ୨୮୬୨, କ୍ର.ବି.ଓ.ଶ.ସ. ୧ମ - ପୃ. ୩୪୩, ଓ.ସାଂ.ଶ.- ପୃ. ୧୩୭, ପ୍ର.ଅ. ୨ୟ- ପୃ. ୯୪୦) ।

**ଜଗଦ୍‌ଗୁରୁ**-*ଦେ.ବି.*- ସମସ୍ତଙ୍କ ଦ୍ୱାରା ପୂଜ୍ୟ ଓ ପ୍ରତିଷ୍ଠିତ ବ୍ୟକ୍ତି । ପରମେଶ୍ୱର, ମହାଦେବ ଶିବ, ପରମାତ୍ମା, ଶ୍ରଦ୍ଧାତ୍ମା ସନ୍ନ୍ୟାସୀମାନଙ୍କୁ ଜଗଦ୍‌ଗୁରୁ ବୋଲି କୁହାଯାଏ । ସେମାନେ ଜଗତ୍‌ବାସୀଙ୍କର ପୂଜ୍ୟ ଓ ପ୍ରଣମ୍ୟ । ସେ କେବଳ ଗୁରୁ ନୁହଁନ୍ତି, ସେ ବିଶ୍ୱ ମଙ୍ଗଳକାରୀ ଜଗଦ୍‌ଗୁରୁ । ଆଦି ଶଙ୍କରାଚାର୍ଯ୍ୟଙ୍କର ପ୍ରତିଷ୍ଠିତ

ଭାରତର ଚାରିଗୋଟି କେନ୍ଦ୍ରରେ ଥିବା ଚାରିଗୋଟି ମଠର ମହନ୍ତମାନଙ୍କର ଉପାଧି ।

**ଜଗିଆ**-*ଦେ.ବି.*- ପୁରୀ ଶ୍ରୀମନ୍ଦିରର ମହାସୁଆର । ରୋଷ ଅମିନ, ଜଗୁଆଳି ।
(କ୍ର.ବି.ଓ.ଶ.ସ. ୧ମ- ପୃ. ୩୪୪, ପ୍ର.ଅ.- ପୃ. ୯୪୦, ପୂ.ଓ.ଭା. - ପୃ. ୨୮୬୩, ) ।

**ଜଗିଆ ମହାସୁଆର**-*ଦେ.ବି.*- ରୋଷରେ ବଡ଼ୁ ସୁଆରଙ୍କୁ ଭୋଗମାନ ପ୍ରସ୍ତୁତ କରିବା ପାଇଁ କୋଠଭୋଗ ଜିନିଷ ଯୋଗାଉଥିବା ସେବକ। ପିଠା, ପଣା ଭୋଗ ପ୍ରଭୃତିରେ କେତେ କ'ଣ ଲାଗିବ ସବୁ ତନଖି କରି ଦେଖନ୍ତି । ତ୍ରୁଟି ହେଲେ ତାହା ରିପୋର୍ଟ କରନ୍ତି । ଦେଉଳକରଣ ପାଖକୁ ମଧ୍ୟାହ୍ନ ଧୂପରେ ଘିଅ ଓ ପଣା ପଠାନ୍ତି, ଥାଳିରେ ଘିଅ ପକାଇବା ଦେଖନ୍ତି, ପଣାରେ ଛାଚି ଚିନି ପଡ଼ିବା ବେଳେ ଦେଖିବା ରୋଷରେ ସମସ୍ତ ବିଷୟରେ ଦାୟିତ୍ୱ ନେବା, ଚୁଲି, ପନ୍ତି ଗୋଳମାଳ ସବୁ ଦେଖିବା ଓ ଦେଉଳକରଣ ପାଖକୁ ରିପୋର୍ଟ କରିବା ଏହାଙ୍କ କାର୍ଯ୍ୟ ପରିସରଭୁକ୍ତ ଅଟେ । ପର୍ବଯାତ୍ରା ଭୋଗମାନ ପ୍ରସ୍ତୁତ କରିବା ନିମନ୍ତେ ଦେଉଳକରଣଠାରୁ ଭୋଗ ଉଠିଆ ତାଲିକା ନେଇ ବଡ଼ସୁଆରଙ୍କୁ ବରାଦ କରି ଜିନିଷମାନ ପ୍ରସ୍ତୁତ କରାନ୍ତି । ଲକ୍ଷ୍ମୀଙ୍କ ରୋଷରେ ଭୋଗ ପ୍ରସ୍ତୁତ ସମୟରେ ଜଗନ୍ତି ଓ ଭୋଗର ତତ୍ତ୍ୱ ନିଅନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୦୬) ।

**ଜଗୁଜୀବନ**-*ଦେ.ବି.*- ଜଗତର ପ୍ରାଣସ୍ୱରୂପ । ପରମେଶ୍ୱର ଶ୍ରୀଜଗନ୍ନାଥଙ୍କୁ ଭକ୍ତ ପ୍ରଦତ୍ତ ଶ୍ରଦ୍ଧା ନାମ ।
(ପୂ.ଓ.ଭା. - ପୃ. ୨୮୬୪) ।

**ଜଗୁସାଇଁ**-*ଦେ.ବି.*- ଜଗନ୍ନାଥ ।
(ପୂ.ଓ.ଭା. - ପୃ. ୨୮୬୪) ।

**ଜନକପୁରୀ**-*ଦେ.ବି.*- ପୁରୀ ଶ୍ରୀଗୁଣ୍ଡିଚା ମନ୍ଦିର । ଗୁଣ୍ଡିଚାଘରକୁ ଜନକପୁରୀ (ଜନ୍ମସ୍ଥାନ) କୁହନ୍ତି । ଏଠାରେ ପ୍ରଥମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନିମୂର୍ତ୍ତି ନିର୍ମିତ ହୋଇଥିଲେ ।
(ପୂ.ଓ.ଭା. - ପୃ. ୨୮୮୧, ପ୍ର.ଅ. ୨ୟ - ପୃ.୯୪୬, ପୁ.ବୋ.- ପୃ. ୨୦୨) ।

**ଜନଲୋକ**-*ଦେ.ବି.*- ହିନ୍ଦୁ ପୁରାଣ ମତରେ ସପ୍ତଭୁବନ ମଧ୍ୟରୁ ପଞ୍ଚମ ଭୁବନ ଭାବରେ ଏହା ବିଦିତ । ସପ୍ତଲୋକ କହିଲେ ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ, ସତ୍ୟ ଲୋକକୁ ବୁଝାଏ ।
(ଓ.ସାଂ.ଶ. - ପୃ. ୧୩୭, ପୂ.ଓ.ଭା. - ପୃ. ୨୮୮୪) ।

**ଜନ୍ମ ନକ୍ଷତ୍ର**-*ସଂ.ବି.*- ଶ୍ରୀମନ୍ଦିରରେ ତ୍ରିଦେବଙ୍କର ଜନ୍ମନକ୍ଷତ୍ର । ବଳଭଦ୍ରଙ୍କର ଶ୍ରାବଣୀ ନକ୍ଷତ୍ର - ମକର ରାଶି, ଜଗନ୍ନାଥଙ୍କର ରୋହିଣୀ ନକ୍ଷତ୍ର- ବୃଷ ରାଶି, ସୁଭଦ୍ରାଙ୍କର ଜ୍ୟେଷ୍ଠା ନକ୍ଷତ୍ର - ବିଛା ରାଶି ।
(ଶ୍ରୀ.କି. - ପୃ. ୪୬) ।

**ଜନ୍ମାଷ୍ଟମୀ**-*ସଂ.ବି.*- ଭାଦ୍ର କୃଷ୍ଣ ଅଷ୍ଟମୀ ଅର୍ଦ୍ଧରାତ୍ରି ସମୟରେ ଶ୍ରୀକୃଷ୍ଣଙ୍କର ଜନ୍ମୋତ୍ସବ ହିନ୍ଦୁ ଜଗତରେ ପାଳିତ ହୁଏ । ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣ ଅଷ୍ଟମୀ ଦିନ ଜନ୍ମାଷ୍ଟମୀ ପାଳନ କରାଯାଏ । ଏହି ଦିନ ଦୁଇଜଣ ସେବକ ଦେବକୀ ଓ ବାସୁଦେବ ବେଶରେ ଲୁଗା ଘୋଡ଼ାଇ ହୋଇ ଶ୍ରୀକୃଷ୍ଣଙ୍କୁ ଜନ୍ମଦେବାର ପ୍ରତୀକାତ୍ମକ ଅଭିନୟ କରି ଏ ଉତ୍ସବକୁ ମହାସମାରୋହରେ ପାଳନ କରନ୍ତି ।
(ଶ୍ରୀ.ସ୍ୱ.୨ୟ - ପୃ. ୮୯/୯୦, ପୂ.ଓ.ଭା. - ପୃ. ୨୮୯୩, ପ୍ର.ଅ. ୨ୟ - ପୃ. ୯୫୧) ।

**ଜପ**-*ସଂ.ବି.*- ନିର୍ବିକାର ମନରେ ପୂଜା କରିବା । ମନ୍ତ୍ରର ସୁଲଘୁ ଉଚ୍ଚାରଣ । ପୂର୍ଣ୍ଣ ସମର୍ପଣ ପରେ ମନବଚନ କର୍ମ ଦ୍ୱାରା ଈଶ୍ୱରଙ୍କ ନାମ ସ୍ମରଣର ଶୁଦ୍ଧ ଭାବକୁ ଜପ କୁହାଯାଏ । ଏହା ଏକ ପବିତ୍ର ସାଧନର ରୂପ । ଏହାଦ୍ୱାରା ସାଧକ କେବଳ ଭଗବତ୍ ଭକ୍ତିରେ ବୁଡ଼ି ରହେ ନାହିଁ, ସେ ବ୍ରହ୍ମର ସନ୍ଧାନ ମଧ୍ୟ ପାଇପାରେ । ପୁରାଣରେ ଜପ ତିନି ପ୍ରକାରର ଉଲ୍ଲେଖ ଅଛି । ଯଥା- ମାନସ, ଉପାଂଶୁ ଓ ବାଚିକ । କେହି କେହି ଜିହ୍ୱା ଜପ ନାମରେ ଚତୁର୍ଥ ପ୍ରକାର ଜପ ଉଲ୍ଲେଖ କରିଛନ୍ତି । ଜପ କରିବା ସମୟରେ ମନ୍ତ୍ରର ସଂଖ୍ୟା ପ୍ରତି ଧ୍ୟାନ

ରଖିବାକୁ ପଡ଼େ । ଏଥିପାଇଁ ମାଳାର ଆବଶ୍ୟକତା ହୁଏ ।
(ପୂ.ଓ.ଭା. - ପୃ. ୨୮୯୪, ଓ.ସାଂ.ଶ. - ପୃ. ୧୩୮, ପ୍ର.ଅ. ୨ୟ - ପୃ. ୯୫୧, କୃ.ବି.ଓ.ଶ.ସ. ୧ମ - ପୃ. ୩୪୯) ।

**ଜମାଉତ**-*ଦେ.ବି.*- ପୁରୀର ସାହିଯାତ୍ରାରେ ଜନସମାବେଶ ।
(ପୁ.ବୋ. - ପୃ. ୪୪) ।

**ଜମ୍ବୁଦୀପ**-*ସଂ.ବି.*- ହିନ୍ଦୁ ପୁରାଣ ମତରେ ପୃଥିବୀରେ ସପ୍ତଦ୍ୱୀପରୁ ଏକତମ । କାହାରି କାହାରି ମତରେ ସମଗ୍ର ଏସିଆ ମହାଦେଶ ଜମ୍ବୁଦ୍ୱୀପର ଅନ୍ତର୍ଗତ । ଆଜି ପର୍ଯ୍ୟନ୍ତ ହିନ୍ଦୁମାନଙ୍କର ନିତ୍ୟ ନୈମିତ୍ତିକ ଧର୍ମାନୁଷ୍ଠାନର ସଂକଳ୍ପରେ ଜମ୍ବୁଦ୍ୱୀପ ଶବ୍ଦ ପ୍ରଚଳିତ ହୋଇ ଆସୁଅଛି । ପ୍ରାଚୀନ ହିନ୍ଦୁ ପୁରାଣ ଲେଖକମାନଙ୍କର ମତରେ ପୃଥିବୀ ତିନିକୋଣିଆ, ତହିଁରେ ସାତ ଗୋଟି ଦ୍ୱୀପ, ତହିଁ ମଧ୍ୟରେ ଗୋଟିଏ ଜମ୍ବୁଦ୍ୱୀପ, ନୀଳପର୍ବତର ଦକ୍ଷିଣ ଓ ନିଷଧ ପର୍ବତର ଉତ୍ତରରେ ଅବସ୍ଥିତ ସୁଦର୍ଶନ ନାମକ ଜମ୍ବୁ ବୃକ୍ଷରୁ ଏ ଦ୍ୱୀପର ନାମକରଣ ହୋଇଥିଲା । ଭାରତବର୍ଷ ଏହି ଜମ୍ବୁଦ୍ୱୀପର ଗୋଟିଏ ବର୍ଷ ବା ଖଣ୍ଡ ଥିବାର କଥିତ ଅଛି । ଜମ୍ବୁଦ୍ୱୀପ ପରି ସାତ ଗୋଟି ଦ୍ୱୀପ ମେରୁ ପର୍ବତର ଚାରିପାଖରେ ଅବସ୍ଥିତ ।
(ଓ.ସାଂ.ଶ.- ପୃ. ୧୩୯, ପୂ.ଓ.ଭା. - ପୃ.୨୯୦୮) ।

**ଜରାଶବର**-*ସଂ.ବି.*- ଭାଗବତ ବର୍ଣ୍ଣିତ ବ୍ୟାଧର ନାମ । ଏହାଙ୍କର ବାଣ ଶ୍ରୀକୃଷ୍ଣଙ୍କ ପାଦରେ ବାଜିବାରୁ ଶ୍ରୀକୃଷ୍ଣ ମର ଶରୀର ତ୍ୟାଗ କଲେ । ଶ୍ରୀକୃଷ୍ଣ ଅରଣ୍ୟରେ ଏକ ଆଣ୍ଠୁ ଉପରେ ଅନ୍ୟ ଗୋଡ଼ର ପାଦରଖି ନିଦ୍ରା ଯାଇଥିବା ସମୟରେ ତାଙ୍କର ଟେକା ହୋଇଥିବା ପାଦାଗ୍ରକୁ ଜରା ମୃଗର କାନ ଭ୍ରମ କରି ଶର ମାରିଥିଲା ।
(ପୂ.ଓ.ଭା. - ପୃ. ୨୯୧୯) ।

**ଜରିପଟୁକା**-*ଦେ.ବି.*- ଶ୍ରୀମନ୍ଦିରରେ ଯାବତୀୟ ଜରି ଜମୁରା କାମ କରୁଥିବା ସେବକ ବିଶେଷ ।
(ଶ୍ରୀ.ଜି. - ପୃ. ୩୪୮) ।

**ଜୟବିଜୟ ପ୍ରତିହାରୀ**-*ଦେ.ବି.*- ପୁରୀ ଶ୍ରୀମନ୍ଦିରର ସେବକ ବିଶେଷ । ଗୋଚ୍ଛିକାର । ଏମାନେ ଜୟବିଜୟ ଦ୍ୱାରଦେଶରେ ଠିଆ ହୋଇ ନୀତି ସମ୍ପାଦନାର ସୁରକ୍ଷା ଓ ଜଗିବା କାର୍ଯ୍ୟ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬୦) ।

**ଜୟବିଜୟ ପୂଜା**-*ଦେ.ବି.*- ସୂର୍ଯ୍ୟପୂଜାର ଠିକ୍ ପରେ ପରେ ଜୟବିଜୟ ଦ୍ୱାର ତଳ ପାହାଚରେ ଜୟବିଜୟଙ୍କ ପୂଜା ପ୍ରତ୍ୟହ ଅନୁଷ୍ଠିତ ହୋଇଥାଏ । ଏହି ପୂଜା ସମୟରେ ସେଠିକାର ପାହାଚରେ କୌଣସି ଲୋକ ପାଦଦେବା ମନା । ଅଜାଣତରେ କେହିପାଦ ଦେଲେ ସେଠାରେ ମହାସ୍ନାନ ହୋଇ ପୁନର୍ବାର ପୂଜା ହୁଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୭) ।

**ଜୟବିଜୟ ଦ୍ୱାରଫିଟା**-*ଦେ.ବି.*- ଅଖଣ୍ଡ ଓ ପାଳିଆ ମେକାପ ବଇଠା ଧରି ଠାକୁରଙ୍କୁ ଦେଖନ୍ତି ଓ ନଅ ଗୋଟି ବଳିତା ପିତଳ ବଇଠାରେ ଜାଳନ୍ତି । ଏହାପରେ ଜୟବିଜୟ ଦ୍ୱାର ଭିତର ପାଖରୁ ଅଳ୍ପ ଖୋଲାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୨) ।

**ଜଳ ଅଧିବାସ**-*ଦେ.ବି.*- ଶ୍ରୀମନ୍ଦିରରେ ଦେବସ୍ନାନ ପାଇଁ ସଂଗୃହୀତ ଜଳକୁ ସ୍ନାନ ଉପଯୋଗୀ କରିବାର ଏକ ବିଧି । ଜ୍ୟେଷ୍ଠ ପୂର୍ଣ୍ଣିମା (ସ୍ନାନପୂର୍ଣ୍ଣିମା) ତିଥିରେ ଠାକୁରମାନଙ୍କ ସ୍ନାନବିଧି ପୂର୍ବରୁ ସୁନା କୂଅରୁ ୧୦୮ ଗରା ପାଣି କଢ଼ାଯାଇ କୁମ୍ଭମାନଙ୍କରେ ଅଧିବାସ ଗୃହରେ ଯତ୍ନ ସହକାରେ ରଖାଯାଏ । ଘଟୁଆରୀଙ୍କ ଦ୍ୱାରା ପ୍ରତ୍ୟେକ କୁମ୍ଭ ଜଳରେ ସମାନ ପରିମାଣର ଚନ୍ଦନ, କର୍ପୂର, କେଶର ଓ ଚୂଆ ମିଶାଯାଏ । ଗରାବଡୁମାନେ ପ୍ରତ୍ୟେକ କୁମ୍ଭ ଉପରେ ଗୋଟିଏ କରି ନଡ଼ିଆ ଓ ଖଣ୍ଡେ କରିଆ ରଖନ୍ତି । ସମସ୍ତ କୁମ୍ଭଜଳ ଠାକୁରଙ୍କ ସ୍ନାନ ନିମନ୍ତେ ସୁରକ୍ଷିତ ରଖାଯାଏ । ଏହାକୁ ଜଳ ଅଧିବାସ କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୫୮) ।

**ଜଳକ୍ରୀଡ଼ା**-*ସଂ.ବି.*-ଜଳକ୍ରୀଡ଼ା ସମୟରେ ଶ୍ରୀମନ୍ଦିରରେ ଚନ୍ଦନଯାତ୍ରା ଭିତର ଚନ୍ଦନ

ଏକୋଇଶି ଦିନରେ ଜ୍ୟେଷ୍ଠ କୃଷ୍ଣ ଏକାଦଶୀ, ସାବିତ୍ରୀ, ଅମାବାସ୍ୟା, ଶୀତଳଷଷ୍ଠୀ ଓ ରକ୍ମିଣୀ ହରଣ ଏକାଦଶୀ, ଏହି ଚାରିଦିନ ଜଳକ୍ରୀଡ଼ା କରିଥାନ୍ତି । ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ରକ୍ମିଣୀ ହରଣ ହେତୁ ଲକ୍ଷ୍ମୀ ଓ ମଦନମୋହନ ବିଜେ ହେବେ ନାହିଁ । କେବଳ ଦୋଳଗୋବିନ୍ଦ ଠାକୁର ବିଜେ ହେବେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୦) ।

**ଜଳକ୍ରୀଡ଼ା ମଣ୍ଡପ**-*ଦେ.ବି.*- ଜଳକ୍ରୀଡ଼ା ନୀତି ନିମନ୍ତେ ଶ୍ରୀମନ୍ଦିର ଦକ୍ଷିଣ ଦିଗରେ ଥିବା କୁଣ୍ଡ ଉପରେ ମଣ୍ଡପ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୧, ୧୨୩) ।

**ଜଳକବର**-*ଦେ.ବି.*- ଏକ ପ୍ରକାର ପୁଷ୍ପଭୂଷା । ଠାକୁରଙ୍କ ଅଳଙ୍କାର ବିଶେଷ । ପୁରୀ ସନ୍ନିକଟ ଏକ ଗ୍ରାମର ନାମ । ନରେନ୍ଦ୍ର ପୋଖରୀ ଖୋଳାହେବା ପୂର୍ବରୁ ଚନ୍ଦନପୁରର ଜଳକବର ପୋଖରୀରେ ଚନ୍ଦନଯାତ୍ରା ହେଉଥିଲା ଓ ଚନ୍ଦନଯାତ୍ରାରୁ ଗ୍ରାମର ନାମ ଚନ୍ଦନପୁର ହେଲା ବୋଲି ଶ୍ରୀମର୍ତ୍ତ୍ୟ ବୈକୁଣ୍ଠରେ ଉଲ୍ଲେଖ ଅଛି ।
(ଶ୍ରୀ.ସ୍ୱ. - ପୃ. ୭୩) ।

**ଜଳାକବାଟି**-*ଦେ.ବି.*- ଗବାକ୍ଷ, ଜଳା-ଛିଦ୍ର, ଛୋଟ ଝରକା ।
(ଓ.ସାଂ.ଶ.- ପୃ. ୧୪୦) ।

**ଜଳଛେକ**-*ଦେ.ବି.*- କେତେକ ନିର୍ଦ୍ଦିଷ୍ଟ ଦିବସରେ ଶ୍ରୀଠାକୁରଙ୍କ ଲାଗି ହେବା ନିମନ୍ତେ ହସ୍ତରେ ଧରି କଳସରେ ନେବା ଜଳ ।
(ଶ୍ରୀ.ସ୍ୱ. ୨ୟ -ପୃ. ୫୮) ।

**ଜଳମାତୃକା** *ଦେ.ବି.*- ଜଳରେ ବାସ କରୁଥିବା ସପ୍ତଦେବୀଙ୍କୁ ଜଳମାତୃକା କୁହାଯାଏ । ସେମାନେ ହେଲେ ମତ୍ସ୍ୟୀ, କୂର୍ମୀ, ବାରାହୀ, ମକରୀ, ଦର୍ଦ୍ଦୁରୀ, ଜଳୁକା ଓ ତନ୍ତୁକା ।
(ଓ.ସାଂ.ଶ.- ପୃ. ୧୪୦) ।

**ଜହ୍ନିମୁଣ୍ଡିଆ**-*ଦେ.ବି.*- ପୁରୀର ଚାରି ଆଶ୍ରମ ମଧ୍ୟରୁ ମାର୍କଣ୍ଡେୟଙ୍କ ଆଶ୍ରମ ବ୍ୟତୀତ ଅନ୍ୟ ତିନି ଜଣ ପ୍ରାଚୀନ ଋଷିଙ୍କ ଆଶ୍ରମ ସମ୍ମୁଖସ୍ଥ ମଣ୍ଡପ । କୁମାର ପୂର୍ଣ୍ଣିମା ଦିନ ସୁଦର୍ଶନଙ୍କୁ ଚଉଦଳରେ ବିଜେ ହୋଇ ଝୁଲଣ ମଣ୍ଡପକୁ ଆସି ଅଳଙ୍କାର ଲାଗି ପରେ ଘଣ୍ଟ ଛତ୍ର, କାହାଳୀ ସହ ବଡ଼ଦାଣ୍ଡ ବାଟେ ନଅର ଦ୍ୱାର, ମରୀଚିକୋଟ ଗଳି, ଜମ୍ବେଶ୍ୱରଙ୍କ ଆଶ୍ରମ ଦେଇ ଜହ୍ନିମୁଣ୍ଡିଆ ଉପରେ ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୯) ।

**ଜୟଦେବ**-*ଦେ.ବି.*- ଗୀତଗୋବିନ୍ଦ କାବ୍ୟର ରଚୟିତା, କେନ୍ଦୁବିଲ୍ୱ ଗ୍ରାମବାସୀ କବି ।
(ପୂ.ଓ.ଭା. - ପୃ.୨୯୧୧) ।

**ଜୟନ୍ତୀ**-*ଦେ.ବି.*- ଜନ୍ମଦିନ । ଇନ୍ଦ୍ରଙ୍କର କନ୍ୟା, ଦୁର୍ଗା । ଅଷ୍ଟନାୟିକା ମଧ୍ୟରୁ ଚତୁର୍ଥ ନାୟିକା । ସାଧାରଣତଃ ବର୍ଷ ମଧ୍ୟରେ ଛଅଜଣଙ୍କର ଜୟନ୍ତୀ ପାଳିତ ହୁଏ । ଯଥା- ୧. ଶିବରାତ୍ରି, ୨. କୃଷ୍ଣ ଜନ୍ମାଷ୍ଟମୀ, ୩. ନୃସିଂହଜନ୍ମ, ୪. ବାମନଜନ୍ମ, ୫. ରାମନବମୀ, ୬. ଦୁର୍ଗା ମହାଷ୍ଟମୀ । ଶ୍ରୀମନ୍ଦିରରେ ଏହି ଦିନ ମାନଙ୍କରେ ସ୍ୱତନ୍ତ୍ର ନୀତିର ବ୍ୟବସ୍ଥା କରାଯାଇଥାଏ ।
(ପୂ.ଓ.ଭା. - ପୃ. ୨୯୧୧, ଓ.ସାଂ.ଶ. - ପୃ. ୧୩୯ ) ।

**ଜୟବିଜୟ ଦ୍ୱାର**-*ଦେ.ବି.*- ଶ୍ରୀମନ୍ଦିରର ଜଗମୋହନ ମଧ୍ୟକୁ ପ୍ରବେଶ ଦ୍ୱାର । ଦ୍ୱାର ଦକ୍ଷିଣ ପାର୍ଶ୍ୱରେ ଜୟର ମୂର୍ତ୍ତି ଓ ଉତ୍ତର ପାର୍ଶ୍ୱରେ ବିଜୟର ମୂର୍ତ୍ତି ରହିଛି । ପ୍ରତ୍ୟହ ସୂର୍ଯ୍ୟ ପୂଜାରେ ପାଳିଆ ପୂଜାପଣ୍ଡା ଏହି ଦୁଇ ମୂର୍ତ୍ତିଙ୍କର ପୂଜା କରନ୍ତି । ଏହି ମୂର୍ତ୍ତିଦ୍ୱୟଙ୍କୁ ଦ୍ୱାରପାଳ ବୋଲି କୁହାଯାଏ । ଜୟବିଜୟ ଦ୍ୱାରରେ ଗୋଛିକାରମାନେ ପ୍ରହରୀ କାମ କରିଥାନ୍ତି । ଏଠାରେ କପିଳେନ୍ଦ୍ରଦେବଙ୍କ ପାଞ୍ଚୋଟି, ପୁରୁଷୋତ୍ତମଙ୍କର ଚାରୋଟି, ପ୍ରତାପରୁଦ୍ରଦେବଙ୍କର ଦୁଇଟି ଓ ଗୋବିନ୍ଦ ବିଦ୍ୟାଧରଙ୍କର ଗୋଟିଏ ଏହିପରି ବାରଟି ଶିଳାଲେଖ ରହିଛି ।
(ଶ୍ରୀ.ସ୍ୱ. ୨ୟ- ପୃ. ୪୬, ପ୍ର.ଅ. ୨ୟ- ପୃ. ୩୫୦, ଓ.ସାଂ.ଶ.- ପୃ. ୧୩୯, ପୂ.ଓ.ଭା. - ପୃ. ୨୯୧୩) ।

**ଜୟମଙ୍ଗଳ ଆଳତି**-*ଦେ.ବି.*- ପ୍ରାତଃ କାଳୀନ ଆଳତିରେ ଠାକୁରଙ୍କର ଯେବେ ଦୁଇଟି

ଆଳତି ହୁଏ । ଏହି ଆଳତିରେ କର୍ପୂର, ଏକୋଇଶି ବତୀ ଓ ପିଠଉ ଆଳତି ବ୍ୟତୀତ ଆଉ ଦୁଇଟି ଅଧିକା ଆଳତି ହୁଏ । ଏହା ରୂପାବଟାରେ ହୁଏ । ଏହାକୁ ଜୟମଙ୍ଗଳ ଆଳତି କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫) ।

**ଜୟମଙ୍ଗଳ ପତ୍ରୀ**-*ଦେ.ବି.*- ଜୟମଙ୍ଗଳ ଆଳତି ସାମଗ୍ରୀ ଯୋଗାଉଥିବା ପତ୍ରୀବଡୁ ସେବକ । ସନ୍ଧ୍ୟା ଧୂପ ଟେରାଫିଟା ଆଳତି ସରିବା ପରେ ମୁଦୁଲିଠାରୁ ଆଳତିବଟା ନେଇ ସକାଢ଼ି ତିନିବାଡ଼ର ପୂଜାପଣ୍ଡାଙ୍କୁ ଦିଅନ୍ତି ।
(ପୁ.ବୋ. - ପୃ. ୨୦୨) ।

**ଜାଗର ବଇଠା**-*ଦେ.ବି.*- ଶ୍ରୀଠାକୁରଙ୍କ ସମ୍ମୁଖରେ ଜଳୁଥିବା ବଇଠା ଦୀପ ।
(ଶ୍ରୀ.ଶ.- ପୃ. ୭୩) ।

**ଜାଗାଘର**-*ଦେ.ବି.*- ଶରୀର ଚର୍ଚ୍ଚା, ନୃତ୍ୟ, ସଙ୍ଗୀତ, ଆମୋଦପ୍ରମୋଦାଦି ଉଦ୍ଦେଶ୍ୟରେ ପୁରୀର କେତେକ ପ୍ରାଚୀନ ପ୍ରତିଷ୍ଠାନ । ଏହି ଜାଗାଘର ରାଜ ପ୍ରତିଷ୍ଠିତ ଓ ପୃଷ୍ଠପୋଷକତା ତଥା ସନ୍ନ୍ୟାସୀମାନଙ୍କ ଦ୍ୱାରା ଓ ବହୁମାନ୍ୟ ବଦାନ୍ୟ ବ୍ୟକ୍ତିଙ୍କ ଦ୍ୱାରା ଗଠିତ । ଏହି ସବୁ ଘରେ ଶକ୍ତି ଓ ପୌରୁଷର ପ୍ରତୀକ ଭାବରେ ମହାବୀର ହନୁମାନ ଜାଗା ମଧ୍ୟରେ ପ୍ରତିଷ୍ଠିତ ଥାଆନ୍ତି । ପୁରୀର ସାଙ୍ଗ, ଭାଙ୍ଗ, ସଙ୍ଗୀତ, ପଙ୍ଗତ ସଂସ୍କୃତିର ମନ୍ଦିର ଏହି ଜାଗାଘର । ପୁରୀର ଜୀବନଚର୍ଚ୍ଚା ଏହାକୁ କେନ୍ଦ୍ରକରି ଗଢ଼ି ଉଠିଛି । ଏହି ସବୁ ଜାଗାଘର ଶ୍ରୀମନ୍ଦିର ଓ ଶ୍ରୀକ୍ଷେତ୍ରର ସୁରକ୍ଷା ନିମନ୍ତେ ଅଭିପ୍ରେତ ବୋଲି କେହି କେହି ମତ ଦିଅନ୍ତି ।
(ପୂ.ଓ.ଭା. - ପୃ. ୨୯୪) ।

**ଜାତକର୍ମ**-*ଦେ.ବି.*- ହିନ୍ଦୁମାନଙ୍କର ଦଶ କର୍ମ ମଧ୍ୟରୁ ଗୋଟିଏ ସଂସ୍କାର । ଝୁଲଣ ପୂର୍ଣ୍ଣିମା (ଶ୍ରାବଣ ପୂର୍ଣ୍ଣିମା) ଦିନ ସୁଦର୍ଶନ ଠାକୁର ଦ୍ୱିପ୍ରହରର ଧୂପ ଉଠିଲା ପରେ ମାର୍କଣ୍ଡ ପୁଷ୍କରିଣୀ ମଣ୍ଡପ ଉପରେ ବିଜେ ହୁଅନ୍ତି । ସୁଦୁସୁଆର, କୁମ୍ଭାର ବିଶୋଇ ନେଇଥିବା ଚିକିଟା ମାଟିରେ ବଳଭଦ୍ରଙ୍କ ମୂର୍ତ୍ତି ନିର୍ମାଣ କରନ୍ତି । ପୂଜାପଣ୍ଡା ତାହାଙ୍କୁ ଜୀବନ୍ୟାସ ଦେଇ ବିଧି ମୁତାବକ ଜାତକର୍ମ ବଢ଼ାନ୍ତି । ପୂଜାର୍ଚ୍ଚନା ପରେ ବଳଭଦ୍ରଙ୍କ ପିତୁଳାକୁ ଜଳରେ ବିସର୍ଜନ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୭/୮୮) ।

**ଜିତାଷ୍ଟମୀ**-*ସଂ.ବି.*- ଆଶ୍ୱିନ ମାସର କୃଷ୍ଣପକ୍ଷର ଅଷ୍ଟମୀ, ଜୀମୂତାଷ୍ଟମୀ, ଦୂତୀବାହନ ପୂଜା । ଏହି ଦିନ ଶରତକାଳୀନ ଦୁର୍ଗୋତ୍ସବ ଆରମ୍ଭ ହୁଏ ଓ ଦୂତିବାହନ ବା ଜୀମୂତବାହନ ପୂଜା ମଧ୍ୟ କରାଯାଏ । ଏହାର ଅନ୍ୟ ନାମ ମୂଳାଷ୍ଟମୀ । ଏହି ଦିନ ପୁତ୍ର କାମିନୀମାନେ ସନ୍ତାନଙ୍କ ମଙ୍ଗଳ କାମନାରେ ଗଳାରେ ରାକ୍ଷୀ ବାନ୍ଧନ୍ତି । ଶ୍ରୀମନ୍ଦିରରେ ଲକ୍ଷ୍ମୀଙ୍କ ପାଖରେ ଏହିଦିନ ଏକ ସ୍ୱତନ୍ତ୍ର ପୂଜା, ବନ୍ଦାପନା କରାଯାଇ ଲକ୍ଷ୍ମୀବ୍ରତ କଥା ପାଠ କରାଯାଏ ।
(ପୂ.ଓ.ଭା. - ୨୯୯୦, ଶ୍ରୀ.ସ୍ୱ. ୨ୟ - ପୃ. ୯୪) ।

**ଜିତେନ୍ଦ୍ରିୟ**-*ସଂ.ବି.*- କାମକ୍ରୋଧାଦି ରିପୁମାନଙ୍କୁ ବଶୀଭୂତ କରିବା । ତୁରୀୟ ଅବସ୍ଥା । ଯେଉଁ ବ୍ୟକ୍ତିର କୌଣସି ବିଷୟ ଦେଖିଲେ, ଶୁଣିଲେ, ଖାଇଲେ, ଛୁଇଁଲେ ବା ଶୁଙ୍ଘିଲେ ହର୍ଷ ବା ବିଷାଦ ହୁଏନାହିଁ,ତାଙ୍କୁ ଜିତେନ୍ଦ୍ରିୟ କୁହାଯାଏ ।
(ପୂ.ଓ.ଭା. - ପୃ. ୨୯୯୧) ।

**ଜାମା**-*ଦେ.ବି.*- ଶ୍ରୀମନ୍ଦିରରେ ଶୀତ ଆଗମନରେ ଠାକୁରଙ୍କୁ ଲାଗି ହେଉଥିବା ବସ୍ତ୍ର ।
(କ୍ଷେ.ସ.) ।

**ଜାମାଲାଗି ବେଶ**-*ଦେ.ବି.*- ବସନ୍ତପଞ୍ଚମୀଠାରୁ ଫଗୁଦଶମୀ ପର୍ଯ୍ୟନ୍ତ ଶ୍ରୀଜୀଉଙ୍କ ଠାରେ ଲାଗି ହେଉଥିବା ବେଶ । ଜାମାଲାଗି ବେଶ ଓ ରାଧାଦାମୋଦର ବେଶରେ ଠାକୁରମାନଙ୍କୁ ୩୦ ମୂର୍ତ୍ତି ସୁନା ଅଳଙ୍କାର ଲାଗି ହୁଏ । ସେଗୁଡ଼ିକ ହେଲା- ନଳିଭୂତ-୪, କୁଣ୍ଡଳ-୪, ଆଡକଳି-୪, ଚନ୍ଦ୍ରିକା-୨, ଚନ୍ଦ୍ରସୂର୍ଯ୍ୟ-୬, ତିଢ଼ଗି-୨, ଓଢ଼ିଆଣି-୩, ମାଳି-୩, ତିଳକ-୨ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୪) ।

**ଜେଉଡ଼ଭୋଗ**-*ଦେ.ବି.*- ଏକ ପ୍ରକାର ଭୋଗ । ଶ୍ରୀରାମ, ଶ୍ରୀକୃଷ୍ଣ, ବାମନ ଓ ନୃସିଂହଙ୍କ ଜନ୍ମ ତିଥିର ପୂର୍ବଦିନ ଏହା ଠାକୁରଙ୍କୁ ଲାଗିହୁଏ । ଜେଉଡ଼ ସହିତ ଏହି ଭୋଗରେ ଶାଗ, ତରକାରୀ, ପିଠା, ଝିଲି, ସାନ ଆରିସା, ଓରିଆ, ଖିରା ପ୍ରଭୃତି ଭୋଗ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୯, ୧୭୯) ।

**ଜ୍ୟେଷ୍ଠ ପଞ୍ଚକ ବ୍ରତ**-*ସଂ.ବି.*- ଏହି ବ୍ରତ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ କରାଯାଏ । ଏହି ବ୍ରତରେ ସାଗର ସ୍ନାନ, ଦାନ, ହୋମ ଇତ୍ୟାଦି କରାଯାଇ ମଧୁସୂଦନ ଓ ଲକ୍ଷ୍ମୀଙ୍କୁ ପୂଜା କରାଯାଇଥାଏ । ପୂର୍ଣ୍ଣିମା ଦିନ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପୂଜା କରାଯାଇ ଚତୁର୍ବର୍ଗ ଫଳ ଆଶା କରାଯାଏ ।
(କ୍ଷେ.ସ.) ।

**ଜ୍ୟେଷ୍ଠ ଶୁକ୍ଳଦଶମୀ**-*ଦେ.ବି.*- ଶ୍ରୀମନ୍ଦିରରେ ଏହିଦିନ ରକ୍ମିଣୀ ବିବାହ ପ୍ରସ୍ତାବ ଶୁଣି ମହାପ୍ରଭୁ ରାଜେନ୍ଦ୍ରାଭିଷେକ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୨) ।

**ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ**-*ଦେ.ବି.*- ଶ୍ରୀମନ୍ଦିରରେ ରୁକ୍ମିଣୀ ହରଣ ଓ ବିବାହ ନୀତି ପାଳିତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୩) ।

**ଜ୍ୟେଷ୍ଠ ଶୁକ୍ଳ ଦ୍ୱାଦଶୀ**-*ଦେ.ବି.*- ଶ୍ରୀମନ୍ଦିରରେ ଚମ୍ପକ ଦ୍ୱାଦଶୀ ଓ ରୁକ୍ମିଣୀ ବିବାହ ଶୋଭାଯାତ୍ରା ପାଳିତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୩) ।

**ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ**-*ଦେ.ବି.*- ଶ୍ରୀମନ୍ଦିରରେ ଚତୁର୍ଥୀ ହୋମ ପରେ ରକ୍ମିଣୀଙ୍କ ସହ ଏକାନ୍ତ ଯାପନ ଏବଂ ସରସ୍ୱତୀ ଓ ମାଧବ ଖଟ ଶେଯ ଘରେ ବିଜେ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨୪) ।

**ଜେନାମଣି ପିଠା**-*ଦେ.ବି.*- ଶ୍ରୀମନ୍ଦିରରେ ବ୍ୟବହୃତ ଏକ ପ୍ରକାର ବିରିପିଠା । ଆରିସା ପାଗରେ ପ୍ରସ୍ତୁତ ହୋଇ ଏଥିରେ ପାନ ମହୁରୀ ପଡିଥାଏ ।
(କ୍ଷେ.ସ.) ।

**ଜେନାମଣି ଭୋଗ**-*ଦେ.ବି.*- ଶ୍ରୀଜୀଉଙ୍କ ପାଖରେ ଦ୍ୱିପହର ଧୂପରେ ଲାଗି ହେଉଥିବା ବିରିପିଠା । ଶ୍ରୀନଅରକୁ ଯୁବରାଜଙ୍କ ନିମନ୍ତେ ପଠାଯାଉଥିବା ଟାଟଭୋଗ ପ୍ରସାଦ ।
(ଶ୍ରୀ.ଚେ.ଦୀ. - ପୃ. ୨୬୧) ।

**ଜ୍ୟୋତି**-*ଦେ.ବି.*- ଆଲୋକ, ତେଜ, ଚୈତନ୍ୟ, ଆତ୍ମା, ଆଖିର ପିତୁଳା । ଶରୀର ସାଧନତତ୍ତ୍ୱରେ ବତିଶ କଳା ମଧ୍ୟରୁ ଏହା ଏକ କଳା ।
(ଓ.ସାଂ.ଶ.- ପୃ. ୧୪୪, ପୂ.ଓ.ଭା.- ପୃ. ୩୦୫୯, ପ୍ର.ଅ. ୨ୟ - ପୃ. ୧୦୦୨, କ୍ର.ବି.ଓ.ଶ.ସ. ୧ମ- ପୃ. ୩୬୫) ।

**ଜ୍ୟୋତିଷ (ଖୁରିନାହାକ) ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ସେବକ ପ୍ରତ୍ୟେକ ଦିନ ଶ୍ରୀଜୀଉଙ୍କ ଅବକାଶ ପୂଜା ସମୟରେ ପାଞ୍ଜିନେଇ ବିଭିନ୍ନ ପର୍ବ, ଯାନି, ଯାତ୍ରା, ନକ୍ଷତ୍ର ବନ୍ଦାପନା ଇତ୍ୟାଦି ତଢ଼ାଉ କରଣଙ୍କୁ ଜଣାଇଥାଆନ୍ତି । ପ୍ରତିଦିନ ଠାକୁରମାନଙ୍କ ଦୈନିକ ରାଶି ନକ୍ଷତ୍ରମାନ ପଢ଼ି ଛାମୁରେ ଜଣାନ୍ତି । ଦୋଳପୂର୍ଣ୍ଣିମା ଦିନ ଅବକାଶ ବଢ଼ିଲା ପରେ ଠାକୁରଙ୍କ ପାଖରେ ନୂତନବର୍ଷ ପଞ୍ଜିକା ପାଠକରି ଶୁଣାନ୍ତି । ଚନ୍ଦନଯାତ୍ରା ବୟାଳିଶ ଦିନ, ଦିନ ଓ ରାତ୍ର ଆଲଟ ଲାଗିଲେ ଖୁରି ଘଣ୍ଟା ରଖି ଆଲଟ ବସୁଥିବା ସମୟରେ, ଦକ୍ଷିଣ ଦ୍ୱାରେ ଖୁରି ବସି ନିୟମିତ ସମୟରେ ସେବକମାନଙ୍କୁ ଖବର ଦିଅନ୍ତି । ଅବକାଶ ସମୟରେ ଶ୍ରୀମନ୍ଦିର ମଧ୍ୟରେ ଜ୍ୟୋତିଷ ଖୁରିନାହାକ ଠିଆହୋଇ ଠାକୁରମାନଙ୍କର ସେହିଦିନର ନକ୍ଷତ୍ର ବିଚାରାଦି ଶୁଣାନ୍ତି । ଯଦି ସେହିଦିନ ବିଗ୍ରହମାନଙ୍କ ଜନ୍ମ ନକ୍ଷତ୍ର ଥାଏ ସେ ତଢ଼ାଉ କରଣଙ୍କୁ କୁହନ୍ତି ଓ ମଧ୍ୟାହ୍ନ ଧୂପ ପରେ ନକ୍ଷତ୍ର ବନ୍ଦାପନା ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୫୨, ୨ୟ - ପୃ. ୧୩, ଓ.ସାଂ.ଶ.- ପୃ. ୧୩୭, ପୂ.ଓ.ଭା. - ପୃ. ୨୮୫୩) ।

●

# ଝ

**ଝଲକ**-*ଦେ.ବି.*- ଔଜ୍ଜଲ୍ୟ, ଦୀପ୍ତି, ତେଜ, କାନ୍ତି, ଅଗ୍ନିଶିଖା, ଆଲୋକ, ତରଙ୍ଗ, କଂସାଳ ବାଦ୍ୟ, ନୋଲକ, ଫାସିଆରେ ଝୁଲୁଥିବା ଗୋଲରତ୍ନ ବା ଧାତୁ ଗୋଲକ, ଠାକୁରଙ୍କ କର୍ଣ୍ଣାଳଙ୍କାର ବିଶେଷ । ପ୍ରତିବିମ୍ବ, ଢେଉ ବା ତରଙ୍ଗ । ଶ୍ରୀଜୀଉଙ୍କ ଶ୍ରୀଅଙ୍ଗରେ ଥିବା ସ୍ୱର୍ଣ୍ଣଅଳଙ୍କାରରେ ଆଲୋକ ରଶ୍ମି ପଡ଼ିଲେ ଯେଉଁ ଚକ୍ ଚକ୍ ଦେଖାଯାଏ ତାହାକୁ ଝଲକ କୁହାଯାଏ । କୁଞ୍ଚ କୁଞ୍ଚ ହୋଇ ସିଲ୍‌କ ବସ୍ତ୍ରର ଏକ ଅଳଙ୍କରଣ । (ପ୍ର.ଅ. - ପୃ.୨୦୦୮, ପୂ.ଓ.ଭା. - ପୃ.୩୦୮୦) ।

**ଝଲକ ବୋଳା**-*ଦେ.ବି.*- କୁଞ୍ଚ କୁଞ୍ଚ ହୋଇ ଏକ ସିଲ୍‌କ ବସ୍ତ୍ରର ଅଳଙ୍କରଣ । (ପୁ.ବୋ.- ପୃ.୨୦୩) ।

**ଝରା**-*ଦେ.ବି.*- ମୁଣ୍ଡରେ ବ୍ୟବହୃତ ଫୁଲ ଗଭା । ଫୁଲ ଗୁନ୍ଥା ତୋଡ଼ା । ଟୋପି ଆଦିରୁ ଏକ ପାଖରେ ଓହଳିଥିବା ଜରି ବା ରେଶମ ଡୋରର ଝୁମ୍ପା ବା ଗୁଚ୍ଛ । ଜୁଡ଼ାର ଅଳଙ୍କାର ବିଶେଷ । ଝରା କାଠିରୁ ଓହଳିଥିବା ଘୁଙ୍ଗୁର ଲଗା ଝଞ୍ଜିର ମାଳ । ଭୂଷଣ ସ୍ୱରୂପ । ରଥଯାତ୍ରା ସମୟରେ ରଥର ଚାରିପାଖରେ ଝୁଲୁଥିବା ଝୁମ୍ପା । ପୁଷ୍ପର ଲମ୍ବମାନ ଗୁଚ୍ଛ ବା ପେନ୍ଥା । (ପୂ.ଓ.ଭା. - ପୃ. ୩୦୭୮, କ୍ର.ଓ.ଶ.ସ. ୧ମ- ପୃ.୩୬୯, ପ୍ର.ଅ. ୨ୟ- ପୃ.୧୦୦୮, ଓ.ସାଂ.ଶ.-ପୃ.୧୪୫) ।

**ଝରି**-*ଦେ.ବି.*- ଯନ୍ତ ବା ରଞ୍ଜା ସାହାଯ୍ୟରେ କାଠ ଆଦିରେ କରାଯିବା ଏକପ୍ରକାର ସରୁ ନଳୀ । ନଳ ଖଞ୍ଜା ଗଡୁ । ନଳି ଲାଗିଥିବା ଢାଳଗଡୁ । ଗୋଲାପଜଳ ଛିଞ୍ଚିବାର ଛିଦ୍ରଯୁକ୍ତ ପାତ୍ର । ଶ୍ରୀମନ୍ଦିରରେ ପୂଜା ନିମନ୍ତେ ଆବଶ୍ୟକୀୟ ଗଡୁ ଢାଳ ଯାହା ପିତଳରେ ନିର୍ମିତ ହୋଇଥାଏ । ଶ୍ରୀଜୀଉଙ୍କ ସାହାଣମେଲା ସମୟରେ ସିଂହାସନ ଉପରେ ଠାକୁରଙ୍କ ପାଦଦେଶରେ ତିନିଗୋଟି ଝରି ରଖାଯାଇଥାଏ । (ପୂ.ଓ.ଭା. - ପୃ. ୩୦୭୯, ଓ.ସାଂ.ଶ- ପୃ.୧୪୦୫, କ୍ର.ଓ.ଶ.- ପୃ.୩୬୯, ପ୍ର.ଅ. ୨ୟ- ପୃ.୧୦୦୮) ।

**ଝାଞ୍ଜ**-*ଦେ.ବି.*- କଂସା ମିଶା ପିତ୍ତଳ ନିର୍ମିତ ବଡ଼ ଓ ପତଳା କରତାଳ । ଏହା ମନ୍ଦିରରେ କୀର୍ତ୍ତନ ବେଳେ ମୃଦଙ୍ଗ ସଙ୍ଗେ ବଜାଯାଏ । (ଓ.ସାଂ.ଶ.- ପୃ.୧୪୫) ।

**ଝାଞ୍ଜପିଟା ସେବକ**-*ଦେ.ବି.*- ସବୁ ଧୂପରେ ଯେଉଁ ସେବକଙ୍କ ଦ୍ୱାରା ଝାଞ୍ଜ ପିଟାଯାଏ । (ଶ୍ରୀ.ଶ.- ପୃ.୭୫) ।

**ଝାଲି ମଠାଣ**-*ଦେ.ବି.*- ଝଳେଇ, ମରାମତି । (ପୁ.ବୋ.- ପୃ.୨୦୩) ।

**ଝିଙ୍କା**-*ଦେ.ବି.*- ଶ୍ରୀମନ୍ଦିର ରୋଷଶାଳା ଚୁଲିରେ କୁଡୁଆ ବସିବାପାଇଁ ଉଦ୍ଦିଷ୍ଟ ଉଚ୍ଚ ସ୍ଥାନ । ପ୍ରତି ଚୁଲିରେ ଭିତର ଝିଙ୍କା ତିନୋଟି ଓ ତା' ମଝିରେ ଉପର ଝିଙ୍କା ତିନୋଟି ଲେଖା ଥାଏ । ଭିତର ଝିଙ୍କାକୁ ଥର ଓ ବାହାର ଝିଙ୍କାକୁ ପାଖ ବୋଲି କୁହାଯାଏ । (କ୍ଷେ.ସ.) ।

**ଝିମିରିଫଗୁ**-*ଦେ.ବି.*- ଚନ୍ଦନ ମିଶା ଫଗୁ । ଦୋଳ ସମୟରେ ରାଜଦୋଳ ଅର୍ଥାତ୍ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହା ଶ୍ରୀମନ୍ଦିରରେ ବ୍ୟବହୃତ ହୁଏ । ସିଂହାସନ ତଳେ ମୁଦିରସ୍ତ ତିନିଧାଡ଼ିରେ ଝିମିରି ଫଗୁ ଅଞ୍ଜଳି ଦିଅନ୍ତି ଓ ଫାଲଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ମୁଦିରସ୍ତ ଶ୍ରୀଅଙ୍ଗରେ ଚନ୍ଦନ ଫଗୁ ଲାଗି କରନ୍ତି । ଲକ୍ଷ୍ମୀ ନାରାୟଣଙ୍କ ପାଖରେ ଫଗୁ ଖେଳ ହୁଏ । ସମ୍ପ୍ରଦା ମାହାରି ଓ ମୁଦିରସ୍ତଙ୍କ

ମଧ୍ୟରେ ମଧ୍ୟ ଏହି ଖେଳ ହେଇଥାଏ । ପରେ ପ୍ରସାଦ ଲାଗି ଓ ବନ୍ଦାପନା ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୧୧) ।

**ଝୀନ ପତନୀ**-*ଦେ.ବି.*- ପାଟଲୁଗା, ହାଲୁକା ଶାଢ଼ୀ । ଶ୍ରୀମନ୍ଦିରର ଠାକୁରଙ୍କୁ ଲାଗି ହେଉଥିବା ଅତ୍ୟନ୍ତ ସୂକ୍ଷ୍ମ ପାଟ ବସ୍ତ୍ର । ଶ୍ରୀଜଗନ୍ନାଥଙ୍କ ଓଢ଼ଣୀ ଷଷ୍ଠୀ ପୂର୍ବଦିନ ଓ ଚନ୍ଦନ ବୟାଳିଶ ଦିନ ଏହି ବସ୍ତ୍ର ପରିଧାନ କରିଥାନ୍ତି ।
(କ୍ଷେ.ସ.) ।

**ଝୁଣାକୁଟା ଘର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ସୁଦୁସୁଆର ଦ୍ୱାରା ଏହି ଘରେ ଠାକୁରଙ୍କ ଦରକାର ମୁତାବକ ଝୁଣା କୁଟାଯାଏ ।
(ଶ୍ରୀ.ସ୍ୱ. ୨ୟ-ପୃ.୨୪୬) ।

**ଝୁମ୍ପା**-*ଦେ.ବି.*- ଫିତା ବା ପାଟଫୁଲି ଅଗରେ ଲାଗିଥିବା ଫୁଲି । ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଶ୍ରୀମୁଖ ତିଳକ ନାସାଗ୍ର ପର୍ଯ୍ୟନ୍ତ ଲମ୍ବିଥିବା ଶ୍ରୀ ଠାକୁରଙ୍କର ପୁଷ୍ପ ଝୁମ୍ପା ।
(ପ୍ର.ଅ. ୨ୟ - ପୃ. ୧୦୧୬) ।

**ଝୁଡ଼ି**-*ଦେ.ବି.*- ବାଉଁଶ ପାତିଆ ବା ଅନ୍ତରେ ବୁଣା ହୋଇଥିବା ପାତ୍ରବିଶେଷ । ମହାପ୍ରଭୁଙ୍କର ଫୁଲ, ତୁଳସୀ ପ୍ରଭୃତି ଏଥିରେ ରଖାଯାଏ ।

**ଝୁଲଣ**-*ଦେ.ବି.*- ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ରାଧାକୃଷ୍ଣଙ୍କ ଦୋଳିରେ ଝୁଲିବା ଉତ୍ସବ ।
(ପୂ.ଓ.ଭା. - ପୃ. ୩୧୧୭, ଶ୍ରୀ.ସ୍ୱ. ୨ୟ - ପୃ. ୮୭-୮୮) ।

**ଝୁଲଣ ଯାତ୍ରା**-*ଦେ.ବି.*- ପୁରୀ ଓ ବୃନ୍ଦାବନରେ ଝୁଲଣଯାତ୍ରା ପ୍ରସିଦ୍ଧ ଅଟେ । ଶ୍ରୀମନ୍ଦିରରେ ଶ୍ରାବଣ ଶୁକ୍ଳ ଦଶମୀଠାରୁ ଆରମ୍ଭ ହୋଇ କୃଷ୍ଣ ପକ୍ଷ ପ୍ରତିପଦାରେ ଏହି ଯାତ୍ରା ଶେଷ ହୁଏ । ମଝିରେ ତିଥି କ୍ଷୟ ଥିଲେ ଶୁକ୍ଳ ନବମୀଠାରୁ ଆରମ୍ଭ ହୋଇ କୃଷ୍ଣ ପ୍ରତିପଦା ପର୍ଯ୍ୟନ୍ତ ହୁଏ । ଝୁଲଣ କୁଞ୍ଜରେ ଲକ୍ଷ୍ମୀ, ସରସ୍ୱତୀ, ମଦନମୋହନ ଏହି ତିନିମୂର୍ତ୍ତି ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୫-୮୬) ।

**ଝୋଟି**-*ଦେ.ବି.*- ଚାଉଳମଣ୍ଡ ବା ପିଠଉ ବା ମୁରୁଜରେ କରାଯାଉଥିବା ବିଭିନ୍ନ ଚିତ୍ର ।

**ଝୋଲି ଲୁଗା**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କ ଏକ ପ୍ରକାର ବସ୍ତ୍ର ବିଶେଷ ।
(ପୁ.ବୋ.- ପୃ.୨୦୩) ।

**ଝୋବା କଣ୍ଠି**-*ଦେ.ବି.*- ଏକ ଅଳଙ୍କାର ବିଶେଷ । ଶ୍ରୀ ଠାକୁରଙ୍କ କଟି ଦେଶ ନିମନ୍ତେ ସ୍ୱର୍ଣ୍ଣ ଝୁମ୍ପା ଲାଗିଥିବା ଏକ ପ୍ରକାର ଅଳଙ୍କାର ।
(ଶ୍ରୀ.ସ୍ୱ. - ପୃ. ୧୫) ।

# ଟ

**ଟଙ୍କ ତୋରାଣି** - *ଦେ.ବି.*- ଶ୍ରୀଅନ୍ନମହାପ୍ରସାଦରେ ଜଳ, ଦହି, ଟଭାପତ୍ର, ଲେମ୍ବୁପତ୍ର, ଲେମ୍ବୁ, ଭୃରଙ୍ଗା ପତ୍ର, ଗୋଲମରିଚ, ଅଦା ଇତ୍ୟାଦିର ମିଶ୍ରଣରେ ଏହା ପ୍ରସ୍ତୁତ ହୋଇଥାଏ । ପୂର୍ବେ ଆନନ୍ଦବଜାରସ୍ଥ ସ୍ନାନମଣ୍ଡପ ପଛରେ ଏକ ଡ଼ଙ୍ଗାରେ ଏହା ଭକ୍ତ ଓ ଦର୍ଶନାର୍ଥୀଙ୍କ ପାଇଁ ବିନା ଶୁଳ୍କରେ ଉପଲବ୍ଧ ହେଉଥିଲା । ମାତ୍ର ଏବେ ସେହି ସ୍ଥାନରେ କୁଡୁଆରେ ମୂଲ୍ୟ ପ୍ରତିବଦଳରେ ଭକ୍ତଙ୍କୁ ମିଳୁଛି । ଏତଦ୍‌ବ୍ୟତୀତ ଓଡ଼ିଆମଠ ଓ କବୀର ଚଉରାରେ ଏହା ଭକ୍ତ ଓ ଦର୍ଶନାର୍ଥୀଙ୍କ ପାଇଁ ଉପଲବ୍ଧ ହୋଇଥାଏ । କବୀର ଚଉରାରେ ଟଙ୍କ ତୋରାଣି ଦେଇ ଝାଡୁରେ ଆଶୀର୍ବାଦ କରାଯିବାର ଚଳଣି ରହିଛି ।
(ପୁ.ବୋ. - ପୃ. ୨୦୩) ।

**ଟମକ** -*ଦେ.ବି.*- ଡ଼େଙ୍ଗୁରା, ନାଗରା, ଧେଣ୍ଡୁରା । ଏକ ପ୍ରକାର ବାଦ୍ୟ ବିଶେଷ । ଶ୍ରୀଠାକୁରଙ୍କର ବିଶେଷ ପର୍ବପର୍ବାଣୀରେ ଏହା ବ୍ୟବହୃତ ହୁଏ । (ଓ.ସାଂ.ଶ. - ପୃ. ୧୪୬, ପୂ.ଓ.ଭା. - ପୃ. ୩୧୩୩) ।

**ଟମକିଆ** - *ଦେ.ବି.*- ଟମକ ବଜାଇବା ବା ଡ଼େଙ୍ଗୁରା ଦେବା ସେବକ ।
(ପୂ.ଓ.ଭା. - ପୃ. ୩୧୩୩, ପ୍ର.ଅ. ୩ୟ - ପୃ. ୧୦୨୦,ପୁ.ବୋ. - ପୃ.୨୦୩) ।

**ଟହଲିଆ** - *ଦେ.ବି.*- ଦେବାଳୟ ମଠରେ ବୋଲ କରୁଥିବା କର୍ମଚାରୀ ବିଶେଷ ।
(ପୂ.ଓ.ଭା. - ପୃ. ୩୧୩୬, ଓ.ସାଂ.ଶ. - ପୃ. ୧୪୭, ପ୍ର.ଅ. ୩ୟ - ପୃ. ୧୦୨୧, ପୁ.ବୋ. - ପୃ. ୨୦୩) ।

**ଟାକୁଆ** - *ଦେ.ବି.*- ଏକ ପ୍ରକାର ମିଷ୍ଟାନ୍ନ ଖଜା । ଶ୍ରୀଜଗନ୍ନାଥଙ୍କ ପାଖରେ ଦ୍ୱିପ୍ରହର ଭୋଗରେ ଲାଗେ । ଏହାର ଆକୃତି ଆମ୍ବ ଟାକୁଆ ପରି ହୋଇଥିବାରୁ ଏହାକୁ ଟାକୁଆ ବୋଲି କୁହାଯାଏ । ଏହା ଶ୍ରୀଗୁଣ୍ଡିଚାରେ, ରଥ ଭୋଗରେ ଅର୍ପଣ କରାଯାଏ । ଚାଉଳ ଚୂନା ଓ ଗୁଡ଼ ଚକଟା ହୋଇ ଆମ୍ବ ଟାକୁଆ ଆକୃତିରେ ତିଆରି ହୋଇ ଘିଅରେ ଛଣାହୋଇ ଚିନି ଶିରା ପାଗ ଦିଆଯାଏ ।
(ଶ୍ରୀ.ସ୍ୱ. ୨ୟ - ୧୮୫,୧୮୬,୧୮୭, ପୂ.ଓ.ଭା. - ପୃ. ୩୧୪୦) ।

**ଟାହିଆ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ବାଲିସାହିରେ ଅବସ୍ଥିତ ରଘୁ ଅରକ୍ଷିତଙ୍କ ଦ୍ୱାରା ପ୍ରତିଷ୍ଠିତ ରାଘବ ଦାସ ମଠ ଶ୍ରୀଜୀଉଙ୍କ ଟାହିଆ ଯୋଗାଇଥାଆନ୍ତି । ଏହା ହେଉଛି ପୁଷ୍ପର ଏକ କିରିଟି । ଏହା ଫୁଲ ସୋଲ, ଜରି ଓ ବାଉଁଶ ପାତିଆରେ ନିର୍ମିତ । ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ମଥାଜୁଡ଼ାରେ ଲାଗିଥିବା ଟାହିଆ ମୟୂର ଗୁଚ୍ଛ ସଦୃଶ । ଏହାର ଉଚ୍ଚତା ସାଢ଼େ ଚାରିହାତ ଓ ଓସାର ଛଅ ହାତ । ଶ୍ରୀଜଗନ୍ନାଥଙ୍କ ଟାହିଆରେ ବତିଶିଟି କାଠି, ଶ୍ରୀବଳଭଦ୍ରଙ୍କ ତେତିଶିଟି କାଠି ଓ ସୁଭଦ୍ରାଙ୍କର ବାରଟି କାଠିରେ ଟାହିଆ ନିର୍ମିତ । କାଠିରେ ଦୁବ ଓ ଫୁଲରେ ଚୂଳ ଟୋପର ଭଳି ଲାଗିଥାଏ । ପ୍ରତ୍ୟେକ ଠାକୁର ରତ୍ନସିଂହାସନରୁ ଧାଡ଼ି ପହଣ୍ଡିରେ ଆସି ସାତ ପାହାଚରେ ପହଞ୍ଚିଲେ ଦଇତାପତି ସେବକମାନେ କ୍ରମାନ୍ୱୟରେ ଟାହିଆ ଲାଗି କରିଥାନ୍ତି । ବାହୁଡାରେ ଗୁଣ୍ଡିଚାମନ୍ଦିର ଜଗମୋହନ ଦ୍ୱାରଠାରେ ବିଗ୍ରହମାନଙ୍କୁ ଟାହିଆ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୬୬ / ୭୨) ।

**ଟିପେଇ କୁଡ଼ିଆ**-*ଦେ.ବି.*- ବଡ଼ କୁଡୁଆ ବା ନମ୍ବରି କୁଡୁଆ (ମାଟିର ବଡ଼ ପାତ୍ର) । ଅନ୍ନ ପ୍ରସାଦ ପ୍ରସ୍ତୁତି ଓ ବଣ୍ଟନରେ ଏହା ବ୍ୟବହୃତ ହୋଇଥାଏ ।
(ପୁ.ବୋ.- ପୃ. ୨୦୪/୧୬୭) ।

**ଟେକାଘୋଡ଼** - *ଦେ.ବି.*- ଏକ ଆଭରଣ ବିଶେଷ । ଶୀତ କମିଗଲେ ଠାକୁର ପରିଧାନ କରୁଥିବା ଘୋଡ଼ବସ୍ତର ଦୁଇପାଖେ ଅଳ୍ପ ଟିକେ ଟେକି ଦିଆଯାଉଥିବାରୁ ତାକୁ ଟେକା ଘୋଡ଼ ଲାଗି କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୪, ପୁ.ବୋ. - ପୃ. ୨୦୪) ।

**ଟେରା**-*ଦେ.ବି.*- ଆଡୁଆଳ ବା କନାର ପରଦା । ଶ୍ରୀଜଗନ୍ନାଥଙ୍କ ପାଖରେ ପ୍ରସାଦଲାଗି କାଳରେ ଏହାର ବ୍ୟବହାର ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୯) ।

**ଟେରାପକା/ପଡ଼ିବା** - *ଦେ.ବି.*- ଭୋଗ ପୂର୍ବରୁ ଭିତରକାଠ ପାଖରେ ଟେରା ବନ୍ଧା ହୁଏ । ଅମୁଣିଆ ପାଣି ପଡ଼ିବାଠାରୁ କନା ଟେରା ପଡ଼ିଥାଏ । ପୂଜା ବଢ଼ି ଦୀପ ଦେଲାପରେ ପଢ଼ିଆରି ଭିତରଦ୍ୱାର ବନ୍ଦକରେ । ଏହାକୁ ଟେରା ପଡ଼ିବା କହନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ଟେରା ଫିଟିବା**-*ଦେ.ବି.*- ଭିତର ଭୋଗ ସରିଲେ ପତ୍ରୀବଡୁ ବାହାର ଦୁଆର ପାଖରେ ରହି ଭିତରୁ ହଡ଼ପ ନାୟକଙ୍କୁ ଡ଼ାକନ୍ତି । ପ୍ରତିହାରୀ ଦୁଆର ଫିଟାନ୍ତି । ପଡ଼ିଥିବା ଟେରା ଫିଟାଯାଏ ।
(ଶ୍ରୀ.ସ୍ୱ.- ପୃ.୨୧) ।

**ଟୋପର** - *ଦେ.ବି.*- ଚୂଳିଆ ଟୋପି, ପରଦା । ଶ୍ରୀମନ୍ଦିରରେ ମାର୍ଗଶିର ଶୁକ୍ଳ **ଷଷ୍ଠୀ**ଠାରୁ ମାଘ ଶୁକ୍ଳ ପଞ୍ଚମୀ ପର୍ଯ୍ୟନ୍ତ ଘୋଡ଼ ଲାଗି ସମୟରେ ଟୋପର ମଧ ଲାଗି କରାଯାଏ ।
(କ.ଓ.ଶ.ଉ. - ପୃ. ୩୭୮, ପ୍ର.ଅ. ୩ୟ - ପୃ. ୧୦୨୮, ପୂ.ଓ.ଭା. -ପୃ. ୩୧୭୬, ଓ.ସାଂ.ଶ. - ପୃ. ୧୪୭, ଶ୍ରୀ.ଜ. ୨ୟ - ପୃ. ୨୫୩) ।





**ଠବର୍ତ୍ତୁଳ**-*ଦେ.ବି.*- 'ଠ' ପରି ଗୋଲାକାର, ସମ୍ପୂର୍ଣ୍ଣ ଗୋଲ । ଶ୍ରୀଜଗନ୍ନାଥଙ୍କ ଆଖି ।
(ପୂ.ଓ.ଭା. - ପୃ. ୩୧୮୫) ।

**ଠଣା**- କାନ୍ଥରେ ଖୋଳାଯାଇଥିବା ବିଭିନ୍ନ ରକମର କୋଠରୀ । ମନ୍ଦିରର ବିଭିନ୍ନ ଦ୍ୱାରର ବିଭିନ୍ନ ଅଂଶମାନଙ୍କରେ ରଖାଯାଇଥିବା ବିଗ୍ରହମାନଙ୍କ ସ୍ଥାନ ।
(ମ.ନ. - ପୃ. ୮୨୧) ।

**ଠା'**-*ଦେ.ବି.*- ଯଥା ସ୍ଥାନରେ ରଖିବା ଅର୍ଥକୁ ବୁଝାଏ । ସିଂହାସନ ତଳେ ପୂଜା ଭୋଗ ଦ୍ରବ୍ୟ ଉପଚାରାଦିକୁ ଠା' କରି ରଖନ୍ତି ।

**ଠାଆପିଢ଼ା**-*ଦେ.ବି.*- ଭୋଜନ ସ୍ଥାନରେ ପକାଯାଉଥିବା ପିଢ଼ା । ଦିଅଁଙ୍କ ଧୂପ ପୂର୍ବରୁ ଭୋଗ ରଖିବାର ଯଥା ସ୍ଥାନରେ ପାଣି ଛିଞ୍ଚି ପବିତ୍ର କରାଇବା ବିଧିବିଧାନ ।
(ପୂ.ଓ.ଭା. - ପୃ. ୩୧୮୬, ପ୍ର.ଅ. ୨ୟ - ପୃ.୧୦୩୦) ।

**ଠାଣା**-*ଦେ.ବି.*- ପ୍ରହରୀର ପହରା ସ୍ଥାନ ।

**ଠା' କରିବା**-*ଦେ.ବି.*- ଭୋଜନ ପାଇଁ ସ୍ଥାନ ପ୍ରସ୍ତୁତ କରିବା । ଭୋଜନ ସ୍ଥାନ ଓଳାଇ, ପାଣି ଛିଞ୍ଚି, ପୀଢ଼ା ବା ଆସନ ପକାଇ, ଭୋଜନ ପାତ୍ର ପଡ଼ିବା ପୂର୍ବରୁ ସେ ସ୍ଥାନରେ ମୁରୁଜ ଦ୍ୱାରା ଚିତ୍ର କାଟିବାକୁ ବୁଝାଏ ।
(ଶ୍ରୀ.ସ୍ୱ. - ପୃ. ୨୨, ପୂ.ଓ.ଭା. - ପୃ. ୩୧୮୬) ।

**ଠାକୁର**-*ଦେ.ବି.*- ବିଜେ ପ୍ରତିମା, ଦେବ ପ୍ରତିମା, ମାନନୀୟ ବ୍ୟକ୍ତି, ଗୁରୁ, ଗୁରୁଦେବ । ମହାପ୍ରଭୁ ।
(ପୂ.ଓ.ଭା. - ପୃ. ୩୧୮୮) ।

**ଠାକୁର ଘର**-*ଦେ.ବି.*- ଦେବ ମନ୍ଦିର, ବିଗ୍ରହମାନଙ୍କ ଆସ୍ଥାନ, ଦେବାଳୟ ।
(ଓ.ସାଂ.ଶ. - ପୃ. ୧୪୮, ପୂ.ଓ.ଭା. - ପୃ.୩୧୮୮, ପ୍ର.ଅ. ୨ୟ - ପୃ. ୧୦୩୦) ।

**ଠାକୁର ରାଜା**-*ଦେ.ବି.*- ପୁରୀର ଗଜପତି ମହାରାଜା, ହିନ୍ଦୁଜାତିର ଉପାସ୍ୟ । ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା, ପ୍ରତିନିଧି, ପ୍ରଥମ ସେବକ ଓ ସମସ୍ତ ସେବାର ପ୍ରଥମ ଅଧିକାରୀ ।
(ପୂ.ଓ.ଭା. - ପୃ. ୩୧୮୯-୯୦, ଓ.ସାଂ.ଶ. - ପୃ. ୧୪୮) ।

**ଠାକୁରାଣୀ**-*ଦେ.ବି.*- ଦେବୀ, ରାଣୀ, ସ୍ୱାମିନୀ, ପ୍ରଭୁପତ୍ନୀ, ଗୃହିଣୀ, ଗୃହକର୍ତ୍ତ୍ରୀ, ଗୁରୁପତ୍ନୀ । ଦୁର୍ଗା, ପାର୍ବତୀ, ବସୁମାତା, ବସୁଧାଦେବୀ, ଶୀତଳା ଦେବୀ । ବସନ୍ତରୋଗ, ଗୋ ବସନ୍ତ । ଶ୍ରୀମନ୍ଦିରରେ ରତ୍ନସିଂହାସନ ଉପରେ ଭୂଦେବୀ, ଶ୍ରୀଦେବୀ ଦୁଇ ଠାକୁରାଣୀ (ମହାଲକ୍ଷ୍ମୀ, ସରସ୍ୱତୀ) ବିରାଜମାନ କରିଛନ୍ତି ।
(ଓ.ସାଂ.ଶ. - ପୃ.୧୪୮, ପୂ.ଓ.ଭା. - ପୃ. ୩୧୮୯) ।

**ଠାଣା**-*ଦେ.ବି.* - ପ୍ରହରୀର ସ୍ଥାନ । ଯେଉଁଠାରେ ମନ୍ଦିର ଜଗୁଆଳି/ପ୍ରହରୀ ପହରା କାର୍ଯ୍ୟ କରନ୍ତି ।
(ପୂ.ଓ.ଭା. - ପୃ. ୩୧୯୦, କୃ.ବି.ଓ.ଶ.ସ. - ପୃ. ୩୮୦) ।

**ଠାବଢ଼ିବା**-*ଦେ.ବି.*- ଦେବତାଙ୍କ ଭୋଜନ ପରିସମାପ୍ତି ।
(ଶ୍ରୀ.ଶ. - ପୃ. ୭୭) ।

**ଠା'ସଜ**-*ଦେ.ବି.*- ଠାକୁରଙ୍କ ଭୋଜନ ପାତ୍ର ଓ ଆବଶ୍ୟକୀୟ ସଜ ପ୍ରସ୍ତୁତ କରିବା ।
(ପୂ.ଓ.ଭା. - ପୃ. ୩୧୮୭) ।

**ଠିଆକରା**-*ଦେ.ବି.*- ଶ୍ରୀମନ୍ଦିରର ଛୋଟ ଛୋଟ ପ୍ରତିମାକୁ ଠିଆ କରାଇ ଶ୍ରୀଅଙ୍ଗ ସ୍ନାନାଦି କାର୍ଯ୍ୟ ଓ ଶ୍ରୀଅଙ୍ଗ ଭୂଷଣ କରାଇବା ।
(ପୂ.ଓ.ଭା. - ପୃ. ୩୧୯୫) ।

**ଠିଆକିଆବେଶ**-*ଦେ.ବି.*- ଅଳଙ୍କାର ସଜ୍ଜା ଏକ ପ୍ରକାର ବେଶ ଯେଉଁଥିରେ ସୁନାର କିଆପତ୍ର

ଶ୍ରୀଠାକୁରଙ୍କ ମସ୍ତକରେ ଠିଆ ବାଗରେ ଲାଗି ହୁଏ । କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଶ୍ରୀଠାକୁର ଏହି ଠିଆ କିଆ ବେଶ ହୁଅନ୍ତି । ଏହି ବେଶରେ ମସ୍ତକରେ କିଆଫୁଲ ତଥା ଧଣ୍ଡାଚୂଳ ଲାଗି ବେଶ ହୁଏ । ଠିଆ ପାଖୁଡ଼ା ଆକୃତିର ସ୍ୱର୍ଣ୍ଣକିଆ ଖଞ୍ଜା ଯାଇଥାଏ । ଏହି ବେଶକୁ ଲକ୍ଷ୍ମୀ ନାରାୟଣ ବେଶ କୁହାଯାଏ । ରାମାନୁଜଙ୍କର ଦର୍ଶନ ଅନୁଯାୟୀ ବ୍ରହ୍ମ ସଗୁଣ ଓ ସେ ନାରାୟଣ । ଲକ୍ଷ୍ମୀ ତାଙ୍କର ଶକ୍ତି । ରାମାନୁଜ ଜଗନ୍ନାଥଙ୍କୁ ବ୍ରହ୍ମ ଭାବରେ ଦେଖିଥିବାରୁ ସେ ଲକ୍ଷ୍ମୀ ନାରାୟଣ ବେଶ ପ୍ରବର୍ତ୍ତନ କରିଥିଲେ ବୋଲି ଅନୁମାନ କରାଯାଏ । ଏଣୁ ଜଗନ୍ନାଥ ନାରାୟଣ ଓ ସୁଭଦ୍ରାଙ୍କୁ ଲକ୍ଷ୍ମୀ ଭାବରେ ଏଠାରେ ପରିକଳ୍ପନା କରାଯାଇଛି । ଏହି ଦୃଷ୍ଟିରୁ ଶ୍ରୀ ଜଗନ୍ନାଥଙ୍କୁ ନାରାୟଣ ରୂପରେ ପରିକଳ୍ପନା କରାଯାଇ ଏହି ବେଶ କରାଯାଏ । ଏହି ବେଶ ସ୍ନାନ ରୀତି ପରେ ଆରମ୍ଭ ହୁଏ ଏବଂ ବାଳଧୂପ ପର୍ଯ୍ୟନ୍ତ ରହେ । କାର୍ତ୍ତିକ ମାସରେ କେବଳ ବାଳଧୂପ ହୁଏ । କାର୍ତ୍ତିକ ମାସରେ କ୍ରମ ଅନୁସାରେ ହେଉଥିବା ଧୂପର ନାମ ହେଲା - ଗୋପାଳବଲ୍ଲଭ ଭୋଗ, ସକାଳ ଧୂପ, ବାଳଭୋଗ, ଛତ୍ରଭୋଗ, ଦ୍ୱିପ୍ରହର ଧୂପ, ସନ୍ଧ୍ୟା ଧୂପ ଓ ବଡ଼ସିଂହାର ଧୂପ । ଏହି ବେଶର ନାମ ଠିଆକିଆ କାରଣ ମସ୍ତକରେ ସୁବର୍ଣ୍ଣ କିଆ ଠିଆ ଭାବରେ ଲାଗି ହେଉଥିବାରୁ ଏହାର ନାମକରଣ ଏପରି ହୋଇଅଛି । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ଏହି ବେଶରେ ଲାଗି ହେଉଥିବା ସୁନା ଅଳଙ୍କାର ହେଲା - ଶ୍ରୀଭୁଜ-୪, ଆଡ଼କାନୀ-୪, ତଡ଼ଗି-୨, ଶ୍ରୀପୟର-୪, ଚନ୍ଦ୍ରିକା-୨, ଓଡ଼ିଆଣି-୩, କାନ-୬, ସୂର୍ଯ୍ୟଚନ୍ଦ୍ର-୬, କିଆ- ୫୪, ଆୟୁଧ- ଶଙ୍ଖ, ଚକ୍ର (ଜଗନ୍ନାଥ), ହଳମୂଷଳ- (ବଳଭଦ୍ର) ।

ଶ୍ରୀଜଗନ୍ନାଥ ବାମହସ୍ତରେ ଶଙ୍ଖ ଓ ଡାହାଣ ହାତରେ ଚକ୍ର ଧରିଥାନ୍ତି । ବଳଭଦ୍ର ହଳ ଓ ମୂଷଳ ଧାରଣ କରିଥାନ୍ତି । ସୁଭଦ୍ରାଙ୍କ ବେଶରେ କିଛି ପରିବର୍ତ୍ତନ ହୁଏ ନାହିଁ । ଠାକୁରମାନେ ପାଟବସ୍ତ୍ରରେ ସୁସଜ୍ଜିତ ହୋଇଥାନ୍ତି ଓ ଭୋଗମଣ୍ଡପ (ଭଅଣ୍ଡ) ଶେଷ ହେବା ପରେ ଏହି ବେଶ ଅଳଙ୍କାର ଇତ୍ୟାଦି ଓ ଲାଗି ହୋଇ ମଧ୍ୟାହ୍ନ ଧୂପ ଅନୁଷ୍ଠିତ ହୁଏ । ଲକ୍ଷ୍ମୀ ନାରାୟଣ ବେଶରେ ସୁନା ବେଶର ସମସ୍ତ ଅଳଙ୍କାର ଲାଗି ହୁଅନ୍ତି । ମାତ୍ର ରାଜବେଶରେ ତିନିଗୋଟି ସୁନା କିରିଟ ଲାଗି ହୁଅନ୍ତି । ସେହିପରି କାର୍ତ୍ତିକ ମାସରେ ଅନୁଷ୍ଠିତ ହେଉଥିବା ରାଧା ଦାମୋଦର ବେଶରେ ମହାପ୍ରଭୁ ହସ୍ତରେ ନଳୀଭୁଜ ଧାରଣ କରୁଥିବା ବେଳେ ଲକ୍ଷ୍ମୀ ନାରାୟଣ ବେଶରେ ଶ୍ରୀଭୁଜ ଓ ଶଙ୍ଖ, ଚକ୍ର, ହଳମୂଷଳ ଓ କେତେକ ଅଧିକ ସ୍ୱର୍ଣ୍ଣ ଅଳଙ୍କାର ଧାରଣ କରନ୍ତି । ସୁଭଦ୍ରାଙ୍କ ମସ୍ତକରେ ମଧ୍ୟ ଠିଆକିଆ ଶୋଭାପାଏ । ଏହି ଠିଆକିଆଗୁଡ଼ିକ ଧରି ରଖିବା ପାଇଁ ଏକ ବଳା ମୁଖମଣ୍ଡଳରେ ଲାଗେ ।

ପୁଷ୍ପାଳକ ସେବକମାନେ ଏହି ବେଶ କରନ୍ତି । ପୂର୍ବେ ଏହି ବେଶ ସମୟରେ କେତେକ ରାମାନୁଜପନ୍ଥୀ ମଠାଧୀଶମାନେ ନାରାୟଣ ସ୍ତୋତ୍ର ପାଠ କରୁଥିଲେ । ଏବେ ତାହା କରୁନାହାନ୍ତି ।

(ଶ୍ରୀ.ଜ.ବେ.ର. - ପୃ. ୭୫, ଶ୍ରୀ.ବେ.ବୈ.- ପୃ. ୬୭) ।

**ଠିଆଘୋଡ଼-** *ଦେ.ବି.-* ଠିଆ ବାଗରେ ଲାଗି ହେଉଥିବା ଘୋଡ଼ ।

(ଶ୍ରୀ.ସ୍ୱ. ୨ୟ-ପୃ ୪୪, ଓ.ସଂ.ଶ.-ପୃ ୧୪୮) ।

**ଠିଆଚିତା-** *ଦେ.ବି.-* କପାଳରେ ଲମ୍ବ କରି କଟାଯାଇଥିବା ତିଳକ । ଊର୍ଦ୍ଧ୍ୱପୁଣ୍ଡ୍ର । ଭ୍ରୂ ଯୁଗଳର ମଧ୍ୟସ୍ଥଳରୁ କିମ୍ବା ନାସାଗ୍ରରୁ କପାଳ ମଧ୍ୟସ୍ଥଳରୁ କେଶ ମୂଳ ପର୍ଯ୍ୟନ୍ତ ଲମ୍ବ ବାଗରେ ଯେଉଁ ଚିତା କଟାଯାଏ, ତାହାକୁ ଠିଆ ଚିତା କହନ୍ତି ।

(ପୂ.ଓ.ଭା. - ପୃ. ୩୧୯୫) ।

**ଠିଆପହଡ଼-** *ଦେ.ବି.-* ଶ୍ରୀମନ୍ଦିରରେ ନୀତି ବିଳମ୍ବ କାରଣରୁ ପହଡ଼ ହୋଇ ନ ପାରି ଠିଆ ଠିଆ ଠାକୁରଙ୍କର ବିନିଦ୍ର ରଜନୀ ବିତାଇବା ।

(ପୁ.ବୋ. - ପୃ. ୨୦୫) ।

**ଠିଆପହରା**-*ଦେ.ବି.*- ଠିଆ ଅବସ୍ଥାରେ ବୁଲି ବୁଲି ପହରା ଦେବା ।
(ପୂ.ଓ.ଭା. - ପୃ. ୩୧୯୬) ।

**ଠିଆପାଲା**-*ଦେ.ବି.*- ସତ୍ୟନାରାୟଣ ପାଲା ମୁଖ୍ୟତଃ ଦୁଇ ପ୍ରକାର । ଯଥା- ୧ )ପୋଥିପୂଜା ବା ବସା ପାଲା, ୨ ) ଠିଆପାଲା ବା ଠିଆପୂଜା । ସତ୍ୟନାରାୟଣଙ୍କର ପୂଜାର ପାଲା ବା ଗୀତକୁ ବସିକରି ପୋଥି ଦ୍ୱାରା ବୋଲିବାକୁ ପୋଥିପୂଜା ବା ବସା ପାଲା କୁହାଯାଏ । ଯେଉଁଠି ସତ୍ୟପୀର ବା ସତ୍ୟନାରାୟଣଙ୍କର ପୂଜାରେ ପୂଜକମାନେ ଠିଆ ହୋଇ ନାଚି ନାଚି ପାଲା କରନ୍ତି ତାହାକୁ ଠିଆ ପାଲା ବା ଠିଆ ପୂଜା କୁହାଯାଏ । ଶ୍ରୀମନ୍ଦିରରେ ଥିବା ସତ୍ୟନାରାୟଣ ମନ୍ଦିରରେ କେତେକ ମାନସିକ କରିଥିବା ଭକ୍ତ ପାଲା ନ କରି ସତ୍ୟନାରାୟଣଙ୍କ ନିକଟରେ ସିରିଣୀ ଭୋଗ ଲାଗି କରାନ୍ତି ।
(ପୂ.ଓ.ଭା. - ପୃ. ୩୧୯୬) ।

**ଠେକା**-*ଦେ.ବି.*- ପଗଡ଼ି ।
(କ୍ଷେ.ସ.) ।

**ଠେକି**-*ଦେ.ବି.*- କ୍ଷୁଦ୍ରକାର ମାଟି ଘଡ଼ି । ପୂଜା କାର୍ଯ୍ୟରେ ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ. ୩୨୦୮) ।

**ଠୋଲି**-*ଦେ.ବି.*- ଛୋଟ ଠୋଲା, ଛୋଟ ଚଉପଦୀ । ଭୋଗ ପଦାର୍ଥରେ ନେବା ଆଣିବାରେ ଏହା ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ. ୩୨୧୨) ।





**ଡଙ୍କାଦଉଡି**- *ଦେ.ବି.*-ରୋଷ ଚୁଲିରୁ କୁଡୁଆ ରନ୍ଧା ଅନ୍ନ ଢ଼ାଳିବାକୁ ଦଉଡି ଡଙ୍କା ସହ ବ୍ୟବହୃତ ହୁଏ । (କ୍ଷେ.ସ.) ।

**ଡଗରା**-*ଦେ.ବି.*- ମୁଦୁଲିଙ୍କ ମଧ୍ୟରୁ ଏକ ଗୋଷ୍ଠୀ । ମଣିମା ଡାକ ପରେ ପହୁଡ଼ ସମୟରେ ପାଳିଆ ମେକାପ ବଇଠା ଓହ୍ଲାଇବା ପରେ ମୁଦୁଲି କଳାହାଟ ଦ୍ୱାରଠାରୁ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଶୋଧ କରି କଳାହାଟ ଦ୍ୱାର ବନ୍ଦ କରି ମୁଦ୍ରା ଛାପ ଦିଏ । ତଳିଛ ମୁଦ ଦିଅନ୍ତି । ବାହାର (ଦକ୍ଷିଣ ଦ୍ୱାର) ବନ୍ଦ କରେ । ତହିଁ ଆରଦିନ ଅବକାଶ ପରେ ବାସିପାଳିଆଠାରୁ ସଜପାଳିଆ ଚାବି ନିଏ । ଗୁଣ୍ଡିଗା ଘରେ ଏହିପରି ସେବା କରେ । ଠାକୁର ବିଜେ କଲେ ଗୁଣ୍ଡିଚା ଘର ଚାବି ମୁଦୁଲି ଜିମାରେ ରହେ । ଦୁଆର ଖୋଲିଲେ ପୁଷ୍ପାଳକ ଲକ୍ଷ୍ମୀ ସରସ୍ୱତୀଙ୍କୁ ପୂଜା କରନ୍ତି । ଦଇତାମାନଙ୍କୁ ଡାକିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୭୬/୭୭) ।

**ଡମ୍ବରୁ**-*ଦେ.ବି.*- ଡମ୍ବରୁ ଆକୃତିର ବେତ ତିଆରି ଏକ ଆସନ । ଶ୍ରୀମନ୍ଦିରରେ ବଡ଼ସିଂହାର ଧୂପ ପରେ ଖଟଶେଯ ମେକାପ ଜୟବିଜୟ ଦ୍ୱାରରେ ଡମ୍ବରୁ ପକାଏ । ଶୟନ ଠାକୁର ଡମ୍ବରୁ ଉପରେ ବିଜେ ହୁଅନ୍ତି । ମଣୋହି ପରେ ଆଳତି ହୋଇ ପୁଷ୍ପାଞ୍ଜଳି ପରେ ଶ୍ରୀଜଗନ୍ନାଥ ପଲଙ୍କରେ ଶୟନ କରନ୍ତି । (ଶ୍ରୀ.ସ୍ୱ. - ପୃ. ୨୯) ।

**ଡାକ ସଂକ୍ରାନ୍ତି**-*ଦେ.ବି.*- ଗର୍ଭଣା ସଂକ୍ରାନ୍ତି । ସକାଳ ଧୂପ, ତିନି ବାଡ଼ରେ ମଇଲମ ପରେ ନୂଆ ବସ୍ତ୍ରଲାଗି ହେବାପରେ ଘଣ୍ଟ କାହାଳି ସହ ଘଟୁଆରୀ ଘରୁ ଚନ୍ଦନ ଆଦି ଠାକୁରଙ୍କର ସର୍ବାଙ୍ଗ ଲାଗି ହୁଏ । ବେଶ ପରେ ଛଅ ମୂର୍ତ୍ତି ଅଳଙ୍କାର ଲାଗି ହୁଅନ୍ତି । ମଧ୍ୟାହ୍ନ ଧୂପ ପରେ ଶ୍ରୀଅଙ୍ଗରେ ପ୍ରସାଦ ଲାଗି ପାଇଁ ପଣ୍ଡା ଷୋଡ଼ଶ ଉପଚାରରେ ପୂଜା କରିଥାନ୍ତି । ଟେରା ପଡ଼ିବା ପରେ ରୋଷ ପାଇକ ହାତରେ ଭିତରୁ ଏକ ଓଳି ଓରିଆ (ସଙ୍କୁଡ଼ି) ବାହାର କରି ଆଣି ମନ୍ଦିର ଚତୁଃପାର୍ଶ୍ୱରେ ବଳି ଦିଅନ୍ତି । ପରେ ଆଳତି ଓ ତିନି ବାଡ଼ରେ ବନ୍ଦାପନା କରାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୦୧) ।

**ଡବାମାଳି**-*ଦେ.ବି.*- ଠାକୁରଙ୍କ ଗ୍ରୀବା ଦେଶରେ ଲାଗି ହେଉଥିବା ଏକ ପ୍ରକାର କଣ୍ଠିମାଳ । (ଶ୍ରୀ.ଶ. - ପୃ. ୮୦) ।

**ଡାକୁଆ**-*ଦେ.ବି.*- ପାଇକଙ୍କ ଅଧୀନରେ ଥାଇ ସେବକଙ୍କୁ ଡାକି ହାଜର କରାଉଥିବା ବ୍ୟକ୍ତି । ଦଣ୍ଡୁଆସି ବା ଚଉକିଆ ଆହ୍ୱାନ ବାହକ ବ୍ୟକ୍ତି । (ପୂ.ଓ.ଭା. - ପୃ. ୩୨୩୬) ।

**ଡାଳିକିଆ ବେଶ**-*ଦେ.ବି.*- ଶ୍ରୀମନ୍ଦିରରେ କାର୍ତ୍ତିକ ମାସ ଶୁକ୍ଳ ଚତୁର୍ଦ୍ଦଶୀରେ ମହାପ୍ରଭୁ ଡାଳିକିଆ (ଲକ୍ଷ୍ମୀନୃସିଂହ) ବେଶ ହୁଅନ୍ତି । ଅବକାଶ ନୀତି ପରେ ଏହି ବେଶ ହୁଏ । ଏହି ବେଶରେ ସୁନାକିଆ ଡାଳି ଭଳି ଖଞ୍ଜାଯାଇଥିବାରୁ ଏହାର ଏପରି ନାମକରଣ ହୋଇଛି । ଜଗନ୍ନାଥ ଓ ବଳଭଦ୍ର ମସ୍ତକର ଶୀର୍ଷ ଭାଗରେ ଜରି ବେତକନାରେ ଦୁଇଟି ଡାଳ ଚୂଳ ସହିତ ଲାଗି କରାଯାଏ । ଏହି ଡାଳି ଓ ଚୂଳରେ ଶୋଳ ଜରିରେ ନିର୍ମିତ ଗୁଡ଼ିଏ ଫୁଲ ଧାଡ଼ି କରି ଲଗାଯାଏ । ତାହା ମଝିରେ ସୁବର୍ଣ୍ଣ କିଆ ଖୋସାଯାଏ । ସମଗ୍ର ବେଶକୁ ଧରି ରଖିଥାଏ ଶ୍ରୀମୁଖରେ ଦିଆଯାଇଥିବା ଗୋଟିଏ ଗୋଟିଏ ବଳା । ଅନ୍ୟାନ୍ୟ ବେଶରେ ବ୍ୟବହାର କରାଯାଉଥିବା ସୁନା ଅଳଙ୍କାର ମଧ୍ୟ ଏହି ବେଶରେ ଲାଗି କରାଯାଏ । ଡାଳିକିଆ ବେଶରେ ମାଳି, ପଦକମାଳି ଓ ତାବିଜ ମାଳି ଲଗାଯାଏ । ଶ୍ରୀଭୁଜ ଓ ଶ୍ରୀପୟର ମଧ୍ୟ ଲାଗେ । ଆୟୁଧ ଶଙ୍ଖ, ଚକ୍ର, ହଳ, ମୂଷଳ, ମଧ୍ୟ ଲାଗି କରାଯାଏ ।

ସୁଭଦ୍ରା ମଧ୍ୟ ଏହି ବେଶରେ ଅନେକ ସୁନା ଅଳଙ୍କାରରେ ଆଭୂଷିତ ହୁଅନ୍ତି । ଦେବୀଙ୍କର ଶିରରେ ସୁନାର କିରୀଟ ଲାଗେ । ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଏହି ବେଶର ଆୟୋଜନ କରାଯାଇଥାଏ । ଏହି ବେଶ ମହାପ୍ରଭୁଙ୍କୁ ନୃସିଂହ ଭାବରେ ପ୍ରମାଣିତ କରେ ।

ରାଜା ଇନ୍ଦ୍ରଦ୍ୟୁମ୍ନ ବିଶ୍ୱାବସୁ ଦ୍ୱାରା ପୂଜିତ ନୀଳମାଧବ ଦର୍ଶନ କରିବାକୁ ଅସମର୍ଥ ହେଲେ, କାରଣ ସେ ସ୍ଥାନରେ ପହଞ୍ଚିବା ପୂର୍ବରୁ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । ସେ ନାରଦଙ୍କ ଉପଦେଶ ଅନୁସାରେ ନୃସିଂହ ପ୍ରତିଷ୍ଠା କରି ଯଜ୍ଞ ଆରମ୍ଭ କଲେ । ମହାପ୍ରଭୁ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠିତ ହେବା ପରେ ସେ ଉଗ୍ରନୃସିଂହ ରୂପେ ଆବିର୍ଭୂତ ହେଲେ । ପରବର୍ତ୍ତୀ ସମୟରେ ସତ୍ୟଯୁଗରେ ନୃସିଂହ, ତ୍ରେତା ଯୁଗରେ ରାମ, ଦ୍ୱାପରରେ ଶ୍ରୀକୃଷ୍ଣ । ଶ୍ରୀକୃଷ୍ଣଙ୍କର କମନୀୟ ମୂର୍ତ୍ତି ସମସ୍ତଙ୍କୁ ଆକର୍ଷଣ କରିବା ଫଳରେ ଶ୍ରୀଜଗନ୍ନାଥ ଶ୍ରୀକୃଷ୍ଣରେ ରୂପାନ୍ତରିତ ହେଲେ । ମାତ୍ର ତାଙ୍କର ମୂଳ ସ୍ୱରୂପ ନୃସିଂହ ଥିବାରୁ କାର୍ତ୍ତିକ ମାସ ପଞ୍ଚୁକରେ ତାଙ୍କୁ ନୃସିଂହ ବେଶ କରାଯାଇ ତାଙ୍କ ପୂଜା ଆରାଧନା କରାଯାଏ ।
(ଶ୍ରୀଜ.ବେ.ର. - ପୃ. ୮୧) ।

**ଡାଲିମ୍ବ**-*ଦେ.ବି*- ଏକ ପ୍ରକାର ଫଳ ବିଶେଷ । ଶ୍ରୀମନ୍ଦିରରେ ଏକ ପ୍ରକାର ଲଡୁ । ଚାଉଳ ଚୂନା ଓ ଗୁଡ଼ ତିଆରି ଚାରିପଟେ ସମାନ ଭାଗରେ ଖଣ୍ଡର ଆବରଣ । ଦ୍ୱିପ୍ରହର ଧୂପରେ ଲାଗେ । (ଶ୍ରୀ.ଜ.ଚେ.ଦୀ.ବ୍ୟା.- ପୃ. ୨୬୧) ।

**ଡାଲିମ୍ବା ଅନ୍ନ**-*ଦେ.ବି.*- ବଗଡ଼ା ଅନ୍ନ । (ଶ୍ରୀ.ଚେ.ଦୀ.ବ୍ୟା.- ପୃ. ୨୬୧) ।

**ଡାଲମା**-*ଦେ.ବି.*- ହରଡ଼ ବା ମୁଗଡାଲି ସହ ପନିପରିବା ମିଶ୍ରିତ ଡାଲି । ଭଣ୍ଡାର ଭୋଗ । (ଶ୍ରୀ.ଶ୍ରୀ. - ପୃ. ୨୧୨) ।

**ଡାଲି**-*ଦେ.ବି.*- ହରଡ଼, ମୁଗଜାଇ, ଗୋଟାମୁଗ, ଫାଳସୋଲା କିମ୍ବା ବିରି ଠାକୁରଙ୍କୁ ଡାଲି ଆକାରରେ ସଙ୍କୁଡ଼ି ଭୋଗରେ ଲାଗି ହୁଏ । (ଶ୍ରୀ.ଶ୍ରୀ. - ପୃ. ୨୧୨) ।

**ଡାହୁକ**-*ଦେ.ବି.*- ରଥଯାତ୍ରା ସମୟରେ ରଥ ଉପରେ ଡାହୁକର ଡାକ ଆବହମାନ କାଳରୁ ଚାଲିଆସୁଅଛି । ଶୃଙ୍ଗାର ରସ ସିକ୍ତ ପଦ ବୋଲି ରଥର ଗତି ନିୟନ୍ତ୍ରଣ କରି ରଥଚାଳନାରେ ସାହାଯ୍ୟ କରୁଥିବା ସେବକ । ପଦ ବୋଲି ଭକ୍ତଙ୍କୁ ଡାକ ପକାଉଥିବାରୁ ଡାକରୁ ଡାହୁକ ଶବ୍ଦ ସୃଷ୍ଟି ହୋଇପାରେ । ନେତ୍ରୋତ୍ସବ ଦିନ ମହାଖଳାଠାରୁ ସିଂହଦ୍ୱାରକୁ ରଥ ଆଣିଲା ବେଳେ ଶ୍ରୀଗୁଣ୍ଡିଚା, ବାହୁଡ଼ା ବେଳେ ରଥଟଣାରେ ଓ ରଥ ଦକ୍ଷିଣମୋଡ଼ରେ ଏହି ସେବକମାନେ ପ୍ରତ୍ୟେକ ରଥରେ ଜଣେ ଲେଖାଏଁ ଗୀତ ଗାଇଥାନ୍ତି । ଭକ୍ତଙ୍କୁ ଚିତ୍ତାକର୍ଷଣ କରିଥାନ୍ତି । ଏମାନେ ଶାଢ଼ିବନ୍ଧା ସେବକ ନୁହନ୍ତି । ସେବା ପୁରୁଷାନୁକ୍ରମିକ । ସେବା ନିମନ୍ତେ ଜାଗିରି ପାଇଛନ୍ତି ।
(ଶ୍ରୀ.ସ୍ୱ. - ପୃ. ୪୭) ।

**ଡିଙ୍ଗର**-*ସଂ.ବି.*- ଠକ, ଚାକର, ଶଠ । (ପୂ.ଓ.ଭା.- ପୃ.୩୨୫୧)

**ଡେମ୍ପନାଗରା**-*ବୈ.ବି.*- ଢୋଲକ ଜାତୀୟ ଏକ ବାଦ୍ୟ । ବାଦକ ଦୁଇ ହାତରେ ଦୁଇ ଖଣ୍ଡ କାଠ ଧରି ବଜାଇ ଥାଏ । (ପୁ.ବୋ. - ପୃ. ୨୦୭, ପୂ.ଓ.ଭା. - ପୃ. ୩୨୭୧) ।

**ଡୋର**-*ସଂ.ବି.*- ଡୋରି, ସୁତା । ଶ୍ରୀଜଗନ୍ନାଥଙ୍କ ପହଣ୍ଡି ବେଳେ ଅଣ୍ଟାରେ ପାଟ ଡୋର ବନ୍ଧା ହୁଏ । ସେହି ପାଟ ଡୋରକୁ ଟାଣି ଟାଣି ସେବକମାନେ ଠାକୁରଙ୍କୁ ପହଣ୍ଡି କରାନ୍ତି । (ପୂ.ଓ.ଭା- ପୃ. ୩୨୭୫)

**ଡୋରଦଶିଆ ସେବକ**-*ଦେ.ବି.*- ଅଖଣ୍ଡ ଦୀପ ନିମନ୍ତେ ବଳିତା ପ୍ରସ୍ତୁତ କରୁଥିବା ସେବକ । (ଶ୍ରୀ.ସ୍ୱ. ୨ୟ - ପୃ. ୮୨) ।

**ଡୋରଲାଗି**-*ଦେ.ବି.*- ଶ୍ରୀଜୀଉଙ୍କ ଶ୍ରୀଅଙ୍ଗରେ ଲାଗି ହେଉଥିବା ପାଟଡୋରି । ସ୍ନାନଯାତ୍ରା, ରଥଯାତ୍ରା ଇତ୍ୟାଦି ସମୟରେ ବଡ଼ଠାକୁର ଓ ଜଗନ୍ନାଥଙ୍କଠାରେ ଲାଗି ହେବା ପରେ ଠାକୁରମାନଙ୍କୁ ପହଣ୍ଡି ବିଜେ କରାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୬୯) ।

**ଡୋଲା**-*ଦେ.ବି.*- ଡୋଲି, ଝୁଲା ବା ହାନ୍ଦୋଳା । (ପୂ.ଓ.ଭା- ପୃ. ୩୨୭୬)

# ଢ

**ଢକ୍କା**-*ସଂ.ବି.*- ନାଗରା, ଯଶଃ, ପଟନ । ଏକ ପ୍ରକାର ଡ୍ରମ୍ ବା ଢୋଲ ।
(ପୂ.ଓ.ଭା- ପୃ. ୩୨୮) ।

**ଢଙ୍କସର**-*ଦେ.ବି.*- ଅତିପାଣିଆ ।

**ଢଙ୍କା**-*ଦେ.ବି.*- ଆଚ୍ଛାଦିତ କରିବା ।

**ଢମ**-*ଦେ.ବି.*- ଦେଖେଇହେବା, ଦମ୍ଭ, ଅହଂକାର ବା ଗର୍ବ ।
(ପୂ.ଓ.ଭା- ପୃ. ୩୨୮୪)

**ଢଳା କୁଡୁଆ**-*ଦେ.ବି.*- ଠାକୁରଙ୍କ ରୋଷ ଘରେ ବଡ଼ପାତ୍ରରୁ ତରଳ ଖାଦ୍ୟ ପଦାର୍ଥ ବାହାର କରି ଅନ୍ୟ ଏକ ପାତ୍ରକୁ ନେବା ପାଇଁ ଯେଉଁ ଛୋଟ କୁଡୁଆ ବ୍ୟବହୃତ ହୁଏ ତାକୁ ଢଳା କୁଡୁଆ କୁହାଯାଏ । ଅଧକିଲୋ କିମ୍ବା ଅଧିକ ଚାଉଳ ରନ୍ଧା କୁଡୁଆ ।
(ଶ୍ରୀ.ଶ. - ପୃ. ୮୧) ।

**ଢାଉ**-*ଦେ.ବି.*- ଗେରୁମାଟି ।

**ଢାଳ**-*ଦେ.ବି.*- ବଡ଼ ଲୋଟା । ଜଳ ଆଣିବାରେ ବ୍ୟବହାର କରାଯାଏ ।

**ଢାଲୁ**-*ଦେ.ବି.*- ଗଡ଼ାଣିଆ ବା ନିମ୍ନକୁ ଗଡ଼ିଯାଇଥିବା ରାସ୍ତା ।

**ଢିଙ୍କି**-*ଦେ.ବି.*- ଧାନକୁଟିବାର ପାଦଚାଳିତ କାଠତିଆରି ଯନ୍ତ୍ର ।

**ଢିଙ୍କିଆ**-*ଦେ.ବି.*- କବାଟ ବା ଝରକା ବନ୍ଦ କରିବା ଲାଗି ଉଦ୍ଦିଷ୍ଟ କାଠ ଖଣ୍ଡ ।

**ଢୋଲ**-*ଦେ.ବି.*- ଏକ ବାଦ୍ୟବିଶେଷ ।

**ଢୋଲଜଗା ସେବକ**-*ଦେ.ବି.*- ଯେଉଁ ସେବକ ଠାକୁରଙ୍କ ନୀତି ସମୟରେ 'ଢୋଲ' କିମ୍ବା ପଖାଉଜ ବଜାଏ ।
(ପୁ.ବୋ. - ପୃ. ୨୦୭) ।

**ଢୌକନ**-*ସଂ.ବି.*- ଭେଟି, ଉପଢୌକନ, ଉପହାର, ଲାଞ୍ଚ ବା ଉତ୍କୋଚ ।
(ପୂ.ଓ.ଭା - ପୃ.୩୩୦୪)

●



**ତଗରା**-*ଦେ.ବି.*- ମାଟି ତେଲୁଣି । ରାଜସେବକ । (ପୂ.ଓ.ଭା.- ପୃ. ୩୩୧୨) ।

**ତଡ଼ପ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ସ୍ନାନାଦି ପାଇଁ ବ୍ୟବହୃତ ଗାମୁଛା ଜାତୀୟ ବସ୍ତ୍ର । ହଳଦିଆ କିମ୍ବା କମଳା ରଙ୍ଗର ଧଡ଼ିଯୁକ୍ତ ଉତ୍କୃଷ୍ଟ ବସ୍ତ୍ର । ଶ୍ରୀମନ୍ଦିରରେ ମଙ୍ଗଳ ଆଳତୀ ପରେ ମଇଳମ ହୋଇ ଠାକୁରଙ୍କୁ ତଡ଼ପ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୨, ପୂ.ଓ.ଭା. - ପୃ. ୩୩୧୭, ପ୍ର.ଅ. ୨ୟ - ପୃ.୧୦୫୮) ।

**ତନ୍ତୁପର୍ବ**-*ସଂ.ବି.*- ଯେଉଁ ପର୍ବରେ ଆନୁଷ୍ଠାନିକ ଭାବେ(ତନ୍ତୁ)ସୂତ୍ର ନିର୍ମିତ ଉପବୀତ ଧାରଣ କରାଯାଏ ସେ ପର୍ବକୁ ତନ୍ତୁପର୍ବ କୁହାଯାଏ । ଚାରିଟି ପାଟସୂତା, ସୁନା, ଚୁଆଁରମାଳି ନିର୍ମିତ ରାକ୍ଷୀ । ଏହିଦିନ ବ୍ରାହ୍ମଣମାନେ ଉପବୀତ ଧାରଣ କରୁଥିଲେ । ରାଜାଙ୍କଠାରେ ସୁବର୍ଣ୍ଣ ଉପବୀତ ଲାଗି ହେଉଥିଲା । ସାଧାରଣ ଲୋକେ ଆଜିକାଲି ରାକ୍ଷୀପର୍ବ ଭାବରେ ଗ୍ରହଣ କରୁଛନ୍ତି । ଶ୍ରୀମନ୍ଦିରରେ ଏହି କାର୍ଯ୍ୟ ଶ୍ରାବଣପୂର୍ଣ୍ଣିମା, ଗହ୍ମାପୂର୍ଣ୍ଣିମୀ, ରାକ୍ଷୀପୂର୍ଣ୍ଣିମା ପାଳିତ ହୁଏ । ଏହିଦିନ ମହାପ୍ରଭୁ ଶ୍ରୀବଳଭଦ୍ର ବଳରାମ ବଳଦେବ ହଳଧରଙ୍କର ଜନ୍ମଦିନ ଅଟେ ।
(ପୂ.ଓ.ଭା. - ପୃ. ୩୩୪୬) ।

**ତର୍ପଣ**-*ସଂ.ବି.*- ଦେବତା, ଋଷି ଓ ପିତୃପୁରୁଷଙ୍କ ତୃପ୍ତି ନିମିତ୍ତ ଜଳଦାନ । ମନ୍ତ୍ରପାଠ କରି କୁଶ, ଜଳ, ତିଳ, ତଣ୍ଡୁଳ, ଜବ ଆଦି ଦ୍ୱାରା ଦେବତା, ଋଷି ଓ ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଜଳଦାନ କରିବା ପ୍ରଣାଳୀକୁ ତର୍ପଣ କୁହାଯାଏ । ଶ୍ରାଦ୍ଧ ଦିବସରେ ଶ୍ରୀମନ୍ଦିରର ବାଇଶ ପାହାଚରେ ଏଇ କାର୍ଯ୍ୟ ପିତୃଲୋକଙ୍କ ଉଦ୍ଦେଶ୍ୟରେ କରାଯାଏ । ଆଶ୍ୱିନ ମାସର ପ୍ରଥମ ପନ୍ଦର ଦିନ ପିତୃପକ୍ଷ ବା ଅପରପକ୍ଷ । ଏହି ସମୟରେ ତର୍ପଣ ହେବାର ବିଧାନ ଅଛି ।
(ଓ.ସାଂ.ଶ. - ପୃ. ୧୫୭, ପୂ.ଓ.ଭା.- ପୃ. ୩୩୮୭) ।

**ତଡ଼ାଉକରଣ ସେବକ**-*ଦେ.ବି.*- ଏହି ସେବକ ଭଣ୍ଡାରର ହିସାବ ରଖନ୍ତି । ପ୍ରତ୍ୟେହ ଶ୍ରୀଜୀଉଙ୍କ ଦ୍ୱାରଫିଟା ପୂର୍ବରୁ ଶ୍ରୀମନ୍ଦିର ବେହରଣରେ ଉପସ୍ଥିତ ରହି ଯେଉଁଦିନ ଯେଉଁ ନୀତି ହେବା ବିଧେୟ, ତାହା ଦେଉଳକରଣ ଓ ଚର୍ଚ୍ଚା କର୍ମଚାରୀଙ୍କୁ କୁହନ୍ତି । ଚାଙ୍ଗଡ଼ା ମେକାପଙ୍କୁ ମଧ୍ୟ ଜଣାନ୍ତି । ବିଜେ ପ୍ରତିମା ବିଜେ ହେବା ଦିନ ପାଳିଆଖୁଣ୍ଟିଆଙ୍କୁ ଜଣାଇଥାନ୍ତି । ଏହାଙ୍କ ଦ୍ୱାରା ମାଦଳାପାଞ୍ଜି ରଚିତ ହୋଇଥାଏ ।
(ଶ୍ରୀ.ସ୍ୱ. ୭ମ - ପୃ. ୧୦୦) ।

**ତଡ଼ାଉଲାଗି**-*ଦେ.ବି.*- ଆଳତୀ ପରେ ତିନିଠାକୁରଙ୍କୁ ଛଅମୂର୍ତ୍ତି ସୁନାଅଳଙ୍କାର (ତଡ଼ାଉ)ଲାଗି କରାଇବା ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨) ।

**ତରାଜୁ**-*ଦେ.ବି.*- ବିରି ଓ ଚାଉଳଚୂନାରେ ତିଆରି ଘିଅରେ ଛଣା ପିଠା । ଏହା ଦ୍ୱିପହର ଧୂପରେ ଭୋଗ ହୁଏ ।
(ଶ୍ରୀ.ଶ. - ପୃ. ୮୨) ।

**ତରାସ**-*ଦେ.ବି.*- ତ୍ରାସ, ଆଭା, ଆଲୋକ ଆଦିର ତେଜ, ଆଢ଼େଣି, ପଙ୍ଖା ଆକାରର ଛତ୍ର ବିଶେଷ । ଶୋଭାଯାତ୍ରା ଆଦିରେ ମହାପ୍ରଭୁ ବା ରାଜାଙ୍କ ପାଖରେ ଟେକା ହୋଇଥାଏ ।
(ପୂ.ଓ.ଭା. - ପୃ. ୩୩୮୧) ।

**ତଳା**-*ଦେ.ବି.*- ଅଧକିଲୋଗ୍ରାମରୁ ଅଧିକ ଚାଉଳ ରନ୍ଧାଯିବାର କୁଡୁଆ ।
(ପ୍ର.ଅ.-୧୦୮୨, ପୂ.ଓ.ଭା.-୩୩୯୨) ।

**ତଳିମହାରଣା**-*ଦେ.ବି.*- ଶ୍ରୀମନ୍ଦିର ସେବକଙ୍କ ମଧ୍ୟରୁ ବଢ଼େଇ ଗୋଷ୍ଠୀର ସେବକ ।
(ଶ୍ରୀ.ସ୍ୱ. ୭ମ - ପୃ. ୫୦/୫୧) ।

**ତଳିସେବକୀ**-*ଦେ.ବି.*- ଶ୍ରୀମନ୍ଦିର ମାହାରୀ ବିଶେଷ ।
(ଶ୍ରୀ.ସ୍ୱ. ୪ର୍ଥ - ପୃ. ୪୮) ।

**ତଳିଛ ମହାପାତ୍ର**-*ଦେ.ବି.*- ମହାନାୟକ ସେବକ ବିଶେଷ । ପରିଛାଙ୍କ ପ୍ରତିନିଧି । ଏହି ସେବକ ରାତ୍ରି ପହୁଡ଼ରେ ଦ୍ୱାର ମୁଦ (ବନ୍ଦ) କରନ୍ତି । ରୋଷ ନିର୍ମଳ ରଖାନ୍ତି ଓ ରୋଷ ଉପରେ କର୍ତ୍ତୃତ୍ୱ ରଖନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୨୨/୨୩) ।

**ଟାଗା**-*ବୈ.ବି.*- ଏକ ନିର୍ଦ୍ଦିଷ୍ଟ ଦିନରେ ବାହାରୁଥିବା ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସୂଚକ ଯାନ । ଶୀତଳଷଷ୍ଠୀ ଦିନ ଶିବବିବାହ ଅବସରରେ ଯମେଶ୍ୱରଙ୍କ ବିମାନ ଆଗରେ ଯାଉଥିବା ଏକ ଗାଡ଼ି । ଏହି ଗାଡ଼ିରେ ହରିହର ମୂର୍ତ୍ତି ସ୍ଥାପନ କରାଯାଇଥାଏ । ଏକ ଲମ୍ବ ବାଉଁଶରେ ପତାକା, ଛଡ଼ି କ୍ରମାନ୍ୱୟରେ ସଜାଯାଇ ସବାଉପରେ ଚଅଁର ଖଞ୍ଜା ଯାଇଥାଏ ।
(ପୂ.ଓ.ଭା. - ପୃ.୩୪୦୯, ପୁ.ବୋ. - ପୃ ୪୩) ।

**ଟାଟ**-*ଦେ.ବି.*- ବାଉଁଶ ବା ତାଳପତ୍ର ନିର୍ମିତ ଟେକା ପ୍ରଶସ୍ତ ଚାଙ୍ଗୁଡ଼ି ବା ଡ଼ାଲା । ଏଥିରେ ପୂଜା ଉପହାର ସାମଗ୍ରୀ ପଠାଯାଏ ।
(ପୂ.ଓ.ଭା. - ପୃ. ୩୪୧୨) ।

**ଟାଟଘିଉଡ଼ି**-*ଦେ.ବି.*- ଶ୍ରୀମନ୍ଦିରରେ ବଡ଼ଠାକୁରଙ୍କ ନିମିତ୍ତ ଏକ ପ୍ରକାର ଭୋଗ ବିଶେଷ । ଚିତାଲାଗି ଅମାବାସ୍ୟାରେ ଏହା ଠାକୁରଙ୍କୁ ଅର୍ପଣ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୮୮) ।

**ଟାଟନାଡ଼ୀ**-*ଦେ.ବି.*- ଶ୍ରୀମନ୍ଦିରରେ ବଡ଼ଠାକୁରଙ୍କ ନିମିତ୍ତ ଏକ ପ୍ରକାର ଭୋଗ ବିଶେଷ । ତୁଳାସଂକ୍ରାନ୍ତି, ଉତ୍ଥାପନ ଏକାଦଶୀ, କାର୍ତ୍ତିକ ପୂର୍ଣ୍ଣିମା ଓ ଗର୍ଭଣା ସଂକ୍ରାନ୍ତି ଆଦି ପର୍ବରେ ଏହା ଭୋଗଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୮୯) ।

**ଟାଟମନୋହର**-*ଦେ.ବି.*- ଏକ ପ୍ରକାର ମିଷ୍ଟାନ୍ନ ଦ୍ରବ୍ୟ । ଏକ ଲଡୁ ବିଶେଷ । ଏହା ଟାଟରେ ଯାଇ ଠାକୁରଙ୍କୁ ଅର୍ପଣ କରାଯାଏ । ଏହାକୁ 'ଟାଟ ମନୋହର ଲଡୁ' କୁହାଯାଏ ।
(ପୁ.ବୋ. - ପୃ. ୨୦୯) ।

**ଟାଟି ଲଡୁ**-*ଦେ.ବି.*- ଟାଟିରେ ଯାଇଥିବା ଠାକୁରଙ୍କ ନିମିତ୍ତ ଏକ ଭୋଗ ସାମଗ୍ରୀ ଲଡୁ ବିଶେଷ । ଏହା ଟାଟିରେ ଯାଉଥିବାରୁ ଏହାକୁ ଟାଟିଲଡୁ କୁହାଯାଏ ।
(ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୮୨) ।

**ଟାଟିଲେଙ୍କା**-*ଦେ.ବି.*- ଲେଙ୍କାଙ୍କ ମଧ୍ୟରେ ଏକ ପ୍ରକାର ଗୋଷ୍ଠୀ । ଏମାନେ ଦଶହରାଦିନ ରାଜାଙ୍କ ନଅରକୁ ଟାଟି ପଠାଇବା ବ୍ୟବସ୍ଥା କରନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୭୮, ପୁ.ବୋ. - ପୃ.୨୦୯) ।

**ଟାଟିସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଘଣ୍ଟଘଣ୍ଟା କାହାଳୀ ବିନା ଶ୍ରୀନଅରକୁ ଯାଉଥିବା ଟାଟକୁ ଟାଟ ସେବା କୁହାଯାଏ ।

**ଟାଟୁଆ ସେବା**-*ଦେ.ବି.*- ଟାଟ ଧରି ଯିବା ବ୍ୟକ୍ତି । ଟାଟବାଟ ଚାଙ୍ଗଡ଼ାରେ ସଜ୍ଜିତ ଉପଢ଼ୌକନ ବା ସାମଗ୍ରୀ ବହନ କରୁଥିବା ସେବକ । ରାଜା ଓ ଦେବତାଙ୍କର ଯେଉଁ ସେବକ ଭୋଗ ଲାଗିବା ପାଇଁ ଶୀତଳ ସାମଗ୍ରୀମାନ (ଯଥା-ଛତୁଆ, ଖଇ, ପିଠା ଇତ୍ୟାଦି) ଟାଟରେ ସଜାଇ ନେଇ ପୂଜକ ଓ ରାଜନଅରରେ ଜିମା ଦିଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୬, ପୂ.ଓ.ଭା. - ପୃ. ୩୪୧୫) ।

**ଟାଡ଼**-*ଦେ.ବି.*- ବାହୁରେ ପିନ୍ଧା ଯିବା ବଳାକୃତି ଅଳଙ୍କାର ବିଶେଷ । ଏକ ବୃହତ୍ ମାଟିର ପଲମ ବା ବଡ଼ହାଣ୍ଡି । ଶ୍ରୀମନ୍ଦିରରେ ଏଥିରେ ରୋଷଘରୁ ରୋଷ ପଦାର୍ଥ ଭୋଗ ନିମନ୍ତେ ଶ୍ରୀମନ୍ଦିରରେ ଥିବା ଠାକୁରଙ୍କ ସମ୍ମୁଖକୁ ଯାଏ । ଆନନ୍ଦ ବଜାର ମଧ୍ୟରେ ମହାପ୍ରସାଦ ବିକ୍ରୟରେ ଏହା ବ୍ୟବହୃତ ହୁଏ ।
(କ୍ର.ବି.ଓ.ଶ.ଭା. - ପୃ. ୪୦୫, ପୂ.ଓ.ଭା. - ପୃ. ୩୪୧୬, ଓ.ସାଂ.ଶ. - ପୃ. ୧୫୮, ପ୍ର.ଅ. ୨ୟ - ପୃ.୧୦୮୯) ।

**ତାଡ଼କିଆ ମୁଦୁଲି ସେବକ**-*ଦେ.ବି.*- ଧାନରୁ ଅଗାଡ଼ି ପ୍ରଭୃତି ଉଡ଼ାଇ ସାଇତି ରଖିବା ସେବକ ।
(ପୁ.ବୋ. - ପୃ. ୨୦୯) ।

**ତାଡ଼ିଆ**-*ଦେ.ବି.*- ମଝି ମଝିଆ ହାଣ୍ଡି, ବଡ଼ ପଲମ, ଜଗନ୍ନାଥଙ୍କର ଛେନା ପୁରଦିଆ ଅମାଲୁ ମିଷ୍ଟାନ୍ନ ପିଷ୍ଟକ; ଛେନା ତାଡ଼ିଆ ।
(ପ୍ର.ଅ. ୨ୟ - ୧୦୮୯, ପୂ.ଅ.ଭା. - ପୃ. ୩୪୧୮) ।

**ତାମରା ବିଶୋଇ ସେବକ**-*ଦେ.ବି.*- ରଥ ତିଆରି ସମୟରେ ତମ୍ବା କାମ କରୁଥିବା ସେବକ । ଏମାନେ ମଧ୍ୟ ଠାକୁରଙ୍କ ବାହୁଟ ଲାଗିବେଳେ ତମ୍ବାପାତ୍ର ଯୋଡ଼ିଥାନ୍ତି । ଏମାନଙ୍କୁ ତଅଁରା ମଧ୍ୟ କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୫୨) ।

**ତାରାବଳି ସଜ**-*ଦେ.ବି.*- ଏକ ଖଣ୍ଡୁଆ ବିଶେଷ । ତାରାଫୁଲ ପଡ଼ିଥିବା ଖଣ୍ଡୁଆ ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ ।
(ପୁ.ବୋ. - ପୃ. ୨୦୯) ।

**ତାଳପତ୍ର**-*ସଂ.ବି.*- ତାଳଗଛର ପତ୍ର ଏହା ଉପରେ ଲେଖନିରେ ଲେଖାଯାଏ । କର୍ଣ୍ଣଭୂଷଣ ବିଶେଷ । ପୂର୍ବେ ତାଳପତ୍ରରେ ଶ୍ରୀଜଗନ୍ନାଥଙ୍କ ମାଦଳାପାଞ୍ଜି ଲିଖିତ ହେଉଥିଲା ।
(ଓ.ସାଂ.ଶ. - ପୃ. ୧୬୦, ପୂ.ଓ.ଭା. - ପୃ. ୩୪୫୮) ।

**ତାଳଧ୍ୱଜ ରଥ**-*ସଂ.ବି.*- ବଳଭଦ୍ରଙ୍କ ରଥ ନାମ ତାଳଧ୍ୱଜ । ଏହାକୁ ଦେବତାମାନେ ତାଳବନରେ ପ୍ରଦାନ କରିଥିଲେ । ଏହାର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି । ୭୬୩ଟି କାଠ ଦ୍ୱାରା ନିର୍ମିତ । ଏ ରଥର ୧୪ଟି ଚକ । ରଥ ରକ୍ଷକ ସ୍ୱୟଂ ବାସୁଦେବ । ଆୟୁଧ ହେଲା ହଳ ଓ ମୂଷଳ । ଭଦ୍ରପୀଠ ଅଷ୍ଟଦଳପଦ୍ମ ନିର୍ମିତ । ରଥର ଆବରଣ ରକ୍ତନୀଳ । ରଥର ଶିରରେ ଅନନ୍ତନାଗ ରହିଛନ୍ତି । ଏ ରଥର ପାର୍ଶ୍ୱଦେବତାମାନେ ହେଲେ - ପ୍ରଣମ୍ବାରୀ, ଗଦାନ୍ତକାରୀ, ହରିହର, ତୈମ୍ରୁକ, ବାସୁଦେବ, ନାଟାମ୍ବର, ଅଘୋର, ତ୍ରିପୁରା ଓ ରିଶିବ, ସାରଥୀଙ୍କ ନାମ ମାତଳୀ । ରଥ ରକ୍ଷକ ହେଲେ ଭାସ୍କର । ଅଶ୍ୱମାନେ ହେଲେ ତୀବ୍ର, ଘୋର, ଦୀର୍ଘ, ଶ୍ରମ ଓ ସ୍ୱର୍ଣ୍ଣନାଭ । ସ୍ୱୟଂ ବାସୁକୀ ଏହାର ରଜ୍ଜୁ ରୂପରେ ବିରାଜିତ । ରଥମୂର୍ଦ୍ଧି- କେତୁଭଦ୍ରା । ଚର ଦେବତା ବ୍ରହ୍ମା ଓ ଶିବ । ରଥର ଭୈରବ ହେଲେ କ୍ଷେତ୍ରପାଳ । ଗନ୍ଧର୍ବଙ୍କ ନାମ ହୁ ହୁ । ଚାରୁଣଦ୍ୱୟ ମହାସିଦ୍ଧ ଓ ଉଲେମୀ । ଗର୍ଭାଧୀଶ୍ୱରୀ ଶକ୍ତି - ତୁଙ୍ଗା, ତୁଙ୍ଗଭଦ୍ରା, ପ୍ରଭା, ସୁପ୍ରଭା, ଧାତ୍ରୀ, ବିଧାତ୍ରୀ ନନ୍ଦା, ସୁନନ୍ଦା । ଋଷିପଟାରେ ଅଙ୍ଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି, କୃଷ୍ଣ, ମୁଦ୍‌ଗଲ, ଆତ୍ରେୟ ଓ କାଶ୍ୟପ ଏହି ଅଷ୍ଟଋଷି ବିରାଜମାନ କରିଛନ୍ତି । ରଥକୁମ୍ଭର ନାମ ଭୁବନ, ବିମ୍ବ, ପୃଥିବୀ, ଚକ୍ରାୟୁଧ, ହୁଁ ବୀଜ । ଦ୍ୱାରପାଳ ହେଲେ ନନ୍ଦ ଓ ସୁନନ୍ଦା । ନେତର ନାମ ଉନ୍ନନି । ଓଲଟ ଶୁଆଙ୍କ ନାମ ଶ୍ରଦ୍ଧା ଓ ବିଶ୍ୱାସ ।
(ଉ.ପ୍ର. ଜୁଲାଇ, ୧୯୯୯ - ପୃ. ୪୫) ।

**ତିଉଣ**-*ଦେ.ବି.*- ଶ୍ରୀମନ୍ଦିରର ରୋଷଘରେ ପ୍ରସ୍ତୁତ ହେଉଥିବା ଠାକୁରଙ୍କ ନିମନ୍ତେ ଭୋଗ । ଶାଗ, ବେସର, ମହୁର, କଦଳୀଠାରୁ କନ୍ଦମୂଳ ମିଶ୍ରଣ ପରିବା ତିଉଣ ।
(ଶ୍ରୀ.ଚେ.ଦୀ.ବ୍ୟା - ପୃ. ୨୫୬) ।

**ତିଉଣିଆ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ଯେଉଁ ସେବକ ଭୋଗ ନିମନ୍ତେ ପରିବା ଯୋଗାଇ ଦିଅନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୨୨) ।

**ତିନିଧୂପ ପାଞ୍ଚଅବକାଶ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଠାରେ ହେଉଥିବା ତିନିଧୂପ ପାଞ୍ଚ ଅବକାଶ ପୂଜା । ପ୍ରଥମ ଅବକାଶ-ଦନ୍ତମଞ୍ଜନ ଓ ସ୍ନାନ (ଏଥିରେ ପଞ୍ଚାମୃତ ଅର୍ପିତ ହେଉଥିବାରୁ ଏହା ଗୋଟିଏ 'ଭୋଗ' ମଧ୍ୟରେ ଗଣ୍ୟ), ଦ୍ୱିତୀୟ ଅବକାଶ-ବଲ୍ଲଭ ଭୋଗ, ପ୍ରଥମ ଧୂପ-ସକାଳ ଧୂପ, ତୃତୀୟ ଅବକାଶ-ଭୋଗମଣ୍ଡପ, ଦ୍ୱିତୀୟ ଧୂପ-ଦ୍ୱିପ୍ରହର ଧୂପ, ଚତୁର୍ଥ ଅବକାଶ-ଗୋଧନ ବାହୁଡ଼ା ଓ ଝେରାପିଛା, ତୃତୀୟ ଧୂପ ସଞ୍ଜ ଧୂପ, ପଞ୍ଚମ ଅବକାଶ-ବଡ଼ସିଂହର ଭୋଗ । ତିନି ଧୂପରେ ଷୋଡ଼ଶୋପଚାରରେ ପୂଜା ହୁଏ, କିନ୍ତୁ ପାଞ୍ଚଅବକାଶରେ ପଞ୍ଚୋପଚାର ପୂଜାର ବିଧାନ

ଅଛି, କି ଧୂପ କି 'ଅବକାଶ' ପ୍ରତ୍ୟେକ ଭୋଗ ସମୟରେ ଧୂପଦୀପାଦି ଦିଆଯିବାର ବିଧି ଅଛି । ମାତ୍ର ଅବକାଶ ବେଳେ ଧୂପଦୀପାଦି ପରିବର୍ତ୍ତେ ପୁଷ୍ପ ସମର୍ପଣ କରାଯାଏ । ଧୂପ ବେଳେ ପୂଜାପଣ୍ଡା ଦେବତାଙ୍କ ପିଣ୍ଡି ବା ସିଂହାସନ ଉପରେ ବସି ପୂଜା କରେ । କିନ୍ତୁ ଅବକାଶ ବେଳେ ସିଂହାସନ ତଳେ ବସି ପୂଜା କରନ୍ତି । (ପୂ.ଓ.ଭା. - ପୃ. ୩୪୭୮, ପ୍ର.ଅ. ୨ୟ - ପୃ. ୧୧୦, ଓ.ସାଂ.ଶ.- ପୃ. ୧୬୧) ।

**ତିନିବାଡ଼ ପଟି**-*ଦେ.ବି.*- ଶ୍ରୀମନ୍ଦିରରେ ବିଗ୍ରହମାନଙ୍କର ଅଣସର ସମୟରେ ବଡ଼ଠାକୁରଙ୍କ ବାଡ଼ରେ ବାସୁଦେବ, ମଝିବାଡ଼ରେ ଅର୍ଥାତ୍ ସୁଭଦ୍ରାଙ୍କ ବାଡ଼ରେ ଭୁବନେଶ୍ୱରୀ ଓ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ନାରାୟଣଙ୍କ ଫଟୋଚିତ୍ର ପଟି ରଖାଯାଇ ପୂଜା କରାଯାଏ । ଏମାନଙ୍କୁ ତିନିବାଡ଼ ପଟି କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୬୨) ।

**ତିଳକ**-*ଦେ.ବି.*- ଲଲାଟରେ ଦିଆଯାଉଥିବା ଚନ୍ଦନ ଚିହ୍ନ, ଚିତା, ଟୋପା । ହିନ୍ଦୁମାନେ ସ୍ନାନ ସାରି ପୂଜା କରିବା ପୂର୍ବରୁ ଚନ୍ଦନ, ଗୋରଚନା, ତିଳକମାଟି ଆଦି ଘୋରି ମସ୍ତକରେ ତିଳକ ଘେନନ୍ତି । ଦେହରେ ବାର ସ୍ଥାନରେ ତିଳକ ଘେନିବାର ବିଧି ଅଛି । ଯଥା- ଲଲାଟ, ମସ୍ତକ, ଦୁଇକର୍ଣ୍ଣ, କଣ୍ଠ, ଦୁଇବାହୁ, ବକ୍ଷ, ଦୁଇପାର୍ଶ୍ୱ, ପୃଷ୍ଠ ଓ ନାଭି । ବ୍ରାହ୍ମଣ ଓ ବୈଷ୍ଣବମାନେ ଊର୍ଦ୍ଧ୍ୱପୁଣ୍ଡ୍ର (ଶଗଡ଼ ଦଣ୍ଡା ପରି ଦୁଇଟି ଊର୍ଦ୍ଧ୍ୱରେଖା) କ୍ଷତ୍ରିୟ, ଶାକ୍ତ ଓ ଶୈବମାନେ ତ୍ରିପୁଣ୍ଡ୍ର (ତ୍ରିଶୂଳପରି ତିନୋଟି ଆଡ଼ରେଖା) ବୈଶ୍ୟଙ୍କର ଅର୍ଦ୍ଧଚନ୍ଦ୍ରାକାର ଏବଂ ଶୂଦ୍ରଙ୍କର ବର୍ତ୍ତୁଳାକାର ଟୋପାଚିତା ଘେନିବାର ବିଧି ଅଛି । ତିଳକ ଦେଖି ତିଳକଧାରୀ ବ୍ୟକ୍ତିର ଜାତି ଓ ସଂପ୍ରଦାୟ ସ୍ଥିର କରାଯାଇପାରେ । ଶ୍ରୀମନ୍ଦିରରେ ଜୀଉଙ୍କ ଏକ ସ୍ୱର୍ଣ୍ଣ ଅଳଙ୍କାର, -ସୁନାବେଶ ସମୟରେ ଚିତାକୁ ଲାଗି ହେଉଥିବା ସ୍ୱର୍ଣ୍ଣ ଅଳଙ୍କାର ବିଶେଷ । (ପୂ.ଓ.ଭା. - ପୃ. ୩୪୮୭/୮୮) ।

**ତିଳସପ୍ତମୀ**-*ସଂ.ବି.*- ମାଘ ଶୁକ୍ଳ ପକ୍ଷ ସପ୍ତମୀରେ ଶ୍ରୀମନ୍ଦିର ବେଢ଼ାରେ ଥିବା ସୂର୍ଯ୍ୟ ମନ୍ଦିରରେ ଠାକୁରଙ୍କ ବେଶ ହୋଇ ଭୋଗ ବଢ଼େ । ଏହି ଦିବସକୁ ତିଳ ସପ୍ତମୀ କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୦୯) ।

**ତୀର୍ଥ**-*ସଂ.ବି.*- ପାପମୋଚନ କ୍ଷେତ୍ର, ପାପରୁ ଉଦ୍ଧାର ପାଇବା ପାଇଁ ଲୋକେ ଯେଉଁ ସ୍ଥାନକୁ ଯାଆନ୍ତି । ହିନ୍ଦୁ ଶାସ୍ତ୍ର ମତରେ ତୀର୍ଥ ତିନି ପ୍ରକାର; ଯଥା- ୧) ଜଙ୍ଗମ ତୀର୍ଥ- ଚଳମାନ ତୀର୍ଥ, ବ୍ରାହ୍ମଣ, ସାଧୁ ଓ ଗୁରୁଜନ । ୨) ସ୍ଥାବର ତୀର୍ଥ-ସ୍ଥିର ତୀର୍ଥ, ଗଙ୍ଗା, ଗୋଦାବରୀ, କାଶୀ, ପ୍ରୟାଗ ଓ ପୁରୁଷୋତ୍ତମ ଆଦି । ୩) ମାୟା ତୀର୍ଥ-ସତ୍ୟ, କ୍ଷମା, ଦୟା, ଇନ୍ଦ୍ରିୟ, ସଂଯମ, ଦାନ, ଧର୍ମ, ସନ୍ତୋଷ, ସରଳତା, ପୁଣ୍ୟ କର୍ମ ଇତ୍ୟାଦି । (ପୁ.ବୋ. - ପୃ. ୧୬୨-୧୬୩) ।

**ତୀର୍ଥଗୁରୁ**-*ଦେ.ବି.*- ପଣ୍ଡା ବିଶେଷ; ଯେଉଁ ପଣ୍ଡା ଯାତ୍ରୀମାନଙ୍କୁ ଆଣି ବଡ଼ପଣ୍ଡା ପାଖରେ ପହଞ୍ଚାନ୍ତି । ତାଙ୍କୁ ଯାତ୍ରୀ ପଣ୍ଡା ବୋଲି ମଧ୍ୟ କୁହାଯାଏ । (ପୁ.ବୋ. - ପୃ. ୨୧୦) ।

**ତୀର୍ଥମାଟିଆ ସେବକ**-*ଦେ.ବି.*- ଶ୍ରୀମନ୍ଦିର ସେବକ ବିଶେଷ । ଶ୍ରୀମନ୍ଦିର ମଧରେ କେହି ଅକସ୍ମାତ ମୃତ୍ୟୁ ବରଣ କଲେ ଏମାନେ ତୁରନ୍ତ ଶବ ଉଠାଇ ନିଅନ୍ତି । ତୀର୍ଥ କ୍ଷେତ୍ରରେ କେହି ନିରାଶ୍ରୟ ହୋଇ ମୃତ୍ୟୁ ବରଣ କଲେ ଏମାନେ ସାଥି ସାଥି ଶବ ସତ୍କାର କରାଇଥାନ୍ତି । (ଉ.ଇ.ଅ.ଅ. - ପୃ. ୩୪୮) ।

**ତୀର୍ଥଯାତ୍ରୀ**-*ଦେ.ବି.*- ପୂର୍ବେ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିବାକୁ ବିଭିନ୍ନାଞ୍ଚଳରୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କୁ ସାଧାରଣତଃ ନଅ ଶ୍ରେଣୀରେ ବିଭକ୍ତ କରାଯାଉଥିଲା । ଯଥା- ଲାଲଯାତ୍ରୀ, ନିମଯାତ୍ରୀ, ଭୂରଙ୍ଗଯାତ୍ରୀ, ପଞ୍ଚତୀର୍ଥଯାତ୍ରୀ, ବିଶେଷଯାତ୍ରୀ, ବିଶିଷ୍ଟ ଯାତ୍ରୀ, ଖଇରାତ ଯାତ୍ରୀ, ବୈରାଗୀ ଯାତ୍ରୀ ଓ କାଙ୍ଗାଳଯାତ୍ରୀ । ଶ୍ରୀକ୍ଷେତ୍ରରେ ପ୍ରବେଶ କରିବାକୁ ତୀର୍ଥଯାତ୍ରୀମାନେ ଅଠରନଳା, ଘାଟ, ମଙ୍ଗଳାଘାଟ, ଲୋକନାଥ ଘାଟ ଓ ବାଲିସାହି ଘାଟରେ ଯାତ୍ରୀ ମହାସୁଲ ଦେଇ ଶ୍ରୀକ୍ଷେତ୍ରରେ ପ୍ରବେଶ କରୁଥିଲେ । ୧୮୦୬ ମସିହାରେ ଶ୍ରୀମନ୍ଦିରର କଲେକ୍ଟର ରୂପେ ଜେମ୍ସ

ହଣ୍ଟର ସାହେବ ନିଯୁକ୍ତ ହୋଇଥିଲେ । ସେ ଯାତ୍ରୀମାନଙ୍କୁ ଦୁଇଶ୍ରେଣୀରେ ବିଭକ୍ତ କରିଥିଲେ । ଲାଲଯାତ୍ରୀ (ଉଚ୍ଚଶ୍ରେଣୀ)ଙ୍କଠାରୁ ଦଶଟଙ୍କା ଓ ଦାକ୍ଷିଣାତ୍ୟରୁ ଆସୁଥିବା ଯାତ୍ରୀଙ୍କଠାରୁ ଛଅଟଙ୍କା କିନ୍ତୁ ନିମ୍ନଶ୍ରେଣୀ ଯାତ୍ରୀଠାରୁ ଦୁଇଟଙ୍କା ଯାତ୍ରୀକର ଆଦାୟ ହେଉଥିଲା । ୧୮୪୦ ମେ ୩ ତାରିଖରୁ ଯାତ୍ରୀକର ଆଦାୟ ପ୍ରତ୍ୟାହାର କରିନିଆଗଲା । (ଶ୍ରୀ.ଜି. - ପୃ. ୩୦୧) ।

**ତୀର୍ଥବାକ୍ୟକର୍ତ୍ତା**-*ଦେ.ବି.*- ପୂର୍ବେ ଶ୍ରୀକ୍ଷେତ୍ରର ତୀର୍ଥସ୍ଥାନମାନଙ୍କରେ ରହି ଯାତ୍ରୀମାନଙ୍କୁ ସଂକଳ୍ପ ବାକ୍ୟ ପଢ଼ାଉଥିବା ରାଜନିଯୁକ୍ତ ବ୍ରାହ୍ମଣ । (ପୁ.ବୋ. - ପୃ. ୨୧୦) ।

**ତୀର୍ଥ ରକ୍ଷା ପଡ଼ିହାରୀ**-*ଦେ.ବି.*- ସାବତ ନିଯୋଗ ସେବକ । ସ୍ୱର୍ଗଦ୍ୱାର, ଚକ୍ରତୀର୍ଥ, ମାର୍କଣ୍ଡ ପ୍ରଭୃତି ତୀର୍ଥସ୍ଥାନରେ ଶ୍ରାଦ୍ଧ ତର୍ପଣ ଆଦି କାର୍ଯ୍ୟ କରୁଥିବା ଓ ଶ୍ରଦ୍ଧାଳୁଙ୍କ ରକ୍ଷା ଦାୟିତ୍ୱ ନେଉଥିବା ନିଯୋଗ । (କ୍ଷେ.ସ.) ।

**ତ୍ରିକୂଟକ**-*ସଂ.ବି.*- ତ୍ରିକୂଟ । ତ୍ରିକୂଟ କ୍ଷୀର ସମୁଦ୍ରସ୍ଥ ଏକ ପର୍ବତ, ଯେଉଁଠି ସୁନା, ରୂପା ଓ ଲୁହାର ତିନୋଟି ଶୃଙ୍ଗ ଅଛି । ଯାହା ଉପରେ ଭଗବାନ ବିଷ୍ଣୁଙ୍କର ନିବାସସ୍ଥଳୀ ଅଛି ବୋଲି କୁହାଯାଏ । (ଓ.ସାଂ.ଶ.- ପୃ. ୧୬୫, କୁ.ବି.ଓ.ଶ.ସ. - ପୃ. ୪୨୯) ।

**ତ୍ରିକୂଟ ବନ୍ଦାପନା**-*ଦେ.ବି.*- ଶ୍ରୀଜୀଉ ଯେତେବେଳେ ରତ୍ନସିଂହାସନ ତ୍ୟାଗ କରି କୂର୍ମବେଢ଼ା ମଧ୍ୟକୁ ପ୍ରବେଶ କରନ୍ତି, କଳ୍ପବୃକ୍ଷ ଆଡ଼କୁ ମୁଖ କରି ବିରାଜମାନ କରନ୍ତି, ସେଠାରେ ବିଦ୍ୟାପତି ବଂଶଜ ପତିମହାପାତ୍ର ବନ୍ଦାପନା କରନ୍ତି । ତା'ର ନାମ ତ୍ରିକୂଟ ବନ୍ଦାପନା । ତା'ପରେ ସାତ ପାହାଚ ଅତିକ୍ରମ କରି ଗଲାବେଳେ ଯେଉଁ ବନ୍ଦାପନା କରାଯାଏ, ତାକୁ 'କଳ୍ପ ବନ୍ଦାପନା' କୁହାଯାଏ । ପତି ମହାପାତ୍ର ଏହି ବନ୍ଦାପନା କଲାବେଳେ ଯଦି ଆଲଟ, ଚାମର ଯୁକ୍ତ ହୁଏ, ତେବେ ତାହାକୁ ରାଜନୀତି ବନ୍ଦାପନା କୁହାଯାଏ ।

**ତ୍ରିକୋଣ/ନଳି ବିଡ଼ିଆ**-*ଦେ.ବି.*- ଶ୍ରୀଜୀଉଙ୍କ ପାଖରେ ଲାଗିହେଉଥିବା ପାନଖିଲର ପ୍ରକାରଗତ ନାମ ।

**ତ୍ରିଖଣ୍ଡିଆ**-*ସଂ.ବି.*- ଠାକୁରଙ୍କର ଏକ ପ୍ରକାର ବସ୍ତ୍ର । ତିନି ଖଣ୍ଡିକିଆ ପାଟଟୁ ଶାଢ଼ୀ ଓ ଖଣ୍ଡିଆ ଖଦୀ ତିନିଦିଅଁଙ୍କୁ ଲାଗି ହୁଏ ବୋଲି ତାହାକୁ ତ୍ରିଖଣ୍ଡିଆ କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୪୭) ।

**ତ୍ରିଛେକ**-*ସଂ.ବି.*- କୋଠ ଭୋଗରେ ତିନିଜଣ ପାଳିଆ ସେବକ ବୋହି ନେଉଥିବା ଅମୋଣିହା ଭୋଗ । (ପୁ.ବୋ. - ପୃ. ୨୨୮) ।

**ତ୍ରିତାପ**-*ସଂ.ବି.*- ସଂସାରରେ ମଣିଷ ଭୋଗ କରୁଥିବା ତ୍ରିବିଧ ଦୁଃଖ ଯଥା-ଆଧିଭୌତିକ, ଆଧିଦୈବିକ, ଆଧ୍ୟାତ୍ମିକ । ଲୋକ ବିଶ୍ୱାସ ଅଛି-ବଡ଼ଦାଣ୍ଡରେ ରଥ ଉପରେ ଶ୍ରୀ ଜଗନ୍ନାଥ ଦର୍ଶନ ତ୍ରିତାପରୁ ମୁକ୍ତି ପ୍ରଦାନ କରେ । (ପୂ.ଓ.ଭା. - ପୃ. ୩୫୮୨) ।

**ତ୍ରିଦଶ**-*ସଂ.ବି.*- ତେତିଶ ଜଣ ଦେବତା । ଦ୍ୱାଦଶଆଦିତ୍ୟ + ଏକାଦଶରୁଦ୍ର + ଅଷ୍ଟବସୁ + ଇନ୍ଦ୍ର ଓ ପ୍ରଜାପତି ବିଶ୍ୱଦେବ = ତେତିଶ । ଏମାନେ ପ୍ରତ୍ୟେକ ପୂଜା ଓ ଦେବ ପ୍ରତିଷ୍ଠା ଆଦି କାର୍ଯ୍ୟରେ ଆବଶ୍ୟକ ହୁଅନ୍ତି । (ପୂ.ଓ.ଭା. - ପୃ. ୩୫୮୨, ଓ.ସାଂ.ଶ. - ପୃ. ୧୬୬) ।

**ତ୍ରିପଣ୍ଡ**-*ଦେ.ବି.*- ଅସୁନ୍ଦର, କୁତ୍ସିତ, କଦାକାର, ଘୋର । ଯିଏ ଧର୍ମ, ଅର୍ଥ କାମକୁ ପଣ୍ଡ କରେ, ଦୁରାଶା, ଦୁର୍ବୃତ୍ତ, ଖଳ, ଶଠ, ପ୍ରତାରକ, କଦାକାର, ବିକଟରୂପ, ଭୟାନକ ରୂପ । ତ୍ରିପଣ୍ଡ କଳା ବା ଗାଢ଼କଳା । ଶ୍ରୀଜଗନ୍ନାଥଙ୍କୁ ତ୍ରିପଣ୍ଡ କଳିଆ ବୋଲି କୁହାଯାଏ । (ପୂ.ଓ.ଭା. - ପୃ. ୩୫୮୪) ।

**ତ୍ରିପାଦ**-*ସଂ.ବି.*- ତିନିଗୋଟି ପାଦ ଯାହାଙ୍କର । ବାମନ ଅବତାରରେ ବିଷ୍ଣୁ ତିନିଗୋଟି ପାଦ ଧାରଣ କରିଥିବାରୁ ସେ ତ୍ରିପାଦ । (ପୂ.ଓ.ଭା. - ପୃ. ୩୫୮୬, ଓ.ସାଂ.ଶ. - ପୃ.୧୧୬, ପ୍ର.ଅ. ୨ୟ - ପୃ. ୧୧୪୨) ।

**ତ୍ରିପୁରୀ**-*ସଂ.ବି.*- ଝିଲ୍ଲୀ ଜାତୀୟ ଏକ ପ୍ରକାର ପିଠା । ଚାଉଳଚୂନା ଓ ଘିଅ ପ୍ରସ୍ତୁତ ପିଷ୍ଟକ ବିଶେଷ । (ପୁ.ବୋ. - ପୃ. ୨୧୦) ।

**ତ୍ରିପୁରୀଲାଲ**-*ସଂ.ବି.*- ତ୍ରିପୁରୀ ବା ଗରୁଡ ଗୋବିନ୍ଦ କାଠି, ଯାହା ପାଣିରେ ପଡିଲେ ଲାଲ ରଂଗ ବାହାରେ । ଏଥି ସହ ମଇଦା, ଚାଉଳ ଚୂନା ମିଶାଇ ଖଣ୍ଡମଣ୍ଡା ତିଆରି ହୁଏ ।
(କ୍ଷେ.ସ.) ।

**ତ୍ରିଫଳା**-*ସଂ.ବି.*- ତିନି ଫଳର ସମାହାର । ହରିଡ଼ା, ବାହାଡ଼ା ଓ ଅଁଳାର ସମାହାର । ଏହି ତ୍ରିଫଳା ଜଳରେ ଅବକାଶ ସମୟରେ ଠାକୁରମାନଙ୍କ ଚକ୍ଷୁ ଧୌତ କରାଯାଏ ।
(କ୍ରି.ବି.ଓ.ଶ.ସ. - ପୃ. ୪୩୧, ପୂ.ଓ.ଭା. - ପୃ. ୩୫୮୮, ଓ.ସାଂ.ଶ. - ପୃ. ୧୬୬, ପ୍ର.ଅ. ୨ୟ - ପୃ. ୧୧୪୧) ।

**ତ୍ରିବର୍ଣ୍ଣ**-*ସଂ.ବି.*- ବ୍ରାହ୍ମଣ, କ୍ଷତ୍ରୀୟ ଓ ବୈଶ୍ୟ । ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କର ତ୍ରିରଙ୍ଗ । ତିନିଠାକୁର ତ୍ରିରଙ୍ଗର ସମାବେଶ । ଶ୍ରୀବଳଭଦ୍ର-ଶ୍ୱେତବର୍ଣ୍ଣ, ଶ୍ରୀସୁଭଦ୍ରା-ପୀତବର୍ଣ୍ଣ, ଶ୍ରୀଜଗନ୍ନାଥ-କୃଷ୍ଣବର୍ଣ୍ଣ । ଏହି ତ୍ରିରଙ୍ଗ ପୃଥିବୀର ସମସ୍ତ ମଣିଷ ଜାତିର ରଙ୍ଗର ପ୍ରତୀକ ।
(ପୂ.ଓ.ଭା. - ପୃ. ୩୫୮୮, ପ୍ର.ଅ. ୨ୟ - ପୃ. ୧୧୪୧) ।

**ତ୍ରିବିକ୍ରମ**-*ସଂ.ବି.*- ତିନିପାଦ ଦ୍ୱାରା ଆକ୍ରମଣ କରିବା । ବାମନରୂପୀ ଭଗବାନ ବିଷ୍ଣୁ । ତ୍ରିଲୋକ ମଧ୍ୟରେ ଯାହାଙ୍କର ବିକ୍ରମ ଦେଦୀପ୍ୟମାନ ଅଛି । ଜଗନ୍ନାଥ ମନ୍ଦିରର ଉତ୍ତର ଦିଗର ପାର୍ଶ୍ୱ ଦେବତା ।
(ପୂ.ଓ.ଭା. - ପୃ. ୩୫୮୯, କ୍ରି.ବି.ଓ.ଶ.ସ. - ପୃ. ୪୩୧) ।

**ତ୍ରିମୁଣ୍ଡ ଚନ୍ଦନଲାଗି**-*ସଂ.ବି.*- ଅକ୍ଷୟ ତୃତୀୟା ତିଥିରେ ଶ୍ରୀଜୀଉଙ୍କ ବିଶେଷ ଚନ୍ଦନ ଲାଗି ନୀତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୮-୧୧୯) ।

**ତ୍ରିମୁଣ୍ଡି**-*ଦେ.ବି.*- ତିନୋଟି ସ୍ୱତନ୍ତ୍ର ଜଟ ପକାଇ ବାନ୍ଧିବା କେଶ ବିନ୍ୟାସ । ଠାକୁରଙ୍କ ମସ୍ତକୋପରିଭାଗର ଏକ ପ୍ରକାର ଜୁଡ଼ା ବା ପୁଷ୍ପଭୂଷା । ଠାକୁରଙ୍କ ପହୁଡ଼ ନୀତିରେ ଖଟ ଶେଯରେ ତ୍ରିମୁଣ୍ଡି ମୁଗୁଲା ଲାଗି ହେବାର ପରମ୍ପରା ଅଛି ।
(ପୂ.ଓ.ଭା. - ପୃ. ୩୫୯୧) ।

**ତ୍ରିମୁଣ୍ଡି ଗଭା**-*ଦେ.ବି.*- ଶ୍ରୀବିଗ୍ରହମାନଙ୍କ ମସ୍ତକର ଶୀର୍ଷ ସ୍ଥାନରେ ଶୋଭାପାଉଥିବା ପୁଷ୍ପଜୁଡ଼ା ।
(ପୂ.ଓ.ଭା. - ପୃ. ୩୫୯୧) ।

**ତ୍ରିରଥ**-*ସଂ.ବି.*- ଯେଉଁ ରେଖ ଦେଉଳର ପ୍ରତ୍ୟେକ ପାଖ ଆଲମ୍ବ ଭାବେ ତିନି ଭାଗ ହୋଇଥାଏ ।

**ତ୍ରିଶାଖା**-*ସଂ.ବି.*- ଶ୍ରୀଜୀଉଙ୍କ ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ. - ପୃ.୮୪) ।

**ତ୍ରିସନ୍ଧ୍ୟା**-*ସଂ.ବି.*- ତିନି ଗୋଟି ସନ୍ଧି ସମୟର ସମାହାର । ସକାଳ, ଦ୍ୱିପ୍ରହର ଓ ସନ୍ଧ୍ୟା । ଈଶ୍ୱରଙ୍କୁ ପ୍ରାର୍ଥନା କରିବା ପାଇଁ ଏହା ଉତ୍କୃଷ୍ଟ ସମୟ ଅଟେ । ଶ୍ରୀ ଜଗନ୍ନାଥଙ୍କର ମଧ୍ୟ ସକାଳ ଧୂପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ଧୂପ ରହିଛି ।
(କ୍ରି.ବି.ଓ.ଶ.ସ. - ପୃ. ୪୩୨, ଓ.ସାଂ.ଶ. - ପୃ.୧୬୭, ପୂ.ଓ.ଭା. -ପୃ. ୩୫୯୫, ପ୍ର.ଅ. ୨ୟ - ପୃ. ୧୧୪୫) ।

**ତୁଅଣ ସୁଆର**-*ଦେ.ବି.*- ଶ୍ରୀମନ୍ଦିରର ସୂପକାରଙ୍କ ମଧ୍ୟରୁ ଏକ ଗୋଷ୍ଠୀ । ଠାକୁରଙ୍କ ଦକ୍ଷିଣାୟନ ବନ୍ଦାପନା ବେଳେ ପଣ୍ଡା, ପତ୍ରୀ ଓ ବଡୁଙ୍କୁ ଏମାନେ ବଳି ଅନ୍ନ ଦେଇଥାନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୯୪/୯୫, ପୁ.ବୋ. - ପୃ.୨୧୦) ।

**ତୁନି**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ପହଣ୍ଡି ବିଜେରେ ଠାକୁର ରହିଯାଉଥିବା ସ୍ଥାନରେ ଶ୍ରୀବିଗ୍ରହଙ୍କ ତଳେ ଦିଆଯାଉଥିବା ତକିଆ ।
(ଶ୍ରୀ.ସ୍ୱ. - ପୃ. ୬୯) ।

**ତୁରୁକୁସୁଆ**-*ଦେ.ବି.*- ଶ୍ରୀଠାକୁରଙ୍କର ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ. - ପୃ. ୮୪) ।

**ତୁଳାସଂକ୍ରାନ୍ତି**-*ସଂ.ବି.*- ଗର୍ଭଣା ସଂକ୍ରାନ୍ତି । ଶ୍ରୀମନ୍ଦିରରେ ଏହି ଦିନ ମଧ୍ୟାହ୍ନ ଧୂପ ବଢ଼ିବା ପରେ ଜଣେ ପଣ୍ଡା ରୋଷ ପାଇକ ଦ୍ୱାରା ଓରିଆ ଏକ ଓଳି ମଗାଇ ମନ୍ଦିର ଚାରିପାଖରେ ବଳିଅନ୍ନ ଦିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୧) ।

**ତୁଳସିଆ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ସେବକ । ଏମାନେ ଠାକୁରଙ୍କ ପୂଜା ନିମନ୍ତେ ଦୈନିକ ତୁଳସୀପତ୍ର ଓ ମଞ୍ଜରୀ ଯୋଗାଇଥାଆନ୍ତି ।
(ଉ.ଇ.ଅ.ଅ. - ପୃ. ୩୩୮) ।

**ତୁଳସୀଚଉରା**-*ଦେ.ବି.*- ଯେଉଁ ଚଉରା ବା ବେଦୀ ଉପରେ ତୁଳସୀ ଗଛ ଲଗାଯାଇଥାଏ । ତୁଳସୀ ଗଛ ପ୍ରତିଟି ହିନ୍ଦୁଗୃହରେ ପୂଜା ପାଏ । ଏହି ଚଉରାର ମୂଳ ଲିପାପୋଛା କରି ପ୍ରତି ସନ୍ଧ୍ୟାରେ ଘିଅ ଦୀପ ବସାଯାଏ । ପୁରୀ ଜିଲ୍ଲାର ମାଳତୀପାଟପୁର ଗ୍ରାମରେ ଜଗନ୍ନାଥ ସଡ଼କ ଉପରେ ଏକ ପ୍ରସିଦ୍ଧ ତୁଳସୀ ଗଛର ଚଉରା ରହିଥିଲା । ତାହାକୁ ଦର୍ଶନ କରିବା ପାଇଁ ଯାତ୍ରୀମାନେ ଜଗନ୍ନାଥ ଦର୍ଶନ ସାରି ଏଠାକୁ ଆସନ୍ତି । ପୁରୀକୁ ଦର୍ଶନାର୍ଥେ ଆସୁଥିବା ଯାତ୍ରୀମାନେ ଏହିଠାରେ ପ୍ରଥମେ ଶ୍ରୀଜଗନ୍ନାଥ ଦେଉଳର ଚୂଡ଼ା ଦର୍ଶନ କରୁଥିଲେ ।
(ପୂ.ଓ.ଭା. - ପୃ. ୩୫୧୯) ।

**ତୁଳସୀଲାଗି**-*ଦେ.ବି.*- ଶ୍ରୀଜଗନ୍ନାଥ ତୁଳସୀ ପ୍ରିୟ । ତୁଳସୀ ଭେଦରେ ସାତ ପ୍ରକାର ଯଥା- ୧. କୃଷ୍ଣ ତୁଳସୀ, ୨. ଶୁକ୍ଳ ତୁଳସୀ, ୩. କର୍ପୂର ତୁଳସୀ (ଦୁର୍ଲ୍ଲଭା), ୪.ରାଗ ତୁଳସୀ, ୫. ବର୍ବର ତୁଳସୀ (ନାଣ୍ଡିବଗୁଲି), ୬. ଫଣୀଝକ (ମରୁଆ), ୭.ଦମନକ (ଦଅଁଣା) ଏହି ସପ୍ତ ତୁଳସୀ ଶ୍ରୀଜୀଉଙ୍କୁ ମାଳା ହୋଇ ଅର୍ପିତ ହୁଏ ।
(ଶ୍ରୀ.ଜି. - ପୃ. ୨୨୨) ।

**ତୂଳୀ ଲାଗି**-*ଦେ.ବି.*- ତୂଳୀ ଦ୍ୱାରା ତିଆରି ତକିଆ ଲମ୍ବ ଭାବରେ ଦେଇ ଠାକୁରଙ୍କ ଶ୍ରୀଅଙ୍ଗର ଅର୍ଦ୍ଧଭାଗରେ ଲାଗି କରାଯିବା ନୀତି । ପହଣ୍ଡି ପୂର୍ବରୁ ଶ୍ରୀଅଙ୍ଗର ସୁରକ୍ଷା ନିମନ୍ତେ ତୂଳୀ ଲାଗି କରାଯାଇଥାଏ । ରାଘବଦାସ ମଠ ଏହି ତୂଳୀ ଯୋଗାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୯) ।

**ତେଲ**-*ଦେ.ବି.*- ଶ୍ରୀମନ୍ଦିର ମଧ୍ୟରେ ଅଖଣ୍ଡ ଦୀପ ଜଳିବା ସକାଶେ ଯୋଗାଇ ଦିଆଯାଉଥିବା ରାଶି ତେଲ । ଏହା ଅଖଣ୍ଡ ଦୀପ ଜଳିବାରେ ବ୍ୟବହୃତ ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୪) ।

**ତେଲେଙ୍ଗା ସଂପ୍ରଦାୟ**-*ଦେ.ବି.*- ମାହାରୀଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ।
(ପୁ.ବୋ. - ପୃ. ୨୮୮) ।

**ତୋଟା ଗୋପୀନାଥ**-*ଦେ.ବି.*- ପୁରୀରେ ବଡ଼ଆମ୍ବତୋଟାରେ ଥିବା ବିଷ୍ଣୁମୂର୍ତ୍ତି । ଏହା ଶ୍ରୀଚୈତନ୍ୟଙ୍କ ଆରାଧନା ପୀଠ ଥିଲା । ଶ୍ରୀଚୈତନ୍ୟ ଏହାଙ୍କ ଶ୍ରୀଅଙ୍ଗରେ ବିଲୀନ ହୋଇଥିଲେ ବୋଲି ଏକ ଜନଶ୍ରୁତି ରହିଛି ।
(ପୂ.ଓ.ଭା. - ପୃ. ୩୫୫୬, ପୁ.ବୋ. - ପୃ. ୨୧୦) ।

**ତୋଡ଼ର** - *ଦେ.ବି.*- ଶୃଙ୍ଖଳ ବିଶେଷ । ପାଦର ବଳା ବିଶେଷ । ପାଦ ଓ ବାହୁ ନିମନ୍ତେ ଏକ ଅଳଙ୍କାର ।
(ପୂ.ଓ.ଭା. - ପୃ. ୩୫୫୯, ପୁ.ବୋ. - ପୃ. ୨୧୧, ପ୍ର.ଅ. ୨ୟ -ପୃ.୧୧୩୧) ।

**ତୋରଣ କନ୍ୟା**-*ଦେ.ବି.*- ପ୍ରବେଶ ଦ୍ୱାରରେ ଥିବା ନାରୀ ମୂର୍ତ୍ତି ।
(କ୍ଷେ.ସ.) ।

**ତୋଳାବତୀ ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ପହିଲି ଭୋଗ ସମୟରେ ଓ ଯେଉଁସବୁ ଭୋଗ ରାତ୍ରରେ ହୁଏ, ଏହି ସେବକ ଦୈନିକ ଘିଅ ନେଇ ଦୀପ ଜାଳି ସେହିସବୁ ପ୍ରତ୍ୟେକ ଭୋଗ ଛେକ ଆଗରେ ଦୀପ ଧରି ଧୁକୁଡ଼ି ଦ୍ୱାର ପର୍ଯ୍ୟନ୍ତ ଯାଇଥାଏ । ସେବା ତ୍ରୁଟି କଲେ ଖେଇ ବନ୍ଦ ହେବ ଓ ଅନ୍ୟ ସୂପକାର ଓ ସେବାରେ ନିଯୁକ୍ତ ହୋଇପାରିବ । ହାଣ୍ଡି ଯୋଗାଣିଆ ମଧ୍ୟ ତୋଳାବତୀ ସେବା କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୩୨) ।

**ତୋଳାବଡୁ ସେବକ**-*ଦେ.ବି.*- ମୁହଁରେ ତୁଣ୍ଡି ବାନ୍ଧି ଅମୁଣିହା ତୋଳିଛେକରେ ନେଉଥିବା ସୁଆର ସେବକ । ଗୁଣ୍ଡିଚା ଘରେ ମଧ୍ୟ ସେବା କରିଥାନ୍ତି । ଏହି ତୁଣ୍ଡି ଏକ ଗାମୁଛା । ଏହାକୁ ମୁହଁରେ ଗୁଡ଼ାଇ ଦିଆଯାଏ । ଏହି ତୁଣ୍ଡିକୁ ବାଘମୁଖା କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬) ।

# ଥ

**ଥକା**-*ଦେ.ବି.*- ଦେଉଳର ଦଧି ନଉତି ଓ ଚକ୍ରର ମଧ୍ୟବର୍ତ୍ତୀ ସ୍ଥାନ । ହାଲିଆ ବା କ୍ଲାନ୍ତ । ଶ୍ରୀଜଗନ୍ନାଥଙ୍କର ଦର୍ଶନରେ ଥକା ମନ ଚଳଚଞ୍ଚଳ ହୋଇଉଠେ ।
(ପୂ.ଓ.ଭା. - ପୃ. ୩୬୭୦) ।

**ଥଣ୍ଟ**-*ଦେ.ବି.*- ପକ୍ଷୀର ପାଟି ବା ଚଞ୍ଚୁ । ମହାପ୍ରଭୁଙ୍କୁ ରତ୍ନବେଦୀରେ ରୁନ୍ଧାରେ ବ୍ୟବହୃତ ରଜ୍ଜୁରେ ଲାଗିଥିବା ଶୁଆଥଣ୍ଟିଆ ।

**ଥରା**-*ଦେ.କ୍ରି.ବି.*- ଥରିବା, କମ୍ପିବା

**ଥଳା**-*ଦେ.ବି.*- ଥାଳି; ଚତୁଆ ପୂଜା ଉପାସନା ପାଇଁ ବ୍ୟବହୃତ ହେଉଥିବା ଥାଳି ।
(ପୂ.ଓ.ଭା. - ପୃ. ୩୬୦୯) ।

**ଥାଟ**-*ଦେ.ବି.*- ପ୍ରତିମାର ମେଢ଼ ବାହ୍ୟ ଆଡ଼ମ୍ବର । ବିଗ୍ରହମାନଙ୍କ ଶୋଭାଯାତ୍ରା ପାଇଁ ବ୍ୟବହୃତ ଏକ ଥାଳି ।
(ଓ.ସାଂ.ଶ. - ପୃ. ୧୬୮) ।

**ଥାଟରାଜା**- ରାଜାଙ୍କ ସାନଭାଇ ।
(ପୂ.ଓ.ଭା. - ପୃ. ୩୬୧୧) ।

**ଥାନପତି**-*ଦେ.ବି.*- ସ୍ଥାୟୀ ବାସିନ୍ଦା, ମଠାଧୀଶ, ମଠ ଅଧୀନସ୍ଥ ଗ୍ରାମର ଶାସକ, କର୍ମଚାରୀ ।
(ପୂ.ଓ.ଭା. - ପୃ. ୩୬୧୧) ।

**ଥାପନ**-*ଦେ.ବି.*- (ସଂ-ସ୍ଥାପନ) ସ୍ଥାପନ କରିବା, ପ୍ରତିଷ୍ଠା, ବସାଇବା ବା ରଖିବା ।
(ପୂ.ଓ.ଭା. - ପୃ. ୩୬୧୩) ।

**ଥାଳି ଖେଚୁଡ଼ି**-*ପ୍ରା.ବି.*- ଶ୍ରୀମନ୍ଦିରରେ ଥାଳିରେ ବଢ଼ାଯାଇ ଜଗନ୍ନାଥ ମହାପ୍ରଭୁଙ୍କୁ ସକାଳେ ଭୋଗ କରାଯିବା ଖେଚୁଡ଼ି ।
(ପୂ.ଓ.ଭା. - ପୃ. ୩୬୧୪) ।

**ଥୁ**-*ଦେ.କ୍ରି.ବି.*- ଛେପ ପକାଇବା ଶବ୍ଦ । ସାହାଣମେଲା ସମୟରେ ଶ୍ରୀମନ୍ଦିର ମଧରେ ପ୍ରବେଶ କରି ଶ୍ରୀଜୀଉଙ୍କ ଦର୍ଶନାର୍ଥେ ଥୁକ ପକାଇବା ମନା । ଥୁକ ପକାଇଲେ ସ୍ଥାନ ଅପବିତ୍ର ହୁଏ । ଏଣୁ ମହାସ୍ନାନ ହେଲା ପରେ ଠାକୁରଙ୍କ ନୀତିକାନ୍ତି ହୁଏ । ଏଣୁ ଥୁକ ପକାଇବା ନିଷେଧ ଓ ପକାଇବା ଲୋକକୁ ଜୋରିମାନା ଦେବାକୁ ପଡ଼େ ।
(ଶ୍ରୀ.ସ୍ୱ. - ପୃ. ୧୪) ।

**ଥୁଣ୍ଟା**-*ଦେ.ବି.*- ଶୋଭା ଓ କାର୍ଯ୍ୟ କରିବା ଶକ୍ତି ରହିତ ଯେପରି ଥୁଣ୍ଟା ଗଛ । ଥୁଣ୍ଟା କଲମ ।

**ଥୁତ୍କାର**-*ଦେ.ବି.*- ଥୁ ଥୁ କରିବା । ଧିକ୍କାର ବାଣୀ ।

**ଥୈ ଥୈ**-*ଦେ.ବି.*- ନୃତ୍ୟର ତାଳ ବିଶେଷ । ଯାହାକୁ ପୁରୀ ମନ୍ଦିରରେ ଦେବଦାସୀମାନେ ଅନୁସରଣ କରୁଥିଲେ ।

**ଥୋକାଏ**-*ଦେ.ବି.*- ପରିମାଣାତ୍ମକ ଅର୍ଥରେ ଅଳ୍ପ ସଂଖ୍ୟକ ।
(ପୂ.ଓ.ଭା. - ପୃ. ୩୬୨୧) ।



# ଦ

**ଦଅଣାମାଳ**-*ଦେ.ବି.*- ଏକ ସୁଗନ୍ଧ ପତ୍ରଯୁକ୍ତ ମାଳ । ଦଅଣା ବା ଦୟଣା ଏକ ପ୍ରକାର ବୃକ୍ଷ । ତାର ପୁଷ୍ପ ପତ୍ରର ମାଳ ଶ୍ରୀଜୀଉଙ୍କର ଅତ୍ୟନ୍ତ ପ୍ରିୟ । ଶ୍ରୀମନ୍ଦିରର ବିଶେଷ ନୀତିରେ ଦୟଣାମାଳ ଲାଗି ହୁଏ ।

(ଶ୍ରୀ.ସ୍ୱ. - ପୃ. ୧୧୪ ) ।

**ଦଅଣାମାଳି**-*ସଂ.ବି.*- ଶ୍ରୀମନ୍ଦିରରେ ଦୈନିକ ଅବକାଶ ପୂଜାକୁ ସୁବାସ ଫୁଲ ଓ ତୁଳସୀ ଯୋଗାଉଥିବା ସେବକ । ଏହି ସେବକମାନେ ଠାକୁରଙ୍କୁ ଫୁଲ ଦେଉଥିବାରୁ ମନ୍ଦିର ବେଢ଼ାରେ ଏମାନଙ୍କ ବ୍ୟତୀତ ଅନ୍ୟମାଳି ଫୁଲ ବିକ୍ରି କରିପାରିବେ ନାହିଁ । ଏମାନେ ଶାଢ଼ି ବନ୍ଧାଇ ସେବା କଲେ ବିନା ଲାଇସେନ୍ସରେ ଫୁଲ ବିକ୍ରି କରିପାରିବେ । ଶାଢ଼ି ବାନ୍ଧିଲେ ଭିତର କାଠ ପାଖରେ ଫୁଲ ବିକିପାରିବେ । ତିନି ଧୂପ ପାଇଁ ଫୁଲ ତୁଳସୀ ଯୋଗାନ୍ତି । ରାତ୍ର ପହୁଡ଼ରେ ପୁଷ୍ପାଞ୍ଜଳି ଠାକୁରଙ୍କ ସକାଶେ ମାଳ ଓ ପୁଷ୍ପାଞ୍ଜଳି ସକାଶେ ସୁବାସ ଫୁଲ, ଲକ୍ଷ୍ମୀଙ୍କ ମନ୍ଦିରରେ ଭୋଗ ସକାଶେ ଫୁଲ, ଦୈନିକ ଶ୍ରୀ ବିମଳାଙ୍କ ମାଜଣାରେ ଓ ସନ୍ଧ୍ୟାରେ ଦୁଇ ଖଣ୍ଡ ମାଳ ଦେଇଥାନ୍ତି । ପ୍ରତ୍ୟେକ ମହାଦେବଙ୍କୁ ବେଲପତ୍ର ଓ ଫୁଲ ଦିଅନ୍ତି । ପର୍ବପର୍ବାଣିମାନଙ୍କରେ ଧଣ୍ଡି ପ୍ରସାଦ ଲାଗିଲେ ଧଣ୍ଡି ତିଆରି କରିଦିଅନ୍ତି । ପ୍ରତ୍ୟେକ ମଙ୍ଗଳାର୍ପଣକୁ ଶୁକ୍ଲ ଫୁଲ ଓ ଦୁବ ଦିଅନ୍ତି । ପ୍ରତ୍ୟେକ ବିଜେରେ ଆଞ୍ଜୁଳି ସକାଶେ ଶୁକ୍ଲ ଫୁଲ ଯୋଗାଇଥାନ୍ତି । ଅଣସର ପିଣ୍ଡିରେ, ରଥଉପରେ ଓ ଗୁଣ୍ଡିଚାଘର ସିଂହାସନଉପରେ ମାଳଚୂଳ ଲାଗି ପାଇଁ ଦଇତାପତିଙ୍କ ଜିମା ଦିଅନ୍ତି । ପ୍ରତ୍ୟେକ ସୁଦର୍ଶନ ବିଜେରେ, ଗହ୍ମା ପୂର୍ଣ୍ଣିମା, କୁମାର ପୂର୍ଣ୍ଣିମା ଓ ରାଧାଷ୍ଟମୀରେ ଚୂଳ ଓ କିରିଟି, ପୁଷ୍ୟାଭିଷେକ ଦିନ ଫୁଲର ଦଶାୟୁଧ ଓ ଅଞ୍ଜୁଳି ସକାଶେ ଶୁକ୍ଲ ଫୁଲ ଦିଅନ୍ତି । ଦମନକ ଚତୁର୍ଦ୍ଦଶୀ ଦିନ ଦୟଣାଚୋରି କରି ଜଗନ୍ନାଥ ବଲ୍ଲଭ ମଠର ଦୟଣାଗଛ ଉପାଡନ୍ତି । ବିମଳାଙ୍କ ଷୋଳ ପୂଜାରେ ପ୍ରତ୍ୟେହ ବିମଳାଙ୍କୁ ଫୁଲ, ଦୁବ, ବେଲପତ୍ର ଦିଅନ୍ତି । ଦେବୀ ପୂଜାରେ ବିମଳା, ଉତ୍ତରାୟଣୀ, ଭୁବନେଶ୍ୱରୀ ଓ ମଙ୍ଗଳାଙ୍କୁ ଫୁଲ ଦିଅନ୍ତି । ଯେତେ ଧଣ୍ଡି ପ୍ରସାଦ ଲାଗେ, ଧଣ୍ଡି ତିଆରି କରନ୍ତି । ଶିବ ବିବାହରେ ଲୋକନାଥଙ୍କୁ ଫୁଲ ଧଣ୍ଡି, ବେଲପତ୍ର ଓ ଷୋଳପ୍ରଭା ତିଆରି କରିଦିଅନ୍ତି । ଗଜପତି ରାଜା ମନ୍ଦିରକୁ ବିଜେ କଲେ ଆଞ୍ଜୁଳି ପାଇଁ ଫୁଲ, ରଥ ଉପରେ, ସ୍ନାନବେଦୀରେ ଓ ଛେରାପହଁରାରେ ଆଞ୍ଜୁଳି ପାଇଁ ଶୁକ୍ଲ ଫୁଲ ଦିଅନ୍ତି । ରୁକ୍ମିଣୀ ବିବାହ ଚତୁର୍ଥୀ କର୍ମକୁ ଫୁଲ, ତୁଳସୀ ଓ କାଠି ମୁକୁଟ ଦିଅନ୍ତି । ବିବାହ ଦିନ ଶୋଲ ମୁକୁଟ ଦିଅନ୍ତି । ସ୍ନାନ ପୂର୍ଣ୍ଣିମା ପୂର୍ବରୁ ସୁନା କୂଅ ଉଝାଳି ପରିଷ୍କାର କରନ୍ତି । ରାଜେନ୍ଦ୍ରାଭିଷେକ ଦିନ ବେଢ଼ା କରି ଆସିଲେ କୁତକଉତୁକ ଋଷିଙ୍କ ଆଞ୍ଜୁଳି ସକାଶେ ଶୁକ୍ଲ ଫୁଲ ଦିଅନ୍ତି । ଜନ୍ମ ନୀତି ପାଇଁ ଧଣ୍ଡି ତିଆରି କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୫୨/୫୩) ।

**ଦଅଣାଚୋରି**-*ଦେ.ବି.*- ଦମନକ ଚୋରି । ଚୈତ୍ର ଶୁକ୍ଲପକ୍ଷରେ ଅନୁଷ୍ଠିତ ବିଷ୍ଣୁଙ୍କର 'ଦମନକ ଚତୁର୍ଦ୍ଦଶୀ ଯାତ୍ରା' । ପୁରାଣ ଅନୁସାରେ ଦମନକ ନାମକ ଜଣେ ଦୈତ୍ୟ ସମୁଦ୍ର ମଧ୍ୟରେ ବିଚରଣ କରି ଲୋକଙ୍କୁ ବଡ଼ କଷ୍ଟ ଦେଉଥିଲା । ଶ୍ରୀଭଗବାନ ମତ୍ସ୍ୟରୂପ ଧରି ଦୈତ୍ୟକୁ କୂଳକୁ ଟାଣି ଆଣି ସଂହାର କରିଥିଲେ । ସେଠାରେ ସୁଗନ୍ଧି ତୃଣ ଜାତ ହେଲା । ତହୁଁ ଭଗବାନ ସେହି ତୃଣକୁ ବନମାଳା ସହିତ ଧାରଣ କରିଥିଲେ ।

ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଉକ୍ତ ଦୈତ୍ୟ ନିହତ ହୋଇଥିବାରୁ ଉକ୍ତ ଚତୁର୍ଦ୍ଦଶୀ ଦମନକ ଚତୁର୍ଦ୍ଦଶୀ ବୋଲି ଖ୍ୟାତ । ଏହିଦିନ ଭକ୍ତମାନେ ଉକ୍ତ ତୃଣକୁ ଭଗବାନଙ୍କ ମସ୍ତକରେ ଅର୍ପଣ କରନ୍ତି । ଶ୍ରୀଜଗନ୍ନାଥଙ୍କ ପାଖରେ ଏହି ଯାତ୍ରା ଅନୁଷ୍ଠିତ ହୁଏ । ଶ୍ରୀକୃଷ୍ଣ ବଳରାମଙ୍କ ସହିତ ମଥୁରା ବିଜୟ କରିଥିବା ସମୟରେ କଂସର ଉଦ୍ୟାନରେ ପଶି ଦମନକ ବା ଦଅଣା ଗଛ ଚୋରି କରିଥିବା ଉପାଖ୍ୟାନର ସ୍ମାରକ ସ୍ୱରୂପ ଏହି ଯାତ୍ରା କରାଯାଏ ଓ ସେଥିପାଇଁ ନାଗଦଅଣାକୁ ଚୋରି ଦଅଣା ବୋଲାଯାଏ । ଚାଙ୍ଗୁଡ଼ି ଦୟଣା ଗଛମାନ ଓ ଶ୍ରୀଅଙ୍ଗରେ ଲାଗି ହୋଇଥିବା ଦୟଣା ଗଛମାନ ମଇଲମ କରାଇ ଶ୍ରୀଜଗନ୍ନାଥ, ବଡ଼ଠାକୁର ଓ ସୁଭଦ୍ରାଙ୍କୁ ଉକ୍ତ ଛଅ ଗଛ ଲାଗି କରାଯାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୫, ପୂ.ଓ.ଭା. - ପୃ. ୩୬୨୬) ।

**ଦଅଣାନାକୁଆସି**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଶ୍ରୀମୁଖ ଚିତା ପାଖରୁ ନାସାଗ୍ର ପର୍ଯ୍ୟନ୍ତ ଲମ୍ବିଥିବା ପୁଷ୍ପଝୁମ୍ପା ।

**ଦଇତା ସେବା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଉପାସନା ସହ ଜଡ଼ିତ ମୁଖ୍ୟ ସେବକ । ଶବର ବଂଶାବଳୀରେ ବାରଘରିଆ ଶବରଙ୍କ ଏକ ଶାଖା । ଏମାନେ ପୁରୁଷୋତ୍ତମ କ୍ଷେତ୍ରରେ ରୁହନ୍ତି ଓ ଶ୍ରୀଜୀଉଙ୍କ ସେବାରେ ନିଜକୁ ନିୟୋଜିତ କରନ୍ତି । ନବକଳେବର, ସ୍ନାନଯାତ୍ରା, ରଥଯାତ୍ରା ଓ ଅଣସର ପ୍ରଭୃତି ବିଶେଷ ଯାତ୍ରା ବା ନୀତିରେ ଏମାନେ କାର୍ଯ୍ୟ କରନ୍ତି । ଶ୍ରୀଜଗନ୍ନାଥଙ୍କୁ ସିଂହାସନରୁ ନେଇ ରଥରେ ବିଜେ କରାଇବା ଓ ବାହୁଡ଼ାଇ ଆଣିବା କାର୍ଯ୍ୟ ମଧ୍ୟ ଏମାନେ କରନ୍ତି । ମହାପ୍ରଭୁଙ୍କର ଅଣସର ସମୟରେ ପ୍ରଭୁଙ୍କର ବିଶେଷ ସେବା ଏମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । 'ବିଶ୍ୱାବସୁ ନାମକ ଯେଉଁ ଶବର ଶ୍ରୀଜଗନ୍ନାଥଙ୍କୁ ପ୍ରଥମେ ପୂଜା କରୁଥିଲେ ଏବଂ ରାଜା ଇନ୍ଦ୍ରଦ୍ୟୁମ୍ନ ତାହାଙ୍କଠାରୁ ଶ୍ରୀଜଗନ୍ନାଥଙ୍କୁ ଶ୍ରୀକ୍ଷେତ୍ରକୁ ଆଣିଥିଲେ, ଏମାନେ ତାହାଙ୍କ ବଂଶଧର ବୋଲି କଥିତ ।'

(ଶ୍ରୀ.ସ୍ୱ. ୧ମ - ପୃ. ୧୭୮, ଓ.ସାଂ.ଶ. - ପୃ. ୧୬୮, ପୂ.ଓ.ଭା. - ପୃ. ୩୬୨୬) ।

**ଦଉଡ଼ିବଳା ସେବକ**-*ଦେ.ବି.*- ଶ୍ରୀମନ୍ଦିର ପରିସର ବିମଳାଙ୍କ କୂଅରୁ ପାଣି କାଢ଼ିବା ପାଇଁ ଦଉଡ଼ି ବୋଳି ବା ତିଆରି କରି ଯୋଗାଉଥିବା ସେବକ ।

(ଶ୍ରୀ.ସ୍ୱ. ୨ୟ - ପୃ. ୫୮) ।

**ଦଣ୍ଡଛତ୍ର**-*ଦେ.ବି.*- ରୂପା ନିର୍ମିତ ଲମ୍ବ ଦଣ୍ଡଯୁକ୍ତ ରାଜକୀୟ ଛତ୍ର । ଏହା ଠାକୁରଙ୍କ ଦଣ୍ଡଛତ୍ର ନୀତିରେ ବ୍ୟବହୃତ ହୁଏ ।

(ଓ.ସାଂ.ଶ. - ପୃ. ୧୬୯, କ୍ର.ବି.ଓ.ଶ. ୧ମ - ପୃ. ୪୪୦) ।

**ଦଣ୍ଡଛତ୍ର ନୀତି**-*ସଂ.ବି.*- ଏକାଦଶୀ ନୀତି ବେଳେ ଭିତରଛ ମହାପାତ୍ର ଛତାରୁଆଙ୍କଠାରୁ ରୂପା ଛତି ନେଇ ସିଂହାସନ ଉପରେ ଠିଆ ହୋଇ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଦଣ୍ଡଛତ୍ର ନୀତି ବଢ଼ାନ୍ତି ।

(ଶ୍ରୀ.ସ୍ୱ. ୨ୟ- ପୃ. ୧୦୫/୪୨) ।

**ଦଣ୍ଡପାହାଡ଼ା**-*ଦେ.ବି.*- ରତ୍ନପଲଙ୍କଠାରୁ ଅଣସର ପିଣ୍ଡି ପର୍ଯ୍ୟନ୍ତ ପ୍ରସାରିତ ଶୀତଦିନିଆ ବସ୍ତ୍ର ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୪୭/୧୬୦, ପୂ.ବେ- ପୃ. ୨୧୪) ।

**ଦଣ୍ଡମୁଣ୍ଡ ସେବା**-*ଦେ.ବି.*- ଶ୍ରୀଗୁଣ୍ଡିଚା ଯାତ୍ରାରେ ଶ୍ରୀଜଗନ୍ନାଥ ମହାପ୍ରଭୁ ମା' ଲକ୍ଷ୍ମୀ ଠାକୁରାଣୀଙ୍କୁ ରଥରେ ନ ନେଇ ବଡ଼ଠାକୁର ଶ୍ରୀବଳଭଦ୍ର ଓ ଭଉଣୀ ସୁଭଦ୍ରାଙ୍କୁ ସାଥୀରେ ନେଇଥାନ୍ତି । ମାତ୍ର ରଥଯାତ୍ରାର ପାଞ୍ଚଦିନ ମଧ୍ୟରେ ପ୍ରତ୍ୟାବର୍ତ୍ତନ କରିବେ ବୋଲି କଥା ଦେଇ ଯଥା ସମୟରେ ନ ଫେରିବାରୁ ମା' ଲକ୍ଷ୍ମୀ ଠାକୁରାଣୀ କ୍ରୋଧାନ୍ୱିତା ହୋଇ ହେରାପଞ୍ଚମୀ ଦିନ ବା ଆଷାଢ଼ ଶୁକ୍ଳ ଷଷ୍ଠୀ ଦିବସରେ ଏକ ସୁସଜ୍ଜିତ ବିମାନରେ ବିଜେ କରି ଗୁଣ୍ଡିଚା ମନ୍ଦିରରେ ପହଞ୍ଚି ନନ୍ଦିଘୋଷ ରଥରୁ କିଛି ଅଂଶ ଭାଙ୍ଗି ହେରାଗୋହିରୀ ସାହି ବାଟଦେଇ ଶ୍ରୀମନ୍ଦିରକୁ

ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଠାକୁରଙ୍କ ଅଙ୍ଗ ଲାଗି ସେବକଙ୍କୁ ଦଣ୍ଡଦେଇ ମଧ୍ୟରାତ୍ରରେ ହେରାଗୋହିରୀ ସାହିରେ ବିଭିନ୍ନ ପନ୍ତୀ ଭୋଗ ଗ୍ରହଣ କରି ମନ୍ଦିରକୁ ଫେରନ୍ତି । ଏହାକୁ ଦଣ୍ଡମୁଣ୍ଡ ସେବା କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୩, ଶ୍ରୀ.ଜି. - ପୃ. ୨୬୧) ।

**ଦଣ୍ଡିଆ**-*ଦେ. ବି.*- ଶ୍ରୀବିମଳାଙ୍କ କୂପରୁ ପାଣି କାଢ଼ିବା ନିମନ୍ତେ ଦଉଡ଼ି ଯୋଗାଉଥିବା ସେବକ ।
(ଶ୍ରୀ.ସ୍ୱ. ୫ମ- ପୃ. ୫୮) ।

**ଦତ୍ତ ମହାପାତ୍ର**-*ଦେ. ବି.*- ଶ୍ରୀମୁଖ ସିଂହାର ବା ଶ୍ରୀମୁଖ ଚିତ୍ରଣ କରୁଥିବା ଭିତର ବନକ ସେବକ । କର୍ମାଙ୍ଗୀରେ ଦତ୍ତ ଖଟଣି ନିଯୋଗ ଓ ଦତ୍ତ ନିଯୋଗ, ଏହିଭଳି ଦୁଇଟି ଦତ୍ତଗୋଷ୍ଠୀ ସମ୍ପର୍କରେ ଉଲ୍ଲେଖ ଅଛି । ଏମାନେ ପ୍ରତି ରବିବାର ଦିନ ଅବକାଶ ପୂଜା ପୂର୍ବରୁ କର୍ପୂର ଜଳ ଓ କନା ନେଇ ତିନି ଠାକୁର ଓ ନୀଳମାଧବଙ୍କ ଶ୍ରୀମୁଖ ପୋଛନ୍ତି । ପ୍ରତି ଗୁରୁବାରରେ ଭିଡ଼ଥିଲେ ବୁଧବାରେ ଅଧରପୋଛା କରି ହରିତାଳ, ହେଙ୍ଗୁଳ କସ୍ତୁରୀ କେଶର ଇତ୍ୟାଦି ସମସ୍ତ ଉପକରଣ ନେଇ ଶ୍ରୀମୁଖମାନଙ୍କରେ ବନକଲାଗି କରନ୍ତି । ଅଣସରରେ ଖଡ଼ି ପ୍ରସାଦ ଲାଗି ସହିତ ତ୍ରୟୋଦଶୀ ରାତ୍ର ବଡ଼ସିଂହାର ପରେ ବନକଲାଗି କରି ସେହି ଦିନଠାରୁ ନେତ୍ରୋତ୍ସବ ପର୍ଯ୍ୟନ୍ତ ପୁରା ବନକଲାଗି କରିବେ ଓ ନେତ୍ରୋତ୍ସବ ଦିନ ନେତ୍ର ବନକଲାଗି କରନ୍ତି । ଘଣ୍ଟ, ଛତା, କାହାଳୀ ସହ ଖଡ଼ି ଏହାଙ୍କ ଘରଠାରୁ ବିଜେ ହୋଇ ଆସେ । ଦଇତାଙ୍କ ପରି ସ୍ନାନପୂର୍ଣ୍ଣିମାଠାରୁ ନେତ୍ରୋତ୍ସବ ଯାଏ ଲୁଗା ଧୋବା ଘରେ ଦେଇପାରିବେ ନାହିଁ । ଅଣସର ସମୟରେ ବନକଲାଗି ପାଇଁ ବନକ ଘରେ ରଙ୍ଗ ତିଆରି କରି ରଖନ୍ତି, ହେଙ୍ଗୁଳା କସ୍ତୁରୀ ଇତ୍ୟାଦି ବନକ ଘରେ ବାଟନ୍ତି । ମହା ଅଣସରରେ ମଧ୍ୟ ଏହିପରି କରନ୍ତି । ଖଡ଼ି ପ୍ରସାଦ ନଅରକୁ ନିଅନ୍ତି । ଅଧରପୋଛା ଡାଟ ଓ ବନକଲାଗି ଡାଟ ନିଅନ୍ତି । ଏମାନେ ଦଇତା ଗୋଷ୍ଠୀ ସେବକ, ବନକ କାମ ଜାଣି ସେବା କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୦-୯୨) ।

**ଦଧିଅନ୍ନ**-*ସଂ. ବି.*- ଶ୍ରୀବିଗ୍ରହଙ୍କ ନିକଟରେ ବିଶେଷ ପୂଜା ଅବସରରେ ଦହି ସହ ମିଶ୍ରିତ ଅରୁଆ ଅନ୍ନ । ବିଭିନ୍ନ ପର୍ବପର୍ବାଣିରେ ବିଗ୍ରହଙ୍କ ପାଖରେ ଲାଗି ହୁଏ ।
(କ୍ଷେ.ସ.) ।

**ଦଧିବାମନ**-*ଦେ. ବି.*- ଶ୍ରୀଜଗନ୍ନାଥଙ୍କର ଏକକ ମୂର୍ତ୍ତି । ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଦଧିବାମନଙ୍କର ଚକ୍ଷୁ ଓ ଭୁଜ ଶ୍ରୀଜଗନ୍ନାଥଙ୍କ ଚକ୍ଷୁ ଓ ଭୁଜଠାରୁ ସାମାନ୍ୟ ଭିନ୍ନ । ଶ୍ରୀଜଗନ୍ନାଥଙ୍କ ବେଢ଼ା ମଧ୍ୟରେ ଏକ ମନ୍ଦିର ବିଦ୍ୟମାନ ଯହିଁରେ ଦଧିବାମନ ମୂର୍ତ୍ତି ପୂଜା ପାଆନ୍ତି । ଶ୍ରୀଜଗନ୍ନାଥଙ୍କ ରୀତିନୀତି ପରି ଏଠାରେ ପୂଜା ନୀତି ପ୍ରଚଳିତ । ଏହି ବିଗ୍ରହ ଉଦୟପୁର ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ବୋଲି ସ୍ୱତ୍ୱଲିପିରେ ବର୍ଣ୍ଣିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨୦) ।

**ଦଧିନଉତି**-*ଦେ. ବି.*- ମନ୍ଦିରର ଉପର ସ୍ଥାନ ଯେଉଁଠି ବଡ଼ ପଥର ଖଣ୍ଡ ଦ୍ୱାରା ମନ୍ଦିରର ଉର୍ଦ୍ଧ୍ୱ ଭାଗ ଅବରୁଦ୍ଧ କରାଯାଏ । ଶ୍ରୀମନ୍ଦିରର ଦଧିନଉତିରେ ତିନିଶତ ସ୍ୱର୍ଣ୍ଣମୁଦ୍ରା, ଚଉଦ ହୀରା ପଥର, ସାତ ନୀଳା ପଥର ଓ ଦଶ ମାଣିକ ପଥର ପୂରାଯାଇ ମୁଦ କରାଯାଇଥିଲା ।
(ପ୍ର.ଅ. - ପୃ. ୧୧୮୪, କ୍ଷ.ବି.ଓ.ଶ. ସ.ପ୍ର.ଭା. - ପୃ. ୪୪୯, ପୂ.ଓ.ଭା. - ପୃ. ୩୭୦୦) ।

**ଦର୍ପଣ**-*ସଂ. ବି.*- ପ୍ରଭୁ ଜଗନ୍ନାଥଙ୍କ ସ୍ନାନବିଧି ସମ୍ପାଦନ ସମୟରେ ବ୍ୟବହୃତ କାଂଶ ନିର୍ମିତ ଦଣ୍ଡଯୁକ୍ତ ଦର୍ପଣ । ଅବକାଶ ପରେ କର୍ପୂର, ଦହି, ଅଁଳା ଓ ଚନ୍ଦନ ମିଶ୍ରିତ ଜଳ ଦର୍ପଣମାନଙ୍କ ଉପରେ ଢାଳି ଠାକୁରଙ୍କର ପ୍ରତିବିମ୍ବ ସ୍ନାନ କରାଯାଏ । ଦର୍ପଣିଆ ସେ ଦର୍ପଣ ଯୋଗାଇଥାଏ । ପ୍ରତ୍ୟେକ ଧୂପରେ ମଧ୍ୟ ଏହାର ଆବଶ୍ୟକତା ରହିଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ଦର୍ପଣିଆ**-*ଦେ. ବି.*- ଅବକାଶ ନୀତି ସମୟରେ ବିଗ୍ରହମାନଙ୍କର ସ୍ନାନ ବେଳେ ସାମ୍ନାରେ ଦର୍ପଣ ଧରନ୍ତି ଓ ବାସନ ସଫା କରନ୍ତି । ଆବଶ୍ୟକ ସମୟରେ ପୂର୍ଣ୍ଣକୁମ୍ଭ ବସାନ୍ତି ।

ଗୁଣ୍ଡିଚାରେ ବିଜେ ଓ ବାହୁଡ଼ାରେ ମୁଣ୍ଡରେ ପୂର୍ଣ୍ଣକୁମ୍ଭ ବସାଇ ଚାଲନ୍ତି । ଦୈନିକ ବାସନ ଓ ପୂଜା ସାମଗ୍ରୀ ସଫା କରନ୍ତି । ରନ୍ଧ ମଣ୍ଡପ, ସ୍ନାନ ମଣ୍ଡପ, ଆଡପ ମଣ୍ଡପରେ ଠାକୁରଙ୍କ ରୁନ୍ଧିବା ଏବଂ ଗୁନ୍ଧା ଖୋଲିବା କାର୍ଯ୍ୟ ସମ୍ପନ୍ନ କରନ୍ତି । ନବକଳେବର ସମୟରେ ଦାରୁ ବିଗ୍ରହଙ୍କୁ ପାତାଳି କରିବାରେ ଦଇତାମାନଙ୍କୁ ସ୍ନାନ ପାଇଁ ରାଶି ତେଲ ଯୋଗାଇବା ଓ ସ୍ନାନ ପରେ ସିଂହଦ୍ୱାର ଗୁମୁଟ ମଧ୍ୟରେ ହଳଦୀ ପାଣି ଓ ମହାପ୍ରସାଦ ଆଦି ଯୋଗାଇବା କାର୍ଯ୍ୟ କରିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ଦର୍ପଦଳନ ରଥ**-*ଦେ.ବି.*- ସୁଭଦ୍ରାଙ୍କ ରଥ ଦର୍ପଦଳନ ଦେବତାଙ୍କ ପ୍ରଦତ୍ତ । ଏହାର ଉଚ୍ଚତା ୩୧ ହାତ । ୫୯୩ ଖଣ୍ଡ କାଷ୍ଠରେ ନିର୍ମିତ । ୧୨ଟି ଚକ । ଏହାର ରକ୍ଷକ ଜୟଦୁର୍ଗା । ଧ୍ୱଜାରେ ତ୍ରିପୁରା ସୁନ୍ଦରୀ ବିରାଜମାନା । ଆୟୁଧ- ପଦ୍ମକହ୍ଲାର । ରଥର ଆବରଣ କୃଷ୍ଣଲୋହିତ । ରଥ ଶିରର ଦେବତା ହେଲେ ଭକ୍ତିର୍ସମେଧ । ଚାମର ସେବା କରନ୍ତି ସୁମେଧା ଦେବୀ । ଏ ରଥର ପାର୍ଶ୍ୱ ଦେବତାମାନେ ହେଲେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡିକା, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟଦୁର୍ଗା ଓ କାଳୀ । ସାରଥୀଙ୍କ ନାମ ଅର୍ଜ୍ଜୁନ । ଉଗ୍ରଚଣ୍ଡୀ ଏ ରଥକୁ ରକ୍ଷା କରନ୍ତି । ଏ ରଥର ୪ଟି ଅଶ୍ୱ ହେଲେ ରୋଚିକା, ମୋଚିକା, ଜିତା ଓ ଅପରାଜିତା । ସ୍ୱର୍ଣ୍ଣଚୂଡ଼ ନାମକ ନାଗ ଏ ରଥର ରଜ୍ଜୁ ହୋଇଛନ୍ତି । ରଥର ମୁଖ ହେଲା ବ୍ରହ୍ମବର୍ତ୍ତା । ରଥର ଦେବୀ ଶ୍ରୀ, ଭୂ । ଏହାର ଗନ୍ଧର୍ବଙ୍କ ନାମ ହା ହା - ରଥଚାରଣଙ୍କ ନାମ ମହାକର । ଯକ୍ଷଙ୍କ ନାମ ହେଉଛି - କିଙ୍କିଳିକା । ରଥଗର୍ଭର ଅଧିଶ୍ୱରୀ ହେଲେ - ଶକ୍ତି ଶପ୍ତା, ଜୟା, ବିଜୟା, ଘୋରା, ଅଘୋରା, ସୂକ୍ଷ୍ମା, ଜ୍ଞାନୀ । ଋଷିପଟାରେ ଭୃଗୁ, ସୁପ୍ରଭ, ବଜ୍ର, ଶୃଙ୍ଗୀ, ଧ୍ରୁବ, ଉଲ୍ଲୁକ ନାମ ଛ'ଜଣ ଋଷି ବିରାଜମାନ କରନ୍ତି । ରଥକୁମ୍ଭର ନାମ ଅମୃତା, ଜୀବା, କାୟା ହ୍ରୀଂ ବୀଜ । ଦ୍ୱାଦଶ ବରଣ ଭୁବନେଶ୍ୱରୀ, ଚକ୍ର, ଗଙ୍ଗା, ଯମୁନା, ଦ୍ୱାରପାଳିକା । ନେତର ନାମ ନାଦାମ୍ବିକା । ଓଲଟ ଶୁଆ ହେଲା ଶ୍ରୁତି ଓ ସ୍ମୃତି । (ଉ.ପ୍ର. ଜୁଲାଇ, ୧୯୯୯ - ପୃ. ୪୮) ।

**ଦମନକଲାଗି**-*ସଂ.ବି.*- ଶ୍ରୀମନ୍ଦିରରେ ଏହି ପର୍ବ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ଅନୁଷ୍ଠିତ ହୁଏ । ଏହିଦିନ ଚାଙ୍ଗୁଡ଼ିରେ ଦୟଣାଗଛ ଶ୍ରୀଅଙ୍ଗରେ ଲାଗି ଓ ମଇଳମ କରାଇ ଶ୍ରୀଜଗନ୍ନାଥ ଓ ସୁଭଦ୍ରାଙ୍କୁ ଛଅ ଗଛ ଲାଗି କରାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୫) ।

**ଦୟଣାପତ୍ରୀ ସେବକ**-*ଦେ.ବି.*- ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଦୟଣାଚୋରୀ ଓ ମଦନକୋତ୍ସବ ନୀତି ସମ୍ପୃକ୍ତ ପତ୍ରିସେବକ । ଦୟଣାଚୋରୀ ଦିନ ଶ୍ରୀଜଗନ୍ନାଥ ମଠକୁ ବିଜେ ସମୟରେ ଏହି ସେବକ ଚାଙ୍ଗଡ଼ା ଘରୁ ତିନି ଖଣ୍ଡି ପତନି ଧରି ସାଙ୍ଗରେ ଯାଆନ୍ତି । ଦୟଣା ଲାଗିରେ ପ୍ରମୁଖ ସେବକ ସେବାକାର୍ଯ୍ୟ ସମ୍ପାଦନ କରନ୍ତି । (ଶ୍ରୀ.ସ୍ୱ. - ପୃ. ୧୬୬) ।

**ଦୟଣାବେଢ଼ା**-*ଦେ.ବି.*- ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ଦିନ ମଦନମୋହନ ଦୟଣାରେ ସୁଶୋଭିତ ହୋଇ ସରସ୍ୱତୀଙ୍କ ସହ ପଟୁଆରରେ ତିନିବାର ବେଢ଼ା ପରିକ୍ରମା କରନ୍ତି । ଏହାକୁ ଦୟଣାବେଢ଼ା କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୫) ।

**ଦରଜୀ ସେବା**-*ଦେ.ବି.*- ଦରଜୀ କାମ । ବେଢ଼, ତ୍ରାସ ସିଲାଇ, ଡମ୍ବରୁ ସିଲାଇ, ବଡ଼ବାଡ଼ି କଳାକନାଟି, ଛତି ସିଲାଇ, ମଝିବାଡ଼ ଚକା ସିଲାଇ, ଦୁଇବାଡ଼ ରସିକ ସିଲାଇ, ଟାଟ ଟୋକାଇ ସିଲାଇ, ମରାମତି ସିଲାଇ ଇତ୍ୟାଦି । ସମସ୍ତଙ୍କୁ ଡାକି କାମ କରାଇବା ସର୍ଦ୍ଦାରଙ୍କ କାମ । ସର୍ଦ୍ଦାର ପ୍ରାପ୍ୟ ଭୋଗ ବଣ୍ଟାରେ ଗୋଟିଏ ଅଧିକ ଭାଗ ପାଆନ୍ତି । ଦର୍ଜୀ ସେବାରେ ଶାଢ଼ି ନାହିଁ, କେବଳ ସର୍ଦ୍ଦାର ଶାଢ଼ି ବାନ୍ଧନ୍ତି । ସେବା ବଂଶାନୁକ୍ରମିକ । ସାବାଳକ ହୋଇ ଦର୍ଜୀ କାମ ଜାଣିଲେ ସେବା କରିପାରିବେ । ସେବା ତ୍ରୁଟି କଲେ ଅନ୍ୟ ଦର୍ଜୀ ନିଯୁକ୍ତ ହୋଇପାରିବେ । (ଶ୍ରୀ.ସ୍ୱ.- ପୃ. ୭୪) ।

**ଦଶ ଅବତାରୀ ଶ୍ରୀଜଗନ୍ନାଥ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ରଥଯାତ୍ରା ସମୟରେ ପ୍ରଭୁ ଶ୍ରୀଜଗନ୍ନାଥ ଏକଧାରରେ ଦଶାବତାର ରୂପ ଧାରଣ କରନ୍ତି । ଯଥା- ୧. କୁସୁମ ଲାଗିଲେ - ମୀନ, ୨. ତୁଳି ଲାଗିଲେ - କୂର୍ମ, ୩. କାନୁଆସି ଲାଗିଲେ - ଯଜ୍ଞବରାହ, ୪. ସେନାପଟା ଲାଗିଲେ - ନରସିଂହ, ୫. ରଥାରୂଢ଼ ହେଲେ- ବାମନ, ୬. ଆଡ଼ପ ଡୋରି ଲାଗିଲେ - ପର୍ଶୁରାମ, ୭. ଆଡ଼ପରୀକ୍ଷାରେ - ରଘୁନାଥ, ୮. ହେରାପଞ୍ଚମୀ ବ୍ରଜେନ୍ଦ୍ର ନନ୍ଦନ, ୯. ଅନ୍ତର୍ବେଦୀ ମହୋତ୍ସବ ସମୟରେ- ବୁଦ୍ଧ, ୧୦. ଶ୍ୱେତାଶ୍ୱ- ଆରୋହୀ ଶୂନ୍ୟରୂପୀ - କଳ୍କୀ ।
(ଶ୍ରୀ.ଜି. - ପୃ. ୩୬୨) ।

**ଦଶନାମୀ ସନ୍ନ୍ୟାସୀ**-*ଦେ.ବି.*- ଦଶ ଉପାଧିଯୁକ୍ତ ସନ୍ନ୍ୟାସୀମାନଙ୍କର ସମ୍ପ୍ରଦାୟ ଦଶନାମ ଯଥା- ତୀର୍ଥ, ଆଶ୍ରମ, ବନ, ଅରଣ୍ୟ, ଗିରି, ପର୍ବତ, ସାଗର, ସରସ୍ୱତୀ, ଭାରତୀ ଓ ପୁରୀ । ଭଗବାନ ଶଙ୍କରାଚାର୍ଯ୍ୟଙ୍କ ସୁପ୍ରତିଷ୍ଠିତ ସନ୍ନ୍ୟାସୀ ସମ୍ପ୍ରଦାୟକୁ ପୂର୍ବୋକ୍ତ ରୂପେ ଦଶଭାଗରେ ବିଭକ୍ତ କରି ଏମାନଙ୍କ ପାଇଁ ଭାରତର ଚତୁର୍ଦ୍ଦିଗରେ ଚାରୋଟି ମଠ ଯଥା- ଗୋବର୍ଦ୍ଧନ ମଠ, ଜ୍ୟୋର୍ତିମଠ, ଶୃଙ୍ଗେରୀ ମଠ, ଶାରଦା ମଠ ଆଦି ସ୍ଥାପନ କରିଥିଲେ ଏବଂ ପ୍ରତ୍ୟେକ ମଠରେ ଦେବ, ଆଚାର୍ଯ୍ୟ ଏବଂ ମଠ ସେବକ ବ୍ରହ୍ମଚାରୀ ନିଯୁକ୍ତ କରିଥିଲେ ।
(ପୂ.ଓ.ଭା. - ପୃ. ୩୬୯୨) ।

**ଦଶମୂଳ**-*ସଂ.ବି.*- ଦଶଟି ମୂଳର ସମାହାର । ଦଶଟି ମୂଳରେ ପ୍ରସ୍ତୁତ ମୋଦକ ଅଣସର ଏକାଦଶୀ ଦିନ ଅସୁସ୍ଥ ଭାବରେ କଳ୍ପିତ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ହୁଏ ।
(୧ମ- ୩୮, ୪ର୍ଥ - ୩୭ ସୁଶ୍ରୁତ ସଂହିତା ଓ ୧୫ଶ ଚରକ ସଂହିତା, ପୂ.ଓ.ଭା. - ପୃ. ୩୬୯୪) ।

**ଦର୍ଶନିଆ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଆସିଥିବା ବ୍ୟକ୍ତି, ଦର୍ଶକ ବା ଭକ୍ତ ।
(ପୂ.ଓ.ଭା. - ପୃ. ୩୬୮୨) ।

**ଦଶାଙ୍ଗ ଧୂପ**-*ସଂ.ବି.*- ଦେବପୂଜା ସମୟରେ ବ୍ୟବହୃତ ଦଶଗୋଟି ସୁଗନ୍ଧିତ ଦ୍ରବ୍ୟ ସମ୍ମିଶ୍ରଣରେ ପ୍ରସ୍ତୁତ ଧୂପ । ଅର୍ଥାତ୍ ଚନ୍ଦନଗୁଣ୍ଡ, ଗୁଗୁଳ, ଶିଳାରସ, ଝୁଣା, ଜଟାମାଂସୀ, ଲୋବାନ, ବେଣାଚେର, ନଖି, ଭୀମସେନୀ କର୍ପୂର, କସ୍ତୁରୀ । ମତାନ୍ତରେ- ବେଣା, ମୁଥା, କୃଷ୍ଣାଗୁରୁ, ଚନ୍ଦନ, ଅଳେଇଚ, ଲବଙ୍ଗ, ଘିଅ, ଗୁଡ଼, ଗୁଗୁଳ ଓ କେଶର । ଶ୍ରୀମନ୍ଦିରରେ ଏହା ମଧ୍ୟ ବ୍ୟବହାର କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୫୮, ପୂ.ଓ.ଭା. - ପୃ. ୩୬୯୭) ।

**ଦହିପଟି**-*ଦେ.ବି.*-ରାଜାଙ୍କ ଦ୍ୱାରା ଶ୍ରୀ ବିଗ୍ରହଙ୍କର ପୂଜା ଅର୍ଚ୍ଚନା ସମୟରେ ମୁଦିରସ୍ତ ଦହି ଓଳିଏ ଏବଂ ସାକର ଗୋଟିଏ ମିଶାଇ ମଣୋହି କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୨, ୭୩) ।

**ଦହିମାଛୁଆ**-*ଦେ.ବି.*- ଧୋବା ।
(ପୂ.ଓ.ଭା.- ପୃ. ୩୭୦୭) ।

**ଦକ୍ଷିଣକାଳୀ**-*ଦେ.ବି.*- ଶ୍ରୀମନ୍ଦିର ବାହାରେ ଏହି ଠାକୁରାଣୀଙ୍କ ମନ୍ଦିର । ଏହି ଠାକୁରାଣୀଙ୍କ ନିକଟକୁ ସାତପୁରୀ ଅମାବାସ୍ୟା ଦିନ ଶ୍ରୀଜଗନ୍ନାଥଙ୍କର ଆଜ୍ଞାମାଳ ଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭୮) ।

**ଦକ୍ଷିଣଦ୍ୱାର**-*ଦେ.ବି.*- ଶ୍ରୀମନ୍ଦିରର ଦକ୍ଷିଣପାଖ ଦିଗର ଦ୍ୱାର, ଯାହା କି ଅଶ୍ୱଦ୍ୱାର ନାମରେ ପରିଚିତ । ଏହାର ସମ୍ମୁଖ ଭାଗରେ ଦୁଇଟି ଅଶ୍ୱମୂର୍ତ୍ତି ଅଛନ୍ତି । ଅଶ୍ୱ ଉପରେ ଦୁଇଜଣ ଯୋଦ୍ଧାବୀର ବେଶରେ ଆସୀନ । ଏହି ମୂର୍ତ୍ତି ଦୁଇଟି ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କର କାଞ୍ଚି ଅଭିଯାନ ସ୍ମାରକୀ ବୋଲି ଜନଶ୍ରୁତି କୁହେ । ତେଣୁ ଏହି ଦ୍ୱାରକୁ କାଞ୍ଚି ବିଜୟ ଦ୍ୱାର ମଧ୍ୟ କୁହାଯାଏ । ଏହି ଦ୍ୱାରର ଗୁମୁଟ ଉଚ୍ଚତା ଷାଠିଏ ଫୁଟ ଓ କବାଟର ଉଚ୍ଚତା ପ୍ରାୟ ପଚିଶ ଫୁଟ । ଗୁମୁଟ ଭିତର କାନ୍ଥରେ ଗଣେଶ ହନୁମାନଙ୍କ ମୂର୍ତ୍ତି ବିଦ୍ୟମାନ । ମେଘନାଦ ପାଚେରୀର ଦକ୍ଷିଣପଟେ ଗୁମୁଟ ପାଖରେ ଥିବା ହନୁମାନଙ୍କ ବିଶାଳ ମୂର୍ତ୍ତିକୁ ପ୍ରହରୀ ହନୁମାନ କୁହାଯାଏ ।

ପ୍ରାଚୀର ବାହାରପଟ ଦକ୍ଷିଣପୂର୍ବ କୋଣରେ ପେଢଳା ରହିଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୪, ୧୪୮) ।

**ଦକ୍ଷିଣମୋଡ଼**-*ଦେ.ବି.*- ବାହୁଡ଼ା ନିମନ୍ତେ ତିନିରଥକୁ ଦକ୍ଷିଣାଭିମୁଖୀ ଅର୍ଥାତ୍ ଶ୍ରୀମନ୍ଦିରାଭିମୁଖୀ କରାଇବା ପ୍ରକ୍ରିୟା । ଶୁକ୍ଳ ସପ୍ତମୀ ଦିନ ସକାଳେ ରଥ ଦକ୍ଷିଣାଭିମୁଖୀ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୩) ।

**ଦକ୍ଷିଣମୂର୍ତ୍ତି**-*ସଂ.ବି.*- ଦକ୍ଷିଣାଭିମୁଖ, ଦକ୍ଷିଣମୋଡ଼ । ସ୍ନାନ ଓ ରଥଯାତ୍ରାରେ ଠାକୁର ଦକ୍ଷିଣ ଦିଗକୁ ମୁହଁ କରିଥିବା ଅବସ୍ଥା । ଏହି ସମୟରେ ଠାକୁରଙ୍କ ବନ୍ଦାପନା ଲୋକମୁଖରେ ବିଭୀଷଣ ବନ୍ଦାପନା ଭାବରେ କଥିତ । ଲୋକବିଶ୍ୱାସରେ ବିଭୀଷଣ ସେହି ସମୟରେ ଦକ୍ଷିଣ ଦିଗରୁ ଠାକୁରଙ୍କୁ ଦର୍ଶନ କରନ୍ତି ।
(ଉତ୍କଳ ଦୀପିକା - ୨୮/୭/୧୮୮୮) ।

**ଦକ୍ଷିଣାମୁଖୀ ରଥ**-*ସଂ.ବି.*- ବାହୁଡ଼ା ପୂର୍ବରୁ ଆଷାଢ଼ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ଗୁଣ୍ଡିଚା ମନ୍ଦିରରେ ହେରାପଞ୍ଚମୀ ଉତ୍ସବ ପାଳିତ ହୁଏ । ସପ୍ତମୀ ତିଥିରେ ରଥତ୍ରୟ ଦକ୍ଷିଣାଭିମୁଖୀ କରାଯାଏ । ପ୍ରଥମେ ଦେବୀ ସୁଭଦ୍ରାଙ୍କ ରଥ ଦକ୍ଷିଣାଭିମୁଖୀ ହୋଇ ନାକଚଣା ଦ୍ୱାର ନିକଟରେ ରହିବା ପରେ ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜରଥ ଓ ଶେଷରେ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଦକ୍ଷିଣାଭିମୁଖୀ ହୋଇଥାଏ ।
(ଶ୍ରୀ.ଜି. - ପୃ. ୨୬୧) ।

**ଦକ୍ଷିଣାୟନ ଯାତ୍ରା**-*ସଂ.ବି.*- ଶ୍ରୀଗୁଣ୍ଡିଚା ଯାତ୍ରାର ଅନ୍ୟନାମ ଦକ୍ଷିଣାମୁଖ ଯାତ୍ରା । ବିଷ୍ଣୁଙ୍କର ଏହି ଦକ୍ଷିଣମୁଖ ଦର୍ଶନରେ ବହୁ ପୁଣ୍ୟ ଫଳ ମିଳେ ବୋଲି ବ୍ରହ୍ମପୁରାଣ ଓ ସ୍କନ୍ଦପୁରାଣରେ ବର୍ଣ୍ଣିତ ଅଛି । ସିଂହାସନ ବା ଅନ୍ତର୍ବେଦୀରୁ ବାହାରିବାଠାରୁ ସେ ନୃସିଂହ ବିଗ୍ରହ ହୋଇ ବାହାରନ୍ତି । ଯଜ୍ଞନୃସିଂହଙ୍କର ମୁଖ ଦକ୍ଷିଣକୁ । ଏଣୁ ଦକ୍ଷିଣ ଦିଗକୁ ଦକ୍ଷିଣ ମଣ୍ଡପ ଦ୍ୱାରରେ ଅନ୍ତର୍ବେଦୀ ବନ୍ଦାପନା କରାଯାଏ ।
(ଶ୍ରୀ.ଜି. - ପୃ. ୨୬୩) ।

**ଦକ୍ଷିଣାୟନ ବନ୍ଦାପନା**-*ସଂ.ବି.*- କର୍କଟ ସଂକ୍ରାନ୍ତିଦିନ ବିଗ୍ରହଙ୍କୁ ସର୍ବାଙ୍ଗଲାଗି ଓ ବୋଇରାଣୀ ଖଣ୍ଡୁଆପାଟ ଲାଗି କରିବାପରେ ବନ୍ଦାପନା କରାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୮୪) ।

**ଦକ୍ଷିଣିଘର**-*ଦେ.ବି.*- ଶ୍ରୀମନ୍ଦିରର ବିଜେ ପ୍ରତିମାଙ୍କର ରହିବା ଘର । ଏଠାରେ ପ୍ରଭୁ ରାମଚନ୍ଦ୍ର, ଲକ୍ଷ୍ମଣ, ମାତା ସୀତା ଓ ପବନପୁତ୍ର ଭକ୍ତ ହନୁମାନଙ୍କର ଚଳନ୍ତି ବିଗ୍ରହ ରହିଛନ୍ତି । ରାମନବମୀ, ମହାବୀର ଜୟନ୍ତୀ ଓ ବେଣ୍ଟ ଶିକାର ନୀତିରେ ଉକ୍ତ ଠାକୁରମାନେ ବିଜେ ହୁଅନ୍ତି । ଶ୍ରୀନାରାୟଣଙ୍କର ଚଳନ୍ତି ବିଗ୍ରହ ସାଗର ବିଜେ କାଳରେ ବିଜେ ହୁଅନ୍ତି । ମଦନମୋହନ ଓ ରାମକୃଷ୍ଣ ଚନ୍ଦନ ଓ ଅନ୍ୟାନ୍ୟ ପର୍ବରେ ମଧ୍ୟ ବିଜେ ହୁଅନ୍ତି । ଦୋଳଗୋବିନ୍ଦ ଦୋଳଯାତ୍ରାରେ ବିଜେ ହୁଅନ୍ତି । ବଦ୍ରି ନାରାୟଣ, ଲକ୍ଷ୍ମୀ ନାରାୟଣ, ଲଡୁଗୋପାଳ, ବାମନ, ଶେଷଦେବ, ବାଡ଼ିନୃସିଂହ, ଲକ୍ଷ୍ମୀ ନୃସିଂହ ଓ ପଞ୍ଚୁପାଣ୍ଡବ ମଧ୍ୟ ଏଠାରେ ଅବସ୍ଥାନ କରନ୍ତି । ଏମାନଙ୍କ ସହିତ ଅଠର ମୂର୍ତ୍ତି ଶାଳଗ୍ରାମ ବିଜେ କରୁଛନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୪) ।

**ଦକ୍ଷିଣିଦ୍ୱାର ପଢ଼ିଆରୀ**-*ଦେ.ବି.*- ଶ୍ରୀମନ୍ଦିରର ଦକ୍ଷିଣଦ୍ୱାର ବା ଅଶ୍ୱଦ୍ୱାରରେ ଠାକୁରଙ୍କ ମଙ୍ଗଳ ଆଳତିଠାରୁ ଶୟନ ପର୍ଯ୍ୟନ୍ତ ଜଗି ରହୁଥିବା ପଢ଼ିଆରୀ ବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬୦) ।

**ଦକ୍ଷିଣି ବୈଷ୍ଣବ**-*ଦେ.ବି.*- ବୈଷ୍ଣବ ବିଶେଷ । ଏମାନେ ବାଦ୍ୟବଜାଇ ଦୁଆରଫିଟା ସମୟରେ ତିନିବାଜା, ବଡ଼କାଠ ବଜାଇବେ । ଗୀତମାନ ବୋଲି ବନ୍ଦାପନା ଗୀତ ଗାଇବେ । ଧନୁମାସରେ ଗାଇବେ ନାହିଁ । ପହୁଡ଼ବୋଲି, ଧୂପବୋଲି, ଆବକାବୋଲି ଚାପ ଭଜନ ବୋଲିବେ ।
(ପୁ.ବୋ.- ପୃ. ୨୧୪) ।

**ଦାଖଲ ଖାରଜ**-ବୈ.ଦେ.ବି.- ଶ୍ରୀମନ୍ଦିରର ସେବକମାନଙ୍କର ପାଳି ସମ୍ପର୍କୀୟ ବିଷୟ ଜାଣିବାର ଏକ ପ୍ରସ୍ତୁତ ତାଲିକା ।
(ଶ୍ରୀ.ଶ.- ପୃ. ୮୯) ।

**ଦାନ**-*ଦେ.ବି.*- ଅର୍ପଣ, ତ୍ୟାଗ, ଦେବା, ବିତରଣ, ଦତ୍ତ ବସ୍ତୁ ସ୍ୱତଃ କୌଣସି ପଦାର୍ଥ ଅନ୍ୟକୁ ଦେବା । ଭୂମି, ଧନ, ରତ୍ନ, ଅନ୍ନ ପ୍ରଭୃତି ଦାନ ଦେବାଦ୍ୱାରା ମାନଙ୍କୁ କରାଯାଇ ପୂଣ୍ୟ ଅର୍ଜନ କରାଯାଏ ।
(ପୂ.ଓ.ଭା. - ପୃ. ୩୭୨୩) ।

**ଦାନ ଗ୍ରହଣ**-*ଦେ.ବି.*- ଅନ୍ୟଦ୍ୱାରା ପ୍ରଦତ୍ତ ଦ୍ରବ୍ୟ ଗ୍ରହଣ କରିବା ।
(ପୂ.ଓ.ଭା. - ପୃ. ୩୭୨୪) ।

**ଦାନଧର୍ମ**-*ଦେ.ବି.*- ଦାନ ଆଦି ପୁଣ୍ୟ କାର୍ଯ୍ୟ ମାଧ୍ୟମରେ ଧର୍ମ ଅର୍ଜନ କରାଯିବା ।
(ପୂ.ଓ.ଭା. - ପୃ. ୩୭୨୪) ।

**ଦାନ୍ତୁଆଣି**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତ୍ୟେକ ଦିନ ସକାଳ ଛଅରୁ ଛଅଟା ତିରିଶ ମିନିଟ ନିର୍ଦ୍ଧାରିତ ସମୟରେ କାଠିଲାଗି ବା ଶ୍ରୀଜୀଉଙ୍କ ଦାନ୍ତଘଷା ନୀତି ହୁଏ । କେବଳ ମୁତୁରୀ ଦାନ୍ତକାଠି ହିଁ ଶ୍ରୀଜୀଉଙ୍କ ଦନ୍ତମାର୍ଜନ ପାଇଁ ବ୍ୟବହୃତ ହୁଏ । ମୁଖ ପଖାଳ ପଢ଼ିଆରୀ ଦାନ୍ତକାଠି ଯୋଗାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ଦାବାଗ୍ନି ଲୀଳା**-*ସଂ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ ଶୁକ୍ଳ ପ୍ରତିପଦା ସନ୍ଧ୍ୟାଧୂପ ପରେ ମଦନମୋହନ ପୂର୍ବ କଥିତମତେ ନାଟପା ମନ୍ଦିର ଖଟ ଉପରେ ବିଜେ କରନ୍ତି ଓ ଏହାଙ୍କ ଛାମୁରେ ମାଟି ମଣ୍ଡପ ସାହି ଲୋକେ ଦାବାଗ୍ନି ପ୍ରସ୍ତାବ କରନ୍ତି । (ଅର୍ଥାତ୍ ଦାବାଗ୍ନି ଲୀଳା କରିବେ) । ଶୀତଳ ଭୋଗ ବନ୍ଦାପନା ପରେ ବାହୁଡ଼ା ବିଜେ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୩) ।

**ଦାରୁ**-*ଦେ.ବି.*- ପ୍ରାଚୀନ ବୈଦିକ ଶାସ୍ତ୍ର ଋଗ୍‌ବେଦରେ ଅପୌରୁଷେୟ 'ଦାରୁ' ଶବ୍ଦର ପ୍ରୟୋଗ ରହିଛି । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଅର୍ଥାତ୍ ଏନ୍ତୁଡ଼ିଶାଳରୁ ଶ୍ମଶାନ ଘାଟ ପର୍ଯ୍ୟନ୍ତ ମନୁଷ୍ୟ ଜୀବନରେ ଦାରୁ (କାଷ୍ଠ)ର ଭୂମିକା ଅପରିହାର୍ଯ୍ୟ । ଦାରୁଖଣ୍ଡଟିର ଗୋଟିଏ ପାର୍ଶ୍ୱ ଅଗ୍ନିରେ ଜଳୁଥିବା ସମୟରେ ତାହାର ଅପରପାର୍ଶ୍ୱ ଶୀତଳ ଥାଏ, ଏହାହିଁ ମାନବ ଜୀବନ ଧାରଣର ଅପୂର୍ବ ଶିକ୍ଷା । ମାନବର ପ୍ରଖରତା ଓ ଶୀତଳତା ସମାନ ରହିଲେ ହିଁ ତାହା ଅପରର କଲ୍ୟାଣ ସାଧନ କରିପାରେ । ବାରବର୍ଷରେ ହେଉ ବା ତତୋଧିକ ବର୍ଷରେ ଯେଉଁ ଯୋଡା ଆଷାଢ଼ ବା ମଳ ପଡ଼େ ସେହି ଆଷାଢ଼ ମାସରେ ଠାକୁରଙ୍କ ନବକଳେବର ହୁଏ ଓ ଅଣସର ସମୟ ଏକ ମାସ (ମଳ) ମିଶିଯିବାରୁ ଦେଢ଼ମାସ ହୁଏ । ଏହାକୁ ମହାଅଣସର କୁହାଯାଏ । ଦାରୁ ଶବ୍ଦ ଦୁଷ୍ଟ ଦମନ ଓ ଦଣ୍ଡ ପ୍ରଦାନ ଅର୍ଥରେ ପ୍ରଯୁଜ୍ୟ । ଏଥିରେ ମଧ୍ୟ ରହିଛି ଦାରୁଣ ଦୁଃଖ ଦହନ ତଥା ଖଣ୍ଡନକାରୀ ଶକ୍ତି । ଦାରୁସ୍ତମ୍ଭ ମଧ୍ୟରୁ ନୃସିଂହ ଆବିର୍ଭୂତ ହୋଇ ହିରଣ୍ୟକଶିପୁ ବିଦାରଣ ପୂର୍ବକ ପ୍ରହ୍ଲାଦର କଷଣ ଦୂର କରିଥିଲେ । ପ୍ରଭୁ ଶ୍ରୀରାମଚନ୍ଦ୍ର କୋଦଣ୍ଡଧାରୀ ରୂପେ ପ୍ରସିଦ୍ଧ । ଶ୍ରୀକୃଷ୍ଣ ମଧ୍ୟ କାଷ୍ଠଦଣ୍ଡ ଧାରଣ କରି ଗୋପାଳନ କରୁଥିଲେ । ତେଣୁ ଦାରୁର ସ୍ୱଭାବ ସୁଲଭ ଗୁଣ ହେଉଛି ସମସ୍ତଙ୍କ ଦୁଃଖନିବାରଣ ଓ ଅଖଣ୍ଡ ଆନନ୍ଦ ପ୍ରଦାନ । ତେଣୁ ଦାରୁ ମାନବୀୟ ଆଧ୍ୟାତ୍ମିକ ସଂସ୍କୃତିର ପରମ ଉପଜୀବ୍ୟ । ଦାରୁ ହିଁ ଦେବତା ରୂପେ ସ୍ୱୀକୃତ ।
(ଉ.ପ୍ର. - ଜୁଲାଇ ୨୦୧୨ - ପୃ. ୮୭) ।

**ଦାରୁଘର**-*ଦେ.ବି.*- ନବକଳେବର ସମୟରେ ସଂଗୃହୀତ ଦାରୁ ଶ୍ରୀମନ୍ଦିର ବାହାର ବେଢ଼ାରେ ଥିବା ଏହି ଘରେ ସଂଗ୍ରହ କରି ରଖାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୫) ।

**ଦାରୁକ**-*ସଂ.ବି.*- ଶ୍ରୀକୃଷ୍ଣଙ୍କ ସାରଥି । ଶ୍ରୀକୃଷ୍ଣଙ୍କ ଦେହାନ୍ତର ସମାଚାର ମଧ୍ୟ ସେ ପ୍ରଥମେ ଅର୍ଜ୍ଜୁନଙ୍କୁ ଦେଇଥିଲେ । ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥର ସାରଥୀ ।
(ପୂ.ଓ.ଭା. - ପୃ. ୩୭୪୨) ।

**ଦାରୁ ଛେଦନ**-*ଦେ.ବି.*- ଦାରୁ ଚିହ୍ନଟ ପରେ ଦାରୁଛେଦନ କାର୍ଯ୍ୟ ହୋଇଥାଏ । ଏଥିପାଇଁ ଯଜ୍ଞମାଳା, ଯଜ୍ଞକୁଣ୍ଡ, ଅଙ୍କୁରୋପଣ ଗୃହ ନିର୍ମିତ ହୋଇ ବନଯାଗ ହୋମ ଆରମ୍ଭ ହୁଏ । ଏଥିନିମନ୍ତେ ପାଞ୍ଚ ଜଣ ବେଦବିତ୍ ବ୍ରାହ୍ମଣ ଅଂଶଗ୍ରହଣ କରନ୍ତି । ଆଚାର୍ଯ୍ୟ, ବ୍ରହ୍ମା ଓ

ପୁଷ୍ପକାଚାର୍ଯ୍ୟଙ୍କ ଦ୍ୱାରା ପାତାଳି ନୃସିଂହଙ୍କ ମନ୍ତ୍ରରେ ପୂଜା ତଥା ଆହୁତି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୪) ।

**ଦାରୁବୁହା ଶଗଡ଼**-*ଦେ.ବି.*- ଦାରୁ ଚିହ୍ନଟ ଓ ଛେଦନ ପରେ ସେଗୁଡ଼ିକ ସେ ସ୍ଥାନରୁ ବୁହା ହୋଇ ଶ୍ରୀମନ୍ଦିର ଦାରୁ ଖଳାକୁ ଆସେ । ଏଣୁ ବୁହାହୋଇ ଆସିବା ନିମନ୍ତେ ନୂତନ ଶଗଡ଼ି ନିର୍ମାଣ ହୋଇଥାଏ । ଏହି ଶଗଡ଼ି ବରଗଛ କାଠରେ ଚକ, ତେନ୍ତୁଳି କାଠରେ ଦଣ୍ଡା ଓ କେନ୍ଦୁଗଛ କାଠରେ ଅଖ ତିଆରି କରି ଆଠ ହାତ ଦୈର୍ଘ୍ୟ ବିଶିଷ୍ଟ ଓ ଚାରିଚକ ଯୁକ୍ତ ଶଗଡ଼ରେ ପାଟବସ୍ତ୍ର ବିଛାଇ ପାଟଡୋରି ଦ୍ୱାରା ଦାରୁକୁ ବାନ୍ଧି ବେତଦଉଡ଼ି ବା କତା ଦଉଡ଼ିରେ ଟଣା ହୋଇଆସେ । ଏହି ଦାରୁଗୁଡ଼ିକ ଟଣାହୋଇ ଆସି ଶ୍ରୀମନ୍ଦିର ଉତ୍ତରବାଟେ ବା ବୈକୁଣ୍ଠଦ୍ୱାର ଦେଇ କୈବଲ୍ୟ ବୈକୁଣ୍ଠ ବା କୋଇଲି ବୈକୁଣ୍ଠକୁ ଅଣାଯାଏ ।
(କ୍ଷେ.ସ.) ।

**ଦାରୁବ୍ରହ୍ମ**-*ସଂ.ବି.*- ଶ୍ରୀଜଗନ୍ନାଥ । ଦାରୁ ଅନ୍ତର୍ଗତ ବ୍ରହ୍ମ, ଦାରୁ ଚିହ୍ନିତ ବ୍ରହ୍ମ, ଦାରୁ ବା କାଠର ନିର୍ମିତ ବ୍ରହ୍ମ ସ୍ୱରୂପ । ଦାରୁ ସହିତ ବ୍ରହ୍ମଙ୍କ ସମ୍ବନ୍ଧ ପ୍ରତିଷ୍ଠା କରି ଦାରୁବ୍ରହ୍ମ ଶବ୍ଦର ସୃଷ୍ଟି କରାଯାଇଅଛି । ଏହି ଶବ୍ଦଟି କେବଳ ଶ୍ରୀଜଗନ୍ନାଥଙ୍କ ପ୍ରତି ପ୍ରଯୁଜ୍ୟ ହୋଇଥାଏ । ଏଠାରେ ଦାରୁ ମଧ୍ୟରେ ବ୍ରହ୍ମମୟ ସତ୍ତା ବିଦ୍ୟମାନ ଥିବାରୁ ଦାରୁବ୍ରହ୍ମ ହିଁ ଚିରନ୍ତନ । ବ୍ରହ୍ମପୁରାଣରେ ଦାରୁ ରୂପରେ ଜଗନ୍ନାଥଙ୍କ ଆବିର୍ଭାବ ସମ୍ପର୍କରେ ଉଲ୍ଲେଖ ଅଛି । ଏଣୁ ପ୍ରାଚୀନ ଉତ୍କଳରେ ଦାରୁମୂର୍ତ୍ତିରେ ବ୍ରହ୍ମ ଉପାସନାକୁ ଆର୍ଯ୍ୟ ସଂସ୍କୃତିରେ ମଧ୍ୟ ଗ୍ରହଣ କରାଯାଇଅଛି । ଯୋଡ଼ା ଆଷାଢ଼ର କୃଷ୍ଣ ଚତୁର୍ଦ୍ଦଶୀ ନିଃଶବ୍ଦ ରାତ୍ରିରେ ବ୍ରହ୍ମ ପରିବର୍ତ୍ତନ ଗୋପନରେ ସମ୍ପାଦିତ ହୋଇଥାଏ । ଦାରୁଦେବତାଙ୍କ ନାଭି କମଳରେ ବ୍ରହ୍ମବସ୍ତୁ ସ୍ଥାନିତ ହେବା ପରେ ଠାକୁର ନବକଳେବର ପ୍ରାପ୍ତ ହୁଅନ୍ତି ଏବଂ ସେତିକି ବେଳେ ଦାରୁବ୍ରହ୍ମ ନାମର ସାର୍ଥକତା ଆସେ । ଦାରୁବ୍ରହ୍ମ ରୂପେ ବିଦିତ ଶ୍ରୀଜଗନ୍ନାଥ ବିଗ୍ରହହିଁ ପୂର୍ଣ୍ଣ ଚୈତନ୍ୟମୟ ଓ ସଚ୍ଚିଦାନନ୍ଦ । ଦାରୁବ୍ରହ୍ମ ବୈଦିକ ବ୍ରହ୍ମତତ୍ତ୍ୱ ଓ ବୈଦିକ ଦାରୁତତ୍ତ୍ୱ ମିଳନର ସମନ୍ୱୟ । ଶ୍ରୀପୁରୁଷୋତ୍ତମ ଶ୍ରୀକ୍ଷେତ୍ରରେ ଅବ୍ୟକ୍ତ ଅଣାକାର ବ୍ରହ୍ମ ରହସ୍ୟ ଦାରୁରୂପରେ ବିରାଜିତ ହୋଇ ଦାରୁବ୍ରହ୍ମ ରୂପେ ପୂଜା ପାଇଆସୁଛନ୍ତି ।
(ପ୍ର.ଓ.ଭା. - ପୃ. ୩୭୪୩, ଉ.ପ୍ର.- ଜୁଲାଇ - ୨୦୦୨ ପୃ. ୮୭) ।

**ଦାରୁସ୍ନାନ**-*ଦେ.ବି.*- ନବକଳେବର ବର୍ଷ ସ୍ନାନ ପୂର୍ଣ୍ଣିମା ଦିନ ଶୀତଳା ଠାକୁରାଣୀଙ୍କ ସମ୍ମୁଖ ସୁନା କୂଅରୁ ଶହେବାର ଗଡୁ ଜଳ ଅଣାଯାଇ ସେଥିରେ ଚନ୍ଦନ, ଚୁଆ, କର୍ପୂର, କେଶର ପକାଇ ଅଧିବାସ କରାଯାଇଥାଏ । ତନ୍ମଧ୍ୟରୁ ଶହେଆଠ ଗରା ବା ଗଡୁ ଜଳରେ ଶ୍ରୀ ଜୀଉମାନଙ୍କୁ ସ୍ନାନ କରାଯାଏ ଏବଂ ଅବଶିଷ୍ଟ ଚାରି ଗଡୁ ଜଳରେ କୋଇଲି ବୈକୁଣ୍ଠ ସ୍ଥିତ ଦାରୁ ଘରେ ସଂଗୃହୀତ ହୋଇଥିବା ନୂତନ ଚାରି ଦାରୁଙ୍କୁ ସ୍ନାନ ବିଧି ଅନୁଷ୍ଠିତ ହୋଇଥାଏ ।
(ମ.ନ. - ପୃ. ୯୭) ।

**ଦାସିଆ କୁଡୁଆ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ରାମଦାସ ମଠର ନାମାନୁସାରେ ଗୌଣିକିଆ ଚାଉଳ ରନ୍ଧା ହେବାର କୁଡୁଆ ।
(ପୁ.ବୋ. - ପୃ. ୨୧୯) ।

**ଦ୍ୱାଦଶ ଅକ୍ଷର ମନ୍ତ୍ର**-*ଦେ.ବି.*- ବାର ଅକ୍ଷର ବିଶିଷ୍ଟ ବିଷ୍ଣୁ ଆରାଧନା ମନ୍ତ୍ର । 'ଓଁ ନମୋ ଭଗବତେ ବାସୁଦେବାୟ' ।
(ଓ.ସାଂ.ଶ.- ପୃ. ୧୮୦) ।

**ଦ୍ୱାଦଶଯାତ୍ରା**-*ସଂ.ବି.*- ଦେବପୀଠରେ ଦେବତାମାନଙ୍କ ଉଦ୍ଦେଶ୍ୟରେ ପାଳିତ ଉତ୍ସବ ବା ପର୍ବକୁ ଯାତ୍ରା କୁହାଯାଏ । ସ୍ୱତ୍ୱଲିପି ଅନୁସାରେ ଶ୍ରୀମନ୍ଦିରରେ ଅଣଷଠି (୫୯) ଗୋଟି ଯାତ୍ରା ପାଳିତ ହେଉଥିଲେ ହେଁ ସେଥିମଧ୍ୟରୁ ଦ୍ୱାଦଶ ଯାତ୍ରା ପ୍ରସିଦ୍ଧ । ସେଗୁଡ଼ିକ ହେଲା-

| ମାସ | ତିଥି | ଯାତ୍ରା |
|---|---|---|
| ଜ୍ୟେଷ୍ଠ | ପୂର୍ଣ୍ଣିମା | ସ୍ନାନଯାତ୍ରା |
| ଆଷାଢ଼ | ଶୁକ୍ଳ ଦ୍ୱିତୀୟା | ରଥଯାତ୍ରା |
| ଆଷାଢ଼ | ଶୁକ୍ଳ ଏକାଦଶୀ | ହରିଶୟନ |
| ଶ୍ରାବଣ | ସଂକ୍ରାନ୍ତି | ଦକ୍ଷିଣାୟନ |
| ଭାଦ୍ରବ | ଶୁକ୍ଳ ଏକାଦଶୀ | ପାର୍ଶ୍ୱପରିବର୍ତ୍ତନ |
| କାର୍ତ୍ତିକ | ଶୁକ୍ଳ ଏକାଦଶୀ | ହରିଉତ୍‌ଥାପନ |
| ମାର୍ଗଶିର | ଶୁକ୍ଳ ଷଷ୍ଠୀ | ପ୍ରାବରଣ (ଓଢ଼ଣ) |
| ପୌଷ | ପୂର୍ଣ୍ଣିମା | ପୁଷ୍ୟାଭିଷେକ |
| ମାଘ | ସଂକ୍ରାନ୍ତି | ମକରସଂକ୍ରାନ୍ତି |
| ଫାଲଗୁନ | ପୂର୍ଣ୍ଣିମା | ଦୋଳଯାତ୍ରା |
| ଚୈତ୍ର | ଶୁକ୍ଳ ଚତୁର୍ଦ୍ଦଶୀ | ଦମନକ |
| ବୈଶାଖ | ଶୁକ୍ଳ ତୃତୀୟା | ଚନ୍ଦନଯାତ୍ରା |

(ପୂ.ଓ.ଭା. - ପୃ. ୩୯୧୨, ଶ୍ରୀ.ସ୍ୱ. - ପୃ. ୫୭, ଶ୍ରୀ.ଜ. - ପୃ. ୮୭) ।

**ଦ୍ୱାରପାଳ ପୂଜା**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତ୍ୟେହ ପାଳିଆପତ୍ରି ଫୁଲ, ଚନ୍ଦନଘଣ୍ଟି, ଶଙ୍ଖ, ପିଢ଼ା ଓ ଝରି ସୂର୍ଯ୍ୟ ପୂଜା ପରେ ଜୟବିଜୟ ଦ୍ୱାରଠାକୁ ନିଏ । ନିକାପ ମନ୍ଦିର କୋଠ ସରଘରୁ ତିନି ଗୋଟି କୋରା ନେଇ ଯୋଗାଏ । ଜୟବିଜୟ ଦ୍ୱାର ତଳେ ପାହାଚରେ ପୂଜାପଣ୍ଡା ଜୟବିଜୟ ପୂଜା କରନ୍ତି ଓ ଦୁଇଗୋଟି କୋରା ନୈବେଦ୍ୟ ଦିଅନ୍ତି । ଅବଶିଷ୍ଟ ଗୋଟିଏ କୋରା ଗରୁଡ଼ଙ୍କ ନୈବେଦ୍ୟ ସକାଶେ ରହେ । ଏହି ପୂଜା ସମୟରେ ଜୟବିଜୟ ଦ୍ୱାର ପାହାଚରେ କୌଣସି ଲୋକ ପାଦ ଦେବା ମନା, ଯଦି କେହି ପାଦ ଦିଅନ୍ତି ତାହା ହେଲେ ସେଠାରେ ମହାସ୍ନାନ ହୋଇ ପୁନର୍ବାର ପୂଜା ହୁଏ । (ଶ୍ରୀ.ସ୍ୱ. - ପୃ. ୧୭) ।

**ଦ୍ୱାରଫିଟା**-*ଦେ.ବି.*- ଏହି ନୀତି ପ୍ରତ୍ୟହ ଉଷାକାଳରେ ଅନୁଷ୍ଠିତ ହୁଏ । କେବଳ କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ ଓ ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ବିଶେଷ ନୀତିମାନଙ୍କରେ ରାତ୍ର ପ୍ରହରେ ଥାଉଁ ଦ୍ୱାରଫିଟା ହେବାର ନିୟମ ଅଛି । (ଶ୍ରୀ.ସ୍ୱ. - ପୃ. ୧୧) ।

**ଦ୍ୱାରୀ**-*ଦେ.ବି.*- ଦ୍ୱାର ରକ୍ଷାକାରୀ ବା ସେବାକାରୀ । ଭଗବାନ ଦ୍ୱାରୀ ସେବାରେ ଆପ୍ୟାୟିତ ହୋଇଥାଆନ୍ତି । ସେଥିପାଇଁ ପୂର୍ବରେ ତ୍ରିପୁରା, ପଶ୍ଚିମରେ କ୍ଷମା, ଉତ୍ତରରେ ଭୈରବୀ ଓ ଦକ୍ଷିଣରେ ତାରିଣୀ ପୂଜିତା । ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଦ୍ୱାରୀ ସେବା ମଧ୍ୟ ଅଛି ।

**ଦ୍ୱାରୀ ନାଏକ**-*ଦେ.ବି.*- ଶ୍ରୀମନ୍ଦିର ଅଣସର ପିଣ୍ଡିଠାରେ ଦ୍ୱାର ଜଗି ରହିବା ସେବକ । (ଶ୍ରୀ.ସ୍ୱ. ୨ୟ- ପୃ. ୧୬୦) ।

**ଦିନଚାପ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଚନ୍ଦନଯାତ୍ରା ବେଳେ ଶ୍ରୀଠାକୁରମାନେ ନରେନ୍ଦ୍ର ପୁଷ୍କରିଣୀରେ ଦିନ ଚାପରେ ଏକ ଘେରା ବୁଲି କୂଳରେ ଲାଗିଲା ପରେ ଦୁଇଚାପ ଏକତ୍ର ହୋଇ ବଡ଼ଚାପରୁ ରାମକୃଷ୍ଣ ଦୁଇଦେବ ମଦନମୋହନଙ୍କ ଚାପକୁ ଆସନ୍ତି । ବନ୍ଦାପନା ହୋଇ, ଚାମର ଆଳତି ପରେ ଜଳରେ ନିମଗ୍ନ ହୁଅନ୍ତି । ଏହାପରେ ଫୁଲ ବେଶ ହୋଇ ଶୀତଳ ମଣୋହି ପଞ୍ଚୋପଚାରରେ ପୂଜା ହେବା ପରେ ଜଗତି ଉପରେ ସୁନା ଅଳଙ୍କାର ଲାଗିହୋଇ ଭିତରକୁ ବିଜେ ହୁଅନ୍ତି । ପରେ ନରେନ୍ଦ୍ର ଚକଡ଼ା ରୋଷରେ ପ୍ରସ୍ତୁତ ମାଣ୍ଡୁଅ ଭୋଗ ସାରି ବିଡିଆ ମଣୋହି ହୋଇଥାଏ । (ଶ୍ରୀ.ସ୍ୱ.- ପୃ. ୧୧୮) ।

**ଦିବ୍ୟସିଂହ ଦେବ**-*ଦେ.ବି.*- ଏହାଙ୍କ ରାଜତ୍ୱର ଅ୯ଙ୍କ ତୁଳା ସାତ ଦିନ ଶନିବାର ବଡ଼ ବତାସ ହେବାରୁ ବଡ଼ଦେଉଳର ନୀଳଚକ୍ର ଭାଙ୍ଗି ଭଣ୍ଡଗଣପତିଙ୍କ ଆଗେ ତଳେ ପଡ଼ିଥିଲା । ଅ୩୩ଙ୍କ କୁମ୍ଭ ଦି୪ନେ ପାତ୍ର ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ଧରମୁ ହରିଚନ୍ଦନ ମହାପାତ୍ର ଉଦ୍ଦିଷ୍ଟ ବଡ଼ଦେଉଳ ଉପରେ ନୂଆ ଗଢ଼ା ନୀଳଚକ୍ର ପୁନର୍ବାର ସ୍ଥାପନ କରିଥିଲେ । ଏହି ରାଜା ନାଭିକଟା ମଣ୍ଡପ, ସରସ୍ୱତୀ ମନ୍ଦିରର ଜଗମୋହନ, ଭେଟମଣ୍ଡପ, ଚାହାଣୀ ମଣ୍ଡପ, କ୍ଷେତ୍ରପାଳଙ୍କ ଦେଉଳ ମଣ୍ଡପ, ବିମଳାକ୍ଷୀଙ୍କ ପାଖ ମଣ୍ଡପ ଓ ମଦନ ଗୋପାଳଙ୍କ ପାଇଁ ଦେଉଳ ନିର୍ମାଣ କରିଥିଲେ । (ମା.ପା. - ପୃ. ୫୭) ।

**ଦିହୁଡ଼ିଆ**-*ଦେ.ବି.*- ଶ୍ରୀମନ୍ଦିରରେ ଦିହୁଡ଼ି ବା ମସାଲ ଜାଳୁଥିବା ସେବକ । କର୍ମାଙ୍ଗୀର ଚକ୍ର ଦିହୁଡ଼ିଆ ଓ ରତ୍ନକମ ଦିହୁଡ଼ିଆ ଏବଂ ସ୍ୱତ୍ୱଲିପିରେ ଚକ୍ର ଦିହୁଡ଼ିଆ ଓ ଛାମୁ ଦିହୁଡ଼ିଆଙ୍କ ସମ୍ପର୍କରେ ଉଲ୍ଲେଖ ଅଛି । ରତ୍ନକମ ଦିହୁଡ଼ିଆ ଓ ଛାମୁ ଦିହୁଡ଼ିଆ ଏକ ବୋଲି ମନେହୁଏ । ଏତଦ୍‌ବ୍ୟତୀତ ରଥକୁ ରାତ୍ରିରେ ଦିହୁଡ଼ି ନେଇ ଆଲୋକିତ କରିବା ପାଇଁ ସୁନା ଦିହୁଡ଼ି ସେବକ ଅତୀତରେ ଥିବା ଜଣାଯାଏ । ଏହି କାର୍ଯ୍ୟ ସମ୍ପ୍ରତି ଛାମୁ ଦିହୁଡ଼ିଆ କରୁଛନ୍ତି ।
(ଉ.ଇ.ଅ.ଅ. - ପୃ. ୩୮୭) ।

**ଦିହୁଡ଼ି ହୁଳା**-*ଦେ.ବି.*- ଜ୍ୱଳନ୍ତ ମଶାଲ ବିଶେଷ । ପ୍ରାଚୀନ କାଳରେ ସୂର୍ଯ୍ୟାସ୍ତ ଦେଖି ଦିହୁଡ଼ି ଲଗାଉଥିଲେ । ଅଣସର ସମୟରେ ମହାପ୍ରଭୁଙ୍କ ଜ୍ୱର ହୋଇଥିବା ବେଳେ ଅଣସର ଗମ୍ଭୀରା ଘରେ ଦିହୁଡ଼ି ହୁଳା ଆଲୋକରେ ତାଙ୍କର ଚିକିତ୍ସା ହୁଏ ।
(ଓ.ସାଂ.ଶ.- ପୃ. ୧୭୬) ।

**ଦ୍ୱିତୀୟା ଓଷା**-*ଦେ.ବି.*- ଆଶ୍ୱିନ କୃଷ୍ଣ ଅଷ୍ଟମୀ ବା ମୂଳାଷ୍ଟମୀରେ ଏହି ଓଷା ପାଳନ କରାଯାଏ । ଶ୍ରୀମନ୍ଦିରରେ ଏହି ଦିନ ସକାଳ ଧୂପ ପରେ ଲକ୍ଷ୍ମୀ ଠାକୁରାଣୀ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ସାତ ପାହାଚ ଦ୍ୱାରଠାରେ ଥିବା ପାଲିଙ୍କିରେ ଲକ୍ଷ୍ମୀଙ୍କ ମନ୍ଦିରଠାରେ ଖଟ ଉପରେ ବିଜେ ହେବାପରେ ମହାଜନେ ମାଜଣାବନକଲାଗି କରିଥାଆନ୍ତି । ଅଳଙ୍କାର ଓ କର୍ପୂର ଲାଗି ହୋଇ ବେଶ ହୁଅନ୍ତି ।
(ପୂ.ଓ.ଭା. - ପୃ. ୩୮୦୮, ଶ୍ରୀ.ସ୍ୱ.- ପୃ. ୨୮) ।

**ଦୁଆରଘର ପଢ଼ିଆରୀ**-*ଦେ.ବି.*- ଏହି ସେବକ ସାହାଣମେଳା ସମୟରେ ଭକ୍ତ ଓ ଯାତ୍ରୀମାନଙ୍କୁ ଆକଟ ଓ ଆୟତ କରି ଦର୍ଶନ ନିମନ୍ତେ ମନ୍ଦିର ଭିତରକୁ ଛାଡ଼ନ୍ତି ।
(ପୁ.ବୋ.- ପୃ. ୨୨୦) ।

**ଦୁଆରକରଣ**-*ଦେ.ବି.*- ପ୍ରତ୍ୟେହ ଶ୍ରୀମନ୍ଦିର ଦ୍ୱାରମାନଙ୍କରେ ଶୃଙ୍ଖଳା ରକ୍ଷା କରିବା ସେବକ ।
(ପୁ.ବୋ.- ପୃ. ୨୨୦) ।

**ଦୁଆର ନାୟକ**-*ଦେ.ବି.*- ପ୍ରତିହାରୀ ସେବକ ବିଶେଷ । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ପୂଜା ଆରମ୍ଭରେ ଓ ଶେଷରେ ମଣୋହି ନିମନ୍ତେ ଟେରା ପକାଇବା ଓ ଟେରା ଫିଟାଇବା ଇତ୍ୟାଦି ସେବା କାର୍ଯ୍ୟ ସୂଚାରୁ ରୂପେ ସମ୍ପାଦନ କରନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୮/୧୯) ।

**ଦୁଆର ଫିଟା ନୀତି**-*ଦେ.ବି.*- ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ପ୍ରତ୍ୟହ ଉଷାକାଳ, ଭୋର ପାଞ୍ଚ ଘଟିକା ବା ତତ୍ ପୂର୍ବରୁ ଦୁଆର ଫିଟା ହେବାର ନିୟମ । ଦଶହରା ପର ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା, ଧନୁଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଓ ବିଶେଷ ନୀତି ଦିନମାନଙ୍କରେ ରାତ୍ର ପ୍ରହରେ ଥାଇ ଦୁଆର ଖୋଲା ହେବାର ନିୟମ ଅଛି । ଭୋରରୁ ପହରାବାଲା ଚାରିଆଡ଼େ ବୁଲି ଦେଖି ସାରିବା ପରେ ଚାରିଦ୍ୱାର କବାଟରେ ଥିବା ଚୋରା କବାଟମାନ ସେବକମାନଙ୍କ ଯିବା ଆସିବା ପାଇଁ ଖୋଲାଯାଏ, ତା'ପରେ ପ୍ରତିହାରି, ଭିତରଛ ମହାପାତ୍ର, ମୁଦୁଲି, ଅଖଣ୍ଡ ମେକାପ ଓ ପାଳିଆ ମେକାପ ଦୁଆର ଫିଟାଇବାକୁ ଆସନ୍ତି । ଏମାନେ ଭିତର ଦକ୍ଷିଣ ଦ୍ୱାର ନିକଟରେ ରହନ୍ତି । ଭିତରଛ ମହାପାତ୍ର ମନ୍ଦିରର ଭିତର ବେଢ଼ାକୁ ଆସିଲେ ବାହାର ବେଢ଼ାର ଚାରିଦୁଆର ସିଂହଦ୍ୱାର, ପଶ୍ଚିମଦ୍ୱାର, ଉତ୍ତରଦ୍ୱାର ଓ ଦକ୍ଷିଣ ଦ୍ୱାର ଖୋଲାଯାଏ । ଉପରୋକ୍ତ ପାଞ୍ଚ ଜଣ ସେବକ ଜୟବିଜୟ ଦ୍ୱାର ନିକଟକୁ ଯାଇ ସେହି ଦ୍ୱାରରେ ଦିଆଯାଇଥିବା ମୁଦ ଯାଞ୍ଚ କରନ୍ତି । ତା'ପରେ ମୁଦୁଲି ଚାବି ଆଣି ଦ୍ୱାର ଖୋଲିଲେ ଏମାନେ ଭିତରକୁ ଯାଆନ୍ତି । ଜୟବିଜୟ ଦ୍ୱାର ଭିତର ପାଖରୁ ବନ୍ଦ ହୁଏ, ଏହି ସେବକମାନେ ଭିତରେ ପ୍ରବେଶ କରି ଛାମୁ ଦୁଆର ବା କଳାହାଟ ଦୁଆରକୁ ଯାଇ ପୂର୍ବ ରାତ୍ରରେ ପଡ଼ିଥିବା ତାଲା ଓ ମୁଦ ଯାଞ୍ଚ କରନ୍ତି । ଏଥିପାଇଁ ପ୍ରତିହାରୀକୁ ଗୋଟିଏ ବଇଠା ଦିଆଯାଏ । ଯାଞ୍ଚ ପରେ ପ୍ରତିହାରି ମଣିମା ଡାକ ଦିଅନ୍ତି, ପରେ ଛାମୁ ଦୁଆର ଖୋଲାହୁଏ । ଅଖଣ୍ଡ ଓ ପାଳିଆ ମେକାପ

ବଇଠା ଧରି ଠାକୁରଙ୍କୁ ଦେଖନ୍ତି ଓ ନଅଟି ପିତଳ ବଇଠା ଜାଳନ୍ତି । ଜୟବିଜୟ ଦ୍ୱାର ଭିତର ପାଖରୁ ଅଙ୍କ ଖୋଲାଯାଏ, ଖଟ ଶେଯ ମେକାପ, ପାଳିଆ ସୁଆର ବଡ଼ୁ, ଗରାବଡ଼ୁ ଓ ଖୁଣ୍ଟିଆ ଭିତରକୁ ଯାଆନ୍ତି । ଖଟ ଶେଯ ମେକାପମାନେ ରତ୍ନପଲଙ୍କ ଉଠାଇ ପଲଙ୍କ ଘରକୁ ନିଅନ୍ତି । ଭିତର କାଠ ଅର୍ଗଳି ଯାହା ରାତ୍ରରେ ଖୋଲା ହୋଇଥାଏ ଲଗାହୁଏ ତାହା ଲାଗିଲା ପରେ ଜୟବିଜୟ ଦ୍ୱାର ଓ ଭିତର ଦକ୍ଷିଣ ଦ୍ୱାର ସମ୍ପୂର୍ଣ୍ଣ ରୂପେ ଖୋଲାହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧/୧୨, ଶ୍ରୀ.ଜି. - ପୃ. ୫୩) ।

**ଦୁଆରଫିଟା ସେବକ**-*ଦେ.ବି.*- ଶ୍ରୀଜଗନ୍ନାଥ ମନ୍ଦିରର ସେବକମାନଙ୍କ ମଧ୍ୟରୁ ପ୍ରତିହାରୀ, ଭିତରଛୁ ମହାପାତ୍ର, ମୁଦୁଲି ଅଖଣ୍ଡ ମେକାପ ଓ ପାଳିଆ ମେକାପକୁ ନେଇ ଏହି ଗୋଷ୍ଠୀ, ପ୍ରଥମେ ଦ୍ୱାର ଫିଟା ସମୟରେ ଉପସ୍ଥିତ ରୁହନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧) ।

**ଦୁର୍ଗା**-*ଦେ.ବି.*- ଆଦ୍ୟାଶକ୍ତି, ଭଗବତୀ, ପରମା ପ୍ରକୃତି । ସେ ପରାତ୍ପର ମହାବିଷ୍ଣୁସ୍ୱରୂପିଣୀ ଶକ୍ତି । ଶାରଦୀୟ ଦୁର୍ଗାଉତ୍ସବରେ ଦେବୀ ଦୁର୍ଗାମାଧବ ରୂପେ ପୂଜିତା ହୁଅନ୍ତି । ସେ ଦୁର୍ଗ ନାମକ ଅସୁରକୁ ମାରିଥିବାରୁ ଦୁର୍ଗା ନାମରେ ନାମିତ । ତାଙ୍କର ଅନ୍ୟରୂପ ଧୂମାବତୀ, ବଗଳା, ଅନ୍ନପୂର୍ଣ୍ଣା କପାଳେଶ୍ୱରୀ, ପାର୍ବତୀ, କାଳୀ, ଚଣ୍ଡୀ, କାଳିକା, କରାଳୀ, ବିମଳା, ଭଗବତୀ, ଜଗଦ୍ଧାତ୍ରୀ, ଶ୍ୟାମା । ସେ ମହିଷାସୁର, ରକ୍ତବୀର୍ଯ୍ୟ, ଶୁମ୍ଭ, ନିଶୁମ୍ଭ ଆଦି ଅସୁରମାନଙ୍କୁ ସଂହାର କରି ମାନବକୁଳକୁ ରକ୍ଷା କରିଥିଲେ । ପ୍ରଥମେ ରାଜା ସୁରଥ ଓ ପରେ ଶ୍ରୀରାମଚନ୍ଦ୍ର ପୃଥିବୀରେ ଦୁର୍ଗାପୂଜା କରିଥିଲେ । ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଦୁର୍ଗାପୂଜାକୁ ଶାରଦୀୟ ଦୁର୍ଗାପୂଜା କୁହାଯାଏ । ଚୈତ୍ର ଶୁକ୍ଳ ପ୍ରତିପଦଠାରୁ ଦଶମୀ ପର୍ଯ୍ୟନ୍ତ ପୂଜାକୁ ବାସନ୍ତିକ ଦୁର୍ଗାପୂଜା କୁହାଯାଏ । ଶ୍ରୀମନ୍ଦିରରେ ଦୁର୍ଗାମାଧବଙ୍କ ପୂଜା ସହିତ ବିମଳାଙ୍କ ନିକଟରେ ସ୍ୱତନ୍ତ୍ର ପୂଜା ହୋଇଥାଏ । ଶ୍ରୀମନ୍ଦିର ସିଂହଦ୍ୱାର ଗୁମୁଟ ଘରେ ଫଟେ ହନୁମାନଙ୍କ ଉପରେ ଦୁର୍ଗାଙ୍କ ଚିତ୍ର ପ୍ରତୀମା ବିଦ୍ୟମାନ । ଏତଦ୍ ବ୍ୟତୀତ ଦକ୍ଷିଣି ଘରୁ ଦୁର୍ଗା ବିଜେ ପ୍ରତୀମା ନନ୍ଦ ଉତ୍ସବରେ ବିଜୁଳି କନ୍ୟା ହୋଇଥାଆନ୍ତି ।
(ଓ.ସାଂ.ଶ. - ପୃ. ୧୭୬-୧୭୭, ପ୍ର.ଅ. - ପୃ. ୧୨୩୩, ପୂ.ଓ.ଭା. - ପୃ. ୩୮୨୨) ।

**ଦୁର୍ଗାପୂଜା**- ଶ୍ରୀମନ୍ଦିର ବେଢ଼ାରେ ଥିବା ବିମଳାଙ୍କୁ ଶାରଦୀୟ ଦୁର୍ଗା ପୂଜା ଅବସରରେ ଦୁର୍ଗା ରୂପେ ଷୋଳ ଦିନ ପର୍ଯ୍ୟନ୍ତ ବିଧି ପୂର୍ବକ ପୂଜା କରାଯାଏ । ଏହି ପୂଜାରେ ଦୁର୍ଗାମାଧବଙ୍କର ଯୁଗଳ ମୂର୍ତ୍ତି ବିମଳା ଦେବୀଙ୍କ ମନ୍ଦିରର ଖଟ ଉପରେ ବିଜେ କରନ୍ତି । ସେଠାରେ ବନ୍ଦାପନା କରାଯାଇ ବିମଳା ଦେବୀଙ୍କୁ ଶୀତଳ ଭୋଗ ଲାଗି କରାଯାଏ ।
(କ୍ଷେ.ସ.) ।

**ଦୁର୍ଗାମାଧବ**-*ସଂ.ବି.*- ଶାରଦୀୟ ଦୁର୍ଗୋତ୍ସବରେ ଏକତ୍ର ଉପାସିତ ଦୁର୍ଗା ଓ ମାଧବ । ଏହି ଉପାସନା ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ତିଥିରୁ ସେହିମାସ ଶୁକ୍ଳ ନବମୀ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ପାଳିତ ହୁଏ । ବିମଳାଙ୍କ ଷୋଳପୂଜାରେ ଦୁର୍ଗା ଓ ବାଳଶ୍ରୀ ପୁରୁଷୋତ୍ତମଙ୍କୁ ଦଶହରା ପର୍ଯ୍ୟନ୍ତ ଗୋଟିଏ ପ୍ରଭାରେ ରୁନ୍ଧା ହୁଏ । ପ୍ରଥମ ଆଠଦିନ ଦୁର୍ଗାମାଧବ ବିମଳାଙ୍କ ମନ୍ଦିରରେ ଓ ଅବଶିଷ୍ଟ ଦିନମାନ ଦୋଳମଣ୍ଡପ ସାହିର ନାରାୟଣୀ ମନ୍ଦିର (ଆଶ୍ୱିନ ଗୁଣ୍ଡିଚା ମଣ୍ଡପ)ରେ ବିଜେ ହୁଅନ୍ତି । ଦଶହରା ଦିନ ଦୁର୍ଗାମାଧବ ବୀରବେଶରେ ସଜ୍ଜିତ ମଦନମୋହନ ଓ ରାମକୃଷ୍ଣଙ୍କ ସହ ଦଶହରା ପଦା ବା ମହାଖଳାକୁ ବିଜେ କରନ୍ତି । ସେଠାରେ ନୀତି ବଢ଼ିଲେ ରୁନ୍ଧା ଫିଟି ମାଧବ ସିଂହାସନକୁ ଓ ଦୁର୍ଗାଭଣ୍ଡାରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. -ପୃ. ୯୯) ।

**ଦୁକୂଳ**-*ଦେ.ବି.*-ଶ୍ରୀଠାକୁରଙ୍କର ଶ୍ରୀଅଙ୍ଗରେ ଲାଗି ହେଉଥିବା ପାଟବସ୍ତ୍ର ।
(ଶ୍ରୀ.ଶ. - ପୃ. ୯୨) ।

**ଦୁଧମେଲାଣ**-*ଦେ.ବି.*- ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ବା ନବାଙ୍କ ପୂର୍ବଦିନ ପାଳିତ ହେଉଥିବା ଏକ ନୀତି । ଏହିଦିନ ରାମକୃଷ୍ଣ ଆଜ୍ଞାମାଳ ପାଇ ଜଗନ୍ନାଥଙ୍କଠାରେ ବିଭିନ୍ନ ସ୍ଥାନରୁ ଆସିଥିବା ଦୁଧ ଭାର ମେଳଣ ହେଲା ପରେ ନାଟମନ୍ଦିର ଆଗରେ ପରମେଶ୍ୱରଙ୍କ ପାଖରେ ତାହାକୁ ତପ୍ତ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୭) ।

**ଦ୍ୱିତୀଇନ୍ଦ୍ରଦ୍ୟୁମ୍ନ**-*ଦେ.ବି.*- ଭୋଇବଂଶୀରାଜା ପ୍ରଥମ ରାମଚନ୍ଦ୍ରଦେବ । ଏହି ରାଜା ଇନ୍ଦ୍ରଦ୍ୟୁମ୍ନ ନାମରେ ପରିଚିତ ଥିଲେ ।
(ମା.ପା. - ପୃ. ୪୪) ।

**ଦୂବ**-*ଦେ.ବି.*- ଲମ୍ବ ଗଣ୍ଠିଗଣ୍ଠିଆ ଘାସ । ଦୂବ, ବରକୋଳିପତ୍ର, ଅକ୍ଷତ ପ୍ରଭୃତି ହିନ୍ଦୁଙ୍କ ପୂଜାଦିରେ ବ୍ୟବହୃତ ହୁଏ । ବିଭିନ୍ନ ମଙ୍ଗଳ କର୍ମାଦିରେ ସଂକଳ୍ପ କରିବା ସମୟରେ ଦୂବ ବରକୋଳିପତ୍ର ଦରକାର ହୁଏ । ବିବାହ ବେଦୀରେ ବରକନ୍ୟାଙ୍କ ହସ୍ତରେ ଅଭିଆଡ଼ି ସୂତାରେ ଦୂବ ବନ୍ଧା ହୋଇ ସାତମଙ୍ଗଳା ପର୍ଯ୍ୟନ୍ତ ରହିବାର ବିଧି ଅଛି । ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ପର୍ବପର୍ବାଣି ବିଶେଷକରି ରଥଯାତ୍ରା ସମୟରେ ଟାହିଆ ନିର୍ମାଣରେ ଦୂବର ବ୍ୟବହାର କରାଯାଇଥାଏ ।
(ପୂ.ଓ.ଭା. - ପୃ. ୩୮୧୨, ଓ.ସା.ଶ. - ପୃ. ୧୭୭) ।

**ଦୁର୍ଦ୍ଧାଷ୍ଟମୀ**-*ଦେ.ବି.*- ଭାଦ୍ରମାସ ଶୁକ୍ଲାଷ୍ଟମୀ ବା ରାଧାଷ୍ଟମୀ । ଲୋକ ପ୍ରବାଦ ଅଛି ଯେ, ଯେଉଁ ସ୍ତ୍ରୀମାନେ ଏହି ବ୍ରତ ପାଳନ କରନ୍ତି ସେମାନଙ୍କର ସାତପୁରୁଷ ପର୍ଯ୍ୟନ୍ତ ସନ୍ତାନ ସନ୍ତତିମାନେ ଦୂବଘାସ ଭଳି ମାଡ଼ିଯାଆନ୍ତି । ଏହି ଦିନ ଆଜ୍ଞାମାଳା ଶ୍ରୀଜଗନ୍ନାଥଙ୍କ ଠାରୁ ଆସି ଶ୍ରୀଦେବୀଙ୍କ ଠାରେ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୪, ପୂ.ଓ.ଭା. - ପୃ. ୩୮୪୪) ।

**ଦୂର୍ବାକ୍ଷତ**-*ସଂ.ବି.*-ମଙ୍ଗଳ ଆଳତି ସମୟରେ ଶ୍ରୀଠାକୁରଙ୍କୁ ଲାଗି ହେଉଥିବା ଦୂବ ଓ ଅରୁଆ ଚାଉଳ ।

**ଦ୍ୟୂତକ୍ରୀଡ଼ା** -*ଦେ.ବି.*- ଶ୍ରୀମନ୍ଦିରରେ କୁମାର ପୂର୍ଣ୍ଣିମା ଦିନ ମଦନମୋହନ ମହାଲକ୍ଷ୍ମୀଙ୍କ ମଧ୍ୟରେ ହେଉଥିବା ପଶା ଖେଳ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦) ।

**ଦେଉଳକରଣ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ସକାଳ ଦ୍ୱାର ଫିଟା କାର୍ଯ୍ୟଠାରୁ ଆରମ୍ଭ କରି ରାତ୍ର ପହୁଡ଼ ପର୍ଯ୍ୟନ୍ତ ଯେତେ ନୀତି ହୁଏ ତାହା ଠିକ୍ ସମୟରେ ହେବା ଓ ନ ହେବାର ତଦନ୍ତ କରନ୍ତି । ଶ୍ରୀଜୀଉଙ୍କ ଚାଙ୍ଗଡ଼ା ଘର ଲୁଗାର ଆୟବ୍ୟୟ ଏବଂ ଭଣ୍ଡାରରେ ଥିବା ଅଳଙ୍କାରର ମରାମତି ଓ ସଫା କାର୍ଯ୍ୟର ଦାୟିତ୍ୱ ନିଅନ୍ତି । ଗଜପତି ମହାରାଜାଙ୍କ ଶ୍ରୀଜୀଉଙ୍କୁ ଦର୍ଶନ ଲାଗି ଆସିବା ସମୟରେ ତାଙ୍କ ସହିତ ରହି ଦର୍ଶନ ସୁବିଧା କରାନ୍ତି ଓ ଶ୍ରୀନଅରରେ ବିଜେ କରାଇ ଆସନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୧୪) ।

**ଦେଉଳ ପୁରୋହିତ**-*ଦେ.ବି.*- ଶ୍ରୀମନ୍ଦିର ପୁରୋହିତ । ଯେଉଁ ସେବକ ଶ୍ରୀମନ୍ଦିରରେ ପୂଜା ଉପାସନା ସହିତ ଠାକୁରଙ୍କ ରଥ ଅନୁକୂଳ, ରଥ ସଂସ୍କାର ଓ ଅଭିଷେକ ଇତ୍ୟାଦି କାର୍ଯ୍ୟ ସମ୍ପାଦନ କରନ୍ତି, ବିମଳାଙ୍କ ଷୋଡ଼ଶ ପୂଜା ତଥା ନବକଳେବର ସମୟରେ ନାନାବିଧ ହୋମଯଜ୍ଞାଦି ନୀତି ସମ୍ପନ୍ନ କରନ୍ତି । ସେ ପୁଷ୍ୟାଭିଷେକ ଘୃତାଭିଷେକ, ଜଳବିଜେ, ପୁରୁଷ ସୂକ୍ତଗାନ, ପ୍ରତ୍ୟହ ରୋଷହୋମ, ବିଜେ, ମଙ୍ଗଳାରୋପଣ ସମୟରେ ମହାପ୍ରଭୁଙ୍କ ବାଡ଼ରେ ପୁରୁଷସୂକ୍ତ, ଗୁରୁବାର ମାର୍ଜଣାରେ, ସହସ୍ରକୁମ୍ଭାଭିଷେକରେ କୁମ୍ଭାଧିବାସ, ପୁଷ୍ୟାଭିଷେକ, ଯାଗକର୍ମକୁ ଶ୍ରୋତ୍ରୀୟ ବ୍ରାହ୍ମଣ ଯୋଗାଣ, ରଥ, କାରୁଶାଳା, ଦୀପପିଣ୍ଡି, ବନଯାଗ ଆଦି ସମସ୍ତ ପ୍ରତିଷ୍ଠା, ନିତ୍ୟ ସ୍ୱସ୍ତ୍ୟୟନ ପାଠ ଆଦି କରନ୍ତି । ସମ୍ପ୍ରତି ଅକ୍ଷୟ ତୃତୀୟା ଦିନ ରଥ ଅନୁକୂଳ, ରଥଯାତ୍ରା ଦିନ ରଥ ପ୍ରତିଷ୍ଠା, ବାମନ ଜନ୍ମ ତିଥିରେ ପବିତ୍ରାଧିବାସ, ଶାରଦୀୟ ଷୋଳପୂଜାରେ ବିମଳାଙ୍କ ପୀଠରେ ପ୍ରଚାରକ

କାର୍ଯ୍ୟ, ପୁଷ୍ୟାଭିଷେକ ଓ ବନଯାଗରେ ଯୋଗଦାନ ଆଦି କାର୍ଯ୍ୟ କରନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୩୮) ।

**ଦେଉଳବାଛନ୍ଦ**-*ଦେ.ବି.*- ଦେବଦର୍ଶନାର୍ଥେ ମନ୍ଦିର ମଧ୍ୟକୁ ଯିବା ପାଇଁ ଅଟକ । କୌଣସି ଗର୍ହିତ କାର୍ଯ୍ୟକଲେ କର୍ମଚାରୀ ବା ସମାଜଚ୍ୟୁତ ବା ଅପରାଧୀ ବ୍ୟକ୍ତିକୁ ବା ସେବକକୁ ବିନାମନ୍ଦିରର କର୍ତ୍ତୃପକ୍ଷମାନଙ୍କ ଆଦେଶରେ ମନ୍ଦିରକୁ ପ୍ରବେଶ କରିବାକୁ ନିଷେଧ କରିବା ।
(ପୁ.ଓ.ଭା. - ପୃ. ୩୮୫) ।

**ଦେଉଳଶୋଧ**-*ଦେ.ବି.*- ନିର୍ଦ୍ଦିଷ୍ଟ ସମୟରେ ମନ୍ଦିରରେ ସର୍ବସାଧାରଣଙ୍କ ପ୍ରବେଶ ନିଷେଧ । ଶ୍ରୀ ଗଜପତିଙ୍କ ଶ୍ରୀବିଗ୍ରହ ଦର୍ଶନ ସମୟରେ ରାଣୀଙ୍କର ଗହଣ ବିଜେ କିମ୍ବା ବିଶିଷ୍ଟ ବ୍ୟକ୍ତି ବା ରାଷ୍ଟ୍ର ନାୟକଙ୍କ ଶ୍ରୀବିଗ୍ରହ ଦର୍ଶନ କାଳରେ ସାଧାରଣ ଭକ୍ତଙ୍କୁ ଦର୍ଶନ ବାରଣ କରାଯାଇ ମନ୍ଦିରକୁ ଶୋଧ କରାଯାଇଥାଏ ।
(ପୁ.ଓ.ଭା. - ପୃ. ୩୮୫) ।

**ଦେଉଳିଆ**-*ଦେ.ବି.*- ଦେଉଳ ପରି ଆକୃତି ବିଶିଷ୍ଟ, ଉଚ୍ଚ ଓ ଗୋଳିଆ ଦେଉଳ ସମ୍ବନ୍ଧୀୟ । ଦେଉଳରେ ଦେବପୂଜା ଆଦି କରି ଜୀବିକା ନିର୍ବାହ କରୁଥିବା ବ୍ୟକ୍ତି । ଦେବାଳୟର ସେବକ, ପଣ୍ଡା, ଏକ ଜାତୀୟ ବ୍ରାହ୍ମଣ । ଏମାନେ ଏକ ଜାତୀୟ ଅଗୋତ୍ରୀୟ ବ୍ରାହ୍ମଣ, ଦେବସେବା ଏମାନଙ୍କର ପ୍ରଧାନ କର୍ମ । ପଣ୍ଡା, ସୁଆର, ପୂଜାରୀ ବ୍ରାହ୍ମଣମାନେ ଏମାନଙ୍କ ସଙ୍ଗେ ଏକ ଜାତୀୟ ।
(ପୁ.ଓ.ଭା. - ପୃ. ୩୮୫୬) ।

**ଦେଉଳି ମଠ**-*ଦେ.ବି.*- ଶ୍ରୀମନ୍ଦିର ସେବକମାନେ ବନଯାଗ କର୍ମରେ ଭାଗ ନେଇ ଦାରୁ ଅନ୍ୱେଷଣରେ କାକଟପୁର ମଙ୍ଗଳାଙ୍କ ନିକଟକୁ ଯାତ୍ରା ସମୟରେ ସେମାନେ ଦେଉଳିମଠରେ ବିଶ୍ରାମ ନେଇ ମଙ୍ଗଳାଙ୍କ ଆଜ୍ଞା ପାଇଁ ଅପେକ୍ଷା କରିଥାଆନ୍ତି । ଏହାକୁ ସିଦ୍ଧ ମଠ ମଧ୍ୟ କୁହାଯାଏ । ପୂର୍ବେ ମା' ମଙ୍ଗଳା ଏହିଠାରେ ହିଁ ଅବସ୍ଥାନ କରୁଥିଲେ । ପ୍ରାଚୀ ନଦୀ କୂଳରେ କାକଟପୁରର ଅନତି ଦୂରରେ ଦେଉଳି ମଠ ଅବସ୍ଥିତ । ବନ୍ୟା ବାତ୍ୟା ଫଳରେ ମା' ମଙ୍ଗଳାଙ୍କ ପୀଠ ବନ୍ୟାରେ ଭାସିଗଲା । ବନ୍ୟା ପରେ ସେବକମାନ ଯେତେ ଖୋଜିଲେ ମଧ୍ୟ ମା'ଙ୍କ ପ୍ରତିମାକୁ ପାଇଲେ ନାହିଁ । କିଛି ଦିନ ପରେ ମା' ସ୍ୱପ୍ନାଦେଶରେ ନିଜର ଠିକଣା ଜଣାଇବାରୁ ସେବକମାନେ ମା'ଙ୍କ ପ୍ରତିମାକୁ ଖୋଜି ପାଇଲେ ଓ ରାଜା କାକଟପୁରରେ ମା'ଙ୍କ ପାଇଁ ମନ୍ଦିର ନିର୍ମାଣ କଲେ, କିନ୍ତୁ ଦେଉଳି ମଠ ମା'ଙ୍କର ଆଦି ପୀଠ ହୋଇଥିବାରୁ ନବକଳେବରରେ ବନଯାଗ ଯାତ୍ରୀ ପ୍ରଥମେ ଦେଉଳି ମଠରେ ଆଶ୍ରୟ ନିଅନ୍ତି ଓ ପ୍ରାଚୀ ନଦୀରେ ସ୍ନାନ କରି କାକଟପୁର ଆସି ମା' ମଙ୍ଗଳାଙ୍କ ପାଖରେ ମାଜଣା ଓ ପୂଜାର୍ଚ୍ଚନା କରିଥାନ୍ତି ।
(କ୍ଷେ.ସ.) ।

**ଦେଢ଼ଶୁର ଭାଇବୋହୂ କୂଅ**-*ଦେ.ବି.*- ଶ୍ରୀକ୍ଷେତ୍ର ବାଲି ସାହିର ବାଉଳି ମଠରେ ତଳସ୍ତର ପର୍ଯ୍ୟନ୍ତ ପ୍ରଶସ୍ତ ପାହାଚ ନିର୍ମିତ ଏକ କୂପ ।
(ପୁ.ବୋ. - ପୃ. ୨୨୧) ।

**ଦେବକୀ**-*ସଂ.ବି.(ସ୍ତ୍ରୀ)*- ଶ୍ରୀକୃଷ୍ଣଙ୍କ ଜନନୀ । କଂସଙ୍କର ଭଗିନୀ ଓ ବସୁଦେବଙ୍କର ପତ୍ନୀ । ଦେବକୀଙ୍କ ଅଷ୍ଟମ ଗର୍ଭରେ ଶ୍ରୀକୃଷ୍ଣ ଜାତ ହୋଇଥିଲେ ଓ ଯୋଗମାୟାଙ୍କ ନିର୍ଦ୍ଦେଶରେ ବସୁଦେବ ସେହି ରାତି ମଧ୍ୟରେ ତାଙ୍କୁ ଗୋପପୁରକୁ ନେଇ ନନ୍ଦଙ୍କ ପତ୍ନୀ ଯଶୋଦାଙ୍କ କୋଳରେ ରଖି ଯଶୋଦାଙ୍କ ଗର୍ଭଜାତ କନ୍ୟାଙ୍କୁ ଆଣି ଶ୍ରୀକୃଷ୍ଣଙ୍କ ଅଭୀଷ୍ଟ ଶଯ୍ୟାରେ ରଖିଥିଲେ । ଶ୍ରୀମନ୍ଦିରରେ ଶ୍ରୀକୃଷ୍ଣ ଜନ୍ମଲୀଳା ପାଳିତ ହେଲାବେଳେ ଜଣେ ମହାଜନ ଦେବକୀ ବେଶ ହୋଇ କୃଷ୍ଣ ଜନ୍ମ ବେଦନା ସହ୍ୟ କରନ୍ତି ।
( ଶ୍ରୀ.ସ୍ୱ. - ପୃ. ୮୯, ପୁ.ଓ.ଭା. - ପୃ. ୩୮୬୬) ।

**ଦେବଯାନ ମାର୍ଗ**- ଉତ୍ତରଦ୍ୱାରଠାରୁ କୋଇଲି ବୈକୁଣ୍ଠ ବ୍ରହ୍ମଧାମକୁ ଯୋଗ କରୁଥିବା ମାର୍ଗର ନାମ ।
(ମ.ନ. - ପୃ. ୮୦) ।

**ଦେବଦାସୀ**-*ସଂ.ବି.*- ଶ୍ରୀଜଗନ୍ନାଥଙ୍କ ଆଗରେ ନୃତ୍ୟାଦି କରିବା ବା ସେବାକାରିଣୀ ନର୍ତ୍ତକୀ, ମାହାରୀ । ଶ୍ରୀଜଗନ୍ନାଥଙ୍କ ମନ୍ଦିର ଓ ଦାକ୍ଷିଣାତ୍ୟ ମନ୍ଦିରମାନଙ୍କରେ ବୃତ୍ତି ଭୋଗକାରିଣୀ ଦେବଦାସୀମାନେ ଦେବତାଙ୍କ ଆଗରେ ନୃତ୍ୟଗୀତାଦି କରନ୍ତି ।
(ପୂ.ଓ.ଭା. - ପୃ. ୩୮୬୯) ।

**ଦେବଦୀପାବଳୀ ଅମାବାସ୍ୟା**-*ସଂ.ବି.*- ମାର୍ଗଶିର ଅମାବାସ୍ୟା ଦିନ ଶ୍ରୀମନ୍ଦିରରେ ଦୀପାବଳି ଉତ୍ସବ ପାଳିତ ହୁଏ । ମାର୍ଗଶିର ମାସର କୃଷ୍ଣ ଚତୁର୍ଦ୍ଦଶୀ, ଅମାବାସ୍ୟା ଓ ଶୁକ୍ଳ ପ୍ରତିପଦ, ଏହି ତିନିଦିନ ଦୀପଦାନ ଓ ପିତୃଶ୍ରାଦ୍ଧ ଦିଆଯାଉଥିବାରୁ ଏହି ଉତ୍ସବକୁ ଦେବଦୀପାବଳି କୁହାଯାଏ । ଏହି ତିନିଦିନରେ ଶ୍ରୀଜଗନ୍ନାଥ କୌଶଲ୍ୟା-ଦଶରଥ, ମତାନ୍ତରରେ ଅଦିତି-କାଶ୍ୟପ, ଦେବକୀ-ବସୁଦେବ ଓ ଇନ୍ଦ୍ରଦ୍ୟୁମ୍ନ-ଗୁଣ୍ଡିଚାଙ୍କୁ ଶ୍ରାଦ୍ଧ, ଦୀପ ଓ ପିଣ୍ଡଦାନ କରିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୦୨, ପୂ.ଓ.ଭା. - ପୃ. ୩୭୮୯, ଶ୍ରୀ.ଦ. - ପୃ. ୧୦୫) ।

**ଦେବସଭା ମଣ୍ଡପ**-*ଦେ.ବି.*- ମୁଖ୍ୟ ମନ୍ଦିରକୁ ଲାଗି ଉତ୍ତର ପାର୍ଶ୍ୱରେ ଛାତ ନ ଥିବା ଏକ ମଣ୍ଡପ । ପୂର୍ବେ ଏହି ସ୍ଥାନରେ ଝୁଲଣ ହେଉଥିଲା ।
(ପୁ.ବୋ. - ପୃ. ୨୨୧) ।

**ଦେବସ୍ନାନ ପୂର୍ଣ୍ଣିମା**-*ଦେ.ବି.*- ଜ୍ୟେଷ୍ଠ ପୂର୍ଣ୍ଣିମା । ଏହିଦିନ ଶ୍ରୀଠାକୁରମାନେ ସ୍ନାନ ମଣ୍ଡପକୁ ବିଜେ କରନ୍ତି ଓ ଶହେଆଠ ଗରା ଜଳ ଲାଗି ହୁଅନ୍ତି । ମଣ୍ଡପ ଉପରେ ଭୋଗ ଓ ରାଜନୀତି ସରିଲା ପରେ ହାତୀ ବେଶ କରାଯାଏ । ତା'ପରେ ଗୋଟିପହଣ୍ଡିରେ ବିଗ୍ରହମାନେ ଅଣସର ଘରକୁ ଯାଆନ୍ତି । ଦେବସ୍ନାନ ପୂର୍ଣ୍ଣିମାରେ ୧. ମଙ୍ଗଳାର୍ପଣ ଲାଗି ସାମଗ୍ରୀ- ଗଙ୍ଗାମାଟି, ଫଳ(ନଡ଼ିଆ) ଦୀପ, ଦୂର୍ବା, ପୁଷ୍ପ, ଗୋରଚନା, ଦର୍ପଣ, ଦହି, ଘୃତ, ଶ୍ୱେତ ସୋରିଷ, ଗନ୍ଧ, ବସ୍ତ୍ର, ଅଳଙ୍କାର । ୨. କଳସୀ ଶହେଆଠଟି, ୩. ଡୋର, ୪. ପରଖ, ୫. ଚନ୍ଦନ, କର୍ପୂର, କେଶର, ଚୁଆ, ୬. ନଡ଼ିଆ ଶହେଆଠ, କରିଆ ଶହେଆଠ, ୭. କର୍ପୂର ଜଳ, ୮. ବୋଇରାଣୀ ନୂଆଲୁଗା ଦଶ ମୂର୍ତ୍ତି, ୯. ଗଦି ପ୍ରସାଦ, ୧୦. ହାତୀବେଶର ସାଜସଜ୍ଜା, ୧୧. ମହନ୍ତ ଶାଢ଼ୀ, ୧୨. ଚୂନପାଣି ।
(ଶ୍ରୀ.ସ୍ୱ. - ପୃ. ୫୭) ।

**ଦେବସ୍ନାନ ମଣ୍ଡପ**-*ଦେ.ବି.*- ଶ୍ରୀମନ୍ଦିର ବାହାର ଆନନ୍ଦବଜାରର ପୂର୍ବଭାଗର ମଣ୍ଡପ । ଧଳା ବଉଳମାଳା ପଥରରେ ଏହା ନିର୍ମିତ । ଏହି ମଣ୍ଡପଟି ପୂର୍ବାଭିମୁଖୀ । ଏହାର ଲମ୍ବ ଓ ପ୍ରସ୍ଥ ପ୍ରତ୍ୟେକ ୭୫ ଫୁଟ, ଉଚ୍ଚତା ଦକ୍ଷିଣରେ ୬ଫୁଟ ୩ ଇଞ୍ଚ, ଉତ୍ତରରେ ୬ ଫୁଟ ୬ ଇଞ୍ଚ । ମଣ୍ଡପରେ ଚାରୋଟି ପାହାଚ ଅଛି । ପ୍ରଥମ ପାହାଚ ୩ ଫୁଟ ୫ ଇଞ୍ଚ, ଦ୍ୱିତୀୟ ପାହାଚ ୫ ଫୁଟ ୮ ଇଞ୍ଚ, ତୃତୀୟ ପାହାଚ ୩ ଫୁଟ, ଚତୁର୍ଥ ପାହାଚ - ୩ ଫୁଟ ୩ ଇଞ୍ଚ, ପଞ୍ଚମ ପାହାଚ ଉପରେ ଶ୍ରୀଜୀଉଙ୍କ ଆସ୍ଥାନ । ଏହା ଉପରେ ଅଛି କଳାମୁଗୁନି ପଥରରେ ତିଆରି ତିନିଗୋଟି ପିଣ୍ଡି । ଉଚ୍ଚତା ଏକଫୁଟ ବିଶିଷ୍ଟ । ଶ୍ରୀଜଗନ୍ନାଥଙ୍କ ପିଣ୍ଡିର ବ୍ୟାସ ୩ ଫୁଟ ୩ ଇଞ୍ଚ, ପରିଧି ୯ ଫୁଟ ୬ ଇଞ୍ଚ । ଶ୍ରୀବଳଭଦ୍ରଙ୍କ ପିଣ୍ଡିର ବ୍ୟାସ ୨ ଫୁଟ ୩.୫ ଇଞ୍ଚ, ପରିଧି ୭ ଫୁଟ ୩ ଇଞ୍ଚ । ଦେବୀ ସୁଭଦ୍ରାଙ୍କ ପିଣ୍ଡିର ବ୍ୟାସ ୨ ଫୁଟ, ପରିଧି ୬ ଫୁଟ ୫ ଇଞ୍ଚ । ଦେବସ୍ନାନ ପୂର୍ଣ୍ଣିମା ଦିନ ବିଗ୍ରହମାନେ ପହଣ୍ଡିରେ ଆସି ଏହି ମଣ୍ଡପରେ ସ୍ନାନ କରି ହାତୀବେଶ ପରେ ଅଣସର ଗୃହକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୬, ସ୍ନା.ଐ.- ପୃ. , ଶ୍ରୀ.ଜି. - ପୃ. ୨୩୫) ।

**ଦେବୋତ୍ତର**-*ସଂ.ବି.*- ବିଭିନ୍ନ ମନ୍ଦିରରେ ଦେବସେବା ପାଇଁ ଉଦ୍ଦିଷ୍ଟ ସମ୍ପତ୍ତି, ଦେବସେବାରେ ନିୟୋଜିତ ସମ୍ପତ୍ତି ।
(ପୂ.ଓ.ଭା. - ପୃ. ୩୮୭୮) ।

**ଦେବୋତ୍ତର ଆଇନ**-*ଦେ.ବି.*- ମଠ , ମନ୍ଦିର ଓ ଦେବସେବା ପରିଚାଳନା ପାଇଁ ଖଞ୍ଜା ସମ୍ପତ୍ତିର ତତ୍ତ୍ୱାବଧାନ ସମ୍ବନ୍ଧେ ସରକାର କରିଥିବା ଆଇନ । ଏହା ଭାରତ ସରକାରଙ୍କ

କାଉନସିଲ୍‌ର ୧୮୬୩ ସାଲର ୨୦ତମ ଆଇନ ଅଟେ ।
(ପୂ.ଓ.ଭା. - ପୃ. ୩୮୭୮) ।

**ଦେଶକରଣ**-*ଦେ.ବି.*- କରଣ ସେବକ ବିଶେଷ ।
(ପୁ.ବୋ. - ପୃ. ୨୨୧) ।

**ଦେଶଖଞ୍ଜା**-*ଦେ.ବି.*- ମାଦଳାପାଞ୍ଜିର ଏକ ଅଂଶ । ଜମିଜମା ଓ ରାଜସ୍ୱ ସମ୍ପର୍କିତ ପାଞ୍ଜି ।
(ପୁ.ବୋ. - ପୃ. ୨୨୧) ।

**ଦେଶପ୍ରଧାନ**-*ଦେ.ବି.*- ରାଜକର୍ମଚାରୀ ବିଶେଷ । ଶ୍ରୀମନ୍ଦିର ସେବକ ସମ୍ପ୍ରଦାୟର ଯେକୌଣସିଙ୍କ ଗୃହରେ ବ୍ରତୋପନୟନ ବା ବିବାହ ଆୟୋଜନ ହେଲେ ପରିମାଣିକ ସ୍ୱରୁପ କିଛି ଅର୍ଥ ଦେଶ ପ୍ରଧାନଙ୍କୁ ଦେବା ବିଧି ରହିଛି ।
(ପୁ.ବୋ. - ପୃ. ୨୨୧) ।

**ଦେଶୀ**-*ଦେ.ବି.*- ଯାତ୍ରୀ ବିଶେଷ । ବୈତରଣୀଠାରୁ ଋଷିକୁଲ୍ୟା ନଦୀ ମଧ୍ୟବର୍ତ୍ତୀ ଅଞ୍ଚଳରୁ ଆସୁଥିବା କରମୁକ୍ତ ଯାତ୍ରୀ ।
(ପୁ.ବୋ. - ପୃ. ୨୨୧) ।

**ଦେହ ପାଣି କରିବା**-*ଦେ.ବି.*- ପୂଜକମାନେ ଦେହ ବା ହାତ ଧୋଇବା ନୀତି ।
(ଶ୍ରୀ.ଶ. - ପୃ. ୯୨) ।

**ଦୋ'ପଟି**-*ଦେ.ବି.*- ଶ୍ରୀଠାକୁରଙ୍କର ଏକ ପ୍ରକାର ପରିଧେୟ/ବସ୍ତ୍ର ।
(ଶ୍ରୀ.ଶ. - ପୃ. ୯୨) ।

**ଦୋଳଗୋବିନ୍ଦ**-*ଦେ.ବି.*- ଶ୍ରୀକୃଷ୍ଣଙ୍କ ବିଗ୍ରହ । ଶ୍ରୀଜଗନ୍ନାଥ ବିଭିନ୍ନ ପର୍ବପର୍ବାଣିରେ ଭିନ୍ନ ଭିନ୍ନ ନାମରେ ନାମିତ ଯଥା- ଦୋଳରେ ଦୋଳଗୋବିନ୍ଦ, ଚାପରେ ମଧୁସୂଦନ ଓ ରଥରେ ବାମନ । ସେହି ଶ୍ରୀଜଗନ୍ନାଥ ଦୋଳ ଉତ୍ସବ ବେଳେ ଦୋଳି ଖେଳିବା ସକାଶେ ସଜ୍ଜିତ ଶ୍ରୀକୃଷ୍ଣଙ୍କ ବିଗ୍ରହ ଦୋଳଗୋବିନ୍ଦ ନାମରେ ପୂଜିତ ।
(ଓ.ସାଂ.ଶ. - ପୃ. ୧୭୯) ।

**ଦୋଳପୂର୍ଣ୍ଣିମା**-*ଦେ.ବି.*- ଫାଲଗୁନ ପୂର୍ଣ୍ଣିମା, ଦୋଳପୁନେଇଁ । ଏହିଦିନ ଶ୍ରୀମନ୍ଦିରରେ ଅବକାଶ ଓ ମଇଲମ ପରେ ନୂତନ ବୋଇରାଣି ଶାଢ଼ୀ ଖଣ୍ଡୁଆ ଲାଗି ହେବା ପରେ ତ୍ରିମୂର୍ତ୍ତିରେ ଗଭା ଲାଗି ହୁଏ । ବିମାନବଡୁମାନେ ବିମାନ କାନ୍ଧେଇ ଘଣ୍ଟ, ଛତା ଓ କାହାଳୀ ସହ ବଡ଼ଦେଉଳକୁ ସାତବେଢ଼ା ବୁଲିଲା ପରେ ଦୋଳବେଦୀଠାକୁ ଯାଆନ୍ତି । ବେଦୀ ଚାରିପଟେ ସାତ ଘେରା ବୁଲି, ବିମାନ ରଖିଲେ ମହାଜନେ ଠାକୁରଙ୍କୁ ହାତରେ ବିଜେ କରାଇ ବେଦୀରେ ବନ୍ଧା ହୋଇଥିବା ଦୋଳି ଚାରିପଟେ ଦୁଇ ଘେରା ବୁଲି ଦୋଳିରେ ବିଜେ କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୧-୧୧୨, ପୂ.ଓ.ଭା.- ପୃ. ୩୮୯୯) ।

**ଦୋଳବେଦୀ ନୀତି**-*ଦେ.ବି.*- ଏହି ନୀତି ସମୟରେ ଦୋଳଗୋବିନ୍ଦ ସିଂହାସନ ବିଜେ କରନ୍ତି । ଲକ୍ଷ୍ମୀ ସରସ୍ୱତୀଙ୍କ ସହ ସାତଘେରା ବେଢ଼ା ବୁଲିବା ପରେ ଦୋଳବେଦୀକୁ ବିଜେ କରନ୍ତି । ଏହିଦିନ ଠାକୁରଙ୍କ ରାଜବେଶ ହୋଇଥାଏ ।
(ଶ୍ରୀ.ସ୍ୱ. - ପୃ. ୨୭୮) ।

**ଦୋଳମଣ୍ଡପ**-*ଦେ.ବି.*- ମନ୍ଦିରର ବହିର୍ଦେଶରେ ଅଗ୍ନିକୋଣରେ ଥିବା ମଣ୍ଡପ । ଏହାକୁ ଦୋଳବେଦୀ କୁହାଯାଏ । ଦୋଳଉତ୍ସବରେ ଦୋଳଗୋବିନ୍ଦ, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସହିତ ଏହି ମଣ୍ଡପକୁ ବିଜେ କରନ୍ତି ଓ ଅବିର ଲାଗି ହୁଅନ୍ତି । ବୀରକିଶୋର ଦେବଙ୍କ କାଳରେ ଏହି ମଣ୍ଡପ ନିର୍ମିତ ହୋଇଥିବା ଜଣାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭୮) ।

**ଦୋଳଯାତ୍ରା**-*ସଂ.ବି.*- ଦୋଳ ଉତ୍ସବ ବା ଯାତ୍ରା ଫାଲଗୁନ ମାସ ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ଶ୍ରୀକୃଷ୍ଣ ଦୋଳିଖେଳ ଉତ୍ସବ । ଦୋଳଯାତ୍ରା ଦୁଇପ୍ରକାରେ- ରାଜ ଦୋଳ ଓ ପଞ୍ଚୁ ଦୋଳ । ଫଗୁଣ ଦଶମୀରୁ ପୂର୍ଣ୍ଣିମା ଯାଏ ରାଜଦୋଳ । ଫଗୁଣ ପୂର୍ଣ୍ଣିମାଠାରୁ ଚୈତ୍ର କୃଷ୍ଣ ପଞ୍ଚମୀ ପର୍ଯ୍ୟନ୍ତ ପଞ୍ଚୁଦୋଳ । ଏହି ସମୟରେ ଶ୍ରୀଜଗନ୍ନାଥଙ୍କ ବିଜେ ପ୍ରତିମା ମଦନମୋହନ, ଚାଚେରୀ ବେଶ ହୁଅନ୍ତି, ଚାଚେରୀ ଖେଳନ୍ତି ଓ ଶେଷରେ ରାଜବେଶ ହୁଅନ୍ତି । ମାଦଳାପାଞ୍ଜି ଅନୁଯାୟୀ ଗୌଡ଼ିଆ ଗୋବିନ୍ଦ ଦେବଙ୍କ ରାଜତ୍ୱକାଳର ଦ୍ୱିତୀୟ ଅଙ୍କରେ ଦୋଳବେଦୀ ଉପରେ ଦୋଳିରୁ ଖସିପଡିବାରୁ ବଡ଼ଠାକୁରଙ୍କର ଭୁଜ ଭାଙ୍ଗିଯିବାରୁ

୧୫୬୨ ମସିହାଠାରୁ ଶ୍ରୀଜଗନ୍ନାଥ ଦୋଳବେଦୀକୁ ନଯାଇ ତାଙ୍କର ବିଜେ ପ୍ରତିମା ଦୋଳଗୋବିନ୍ଦଙ୍କୁ ବିଜେ କରାଯାଉଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୦-୧୧୧, ପୂ.ଓ.ଭା. - ପୃ. ୩୮୩୩) ।

**ଦୋଷଡ଼ା**-*ଦେ.ବି.*- ଉତ୍ତରୀୟ ବସ୍ତ୍ର । ଏହା ଠାକୁରଙ୍କ ଶ୍ରୀଅଙ୍ଗରେ ଲାଗି ହୁଏ ।
(ଓ.ସାଂ.ଶ.- ପୃ. ୧୮୧) ।

**ଦୋସନ୍ଧି ପରିଛା**-*ଦେ.ବି.*- ମାହାରୀଙ୍କ ଉପରେ ଦୃଷ୍ଟି ରଖିବା ନିମନ୍ତେ ନିଯୁକ୍ତ ପରିଛା ଦୋସନ୍ଧି ପରିଛା ରୂପେ ପରିଚିତ ।
(ପୁ.ବୋ. - ପୃ. ୨୨୧) ।

**ଦୈନିକ ଆଳତି**-*ଦେ.ବି.*- ଶ୍ରୀମନ୍ଦିରର ପ୍ରତ୍ୟହ ଶ୍ରୀଜୀଉଙ୍କ ନିକଟରେ ତିନିଥର ଆଳତି ହୁଏ । ୧. ମଙ୍ଗଳ ଆଳତି, ୨. ସନ୍ଧ୍ୟା ଆଳତି, ୩. ବଡ଼ସିଂହାର ଆଳତି । ମଙ୍ଗଳ ଆଳତି ସମୟରେ ଦହି ଓ ଚାଉଳ ଚୂନା ମିଶି ପ୍ରସ୍ତୁତ ପିଠଉ ଆଳତି ପୁଷ୍ପାଳକଙ୍କ ଦ୍ୱାରା ସମାପନ ହୋଇଥାଏ । ସନ୍ଧ୍ୟା ଆଳତି ଓ ବଡ଼ସିଂହାର ଆଳତିରେ କର୍ପୂର ଆଳତି ଓ ଦୀପ ଆଳତି ପୂଜାପଣ୍ଡାଙ୍କ ଦ୍ୱାରା ସମାପନ ହୁଏ ।
(ଶ୍ରୀ.ଜି. - ପୃ. ୫୩) ।

**ଦୈନିକ ନୀତି**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଦୈନିକ ନୀତି ସକାଳୁ ଆରମ୍ଭ ହୋଇ ଦ୍ୱାରଫିଟା, ମଙ୍ଗଳ ଆଳତି, ମଇଲମ, ଅବକାଶ, ସାହାଣମେଲା, ବେଶଲାଗି, ରୋଷହୋମ, ସୂର୍ଯ୍ୟ ଓ ଦ୍ୱାରପାଳ ପୂଜା, ଗୋପାଳ ବଲ୍ଲଭ, ସକାଳ ଧୂପ, ମଇଲମ, ଭୋଗମଣ୍ଡପ ଧୂପ, ମଧ୍ୟାହ୍ନ ଧୂପ, ମଧ୍ୟାହ୍ନ ପହୁଡ଼, ସନ୍ଧ୍ୟା ଆଳତି, ସନ୍ଧ୍ୟାଧୂପ, ସାହାଣମେଲା, ମଇଲମ, ଚନ୍ଦନଲାଗି, ବଡ଼ସିଂହାର ବେଶ ଓ ଧୂପ, ପହୁଡ଼, ଖଟ ଶେଯ ଲାଗି, ଦେବଦାସୀ ସେବା ଆଦି ନୀତି ଛତିଶା ନିଯୋଗ ସେବକଙ୍କ ଦ୍ୱାରା କରାଯାଏ । ଅଧୁନା ଦେବଦାସୀ ସେବା ଶ୍ରୀମନ୍ଦିରରେ ବନ୍ଦ ହୋଇଯାଇଛି ।
(ଶ୍ରୀ.ଜି. - ପୃ. ୨୦୩) ।

**ଦୈନିକବେଶ**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରାତଃକାଳରେ ମହାପ୍ରଭୁ ପୂର୍ବଦିନ ବଡ଼ସିଂହାର ଶୟନ ସମୟରେ ଯେଉଁ ବେଶ ହୋଇଥାନ୍ତି, ସେହି ବେଶରେ ଭକ୍ତମାନଙ୍କୁ ଦେଖାଦିଅନ୍ତି । ସକାଳ ମଙ୍ଗଳ ଆଳତି ପରେ ଏହି ବେଶକୁ କାଢ଼ି ଦିଆଯାଏ । ମଇଲମ ହୁଏ । ବେଶ ଓଲାଗି ପରେ ଦୁଇଜଣ ସେବକ ଶ୍ରୀଜୀଉଙ୍କ ଆଗରେ ଖଣ୍ଡିଏ ଖଣ୍ଡୁଆ ପାଟ ଆବରଣ କରି ରଖନ୍ତି । ସେହି ଆବରଣ ମଧ୍ୟରେ ମହାପ୍ରଭୁ ସ୍ନାନ ବସ୍ତ୍ର ପରିଧାନ କରନ୍ତି । ଏହା ସ୍ନାନବସ୍ତ୍ର ଗାମୁଛା ଏବଂ ଉତ୍ତରୀୟ ସଦୃଶ । ବଳଭଦ୍ରଙ୍କର ୨ଟି, ଜଗନ୍ନାଥ-୨ଟି, ସୁଭଦ୍ରା-୧ଟି ଓ ସୁଦର୍ଶନ-୧ଟି ଗାମୁଛା । ଗାମୁଛା ପରିଧାନ ପରେ ଠାକୁରମାନଙ୍କର ଦନ୍ତମର୍ଜନ ଓ ସ୍ନାନ ସମାହିତ ହୁଏ । ସ୍ନାନ ପରେ ଠାକୁରମାନେ ବ୍ରହ୍ମପୁରୀ ପାଟ ବସ୍ତ୍ର ପରିଧାନ କରନ୍ତି । ଏହି ପାଟର ରଙ୍ଗ ଦିନ ଅନୁସାରେ ବଦଳିଥାଏ । ବଡ଼ଠାକୁର-୨ଟି, ଜଗନ୍ନଥଙ୍କର-୨ଟି, ସୁଭଦ୍ରା-୨ଟି ଓ ସୁଦର୍ଶନ-୧ଟି ପାଟ ପିନ୍ଧନ୍ତି । ଏହାବ୍ୟତୀତ ବଡ଼ଠାକୁର ଓ ମହାପ୍ରଭୁ ଗୋଟିଏ ଲେଖାଏ ଫୁଟା (ଖଣ୍ଡୁଆ) ପିନ୍ଧନ୍ତି । ଖଣ୍ଡୁଆ ପାଟ - ବଡ଼ଠାକୁର-୧, ମହାପ୍ରଭୁ-୧, ସୁଭଦ୍ରା-୧ ବାରଲାଗି ସଜ ପିନ୍ଧନ୍ତି ଏବଂ ବଡ଼ଠାକୁର-୧, ମହାପ୍ରଭୁ-୧, ଶ୍ରୀଦେବୀ-୧, ଭୂଦେବୀ-୧, ନୀଳମାଧବ-୧ ଲେଖାଏ ପହରଣ ବା ଏକ ପ୍ରକାର ଖଣ୍ଡୁଆ ପିନ୍ଧନ୍ତି । ଠାକୁରମାନଙ୍କ ଗୋପାଳବଲ୍ଲଭ ଓ ସକାଳ ଧୂପ ଶେଷଯାଏଁ ଏହି ବସ୍ତ୍ର ରହିଥାଏ ।
ସକାଳଧୂପ ପରେ ଠାକୁରମାନଙ୍କର ବସ୍ତ୍ର ଓଲାଗି ହୁଏ । ଠାକୁରମାନେ ଅନ୍ୟ ଏକ ପାଟ ଓ ଖଣ୍ଡୁଆ ପିନ୍ଧନ୍ତି । ମାତ୍ର ବାରଲାଗି ବସ୍ତ୍ର ଭିତରେ ରହିଥାଏ । ଏହାପରେ ମଧ୍ୟାହ୍ନଧୂପ । ସନ୍ଧ୍ୟା ଆଳତି ପରେ ପୁଣି ବସ୍ତ୍ର ଓଲାଗି ହୁଏ । (ମଇଲମ ହୁଏ) । ସନ୍ଧ୍ୟାଧୂପ ପୂର୍ବରୁ ଠାକୁରମାନଙ୍କୁ ଅନ୍ୟ ଏକ ପ୍ରକାର ବିଭିନ୍ନ ରଙ୍ଗ ପାଟ ବାର ଅନୁସାରେ ପିନ୍ଧାଯାଏ । ରବିବାର-

ନାଲି, ସୋମବାର-କଳାଛିଟା ମିଶା ଧଳା, ମଙ୍ଗଳବାର - ବାରପଟିଆ (ପାଞ୍ଚରଙ୍ଗମିଶା), ବୁଧବାର - ସବୁଜ, ଗୁରୁବାର - ହଳଦିଆ, ଶୁକ୍ରବାର - ଧଳା, ଶନିବାର - କଳାରଙ୍ଗର ପାଟ ପିନ୍ଧାଯାଏ । ସନ୍ଧ୍ୟାଧୂପ ଶେଷଯାଏଁ ଏହି ବସ୍ତ୍ର ରହିଥାଏ ।

ସନ୍ଧ୍ୟା ଧୂପ ପରେ ମଇଲମ ହୋଇ ତିନିଠାକୁରଙ୍କୁ ଖଣ୍ଡିଏ ଖଣ୍ଡିଏ ସୂତା ଗାମୁଛା ପିନ୍ଧେଇ ଚନ୍ଦନ ଲାଗି ହୁଏ । ଚନ୍ଦନ ଲାଗି ପରେ ବଡ଼ସିଂହାର ବେଶରେ ନାଲି ରଙ୍ଗର ଗୀତଗୋବିନ୍ଦ ପାଟ । (ବାରଲାଗି ପାଟ ଚଉଦ ଖଣ୍ଡ) ଠାକୁରମାନଙ୍କୁ ପିନ୍ଧେଇ ଦିଆଯାଏ । ବଡ଼ଠାକୁର-ଚାରି, ମହାପ୍ରଭୁ-ଚାରି, ସୁଭଦ୍ରା-ତିନି, ସୁଦର୍ଶନ, ଭୂଦେବୀ ଓ ଶ୍ରୀଦେବୀ ଖଣ୍ଡିଏ ଲେଖାଁଏ ପିନ୍ଧିଥାନ୍ତି । ନୀଳମାଧବ ଠାକୁରଙ୍କୁ ଅଲଗା ଏକ ବସ୍ତ୍ର ପିନ୍ଧାଯାଏ । ଶ୍ରୀବଳଭଦ୍ର, ମା' ସୁଭଦ୍ରା ଓ ଶ୍ରୀଜଗନ୍ନାଥଙ୍କ ଶିରରେ ଶିରିକାପଡ଼ା ପକାଯାଏ । ଏହା ଧଳା ରଙ୍ଗର । ଶିରି କାପଡାରେ ବଡ଼ଠାକୁରଙ୍କର ନୀଳ, ସୁଭଦ୍ରାଙ୍କର ନାଲି ଓ ଜଗନ୍ନାଥଙ୍କର ହଳଦିଆ ଧଡିଥାଏ । ଏହାବ୍ୟତୀତ ତିନିଠାକୁରଙ୍କର ଗୋଟିଏ ଗୋଟିଏ ଶୁକ୍ଳ ଚଦର ମଧ ଲାଗି କରାଯାଏ ।

ଗୁରୁବାର ଏକାଦଶୀ ପଡ଼ିଲେ ମଧ୍ୟାହ୍ନ ଧୂପ ପରେ ମଇଲମ ହୁଏ । ପିନ୍ଧିଥିବା ଖଣ୍ଡୁଆ ଥାଇ ସନ୍ଧ୍ୟା ଆଳତି ହୁଏ ଓ ତା'ପରେ ବେଶ ହୁଏ ।

ରାତ୍ରରେ ଶୃଙ୍ଗାର ବେଶ । ଶ୍ରୀଗୋପାଳାର୍ଚ୍ଚନ ପୂଜା ପଦ୍ଧତି ଅନୁସାରେ ମହାପ୍ରଭୁଙ୍କୁ ସକାଳ ବାଳଧୂପରେ ବାଳକୃଷ୍ଣ, ମଧ୍ୟାହ୍ନରେ ବୃନ୍ଦାବନର କୃଷ୍ଣ, ସନ୍ଧ୍ୟାରେ ଦ୍ୱାରକାଧିପତି କୃଷ୍ଣ, ରାତ୍ରରେ ରାସକ୍ରୀଡ଼ା, ପ୍ରବୀଣ ପ୍ରେମିକ ପୁରୁଷ କୃଷ୍ଣ ଭାବରେ ଧ୍ୟାନ କରାଯାଉଥିବାରୁ ସେ ଶୃଙ୍ଗାର ବେଶ ହୁଅନ୍ତି । ଏହି ବେଶ ପ୍ରାୟତଃ ଏକ ଫୁଲବେଶ । ଏହି ବେଶରେ ଲାଗି ହେଉଥିବା ବିଭିନ୍ନ ପୁଷ୍ପ ଅଳଙ୍କାର ମାନ ହେଲା - ଗଭା (ଫୁଲ ଓ ତୁଳସୀ ନିର୍ମିତ ମସ୍ତକରେ ଲାଗିହୁଏ), ଚନ୍ଦ୍ରିକା (ଗଭା ଉପରେ ଚନ୍ଦ୍ରିକା ରହେ), ତିଳକ (ବଳଭଦ୍ର ଓ ଜଗନ୍ନାଥଙ୍କର କପାଳ ଦେଶରେ ଲଗାଯାଏ), ଅଳକା (ବଳଭଦ୍ରଙ୍କର ଦଶଟି, ସୁଭଦ୍ରାଙ୍କର ଆଠଟି, ଜଗନ୍ନାଥଙ୍କର ବାରଟି ଅଳକା ଲାଗିହୁଏ । ଝୁମ୍ପା ଓ ଗୁଣା (ତିନିଠାକୁରଙ୍କ ନାକରେ ଲାଗିହୁଏ । ଅଧରମାଳ (ଗଳା ଦେଶରେ ପିନ୍ଧାଯାଏ), ପୁଷ୍ପକୁଣ୍ଡଳ (ଜଗନ୍ନାଥ ଓ ବଳଭଦ୍ରଙ୍କ କର୍ଣ୍ଣରେ, ସୁଭଦ୍ରାଙ୍କ ଶିରର ଦୁଇପାର୍ଶ୍ୱରେ), କରପଲ୍ଲବ (ଜଗନ୍ନାଥ ଓ ବଳଭଦ୍ରଙ୍କ ହାତରେ ଦୁଇଟି ଲେଖାଏଁ କରପଲ୍ଲବ ଲାଗିହୁଏ, ଯାହା ପାପୁଲି ଓ ଆଙ୍ଗୁଠି ପରି ଦେଖାଯାଏ । ନଖ ତୁଳସୀ (ନାଭିଦେଶରେ ଲାଗିହୁଏ), ଶ୍ରୀପୟର (ଭୁଜରୁ ପାଦଦେଶ ପର୍ଯ୍ୟନ୍ତ ପୁଷ୍ପଦ୍ୱାରା ଲାଗି ହୁଏ, ଚଉସରପଦକ (ବକ୍ଷଦେଶରେ) ଲାଗିହୁଏ । ଶ୍ରୀଦେବୀ, ଭୂଦେବୀ ତୁଳସୀ ବିହୀନ ସୁବାସିତ ଫୁଲ ମାଧବ ବିଗ୍ରହ ଗଭାରେ ତୁଳସୀ ଓ ହୃଦୟରେ ଫୁଲମାଳମାନ ଲାଗିହୁଏ । (ଶ୍ରୀ.ବେ.ର. - ପୃ. ୧୩) ।

●

# ଧ

**ଧଉଳା**-*ଦେ.ବି.*- ପିଷ୍ଟକ ବିଶେଷ । ଏକ ପ୍ରକାର ପିଠା । ଯାହାକି ଚାଉଳ ଚୂନା ଓ ଗୁଡ଼କୁ ପାଗ କରି ଖଣ୍ଡରେ ଗଡ଼ାଇ ଏହା ପ୍ରସ୍ତୁତ କରାଯାଇଥାଏ । କୋଠଭୋଗରେ ଏହା ଠାକୁରଙ୍କୁ ଲାଗି ହୁଏ । ଏତଦ୍ ବ୍ୟତୀତ ନନ୍ଦ ଉତ୍ସବ, ଗହ୍ମାପୂର୍ଣ୍ଣିମା, କାର୍ତ୍ତିକପୂର୍ଣ୍ଣିମା, ତୁଳା ସଂକ୍ରାନ୍ତି, ଦଶହରା, ଦେବସ୍ନାନ ପୂର୍ଣ୍ଣିମା, ରୁକ୍ମିଣୀ ହରଣ, ନୀଳାଦ୍ରିମହୋଦୟରେ ଚମ୍ପକ ଦ୍ୱାଦଶୀ, ନୃସିଂହଜନ୍ମ, ଅକ୍ଷୟତୃତୀୟା, ରାମଜନ୍ମ, ଭୀଷ୍ମଏକାଦଶୀ ପ୍ରଭୃତିରେ ମଧ୍ୟ ଠାକୁରଙ୍କୁ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୯୩, ୧୯୨, ୧୯୦) ।

**ଧଡ଼ିପଇସା**-*ଦେ.ବି.*- କେତେକ ନିର୍ଦ୍ଦିଷ୍ଟ ନୀତିରେ ମୁକ୍ତିମଣ୍ଡପର ବ୍ରାହ୍ମଣମାନେ ସମସ୍ତେ ଠିଆ ହୋଇ ଆଶୀର୍ବାଦ କଲାବେଳେ ଜଣ ଜଣ କରି ସମସ୍ତଙ୍କୁ ଦିଆଯାଉଥିବା ପ୍ରଣାମୀ ।
(ପୁ.ବୋ. - ପୃ. ୨୨୨) ।

**ଧଣ୍ଡାମାଳ**-*ଦେ.ବି.*- ବାରହାତ ଲମ୍ବର ଏକ ପୁଷ୍ପମାଳ, ଯାହା ଶ୍ରୀଜୀଉଙ୍କୁ ଲାଗି ହୁଏ ।
(ପୂ.ଓ.ଭା. - ପୃ. ୩୯୪୭, ଓ.ସାଂ.ଶ. - ପୃ. ୧୮୫) ।

**ଧଣ୍ଡିପ୍ରସାଦ**-*ଦେ.ବି.*- ସୂତାରେ ତିନୋଟି ତୁଳସୀ କାଠିର ମାଳ । ଫଗୁମୁଣା । ଫଗୁଦଶମୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ନୂଆ ଧଳାକନାର ମୁଣାରେ ଫଗୁ ରଖାଯାଇ ଠାକୁରଙ୍କ ଶ୍ରୀଅଙ୍ଗରେ ଲାଗି କରାଯାଏ ।
(କ୍ଷେ.ସ.) ।

**ଧନୁମୁଆଁ**-*ଦେ.ବି.*- ଗୁଡପାଗରେ ଲିଆ ଓ ନଡିଆ ଖଣ୍ଡ ମିଶାଯାଇ ମୁଆଁ ପ୍ରସ୍ତୁତ କରାଯାଏ ।
(ଶ୍ରୀ.ଜି. - ପୃ. ୨୧୪) ।

**ଧନୁସଂକ୍ରାନ୍ତି**-*ସଂ.ବି.*- ମାର୍ଗଶିର ମାସରେ ପଡୁଥିବା ସଂକ୍ରାନ୍ତି । ଶ୍ରୀମନ୍ଦିରରେ ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଠାକୁରଙ୍କୁ ପହିଲିଭୋଗ ଲାଗି ହୁଏ । ଏଥିରେ ବିରି ଓ ଘିଅ ମିଶ୍ରିତ ପିଠା ଭୋଗ ସହିତ ଠାକୁରଙ୍କୁ ଘୋଡ଼ ଓ ଅଳଙ୍କାର ଲାଗି କରାଯାଏ । ପଞ୍ଚୋପଚାର ପୂଜା, ଗହମ ଓ ବିରିର ଘୃତପାକ ପିଠା ଭୋଗ ହୁଏ । ଧନୁ ସଂକ୍ରାନ୍ତିରେ ଧନୁ ମୁଆଁ ଭୋଗ ହୋଇ ପହିଲି ଧୂପ ପରେ ସାହାଣମେଲା ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୨) ।

**ଧର୍ମ**-*ଦେ.ବି.*- ଯାହା ସଂସାରକୁ ଧାରଣ କରେ, ଲୋକମାନଙ୍କୁ ଯାହା ପୋଷଣ କରେ, ସତ୍କର୍ମ, ଭାଗ୍ୟ, ସ୍ୱୀକୃତ ଆଚରଣ, ଶାସ୍ତ୍ର ବିହିତ ଆଚାର, ଯୁଧିଷ୍ଠିର, ବିଷ୍ଣୁ, ଧର୍ମଦେବତା, ସୂର୍ଯ୍ୟଦେବତା । ଧର୍ମର ମୂଳଭିତ୍ତି ଈଶ୍ୱର ବିଶ୍ୱାସ । ସତ୍ସଙ୍ଗ ହିଁ ଧର୍ମ । ମନୁଷ୍ୟର ଯାହା କର୍ତ୍ତବ୍ୟ ତାହାକୁ ଯଥାର୍ଥ ଭାବେ ସମ୍ପାଦନ କରିବାକୁ ଧର୍ମ କୁହାଯାଏ । କେହି କେହି କୁହନ୍ତି ମହାଜନ ବା ମହାପୁରୁଷଙ୍କ ପଥ ଯାହା ବହୁକାଳରୁ ଦେଶାଚାର ଓ ଲୋକାଚାର ରୂପେ ଚଳିଆସିଛି, ତାହାହିଁ ପାଳନୀୟ ଓ ଧର୍ମ । ମନୁଷ୍ୟର ଯାହା କର୍ତ୍ତବ୍ୟ, ତାହାର ସମ୍ପାଦନ ହିଁ ଧର୍ମ । ମନର ଯେଉଁ ପ୍ରକୃତି ଦ୍ୱାରା ବିଶ୍ୱବିଧାତା ପରମାତ୍ମାଙ୍କ ପ୍ରତି ଭକ୍ତି ଜନ୍ମେ ତାହାହିଁ ଧର୍ମ । ଶ୍ରୀଜଗନ୍ନାଥ ଚେତନାକୁ କେହି କେହି ଶ୍ରୀଜଗନ୍ନାଥ ଧର୍ମ ବୋଲି କହିଥାନ୍ତି । ହିନ୍ଦୁ ଶାସ୍ତ୍ର ମନୁସ୍ମୃତିରେ ଧର୍ମର ଦଶଗୋଟି ଚିହ୍ନ ବା ଲକ୍ଷଣ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଛି । ସେଗୁଡ଼ିକ ହେଲା- ୧. ଧୃତି, ୨. କ୍ଷମା, ୩. ଦମ, ୪. ଶୌଚ, ୫. ଧୀ, ୬. ବିଦ୍ୟା, ୭. ସତ୍ୟ, ୮. ଅସ୍ତେୟ, ୯. ଅକ୍ରୋଧ, ୧୦. ଇନ୍ଦ୍ରିୟ ନିଗ୍ରହ ।
(ପୂ.ଓ.ଭା. - ପୃ. ୩୯୭୪, ୩୯୮୭) ।

**ଧର୍ମଘଟ**-*ଦେ.ବି.*- ବୈଶାଖ ମାସର ପ୍ରତ୍ୟହ ଦାତବ୍ୟ ଜଳପୂର୍ଣ୍ଣ କଳସ । ପଣାସଂକ୍ରାନ୍ତିଠାରୁ ଏକମାସ ପର୍ଯ୍ୟନ୍ତ ତୁଳସୀ ଗଛ ଉପରେ ଜଳଧାରା ଦେବା ନିମନ୍ତେ ଯେଉଁ ସଚ୍ଛିଦ୍ର କଳସ ଟଙ୍ଗାଯାଏ ।
(ପ୍ର.ଅ.- ପୃ. ୧୩୧୨, ପୂ.ଓ.ଭା. - ପୃ. ୩୯୭୭) ।

**ଧର୍ମଜ୍ଞାନ**-*ସଂ. ବି.*- ଧର୍ମ ବିଷୟକ ଅବବୋଧ । ଧର୍ମ ଅଧର୍ମ ସମ୍ବନ୍ଧୀୟ ଜ୍ଞାନ ।
(ଓ.ସାଂ.ଶ. - ପୃ. ୧୮୫) ।

**ଧ୍ୱଜାପତାକା ବିକ୍ରି**-*ଦେ.ବି.*- ଦେଉଳ କରଣ ଦେଖାଇବା ପୁରୁଣା ହୁକୁମନାମା ମୁତାବକ ଧ୍ୱଜା ବିକ୍ରୟ କରିବା ପୂର୍ବରୁ ସମସ୍ତ ଦର୍ଜୀଙ୍କର ଥିଲା । ବର୍ତ୍ତମାନ ରାଜାଙ୍କ ଲିଖିତ ଆଦେଶ ମୁତାବକ ଏହି ସେବା କେବଳ ସର୍ଦ୍ଦାରମାନେ ହିଁ କରିଥାଆନ୍ତି । ଶ୍ରୀମନ୍ଦିରରେ ଯାବତୀୟ ସିଲାଇ କାମ ଏହିମାନେ କରନ୍ତି ।
(ଶ୍ରୀ.ସ୍ୱ. ୩ୟ - ପୃ. ୭୪/୭୫) ।

**ଧ୍ୱଜପୂଜା**-*ସଂ.ବି.*- ଶ୍ରୀକ୍ଷେତ୍ରରେ ରଥଯାତ୍ରା ଦିନଠାରୁ ଠାକୁର ରଥରୁ ଓହ୍ଲାଇବା ଯାଏଁ ପୁଣି ଶ୍ରୀଗୁଣ୍ଡିଚା ମଣ୍ଡପରେ ଥିବାବେଳେ ପ୍ରତ୍ୟହ ରଥଗୁଡ଼ିକର ଧ୍ୱଜ ନିମନ୍ତେ କରାଯାଉଥିବା ଭୋଗ । ଠାକୁରଙ୍କୁ ଶୁଖିଲା ଭୋଗ ହେଉଥିଲେ ଧ୍ୱଜପୂଜାକୁ ମଧ ଶୁଖିଲା ଭୋଗ ଦିଆଯାଏ । ଗୁଣ୍ଡିଚା ଘରେ ଅନ୍ନ ଭୋଗ ହେଉଥିବା ଦିନମାନଙ୍କରେ ଓଳିଏ ଅନ୍ନ ଧ୍ୱଜପୂଜାରେ ଭୋଗ ହୁଏ । ବଳଭଦ୍ରଙ୍କ ରଥର ଲାଂଗୁଧ୍ୱଜ, ସୁଭଦ୍ରାଙ୍କ ରଥର ପଦ୍ମଧ୍ୱଜ ଓ ଶ୍ରୀଜଗନ୍ନାଥ ରଥର ତାର୍କ୍ଷ୍ୟଧ୍ୱଜ ପୂଜା ପାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୯) ।

**ଧ୍ୱଜାକରଣ**-*ଦେ.ବି.*- କେହି ଯାତ୍ରୀ ଧ୍ୱଜା ବାନ୍ଧିବାକୁ ଚାହିଁଲେ ତାହାଠାରୁ ପାଉଣା ରଖି ଦେଉଳ କରଣଙ୍କ ମାଧ୍ୟମରେ ଚୂନରା ଦ୍ୱାରା ଧ୍ୱଜା ବନ୍ଧାଇ ଦିଅନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୦୩) ।

**ଧ୍ୱଜାଧରା ସେବକ**-*ଦେ.ବି.*- ପତାକାଧାରୀ ସେବକ । ଶ୍ରୀଜଗନ୍ନାଥଙ୍କ ମଣୋହି ବେଳେ ତାଳଧ୍ୱଜ ଧରିବା ସେବକ ।
(ଉ.ଇ.ଅ.ଅ. - ପୃ. ୩୮୫) ।

**ଧାଡ଼ିପହଣ୍ଡି**-*ଦେ.ବି.*- ଶ୍ରୀମନ୍ଦିରର ବିଗ୍ରହମାନେ ଯେତେବେଳେ ବାହାରକୁ ଆସନ୍ତି ସେତେବେଳେ ଧାଡି ପହଣ୍ଡିରେ ଆସନ୍ତି । ଠାକୁରମାନେ ଜଣକ ପରେ ଜଣେ ଏକକାଳୀନ ବିଜେ କଲେ ତାକୁ ଧାଡ଼ି ପହଣ୍ଡି କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୫୭) ।

**ଧାନକୁଟା ଘର**-*ଦେ.ବି.*- ଶ୍ରୀମନ୍ଦିର ବାହାର ବେଢ଼ାରେ ଥିବା ଏହି ଘରେ ଶ୍ରୀଜୀଉଙ୍କ ଧାନ କୁଟାଯାଏ । ବର୍ତ୍ତମାନ କିଛି ହେଉନାହିଁ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭୩) ।

**ଧାନଘର**-*ଦେ.ବି.*- ଶ୍ରୀମନ୍ଦିରରେ ଏକଦା ଧାନ ଗଚ୍ଛିତ ରହୁଥିବା ଘର । ଧାନ ଅମାର ବା ଧାନକୋଠି ଘର । ଆଜିକାଲି କିଛି ଦରକାରରେ ଆସୁନାହିଁ । ଏହା ଭଗ୍ନ ଅବସ୍ଥାରେ ଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭) ।

**ଧାନଘର ଜଗିଆ ପାଇକ**-*ଦେ.ବି.*- ଧାନ ଘରର ଜଗୁଆଳି ।
(ପୁ.ବୋ. - ପୃ. ୨୨୨) ।

**ଧାନ ମାଣିକା**-*ଦେ.ବି.*- ମାର୍ଗଶିର ମାସ ବା ଧାନମାଣିକା ଗୁରୁବାର ନାମରେ ପରିଚିତ ।
(ପୂ.ଓ.ଭା. - ପୃ. ୪୦୦୬, ଓ.ସାଂ.ଶ. - ପୃ. ୧୮୬) ।

**ଧୁକୁଧୁକିଆ**-*ଦେ.ବି.*- ଶ୍ରୀଜୀଉଙ୍କର ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ. - ପୃ. ୯୪) ।

**ଧୁକୁଡ଼ିକନ୍ୟା**-*ଦେ.ବି.*- ଶ୍ରୀମନ୍ଦିରରେ ଧୁକୁଡ଼ି ଦ୍ୱାର ଦେଇ ପ୍ରବେଶ କଲାବେଳେ ସମ୍ମୁଖରେ ଦୃଷ୍ଟିଗୋଚର ହେଉଥିବା ନାରୀମୂର୍ତ୍ତି ।
(ପୁ.ବୋ. - ପୃ. ୨୨୨) ।

**ଧୁକୁଡ଼ିଦ୍ୱାର**-*ଦେ.ବି.*- ଶ୍ରୀମନ୍ଦିରର ଭିତର କାଠ ବାଡ଼ର ବାମ ପାର୍ଶ୍ୱର ବଡ଼ କବାଟ ତଳ ଆଡ଼କୁ

ଥିବା ଛୋଟ କବାଟ ବା ଚୋରି କବାଟ, କାନ୍ଥରେ ଥିବା ଛୋଟ ଗଳି କବାଟ ।
(ଶ୍ରୀ.ସ୍ୱ. ୧ମ - ପୃ. ୧୫୪) ।

**ଧୁକୁଡ଼ିଦ୍ୱାର ପଡ଼ିହାରୀ**-*ଦେ.ବି.*- ଧୁକୁଡ଼ି ଦ୍ୱାର ଜଗୁଥିବା ସେବକ । ବଲ୍ଲଭଠାରୁ ମଧ୍ୟାହ୍ନଧୂପ ପର୍ଯ୍ୟନ୍ତ ଜଗି ଟେରା ବାନ୍ଧୁଥିବା ପଡ଼ିହାରୀ । ଧୂପ ପାଇଁ, ଚନ୍ଦନ ବିଜେ ପାଇଁ ସେବକଙ୍କୁ ଡାକିବା କାର୍ଯ୍ୟ ମଧ କରନ୍ତି । ଗୋପାଳବଲ୍ଲଭଠାରୁ ଏହାଙ୍କ ସେବା ଆରମ୍ଭ ହୋଇ ମଧ୍ୟାହ୍ନ ଧୂପରେ ସରିଥାଏ । ଏହି ସେବକ ସମସ୍ତେ ଧୁକୁଡ଼ି ଦ୍ୱାର ପାଖେ ଉପସ୍ଥିତ ରହି ଟେରା ବାନ୍ଧିବା ଓ ଦ୍ୱାର ଜଗିବା କାର୍ଯ୍ୟ କରିଥାନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୫୪) ।

**ଧୂପ**-*ସଂ.ବି.*- ଅଗ୍ନିରେ ଝୁଣା ପକାଇବା, ନିର୍ଯ୍ୟାସ ବା ଘୃତ, ପରାଗ ବା ଚୂର୍ଣ୍ଣ, କାଷ୍ଠ ବା ଅଗୁରୁ ଆଦି ଗନ୍ଧ ବା କସ୍ତୁରୀ ଆଦି ଭେଦରେ ଧୂପ ଅନେକ ପ୍ରକାର । ପଞ୍ଚାଙ୍ଗ ଧୂପ - ଚନ୍ଦନ, କୁଙ୍କୁମ, କର୍ପୂର, ଅଗୁରୁ, ଗୁଗଗୁଳ ଓ ଘୃତଯୁକ୍ତ ହୋଇ ପ୍ରସ୍ତୁତ ହୁଏ ।
ଷଡଙ୍ଗ ଧୂପ- ଚନ୍ଦନ, ଉଶୀର, ଗୁଗୁଳ, ଅଗୁରୁ, ଶର୍କରା ଓ ମଧୁ ସହ ଘୃତ ମିଶ୍ରିତ ହୋଇଥାଏ ।
ଅଷ୍ଟାଙ୍ଗ ଧୂପ- ପଞ୍ଚାଙ୍ଗ ସହ ତେଜପତ୍ର, ସୁଗନ୍ଧବାଳା ଓ ଘୃତମିଶି ଏହା ପ୍ରସ୍ତୁତ ହୁଏ ।
ଦଶାଙ୍ଗ ଧୂପ- ମଧୁ, ମୁସୁଳ, ଘୃତ, ଗନ୍ଧକ, ଗୁଗୁଳ, ଅଗୁରୁ, ଶୈଳଜ, ସରଳ, ସିହ୍ଲକ, (ଶିଳାରସ) ଓ ଶ୍ୱେତ ସର୍ପପର ମିଶ୍ରଣରେ ପ୍ରସ୍ତୁତ ।
ଷୋଡ଼ଶାଙ୍ଗ ଧୂପ- ମୁସ୍ତକ, ଦେବଦାରୁ, ଏଳା, ମୁରାମାଂସୀ ଏବଂ ଦ୍ୱାଦଶାଙ୍ଗ ଧୂପ ଉପକରଣମାନ ଘୃତରେ ମିଶ୍ରିତ ହୋଇଥାଏ । ସାଧାରଣତଃ ଲୋକେ ଝୁଣା, ଗୁଗୁଳ ଓ ଘିଅରେ ଦେବତାଙ୍କ ଆଗରେ ଧୂପ ଦିଅନ୍ତି । ଭୂତପ୍ରେତାଦି ଛଡ଼ାଇବା ନିମନ୍ତେ ହଳଦୀ, ଅଡୁଆବାଳ ଓ ଜନାର୍ଦ୍ଦନ ଧୂପାଦିରେ ଧୂପ ଦିଆଯାଏ ।
ଧୂପ ଦେବାର୍ଚ୍ଚନର ଗୋଟିଏ ପ୍ରଧାନ ଅଙ୍ଗ । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ପୂଜା ଓ ଭୋଗକୁ ଧୂପ ବୋଲି ଗଣାଯାଏ । ଜଗନ୍ନାଥଙ୍କର ତିନୋଟି ଧୂପ ହେବାର ବିଧି ରହିଛି । ସେଗୁଡ଼ିକ ହେଲା- ସକାଳ ଧୂପ, ଦ୍ୱିପ୍ରହର ବା ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟା ବା ସଞ୍ଜଧୂପ । ଭୋଗମଣ୍ଡପ ଓ ବଡ଼ସିଂହାରକୁ ଧୂପ ବୋଲି ଗଣନା କରନ୍ତି । ଯେଉଁ ଧୂପରେ ଷୋଡ଼ଶ ଉପଚାରର ପୂଜା ହୁଏ, ତାହା ଧୂପ ମଧରେ ଗଣା ହୁଏ । ଧୂପ ଲାଗୁଥିବା ବେଳେ ଚନ୍ଦନ ଅର୍ଗଳିଠାରେ ରହି ଯାତ୍ରୀମାନେ ସେହି ସମୟରେ ଶ୍ରୀଜୀଉଙ୍କ ଦର୍ଶନ କରିପାରନ୍ତି ନାହିଁ ।
(ପୂ.ଓ.ଭା. - ପୃ. ୪୦୩୩) ।

**ଧୂପ ଉଠିବା**-*ଦେ.ବି.*- ଶ୍ରୀମନ୍ଦିରରେ ଧୂପ ଭୋଗ ପୂଜା ଆରମ୍ଭ ହେବାକୁ ଧୂପ ଉଠିବା କୁହାଯାଏ ଓ ସେହିପରି ଭୋଗ ସରିବାକୁ ଧୂପ ବଢ଼ିବା କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୨୦) ।

**ଧୂଳିଆ ଗୁଣ୍ଡିଚା**-*ଦେ.ବି.*- ଯେଉଁ ଗୁଣ୍ଡିଚା ବା ରଥଯାତ୍ରା ସମୟରେ ଧୂଳି ଉଡୁଥାଏ ଅର୍ଥାତ୍ ବର୍ଷା ହେଉ ନ ଥାଏ ବରଂ ପ୍ରଚଣ୍ଡ ଖରାରେ ପବନରେ ଧୂଳି ଉଡୁଥାଏ ।
(ପୂ.ଓ.ଭା. - ପୃ. ୪୦୪୧) ।

**ଧୂଳିଆ ଗୁମାସ୍ତା**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଯାତ୍ରୀ ଗୁମାସ୍ତା ବିଶେଷ । ଶ୍ରୀକ୍ଷେତ୍ରକୁ ଆସୁଥିବା ଯାତ୍ରୀଙ୍କୁ ବଡଦାଣ୍ଡରୁ ତାଙ୍କ ପଛେ ପଛେ ଯାଇ ଦର୍ଶନ କରାଇବା ଲାଗି ପ୍ରଲୋଭନ ଦେଖାଉଥିବା ପଣ୍ଡା ।
(ପୁ.ବୋ. - ପୃ. ୧୨୭) ।

**ଧୂଳିଆ ଯାତ୍ରୀ**-*ଦେ.ବି.*- ଯେଉଁ ଯାତ୍ରୀ ନିଜ ପଣ୍ଡା ଛଡ଼ା ଅନ୍ୟ ପଣ୍ଡା ବା ଗୁମାସ୍ତାଙ୍କ ସଙ୍ଗେ ଦେବଦର୍ଶନାଦି କରନ୍ତି ।
(ପ୍ର.ଅ. - ପୃ. ୧୨୭, ପ୍ର.ଅ. ୨ୟ - ପୃ. ୧୩୩୮) ।

**ଧେନୁକାସୁର ବଧ**-*ଦେ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣ ଏକାଦଶୀ ସନ୍ଧ୍ୟା ଧୂପ ପରେ ଦକ୍ଷିଣ ଘରୁ

ମଦନମୋହନ ଭିତରକୁ ବିଜେ କରନ୍ତି । ପଣ୍ଡା ଆଜ୍ଞାମାଳ ଦେଲା ଉତ୍ତାରେ ମହାଜନେ ହାତରେ ବିଜେ ହୋଇ ଜଗମୋହନ ଖଟ ଉପରେ ଉପବେସନ କରାନ୍ତି । ଏଠାରେ କୁଣ୍ଡେଇବେଣ୍ଟ ସାହି ଲୋକେ 'ଧେନୁକାସୁର ବଧ' ଲୀଳା ସମ୍ପାଦନ କରନ୍ତି । ଏହାପରେ ଭୋଗ ଲାଗି ବନ୍ଦାପନା ପରେ ଠାକୁର ଦକ୍ଷିଣିଘରକୁ ବିଜେ କରନ୍ତି । କୃଷ୍ଣାବତାରରେ ଗୋପଲୀଳା କ୍ରମେ କୃଷ୍ଣ ଧେନୁକାସୁରକୁ ବଧ କରିଥିବା ପ୍ରସଂଗ ଏଠାରେ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୨) ।

**ଧୋବାବଡୁ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଲୁଗାଧୁଆ ସେବା କରିବା ବ୍ରାହ୍ମଣ ସେବକ । ସେ ପ୍ରତ୍ୟହ ମଙ୍ଗଳ ଆଳତି ପୂର୍ବରୁ ବଟ ଗଣେଶ ମନ୍ଦିରସ୍ଥ କୁଣ୍ଡରେ ପାଣି ଭରନ୍ତି । ଅବକାଶ, ମଇଲମ ପରେ ଚାଙ୍ଗଡ଼ା ମେକାପ ମଇଲମ ହୋଇଥିବା ତଡ଼ପ ଉତୁରୀମାନ ଭଣ୍ଡାର ଦ୍ୱାରରେ ରଖନ୍ତି । ଏହି ସେବକ ତାହା ଆଣି ବଟ ଗଣେଶ ମନ୍ଦିର ପାଖ କୁଣ୍ଡରେ ଧୋଇ ଶୁଖାଇ ସେଦିନ ରାତ୍ରକୁ ଭଣ୍ଡାରଦ୍ୱାର ଚାଙ୍ଗଡ଼ାରେ ରଖିଦେଇ ଆସନ୍ତି । ସମସ୍ତ ସୂତାବସ୍ତ୍ର ଲାଗି ହେବା ପୂର୍ବରୁ ଧୋଇ ଶୁଖାଇ ଦିଅନ୍ତି । ଧୋବା ମଇଳା ଲୁଗା ସଫା କରିବା ପରେ ଏହି ସେବକ ତାହା ନେଇ ପୁନର୍ବାର ଧୋଇ ଶୁଖାଇ ଚାଙ୍ଗଡ଼ା ମେକାପଙ୍କୁ ଦିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୪) ।

**ଧୋ'ପଖାଳ**-*ଦେ.ବି.*- ପାଣିରେ ଧୁଆଧୋଇ କରି ସଫାସଫି କରିବା । ଧୋଇବା ଓ ପଖାଳିବା ଏହି ସମାର୍ଥବୋଧକ କ୍ରିୟାପଦ ମିଶି ଶବ୍ଦଟିର ସୃଷ୍ଟି । ଶ୍ରୀଚୈତନ୍ୟ ରଥଯାତ୍ରା ପୂର୍ବଦିନ ନିଜର ଅନୁଗାମୀମାନଙ୍କ ସାଙ୍ଗରେ ଶ୍ରୀଗୁଣ୍ଡିଚା ମାର୍ଜନ ପରମ୍ପରା ଆରମ୍ଭ କରିଥିଲେ । ଶ୍ରୀମନ୍ଦିରରେ ଯାତ୍ରୀମାନଙ୍କୁ ବାହାର କରାଯାଇ ଶୋଧ ବା ପରିଷ୍କାର କରାଯିବାକୁ ଧୋ'ପଖାଳ କୁହାଯାଏ । ଶ୍ରୀମନ୍ଦିର ରୋଷଘର ସଫା କରିବା ପରେ ଧୋ'ପଖାଳ କରିବା ବିଧି ଅନୁଷ୍ଠିତ ହୋଇଥାଏ । ସୁଆରବଡୁ ସେବକ ଗୋଟିଏ ଦିନ ମଧ୍ୟରେ ଯେତେଥର ମନ୍ଦିର ଭିତରେ ଧୋଇବା ଆବଶ୍ୟକ ପଡିଥାଏ ସମସ୍ତ ଧୋପଖାଳ କାର୍ଯ୍ୟ କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୩୬) ।

**ଧୋପଖାଳିଆ**-*ଦେ.ବି.*- ଶ୍ରୀମନ୍ଦିରର ରୋଷ ଘରେ ପାଣି ପକାଇ ପରିଷ୍କାର କରୁଥିବା ସେବକ । କୌଣସି କାରଣରୁ ଭୋଗ ମାରା ହେଲେ ପୋତା ହେବାକୁ ଥିବା ସଂଖୁଡି ସେମାନେ ଗ୍ରହଣ କରିପାରିବେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪/୧୬, କ୍ଷେ.ସ.) ।



# ନ

**ନକ୍ଷତ୍ର ବନ୍ଦାପନା**-*ଦେ.ବି.*- ଯେଉଁଦିନ ଠାକୁରଙ୍କର ଜନ୍ମ ନକ୍ଷତ୍ର ପଡ଼େ, ସେହିଦିନ ମଧ୍ୟାହ୍ନଧୂପ ପରେ ନକ୍ଷତ୍ର ବନ୍ଦାପନା ନୀତି ଅନୁଷ୍ଠିତ ହୁଏ । ରୋହିଣୀ ବୃଷ ନକ୍ଷତ୍ର ଥିଲେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଗୋଟିଏ ବନ୍ଦାପନା, ଶ୍ରବଣା ମକର ନକ୍ଷତ୍ର ଥିଲେ ବଳଭଦ୍ରଙ୍କ ବାଡରେ ବନ୍ଦାପନା ସହ ଏକ ଅଧିକ ବନ୍ଦାପନା, ଜ୍ୟେଷ୍ଠା ବିଛା ନକ୍ଷତ୍ର ଥିଲେ ତିନିବାଡ଼ରେ ସମାନ ବନ୍ଦାପନା କରାଯାଏ । ଜଗନ୍ନାଥଙ୍କ ବାଡ଼ରେ ପୂଜାପଣ୍ଡା, ସୁଭଦ୍ରାଙ୍କ ବାଡ଼ରେ ପତିମହାପାତ୍ର ବଡ଼ଠାକୁରଙ୍କ ବାଡ଼ରେ ମୁଦିରସ୍ତ ବନ୍ଦାପନା କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୪୦) ।

**ନଗର କୀର୍ତ୍ତନ**-*ସଂ.ବି.*- ହରିନାମ କୀର୍ତ୍ତନ କରି ଶୋଭାଯାତ୍ରାରେ ନଗର ପରିକ୍ରମା କରିବା ।
(ପୂ.ଓ.ଭା. - ପୃ. ୪୧୦୨) ।

**ନଟବର ବେଶ**-*ଦେ.ବି.*- ଶ୍ରୀକୃଷ୍ଣ ତ୍ରିଭଙ୍ଗ ମୂର୍ତ୍ତି ହୋଇ ବଂଶୀଧରି ନାଚିବା ସମୟର ବେଶ । ଶ୍ରୀମନ୍ଦିରରେ କାର୍ତ୍ତିକ ମାସରେ ଶ୍ରୀଜଗନ୍ନାଥଙ୍କର ଏହି ବେଶ ସମ୍ପନ୍ନ ହୋଇଥାଏ । ଏତଦ୍ ବ୍ୟତୀତ ବାହାର ଚନ୍ଦନ ବେଳେ ମଦନ ମୋହନଙ୍କର କୋଡିଏ ବେଶ ମଧ୍ୟରୁ ନଟବର ବେଶ ଅନ୍ୟତମ ।
(ପୂ.ଓ.ଭା. - ପୃ. ୪୧୧୧) ।

**ନଡ଼ପ**-*ଦେ.ବି.*- ଠାକୁରଙ୍କ ବିଭିନ୍ନ ନୀତି, ପର୍ବପର୍ବାଣି ନିମନ୍ତେ ପୂର୍ବଦିନରୁ ସଂଗୃହୀତ କଣ୍ଟ ସଉଦା ।
(ପୁ.ବୋ.- ପୃ. ୨୨୩) ।

**ନଡ଼ିଆ**-*ଦେ.ବି.*- ଏହାର ଅନ୍ୟନାମ ଶ୍ରୀଫଳ । ବିଭିନ୍ନ ପୂଜା ଓ ପର୍ବପର୍ବାଣି ଇତ୍ୟାଦି ଶୁଭକାର୍ଯ୍ୟରେ ଏହା ବ୍ୟବହୃତ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ଦେବସ୍ନାନ ପୂର୍ଣ୍ଣମୀ ଦିନ ଜଳ ଅଧିବାସରେ ୧୦୮ କୁମ୍ଭ ଉପରେ ନଡିଆ ଓ କରିଆ ଲାଗି ହୋଇଥାଏ । ରଥଯାତ୍ରାବେଳେ ରଥ ଉପରେ ପ୍ରଚୁର ଭାବରେ ନଡିଆ ଭୋଗ ହୋଇଥାଏ । ଏତଦ୍ ବ୍ୟତୀତ ସେବାୟତମାନେ ବିଭିନ୍ନ ପର୍ବପର୍ବାଣି ଓ ଉତ୍ସବ ମାନଙ୍କରେ ଗଜପତିଙ୍କ ହାତରୁ ନଡିଆ ଓ ଗୁଆ ନେଇ ସେବା କାର୍ଯ୍ୟ କରିଥାନ୍ତି । ଶ୍ରୀଜୀଉଙ୍କ ପାଖରେ ଲାଗି ହେଉଥିବା ବିଭିନ୍ନ ପିଷ୍ଟକ ଓ ଭୋଗରେ ମଧ୍ୟ ନଡିଆ ବ୍ୟବହାର ହୋଇଥାଏ ।

**ନଦିଆ କୀର୍ତ୍ତନ**-*ଦେ.ବି.*- ଚୈତନ୍ୟଙ୍କ ଆଗମନ ପରେ ଓଡ଼ିଶାରେ ପ୍ରଚଳିତ ବଙ୍ଗଳା ଭାଷା ଓ ବଙ୍ଗଳା ସ୍ୱର ମିଶା ସଂକୀର୍ତ୍ତନ । ଶ୍ରୀମନ୍ଦିର ବେଢ଼ାରେ ଏହା ଗୁଞ୍ଜରିତ ହେବାର ଏବେ ମଧ୍ୟ ଲକ୍ଷ୍ୟ କରାଯାଏ ।
(ପୂ.ଓ.ଭା. - ପୃ. ୪୧୨୧) ।

**ନନ୍ଦମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ ଥିବା ମହାଲକ୍ଷ୍ମୀଙ୍କ ମନ୍ଦିର ।
(ଶ୍ରୀ.ସ୍ୱ. - ପୃ. ୧୦୭) ।

**ନନ୍ଦାବର୍ତ୍ତ**-*ଦେ.ବି.*- ମନ୍ଦିର ପ୍ରବେଶ ପଥରେ ଅର୍ଦ୍ଧ ବୃତ୍ତାକାର ପାହାଚ । ଏହାର ଅନ୍ୟନାମ ଚନ୍ଦ୍ରଶିଳା । ଏହା ଜୟବିଜୟ ଦ୍ୱାର, କଳାହାଟ ଦ୍ୱାର, ବେହେରଣ ଦ୍ୱାର ନିକଟରେ ରହିଛି ।
(ଓ.ସାଂ.ଶ- ପୃ. ୧୯୧) ।

**ନନ୍ଦିଗ୍ରାମ**-*ଦେ.ବି.*- ଶ୍ରୀକ୍ଷେତ୍ରର ଜଗନ୍ନାଥବଲ୍ଲଭ ମଠର ଅନ୍ୟନାମ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୧୬) ।

**ନନ୍ଦିଘୋଷ ରଥ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ରଥ- ନନ୍ଦିଘୋଷ, ବିଷ୍ଣୁରଥ, ଗରୁଡ଼ଧ୍ୱଜ, କପିଧ୍ୱଜ । ଏହି ରଥର ରକ୍ଷକ - ଗରୁଡ଼, ଧ୍ୱଜା- କପିଧ୍ୱଜ, ଉଚ୍ଚତା-

୩୩ ହାତ ୫ ଆଙ୍ଗୁଳି, ଚକ- ୧୬, ମୋଟ କାଠ- ୮୩୨ । ଋଷି- ନାରଦ, ଦେବଳ, ବ୍ୟାସ, ଶୁକ, ପରାଶର, ବଶିଷ୍ଟ, ବିଶ୍ୱାମିତ୍ର, ରୁଦ୍ର । ନବଦେବତା- ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନ ଧାରଣ, ଚିନ୍ତାମଣି, ରାଘବ ଓ ନୃସିଂହ । ରଥ ଆବରଣ- ରକ୍ତପୀତ, ରଥ ଶିରରେ- କଲ୍ୟାଣ ସୁନ୍ଦର, ଶକ୍ତି- ବିମଳା, ଅଶ୍ୱ- ଶଙ୍ଖ, ବଳାହକ, ଶ୍ୱେତ, ହରିଦାଶ୍ୱ । ସାରଥୀ- ଦାରୁକ, ରଜ୍ଜୁ- ଶଙ୍ଖଚୂଡ଼, ମୁଖ- ନନ୍ଦୀମୁଖ, ଦେବୀ- ଯୋଗମାୟା, ରଥଭୈରବ- ଏକପାଦ, ନନ୍ଦ ଓ କୁବେରଚାରଣ । ଯକ୍ଷ- ହର୍ଯ୍ୟକ୍ଷ, ଶକ୍ତି- ବିମଳା, ଉକ୍ରର୍ଷିଣୀ- କ୍ରିୟା, ଯୋଗା, ଆଜ୍ଞା, ଅନୁଜ୍ଞା । ଗର୍ଭାଧୀଶ୍ୱର- ହିରଣ୍ୟଗର୍ଭା, କୂର୍ମ- ହିରଣ୍ମୟ, ଦ୍ୱାରପାଳ- ଜୟ ଓ ବିଜୟ, ନେତ- ତ୍ରୈଲୋକ୍ୟମୋହିନୀ, ଓଲଟଶୁଆ - ଜୀବ ଓ ପରମ ।

(ଶ୍ରୀ.ଶ୍ରୀ. - ପୃ. ୧୬୭, ଉ.ପ୍ର. ଜୁଲାଇ, ୧୯୯୯ - ପୃ. ୨୦) ।

**ନନ୍ଦୋତ୍ସବ**-*ଦେ.ବି.*- ଭାଦ୍ରବ କୃଷ୍ଣ ନବମୀ । ଶ୍ରୀମନ୍ଦିରରେ ଜନ୍ମାଷ୍ଟମୀ ପରଦିନ ଭିତରଛ ମହାପାତ୍ର ନନ୍ଦବେଶରେ ଶ୍ରୀନଅର ଯାତ୍ରା କରି ଫେରିବା ପରେ ସ୍ନାନମଣ୍ଡପରେ ବସନ୍ତି । ଲକ୍ଷ୍ମୀଙ୍କ ମନ୍ଦିରଠାରେ ଗୋଦୋହନ ନୀତି ଅନୁଷ୍ଠିତ ହୁଏ । ଶ୍ରୀରାମକୃଷ୍ଣ ଠାକୁରଙ୍କୁ ଦୁଗ୍ଧ ଲାଗି କରାଯାଏ ।

(ଶ୍ରୀ.ସ୍ୱ. - ପୃ. ୯୦, ପୂ.ଓ.ଭା. - ପୃ. ୪୧୩୦) ।

**ନବକଳେବର**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ପୁରାତନ ବିଗ୍ରହ ଜୀର୍ଣ୍ଣ ହେଲେ ତାହା ସାଧାରଣତଃ ଆଠବର୍ଷ, ବାରବର୍ଷ ଅଥବା ଉନେଇଶ ବର୍ଷର ବ୍ୟବଧାନରେ ନବକଳେବର ହୋଇଥାଏ । ଯେଉଁ ବର୍ଷ ଯୋଡ଼ା ଆଷାଢ଼ (ମଳ) ପଡ଼େ, ସେ ବର୍ଷ ଠାକୁରଙ୍କ ନବକଳେବର ବିଧି ହୁଏ ଓ ଅଣସର ସମୟ ଦେଢ଼ମାସ ହୁଏ । ଏହାକୁ ମହା ଅଣସର କୁହାଯାଏ । ଏହି ଅବସରରେ ଚତୁର୍ଦ୍ଧାମୂର୍ତ୍ତି ସମେତ ସମସ୍ତ ରଥର ପାର୍ଶ୍ୱଦେବତା, ସାରଥି ନବକଳେବରରେ ସାମିଲ ହୋଇଥାନ୍ତି ।

୧୦୦୧ଠାରୁ ୨୦୧୫ ଭିତରେ ଜ୍ୟୋତିଷ ଶାସ୍ତ୍ରାନୁସାରେ ଯୋଡ଼ା ଆଷାଢ଼ ଚଉରାଅଶି ଥର ପଡ଼ିଅଛି । ସେଥିମଧ୍ୟରୁ ଆଠବର୍ଷ ବ୍ୟବଧାନରେ ଚବିଶ ଥର, ଏଗାର ବର୍ଷ ବ୍ୟବଧାନରେ ଷୋହଳ ଥର, ଉଣେଇଶି ବର୍ଷ ବ୍ୟବଧାନରେ ବୟାଳିଶି ଥର ଓ ସତେଇଶି ବର୍ଷ ବ୍ୟବଧାନରେ ଦୁଇ ଥର ନବକଳେବର ଅନୁଷ୍ଠିତ ହୋଇଅଛି । ନିମ୍ନୋକ୍ତ ଯୋଡ଼ା ଆଷାଢ଼ ମାସ ପଡ଼ିଥିବା ବର୍ଷଗୁଡ଼ିକ ହେଲା- ୧୦୦୧, ୧୦୨୦, ୧୦୩୯, ୧୦୬୬, ୧୦୮୫, ୧୧୦୪, ୧୧୨୩, ୧୧୩୧, ୧୧୪୨, ୧୧୫୦, ୧୧୬୧, ୧୧୮୦, ୧୧୯୯, ୧୨୦୭, ୧୨୨୬, ୧୨୪୫, ୧୨୬୪, ୧୨୭୨, ୧୨୮୩, ୧୨୯୧, ୧୩୦୨, ୧୩୧୦, ୧୩୨୧, ୧୩୨୯, ୧୩୪୦, ୧୩୪୮, ୧୩୭୬, ୧୩୮୬, ୧୪୦୫, ୧୪୧୩, ୧୪୨୪, ୧୪୩୨, ୧୪୪୩, ୧୪୫୧, ୧୪୬୨, ୧୪୭୦, ୧୪୮୧, ୧୪୮୯, ୧୫୦୮, ୧୫୨୭, ୧୫୪୬, ୧୫୫୪, ୧୫୬୫, ୧୫୭୩, ୧୫୮୪, ୧୫୯୨, ୧୬୦୩, ୧୬୧୧, ୧୬୨୨, ୧୬୩୦, ୧୬୪୯, ୧୬୬୮, ୧୬୮୭, ୧୬୯୮, ୧୭୦୬, ୧୭୩୩, ୧୭୪୪, ୧୭୫୨, ୧୭୭୧, ୧୭୯୦, ୧୮୦୯, ୧୮୨୮, ୧୮୩୬, ୧୮୫୫, ୧୮୭୪, ୧୮୯୩, ୧୯୧୨, ୧୯୩୧, ୧୯୫୦, ୧୯୬୯, ୧୯୭୭, ୧୯୯୬, ୨୦୧୫ ।

(ଶ୍ରୀ.ସ୍ୱ. ୨ୟ - ପୃ. ୬୪, କ୍ଷେ.ସ.) ।

**ନବକଳେବର ଦାରୁ**-*ଦେ.ବି.*- ଦାରୁ ବା ନିମ୍ବ ଗଛ ଗଣ୍ଡି ସବୁ ସମାନ ନୁହେଁ । ନବକଳେବର ଦାରୁ ସାଧାରଣ ଦାରୁଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଏହାର ଲକ୍ଷଣ ହେଉଛି- ୧. ବୃକ୍ଷ ନିମ୍ବଗଛ, ୨. ଗଣ୍ଡିର

ଲମ୍ବା ଆଠ ହାତରୁ ଦଶ ହାତହେବା ଆବଶ୍ୟକ, ୩. ତହିଁରେ ତିନୋଟି ପ୍ରଧାନ ଶାଖା ଥିବ, ୪. ବୃକ୍ଷ ନିକଟରେ ମନ୍ଦିର, ମଠ, ନଦୀ, ପୋଖରୀ, ମଶାଣି, ଉଇହୁଙ୍କା, ବେଲଗଛ, ବରୁଣ ଗଛ, ସାହାଡ଼ାଗଛ, ତୁଳସୀ ଗଛ ଓ ସାପ ଗାତ ଥିବ, ୫. ସାପ ଗାତ ବା ଉଇହୁଙ୍କାରେ ନାଗସାପ ଜଗୁଆଳ ହୋଇଥିବ, ୬. କୌଣସି ଡାଳ ଛେଦିତ ହୋଇ ନ ଥିବ, ୭. ବୃକ୍ଷର ଗଣ୍ଡି ସାଢ଼େ ତିନି ହାତରୁ ଅଧିକ ହେବ, ୮. ପକ୍ଷୀମାନେ ସେହି ବୃକ୍ଷରେ ବସା ବାନ୍ଧି ନ ଥିବେ, ୯. ଶଙ୍ଖ, ଚକ୍ର, ଗଦା, ପଦ୍ମ ପ୍ରଭୃତି ଚିହ୍ନମାନଙ୍କ ଦ୍ୱାରା ବୃକ୍ଷଟି ଚିହ୍ନିତ ହୋଇଥିବ । ଚାରି ବିଗ୍ରହଙ୍କ ଦାରୁର ଲକ୍ଷଣରେ କେତେକ ସ୍ୱାତନ୍ତ୍ୟ ରହିଛି ।
(ଶ୍ରୀ.ଶ୍ରୀ. - ପୃ. ୪୭) ।

**ନବଗ୍ରହମନ୍ଦିର** - *ଦେ.ବି.*- ସୂର୍ଯ୍ୟ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ ଆଦି ନଅଗୋଟି ଗ୍ରହ । ଶ୍ରୀମନ୍ଦିରର ମୁଖ୍ୟ ଦ୍ୱାରବନ୍ଧ ଉପରେ ବାମରୁ ଦକ୍ଷିଣକ୍ରମରେ ବିରାଜମାନ ହୋଇଛନ୍ତି । ରଥଯାତ୍ରା ବେଳେ ରଥର ଉପରି ଭାଗରେ ଏମାନେ ବିରାଜମାନ କରନ୍ତି । ପୂଜା ଉପାସନାରେ ନବଗ୍ରହ ପୂଜା ଆରାଧନା କରାଯାଏ । ଭିତର ବେଢ଼ାରେ ଥିବା ଏହି ମନ୍ଦିରରେ ନବଗ୍ରହ, ସମଲେଶ୍ୱରୀ, ରାମ, ଲକ୍ଷ୍ମଣ, ସୀତା ଓ ହନୁମାନ ବିଜେ ହୋଇଛନ୍ତି ଓ ସେବକମାନଙ୍କ ଦ୍ୱାରା ପ୍ରତ୍ୟହ ପୂଜା ନୀତି ଅନୁଷ୍ଠିତ ହେଉଛି । ଶ୍ରୀମନ୍ଦିର ବେଢ଼ାସ୍ଥ ନବଗ୍ରହ ମନ୍ଦିରର ବିଶେଷତ୍ୱ ହେଉଛି ମୂର୍ତ୍ତିଗୁଡ଼ିକ ଅବସ୍ଥାନ ବାମରୁ ଦକ୍ଷିଣକୁ ନ ହୋଇ ଦକ୍ଷିଣରୁ ବାମକୁ ବିରାଜମାନ କରିଛନ୍ତି ।
(ଶ୍ରୀ.ସ୍ୱ.- ପୃ. ୨୨୨, ଓ.ସାଂ.ଶ.- ପୃ. ୧୯୩) ।

**ନବଧା ବୈକୁଣ୍ଠ** - ଦେ.ବି.- ଶ୍ରୀକ୍ଷେତ୍ର ଭିତରେ ନବବୈକୁଣ୍ଠର ପରିକଳ୍ପନା କରାଯାଇଛି ଯଥା- ୧. ନୀଳାଦ୍ରି ବୈକୁଣ୍ଠ- ନୀଳକନ୍ଦର, ୨. ପୂର୍ବ ବୈକୁଣ୍ଠ - ପତିତପାବନ ଗୁମୁଟ, ୩. ପଶ୍ଚିମ ବୈକୁଣ୍ଠ - ଲକ୍ଷ୍ମୀଙ୍କ ଜଗମୋହନ, ୪. ଉତ୍ତର ବୈକୁଣ୍ଠ - କୋଇଲି ବୈକୁଣ୍ଠ, ୫. ଦକ୍ଷିଣ ବୈକୁଣ୍ଠ - ଅନନ୍ତ ଶୟନ, ୬. ଲୀଳା ବୈକୁଣ୍ଠ- ଜଗମୋହନ, ୭. ପାତାଳ ବୈକୁଣ୍ଠ - ଆନନ୍ଦ ବଜାର, ୮. ବ୍ରହ୍ମ ବୈକୁଣ୍ଠ - ପାଟ ଅଗଣା, ୯. ଅମର ବୈକୁଣ୍ଠ - ସ୍ୱର୍ଗଦ୍ୱାର ।
(ଶ୍ରୀ.ଜି. - ପୃ. ୩୦) ।

**ନବବିଗ୍ରହ ନିର୍ମାଣ** -ଦେ.ବି.- ଶ୍ରୀମନ୍ଦିରରେ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଦାରୁମାନଙ୍କର ସ୍ନାନ ବିଧି ପରେ ଠାକୁରମାନଙ୍କର ନବକଳେବର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥାଏ । ଏଥିପାଇଁ କେତେକ ମହାରଣା ନିଯୁକ୍ତି ପାଇଥାନ୍ତି । ଆଷାଢ଼ କୃଷ୍ଣ ପ୍ରତିପଦ ଦିନ ଗଜପତି ରାଜା ଏମାନଙ୍କୁ ଶାଢ଼ୀ ପ୍ରଦାନ ପୂର୍ବକ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପାଇଁ ଅନୁମତି ଦିଅନ୍ତି । ନିର୍ମାଣ ମଣ୍ଡପକୁ ସବୁ ଦିଗରୁ ବନ୍ଦ କରି ଏକ ଆବଦ୍ଧ କୋଠରୀରେ ନିର୍ମାଣ କାର୍ଯ୍ୟ ନିଷ୍ଠାର ସହ ଆରମ୍ଭ ହୁଏ । ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି ଯେ, ଠାକୁରଙ୍କ ମୂର୍ତ୍ତି ନିର୍ମାଣ ଦେଖିବା ବ୍ୟକ୍ତି ଅନ୍ଧ ହୋଇଯାଏ ଓ ନିର୍ମାଣ କାର୍ଯ୍ୟର ଶବ୍ଦ ଶୁଣିବା ବ୍ୟକ୍ତି ବଧିର ହୋଇଯାଏ । ଏମାନେ ମୃତ୍ୟୁ ପରେ ନରକଗାମୀ ହୁଅନ୍ତି ଏବଂ ସେମାନଙ୍କର ବଂଶ ନାଶ ହୁଏ । ଏଣୁ ନିର୍ମାଣ ମଣ୍ଡପ ବାହାରେ ବିଭିନ୍ନ ପ୍ରକାରର ବାଦ୍ୟଯନ୍ତ୍ର ଅନବରତ ବଜାଇବା ନିମନ୍ତେ ପୁରାଣରେ ନିର୍ଦ୍ଦେଶ ଅଛି । ପୂର୍ବେ ଦେବଦାସୀମାନେ ନିର୍ମାଣ ମଣ୍ଡପ ବାହାରେ ନୃତ୍ୟ ପରିବେଷଣ କରୁଥିଲେ । ଆଷାଢ଼ କୃଷ୍ଣ ଚତୁର୍ଦ୍ଦଶୀ ଦିନ ପ୍ରତିଷ୍ଠା ବିଧି ଆରମ୍ଭ ହେଉଥିବାରୁ ନବବିଗ୍ରହ ନିର୍ମାଣ କାର୍ଯ୍ୟ ଏହା ପୂର୍ବରୁ ସମ୍ପୂର୍ଣ୍ଣ ହୋଇଥାଏ ।
(କ୍ଷେ.ସ.) ।

**ନବଯୌବନ** - *ସଂ.ବି.*- ଶ୍ରୀମନ୍ଦିରର ଚତୁର୍ଦ୍ଧା ମୂର୍ତ୍ତି ନୂତନ ହୋଇ ଚିତ୍ରିତ ହେଲା ପରେ ରଥକୁ ଯିବା ପୂର୍ବରୁ ଯେଉଁ ରୂପ ବା ବେଶରେ ସଜ୍ଜିତ ହୁଅନ୍ତି, ତାହାକୁ ନବଯୌବନ କୁହାଯାଏ । ଏହା ଉଭା ଅମାବାସ୍ୟା ବା ଆଷାଢ଼ ଅମାବାସ୍ୟା ଦିନ ଅନୁଷ୍ଠିତ ହୋଇଥାଏ । ଅଣସର ପନ୍ଦର

ଦିନ ଶେଷରେ ଶ୍ରୀଜୀଉଙ୍କ ପ୍ରଥମ ଦର୍ଶନ ନବଯୌବନ ଦର୍ଶନ ଓ ତା'ପରଦିନ ଯଦି ପ୍ରତିପଦ ବା ବିଶ୍ରାମ ଥିବ, ତେବେ ପ୍ରଭୁ ସେହି ବେଶରେ ଉଭାଯାତ୍ରା କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୫, ଓ.ସାଂ.ଶ.- ପୃ. ୧୯୪, ପୂ.ଓ.ଭା.- ପୃ. ୪୧୩୬) ।

**ନବଯୌବନ ଦର୍ଶନ**-*ଦେ.ବି.*- ଅଣସର ଚତୁର୍ଦ୍ଦଶୀ ଦିନ ବଡ଼ସିଂହାର ଧୂପ ପରେ ପଣା, ଚକଟା, ଭୋଗ ସରିବା ପରେ ଦଉମହାପାତ୍ର ବନକ ଲାଗି କରନ୍ତି । ଦଇତାପତି ଚକା ଅପସର ଲାଗି କରନ୍ତି । ଏହାପରେ ଆଳତି, ଅବକାଶ, ତା'ପରେ ଦଶାବତାର ପାଞ୍ଚମୂର୍ତ୍ତିଙ୍କୁ ହାତରେ ବିଜେ କରାଇ ଦକ୍ଷିଣ ଦୁଆର ବଟେ ଦକ୍ଷିଣି ଘରକୁ ନିଅନ୍ତି ଓ ଲକ୍ଷ୍ମୀ ସରସ୍ୱତୀଙ୍କୁ ଖଟ ଶେଯ ଘରକୁ ବିଜେ କରାନ୍ତି । ମଣ୍ଡଣିପଟି ତିନିମୂର୍ତ୍ତିଙ୍କୁ ବିମଳା ମନ୍ଦିର ନିକଟସ୍ଥ ମଣ୍ଡଣି ଘରକୁ ବିଜେ କରାନ୍ତି । କୋଠ ସୁଆଁସିଆମାନେ ଭିତର ତାଟି, ଖଟ ବାହାର କରିନିଅନ୍ତି । ଭିତରପାଣି ପଡ଼ିବାରେ ସେବକ ଓ ସର୍ବସାଧାରଣ (ପରିମାଣିକ ଦେଇ) ଦର୍ଶନ କରାନ୍ତି । ଏତେବେଳକୁ ଅମାବାସ୍ୟାର ପ୍ରାତଃକାଳ । ଏହାକୁ ନବଯୌବନ ଦର୍ଶନ କୁହାଯାଏ ।
(ଶ୍ରୀ.ସ୍ୱ. - ୨ୟ - ପୃ ୬୪, ଶ୍ରୀ.ଜି. - ପୃ ୩୩୫) ।

**ନବରଥ**-*ଦେ.ବି.*- ସର୍ବଶ୍ରେଷ୍ଠ ରେଖ ଦେଉଳ । ଏହାର ପ୍ରତ୍ୟେକ ପାର୍ଶ୍ୱରେ ନଅଗୋଟି ଆଳମ୍ୱ ଥାଏ ।
(ଶ୍ରୀ.ଜି. - ପୃ. ୩୩୫) ।

**ନବରତ୍ନ**-*ସଂ.ବି.*- ନଅଟି ରତ୍ନ । କୁବେରଙ୍କ ନିକଟରେ ଥିବା ନଅପ୍ରକାରର ରତ୍ନ । ଯଥା- ମାଣିକ୍ୟ, ମୁକ୍ତା, ପ୍ରବାଳ ମରକତ, ପୁଷ୍ପରାଗ ହୀରା, ନୀଳା, ଗୋମେଦ ଓ ବୈଦୂର୍ଯ୍ୟ । ଶ୍ରୀଜୀଉଙ୍କ ନିକଟରେ ବିଭିନ୍ନ ପର୍ବପର୍ବାଣି ଓ ଯାନିଯାତ୍ରାରେ ବିଭିନ୍ନ ରତ୍ନ ଓ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇଥାନ୍ତି । ଏତଦ୍ ବ୍ୟତୀତ ଶ୍ରୀ ଜୀଉଙ୍କ ରତ୍ନ ଭଣ୍ଡାରରେ ଏହି ସବୁ ରତ୍ନର ବହୁ ଅଳଙ୍କାର ଅଛି ।
(ପୂ.ଓ.ଭା.- ପୃ. ୪୧୩୩, ଓ.ସାଂ.ଶ.- ପୃ. ୧୯୪, କ୍ର.ବି.ଓ.ଶ.- ପୃ. ୪୯୮) ।

**ନବରତ୍ନ ଜାହାଙ୍ଗ**-*ଦେ.ବି.*- ଠାକୁରଙ୍କ ସୁବର୍ଣ୍ଣ ବାଜୁବନ୍ଧ ଅଳଙ୍କା ବିଶେଷ ।
(କ୍ଷେତ୍ରିୟ ସର୍ବେକ୍ଷଣ)

**ନବାଙ୍କ ବେଶ**-*ଦେ.ବି.*- ମକର ସଂକ୍ରାନ୍ତି ପୂର୍ବଦିନ ମହାପ୍ରଭୁଙ୍କର ନବାଙ୍କ ବେଶ ଅନୁଷ୍ଠିତ ହୁଏ । ଏ' ଦିନ ବଡ଼ସିଂହାର ବେଶରେ ସୋଲ, ଜରି, କଇଁଥ ଅଠାରେ ପ୍ରସ୍ତୁତ ଶଙ୍ଖଚକ୍ର, ହଳ, ମୂଷଳ, କୁଣ୍ଡଳ, ତଡ଼ଗି ଲାଗି ହୁଏ । ଏହି ବେଶରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଯଥାକ୍ରମେ ସୋଲ ନିର୍ମିତ ମକର କୁଣ୍ଡଳ, ଶଙ୍ଖଚକ୍ର ହଳମୂଷଳ ଲାଗି ହୁଅନ୍ତି । ଏହି ବେଶରେ ଠାକୁରମାନଙ୍କର ଶିରରୁ ରତ୍ନସିଂହାସନ ଚଟାଣ ଯାଏ ଗେଣ୍ଡୁ ଫୁଲ ମାଳରେ ସୁସଜ୍ଜିତ କରାଯାଏ । ବଡ଼ସିଂହାର ବେଶରେ ଠାକୁରମାନଙ୍କ ଅଳଙ୍କୃତ କରୁଥିବା ଚିତା, ଗୁଣା, କରପଲ୍ଲବ, ଅଧରମାଳା ଓ ଶ୍ରୀପୟର ମାଳା ମଧ୍ୟ ପ୍ରଧାନତଃ ଗେଣ୍ଡୁ ଫୁଲରେ ନିର୍ମିତ ହୋଇଥାଏ । ହୃଦ ପଦକରେ ଗେଣ୍ଡୁ ଫୁଲ ସହିତ ଗୋଲାପ ଫୁଲର ସମ୍ମିଶ୍ରଣ ହୋଇଥାଏ । ସାଧାରଣ ଦିନମାନଙ୍କରେ ଚାରି ପାଞ୍ଚଟି ମାଳ ଲାଗୁଥିଲେ ମଧ୍ୟ ନବାଙ୍କ ବେଶ ଦିନ ଦଶ ପନ୍ଦରଟି ମାଳ ଲାଗି ହୁଏ । ଏ' ଦିନ ଲାଗୁଥିବା ଶିର ଭୂଷଣ ଓ ଚୋପରଗୁଡ଼ିକ ମଧ୍ୟ ତୁଳସୀ ପତ୍ର ଦ୍ୱାରା ପ୍ରସ୍ତୁତ ହୋଇଥାଏ ଏବଂ ସେହି ଚୋପର ଉପରେ ଗେଣ୍ଡୁ ଫୁଲର ମାଳାଗୁଡ଼ା ଯାଇଥାଏ । ପୂର୍ବରୁ ଏହି ବେଶ ସାମଗ୍ରୀ ଦକ୍ଷିଣ ପାର୍ଶ୍ୱମଠ ଶ୍ରୀରାମ ଦାସ ମଠ ଯୋଗାଇ ଆସୁଥିଲେ ମଧ୍ୟ ଏବେ ଏହି ମଠ ସେହି ବେଶ ସହ ସମ୍ପୃକ୍ତ ହେଉନାହିଁ । ଶ୍ରୀମନ୍ଦିର ପ୍ରଶାସନ ଏହି ବେଶର ସମସ୍ତ ଖର୍ଚ୍ଚ ବହନ କରୁଛନ୍ତି । ମକର ସଂକ୍ରାନ୍ତି ପୂର୍ବଦିନ ଶ୍ରୀଜଗନ୍ନାଥଙ୍କ ନବାଙ୍କ ବେଶ ସହ ଚାଉଳ ମେଲାଣ ଓ ଫୁଲ ମେଲାଣ ଉତ୍ସବ ଅନୁଷ୍ଠିତ ହୁଏ ।
(ଶ୍ରୀଜ.ବେ.ର. - ପୃ. ୧୧୩) ।

**ନବାଙ୍କ ବେଢ଼ା**-*ଦେ.ବି.*- ମକର ସଂକ୍ରାନ୍ତିର ପୂର୍ବ ଦିନ ନବାଙ୍କ । ଏ' ଦିନ ମଦନମୋହନ ରତ୍ନବେଦୀକୁ ସାଢ଼େ ଚାରିଥର ପ୍ରଦକ୍ଷିଣ ପରେ

ବିମାନରେ ବିଜେ ହୋଇ ଘଣ୍ଟଛତ୍ର କାହାଳି ସହିତ ଶ୍ରୀମନ୍ଦିରକୁ ସାଢ଼େ ଚାରିଥର ମୋଟ ନଅଥର ପ୍ରଦକ୍ଷିଣ କରିଥାନ୍ତି । ଏହାକୁ 'ନବାଙ୍କ ବେଢ଼ା' କୁହାଯାଏ ।

**ନବାଙ୍କ ଓ ଫୁଲମେଲାଣ**-*ଦେ.ବି.*- ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ପୂର୍ବଦିନ ନବାଙ୍କ ନୀତି ହୋଇଥାଏ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଏହା ଏକ ଯାତ୍ରା ବିଶେଷ । ସୌର ଗଣନା ଅନୁସାରେ ପୌଷ ବା ଧନୁମାସର ଶେଷଦିନ ଏହି ଯାତ୍ରା ହୁଏ । ପୂର୍ବଦିନରୁ ହିନ୍ଦୁ ଜ୍ୟୋତିଷଶାସ୍ତ୍ରମତେ ସୂର୍ଯ୍ୟଦେବଙ୍କ ଉତ୍ତରାୟଣ ଗତି ଅନୁସାରେ ନୂତନ ବର୍ଷ ଆରମ୍ଭ ହେବାରୁ ସମ୍ଭବତଃ ଏ ଯାତ୍ରା ଏପରି ନାମିତ ହୋଇଅଛି ।
(ଶ୍ରୀ.ସ୍ୱ.- ପୃ. ୧୦୬, ପୂ.ଓ.ଭା. - ପୃ. ୪୧୩୯) ।

**ନବାତ**-*ଦେ.ବି.*- ଚିନିରୁ ପ୍ରସ୍ତୁତ ମିଠା ଦ୍ରବ୍ୟ । ଅଣସର ସମୟରେ ଅଣସର ପଣାରେ ମିଶ୍ରିତ ହୋଇ ଶ୍ରୀଜୀଉଙ୍କୁ ସମର୍ପଣ କରାଯାଇଥାଏ । ଅଧରପଣାରେ ମଧ୍ୟ ବ୍ୟବହୃତ ହୋଇଥାଏ ।

**ନବାତଖାନା**-*ଦେ.ବି.*- ନବାତ ବିକ୍ରୟ କେନ୍ଦ୍ର । ଯେଉଁଠାରେ ଠାକୁରଙ୍କ ଭୋଗ ନିମନ୍ତେ ନବାତ ବିକ୍ରି କରାଯାଏ । ଏହା ଦୋଳ ବେଦୀ ପଛପଟେ ଅବସ୍ଥିତ ।
(କ୍ଷେ.ସ.) ।

**ନବାନ୍ନ**-*ଦେ.ବି.*- ବର୍ଷର ପ୍ରଥମ ଆମଦାନୀ ହୋଇଥିବା ନୂଆ ଚାଉଳ, ବିରି ଓ ମୁଗ ଭକ୍ଷଣ ଉପଲକ୍ଷେ ବିଶେଷ ଉତ୍ସବ । ଏହି ଉତ୍ସବରେ ଗୃହସ୍ଥ ପିତୃଦେବତା, ଅତିଥି, ଜ୍ଞାତି କୁଟୁମ୍ବଙ୍କୁ ମଧ୍ୟ ଅର୍ଚ୍ଚନା କରନ୍ତି । ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଦିନ ନୂଆ ଚାଉଳ ଭୋଗ ଲାଗି ହୁଏ । ମଧ୍ୟାହ୍ନ ଧୂପରେ ନୂଆ ଚାଉଳ, ନୂଆ ବିରି ଭୋଗ ଲାଗି ହେଲା ପରେ ବେଶ ହୋଇ ଅଳଙ୍କାର ଛଅମୂର୍ତ୍ତି ଲାଗି ହୋଇ ବନ୍ଦାପନା ହୁଅନ୍ତି ।
(ଶ୍ରୀ.ସ୍ୱ.-ପୃ ୧୦୧, ପୂ.ଓ.ଭା.-ପୃ ୪୧୩୯) ।

**ନରେନ୍ଦ୍ର ପୁଷ୍କରିଣୀ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ମନ୍ଦିରର ଐଶାନ୍ୟ କୋଣରେ ଅବସ୍ଥିତ । ଏହାର ଲମ୍ବ ୮୭୩ ଫୁଟ ଓ ପ୍ରସ୍ଥ ୮୩୪ ଫୁଟ । ଏହା ମଧ୍ୟରେ ମଦନମୋହନଙ୍କ ଏକ ଛୋଟ ମନ୍ଦିର ଅଛି । ଏହାର ଦକ୍ଷିଣକୂଳକୁ ଏକ ପକ୍କା ଗୋଲ ଦ୍ୱାର ସଂଯୁକ୍ତ କରାଯାଇଛି । ମାଦଳାପାଞ୍ଜି ବର୍ଣ୍ଣନା ଅନୁସାରେ ଗଙ୍ଗରାଜା ନରସିଂହ ଦେବଙ୍କର ମନ୍ତ୍ରୀ ନରେନ୍ଦ୍ର ମହାପାତ୍ରଙ୍କ ଦ୍ୱାରା ଏହା ଖୋଳା ହୋଇଥିଲା । ଅନ୍ୟ ଏକ କିମ୍ବଦନ୍ତୀ କହେ, ରଣପୁର ରାଜ୍ୟର ରାଜା ନରେନ୍ଦ୍ର ଦେବଙ୍କ ସହ ପୁରୀ ଗଜପତିଙ୍କର ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ ଥିଲା । ଏକଦା ରଣପୁର ରାଜା ତାଙ୍କ ରାଜବାଟୀରୁ ଗୋଟିଏ କଖାରୁ ମଞ୍ଜି ପାଇ ତାଙ୍କ ସରବରାକାରଙ୍କୁ ଦେଇ କହିଲେ ଯେ ମଞ୍ଜିକୁ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କରି ଲଗାଇ ଦିଅ । ଏଥିରେ ଯେତେ କଖାରୁ ଫଳ ହେବ ତାହା ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରାଯିବ । ତଦନୁଯାୟୀ ସରବରାକାର ଉକ୍ତ ମଞ୍ଜିକୁ ଠାକୁରଙ୍କୁ ସ୍ମରଣ କରି ପୋତିବାରୁ ସେଥିରୁ ଗଜା ବାହାରି କଖାରୁ ଲତାଟି ଚଉଦ ଏକର ଜମିରେ ମାଡିଥିଲା । ସେଥିରୁ ଯେତେ କଖାରୁ ହେଲା ତାକୁ ବିକ୍ରୟ କରି ସର୍ବରାକାର ରାଜାଙ୍କୁ ଟଙ୍କା ଦେଲେ । ରାଜା ସେହି ଟଙ୍କା ପୁରୀ ରାଜାଙ୍କୁ ଦେଲେ ଓ ଉଭୟ ବିଚାର କରି ଏହି ପୋଖରୀ ଖୋଳାଇଥିଲେ । ଏଣୁ ଏହି ପୁଷ୍କରିଣୀ ଚଉଦ ଏକର ଜମି ଉପରେ ଖୋଳା ହେଲା ଓ ରାଜା ନରେନ୍ଦ୍ର ଦେବଙ୍କ ନାମାନୁସାରେ ଏହାର ନାମ ନରେନ୍ଦ୍ର ପୁଷ୍କରଣୀ ରହିଲା । ପ୍ରତିବର୍ଷ ଚନ୍ଦନଯାତ୍ରା ଅକ୍ଷୟ ତୃତୀୟାଠାରୁ ଏକୋଇଶି ଦିନ ବ୍ୟାପୀ ଠାକୁରେ ଏଠାରେ ଚାପ ଖେଳନ୍ତି ।
(ଶ୍ରୀ.ଜି. - ପୃ. ୯୬, ଶ୍ରୀ.ସ୍ୱ.- ପୃ. ୭୭) ।

**ନଳି**-*ଦେ.ବି.*- ଗହମ ଚୂନା ଓ ଗୁଡ଼ ପ୍ରସ୍ତୁତ ଲମ୍ବାକୃତି ପିଷ୍ଟକ ବିଶେଷ । ଏହା ପହିଲି ଭୋଗରେ ଠାକୁରଙ୍କୁ ଲାଗିହୁଏ ।
(ଶ୍ରୀ.ସ୍ୱ.-ପୃ ୧୭୨, ଶ୍ରୀ.ଦୀ.ବ୍ୟା-ପୃ ୨୬୨) ।

**ନଳିବାହୁଟି**-*ଦେ.ବି.*- ଶ୍ରୀଜୀଉଙ୍କ ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର ।
(ଶ୍ରୀ.ଶ.- ପୃ. ୯୭) ।

**ନଳିଭୁଜ**-*ଦେ.ବି.*- ଶ୍ରୀଜୀଉଙ୍କ ଶ୍ରୀହସ୍ତର ସ୍ୱର୍ଣ୍ଣ ଆଭୂଷଣ । ଶ୍ରୀଭୁଜକୁ ଆବୃତ୍ତ କଲାଭଳି ନଳୀ ଆକୃତିର ସୁବର୍ଣ୍ଣ ତିଆରି ଅଳଙ୍କାର ।

**ନହବତବାଲା**-*ଦେ.ବି.*- ବାଦ୍ୟ ବିଶେଷ । ନାଗରା ସହ ମହୁରୀ ଫୁଙ୍କିବା ସେବକ ।
(ପୁ.ବୋ.- ପୃ. ୨୨୪) ।

**ନାକଚଣା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ନାକପୁଡ଼ାରେ ପିନ୍ଧାଯିବା ପାଇଁ ଏକ ପ୍ରକାର ଫୁଲରେ ତିଆରି ଗୁଣା ବା ଅଳଙ୍କାର ।
(ପୂ.ଓ.ଭା.- ପୃ. ୪୧୮୪) ।

**ନାକଚଣା ଦ୍ୱାର**-*ଦେ.ବି.*- ଗୁଣ୍ଡିଚା ଘରର ଏକ ଦ୍ୱାର । ଠାକୁରଙ୍କ ବାହୁଡ଼ା ଯାତ୍ରା ଦିନ ଏହି ଦ୍ୱାର ଦେଇ ରଥକୁ ପହଣ୍ଡି ବିଜେ କରନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚାଙ୍କ ନାକଚଣା ବିକ୍ରୟଲବ୍ଧ ମତାନ୍ତରରେ କପିଳେଶ୍ୱର ଦେବଙ୍କ ରାଣୀଙ୍କ ନାକଚଣା ବିକ୍ରୟ ଲବ୍ଧରେ ଏହି ଦ୍ୱାର ନିର୍ମିତ ହୋଇଥିଲା ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୨) ।

**ନାକୁଆସି**-*ଦେ.ବି.*- ଶ୍ରୀମୁଖର ଚିତାତଳୁ ନାସାଗ୍ର ପର୍ଯ୍ୟନ୍ତ ବ୍ୟବହୃତ ଠାକୁରଙ୍କ ଅଳଙ୍କାର ।
(ଶ୍ରୀ.ସ୍ୱ. - ପୃ. ) ।

**ନାଗରଚି**-*ଦେ.ବି.*- ନାଗରା ବାଦକ ।
(ପୁ.ବୋ.- ପୃ. ୨୨୪) ।

**ନାଗାର୍ଜ୍ଜୁନ ବେଶ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ନାଗାର୍ଜ୍ଜୁନ ବେଶ ମଧ୍ୟ ସାମୟିକ ବେଶ । କାର୍ତ୍ତିକ ମାସ ଶୁକ୍ଳପକ୍ଷ ଏକାଦଶୀ, ଦ୍ୱାଦଶୀ, ତ୍ରୟୋଦଶୀ, ଚତୁର୍ଦ୍ଦଶୀ ଓ ପୂର୍ଣ୍ଣିମାକୁ ପଞ୍ଚକ କୁହାଯାଏ । ଏହି ପାଞ୍ଚଦିନରେ ଠିଆକିଆ, ବାଙ୍କଚୂଡ଼, ଆଡ଼କିଆ, ଡାଳକିଆ ଓ ରାଜାଧିରାଜ ବେଶ ଯଥାକ୍ରମେ ହୋଇଥାନ୍ତି । ଯେଉଁ ବର୍ଷ ପଞ୍ଚକ ପାଞ୍ଚଦିନ ପରିବର୍ତ୍ତେ ଛଅଦିନ ପଡ଼େ, ସେହିବର୍ଷ ସେହି ଅଧିକ ଦିବସ ପାଇଁ ଶ୍ରୀଜଗନ୍ନାଥଙ୍କ ନାଗାର୍ଜ୍ଜୁନ ବେଶ ଅନୁଷ୍ଠିତ ହୋଇଥାଏ ।

ଏହି ନାଗାର୍ଜ୍ଜୁନ ବେଶର ଅନେକ କାରଣ ଓ ତାତ୍ପର୍ଯ୍ୟ ରହିଛି । ନାଗା ରୂପଧାରୀ ପର୍ଶୁରାମ ଜଣେ ପରାକ୍ରମଶାଳୀ ସହସ୍ରାର୍ଜ୍ଜୁନ ନାମକ କ୍ଷତ୍ରିୟ ରାଜାକୁ ନିହତ କରିଥିଲେ, ନାଗାର୍ଜ୍ଜୁନ ବେଶ ଏହାର ସ୍ମାରକୀ । କିରାତରୂପୀ ଶିବଙ୍କ ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ ହୋଇ ଯୁଦ୍ଧରେ ଅର୍ଜ୍ଜୁନ ପରାସ୍ତ ହୋଇଥିଲେ ଓ କିରାତ ରୂପୀ ଶିବ ପ୍ରୀତ ହୋଇ ଅର୍ଜ୍ଜୁନଙ୍କୁ କେତେକ ଦିବ୍ୟ ଅସ୍ତ୍ର ପ୍ରଦାନ କରିଥିବାର ସ୍ମାରକୀ ଏହି ନାଗାର୍ଜ୍ଜୁନ ବେଶ । ମହାଭାରତ ଯୁଦ୍ଧ ପୂର୍ବରୁ ଯୁଦ୍ଧକ୍ଷେତ୍ରରେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଦିବ୍ୟ ଚକ୍ଷୁ ପ୍ରଦାନ କରି ବିଶ୍ୱରୂପ ଦର୍ଶନ କରାଇବା ସହିତ ଏହି ବେଶର ତାତ୍ପର୍ଯ୍ୟ ରହିଛି । ଜଣେ ଗଙ୍ଗବଂଶୀୟ ରାଜା ବୌଦ୍ଧ ତାନ୍ତ୍ରିକ ନାଗାର୍ଜ୍ଜୁନଙ୍କ ମନ୍ତ୍ରରେ ଦୀକ୍ଷିତ ହୋଇ ଚକ୍ରକୋଟ ଗଡ଼ରେ ସାଧନା କରି ପରାକ୍ରମୀ ହୋଇପାରିଥିଲେ । ଏଣୁ ତାଙ୍କର ଅନୁମତିକ୍ରମେ ଚକ୍ରକୋଟର ଖୁଣ୍ଟିଆ ସେବକ ଏହି ବେଶ କରୁଥିଲେ । ସାରଳା ମହାଭାରତରେ ବର୍ଣ୍ଣିତ ଅଛି ଯେ, ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସମୟରେ ଅର୍ଜ୍ଜୁନ ପାତାଳକୁ ଯାଇ ନାଗରାଜ ଅନନ୍ତଙ୍କ ଝିଅ ନାଗାବଳୀଙ୍କୁ ବିବାହ କରିଥିଲେ । ଏମାନଙ୍କର ପୁତ୍ରଙ୍କ ନାମ ଥିଲା ନାଗାର୍ଜ୍ଜୁନ । ସେ ନାଗମାନଙ୍କ ଦ୍ୱାରା ଭର୍ତ୍ସିତ ହୋଇ ଶିବଙ୍କୁ ତପସ୍ୟା କରି ବର ସହ ଅନେକ ଅସ୍ତ୍ର ମଧ୍ୟ ପ୍ରାପ୍ତ ହୋଇଥିଲେ ଏବଂ ପାର୍ବତୀ, ଗଣେଶ ଓ କାର୍ତ୍ତିକେୟଙ୍କଠାରୁ ମଧ୍ୟ ଦିବ୍ୟ ଅସ୍ତ୍ର ଲାଭ କରିଥିଲେ । ନାଗାର୍ଜ୍ଜୁନ ବେଶ ହେଉଛି, ଶ୍ରୀଜଗନ୍ନାଥଙ୍କ ବୀର ବେଶ । କେହି କେହି ଏହାକୁ ପର୍ଶୁରାମ ବେଶ ରୂପେ ଅଭିହିତ କରନ୍ତି । ୧୯୯୪ ନଭେମ୍ବର ୧୬ ତାରିଖରେ ବିଂଶ ଶତାବ୍ଦୀର ଶେଷ ନାଗାର୍ଜ୍ଜୁନ ବେଶ ଅନୁଷ୍ଠିତ ହୋଇଥିଲା ।

ଏହି ବେଶକୁ ହିମାଚଳ ପ୍ରଦେଶର ପର୍ଶୁରାମ ଭକ୍ତ ଓ ସନାତନ ବ୍ରାହ୍ମଣ ସମାଜ ପ୍ରବର୍ତ୍ତନ କରିଥିଲେ ବୋଲି ଅନେକ ମତ ଦିଅନ୍ତି । ପ୍ରଥମେ ହରଚଣ୍ଡୀ ସାହିର ଚକ୍ରକୋଟ ଖୁଣ୍ଟିଆଙ୍କ ପୂର୍ବପୁରୁଷଙ୍କ ପକ୍ଷରୁ ଏହି ବେଶ ହେଉଥିଲା । କିନ୍ତୁ ଏବେ ଏହି ବେଶ ଶ୍ରୀମନ୍ଦିର ପ୍ରଶାସନ ଦ୍ୱାରା ହେଉଅଛି ।
(ଶ୍ରୀ.ପ.ସେ.ପୂ.- ପୃ. ୨୭୦) ।

**ନାଟୁଣୀ**-*ଦେ.ବି.*- ଶ୍ରୀମନ୍ଦିରର ମାହାରି ସେବିକା ।
(ଶ୍ରୀ.ସ୍ୱ.- ପୃ. ୧୯) ।

**ନାଟମଣ୍ଡପ**-*ଦେ.ବି.*- ନାଟମଣ୍ଡପ, ଶ୍ରୀମନ୍ଦିରର ଜଗମୋହନ । ବାହାର କାଠ ଅର୍ଗଳି ଠାରୁ ଭୋଗ ମଣ୍ଡପ ଦ୍ୱାର ପର୍ଯ୍ୟନ୍ତ ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୧୧) ।

**ନାଟ୍ୟ**-*ସଂ.ବି.*- ବିଭିନ୍ନ ପର୍ବପର୍ବାଣୀରେ କରାଯାଉଥିବା ମାହାରୀ ନୃତ୍ୟ ।
(ଶ୍ରୀ.ସ୍ୱ.- ପୃ. ୨୯) ।

**ନାଡ଼ି**-*ଦେ.ବି.*- ବିରି ତିଆରି ଏକ ପ୍ରକାର ପିଠା, ଏହା ଶ୍ରୀଜୀଉଙ୍କ ପାଖରେ ଦ୍ୱିପ୍ରହର ଧୂପରେ ଓ ଯାତ ଭୋଗରେ ଲାଗେ ।
(ଶ୍ରୀ.ସ୍ୱ. - ପୃ. ୧୭୩, ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୨୬୨) ।

**ନାନମାନ**-*ଦେ.ବି.*- ଚାଉଳ ଚୂନାରେ ତିଆରି ପୁର ଦିଆ ଘିଅଛଣା ମଣ୍ଡାପିଠା । ଚାଉଳ ଅଟାକୁ ଗୁଡ଼ରେ ପାଗକରି ଖଳି କରାଯାଇ ସେହି ଖଳି ମଧରେ ପୂର ରଖି ପେଣ୍ଡୁ ପରି ଗୋଲ ପିଠା କରି ତାହା ଘିଅରେ ଛଣାଯାଏ । ଶ୍ରୀଜୀଉଙ୍କ ପାଖରେ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ.୧୮୧, ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୨୬୨) ।

**ନାନାବତୀ**-*ଦେ.ବି.*- ଶ୍ରୀମନ୍ଦିରରେ ଖର୍ଚ୍ଚ ହେଉଥିବା ହାଣ୍ଡି କୁଡୁଆମାନ କୁମ୍ଭାରଠାରୁ ଆଣି ରଖିବା ସେବକ ।
(ଶ୍ରୀ.ଶ. - ପୃ. ୯୮) ।

**ନାଭିକଟା ମଣ୍ଡପ**-*ଦେ.ବି.*- ଶ୍ରୀମନ୍ଦିର ଗାରଦଘର ପାର୍ଶ୍ୱରେ ଥିବା ଏକ ମଣ୍ଡପ । ଏହାକୁ 'ତେଲେଙ୍ଗା ମେର୍ଦ୍ଧା' କୁହାଯାଏ । କେହି କେହି ଏହାକୁ ବଜନ୍ତରୀ ମଣ୍ଡପ ବୋଲି କହିଥାନ୍ତି । ଭାଦ୍ରବ କୃଷ୍ଣ ଅଷ୍ଟମୀ ତିଥିରେ ଶ୍ରୀକୃଷ୍ଣ ଜନ୍ମ ବିଧିରେ ଏଠାରେ ନାଭିକାଟିବା ନୀତି ସମ୍ପନ୍ନ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୮୯) ।

**ନାରାଚ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ସିଂହାସନ ପ୍ରଭାରେ ଲାଗିଥିବା ପିତଳ କଡ଼ା ।
(ଶ୍ରୀ.ଶ.- ପୃ. ୯୮) ।

**ନାଲୁଆ**-*ଦେ.ବି.*- ଯେଉଁ ପାତ୍ରରୁ ଦିହୁଡ଼ିରେ ତେଲ ଢଳାଯାଏ ।
(ଶ୍ରୀ.ଶ. - ପୃ. ୯୮) ।

**ନ୍ୟାସଦାରୁ**- ନବକଳେବର ସମୟରେ ବିଗ୍ରହ ନିର୍ମାଣ ଏବଂ ବିଗ୍ରହ ପ୍ରତିଷ୍ଠା ଉଭୟ କାର୍ଯ୍ୟ ସମସାମୟିକ ଭାବେ ପୃଥକ୍ ପୃଥକ୍ ସ୍ଥାନରେ ଚାଲୁଥିବାରୁ ନିର୍ମାଣାଧୀନ ପ୍ରତିମାଙ୍କ ସିଧାସଳଖ ପ୍ରତିଷ୍ଠା ସମ୍ଭବ ନୁହେଁ । ତେଣୁ ବିଗ୍ରହଙ୍କ ପ୍ରତିଷ୍ଠା ନ୍ୟାସଦାରୁଙ୍କ ମାଧମରେ କରାଯାଏ ।
(ମ.ନ. - ପୃ. ୧୦୬) ।

**ନିଉଛାଳି ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ନେତ୍ର ଉତ୍ସବ ନୀତି ବଢ଼ିଲା ପରେ ତିନିବାଡ଼ରେ ପଣ୍ଡା, ପତି, ମୁଦିରସ୍ତ ବନ୍ଦାପନା କରନ୍ତି । ବନ୍ଦାପନା ବଢ଼ିଲା ପରେ ମୁଦିରସ୍ତ ତିନିବାଡ଼ରେ ତିନିଯୋଡ଼ା ଗାମୁଛା ଦେଇ ଦଣ୍ଡ ପ୍ରଣାମ କରନ୍ତି । ରଥଯାତ୍ରା ଛେରା ପହଁରା ପରେ ମଧ ଏହି ନୀତି ହୋଇଥାଏ । ଏହାକୁ ନିଉଛାଳି ସେବା କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୬୬) ।

**ନିକାପ ସେବା**-*ଦେ.ବି.*- ଶ୍ରୀମନ୍ଦିର ରୋଷ ଘର ସଫା ପରେ ଏମାନେ ଗୋଦାମରୁ ନଡ଼ିଆ, ଘିଅ, ଜିରା, ଅଦା, ମରିଚ, ହେଙ୍ଗୁ ଆଣି ସରଘରେ ଅଦାକୁ ଧୋଇ, ଜିରା ସଫା କରି ପ୍ରତ୍ୟେକ ଧୂପ ପାଇଁ ମସଲା ଥାଳି ସଜାଡ଼ନ୍ତି । ରୋଷ ଆରମ୍ଭ ହେଲେ ହୋମପାଳିଆ ପୂଜାପଣ୍ଡା ଏହି ସରଘରକୁ ଆସି ଘିଅ, ନଡ଼ିଆ ନେଇଯାନ୍ତି ଓ ହୋମ ପରେ ପାଳିଆ ମେକାପ ମୁହଁ ବାନ୍ଧି ମସଲା ଥାଳି ନେଇ ରୋଷ ଦୁଆରେ ରୋଷ ପାଇକ ଜିମା ଦିଅନ୍ତି । ହୋମ ପାଇଁ, ପତ୍ରିବସ୍ତ୍ର, ସୁଆରବସ୍ତ୍ର, ଧୋପଖାଳିଆ, ତୋଳାବତୀ, ବୀର ମୁଣ୍ଡିଆ ଚୁନା ମୁଣ୍ଡିଆକୁ ଘିଅ ବାଣ୍ଟନ୍ତି । ଯାତ୍ରାଙ୍ଗି ମହାସ୍ନାନରେ ଲାଗିବା ଜିନିଷ ଗୋଦାମଘରୁ ଆଣି ମେକାପ ସରଘରେ ଲେଙ୍କା ପଧାନୀକୁ ଯୋଗାନ୍ତି । ଚନ୍ଦନ ସମୟରେ ଷୋଳଟିଆ ପଣା, ଯାତଭୋଗ ପଣା, ଆଳଟଲାଗି ପଣା ପାଇଁ ତିନୋଟି ନଡିଆ ପ୍ରତ୍ୟହ ବଇଆଳିଶି ଦିନ

ଦିଅନ୍ତି । କାଳୀୟଦଳନ ଏକାଦଶୀରେ, ବନଭୋଜିରେ, ଗୁଣ୍ଡିଚାରେ, ମକର ସଂକ୍ରାନ୍ତିରେ ମହାଭୋଗ ଓ ଗୁଡ଼ିଆ ଦେବା ଜିନିଷ ସରଘରେ ଜଗନ୍ତି । ଛତୁ ତିଆରି ସମୟରେ ସରଘରେ ଉପସ୍ଥିତ ରହନ୍ତି । ଅଣସର ପନ୍ଦର ଦିନ ପଣା ପାଇଁ ଗୋଦାମରୁ ଆଣି ଦିନ ଓ ରାତ୍ର ପଣା ପାଇଁ ଦିଅନ୍ତି । ପହିଲିଭୋଗ ମାସରେ ଗୋଦାମଘରୁ ନଡ଼ିଆ ଆଣିବା, ଦୈନିକ ଆଣିଥିବା ମସଲା ସଜାଡ଼ିବା, ଅଦା ଛେଚିବା ଓ ନଡ଼ିଆ ଖୁଦି କରିବା କାର୍ଯ୍ୟ ସାରି ରୋଷକୁ ଯୋଗାନ୍ତି ।

(ଶ୍ରୀ.ସ୍ୱ. - ପୃ. ୪୮) ।

**ନିକାପ ସରଘର**-*ଦେ.ବି.*- ଠାକୁରଙ୍କ ନନ୍ଦୋତ୍ସବ ଓ କୃଷ୍ଣଲୀଳା ଅବସରରେ ଶୀତଳ ଭୋଗ ରଖାଯିବା ଘର ।

(ଶ୍ରୀ.ଶ. - ପୃ. ୯୯) ।

**ନିକୁଞ୍ଜ ଲୀଳା**-*ଦେ.ବି.*- ଭାଦ୍ର ଶୁକ୍ଳ ଦ୍ୱିତୀୟା ତିଥିରେ ସନ୍ଧ୍ୟା ଧୂପ ପରେ ମଦନମୋହନ ଠାକୁର ନାଟମଣ୍ଡପକୁ ବିଜେ କରନ୍ତି । ସେଠାରେ ହରଚଣ୍ଡୀ ସାହି ଲୋକଙ୍କ ଦ୍ୱାରା ନିକୁଞ୍ଜ ଲୀଳା ପ୍ରସ୍ତାବ ଅନୁଷ୍ଠିତ ହୋଇଥାଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୯୩) ।

**ନିର୍ମାଲ୍ୟକରଣ**-*ଦେ.ବି.*- ଶ୍ରୀମନ୍ଦିରର କରଣ ସେବକ ବିଶେଷ ।

(ଶ୍ରୀ.ଶ. - ପୃ. ୯୯) ।

**ନିର୍ମାଲ୍ୟ ଖଳା**-*ଦେ.ବି.*- ଶ୍ରୀମନ୍ଦିର ବାହାର ବେଢ଼ାର ଦକ୍ଷିଣପାର୍ଶ୍ୱରେ ନିର୍ମାଲ୍ୟ ପ୍ରସ୍ତୁତ ହେଉଥିବା ବିସ୍ତୃତ ଅଞ୍ଚଳ । ଏଠାରେ ନିର୍ମାଲ୍ୟ ପ୍ରସ୍ତୁତ କରାଯାଇ ବିକ୍ରି ହୋଇଥାଏ ।

(ଶ୍ରୀ.ସ୍ୱ. - ପୃ. ୨୭୧) ।

**ନିର୍ମାଲ୍ୟ ମଣ୍ଡପ**-*ଦେ.ବି.*- ନିର୍ମାଲ୍ୟ ଖଳାର ମଣ୍ଡପ ବିଶେଷ ।

(ପୁ.ବୋ. - ପୃ. ୨୭୪) ।

**ନିମେରଖାଲ**-*ଦେ.ବି.*- ଚୈତନ୍ୟ ଚରିତାମୃତ ବର୍ଣ୍ଣନା ଅନୁସାରେ ଶ୍ରୀଚୈତନ୍ୟ ଶ୍ରୀମନ୍ଦିର ମଧ୍ୟସ୍ଥ ଗରୁଡ଼ସ୍ତମ୍ଭ ଉପରେ କମଣ୍ଡଳୁ ଜଳ ଢାଳିବାକୁ ଉଦ୍ୟତ ହୁଅନ୍ତେ ଶ୍ରୀମନ୍ଦିର ପଣ୍ଡା ପଢ଼ିଆରୀ ବାରଣ କଲେ । ଏଣୁ ସେ ଭକ୍ତି ସହକାରେ ଗରୁଡ଼ଙ୍କ ପାଦ ପାଖରେ ଢାଳିଦେଲେ । ତାଙ୍କର ସ୍ମୃତିରକ୍ଷା ଲାଗି ଗୌଡ଼ୀୟ ବୈଷ୍ଣବମାନେ ଚାରିଆଙ୍ଗୁଳ ପରିମିତ ଖାଲ ଖୋଳି ସେହି ଖାଲରେ ଶ୍ରୀଚୈତନ୍ୟଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ଶ୍ରୀଚୈତନ୍ୟଙ୍କ ପୂର୍ବ ନାମ ନିମାଇ ଥିଲା, ଏଣୁ ସେହି ଖାଲକୁ ନିମେଇଖାଲ ବା ନିମେରର ଖାଲ ବୋଲି କୁହାଯାଏ ।

(ଶ୍ରୀ.ଜି. - ପୃ. ୨୮) ।

**ନିଯୋଗ**-*ସଂ.ବି.*- ଶ୍ରୀଜଗନ୍ନାଥଙ୍କ ନିକଟରେ ସେବା କରୁଥିବା ସେବକ ଦଳ, ସୁଆର ନିଯୋଗ, ବଡ଼ୁ ନିଯୋଗ ଇତ୍ୟାଦି । ସେବାରେ ନିଯୁକ୍ତି ଗୋଷ୍ଠୀଙ୍କୁ ନିଯୋଗ କୁହାଯାଏ ।

(ଓ.ସାଂ.ଶ. - ପୃ. ୨୦୫, ପୂ.ଓ.ଭା. - ପୃ. ୪୩୪୩) ।

**ନିରୋଧନଗୃହ**-*ସଂ.ବି.*- ଅଣସର ଗୃହ । ଦେବସ୍ନାନ ପୂର୍ଣ୍ଣିମାର ସମସ୍ତ ବିଧିବିଧାନ ପରେ ଶ୍ରୀଜଗନ୍ନାଥ ପ୍ରଭୃତି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ନିରୋଧନ ଗୃହକୁ ନିଆଯାଇଥାଏ ।

(ଦା.ନ. - ପୃ. ୪୧) ।

**ନିଶା**-*ଦେ.ବି.*- ଶ୍ରୀମନ୍ଦିର ବା ବିମାନର ତିନି ଦିଗକୁ ଲାଗି ତିନୋଟି ଛୋଟ ମନ୍ଦିର । ଏଥିରେ ପାର୍ଶ୍ୱଦେବତା ଭାବେ ଦକ୍ଷିଣରେ ବରାହ, ପଶ୍ଚିମରେ ନୃସିଂହ ଓ ଉତ୍ତରରେ ତ୍ରିବିକ୍ରମ ଅଛନ୍ତି । ପାର୍ଶ୍ୱଦେବଦେବୀ ମୁଖ୍ୟ ମନ୍ଦିରର ତିନିପାର୍ଶ୍ୱରେ ଖୋପରେ ରହିବା କଥା, ମୁଖ୍ୟ ମନ୍ଦିରକୁ ଦୃଢ଼ ରଖିବା ପାଇଁ ପାର୍ଶ୍ୱଦେବଙ୍କ ଆସ୍ଥାନ ଛୋଟ ମନ୍ଦିର ରୂପରେ ସଂଯୋଜିତ ହୋଇଅଛି ।

(ପୂ.ଓ.ଭା. - ପୃ. ୪୩୯୬) ।

**ନିଶାତଳ**-*ଦେ.ବି.*- ପୁରୀ ବଡ଼ଦେଉଳର ପଶ୍ଚିମକୁ ଲାଗିଥିବା ନିଶା ଦେଉଳର ତଳ । ପୁରୀ ଶ୍ରୀମନ୍ଦିରର ପଶ୍ଚିମପଟରେ ଥିବା ଗଣେଶ ମୂର୍ତ୍ତିଙ୍କ ସମ୍ମୁଖସ୍ଥ ଖୋଲା ସ୍ଥାନ ।

(ପୂ.ଓ.ଭା. - ପୃ. ୪୩୯୭) ।

**ନିଶାନୃସିଂହ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ପଶ୍ଚିମପାର୍ଶ୍ୱ ନିଶାରେ ଥିବା ନୃସିଂହ ଠାକୁରଙ୍କ ମନ୍ଦିର ।
(ଶ୍ରୀ.ସ୍ୱ. - ପୃ. ୨୧୨) ।

**ନିହାଲ**-*ଦେ.ବି.*- ଶୀତଦିନେ ଠାକୁରଙ୍କ ଶୟନ ନୀତିରେ ବ୍ୟବହୃତ ହେଉଥିବା ଏକ ପ୍ରକାର ଚାଦର ।
(ପୂ.ଓ.ଭା. - ପୃ. ୪୪୨୪) ।

**ନିହାଲି**-*ଦେ.ବି.*- ଶେଜ ବା ରେଜେଇ । ଶ୍ରୀମନ୍ଦିରରେ ଶୀତଦିନେ ଠାକୁରଙ୍କ ଶୟନ ନୀତିରେ ବ୍ୟବହୃତ ହେଉଥିବା ଏକ ପ୍ରକାର ଚାଦର ।
(ପୂ.ଓ.ଭା. - ପୃ. ୪୪୨୪) ।

**ନୀତି ମାଦଳା**-*ଦେ.ବି.*- ଶ୍ରୀମନ୍ଦିର ଦୈନନ୍ଦିନ ରୀତିନୀତି ଓ ବିବିଧ କାର୍ଯ୍ୟାବଳୀ ଯେଉଁ ପାଞ୍ଜିରେ ଲିପିବଦ୍ଧ ହୋଇ ରହିଥାଏ ।
(ଶ୍ରୀ.ଶ. - ପୃ. ୧୦୦) ।

**ନୀଳକନ୍ଦର**-*ସଂ.ବି.*- ନୀଳଗିରି ପର୍ବତର କନ୍ଦର ବା ଗୁମ୍ଫା । ଶ୍ରୀମନ୍ଦିର ବା ଶ୍ରୀଜୀଉଙ୍କ ଗର୍ଭଗୃହ ।
(ପୂ.ଓ.ଭା. - ପୃ. ୪୪୩୩) ।

**ନୀଳକନ୍ଦରବିହାରୀ**-*ସଂ.ବି.*- ଶ୍ରୀଜଗନ୍ନାଥ ମହାପ୍ରଭୁ ।
(କ୍ଷେ.ସ.) ।

**ନୀଳମାଧବ ମନ୍ଦିର**- ଶ୍ରୀମନ୍ଦିର ଭିତର ବେଢ଼ାରେ ଉତ୍ତର ପଶ୍ଚିମ କୋଣରେ ଶ୍ରୀନୀଳମାଧବ ମନ୍ଦିର ଅବସ୍ଥିତ । କିମ୍ବଦନ୍ତୀ କହେ ଶବର ରାଜା ବିଶ୍ୱାବସୁ ପ୍ରଥମେ ନୀଳମାଧବଙ୍କୁ ନୀଳାଚଳ ପର୍ବତର ଏକ ଗୁମ୍ଫାରେ ପୂଜା କରୁଥିଲେ । ଏହା ଚତୁର୍ଭୁଜ ବିଶିଷ୍ଟ ବିଗ୍ରହ । ଡାହାଣ ଉପର ହାତରେ ଚକ୍ର ଓ ତଳ ହସ୍ତରେ ପଦ୍ମ, ବାମ ଉପର ହସ୍ତରେ ଶଙ୍ଖ ଓ ତଳ ହସ୍ତରେ ଗଦା । ଏହି ନୀଳମାଧବ ମନ୍ଦିର ଉଚ୍ଚତା ଚଉତିରିଶ ଫୁଟ । ଏହା ଏକ ରେଖ ମନ୍ଦିର । ମନ୍ଦିର ଗର୍ଭଗୃହ ଓ ଜଗମୋହନ ସଂଲଗ୍ନ । ଏହା ଛ'ଶହ ବର୍ଷରୁ ଅଧିକ ପୁରାତନ । ଦକ୍ଷିଣରେ ବରାହ, ପଶ୍ଚିମରେ ନୃସିଂହ (ଭଗ୍ନମୂର୍ତ୍ତି) ପୂର୍ବାଭିମୁଖୀ ମନ୍ଦିର । ମୁଖ୍ୟ ଦ୍ୱାରର ଉଚ୍ଚତା ସାଢ଼େ ଚାରିଫୁଟ ଓ ଓସାର ତିନିଫୁଟ । ଦ୍ୱାରବନ୍ଧ ଉପରେ ନବଗ୍ରହ ଓ ଦ୍ୱାର ଦୁଇ ପାର୍ଶ୍ୱରେ ଜୟବିଜୟ ବିଗ୍ରହ ଦେଖିବାକୁ ମିଳେ । ଜଗମୋହନର ଆୟତନ ଲମ୍ବରେ ଷୋହଳଫୁଟ ଓ ଓସାରରେ ଆଠଫୁଟ ଅଟେ ।
ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ପୂର୍ବରୁ ଶ୍ରୀକ୍ଷେତ୍ରରେ ନୀଳମାଧବ ପୂଜା ପାଉଥିଲେ । ଇନ୍ଦ୍ରଦ୍ୟୁମ୍ନ ଶ୍ରୀମନ୍ଦିର ମଧ୍ୟରେ ଶ୍ରୀଜୀଉଙ୍କ ବିଗ୍ରହ ପ୍ରତିଷ୍ଠା କଲାପରେ ନୀଳମାଧବ ବିଗ୍ରହଙ୍କୁ ଏକ କ୍ଷୁଦ୍ର ମନ୍ଦିରରେ ସ୍ଥାପନ କରି ପୂଜା ବ୍ୟବସ୍ଥା ମଧ୍ୟ କରିଥିଲେ । ଅନ୍ୟ ଏକ କିମ୍ବଦନ୍ତୀ କହେ, ଗାଲମାଧବ ଏହି ମୂର୍ତ୍ତିକୁ ସିଂହାସନ ଉପରେ ପୂଜା କରୁଥିଲେ । ପରବର୍ତ୍ତୀ କାଳରେ ଇନ୍ଦ୍ରଦ୍ୟୁମ୍ନ ତାହାକୁ ସ୍ଥାନାନ୍ତରିତ କରିଛନ୍ତି ।
ପଣ୍ଡିତ ନୀଳକଣ୍ଠ ଦାଶଙ୍କ ମତରେ - ନୀଳ + ମା + ଧବ, ଏହି ତିନିତତ୍ତ୍ୱରୁ ଯଥାକ୍ରମେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କର ଉନ୍ମେଷ । ଶ୍ରୀକୃଷ୍ଣ, ଶ୍ରୀମାନ ନାରାୟଣ ଓ ପତିତପାବନ (ଜଗନ୍ନାଥ) ମାଧବ ନାମରେ ସର୍ବଜନବିଦିତ । ସ୍କନ୍ଦପୁରାଣରେ ନୀଳମାଧବଙ୍କର ବର୍ଣ୍ଣନା ମଧ୍ୟ ରହିଛି । ନୀଳମାଧବରୁ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କର ଉନ୍ମେଷ ।
ଗବେଷକଙ୍କ ମତରେ ଶ୍ରୀକୃଷ୍ଣ ନୀଳମାଧବ ଓ ଜଗନ୍ନାଥ - ଏହି ତ୍ରିଦେବ - ମାଧବ ନାମରେ ପରିଚିତ । ଏହି ମନ୍ଦିର ଦଇତା ନିଯୋଗର ତତ୍ତ୍ୱାବଧାନରେ ରହିଛି । ଦୈନିକ ନୀତି ମଧ୍ୟରେ ପ୍ରତ୍ୟୁଷରେ ମଙ୍ଗଳ ଆଳତୀ, ସ୍ନାନ, ବେଶ, ଖଇ କୋରା, କଦଳୀ ଭୋଗ ଓ ରାତ୍ରରେ ଛେନା, ସର, ରାବିଡ଼ି, ଖଇ, କଦଳୀ ଇତ୍ୟାଦି ଭୋଗ କରାଯାଏ । ରାତ୍ରରେ ଠାକୁରଙ୍କ ବଡ଼ସିଂହାର ବେଶ ହେବା ସଙ୍ଗେ ସଙ୍ଗେ ନଖତୁଳସୀ, ବିଭିନ୍ନ ପୁଷ୍ପ ହାର ଲାଗି ହୋଇଥାଏ । ମନ୍ଦିରର ବିଶେଷତ୍ୱ ଏହି ଯେ ପ୍ରତ୍ୟେକ ଦିନ ସୂର୍ଯ୍ୟ ଉଦୟ ସମୟରେ ସୂର୍ଯ୍ୟଦେବଙ୍କର ପ୍ରଥମକିରଣ ନୀଳମାଧବଙ୍କ ପାଦପଦ୍ମ ଉପରେ ପଡ଼ିଥାଏ ।
(ଶ୍ରୀ.ବେ.ଦେ.- ପୃ. ୯୮) ।

**ନୀଳଗିରି**-*ସଂ.ବି.*- ଶ୍ରୀକ୍ଷେତ୍ର ବା ଶ୍ରୀନୀଳାଚଳ କ୍ଷେତ୍ର । ଉତ୍କଳର ଦକ୍ଷିଣ ଦିଗସ୍ଥ ପର୍ବତ ବିଶେଷ । ପୁରାଣାଦିରେ ବର୍ଣ୍ଣିତ ପୁରୀର

ଜଗନ୍ନାଥ ଯେଉଁ ଗିରିରେ ବିରାଜିତ । ପୂର୍ବେ ଏଠାରେ ପାହାଡ଼ ସଦୃଶ ବାଲୁବନ୍ତ ରହିଥିଲା ଓ ଏହା ଉପରେ ମନ୍ଦିର ନିର୍ମାଣ କରାଯାଇଥିବା ବିଶ୍ୱାସ କରାଯାଏ ।

(ପୂ.ଓ.ଭା. - ପୃ. ୪୪୩୪) ।

**ନୀଳଚକ୍ର**-*ସଂ.ବି.*- ବିଷ୍ଣୁ ମନ୍ଦିରର ଶିଖରରେ ଥିବା ଧାତୁମୟ ଚକ୍ରକୁ ମଧ ନୀଳଚକ୍ର କହନ୍ତି । ଶ୍ରୀମନ୍ଦିର ଚୂଡ଼ାରେ ସ୍ଥାପିତ ଥିବା ଅଷ୍ଟଧାତୁ ନିର୍ମିତ ଚକ୍ର । ଏହି ନୀଳଚକ୍ରର ଉଚ୍ଚତା ପ୍ରାୟ ୧୧ ଫୁଟ ୮ ଇଞ୍ଚ ଏବଂ ବ୍ୟାସ ୭ ଫୁଟ ୬ ଇଞ୍ଚ । ଏଥିରେ ୮ଟି ଅର ଅଛି । ପ୍ରତି ଅରର ଦୈର୍ଘ୍ୟ ୧ ଫୁଟ ୧୦ ଇଞ୍ଚ । ପରିଧି ଫଳକର ମୋଟେଇ ୨ ଇଞ୍ଚ, ଓସାର ୯ ଇଞ୍ଚ । ସୂର୍ଯ୍ୟୋଦୟ ସମୟରେ ଏହା ସମ୍ପୂର୍ଣ୍ଣ ଧବଳ ବର୍ଣ୍ଣ ଥାଏ, ସୂର୍ଯ୍ୟାସ୍ତ ବେଳକୁ ଏହା ଗାଢ଼ ନୀଳ ବର୍ଣ୍ଣ ଧାରଣ କରେ । ଚକ୍ରର ସେବକ ହେଲେ ଚୂନରା ସେବକ ।

(ପୂ.ଓ.ଭା. - ପୃ. ୪୪୩୪, ଓ.ସାଂ.ଶ. - ପୃ. ୨୧୦) ।

**ନୀଳସୁନ୍ଦରପର୍ବତ**-*ଦେ.ବି.*- ଜନଶ୍ରୁତିରୁ ଜଣାଯାଏ ପୁରୀ ଧାମରେ ପୂର୍ବେ ନୀଳାଚଳ ପର୍ବତ ରହିଥିଲା । ଏହି ନୀଳାଚଳକୁ ନୀଳସୁନ୍ଦରପର୍ବତ ବୋଲାଯାଇଥାଏ । ଏହାର ଚାରିପଟ ସାଗରବେଷ୍ଟିତ ।

(ଓ.ସାଂ.ଶ.- ପୃ. ୨୧୧) ।

**ନୀଳାଚଳ**-*ସଂ.ବି.*- ପୁରୀ ବା ଶ୍ରୀକ୍ଷେତ୍ର । ପୁରୀ ଜଗନ୍ନାଥ ଯେଉଁ ପୁରାଣ ବର୍ଣ୍ଣିତ ପର୍ବତରେ ବିରାଜିତ । ଉତ୍ତର ନୀଳାଚଳ ଆସାମର କାମାକ୍ଷା ପାହାଡ଼ ଓ ଦକ୍ଷିଣ ନୀଳାଚଳ ଦାକ୍ଷିଣାତ୍ୟ ପୂର୍ବଘାଟ ନୀଳଗିରି ପର୍ବତ । ପୁରୀର ନୀଳସୁନ୍ଦର ପର୍ବତ ଉପରେ ଶ୍ରୀମନ୍ଦିର ନିର୍ମିତ ହୋଇଛି ।

(ଓ.ସାଂ.ଶ.- ପୃ. ୨୧୧, ପୂ.ଓ.ଭା. - ପୃ. ୪୪୩୬) ।

**ନୀଳାଚଳ ଅବଢ଼ା**-*ଦେ.ବି.*- ଶ୍ରୀଜୀଉ ଶ୍ରୀଗୁଣ୍ଡିଚା ଯାତ୍ରା ଶେଷକରି ରତ୍ନସିଂହାସନକୁ ବିଜେ କଲେ ଶ୍ରୀମନ୍ଦିରରେ ପାରମ୍ପରିକ ନୀତି ଆରମ୍ଭ ହୁଏ । ଏହି ସମୟରେ ତାଙ୍କ ନିକଟରେ ଯେଉଁ ପ୍ରଥମ ଅନ୍ନ ଭୋଗ କରାଯାଏ ତାହାହିଁ ନୀଳାଚଳ ଅବଢ଼ା ।

(ଶ୍ରୀ.ଜି. - ପୃ. ୩୩୫) ।

**ନୀଳାଚଳ ଉପବନ**-*ଦେ.ବି.*- ଶ୍ରୀଜୀଉଙ୍କର ଦୈନନ୍ଦିନ ଫୁଲମାଳ, ଫୁଲ ଅଳଙ୍କାର ପାଇଁ ଦୁଇଟି ଉପବନ ଶ୍ରୀମନ୍ଦିର ପରିସର ମଧ୍ୟରେ ଅଛି, ଯଥା- କୋଇଲି ବୈକୁଣ୍ଠ ଉପବନ ଓ ନୀଳାଚଳ ଉପବନ । ଏହି ଦୁଇ ଉପବନରେ ଶ୍ରୀଜଗନ୍ନାଥଙ୍କ ବ୍ୟବହୃତ ବିଭିନ୍ନ ରଙ୍ଗର ଫୁଲ ଓ ତୁଳସୀ ଏଠାରେ ମିଳେ । ୧୯୬୭ ମସିହା ପୂର୍ବରୁ ନୀଳାଚଳ ଉପବନର ନାମ ତୁଳସୀ ବଗିଚା ଥିଲା । ନୂତନ ନାମକରଣ ନୀଳାଚଳ ଉପବନ ହେବା ପରେ ସେଠାରେ ଭକ୍ତ ଓ ତୀର୍ଥଯାତ୍ରୀଙ୍କୁ ଆକୃଷ୍ଟ କରିବା ନିମନ୍ତେ ଝୁଲଣକୁଞ୍ଜ, ଶିବତାଣ୍ଡବ, କୈଳାସପର୍ବତ, ଅନନ୍ତ ଶୟନ, ରାମରାବଣ ଯୁଦ୍ଧ ନବଗୁଞ୍ଜରର ମୂର୍ତ୍ତିମାନ ନିର୍ମାଣ କରାଯାଇଛି । ଏ ଉପବନ ଶ୍ରୀମନ୍ଦିର ବାହାର ବେଢ଼ାରେ ନୈଋତକୋଣରେ ଥିବା ମୋଟ ୧ ଏକର ୨୦ ଡେସିମିଲ ଭୂମିରେ ଅବସ୍ଥିତ । ଏହା ବ୍ୟତୀତନିର୍ମାଲ୍ୟ ଖଳା, ପଞ୍ଚମୁଖୀ ମହାବୀର ମନ୍ଦିର, ସିଦ୍ଧେଶ୍ୱର ମହାଦେବ ମନ୍ଦିର ପ୍ରଭୃତିରେ ଫୁଲଗୁଳ୍ମ ଘର ଆଦି ରହିଛି । ଉପବନର ରକ୍ଷଣାବେକ୍ଷଣ ନିମନ୍ତେ ଚାରିଜଣ ମାଳି ବଗିଚା କାର୍ଯ୍ୟ ପାଇଁ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ନିଯୁକ୍ତି ପାଇଛନ୍ତି ।

(ଶ୍ରୀ.ଜି. - ପୃ. ୨୦୬) ।

**ନୀଳାଦ୍ରି**-*ସଂ.ବି.*- ପୁରୀ ବା ପୁରୁଷୋତ୍ତମ କ୍ଷେତ୍ର ।

(ପୂ.ଓ.ଭା. - ପୃ. ୪୪୩୭) ।

**ନୀଳାଦ୍ରିବିଜେ**-*ସଂ.ବି.*- ଆଷାଢ଼ ଶୁକ୍ଳ ଦ୍ୱାଦଶୀ ଦିନ ବିଗ୍ରହମାନଙ୍କର ରଥରୁ ଗୋଟିପହଣ୍ଡିରେ ଶ୍ରୀମନ୍ଦିର ରତ୍ନସିଂହାସନକୁ ବିଜେ କରିବାକୁ ନୀଳାଦ୍ରିବିଜେ କୁହାଯାଏ ।

(ଶ୍ରୀ.ସ୍ୱ.- ପୃ. ୮୧) ।

**ନୀଳାଦ୍ରିମହୋଦୟ**-*ଦେ.ବି.*- ଏହି ଯାତ୍ରା ବୈଶାଖ ଶୁକ୍ଳ ଅଷ୍ଟମୀ ଦିନ ଅନୁଷ୍ଠିତ ହୁଏ । ଏହା ଶ୍ରୀଜୀଉଙ୍କ ଏକ ଯାତ୍ରା । ବାର ମାସରେ

ବାରଯାତ୍ରା ପରିବର୍ତ୍ତେ ଏ ନୀଳାଦ୍ରି ମହୋଦୟଙ୍କୁ ଯୋଗକଲେ ତେରଯାତ୍ରା ହୋଇଥାଏ । ଏହିଦିନ ପ୍ରାସାଦ ପ୍ରତିଷ୍ଠା ସମାପ୍ତ ହୋଇଥିଲା । ପ୍ରାସାଦ ପ୍ରତିଷ୍ଠା ବା ମନ୍ଦିର ସ୍ଥାପନ ସ୍ମୃତି ଉଦ୍ଦେଶ୍ୟରେ ଏହା ପାଳିତ ହୁଏ । ପୁଣି କୁହାଯାଏ ଏହିଦିନ ପୁରୁଷୋତ୍ତମଙ୍କର ପ୍ରଥମ ପ୍ରତିଷ୍ଠା ହୋଇ ଆଡ଼ପ ବା ଯଜ୍ଞଶାଳାରୁ ମାଧବ ବିଗ୍ରହ ନୀଳାଚଳସ୍ଥିତ ଅନ୍ତର୍ବେଦୀରେ ଅବସ୍ଥାନ କରିଥିଲେ ।

ବୈଶାଖ ଶୁକ୍ଳ ସପ୍ତମୀ ଦିନ ରାତ୍ର ଚନ୍ଦନ ଲାଗି ବଢ଼ିବା ଉତ୍ତାରେ ଭୋଗମଣ୍ଡପ ଘର ଧୋପଖାଳ ହୋଇ ଏକ ଚାନ୍ଦୁଆ ବନ୍ଧା ହୁଏ । ପର୍ବଯାତ୍ରା ଯୋଗାଣିଆ, କୋଠଭୋଗ ପାଣିଆ ଦେଇଥିବା ୧୦୮ ଗରା ପାଣି ଗରାମାନଙ୍କରେ ପୂରାଇ ସୁବାସ ଫୁଲ ପକାଇ ସରାମାନ ଘୋଡ଼ାଇ ଚାନ୍ଦୁଆ ତଳେ ଚାରି ଭାଗ କରି ରଖାଯାଏ । ପଣ୍ଡା ଚେମେଡ଼ି ପତନି ପକାଇ ଫୁଲ ଚନ୍ଦନ ଦେଇ ଜଳ ଅଧିବାସ କରାନ୍ତି । ତଡ଼ାଉ ଦ୍ୱାରମାନ ବନ୍ଦ କରି ମୁଦ ଦିଆଯାଏ ଓ ଲେଙ୍କା ପାଇକ ଜଗି ରହନ୍ତି ।

ବୈଶାଖ ଶୁକ୍ଳ ଅଷ୍ଟମୀ ଦିନ ଭୋଗମଣ୍ଡପ ସାରି ଆଳଟ ଲାଗି ସାରିବା ପରେ ଭିତରେ ପାଣିପଡ଼ି ପୂଜା ପରେ ଅଧିବାସ ହୋଇଥିବା ଜଳ ଗରାମାନ ଗରାବଡୁମାନେ ବାଘମୁହାଁ ବାନ୍ଧି ଘଣ୍ଟ ଛତ୍ର କାହାଳି ସହ ତଳିଛ ପଟୁଆରରେ ଚାରିଥରରେ ଚାରିପନ୍ତି କରି ଥୁଅନ୍ତି । ପଣ୍ଡା ସଂସ୍କାର କରି ଏହି ଜଳ ଲାଗି କରାନ୍ତି । ଘଟୁଆରୀ ଘରଠାରୁ ରୂପା ପିଙ୍ଗଣ ତିନିଗୋଟାରେ ପଣ୍ଡା ପତି ମୁଦିରସ୍ତ ଚନ୍ଦନ ବିଜେ କରାଇ ଆଣି ସିଂହାସନ ଉପରେ ସଂସ୍କାର କରାଇ ପାଳିଆ ପୁଷ୍ପାଳକ ସହ ଚନ୍ଦନ ସର୍ବାଙ୍ଗ କରାନ୍ତି । ଏହି ଉତ୍ତାରେ ଭିତର ପାଣି ପଡ଼ି ଧୋପଖାଳ ହୋଇ ଯାତ୍ରାଙ୍ଗି ଭୋଗ ଓ ମଧ୍ୟାହ୍ନ ଧୂପ ଛାମୁକୁ ଆଣନ୍ତି ।ଏହି ଧୂପ ଉଠିଲେ ରାମକୃଷ୍ଣ ଓ ମଦନମୋହନ ଦକ୍ଷିଣିଘର ଭୋଗ ସାରି ସିଂହାସନକୁ ବିଜେ କରନ୍ତି । ମୁଦିରସ୍ତ ପ୍ରସାଦ ଲାଗି କରାନ୍ତି । ପଣ୍ଡା ଷୋଡ଼ଶ ଉପଚାରରେ ମଣୋହି କରନ୍ତି । ପରେ ପାଣି ପଡ଼ି ଧୋପଖାଳ ହୋଇ ତିନିବାଡ଼ ବନ୍ଧାପନା ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୨୦, ଜ.ନା.ଶ୍ରୀ. - ପୃ. ୪୬, ଶ୍ରୀ.କି. - ପୃ. ୨୨୪) ।

**ନୁଣୁତାଲିଆ**-*ଦେ.ବି.*- ଲୁଣିଆ ଲିଆ, ଏହା ବାଳଭୋଗରେ ଠାକୁରଙ୍କୁ ଲାଗି ହୁଏ । (ଶ୍ରୀ.ଶ. - ପୃ. ୧୦୧) ।

**ନେତ**-*ଦେ.ବି.*- ପତାକା, ବାନା ବା ଧ୍ୱଜା । (ପୂ.ଓ.ଭା. - ପୃ. ୪୪୪୭) ।

**ନେତଫୁଟା**-*ଦେ.ବି.*- ଶ୍ରୀବିଗ୍ରହଙ୍କ ଲାଗି ଟସର ନିର୍ମିତ ଅଠେଇଶ ହାତ ଲମ୍ବ ଓ ଦେଢ଼ହାତ ଓସାର ବିଶିଷ୍ଟ ବସ୍ତ୍ର । ସ୍ନାନପୂର୍ଣ୍ଣିମା, ଅଣସରନୀତି ଓ ଦୋଳପୂର୍ଣ୍ଣିମାରେ ଏହା ଠାକୁରଙ୍କୁ ଲାଗିହୁଏ । (ଶ୍ରୀ.ସ୍ୱ. - ପୃ. ୬୫) ।

**ନେତ୍ରୋତ୍ସବ**-*ସଂ.ବି.*- ରଥଯାତ୍ରାର ପୂର୍ବଦିନ ଜଗନ୍ନାଥ ମହାପ୍ରଭୁଙ୍କର ହେଉଥିବା ଉତ୍ସବ । ଏହି ଦିନ ନୂତନ ରଙ୍ଗରେ ଶ୍ରୀଜୀଉଙ୍କ ଚକ୍ଷୁ ରଙ୍ଗାଯାଏ । ତେଣୁ ଏହାକୁ ନେତ୍ରୋତ୍ସବ କୁହାଯାଏ । ଆଷାଢ଼ ଅମାବାସ୍ୟା ତିଥିରେ ତିନିଜଣ ଦତ୍ତମହାପାତ୍ର ତିନିଗୋଟି ରୂପା ବଟାରେ କଳାରଙ୍ଗ ପ୍ରସ୍ତୁତ କରନ୍ତି ଓ ତିନିଜଣ ପୂଜାପଣ୍ଡା ତିନିଟି କାଠିରେ ମହାପ୍ରଭୁଙ୍କର ଶ୍ରୀନେତ୍ର ଅଙ୍କନ କରନ୍ତି ଓ ଏହି ନୀତି ବଢ଼ିଲା ପରେ ଯାତ୍ରୀମାନେ ଶ୍ରୀଜୀଉଙ୍କ ନବଯୌବନ ଦର୍ଶନ କରଥାନ୍ତି । (ଶ୍ରୀ.ସ୍ୱ. - ପୃ. ୬୬, ପୂ.ଓ.ଭା. - ପୃ. ୪୪୪୯, ଓ.ସାଂ.ଶ. - ପୃ. ୨୨୧) ।

**ନେଫେଡ଼ା ତରକାରି**-*ଦେ.ବି.*- ଅକଟା ପରିବା ସହ ଅକଟା ଓ ଅଫୁଟା ପ୍ରସ୍ତୁତ କରାଯାଇଥିବା ଏକ ପ୍ରକାର ତରକାରି । ପୂର୍ବେ ଏହା ପ୍ରସ୍ତୁତ କରାଯାଉଥିଲା । (ଶ୍ରୀ.ଦୀ.ବ୍ୟା. - ପୃ. ୩୬୨) ।

**ନୃତ୍ୟ**-*ସଂ.ବି.*- ଚନ୍ଦନବେଢ଼ା, ଚାପ, ଝୁଲଣ, ପୁଷ୍ପାଭିଷେକରେ କରାଯାଉଥିବା ନୃତ୍ୟ । (ଶ୍ରୀ.ଶ. - ପୃ. ୧୦୧) ।

**ନୃସିଂହ**-*ସଂ.ବି.*- ସ୍କନ୍ଦପୁରାଣରୁ ଜଣାଯାଏ ଯେ ଜଗନ୍ନାଥ ମନ୍ଦିର ନିର୍ମାଣ ପୂର୍ବରୁ ଶ୍ରୀମନ୍ଦିର ମଧ୍ୟରେ କଳ୍ପବଟ, ନୃସିଂହ, ରୋହିଣୀକୁଣ୍ଡ, ମା'

ବିମଳା ଏବଂ ଐଶାନେଶ୍ୱର ପୂଜିତ ହେଉଥିଲେ । କଥିତ ଅଛି, ଚୋଡ଼ଗଙ୍ଗଦେବ ମୁଖ୍ୟ ମନ୍ଦିରର ପ୍ରତିଷ୍ଠା ପୂର୍ବରୁ ଏହି ମନ୍ଦିରରେ ଯଜ୍ଞନୃସିଂହ ସ୍ଥାପନ କରିଥିଲେ । ଏହି ନୃସିଂହ ଯଜ୍ଞ-ନୃସିଂହ ବା ମୁକ୍ତି ନୃସିଂହ ନାମରେ ପରିଚିତ । ମୁକ୍ତିମଣ୍ଡପର ଅଧିକାର ପ୍ରାପ୍ତ ବ୍ରାହ୍ମଣମାନଙ୍କର ଏହି ନୃସିଂହ ଆରାଧ୍ୟ ଦେବତା ଅଟନ୍ତି । ସମସ୍ତ ନୃସିଂହ ଚିନ୍ତନ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରରେ ନୃସିଂହ ଉପାସନାର ପ୍ରାଧାନ୍ୟ ଓ ସ୍ୱତନ୍ତତା ହିଁ ଅଧିକ ଗୁରୁତ୍ୱପୂର୍ଣ୍ଣ । ଶ୍ରୀଜଗନ୍ନାଥ ବିଗ୍ରହ ପ୍ରତିଷ୍ଠା ପରେ ଏହି ନୃସିଂହ ପାର୍ଶ୍ୱଦେବତା ରୂପେ ପୂଜିତ ହେଲେ । ଶ୍ରୀଜୀଉଙ୍କର ନବକଳେବର ସମୟରେ ଦାରୁଚୟନ, ସଂଗ୍ରହଠାରୁ ପ୍ରାଣପ୍ରତିଷ୍ଠା ପର୍ଯ୍ୟନ୍ତ ସମସ୍ତ ଗୋପନୀୟ ନୀତି ଓ ପୂଜାପଦ୍ଧତିରେ ନୃସିଂହମନ୍ତ୍ରର ସ୍ୱତନ୍ତ ବୈଶିଷ୍ଟ୍ୟ ଓ ପ୍ରୟୋଗ ଅଛି । ସୁତରାଂ ସେ ସବୁର ଅଧିଷ୍ଠାତା ଦେବତା ହେଉଛନ୍ତି ଶ୍ରୀନୃସିଂହ । ଏତଦ୍‌ବ୍ୟତୀତ ଶ୍ରୀମନ୍ଦିର ବେଢ଼ା ମଧ୍ୟରେ କେତେକ ନୃସିଂହ ମନ୍ଦିର ଦୃଷ୍ଟିଗୋଚର ହୁଏ ।

(କ୍ଷେ.ସ.) ।

**ନୃସିଂହ ବିଗ୍ରହ-**

୧. ମୁକ୍ତି ମଣ୍ଡପ ସମ୍ମୁଖସ୍ଥ ନୃସିଂହ ମନ୍ଦିରରେ ଅତ୍ୟନ୍ତ ପ୍ରାଚୀନ ନୃସିଂହ ବିଗ୍ରହ ପ୍ରତ୍ୟେହ ପୂଜିତ ହେଉଛନ୍ତି । ଏହି ମନ୍ଦିରଟି ଅନ୍ୟାନ୍ୟ ନୃସିଂହ ମନ୍ଦିର ମଧ୍ୟରେ ମୁଖ୍ୟ ଅଟେ । ଏହି ମନ୍ଦିରର ମୁଖ୍ୟ ଦ୍ୱାରରେ ଉପରେ ମଧ୍ୟ ଏକ କଳା ମୁଗୁନି ପ୍ରସ୍ତରର ନୃସିଂହ ମୂର୍ତ୍ତି ଅବସ୍ଥିତ ।

୨. ଜଗମୋହନର ଖମ୍ବ ନୃସିଂହ(ଚିତ୍ର ପ୍ରତିମା) ପୂଜା ପାଉଛନ୍ତି ।

୩. ଦକ୍ଷିଣ ଘରେ 'ବାଡ଼ି ନୃସିଂହ' ଓ 'ଲକ୍ଷ୍ମୀ-ନୃସିଂହ' ମୂର୍ତ୍ତି ଅଛନ୍ତି(ଚଳନ୍ତି ପ୍ରତିମା) ଓ ଦୈନନ୍ଦିନ ପୂଜିତ ହେଉଛନ୍ତି ।

୪. ମୁଖ୍ୟ ମନ୍ଦିରର ପଶ୍ଚିମ ପାର୍ଶ୍ୱକୁଲାଗି ଏକ ମନ୍ଦିରରେ ବିଦ୍ୟା ନୃସିଂହ ଅବସ୍ଥିତ ।

୫. ଭିତର ବେଢ଼ାସ୍ଥ ଲକ୍ଷ୍ମୀ ମନ୍ଦିରର ଜଗମୋହନ ସମ୍ମୁଖସ୍ଥ ପ୍ରବେଶ ଦ୍ୱାରର ବାମ ପାର୍ଶ୍ୱରେ ଲକ୍ଷ୍ମୀ ନୃସିଂହ ବିରାଜିତ । ମନ୍ଦିର ଧ୍ୟାନ ମଣ୍ଡପ କାନ୍ଥରେ ନୃସିଂହଙ୍କ ଚିତ୍ର ପ୍ରତିମା ରହିଛି ।

୬. ବାଇଶି ପାହାଚର ବାମ କଡ଼ରେ ତଥା କାଶୀବିଶ୍ୱନାଥ ମନ୍ଦିର ସମ୍ମୁଖରେ ନୃସିଂହ ଦେଉଳ ଅବସ୍ଥିତ ।

୭. ବାଇଶି ପାହାଚର କୂର୍ମ ବେଢ଼ା ସଂଲଗ୍ନ ଏକ ସରଘରେ ନୃସିଂହ ବିଗ୍ରହ ଅବସ୍ଥିତ ।

୮. ପଶ୍ଚିମ ଦ୍ୱାର କାନପତା ହନୁମାନ ମନ୍ଦିର ପାର୍ଶ୍ୱରେ ଥିବା ଏକ ସରଘରେ ଶ୍ରୀ ନୃସିଂହ ଠାକୁର ବିଦ୍ୟମାନ ।

୯. ଦକ୍ଷିଣଦ୍ୱାରା ଗୁମୁଟର ଡାହାଣ ପାର୍ଶ୍ୱରେ ନୃସିଂହ ମନ୍ଦିର ଅବସ୍ଥିତ ।

୧୦. ଦକ୍ଷିଣଦ୍ୱାର ଦେଇ ଭିତର ବେଢ଼ାକୁ ପ୍ରବେଶ କରିବା ବାଟରେ ବାମ ଭାଗରେ ବୁଢ଼ି ମା'ଙ୍କ ମନ୍ଦିର ନିକଟରେ ଥିବା ପାଣିଆଘରେ ନୃସିଂହ ବିରାଜିତ ।

୧୧. ଉତ୍ତର ଦ୍ୱାରସ୍ଥ ଉତ୍ତରାୟଣୀ ମନ୍ଦିର ପାର୍ଶ୍ୱରେ ଶ୍ରୀ ଲକ୍ଷ୍ମୀ ନୃସିଂହ ମନ୍ଦିର ଅବସ୍ଥିତ ।

୧୨. ଭିତର ବେଢ଼ାସ୍ଥ ସାକ୍ଷୀଗୋପାଳ ମନ୍ଦିର ପାର୍ଶ୍ୱରେ ଥିବା ମଣ୍ଡଣିଘରେ ନୃସିଂହ ମୂର୍ତ୍ତି ବିରାଜିତ ।

୧୩. ଭୋଗ ମଣ୍ଡପ ଗୁମୁଟ ତଳେ ଓ ଭୋଗ ଯିବା ରାସ୍ତାରେ ଏକ କ୍ଷୁଦ୍ର ନୃସିଂହ ବିଗ୍ରହ ରହିଛି ।

(ଶ୍ରୀ.ବେ.ଦେ.- ପୃ. ୧୨୯) ।

**ନୃସିଂହ ଜନ୍ମ-***ସଂ.ବି.*- ବୈଶାଖ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ନୃସିଂହ ଅବତାରରେ ବିଷ୍ଣୁ ପୃଥିବୀରେ ଜନ୍ମଗ୍ରହଣ କରିଥିଲେ । ଏହି ଦିନ ନୃସିଂହ ମୁକ୍ତିମଣ୍ଡପ ବିଜେ ହେଲା ପରେ ମହାସ୍ନାନ ହୋଇ ଶୀତଳ ଭୋଗ ଲାଗି ହୋଇ ବିମାନରେ ଜଗନ୍ନାଥବଲ୍ଲଭ ବିଜେ କରନ୍ତି ।

(ଶ୍ରୀ.ସ୍ୱ. - ପୃ. ୧୨୦, ପୂ.ଓ.ଭା. - ପୃ. ୪୪୪୩) ।

**ନୃସିଂହଯନ୍ତ-***ସଂ.ବି.*- ଷଟ କୋଣ ଉପରେ ଏକ ବୃତ୍ତର ଘେର, ତାହାର ବାହାରେ ଅଷ୍ଟଦଳ ପଦ୍ମ, ଅଷ୍ଟଦଳ ପଦ୍ମ ବାହାରେ ଏକ ବୃତ୍ତ ଏବଂ ଏହି

ବୃତ୍ତ ବାହାରେ ଦ୍ୱାଦଶଦଳ ପଦ୍ମ, ତାହା ଉପରେ ପୁଣି ଏକ ବୃତ୍ତ ଏବଂ ସେହି ବୃତ୍ତ ବାହାରେ ଷୋଡ଼ଶ ଦଳ ପଦ୍ମ । ତଦନନ୍ତରେ ଅନ୍ୟ ଏକ ବୃତ୍ତ ଏବଂ ସେହି ବୃତ୍ତ ବାହାରେ ବତିଶଦଳ ପଦ୍ମର ନିର୍ମାଣରେ ନୃସିଂହ ଯନ୍ତ୍ର କରାଯିବା ବିଧେୟ । ଷଟକୋଣର ଛଅଟି କୋଣରେ ସୁଦର୍ଶନ ମନ୍ତ୍ର, 'ସହସ୍ରାର ହୁଂ ଫଟ'ର ଗୋଟିଏ ଗୋଟିଏ ଅକ୍ଷର । ଷଟଦଳ ବାହାରସ୍ଥ ଅଷ୍ଟଦଳ ପଦ୍ମର ପ୍ରତ୍ୟେକ ପର୍ଣ୍ଣରେ ଅଷ୍ଟାକ୍ଷରମନ୍ତ୍ର, 'ଓଁ ନମୋ ନାରାୟଣାୟ'ର ଗୋଟିଏ ଗୋଟିଏ ଅକ୍ଷର । ଏହାର ବାହାରେ ଥିବା ଦ୍ୱାଦଶ ଦଳପଦ୍ମର ପ୍ରତ୍ୟେକ ଦଳରେ ଦ୍ୱାଦଶାକ୍ଷର ମନ୍ତ୍ର 'ଓଁ ନମୋ ଭଗବତେ ବାସୁଦେବାୟ'ର ଗୋଟିଏ ଗୋଟିଏ ଅକ୍ଷର । ଏହାର ବାହାରେ ଥିବା ଷୋଡ଼ଶ ଦଳପଦ୍ମର ପ୍ରତ୍ୟେକ ଦଳରେ ଷୋଳଟି ସ୍ୱରବର୍ଣ୍ଣ । ଏହାର ବାହାରେ ଥିବା ବତିଶ ଦଳ ପଦ୍ମର ପ୍ରତ୍ୟେକ ଦଳରେ ବତିଶ ଅକ୍ଷର ବିଶିଷ୍ଟ ନୃସିଂହ ମନ୍ତ୍ର, 'ଉଗ୍ରବୀରଂ ମହାବିଷ୍ଣୁଂ ଜ୍ୱଳନ୍ତଂ ସର୍ବେତୋମୁଖଂ ନୃସିଂହଂ ଭୀଷଣଂ ଭଦ୍ରଂ ମୃତ୍ୟୁ- ମୃତ୍ୟୁଂ ନମାମ୍ୟହମ୍'ର ଗୋଟିଏ ଗୋଟିଏ ଅକ୍ଷର । ଏହାର ବାହାରେ ଅନ୍ୟ ଏକ ବୃତ୍ତ ଏବଂ ଏହି ବୃତ୍ତ ଚତୁ ପାର୍ଶ୍ୱରେ ଗୋଟିଏ ଗୋଟିଏ ବ୍ୟଞ୍ଜନ ବର୍ଣ୍ଣ ରହିଛି । ଷଟ୍‌କୋଣର ମଧ୍ୟରେ 'ଓଁ' ଏବଂ ଏହା ନୃସିଂହ ବୀଜରେ ପରିବୃତ୍ତ ।

ନବକଳେବର ସମୟରେ ଦାରୁ ସଂଗ୍ରହ , ଛେଦନ, ବିଗ୍ରହ ନିର୍ମାଣ ଓ ପ୍ରତିଷ୍ଠା, ସମୟରେ ଏହି ନୃସିଂହ ଯନ୍ତ୍ରର ଆବଶ୍ୟକ ହୋଇଥାଏ ଏବଂ ନୃସିଂହ ମନ୍ତ୍ରରେ ପୂଜା ହୋଇଥାଏ । (ମ.ନ. ପୃ.- ୧୩୦) ।



# ପ

**ପଇଡ଼-**ଦେ.ବି.- କଅଁଳ ବା କଷି ନଡ଼ିଆ । ପରିପକ୍ୱ ହୋଇ ନ ଥିବା ଶ୍ରୀଫଳ ବା ନଡ଼ିଆ । ଏହା ବିଭିନ୍ନ ପୂଜା ସମୟରେ କଳସରେ ବସେ । ଭୋଗ ପ୍ରସାଦ କିମ୍ୱା ପୂଜା ଓ ଶୁଭାଦି କର୍ମରେ ସଦା ବ୍ୟବହୃତ । ଶ୍ରୀମନ୍ଦିରରେ ବଡ଼ସିଂହାର ଧୂପ ପରେ ପହଡ଼ ପଡ଼ିବା ପୂର୍ବରୁ ସୁଆର ବଡୁ ରତ୍ନସିଂହାସନ ତଳେ ଗୋଟିଏ ଏବଂ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଚାରିଟି ପଇଡ ଲାଗି କରନ୍ତି । ପରେ ହଡପ ନାୟକଙ୍କ ଦ୍ୱାରା ଲକ୍ଷ୍ମୀ ନୃସିଂହ, ବିମଳା, ସରସ୍ୱତୀ ଓ ଦକ୍ଷିଣି ଘରେ ଗୋଟିଏ ପଇଡ ଲାଗି କରାନ୍ତି । ଏତଦ୍ ବ୍ୟତୀତ ବଡସିଂହାର ବେଶ ବେଳେ ଓ ବସନ୍ତ ପଞ୍ଚମୀ ବେଳେ ବେଣ୍ଟ ଶିକାର ବେଳେ ପଇଡ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୮, ପୂ.ଓ.ଭା. - ପୃ. ୪୪୭୨, କୃ.ବି.ଓ.ଶ.ସ. - ପୃ. ୫୪୨) ।

**ପଇତା ଲାଗି-**ଦେ.ବି.- ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଭେଦରେ ପଇତା ସୂତାକୁ ଗଣ୍ଠି ପକାଇଲା ପରେ ଏହାକୁ ଅଭିମନ୍ତ୍ରିତ କରି ଧାରଣ କରାଯାଏ । ସାଧାରଣତଃ ଏହା ବାମକାନ୍ଧରୁ ଡାହାଣ ପାଖ ଅଣ୍ଟା ପର୍ଯ୍ୟନ୍ତ ଲମ୍ୱିଥାଏ ।
ଶ୍ରୀମନ୍ଦିରେ ଭାଦ୍ର ଶୁକ୍ଳ ଦ୍ୱାଦଶୀରେ ଚାଳିବୋଡ଼ରେ ପଇତା ଲାଗି ହୋଇଥାଏ । ଏତଦ୍‌ବ୍ୟତୀତ ବିଗ୍ରହମାନଙ୍କର ଦୃଢ଼ତା ଲାଗି ଦଇତାପତିମାନେ ମଧ୍ୟ ପଇତାଲାଗି କରାଇଥାନ୍ତି । ସକାଳ ଧୂପରେ ପୂଜା ଉପଚାର ଭାବରେ ଦଇତାମାନଙ୍କ ଦ୍ୱାରା ଭାଦ୍ରବ ଶୁକ୍ଳ ଦ୍ୱାଦଶୀରେ ପଇତା ଲାଗି ହୋଇଥାଏ ।
ମହାପ୍ରଭୁଙ୍କ ଗଳଦେଶରେ ବର୍ଷସାରା ଲାଗି ହେଉଥିବା ଚନ୍ଦନକୁ ଧରି ରଖିବା ପାଇଁ କାଣି ଆଙ୍ଗୁଠି ମୋଟ ପାଟ ସୂତାରେ ଛକ ଛକ ହୋଇ ପ୍ରସ୍ତୁତ ଜାଲି । ବର୍ଷରେ ଦୁଇତିନିଥର ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୬) ।

**ପଉଟି-**ଦେ.ବି.- ଶ୍ରୀମନ୍ଦିରରେ ହେଉଥିବା ଭୋଗ ସାମଗ୍ରୀକୁ ପୂର୍ବେ ପଉଟି ଦ୍ୱାରା ଓଜନ କରାଯାଉଥିଲା । ଏକ ପଉଟି- ୨୦ ଗଉଣୀ । ୧ ଗଉଣୀ- ୨ ସେରରୁ ୮ ସେର, ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାରରେ ଓଜନ । ଗଉଣୀ, ସେର, ଅଢ଼ା, ବୋଡା, ସୋଲ ପ୍ରଭୃତି ମାଧ୍ୟମରେ ମାପ କରାଯାଉଥିଲା । ପୂର୍ବେ ଶ୍ରୀ ମନ୍ଦିରରେ ଷାଠିଏ ପଉଟି ଭୋଗ ରନ୍ଧା ଯାଉଥିଲା ବୋଲି ଜଣାଯାଏ ।
(ପୂ.ଓ.ଭା. - ପୃ. ୪୪୭୭) ।

**ପଉଦାର-**ଦେ.ବି.- ଶ୍ରୀମନ୍ଦିରର ବଣିଆ ସେବକ ।
(ଶ୍ରୀ.ସ୍ୱ. ୬ଷ୍ଠ- ପୃ. ୪୫) ।

**ପଖାଳ-**ଦେ.ବି.- ଶ୍ରୀମନ୍ଦିରରେ ଅନ୍ନରେ ପାଣି ଓ ଦହି ଦେଇ ପଖାଳ ପ୍ରସ୍ତୁତ ହୁଏ । ପଖାଳ ମଧ ଠାକୁରଙ୍କୁ ଅର୍ପଣ କରାଯାଏ । ପଖାଳ ବିଭିନ୍ନ ପ୍ରକାରର । ଯଥା- ସୁବାସ ପଖାଳ, ମଲ୍ଲୀ ପଖାଳ, ଟଭା ପଖାଳ ଇତ୍ୟାଦି । ନାନାବିଧ ପଖାଳ ଅନ୍ନ ବିଗ୍ରହମାନଙ୍କୁ ଲାଗି କରାଯାଏ । ଶ୍ରୀମନ୍ଦିରରେ ମଧ୍ୟାହ୍ନଧୂପରେ ସୁବାସ ପଖାଳ ଏବଂ ବଡ଼ସିଂହାର ବେଶରେ ଟଭା ପଖାଳ, ସନ୍ଧ୍ୟାଧୂପରେ ସୁବାସ ପଖାଳ ଏବଂ ବଡସିଂହାରରେ ଘିଅ ପଖାଳ ଲାଗି ହୁଏ । ଦୀପାବଳୀ ଅମାବାସ୍ୟାରେ ପଖାଳ ପ୍ରସାଦ ହୁଏ । ଗୁଣ୍ଡିଚା ଘରେ ସଙ୍କୁଡ଼ି ଭୋଗରେ ପଖାଳ ମଧ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. - ପୃ. ୨୨/୨୭/୧୯୧ ପୂ.ଓ.ଭା. - ପୃ. ୪୪୮୪) ।

**ପଖାଳ ଖଦି-**ଦେ.ବି.- ଏକ ପ୍ରକାର ପରିଧେୟ ବିଶେଷ । ଏହା ଠାକୁରଙ୍କ ଅଙ୍ଗରେ ଲାଗିହୁଏ ।
(ଶ୍ରୀ.ଶ.- ପୃ. ୧୦୨) ।

**ପଞ୍ଚକେତନ**-*ଦେ.ବି.*- ନନ୍ଦିଘୋଷ (ପତିତପାବନ) ରଥର ଦଧିନଉତି କଳସ ଉପରେ ଅବସ୍ଥାପିତ ଧ୍ୱଜାକୁ ପଞ୍ଚକେତନ କୁହାଯାଏ । ପଞ୍ଚରଙ୍ଗ ବିଶିଷ୍ଟ ଏହି ଧ୍ୱଜାର ଦୈର୍ଘ୍ୟ ପାଞ୍ଚ ଆଙ୍ଗୁଳ । ସ୍ୱୟଂ ଶ୍ରୀଜଗନ୍ନାଥ ସର୍ବଦେବଦେବୀଙ୍କ ସମନ୍ୱିତ ବିଗ୍ରହ । ଏଣୁ ପଞ୍ଚଦେବ ଉପାସନାରେ ରଥକଳସ ଉପରେ ବନ୍ଧା ହୋଇଥିବା ପଞ୍ଚରଙ୍ଗର ପତାକା । ଏହି ପଞ୍ଚଦେବଙ୍କର ଯଥା- ଗଣେଶଙ୍କର ଆରକ୍ତ (ଅଚ୍ଛ ଲାଲ), ନାରାୟଣଙ୍କର ପୀତ, ରୁଦ୍ରଙ୍କର ଶ୍ୱେତ, ଦୁର୍ଗାଙ୍କର କୃଷ୍ଣ ଓ ସୂର୍ଯ୍ୟଙ୍କର ରକ୍ତବର୍ଣ୍ଣ ସମ୍ମିଶ୍ରଣରେ ପଞ୍ଚକେତନ ।
(ଶ୍ରୀ.ଜି. - ପୃ. ୨୬୧) ।

**ପଞ୍ଚକୋଶୀ**-*ଦେ.ବି.*- ଶ୍ରୀକ୍ଷେତ୍ରର ପାଞ୍ଚକୋଶ ପରିମିତ ଅଞ୍ଚଳର କରମୁକ୍ତ ଯାତ୍ରୀ । ପୁରୀଠାରୁ ପାଞ୍ଚକୋଶ ବା ପ୍ରାୟ ୧୦ ମାଇଲ ମଧ୍ୟରେ ରହୁଥିବା ଯାତ୍ରୀ ବା ଆଗନ୍ତୁକ ଯାତ୍ରୀ ।
(କୃ.ବି.ଶ.ସ.- ପୃ. ୫୫୦, ଓ.ସାଂ.ଶ.- ପୃ. ୨୧୪, ପୂ.ଓ.ଭା. - ପୃ. ୪୪୯୬, ପ୍ର.ଅ. ୨ୟ - ପୃ. ୧୪୮୨) ।

**ପଞ୍ଚଗବ୍ୟ**- ଦୁଗ୍ଧ, ଦହି, ଘୃତ, ଗୋବର, ଗୋମୂତ୍ର ଏହି ପଞ୍ଚ ଗବ୍ୟ ଦ୍ୱାରା ନବକଳେବର ସମୟରେ ଯଜ୍ଞବେଦୀ ପ୍ରକ୍ଷାଳନ କରାଯାଏ ।
(ପୂ.ଓ.ଭା. - ପୃ.-୪୪୯୭) ।

**ପଞ୍ଚତୀର୍ଥ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଥିବା ପାଞ୍ଚଗୋଟି ତୀର୍ଥସ୍ଥାନ । ଯଥା- ୧. ଗୁଣ୍ଡିଚା ମନ୍ଦିର ପାଖ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ, ୨. ମାର୍କଣ୍ଡେଶ୍ୱର ସାହିସ୍ଥ ମାର୍କଣ୍ଡ ପୁଷ୍କରିଣୀ, ୩. ବାଲିସାହିସ୍ଥ ଶ୍ୱେତଗଙ୍ଗା ପୁଷ୍କରିଣୀ, ୪. ଶ୍ରୀମନ୍ଦିର ବେଢ଼ା ମଧ୍ୟସ୍ଥ ରୋହିଣୀକୁଣ୍ଡ ଓ ୫. ମହୋଦଧି ।
(ଶ୍ରୀ.ଜି. - ପୃ. ୩୨୨) ।

**ପଞ୍ଚତୀର୍ଥ ଜଳ**-*ସଂ.ବି.*- ଗଙ୍ଗା, ଯମୁନା, ଗୋଦାବରୀ, ସରସ୍ୱତୀ, ନର୍ମଦା, ସିନ୍ଧୁ, କାବେରୀ ତୀର୍ଥ ନଦୀରୁ ଯେକୌଣସି ପାଞ୍ଚୋଟି ତୀର୍ଥରୁ ଜଳ ଅଣାଯାଇ ପଞ୍ଚତୀର୍ଥ ଜଳରୂପେ ପୁଣ୍ୟକର୍ମରେ ବ୍ୟବହୃତ ହୁଏ ।
(ଓ.ସାଂ.ଶ. - ପୃ. ୨୧୬) ।

**ପଞ୍ଚରଥ**-*ଦେ.ବି.*- ଶିଳ୍ପଶାସ୍ତ୍ର ଅନୁସାରେ ଯେଉଁ ଦେଉଳର ପ୍ରତ୍ୟେକ ପାଖ ଆଲମ୍ବ ଏବଂ କର୍ଣ୍ଣିକା ପାଞ୍ଚଭାଗ ହୋଇଥାଏ ।
(ଶ୍ରୀ.ଜି.- ପୃ. ୩୬୫) ।

**ପଞ୍ଚରତ୍ନ**-*ସଂ.ବି.*- ସୁବର୍ଣ୍ଣ, ହୀରା, ନୀଳାମଣି, ପଦ୍ମରାଗ ଓ ମୁକ୍ତା । ଶ୍ରୀମନ୍ଦିରରେ ରଥ ପ୍ରତିଷ୍ଠା ବେଳେ ଏହି ପଞ୍ଚରତ୍ନର ଆବଶ୍ୟକ ହୋଇଥାଏ ।
(କ୍ଷେ.ସ.) ।

**ପଞ୍ଚାୟତନ**-*ଦେ.ବି.*- ମୁଖ୍ୟ ମନ୍ଦିର ସହିତ ବାହାର ଚାରିକୋଣରେ ଚାରିଗୋଟି ଛୋଟ ମନ୍ଦିର ଥିବା ଏକତ୍ର ମନ୍ଦିର ।
(ଶ୍ରୀ.ଜି. - ପୃ. ୩୩୬) ।

**ପଞ୍ଚସଖା**-*ସଂ.ବି.*- ୧. ଅନନ୍ତଯୁଗରେ- ଶ୍ରୀଦାମ, ସୁଦାମ, ବସୁଦାମ, ନନ୍ଦ ଓ ସୁନନ୍ଦ, ସତ୍ୟଯୁଗରେ ଋଷିତନୁଧାରୀ କୃପାଜଳ, ଗାର୍ଗୀ, ମାର୍କଣ୍ଡେୟ ସ୍ୱୟଂଭୂ ଓ ନାରଦ । ତ୍ରେତା ଯୁଗରେ ବାନର ଭଲ୍ଲୁକଧାରୀ ନଳ, ନୀଳ, ସୁଷେଣ, ଜାମ୍ବବାନ, ହନୁମାନ । ଦ୍ୱାପରଯୁଗରେ ଗୋପାଳରୂପଧାରୀ ସୁବଳ, ସୁବାହୁ, ସୁଦାମ, ଦାମ ଓ ଶ୍ରୀବତ୍ସ । କଳିଯୁଗରେ ସାଧକରୂପଧାରୀ ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ପଞ୍ଚସଖା ଯୁଗେ ଯୁଗେ ଜନ୍ମଗ୍ରହଣ କରିଥାଆନ୍ତି ।
(ଓ.ସାଂ.ଶ. - ପୃ. ୨୧୯) ।

**ପଞ୍ଚୁ ପାଣ୍ଡବ**-*ଦେ.ବି.*- ଶ୍ରୀକ୍ଷେତ୍ରସ୍ଥ ଯମେଶ୍ୱର, ଲୋକନାଥ, ମାର୍କଣ୍ଡେଶ୍ୱର, କପାଳମୋଚନ ଓ ନୀଳକଣ୍ଠଙ୍କୁ ପଞ୍ଚପାଣ୍ଡବ ଯଥା- ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଭାବେ ପରିକଳ୍ପନା କରାଯାଇଛି । ଦୋଳପୂର୍ଣ୍ଣିମା ଦିନ ମେଣ୍ଢାପୋଡ଼ି ପାଇଁ ଦୋଳଗୋବିନ୍ଦଙ୍କ ସହ ଦୋଳବେଦୀ ତଳକୁ, ବାହାର ଚନ୍ଦନରେ ମଦନମୋହନ ଓ ରାମକୃଷ୍ଣଙ୍କ ସହ ନରେନ୍ଦ୍ର ପୋଖରୀକୁ, ଶୀତଳଷଷ୍ଠୀ ଦିନ ବିବାହ ପରେ ନିମନ୍ତ୍ରିତ ହୋଇ ପାର୍ବତୀଙ୍କ ସହ ଶ୍ରୀମନ୍ଦିରକୁ ବିଜେ କରନ୍ତି । ପଞ୍ଚୁଗ୍ରାସୀ ଭୋଗ ପରେ ଆଜ୍ଞାମାଳ ପାଇ ଲକ୍ଷ୍ମୀଙ୍କ ଜଗମୋହନରେ ବିଜେ କରନ୍ତି । ରୁକ୍ମଣୀ ହରଣ ଦିନ ଯମେଶ୍ୱରଙ୍କ

ଦ୍ୱାରା ନିମନ୍ତ୍ରିତ ହୋଇ ନବବିବାହିତ ମଦନ ମୋହନ ଦମ୍ପତି ତାଙ୍କ ଆସନକୁ ବିଜେ କରନ୍ତି । ଶମ୍ଭୁ ଏକାଦଶୀ (ସୋମବାର ଦିନ ଏକାଦଶୀ ପଡ଼ିଲେ) ଦିନ ମଦନମୋହନ ଲୋକନାଥଙ୍କ ପାଖକୁ ବିଜେ କରନ୍ତି । ଲୋକନାଥଙ୍କ ବିଜେ ପ୍ରତିମା ଶ୍ରୀଜଗନ୍ନାଥ ମନ୍ଦିରର ଭଣ୍ଡାର ଘରେ ରତ୍ନଭଣ୍ଡାରର ରକ୍ଷକ ରୂପେ ଥାନ୍ତି । ଶମ୍ଭୁ ଏକାଦଶୀରେ ମଧ ଶ୍ରୀଲୋକନାଥ ଶ୍ରୀମନ୍ଦିରକୁ ବିଜେ କରନ୍ତି । (ଶ୍ରୀ.ସ୍ୱ.- ପୃ. ୨୪୧, ପୂ.ଓ.ଭା. - ପୃ. ୪୫୦୨) ।

**ପଛଭଅଣ୍ଡ**-ଦେ.ବି.- ଭୋଗମଣ୍ଡପରେ ଲାଗି ହେଉଥିବା ପ୍ରସାଦକୁ ଭଅଣ୍ଡ ଭୋଗ କୁହାଯାଏ । ଆବଶ୍ୟକତାଠାରୁ ଅତିରିକ୍ତ ପ୍ରସାଦ ଭୋଗମଣ୍ଡପରେ ଲାଗିହେଲେ ତାକୁ ପଛଭଅଣ୍ଡ କୁହାଯାଏ ।
(ଶ୍ରୀ.ଶ. - ପୃ. ୧୦୨) ।

**ପଟ୍ଟଚିତ୍ର**-ଦେ.ବି.- ନୂଆ କପଡ଼ାକୁ ଧୋଇ ତା' ଉପରେ ତେନ୍ତୁଳିମଞ୍ଜି ଓ ଖଡ଼ିପଥର ବଟା ମିଶ୍ରଣରେ ପଟ୍ଟଚିତ୍ର ପ୍ରସ୍ତୁତ କରାଯାଇ ତା' ଉପରେ ମୂର୍ତ୍ତିମାନଙ୍କ ଚିତ୍ର ଅଙ୍କନ କରାଯାଏ । (କ୍ଷେ.ସ.) ।

**ପଟ୍ଟଚିତ୍ରପଟି**-ଦେ.ବି.- ପଟ୍ଟଚିତ୍ର ପଟି ଅଣସର ନୀତି ସମୟରେ ଆବଶ୍ୟକ ପଡ଼େ । ତିନିବାଡ଼ ପଟିଠାକୁର (ବଡ଼ବାଡ଼ରେ ବାସୁଦେବ, ମଝିବାଡ଼ରେ ଭୁବନେଶ୍ୱରୀ ଓ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ନାରାୟଣ) ଅଣାଯାଇ ଜୟବିଜୟ ଦ୍ୱାରରେ ରଖାଯାଇଥାନ୍ତି । ଏହି ପଟ୍ଟଚିତ୍ରର ଲମ୍ବ ୩ ଫୁଟ ୪ ଇଞ୍ଚ ଓ ଓସାର ୨ ଫୁଟ ୬ ଇଞ୍ଚ । ଏଥିରେ ଚିତ୍ରିତ ହୋଇଥିବା ଠାକୁର ସମସ୍ତେ ଚତୁର୍ଭୁଜ । ଶ୍ରୀଜଗନ୍ନାଥଙ୍କ ଚତୁର୍ଭୁଜରେ ଶଙ୍ଖଚକ୍ର ଗଦାପଦ୍ମ, ଶ୍ରୀବଳଭଦ୍ରଙ୍କ ଚତୁର୍ଭୁଜରେ ଶଙ୍ଖଚକ୍ର ଗଦା ଲଙ୍ଗଳ ଓ ଦେବୀ ସୁଭଦ୍ରାଙ୍କ ଚତୁର୍ଭୁଜରେ ଦୁଇଟି ପଦ୍ମ (ଉର୍ଦ୍ଧ୍ୱ ଦୁଇ ଚତୁର୍ଭୁଜରେ) ନିମ୍ନ ଦୁଇ ଭୁଜ ବରଦା ଭଙ୍ଗିରେ ରହିଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୨) ।

**ପଟ୍ଟଯୋଶୀ ମହାପାତ୍ର**-ଦେ.ବି.- ଛତିଶା ନିଯୋଗର ନାୟକ ଅଟନ୍ତି । ସେବକମାନଙ୍କ କାର୍ଯ୍ୟ ତଦାରଖ କରୁଥିବା ଉଚ୍ଚପଦସ୍ଥ ସେବକ । ସେବକମାନେ ଯଥାରୀତିରେ କାର୍ଯ୍ୟ ସମ୍ପାଦନ କଲେ କି ନାହିଁ ତଦାରଖ କରିବା ସହିତ ଶାଢ଼ିବନ୍ଧା କାର୍ଯ୍ୟ କରିଥାନ୍ତି । ୧୯୩୦ ମସିହା ପର୍ଯ୍ୟନ୍ତ ଭଣ୍ଡାର ଘରର ଗୋଟିଏ ଚାବି ଏହାଙ୍କ ପାଖରେ ରହୁଥିଲା । (ଶ୍ରୀ.ସ୍ୱ. ୧ମ - ପୃ. ୪-୫) ।

**ପଟୁଆର**-ଦେ.ବି.- ନୃତ୍ୟ, ଗୀତ, କୀର୍ତ୍ତନ ଆଦି ହେଉଥିବା ଶୋଭାଯାତ୍ରା । କାର୍ତ୍ତିକ ମାସ ବାଳଧୂପରେ ଶ୍ରୀମନ୍ଦିରରେ ପଟୁଆର ହେବା ବିଧି ଅଛି । ବୟାଳିଶ ଦିନ ଚନ୍ଦନ ସମୟରେ ଠାକୁର ଚନ୍ଦନଲାଗି ହୁଅନ୍ତି ଓ ଜଗମୋହନରେ ପଟୁଆର ହୁଏ । ଯେଉଁ ନୌକାରେ ସେ ଜଳକ୍ରୀଡ଼ା କରନ୍ତି, ସେହି ନୌକାରେ ଠାକୁରଙ୍କ ବସିବା ଆସ୍ଥାନକୁ ଚାପ କୁହାଯାଏ । ଚାପ ଉପରେ ଓ ଚାପରୁ ଠାକୁରଙ୍କର ବାହୁଡ଼ା ବିଜେ ବେଳେ ମଧ ପଟୁଆର ହୋଇଥାଏ । ଗୁଣ୍ଡିଚାଘର ସକାଳ ଧୂପ ତଥା ବିମଳାଙ୍କ ଆଶ୍ୱିନ ମାସ ଷୋଳପୂଜାରେ ସକାଳ ଧୂପବେଳେ ପଟୁଆର ହୁଏ । ସକାଳ ଧୂପ ଟେରା ପକାଇବା ବେଳେ ଗରୁଡ଼ ଖମ୍ବ ପାଖରେ ମାହାରି ନାଟରେ ରାଜଗୁରୁ ସୁନାବେତ ଧରି ପଟୁଆର କରୁଥିଲେ । ନବକଳେବର ସମୟରେ ଦାରୁ ଆଳାମଚଣ୍ଡୀଙ୍କ ପାଖରୁ ଶ୍ରୀମନ୍ଦିରକୁ ପଟୁଆରରେ ନିଆଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୮, ୩ୟ ପୃ. ୨୮) ।

**ପଟୋଇ**-ଦେ.ବି.- ଓଳି ବିଶେଷ । ଛୋଟମାଟି କୁଡୁଆ ।
(ମା.ପା. - ପୃ. ୫୮) ।

**ପଟୋଳ**-ଦେ.ବି.- ଛୋଟ ପୀଢ଼ ମନ୍ଦିର । ପଟଳ ଛାତ, ଆଚ୍ଛାଦନ । ଯଯାତି କେଶରୀ ତାଙ୍କ ରାଜତ୍ୱ କାଳ ସମୟକୁ ଜୀର୍ଣ୍ଣ ଶ୍ରୀମନ୍ଦିର ସ୍ଥାନରେ ପଟୋଳ ତୋଳାଇ ଶ୍ରୀଜୀଉଙ୍କୁ ରଖାଇଥିଲେ

ବୋଲି ମାଦଳାପାଞ୍ଜିରେ ବର୍ଣ୍ଣିତ । ଓଡ଼ିଶୀ ସ୍ଥାପତ୍ୟକଳାରେ ପୀଢ଼ ମନ୍ଦିର ଗଣ୍ଡିରେ ପୀଢ଼ ଅଂଶର ସମଷ୍ଟିକୁ ପଟୋଳ କୁହାଯାଏ । ପ୍ରତି ପଟୋଳ ମଧ୍ୟରେ କାନ୍ତି (ଦୁଇଟି ପଟୋଳ ମଧ୍ୟରେ ଭିତରକୁ ପଶି ରହିଥିବା ଏକ ଅଳଙ୍କୃତ କାନ୍ଥ) ଥାଏ । ଶ୍ରୀଜଗମୋହନରେ ଦୁଇଟି ଓ ଭୋଗମଣ୍ଡପରେ ତିନୋଟି ପଟୋଳ ରହିଛି ।

**ପଡ଼ା**-*ଦେ.ବି.*- ସମୁଦ୍ର ବାଲିର ସାବତ ନିଯୋଗ ଓ ଶ୍ରୀମନ୍ଦିରର ସାହାଣମେଲାରେ ପୋଖରୀଆରେ ପଡ଼ାଖୁଣ୍ଟିଆ ମେକାପଙ୍କ ପ୍ରାପ୍ୟକୁ ପଡ଼ା କୁହାଯାଏ ।
(ପୂ.ଓ.ଭା. - ପୃ. ୪୫୩୧, କ୍ରି.ବି.ଓ.ଖ.ସ.- ପୃ. ୫୫୩, ପ୍ର.ଅ. ୨ୟ - ପୃ. ୧୪୯୪) ।

**ପଡ଼ିଆ ଉଠିଆ**-*ଦେ.ବି.*- କୌଣସି କୋଠଭୋଗ ସାମଗ୍ରୀ ଭୋଗ ନ ହୋଇପାରିବା ହେଉଛି ପଡ଼ିଆ ଓ ପଡ଼ିଆକରଣଙ୍କ ନିର୍ଦ୍ଦେଶମତେ ଅନ୍ୟଦିନେ ଭୋଗ ହେବା ହେଉଛି ଉଠିଆ ।
(ପୂ.ଓ.ଭା. - ପୃ. ୪୫୩୨) ।

**ପଡ଼ିଆ ରଣ**-*ଦେ.ବି.*- ଶ୍ରୀମନ୍ଦିରର ରଣ ସେବକ ବିଶେଷ । ଏମାନେ ଭୋଗର ପଡ଼ିଆ ବା ଉଠିଆ ତନଖି କରନ୍ତି ଓ ଠାକୁରଙ୍କ ନିକଟରେ ପହରା ଦିଅନ୍ତି । ଧୂପବେଳେ ଭୋଗ ଡାକିବା ଓ ଯାତ୍ରୀମାନଙ୍କ ନିରାପତ୍ତା ଦେଖିବା ମଧ୍ୟ ଏମାନଙ୍କର କାର୍ଯ୍ୟ ।
(ପୁ.ବୋ. - ୨୩୧) ।

**ପଡ଼ିଆ ଦାଣ୍ଡ**-*ଦେ.ବି.*- ଶ୍ରୀକ୍ଷେତ୍ରରେ କୌଣସି ଯାତ୍ରାରେ ଯାତ୍ରୀ ସମାଗମ କମ୍ ହେଲେ ବିକା କିଣା ମଧ୍ୟ ମାନ୍ଦା ହୋଇଯାଏ । ଶ୍ରୀଠାକୁରଙ୍କ ଯାନିଯାତ୍ରା ନ ଥିବା ସମୟରେ ଯାତ୍ରୀମାନଙ୍କର ସମାଗମ ଖୁବ୍ କମ୍ ହୋଇଯାଏ । ଏହାକୁ ପଡ଼ିଆ ଦାଣ୍ଡ କୁହାଯାଏ । ବିଶେଷ କିଣାବିକା ହେଉ ନ ଥିବା ପୁରୀ ବଡ଼ଦାଣ୍ଡ ବଜାର ।
(ପୁ.ବୋ. - ପୃ. ୨୩୧) ।

**ପଡ଼ିଆରୀ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଅବକାଶ ନୀତିରେ ଦାନ୍ତକାଠି ମୁଖପଖାଳ ପଡ଼ିଆରୀ ଯୋଗାଇ ଥାଆନ୍ତି । ସକାଳ ଧୂପରେ ଭିତର ଦ୍ୱାର ବନ୍ଦ କରନ୍ତି ଓ ମଧ୍ୟାହ୍ନ ଧୂପରେ ଭିତର କାଠ ପାଖରେ ବାହାର ଟେରା ବାନ୍ଧନ୍ତି । ଏମାନେ ଦେଉଳରେ ଡାକରା ହାକରା (ଅର୍ଦ୍ଦଳି କାମ) କରନ୍ତି ଓ ଦେଉଳର ଚାବି ଖୋଲି ସେବକମାନଙ୍କୁ ସ୍ୱ ସ୍ୱ କାର୍ଯ୍ୟ କରିବା ନିମନ୍ତେ ଡାକନ୍ତି । ଅତୀତରେ ରାଜା ମଧ୍ୟ ଅନ୍ତଃପୁରର ଖବର ନେବା ଆଣିବା କରିବା ପାଇଁ ପଡ଼ିହାରୀ ନିଯୁକ୍ତ କରୁଥିଲେ । ପଡ଼ିଆରୀ ଯଥା- ପଣ୍ଡା ପଡ଼ିଆରୀ, ଆସ୍ଥାନ ପଡ଼ିଆରୀ, ପର୍ବଯାତ୍ରୀ ପଡ଼ିଆରୀ, ଛାମୁ ପଡ଼ିଆରୀ, ଖୁରୀଜଗା ପଡ଼ିଆରୀ, ଦୁଆରଘର ପଡ଼ିଆରୀ, ଘାଟ ପଡ଼ିଆରୀ, ବଡ଼ ଦୁଆର ପଡ଼ିଆରୀ, ଧୁକୁଡ଼ି ଦ୍ୱାର ପଡ଼ିଆରୀ, ଦକ୍ଷିଣଦ୍ୱାର ପଡ଼ିଆରୀ, ଦ୍ୱାରନାୟକ ପଡ଼ିଆରୀ, ଭୋଗମଣ୍ଡପ ପଡ଼ିଆରୀ, ସିଂହଦ୍ୱାର ପଡ଼ିଆରୀ, ଅନ୍ୟମତେ ବଡ଼ଦ୍ୱାର ପଡ଼ିଆରୀ, ଧୁକୁଡ଼ିଦ୍ୱାର ପଡ଼ିଆରୀ, ଦକ୍ଷିଣଦ୍ୱାର ପଡ଼ିଆରୀ, ଦ୍ୱାରିନାଏକ ପଡ଼ିଆରୀ, ଜୟବିଜୟ ଦ୍ୱାର ପଡ଼ିଆରୀ, ଭୋଗମଣ୍ଡପ ପଡ଼ିଆରୀ, ଦ୍ୱାରଘର ପଡ଼ିଆରୀ, ସିଂହଦ୍ୱାର ପଡ଼ିଆରୀ, ତେଲେଙ୍ଗା ପଡ଼ିଆରୀ । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ବିଭିନ୍ନ ସେବା କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩, ପୂ.ଓ.ଭା. - ପୃ. ୪୫୩୭, ପୁ.ବୋ- ପୃ. ୨୫୨) ।

**ପଣ୍ଡା**-*ଦେ.ବି.*- ସେବକ ବିଶେଷ । ଶ୍ରୀମନ୍ଦିରରେ ଯେଉଁମାନେ ଯାତ୍ରୀ ବୃତ୍ତିଧାରୀ କାର୍ଯ୍ୟ କରନ୍ତି ସେମାନେ ଧୂଳିଆ ପଣ୍ଡା । ଲଳିତା ଓ ବିଦ୍ୟାପତିଙ୍କ ବଂଶଧର ପଣ୍ଡା ବ୍ରାହ୍ମଣ । ନିରଗ୍ନିକ । ତିନିବାଡ଼ରେ ତିନିଜଣ ଯେଉଁମାନେ ଷୋଡ଼ଶ ଉପଚାରରେ ନୈବେଦ୍ୟ କରିଥାଆନ୍ତି ।
(ଉ.ଇ.ଏ.ଅ.ଅ. - ପୃ. ୩୩୭) ।

**ପଣ୍ଡା ପଡ଼ିହାରୀ**-*ଦେ.ବି.*- ଦେବପୂଜକ ବ୍ରାହ୍ମଣ ।
(ପୂ.ଓ.ଭା. - ପୃ. ୪୫୪୨) ।

**ପଣ୍ଡା ସାମନ୍ତ**-*ଦେ.ବି.*- ଶ୍ରୀମନ୍ଦିରର ପୂଜାପଣ୍ଡା ସାମନ୍ତ ବିଶେଷ ।
(ଶ୍ରୀ.ସ୍ୱ. ୧ମ - ପୃ. ୪୨) ।

**ପଣ୍ଡୁନୃସିଂହ**-*ଦେ.ବି.*- ଯମେଶ୍ୱରଙ୍କ ମନ୍ଦିର ନିକଟରେ ସ୍ଥାପିତ ନୃସିଂହ । ଏହି ସ୍ଥାନ ପଣ୍ଡୁ ଆଶ୍ରମ ନାମରେ ଖ୍ୟାତ । ପ୍ରକୃତରେ ଏହା କଣ୍ଡୁ ଋଷିଙ୍କ ଆଶ୍ରମ । କଣ୍ଡୁ ଋଷି ଥିଲେ ନୃସିଂହଙ୍କ ଉପାସକ ।
(ଶ୍ରୀ.ସ୍ୱ. ୨ୟ - ପୃ.୨୫୫, ପୁ.ବୋ.- ପୃ.୨୩୧) ।

**ପଣ୍ଡୁ ପୂର୍ଣ୍ଣିମା**-*ଦେ.ବି.*- ମାର୍ଗଶିର ପୂର୍ଣ୍ଣିମା । ଏହିଦିନ ସକାଳ ଧୂପ ପରେ ଶ୍ରୀମନ୍ଦିରରେ ପୁଷ୍ପାଳକମାନେ ମଇଲମ କରି ବେଶ କରାନ୍ତି ଓ ଆଜ୍ଞାମାଳ ଲାଗି କରାନ୍ତି । ମଧ୍ୟାହ୍ନ ଧୂପ ପରେ ଦକ୍ଷିଣି ଘରେ ଭୋଗସରିଲେ ମହାଜନେ ଦକ୍ଷିଣିଘରୁ ନୃସିଂହଙ୍କୁ ଝୁଲଣମଣ୍ଡପ ତଳେ ଥିବା ବିମାନରେ ବିଜେ କରାଇ ବିମାନବଡୁମାନେ ବିମାନକୁ ଚାରି ଆଶ୍ରମ ଭ୍ରମଣ କରାଇ ବଡ଼ଦେଉଳକୁ ଆଣନ୍ତି । ମହାଜନେ ରୁନ୍ଧା ଫିଟାଇ ଦକ୍ଷିଣି ଘରକୁ ବିଜେ କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୩, ପୂ.ଓ.ଭା. - ପୃ. ୪୫୪୫) ।

**ପଣସସରା**-*ଦେ.ବି.*- ଯେଉଁସରାରେ ପଣସ ରଖାଯାଇ ଠାକୁରଙ୍କୁ ଭୋଗ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୬୩) ।

**ପଣସୁଆ**-*ଦେ.ବି.*- ଏକ ପ୍ରକାର ଲମ୍ବାକୃତି ଲଡୁ । ରାଜାଙ୍କ ତାଟରେ ଯାଏ । ବିଶେଷକରି ମକର ସଂକ୍ରାନ୍ତି ଓ ଅନ୍ୟାନ୍ୟ ପର୍ବରେ ଶ୍ରୀଜୀଉଙ୍କ ନିକଟରେ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୦, ୧୮୭, ୧୭୫, ୧୭୮, ୧୮୪, ୧୮୫, ପୁ.ବୋ. - ପୃ. ୨୩୧) ।

**ପଣା**-*ଦେ.ବି.*- ଗୁଡ଼ ବା ନବାତ, ଉଖୁଡ଼ା, କଦଳୀ, ନଡ଼ିଆ, କୋରା ଓ ମସଲା ମିଶ୍ରିତ ଏକ ପାନୀୟ । ଏହା ଶ୍ରୀଠାକୁରମାନଙ୍କ ପାଇଁ ବାହୁଡ଼ା ଦଶମୀ ବାସୀ ଏକାଦଶୀ ଦିନ ଅଧରପଣା ହୋଇଥାଏ । ଠାକୁରମାନଙ୍କର ଅଧର ପର୍ଯ୍ୟନ୍ତ ଏ ପଣା ହାଣ୍ଡିର ଉଚ୍ଚତା ହୋଇଥାଏ । ଏଣୁ ଏହାକୁ ଅଧରପଣା ବୋଲି କୁହାଯାଏ ।
(ଉ.ଇ.ଏ.ଅ.ଅ. - ପୃ. ୩୪୨, ଶ୍ରୀ.ସ୍ୱ. ୨ୟ- ପୃ. ୮୧,୬୨) ।

**ପଣାସୁଆର**-*ଦେ.ବି.*- ଅଣସର ସମୟରେ କଦଳୀ, କ୍ଷୀର, ଛେନା, ଅଳେଇଚ ଆଦିରେ ପଣା ପସ୍ତୁତ କରି ପୂଜା ନିମନ୍ତେ ଯୋଗାନ୍ତି ।
(ଉ.ଇ.ଏ.ଅ.ଅ. - ପୃ. ୩୪୨) ।

**ପତନି**-*ଦେ.ବି.*- ସୂତା ତିଆରି ଜାଲି ବସ୍ତ୍ର । ଏହା ଠାକୁରଙ୍କ ବେଶରେ ଲାଗିହୁଏ । ରଥଯାତ୍ରା ସମୟରେ ରଥର ତିନି କଳସରେ ପୂଜାପଣ୍ଡାଙ୍କ ଦ୍ୱାରା ସଂସ୍କାରିତ ୩ ଖଣ୍ଡ ପତନି ଶାଢ଼ି ବନ୍ଧାଯାଏ । ପତନି ଶାଢ଼ି ରେଶମର ଜାଲିବସ୍ତ୍ର ଶ୍ରୀଠାକୁରଙ୍କ ବିଭିନ୍ନ ନୀତିରେ ଲାଗିହୁଏ । ଅକ୍ଷୟ ତୃତୀୟାଠାରୁ ଦେବସ୍ନାନପୂର୍ଣ୍ଣିମା ପର୍ଯ୍ୟନ୍ତ ତିନିଠାକୁରଙ୍କଠାରେ ମଧ୍ୟ ଏହା ଲାଗି ହୁଏ ।
(ଶ୍ରୀ.ସ୍ୱ.- ପୃ. ୧୬୦, ଓ.ସାଂ.ଶ.- ପୃ. ୨୨୧) ।

**ପତନିଆଜ୍ଞା ହେବା**-*ଦେ.ବି.*- ମାଦଳାପାଞ୍ଜି ଅନୁସାରେ କୌଣସି ବ୍ୟକ୍ତିଙ୍କୁ ରାଜାଙ୍କ ଦ୍ୱାରା ଉପାଧି ବା ଶାଢ଼ି ବା ଅଧିକାର ଦିଆଯିବା ।
(ପୂ.ଓ.ଭା. - ପୃ. ୪୫୪୮) ।

**ପତନିଖଣ୍ଡୁଆ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଏକ ଖଣ୍ଡୁଆ ବସ୍ତ୍ର ବିଶେଷ । ଲାଲ ରଙ୍ଗର ଝୀନ ପାଟ ବସ୍ତ୍ର । ସୁନିଆ, କୁମାରପୂର୍ଣ୍ଣିମା, ଉତ୍ଥାପନ ଏକାଦଶୀ ଓ ନବାଙ୍କ ପ୍ରଭୃତିରେ ମଧ୍ୟ ବ୍ୟବହୃତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୫, ୧୫୭, ୧୫୮) ।

**ପତନିଗଡ଼ା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କର ଏକ ବସ୍ତ୍ର, ଯାହା ବନ୍ଧାଯାଇ ପ୍ରଭୁଙ୍କ ବେଶ ପାଇଁ ବ୍ୟବହୃତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୦) ।

**ପତରବନ୍ଧା ସେବକ**-*ଦେ.ବି.*- ଏହି ସେବକ ଶ୍ରୀନଅର ନିକଟକୁ ତାଟ ପଠାଇବା କାର୍ଯ୍ୟ କରନ୍ତି । ଶ୍ରୀମନ୍ଦିରରୁ ଶ୍ରୀନଅରକୁ ଯାଉଥିବା ତାଟ ପତରରେ ବାନ୍ଧି ଶ୍ରୀନଅରକୁ ପଠାନ୍ତି ।
(ଶ୍ରୀ.ସ୍ୱ. - ପୃ. ୪) ।

**ପତି ଖୁଣ୍ଟାମାଳ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର । (ଶ୍ରୀ.ଶ. - ପୃ. ୧୦୪) ।

**ପତିତପାବନ**-*ଦେ.ବି.*- ଏକକ ଜଗନ୍ନାଥ ମୂର୍ତ୍ତି ପବିତ୍ର ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ପାବନ ପୀଠରେ ଦାରୁବ୍ରହ୍ମଙ୍କୁ ଦର୍ଶନ କରି ଭକ୍ତଯେତିକି ପୁଣ୍ୟ ଅର୍ଜନ କରେ, ଅନ୍ୟ ପକ୍ଷରେ ଶ୍ରୀମନ୍ଦିର ଗୁମୁଟରେ ପତିତପାବନଙ୍କୁ ଦର୍ଶନ କରି ଭକ୍ତ ସେତିକି ପୁଣ୍ୟର ଅଧିକାରୀ ହୋଇଥାଏ । ଶ୍ରୀମନ୍ଦିର ସିଂହଦ୍ୱାର ଗୁମୁଟର ଉତ୍ତର ବାରଣ୍ଡା ପୂର୍ବାଭିମୁଖୀ ହୋଇ ପତିତପାବନ ପୂଜିତ ହେଉଛନ୍ତି ।

ସେ ଜଗନ୍ନାଥଙ୍କର ପ୍ରତୀକାତ୍ମକ ବିଗ୍ରହ ବୋଲି କେହି କେହି ମତ ଦେଇଥାନ୍ତି । ପ୍ରଭୁ ଜଗନ୍ନାଥ ବର୍ଷକୁ ଥରେ ମାତ୍ର ରଥଯାତ୍ରା ସମୟରେ ଶ୍ରୀମନ୍ଦିରରୁ ବଡ଼ଦାଣ୍ଡକୁ ଆସିଥାନ୍ତି । ସେତେବେଳେ ଜାତି ଧର୍ମ ବର୍ଣ୍ଣ ସମ୍ପ୍ରଦାୟ ନିର୍ବିଶେଷରେ ସମସ୍ତେ ତାଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଥାନ୍ତି । ବାକି ଦିନମାନଙ୍କରେ ଅଣହିନ୍ଦୁମାନେ ଶ୍ରୀଜଗନ୍ନାଥଙ୍କୁ ରତ୍ନବେଦୀରେ ଦର୍ଶନ କରିବାର ସୁଯୋଗ ପାଇ ନ ଥାନ୍ତି । ଏହି ସମୟରେ ସେମାନେ ପତିତପାବନଙ୍କୁ ଦର୍ଶନ କରିଥାନ୍ତି ।

ଅନ୍ୟ ମତରେ ଭୋଇ ବଂଶର ରାଜା ରାମଚନ୍ଦ୍ର ଦେବ ୨ୟ କଟକର ତତ୍କାଳୀନ ନାଏବ ନାଜିମ ତକୀ ଖାଁଙ୍କ ଭଉଣୀ ରେଜିୟାଙ୍କୁ ବିବାହ କଲାପରେ ତାଙ୍କର ଦର୍ଶନ ପାଇଁ ୧୭୩୮ ସିଂହଦ୍ୱାର ଗୁମୁଟଘରେ ପତିତପାବନଙ୍କୁ ପ୍ରତିଷ୍ଠା କରାଯାଇଥିଲା । ଯାହା ହେଉନା କାହିଁକି ଜଗନ୍ନାଥଙ୍କ ପତିତପାବନ ରୂପ ବହୁ ପ୍ରାଚୀନ । ପତିତପାବନ ପାପୀର ତ୍ରାଣକର୍ତ୍ତା । ପାପୀର ଉଦ୍ଧାରକାରୀ । ପୁରୁଷୋତ୍ତମର ପାବନପୀଠରେ ଅଧିଷ୍ଠିତ ଜଗନ୍ନାଥଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଛି ସତ୍ୟ, କିନ୍ତୁ ଜଗତର ପାବନତ୍ୱର ମହାକାରଣ ରୂପରେ ପତିତପାବନ ରୂପେ ପରିଚିତ । ଏଇ ତତ୍ତ୍ୱ ଶ୍ରୀଜଗନ୍ନାଥ ଚେତନାରେ ପରିସ୍ଫୁଟ । ଗଜପତି ପୁରୁଷୋତ୍ତମ ଦେବ ତାଙ୍କର ମୁକ୍ତି ଚିନ୍ତାମଣି ଗ୍ରନ୍ଥରେ ପତିତପାବନଙ୍କ ଉଦ୍ଦେଶ୍ୟରେ ବିନମ୍ର ପ୍ରଣତି ଜଣାଇ ଲେଖିଥିଲେ ହେ ପତିତପାବନ ! ମୁଁ ପତିତମାନଙ୍କ ମଧ୍ୟରେ ପତିତ । ତୁମେ ପତିତ ଲୋକମାନଙ୍କର ପାତକହାରୀ । ହେ ପ୍ରଭୁ ! ମୋ ହୃଦୟରେ ନିଶ୍ଚିତ ଭକ୍ତି ଦେଇ ତୁମଠାରେ ଶରଣ ଯିବା ପାଇଁ ବାଟ ବତାଅ, ଏଥିରୁ ପତିତପାବନଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଥାଏ । ପ୍ରଥମେ ଅଲୱାର ସଂପ୍ରଦାୟଙ୍କ ଦ୍ୱାରା ପୂଜିତ ଦେବତା । ମଣିଷର ମାନସିକତା ପତିତ ବା ନିମ୍ନମୁଖି ହେଲେ ତାକୁ ଊର୍ଦ୍ଧ୍ୱଗାମୀ କରାଇବାର ପ୍ରଚେଷ୍ଟା କେବଳ ପତିତପାବନ ବା ଶ୍ରୀଜଗନ୍ନାଥ ଚେତନା ଭିତରେ ଅଛି । ଶ୍ରୀମନ୍ଦିର ବେଢ଼ା ଭିତରେ ସିଂହଦ୍ୱାର ଗୁମୁଟ ଘର ବ୍ୟତୀତ ବଟ ଗଣେଶ ସମ୍ମୁଖ କଳ୍ପବଟ ମୂଳରେ, ନାଟମଣ୍ଡପ ନିକଟସ୍ଥ ପୁରାଣ ପଣ୍ଡାଙ୍କ ଆସ୍ଥାନ ନିକଟରେ, ନୀଳମାଧବଙ୍କ ମନ୍ଦିରରେ, ଶ୍ରୀମନ୍ଦିର ବେଢ଼ାର ଚାରିଧାମ ମନ୍ଦିରରେ ପତିତପାବନ ପୂଜା ପାଉଛନ୍ତି । ଶ୍ରୀମନ୍ଦିରର ରତ୍ନସିଂହାସନଠାରେ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀ ସୁଭଦ୍ରା ଓ ଶ୍ରୀ ସୁଦର୍ଶନ, ମାଧବ, ଭୂ ଦେବୀ, ତଥା ଶ୍ରୀ ଦେବୀ ପୂଜା ପାଉଥିଲେ ହେଁ ଶ୍ରୀମନ୍ଦରର ପରିସର ମଧ୍ୟରେ ଆଉ ପାଞ୍ଚଟି ସ୍ଥାନରେ ଶ୍ରୀଜଗନ୍ନାଥଙ୍କର ଏକକ ମୂର୍ତ୍ତି ପୂଜାପାଉଛନ୍ତି । ଯଥା:

୧. ଭିତର ବେଢ଼ା ପରିସରସ୍ଥ ବଟ ଗଣେଶ ମନ୍ଦିର ସମ୍ମୁଖରେ ବଟ ଜଗନ୍ନାଥ ବା ବଟ ପତିତପାବନ ସ୍ୱତନ୍ତ ଭାବେ ଏକ ମନ୍ଦିରରେ ପୂଜିତ ।

୨. ନାଟ ମଣ୍ଡପ ସଂଲଗ୍ନ ପୁରାଣ ପଣ୍ଡା ଘର ମଧ୍ୟରେ ପତିତପାବନ(ଜଗନ୍ନାଥ) ପୂଜିତ ହେଉଛନ୍ତି ।

୩. ଶ୍ରୀନୀଳମାଧବ ମନ୍ଦିରରେ ପତିତପାବନ (ଶ୍ରୀଜଗନ୍ନାଥ) ବିଗ୍ରହ ପ୍ରତିଷ୍ଠିତ ।

୪. ଭୋଗମଣ୍ଡପ ଗୃହ ସମ୍ମୁଖସ୍ଥ ତ୍ରେତୟାଦେବ ସରଘର ମଧ୍ୟରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପୂଜିତ ।

୫. ପଶ୍ଚିମ ଦ୍ୱାର ବାହାର ବେଢ଼ାରେ ଅଧିଷ୍ଠିତ ଚାରିଧାମ ମନ୍ଦିରରେ ଜଗନ୍ନାଥ(ପତିତପାବନ) ମୂର୍ତ୍ତି ଅବସ୍ଥିତ ।
(ଶ୍ରୀ.ସ୍ୱ. - ପୃ. ୨୫୮, ପୂ.ଓ.ଭା. - ପୃ. ୪୫୫୪, ୪୫୫୫, ଶ୍ରୀ.ବେ.ଦେ. - ପୃ. ୧୬, ୧୩୦) ।

**ପତି ମହାପାତ୍ର ସେବକ**-*ଦେ.ବି.*- ବିଦ୍ୟାପତିଙ୍କ ବଂଶଧର । ଏମାନେ ଦଇତାମାନଙ୍କ ସହ କାର୍ଯ୍ୟ କରନ୍ତି । ନକ୍ଷତ୍ର ବନ୍ଦାପନା ବେଳେ ଠାକୁରଙ୍କ ଆଡ଼େ କର୍ପୂର ଆଳତି କରନ୍ତି । ବ୍ରାହ୍ମଣ ସେବକ ହୋଇଥିବାରୁ ଶ୍ରୀମନ୍ଦିରରେ ଏମାନଙ୍କ ବିଶେଷ କର୍ତ୍ତବ୍ୟ ମଧ ରହିଛି । ଜଗନ୍ନାଥ ମହାପ୍ରଭୁ ଅଣସର ଘରେ ଥିବା ସମୟରେ ପତି ମହାପାତ୍ର ମହାପ୍ରଭୁଙ୍କର ସେବା ଓ ଭୋଗ ଆଦି କରନ୍ତି । ଏମାନେ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରଥମ ସେବକ । ଦେବସ୍ନାନ ପୂର୍ଣ୍ଣିମାଠାରୁ ଗୁଣ୍ଡିଚା ଯାତ୍ରାର ଶେଷ ପର୍ଯ୍ୟନ୍ତ ଜଗନ୍ନାଥ ମହାପ୍ରଭୁ ସେମାନଙ୍କର ନିଜ ଦାୟିତ୍ୱରେ ରହନ୍ତି । ଏମାନେ ଦୈନିକ ନୃସିଂହଙ୍କ ସେବା କରନ୍ତି । ବଡ଼ସିଂହାର ପହଡ଼ ଆଳତିରେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଆଳତି କରନ୍ତି । ବର୍ଷର ସମସ୍ତ ପର୍ବପର୍ବାଣି ବନ୍ଦାପନା ତଥା ମଙ୍ଗଳାର୍ପଣରେ ମଝିବାଡ଼ରେ କରନ୍ତି । ସ୍ନାନ ପୂର୍ଣ୍ଣିମା ବେଦୀରୁ ଦିଅଁ ଫେରିବା ବେଳେ, ରଥକୁ ବିଜେ, ରଥରୁ ଗୁଣ୍ଡିଚା ଘର ବିଜେ, ଗୁଣ୍ଡିଚା ଘରୁ ରଥକୁ ଓ ରଥରୁ ନୀଳାଦ୍ରିବିଜେ ବେଳେ ଏ ୩ ବାଡ଼ରେ ବନ୍ଦାପନା, କର୍ପୂର ଆଳତି, କର୍ପୂର ଲାଗି, ଘସା ଓ ବିଡ଼ିଆ ଲାଗି କରନ୍ତି । ପ୍ରତ୍ୟେକ ଜନ୍ମବିଧି, ହୋମ, ସହସ୍ରାକୁମ୍ଭାଭିଷେକ ଇତ୍ୟାଦିରେ ପଣ୍ଡା ଓ ମୁଦିରସ୍ତ ସହ ବ୍ରହ୍ମାବରଣ ହୁଅନ୍ତି । ପ୍ରସାଦ ଲାଗି, ପଣାଲାଗି, ଖଡ଼ିଲାଗି, ଖଳିଲାଗି, ଫୁଲରି ଲାଗି କାର୍ଯ୍ୟ ଦଇତାଙ୍କ ସଙ୍ଗେ ମଧ କରନ୍ତି । ସୁଦର୍ଶନଙ୍କ ସମସ୍ତ କାମ କରନ୍ତି । ଦଇତାଙ୍କ ସହ ଶ୍ରୀଅଙ୍ଗର ସମସ୍ତ କାମ କରନ୍ତି । ଭିତରର ସମସ୍ତ ଶୋଧ ଓ ସଂସ୍କାର ଏହି ସେବକ କରନ୍ତି । ନବକଳେବରକୁ ୩ ବାଡ଼ ଆଜ୍ଞାମାଳ ୩ ବାଡ଼ରେ ଦଇତାଙ୍କୁ ଦିଅନ୍ତି ଓ ନିଜେ ସୁଦର୍ଶନ ବାଡ଼ରେ ମାଳ ଦେଇ ଦାରୁ ଅନ୍ୱେଷଣରେ ଯାଆନ୍ତି । ଭିତରଛଠାରୁ ଅଣସର ପିଣ୍ଡିରେ ଶାଢ଼ି ପାଇ ବାହାରନ୍ତି । ବନଯାଗରେ ବିଦ୍ୟାପତି ବରଣ ହୁଅନ୍ତି । ଯାଗ ପରେ ସୁନା କୁରାଢ଼ି ନେଇ ଏ ପ୍ରଥମେ ନିର୍ଦ୍ଦିଷ୍ଟ ଗଛରେ ଲଗାନ୍ତି । ପରେ ଅନ୍ୟମାନେ କାଟନ୍ତି । ଦାରୁ ଆଣିବା ପରେ ତାକୁ ଭୋଗ କରାନ୍ତି । ଦକ୍ଷିଣିଘରୁ ନୃସିଂହଙ୍କୁ ନେଇ ଦାରୁ ଘରେ ନୃସିଂହ ମଣ୍ଡପରେ ବିଜେ କରାଇ ସେ ରହିବା ଦିନ ତାଙ୍କୁ ପୂଜା କରନ୍ତି । ଏ ଘଟ ପରିବର୍ତ୍ତନ ଓ ବିସର୍ଜନ ସେବା କରନ୍ତି । ମହାଜନ ହିସାବରେ ଦକ୍ଷିଣିଘର ସେବା ଓ ମହାଜନ ସେବା କରନ୍ତି । ଏ ବିଦ୍ୟାପତିଙ୍କ ବଂଶଧର ସେବକ ବୋଲି ପ୍ରବାଦ ଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୪, ୫, ପୂ.ଓ.ଭା. - ପୃ. ୪୫୫୫) ।

**ପତ୍ରିବଡୁ ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ପୂଜା ବେଳେ ପାତ୍ର ସଜା, ଝରୀ, ଫୁଲ, ତୁଳସୀ ଓ ଦର୍ପଣାଦି ପୂଜା ସାମଗ୍ରୀମାନ ନେଇ ପତ୍ରିବଡୁ ସଜାଇ ରଖନ୍ତି । ସକାଳ ଧୂପରେ ଭିତରୁ ଦୁଆର ଖୋଲିବା ପାଇଁ ହଡ଼ପ ନାୟକଙ୍କୁ ଡାକନ୍ତି । ଗୋପାଳବଲ୍ଲଭ ଓ ସକାଳ ଧୂପରେ ପୂଜା କରନ୍ତି । ଶ୍ରୀଜଗନ୍ନାଥଙ୍କ ପୂଜା ନିମନ୍ତେ ଏମାନେ ଦିନତମାମ ପୂଜା ଉପକରଣ ଯୋଗାଇ ଥାଆନ୍ତି ।
(ଶ୍ରୀ.ସ୍ୱ.- ପୃ. ୧୭) ।

**ପଥୁରିଆମିସ୍ତ୍ରୀ**-*ଦେ.ବି.*- ପଥରକଟା ମିସ୍ତ୍ରୀ । ଶ୍ରୀମନ୍ଦିରର ମରାମତି ଓ ଅନ୍ୟାନ୍ୟ ପଥର କାମ କରୁଥିବା ସେବକ ।
(କ୍ର.ବି.ଓ.ଶ.ସ.- ୫୫୯) ।

**ପଦକ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କର ପଣସପତ୍ର ଓ ଫୁଲ ମଣ୍ଡିତ ବକ୍ଷ ଭୂଷା । ଏହା ବଡ଼ସିଂହାର ବେଶରେ ଲାଗି ହୁଅନ୍ତି । ଶ୍ରୀମନ୍ଦିରର ଶ୍ରୀଜୀଉଙ୍କର ଏକ ପ୍ରକାର ସ୍ୱର୍ଣ୍ଣ ଅଳଙ୍କାର । ପ୍ରତ୍ୟହ ସକାଳ ଧୂପର ଷୋଡ଼ଶ ଉପଚାରରେ ୩ଗୋଟି ସୁବର୍ଣ୍ଣ ପଦକ ଆବଶ୍ୟକ ।
(ଶ୍ରୀ.ସ୍ୱ. - ପୃ. ୧୮, ୨୬) ।

**ପଦ୍ମ**-*ଦେ.ବି*- ପଣ୍ଡା, ଯାତ୍ରୀ ଗୁମାସ୍ତା ସେବକ ବିଶେଷ । ବକେୟା ପାଉଣା କାରବାର ସହ ଜଡ଼ିତ । (ପୁ.ବୋ.- ପୃ. ୨୩୩) ।

**ପଦ୍ମ**-*ସଂ.ବି*.- ସ୍ଥିର ଜଳଜାତ ପୁଷ୍ପ ବିଶେଷ । ଉତ୍ପଳ, ପଙ୍କଜ । ଏହା ବଳଦେବଙ୍କ ନାମ । ବିଷ୍ଣୁଙ୍କ ଚାରିଟି ଆୟୁଧ ମଧ୍ୟରୁ ଏକ । ଯଥା- ଶଙ୍ଖ, ଚକ୍ର, ଗଦା ଓ ପଦ୍ମ । ଗଳାରେ ପିନ୍ଧାଯିବାର ଏକ ପ୍ରକାର ଅଳଙ୍କାର । ଶ୍ରୀଜଗନ୍ନାଥଙ୍କ ପାଖରେ ପଦ୍ମଫୁଲ ଲାଗି ହୁଏ । ଏତଦ୍‌ବ୍ୟତୀତ ଶ୍ରୀଜଗନ୍ନାଥ ମଧ୍ୟ ପଦ୍ମବେଶ ହୋଇଥାନ୍ତି । (ଓ.ସାଂ.ଶ.- ପୃ. ୨୨୨, କ୍ରି.ବି.ଓ.ଶ.ସ. - ପୃ. ୫୬୦, ପ୍ର.ଅ. ୨ୟ - ପୃ. ୧୫୦୪, ପୂ.ଓ.ଭା. - ପୃ. ୪୫୬୯) ।

**ପଦ୍ମକଦଳୀତୋଟା ସେବକ**-*ଦେ.ବି*.- ଠାକୁରଙ୍କ ରୋଷଘରେ ପ୍ରତ୍ୟେକ ଜାତିର କଦଳୀ ଜମା କରିବା ସେବକ । ଅମୃତପାଣି, ବନ୍ତଳ, ପାଟକପୁରା, ଗନ୍ଧତୁଳସୀ, ମୁଗୁଜ ମଞ୍ଜି କଦଳୀ, ଦକ୍ଷିଣୀ ସାଗର ଓ ପଦ୍ମ କଦଳୀ ପ୍ରଭୃତି କଦଳୀଗଛ ଏବଂ ଫଳ ରୋଷଘରେ ପଇଠ କରିଥାନ୍ତି, ବର୍ତ୍ତମାନ ଏ ସେବା ନାହିଁ । (ଶ୍ରୀ.ଶ. - ପୃ.୧୦୫)

**ପଦ୍ମପାଦ**-*ଦେ.ବି*.- ଶ୍ରୀଠାକୁରଙ୍କର ସୁବର୍ଣ୍ଣ ନିର୍ମିତ ପାଦ ବିଶେଷ । (ପୂ.ଓ.ଭା. - ପୃ. ୪୫୭୨) ।

**ପଦ୍ମବେଶ**-*ସଂ.ବି*.- ମହାପ୍ରଭୁଙ୍କର ପଦ୍ମବେଶ ବଡ଼ଛତା ମଠ ଦ୍ୱାରା କରାଯାଏ । ସିଂହଦ୍ୱାରରେ ଅବସ୍ଥିତ ଏହି ବଡ଼ଛତା ମଠଟି ଶ୍ରୀରାମାନନ୍ଦ ସମ୍ପ୍ରଦାୟର ପ୍ରସିଦ୍ଧ ମଠ ଭାବରେ ପରିଚିତ । ଏ ବେଶର ପ୍ରବର୍ତ୍ତକ ହେଉଛନ୍ତି ମନୋହର ଦାସ । ପରବର୍ତ୍ତୀ କାଳରେ ବଡ଼ଛତା ମଠ ୩୦୦ ବର୍ଷ ଧରି ଏହି ବେଶ କରାଉଛନ୍ତି । ପଦ୍ମବେଶରେ ଠାକୁରମାନେ ମଣ୍ଡିତ ହେଉଥିବା ଜରି, ସୋଲ, କଦଳୀ ପଟୁକା, କନା, କଇଥ ଅଠା ଓ ରଙ୍ଗ ପ୍ରଭୃତି ପଦ୍ମବେଶର ଆବଶ୍ୟକ ଉପାଦାନ ବଡ଼ଛତା ମଠରୁ ଯୋଗାଇ ଦିଆଯାଏ । ଏହାଛଡ଼ା କ୍ଷୀର ଓ ଅନ୍ୟାନ୍ୟ ସାମଗ୍ରୀ ମଧ୍ୟ ବଡ଼ଛତା ମଠ ଯୋଗାଇଥାଏ, କିନ୍ତୁ ଏହା ଶ୍ରୀମନ୍ଦିର କୋଠଭୋଗ ଚୁଲିରେ ପ୍ରସ୍ତୁତ କରାଯାଇ କ୍ଷୀରି ଓ ଅମାଲୁ ଭୋଗ କରାଯାଉଥିବାରୁ ବଡ଼ଛତା ସହିତ ଏହାର ବିଶେଷ ସମ୍ପର୍କ ରହିବା ପରି ମନେହୁଏ । ସନ୍ଥ ରଘୁବର ଦାସଙ୍କ ଦେହାନ୍ତ ହେବା ପୂର୍ବରୁ ସେ ସୋଲ ଓ କଦଳୀ ପଟୁକାରେ ତିନିଗୋଟି ମୁଖ ପଦ୍ମ ନିର୍ମାଣ କରି ମହାପ୍ରଭୁଙ୍କୁ ଲାଗିକରି ବୈଷ୍ଣବାଗ୍ନି କୁଣ୍ଡରେ କ୍ଷୀରି ପ୍ରସ୍ତୁତ କରି ତାଙ୍କୁ ଭୋଗ ଲଗାଇବା ପାଇଁ ଇଚ୍ଛା କରିଥିଲେ । ପ୍ରଥମେ ସେବକମାନେ ରାଜି ନ ଥିଲେ, କିନ୍ତୁ ଠାକୁରଙ୍କ ନିର୍ଦ୍ଦେଶକ୍ରମେ ଏ ପଦ୍ମମୁଖ ଠାକୁରଙ୍କୁ ଅର୍ପଣ ହେବା ସଙ୍ଗେ ସଙ୍ଗେ କ୍ଷୀରି ଭୋଗ ଲଗାଯାଇଥିଲା । ସେହିଦିନ ଥିଲା ମାଘ ପ୍ରତିପଦ ଓ ବସନ୍ତ ପଞ୍ଚମୀ ମଧ୍ୟବର୍ତ୍ତୀ ବୁଧବାର । ସେହି ସ୍ମୃତିକୁ ମନେରଖିବା ପାଇଁ ଏବେ ବି ମାଘମାସର ପ୍ରତିପଦ ଓ ବସନ୍ତ ପଞ୍ଚମୀ ମଧ୍ୟରେ ବୁଧବାର କିମ୍ବା ଶନିବାରରେ ପଦ୍ମବେଶ କରାଯାଉଛି । ମୁଖପଦ୍ମ ସହିତ ପଦ୍ମ ପାଖୁଡ଼ା, ବେତ ନିର୍ମିତ ଓ ସୋଲ ପଦ୍ମ ଖଚିତ ଏକ ତ୍ରିକୋଣର ଟାହିଆ ମଧ୍ୟ ଲାଗି କରାଯାଏ । ଶ୍ରୀଭୁଜରେ ପଦ୍ମକଳିକା ଲାଗି ହୁଏ । ସେଥିରୁ ଝୁଲି ଦୁଇ ତିନି ଖଣ୍ଡ ହୋଇ ପଦ୍ମ ନାଡ଼ ଶ୍ରୀମୁଖ କମଳରୁ ନିମ୍ନକୁ ଲମ୍ବି ଥାଏ । ଯଥାସ୍ଥାନରେ ଶୋଭାପାଏ ପତ୍ରରାଜି । ଜଳାଶୟର ସୂଚନା ସହିତ ସିଂହାସନ ଉପରେ ଦୁଇପଟେ ଦେଖାଯାଆନ୍ତି ସନ୍ତରଣ ହଂସ, କରରେ କରପଲ୍ଲବ, ହୃଦୟରେ ହୃଦପଦକ, ଶ୍ରୀପୟର ମାଳା, ଫୁଲଝୁମ୍ପା, ଫୁଲର ଚିତା ମଧ୍ୟ ଭୂଷଣ ରୂପେ ତାଙ୍କୁ ଲାଗି କରାଯାଏ । ମଠଦ୍ୱାରା ପ୍ରଦତ୍ତ ଭୋଗ ଦ୍ରବ୍ୟରେ କ୍ଷୀରି ଓ ଅମାଲୁ ରୋଷଘରର ଚୁଲିରେ ପ୍ରସ୍ତୁତ ହୋଇ ଭୋଗ କରାଯାଏ । ବଡ଼ସିଂହାରର ପଦ୍ମବେଶରେ ମହାପ୍ରଭୁ ସାରାରାତି ରହନ୍ତି । ସୁଭଦ୍ରା ମଧ୍ୟ ପଦ୍ମବେଶରେ ଭୂଷିତ ହୁଅନ୍ତି ।

ସୋଲରେ ନିର୍ମିତ ଚାରିଗୋଟି ହଂସ ରତ୍ନସିଂହାସନ ମଣ୍ଡନ କରନ୍ତି ।
ଶନିବାର କଳାଘୋଡ ଉପରେ ଧଳା ସୋଲ ପଦ୍ମ ସୁନ୍ଦର ଦିଶିବା ପାଇଁ ବା ବୁଧବାର ସବୁଜ ରଙ୍ଗର ଘୋଡ଼ ଉପରେ ଧଳାପଦ୍ମ ସୁନ୍ଦର ଦିଶିବ ବୋଲି ଘୋଡ଼ ଥାଉ ଥାଉ (ବସନ୍ତ ପଞ୍ଚମୀରେ ଘୋଡ଼ ଶେଷ ହୋଇ ଜାମା ବେଶ ହୁଏ) ଏହା ମାଘ ପଞ୍ଚମୀ ପୂର୍ବରୁ କରାଯାଉଛି । ଶୀତଦିନେ ପଦ୍ମଫୁଲ ମିଳୁ ନ ଥିବାରୁ ସୋଲ ତିଆରି ପଦ୍ମଫୁଲରେ ୩୦୦ ବର୍ଷ ହେବ ପଦ୍ମବେଶ ହେଉଥିଲା । ୨୦୧୧ ମସିହାଠାରୁ ଭୁବନେଶ୍ୱର ନିବାସୀ ଚିନ୍ତାମଣି ଦାଶ ନାମକ ଜନୈକ ସଂସ୍କୃତ ଶିକ୍ଷକ ବ୍ୟକ୍ତିଗତ ଚେଷ୍ଟାରେ ପ୍ରାୟ ପାଞ୍ଚ ହଜାରରୁ ଅଧିକ ବିକଶିତ ପ୍ରକୃତିଦତ୍ତ ପଦ୍ମଫୁଲ ଯୋଗାଉଛନ୍ତି । ଏହି ବେଶ ଦର୍ଶନ କରିବାକୁ ଲକ୍ଷ ଲକ୍ଷ ଭକ୍ତ ସମାଗମ ହୋଇଥାଏ । ସକାଳେ ମଙ୍ଗଳ ଆଳତି ପରେ ସାହାଣମେଲା ହୋଇ ପ୍ରାୟ ଦିନ ଘ୧୧.୩୦ ପର୍ଯ୍ୟନ୍ତ ଭକ୍ତମାନେ ଏହି ବେଶ ଦର୍ଶନ କରନ୍ତି ।
(ଶ୍ରୀ.ବେ.ର. - ପୃ. ୧୦୧) ।

**ପଦ୍ମବୋଳା**-*ଦେ.ବି.*- ଶ୍ରୀଜୀଉଙ୍କ ମୁଖମଣ୍ଡଳରେ କନାରେ ସୁନାର ସେବତି ଫୁଲ ଅଳଙ୍କାର ସଜ୍ଜିତ ହୋଇ ଶ୍ରୀମୁଖ ବଳା ଉପରେ ବେଢ଼ାଇ ଦିଆଯାଇଥାଏ ।
(ଶ୍ରୀ.ଶ. - ପୃ. ୧୦୫) ।

**ପନିକିପଟା ସେବକ**-*ଦେ.ବି.*- ରୋଷେଇରେ ପରିବା କାଟିବା, ଷୋଳ ପୂଜାରେ ମାଛ କାଟିବା ଓ ଛେଦ ପକାଇବା ଆଦି କାର୍ଯ୍ୟ କରୁଥିବା ସେବକ । ସ୍ୱତ୍ୱଲିପି ମତେ ଏହି ସେବା ବର୍ତ୍ତମାନ ବନ୍ଦ ଅଛି । ଓଝା ମହାରଣା ଛେଦ ପକାଉଛନ୍ତି ଓ ଜଣେ ପାଣିଆପଟ ଶ୍ରେଣୀର ସେବକ ମାଛ କାଟୁଛନ୍ତି ।
(ଶ୍ରୀ.ସ୍ୱ. - ପୃ. ୪୪, ପୁ.ବୋ. - ପୃ. ୨୩୩) ।

**ପନ୍ତି କାଟିବା**-*ଦେ.ବି.*- ପୂଜାପଣ୍ଡା ଆସି ବଡ଼ଠାକୁରଙ୍କଠାରୁ ଶ୍ରୀଜଗନ୍ନାଥଙ୍କ ପର୍ଯ୍ୟନ୍ତ ଯେଉଁ ଥାଳି ଥୁଆ ହୋଇଥାଏ ତାହାର ବାହାର ସୀମାରେ ମୁରୁଜ ବୁଲାଇ ପନ୍ତି କାଟନ୍ତି ।
(ଶ୍ରୀ.ସ୍ୱ. - ୨ୟ, ପୃ. ୧୯) ।

**ପନ୍ତିବଡୁ ସେବା**-*ଦେ.ବି.*- ଶ୍ରୀମନ୍ଦିର ଠାକୁରଙ୍କର କୋଠଭୋଗ ବାଡୁଥିବା ସେବକ । ସକାଳ ଧୂପ ଖେଚୁଡ଼ି ଧରି ଠାକୁରଙ୍କ ଭୋଗ ନିମନ୍ତେ ରୋଷ ପାଇକ ସହ ଯାଆନ୍ତି ଓ ଭୋଗଥାଳିରେ ଭୋଗ ବାଢ଼ନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୯) ।

**ପନ୍ତି ଭୋଗ**-*ଦେ.ବି.*- ବଡ଼ଠାକୁରଙ୍କଠାରୁ ଆରମ୍ଭ କରି ଜଗନ୍ନାଥଙ୍କ ପର୍ଯ୍ୟନ୍ତ ଯେଉଁ ଥାଳି ପଡ଼ିଥାଏ, ତାହାର ବାହାର ସୀମାରେ ମୁରୁଜ ବୁଲାନ୍ତି । ତାହାକୁ ପନ୍ତି କୁହନ୍ତି । ଲକ୍ଷ୍ମୀଙ୍କ ପାଖରେ ମଧ ଏକଛୋଟ ପନ୍ତି ହୁଏ । ଉଲ୍ଲେଖଯୋଗ୍ୟ ଯେ, ଭୋଗ ମୁରୁଜ କଟା ସୀମା ଭିତରେ ରହିଲେ, ମହାପ୍ରସାଦ ହୁଏ ଓ ବାହାରେ ରହିଲେ ସଙ୍କୁଡ଼ି ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୯, ପୂ.ଓ.ଭା. - ପୃ. ୪୫୭୮) ।

**ପନ୍ତିଭୋଗ କୋରା**-*ଦେ.ବି.*- ଏକ ପ୍ରକାର ମିଷ୍ଟାନ୍ନ ଭୋଗ । ଶ୍ରୀଜଗନ୍ନାଥଙ୍କ ପାଖରେ ଯାତ ଭୋଗ, ବଲ୍ଲଭ ଭୋଗ ଓ ରଥ ଭୋଗ କରାଯାଉଥିବା କୋରା ।
(କ୍ଷେ.ସ.) ।

**ପନ୍ତିସ୍ଥାନ**-*ସଂ.ବି.*- ଯେଉଁସ୍ଥାନରେ ଭୋଗ ରଖାଯାଇ ଠାକୁରଙ୍କୁ ଅର୍ପଣ କରାଯାଇ ପୂଜା କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ.୧୯) ।

**ପର୍ବଯାତ୍ରା ଘଟୁଆରୀ**-*ଦେ.ବି.*- ପର୍ବଯାତ୍ରା ଦିନରେ ସେବା କରୁଥିବା ସେବକକୁ ପର୍ବଯାତ୍ରା ଘଟୁଆରୀ ସେବକ କହନ୍ତି ।
(ଶ୍ରୀ.ସ୍ୱ. - ପୃ. ୫୯) ।

**ପର୍ବଯାତ୍ରା ପ୍ରତିହାରୀ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ବିଜେ ସମୟରେ ଯୋଡ଼ିବେତ ଧରି ହାତରେ ବାଡ଼ ଦେଇ ଠାକୁରଙ୍କୁ ନେଉଥିବା ସେବକ ।
(କ୍ଷେ.ସ.) ।

**ପର୍ବଯାତ୍ରା ଯୋଗାଣିଆ ସେବା**-*ଦେ.ବି.*- ଶ୍ରୀମନ୍ଦିରର ସେବକମାନଙ୍କ ମଧ୍ୟରୁ ଅନ୍ୟତମ ।

ଠାକୁରଙ୍କ ପର୍ବପର୍ବାଣି ତଥା ଯାତ୍ରା ସମୟରେ ଜିନିଷାଦି ଯୋଗାଇବା ସେବକ । ଗୁରୁବାର ନୀତିରେ ମାଜଣା ଓ ଏକାନ୍ତ ପାଇଁ ଗୋଦାମଘରୁ ପଇସା ନେଇ ଚାରି ଓଳି ଦହି ଓ ବହୁଡ଼ାଯାତ୍ରା ସମୟରେ ଦହିପତି ଯୋଗାଇଥାନ୍ତି ।

(ଶ୍ରୀ.ସ୍ୱ. - ପୃ. ୩୦) ।

**ପରକରଣ**-*ଦେ.ବି*.- ଶ୍ରୀମନ୍ଦିରର ଏକ କରଣ ସେବକ ବିଶେଷ । ପଞ୍ଚ ସଦସ୍ୟ ବିଶିଷ୍ଟ ଏ ପରିଷଦ ।

(ପୁ.ବୋ. - ପୃ. ୩୧୪ ) ।

**ପରଖ**-*ଦେ.ବି*.- ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ପୂଜାରେ ବ୍ୟବହୃତ ସାନ ଓ ବଡ଼ ଆକୃତିର ପିତଳ ପାତ୍ର ।

(ଶ୍ରୀ.ସ୍ୱ.- ପୃ. ୬୩) ।

**ପରଖତିଆ**-*ଦେ.ବି*.- ଯେଉଁ ସେବକ ଧୁଆଧୋଇ କରି ପରଖରେ ପରିଷ୍କାର ପାଣି ରଖନ୍ତି । ଶୂଦ୍ର ସେବକ ମାରାହେଲେ ଭୋଗସବୁ ନେଇ ଏହି ସେବକମାନେ ପୋତାନ୍ତି ।

(ଶ୍ରୀ.ଜି. - ପୃ. ୧୬୬, ପୁ.ବୋ. - ପୃ. ୨୩୪) ।

**ପରଚୂଳ**-*ଦେ.ବି*.-ରାଜା ମହାରାଜମାନେ ମସ୍ତକର ପଗଡ଼ିର ସମ୍ମୁଖ ଭାଗରେ ଧାରଣ କରିଥିବା ଶ୍ୱେତ ପରଯୁକ୍ତ ଏକ କ୍ଷୁଦ୍ରାକୃତି ଧାତବ ପଦକ । ଗଜପତି ଛେରାପହଁରା କରିବାକୁ ଆସିଥିଲା ବେଳେ ମସ୍ତକରେ ଏହାକୁ ଧାରଣ କରିଥାନ୍ତି ।

(ପୂ.ଓ.ଭା. - ପୃ. ୪୫୯୦) ।

**ପରମସ୍ଥାନ**-*ସଂ.ବି*.- ଦିବ୍ୟସ୍ଥାନ, ଦିବ୍ୟକ୍ଷେତ୍ର, ପବିତ୍ର କ୍ଷେତ୍ର, ତୀର୍ଥକ୍ଷେତ୍ର, ଭଗବାନଙ୍କର ବୈକୁଣ୍ଠପୁର ଶିବଙ୍କର କୈଳାସପୁର । ଶ୍ରୀକ୍ଷେତ୍ରର ସ୍ୱର୍ଗଦ୍ୱାର ଓ ଶ୍ରୀମନ୍ଦିରର କୋଇଲି ବୈକୁଣ୍ଠକୁ କେହି କେହି ପରମସ୍ଥାନ ବୋଲି କହିଥାନ୍ତି ।

(ଓ.ସାଂ.ଶ. - ପୃ. ୨୨୫) ।

**ପରିଛା**-*ଦେ.ବି*.- ଶ୍ରୀମନ୍ଦିରରେ ଚାରିଜଣ ପରିଛାଙ୍କ ସେବା ପରିଲକ୍ଷିତ ହୁଏ । ସେମାନେ ହେଲେ ବଡ଼ ପରିଛା, ମଧ୍ୟମ ପରିଛା, ସାନ ପରିଛା, ଚତୁର୍ଥ ପରିଛା । ରାଜାଙ୍କ ଶାସନକାଳରେ ଏହି ପରିଛାମାନେ ହିଁ ମନ୍ଦିର ପରିଚାଳକ ଥିଲେ, ଏବଂ ସବୁ ନୀତି ମଧ୍ୟ ତଦାରଖ କରୁଥିଲେ । ସେବକମାନଙ୍କର କାମ ତଦାରଖ କରୁଥିଲେ । କୌଣସି ସେବକ କାମରେ ତ୍ରୁଟି କଲେ ତଦାରଖ କରି ରାଜାଙ୍କୁ ରିପୋର୍ଟ କରୁଥିଲେ ଓ କେତେକ କ୍ଷେତ୍ରରେ ନିଜେ ଦଣ୍ଡବିଧାନ କରୁଥିଲେ । ମାତ୍ର ଇଂରେଜ ଅମଳଠାରୁ ସେମାନଙ୍କର କାର୍ଯ୍ୟ ଓ ଅଧିକାର ସଙ୍କୁଚିତ ହୋଇଯାଇଛି । ପ୍ରତ୍ୟେକ ଦିନ ରାଜଭୋଗ (ସକାଳଧୂପ) ଟେରା ପଡ଼ିଲେ ଏହି ସେବକ ଜଗମୋହନ ପାଶେ ଠିଆହେବେ । ପ୍ରଧାନୀ ଭଣ୍ଡାରୁ ବେତ ନେଇ ଏହାଙ୍କୁ ଦେବେ । ସୁନାବେତ ଧରି ମାଦେଳି, ନାଚେଣୀ ଦ୍ୱାରା ପଟୁଆର କରନ୍ତି । କାର୍ତ୍ତିକ ମାସ ବାଳଧୂପରେ, ଚନ୍ଦନ ଯାତ୍ରାରେ, ଚନ୍ଦନଲାଗି ସମୟରେ ଜଗମୋହନରେ, ଚାପଯାତ୍ରା ଦିନ ଓ ରାତି ଚାପରେ ଚାପ ବାହୁଡ଼ା ବେଳେ ରାସ୍ତାରେ ଶ୍ରୀ ବିମଳାଙ୍କ ଷୋଳପୂଜାରେ ତାଙ୍କ ମନ୍ଦିରରେ ସକାଳ ଧୂପରେ ମଧ୍ୟ ପଟୁଆର କରନ୍ତି ।

ପୂର୍ବେ ଶ୍ରୀମନ୍ଦିର ପରିଚାଳନରେ ମନ୍ଦିରର ବୈତନିକ ସହକାରୀ ଶାସକ ରୂପେ କାର୍ଯ୍ୟ କରୁଥିଲେ । ମନ୍ଦିରର ଆୟବ୍ୟୟର ଅଧିକାରୀ ଓ ସର୍ବସମ୍ପଦର ଜିମାଦାର । ଏମାନେ ଲଳିତା ବିଦ୍ୟାପତି ବଂଶଧର ପଣ୍ଡା ବ୍ରାହ୍ମଣ ନିରଗ୍ନିକ । ରାଜଗୁରୁ ମହାପାତ୍ରଙ୍କ ପ୍ରତିବନ୍ଧ କ୍ରମାନୁସାରେ ସ୍ୱର୍ଣ୍ଣବେତ ଧାରଣ କରିଥାନ୍ତି । ୧. ପଶ୍ଚିମ ଦ୍ୱାର ପରୀକ୍ଷା- ମନ୍ଦିରର ଯେତେ ଯେଉଁଠି ଭୂସମ୍ପତ୍ତି ଅଛି ତା'ର ଯାବତୀୟ ଆୟ ହିସାବ ରଖନ୍ତି, ୨. ପୂର୍ବ ଦ୍ୱାର ପରୀକ୍ଷା- ଅଖିଳ ଜନତା ଯାହା ଯାହା ଦେବଙ୍କୁ ସମର୍ପଣ କରନ୍ତି ତା'ର ଜିମାଦାର ଓ ମହାରାଣୀ ମନ୍ଦିରକୁ ଆସିଲେ ତାଙ୍କର ଯତ୍ନ ନିଅନ୍ତି । ୩. ଉତ୍ତର ଦ୍ୱାର ପରୀକ୍ଷା- ରାଜଗୁରୁ ଓ ତାଙ୍କ ପତ୍ନୀ, ଅଧୀନସ୍ଥ ରାଜା ବିଜେ କଲେ ତାଙ୍କ ଦାୟିତ୍ୱ ନିଅନ୍ତି । ମଠର ସାଧୁସନ୍ଥ, ମହନ୍ତ ଆସିଲେ ସେମାନଙ୍କ ଦାନର ମଧ୍ୟ ଜିମାଦାର । ୪. ଦକ୍ଷିଣଦ୍ୱାର ପରୀକ୍ଷା- ସମସ୍ତ ସାମୁଦ୍ରିକ ଆୟର ଜିମାଦାର । ଗଡ଼ଜାତ ରାଜାଙ୍କ ରାଣୀ ବିଜେ

କଲେ ସୁବିଧାରେ ଦର୍ଶନ କରାଇଦେବେ ଓ ତାଙ୍କ ଦାନର ଜିମାଦାର ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨, ୧୩ - ପୃ. ୨୮, ଉ.ଇ.ଅ.ଅ. - ପୃ. ୩୩୬) ।

**ପରିଚ୍ଛାକରଣ**-*ଦେ.ବି.*- କରଣ ସେବକ ଓ ପରିଚ୍ଛାଙ୍କର ଗୁମାସ୍ତା ବିଶେଷ ।
(ପୁ.ବୋ.- ପୃ. ୨୩୮) ।

**ପରିମାଣିକ**-*ଦେ.ବି.*- ନୀତି ସମୟରେ ସ୍ୱତନ୍ତ୍ର ଦର୍ଶନ ପାଇଁ ଯାତ୍ରୀଙ୍କ ଦେୟ ଓ ପ୍ରଣାମୀ । ଏହି ପରମ୍ପରା ଏବେ ମଧ୍ୟ ଶ୍ରୀମନ୍ଦିରରେ ପ୍ରଚଳିତ ଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ପରିମାଣିକ ଛେକ**-*ଦେ.ବି.*- ପରିମାଣିକ ଦେଇ କୋଠଭୋଗ ଓ ସନନ୍ଦକାରୀଙ୍କ ବ୍ୟତୀତ ଅନ୍ୟ ସୂପକାରମାନେ ନେଉଥିବା ଛେକ ।
(ପୁ.ବୋ.- ପୃ. ୨୩୮) ।

**ପରିଚ୍ଛା ରାଜଗୁରୁ**-*ଦେ.ବି.*- ଶ୍ରୀଜୀଉଙ୍କର ସକାଳଧୂପ ସମୟରେ ନାଟମଣ୍ଡପ ପାଖେ ଠିଆ ହେଉଥିବା ସେବକ ।

**ପରିଚ୍ଛାବଡୁ**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କର ଅବକାଶ ନୀତି ପାଇଁ ଦର୍ପଣ ଦେଖାଇବା ସେବକ । ପୂଜା ସମୟରେ ପୂଜକଙ୍କ ନିକଟରେ ଯଥା ସମୟରେ ପୂଜା ନିମନ୍ତେ ଉପଯୁକ୍ତ ବାସନ ଥୋଇବା ଓ ଯୋଗାଇବା କାର୍ଯ୍ୟ କରିଥାନ୍ତି ।

**ପଲଙ୍କ ଘର**-*ଦେ.ବି.*-ଏଠାରେ ଶ୍ରୀଠାକୁରଙ୍କର ଶୟନ ସକାଶେ ବ୍ୟବହାର୍ଯ୍ୟ ପଲଙ୍କ ଓ ବିଛଣା ଇତ୍ୟାଦି ରହେ । ଏହାକୁ ଖଟଶେଯ ଘର ବା ପଲଙ୍କ ଘର କୁହାଯାଏ । ଏ ଘରର ଚାବି ଖଟଶେଯ ମେକାପଙ୍କ ଜିମା ରହିଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୮) ।

**ପଶୁପାଳକ**-*ଦେ.ବି.*- ଏମାନେ ଦର୍ପଣ ଦେଖାଇ ଶ୍ରୀମୁଖ ପ୍ରକ୍ଷାଳନ, ଦନ୍ତମାର୍ଜନ, ଆଚମନ ଧୂପଦୀପ ସହିତ ଶ୍ରୀଗୁଣ୍ଡିଚା ପଞ୍ଚାମୃତ ସ୍ନାନ, ସୁଗନ୍ଧ ଅଁଳା ଲାଗି ଇତ୍ୟାଦି ଶ୍ରୀଠାକୁରଙ୍କ କାର୍ଯ୍ୟ କରନ୍ତି । ଏମାନେ ମଧ୍ୟ ରଥ ଉପରେ ଠାକୁରଙ୍କୁ ଭୋଗ ଲଗାନ୍ତି ଓ ଦେବତାମାନଙ୍କୁ ବେଶ ଲାଗି କରନ୍ତି । ଶ୍ରୀଅଙ୍ଗରେ ଫୁଲ ଆଭୂଷଣ କରନ୍ତି । ଠାକୁରଙ୍କ ମୁଣ୍ଡରେ ଦୟଣାମାଳ ଦିଅନ୍ତି । ଏମାନେ ସମ୍ପ୍ରତି ପୁଷ୍ପାଳକ ଭାବେ ପରିଚିତ ।
(ପୂ.ଓ.ଭା. - ପୃ. ୪୬୮୦, ପ୍ର.ଅ. ୨ୟ - ପୃ.୧୫୪୫, କ୍ଷ.ବି.ଓ.ଶ.ସ.- ପୃ. ୫୮୧) ।

**ପଶୁପାଳକ ଧଉଳା**-*ଦେ.ବି.*- ଏକ ପ୍ରକାର ମିଠା ଭୋଗ ବିଶେଷ । ଚାଉଳଚୂନା ଚକଟି ଗୁଳାକରି ଭାଜି, ଗୁଡ଼ରେ ପାଗ କରି ଖଣ୍ଡରେ ଗଡ଼ାଇ ଧଳା କରି ଦିଆଯାଏ । ଶ୍ରୀଜୀଉଙ୍କୁ ଭୋଗରେ ଅର୍ପଣ କରାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ୧୯୩-୧୯୪) ।

**ପସରତିଆ**-*ଦେ.ବି.*- କୋଠଭୋଗ ଓ ରାଜଭୋଗ ବିକ୍ରେତା । ସେବକଙ୍କ ଖେଇ ବିକ୍ରୟ କରି ଲାଭାଂଶ ରଖନ୍ତି ।
(ପୁ.ବୋ. - ପୃ. ୨୪୫) ।

**ପହଣ୍ଡି**-*ଦେ.ବି.*- ଧୀର ପଦକ୍ଷେପ । ଧୀରେ ଧୀରେ ଚାଲିବା । ଶ୍ରୀମନ୍ଦିରରେ ରଥଯାତ୍ରା ଓ ସ୍ନାନଯାତ୍ରା ସମୟରେ ତିନି ବିଗ୍ରହଙ୍କୁ ବଡ଼ ଦେଉଳରୁ ରଥ ଉପରକୁ ନେବା କିମ୍ବା ସ୍ନାନମଣ୍ଡପକୁ ନେବା, ରଥରୁ ଓହ୍ଲାଇ (ବାହୁଡ଼ା ପରେ ଏକାଦଶୀ ରଥରେ ସାରି) ମନ୍ଦିର ଭିତରକୁ ନେବାର ରୀତି, ସ୍ନାନଯାତ୍ରା, ରଥଯାତ୍ରା ଓ ବାହୁଡ଼ାଯାତ୍ରାରେ ତିନି ଠାକୁରଙ୍କୁ ରତ୍ନସିଂହାସନରୁ ବାହାରକୁ ନେବା ଓ ଆଣିବାର ନୀତି । ପହଣ୍ଡିକରି ଠାକୁରଙ୍କୁ ନେବା ଆଣିବା ସମୟରେ ପାଟଡୋର ଦ୍ୱାରା ଠାକୁରଙ୍କୁ ଟଣାଯାଇ ଧୀରେ ଧୀରେ ପାଦପାତ କରି ଆଗେଇ ନେବା କାର୍ଯ୍ୟ । ପହଣ୍ଡି ଦୁଇ ପ୍ରକାରର ଧାଡ଼ି ପହଣ୍ଡି ଓ ଗୋଟି ପହଣ୍ଡି । ରଥଯାତ୍ରା ସମୟରେ ବିଗ୍ରହମାନଙ୍କୁ ରତ୍ନବେଦୀରୁ ରଥକୁ ଆଣିବା, ଧାରାକୁ ଧାଡି ପହଣ୍ଡି କୁହାଯାଏ । ରଥରୁ ବିଗ୍ରହମାନଙ୍କୁ ରତ୍ନବେଦୀକୁ ନେବା ଧାରାକୁ ଗୋଟି ପହଣ୍ଡି କୁହାଯାଏ । ଏଥିରେ ଜଣେ ଲକ୍ଷ୍ୟସ୍ଥଳରେ ପହଞ୍ଚି ସାରିଲା ପରେ ଅନ୍ୟ ଜଣଙ୍କର ପହଣ୍ଡି ଆରମ୍ଭ ହୋଇଥାଏ । କିନ୍ତୁ ଧାଡ଼ି ପହଣ୍ଡିରେ ଜଣଙ୍କର ପଛରେ ଅନ୍ୟଜଣଙ୍କର ପହଣ୍ଡି ହୋଇଥାଏ ।

ଶ୍ରୀମନ୍ଦିରରୁ ବିଗ୍ରହମାନେ ଯେତେବେଳେ ଯେକୌଣସି ପର୍ବପର୍ବାଣିକୁ ବାହାରିବେ ସେତେବେଳେ ସେମାନଙ୍କୁ ଧାଡି ପହଣ୍ଡିରେ ଏବଂ ଯେତେବେଳେ ମନ୍ଦିରକୁ ଫେରିବେ ସେତେବେଳେ ଗୋଟି ପହଣ୍ଡିରେ ଆସିଥାନ୍ତି । (ଶ୍ରୀ.ସ୍ୱ. - ପୃ. ୬୯, ପୂ.ଓ.ଭା. - ପୃ.୪୬୮୬, କ୍ର.ବି.ଓ.ଶ.ସ.- ପୃ. ୫୮୨) ।

**ପହଣ୍ଡି ମଣାଇବା**-*ଦେ.ବି.*- ଶ୍ରୀଜୀଉଙ୍କୁ ପାଛୋଟି ନେବାକୁ ପହଣ୍ଡି ମଣାଇବା କୁହାଯାଏ ।

**ପହରଣା**-*ଦେ.ବି.*- ଠାକୁରଙ୍କ ବକ୍ଷ ଦେଶରେ ଲାଗି ହେଉଥିବା ବସ୍ତ୍ର । ବଡ଼ସିଂହାରର ପାଟର ପହରଣା, ଓଢ଼ଣଷଷୀରୁ ବସନ୍ତପଞ୍ଚମୀ ପର୍ଯ୍ୟନ୍ତ ପହରଣା ଲାଗି ହୁଏ । (ପୁ.ବୋ.- ପୃ. ୧୨୧/୨୪୬) ।

**ପହରାବାଲା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ପହୁଡ଼ ପରେ ମନ୍ଦିର ଭିତର ତଥା ବାହାର ଶୋଧ ହୁଏ । ଦିଅଁ ଭିତରେ ଥିବା ଛାମୁ ଜୟବିଜୟ ଦ୍ୱାର ଓ ଛାମୁ ଦୁଆର ତାଲା ପଡ଼ି ମାଟିର ମୁଦ ଦିଆଯାଏ । ଶ୍ରୀମନ୍ଦିର ଚାରିଦ୍ୱାର ବନ୍ଦ ହେବା ପରେ ଯେଉଁ ସେବକମାନେ ଚାରିଦ୍ୱାର ପହରା ଦିଅନ୍ତି, ସେମାନଙ୍କୁ ପହରାବାଲା କୁହାଯାଏ । ପଢ଼ିହାରୀ ମଣିମା ମଣିମା ଡାକ ଦିଅନ୍ତି ଓ ପାଳିଆ ମେକାପ ବଇଠା ଧରି ସିଂହାସନ ଚାରିଆଡ଼େ ବୁଲି ତଦାରଖ କରି କଳାହାଟ ଦୁଆର ବନ୍ଦ କରନ୍ତି । ବାହାରକୁ ଆସି ମୁଦୁଲି କଳାହାଟ ବନ୍ଦ କରି ମାଟିର ମୁଦ ଦିଏ । ତଳଛ ମହାପାତ୍ର ସିଲ୍ ଦିଅନ୍ତି । ଏହାପରେ କଳାହାଟ ଦୁଆର ବନ୍ଦ ହେବା ପରେ ଭିତର ଶୋଧ ହୁଏ, ଯେପରି ପୋଖରିଆରେ କେହି ନ ରୁହନ୍ତି । ମୁଦୁଲି ଜୟବିଜୟ ଦ୍ୱାର ବନ୍ଦ କରି ତାଲା ଦେବାପରେ ମାଟି ମୁଦ ପରେ ତଳଛ ମହାପାତ୍ର ସିଲ୍ ଦିଅନ୍ତି । ମାଟି ମୁଦ ପାଇଁ ହାଣ୍ଡି ଯୋଗାଣିଆ କୁମ୍ଭାର ମାଟି ଦେଇଥାଏ, ଏହିପରି ଦକ୍ଷିଣଦ୍ୱାର ବନ୍ଦ ଓ ସିଲ୍ ହୁଏ । ପ୍ରତ୍ୟେକ ଦ୍ୱାର ରାତିରେ ଜଗିବା ପାଇଁ ପହରାବାଲା ରହନ୍ତି । ମୁଦୁଲି ଓ ବଡ଼ଦ୍ୱାରପଢ଼ିଆରୀ ଜୟବିଜୟ ଦ୍ୱାର ଜଗନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୨୮/୨୯) ।

**ପହିଲିଭୋଗ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ନିକଟରେ ପହିଲିଭୋଗ ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଏକମାସ ହୋଇଥାଏ । ଏହାର ପଶ୍ଚାତ୍ ପଟ୍ଟରେ ଏକ ପୌରାଣିକ ଉପାଖ୍ୟାନ ମଧ୍ୟ ରହିଛି । ଏକଦା ଦ୍ୱାରକାରେ ଶ୍ରୀକୃଷ୍ଣ ମାତା ଯଶୋଦାଙ୍କ ଦୁଃଖରେ ବ୍ୟାକୁଳିତ ହେଲେ । ସେ ବାତ୍ସଲ୍ୟ ରସରେ ଭାବାୟିତ ହୋଇ ବାଳଗୋପାଳ ରୂପ ଧାରଣ କଲେ । ସେହି ସମୟରେ ନାରଦ ସେଠାରେ ଉପସ୍ଥିତ ହୋଇ ବାଳଗୋପାଳ ରୂପ ଦର୍ଶନ କରି ଏହାର ରହସ୍ୟ ପଚାରନ୍ତେ ଶ୍ରୀକୃଷ୍ଣ ଯଶୋଦାଙ୍କ ବାତ୍ସଲ୍ୟ ପ୍ରେମ ବର୍ଣ୍ଣନା କରି ତାଙ୍କୁ ଗୋପକୁ ପ୍ରେରଣ କଲେ । ନାରଦଙ୍କ ମନରେ ଗର୍ବ ଆସିଲା ଯେ ଶ୍ରୀକୃଷ୍ଣ ତାଙ୍କ ବିନା ସହାୟତାରେ ଏହି କାର୍ଯ୍ୟ କରିପାରିବେ ନାହିଁ । ମାୟାଧରଙ୍କୁ ତାଙ୍କ ମନର ଭାବ ଅବିଦିତ ନ ଥିଲା । ତେଣୁ ସେ ମାୟା ରଚନା କଲେ । ନାରଦ ଗୋପରେ ପହଞ୍ଚି ଦେଖିଲେ ଯଶୋଦା କୃଷ୍ଣ ବଳରାମ ଦୁଇ ଭାଇଙ୍କୁ କୋଳରେ ବସାଇ ନାନା ସୁମିଷ୍ଟ ଦ୍ରବ୍ୟମାନ ଖୁଆଇ ଦେଉଛନ୍ତି । ଦୁଇ ଭାଇ ଆନନ୍ଦରେ ସେବନ କରୁଛନ୍ତି । ଏହାର ସ୍ମାରକୀ ସ୍ୱରୂପ ଶ୍ରୀଜଗନ୍ନାଥଙ୍କ ପହିଲି ଭୋଗ ହୋଇଥାଏ । ଅନେକ ଗବେଷକ ମତ ଦିଅନ୍ତି ଯେ, ଗୋପାଳବଲ୍ଲଭ ଭୋଗ ସହିତ ପହିଲି ଭୋଗ ହୋଇଥାଏ । ଏହା ସ୍ୱତନ୍ତ୍ର ସୁମିଷ୍ଟ ଦ୍ରବ୍ୟମାନ ଯଥା- ବଡ଼ ଝିଲ୍ଲୀ, ଦରସୁଆ, ବଡ଼ି, ଏଣ୍ଡୁରୀ, ଦରସୁଆ ଝିଲ୍ଲୀ, ବଡ଼ବଡ଼ା, କାକେରୀ, ସାନଅମାଲୁ, କାକରା, ଆରିସା, ମୁଗେଇ, ଝଡ଼େଇନେଦା, ଲଡୁ, ଗଜା, ଗଇଁଠା, ଖଇରଚୂଳ, ମଣ୍ଡା, ଛତୁ, ଚୁଡ଼ାପୁଆ, କଣ୍ଟେଇ, ନଳୀ ଇତ୍ୟାଦି ଦିବ୍ୟଭୋଗମାନ ସମର୍ପିତ ହୋଇଥାଏ । ମହାଲକ୍ଷ୍ମୀ ବାପ ଘରକୁ ଯାଇଥିବାରୁ ମା' ଯଶୋଦାଙ୍କ ଏହି ସେବା ବିଧି କେଉଁ ପ୍ରାଚୀନ କାଳରୁ ଶ୍ରୀମନ୍ଦିରରେ ଅଦ୍ୟାବଧି ପ୍ରଚଳିତ ହୋଇଆସୁଅଛି, ଯାହା କି ମା'ଙ୍କର

ପୁତ୍ର ପ୍ରତି ବାତ୍ସଲ୍ୟ ସ୍ନେହ ମମତା ତଥା ନୈସର୍ଗିକ ପ୍ରେମର ଏକ ଚରମ ନିଦର୍ଶନ ।
(ଶ୍ରୀଜ.ପ.ସେ.ପୂ. - ପୃ. ୩୫୪) ।

**ପହୁଡ଼/ପହଡ଼**-*ଦେ.ବି.*- ଶ୍ରୀଠାକୁରଙ୍କର ଶୟନ ସମୟ । ଦେବତାଙ୍କର ନିଦ୍ରା ବା ବିଶ୍ରାମ ନୀତି । ମଧ୍ୟାହ୍ନ ଓ ରାତ୍ରିରେ ଦୁଇ ଥର ପହଡ଼ ନୀତି ହୁଏ ।
(ଶ୍ରୀ.ସ୍ୱ. - ପୃ. ୨୮, ପୂ.ଓ.ଭା. - ପୃ. ୪୬୮୫, କ୍ର.ବି.ଓ.ଶ.ସ. - ପୃ. ୫୮୩) ।

**ପହୁଡ଼ ଆଳତି**-*ଦେ.ବି.*- ରାତ୍ର ପହୁଡ଼ର ଠିକ୍ ପୂର୍ବରୁ କରାଯିବା ଆଳତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୯) ।

**ପହୁଡ଼ଫିଟା ଆଳତି**-*ଦେ.ବି.*- ପ୍ରାତଃକାଳରେ ଦ୍ୱାର ଫିଟାଯାଇ କରାଯାଉଥିବା ପ୍ରଥମ ଆଳତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧) ।

**ପହୁଡ଼ଫିଟା**-*ଦେ.ବି.*- ଶ୍ରୀମନ୍ଦିରରେ ବିଭିନ୍ନ ପ୍ରକାର ନୀତି ପାଳନ ପୂର୍ବକ ମଧ୍ୟାହ୍ନ ପହଡ଼ ପରେ ଦ୍ୱାର ଫିଟାଯାଏ ଓ ଠାକୁରମାନଙ୍କ ଆଳତି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪) ।

**ପହୁଡ଼ ଭାଙ୍ଗିବା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ନିଦ୍ରା ଭାଙ୍ଗିବାକୁ 'ପହୁଡ଼ଭାଙ୍ଗିବା' ବୋଲି କୁହାଯାଏ । କିନ୍ତୁ ନିଦ୍ରା ଯିବାକୁ 'ପହୁଡ଼ପଡ଼ିବା' କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୮, ପୂ.ଓ.ଭା. ୪ର୍ଥ - ପୃ. ୪୬୮୫) ।

**ପକ୍ଷୀରାଜଦ୍ୱାର**-*ଦେ.ବି.*-ଶ୍ରୀମନ୍ଦିରରେ ଥିବା ଗରୁଡ଼ସ୍ତମ୍ଭଙ୍କ ପଛରେ ଥିବା ଭୋଗମଣ୍ଡପ ଦ୍ୱାର ।
(ଶ୍ରୀ.ଶ. - ପୃ. ୧୦୨) ।

**ପାଇକ ସେବା**-*ଦେ.ବି.*- ଡକାହକା କରୁଥିବା ଚର୍ଚ୍ଚା ଗୋଷ୍ଠୀର ସେବକ । ଏମାନେ ଦିନସାରା ଶ୍ରୀମନ୍ଦିରରେ ରହନ୍ତି ଓ କର୍ତ୍ତୃପକ୍ଷଙ୍କ ହୁକୁମ ଅନୁସାରେ କାର୍ଯ୍ୟ କରନ୍ତି । ଦିନକୁ ଛ' ଜଣ କରି କାମକୁ ଆସିଥାନ୍ତି । ସକାଳବଲ୍ଲଭଠାରୁ ବାହାର ଦେଉଳିଭୋଗ ଯାଏ, ତିନିଜଣ ଓ ସେଠାରୁ ଆଉ ତିନିଜଣ ରାତ୍ର ପହୁଡ଼ କରି ସକାଳୁ ସେବକଙ୍କୁ ଡକାଇ ଚାଲିଯାଆନ୍ତି ।
(ଶ୍ରୀ.ସ୍ୱ.-ପୃ ୧୫୮, ପୂ.ଓ.ଭା.-ପୃ ୪୬୯୨) ।

**ପାକଶାଳା**-*ଦେ.ବି.*- ବର୍ତ୍ତମାନର ପାକଶାଳା ବା ରୋଷଘର ଶ୍ରୀମନ୍ଦିରର ବାଇଶି ପାହାଚର ଦକ୍ଷିଣ ଦିଗକୁ ଅବସ୍ଥିତ । ପୂର୍ବେ ଯେତେବେଳେ ଅଛ ଅନ୍ନ ଭୋଗ ହେଉଥିଲା, ଏହା ଐଶାନ୍ୟ କୋଣରେ ରହିଥିଲା । ପାକଶାଳାରେ ବହୁସଂଖ୍ୟକ ଚୁଲିଅଛି । ଏକାଥରକେ ଲକ୍ଷାଧିକ ଲୋକଙ୍କ ପାଇଁ ରୋଷେଇ ହେବାର ବ୍ୟବସ୍ଥା ଶ୍ରୀଜଗନ୍ନାଥଙ୍କ ପାକଶାଳାରେ ସମ୍ଭବ ହୋଇଥାଏ । ଚୁଲିଗୁଡ଼ିକର ଆକାର ଓ ପ୍ରକାର ଦୃଷ୍ଟିରୁ ବିଚିତ୍ର ଧରଣର । ଏଥିରେ ବହୁତ ଗୁଡ଼ିଏ ଝୁମା (କଣା) ଥାଏ । ଏହି କଣାମାନଙ୍କରେ ବିଭିନ୍ନ ଆକାରର ହାଣ୍ଡିକୁଡ଼ିଆ ବସେ । ସାଧାରଣ ଦିନମାନଙ୍କରେ ପ୍ରତିଦିନ ପ୍ରାୟ ପଚିଶ ମହଣ ଚାଉଳ ରୋଷେଇ ହୋଇଥାଏ । ଏହି ରୋଷଘରେ ଛପନ ପ୍ରକାର ଭୋଗ ପ୍ରସ୍ତୁତ ହୁଏ । ଏଠାରେ ଚାରିପ୍ରକାର ପାକ ହୋଇଥାଏ । ଯଥା- ଭୀମପାକ, ନଳପାକ, ସୌରୀପାକ ଓ ଗୌରୀପାକ ବୋଲି କୁହାଯାଏ । ସେହିପରି ଉକ୍ତ ପାକଶାଳାରେ ଚାରିପ୍ରକାର ଅନ୍ନ ପ୍ରସ୍ତୁତ ହୁଏ । ଯଥା- ଶାଳୀଅନ୍ନ, କ୍ଷୀରାନ୍ନ, ଦୁଗ୍ଧଅନ୍ନ ଓ ଶୀତଳ ଅନ୍ନ । ଅସଂଖ୍ୟ ପ୍ରକାର ତରକାରୀ ମଧ୍ୟ ପ୍ରସ୍ତୁତ ହୁଏ । ତରକାରୀ ବା ଡାଲି ପ୍ରଭୃତିକୁ ବଘରାଯାଏ ନାହିଁ । ପୂର୍ବେ ମଢ଼ଫୁଲି ପରିଛା ରୋଷ ପାଇଁ ନିଯୁକ୍ତ ଥିଲେ । ମୁଖ୍ୟ ରୋଷ ବାହାର ବେଢ଼ାରେ ଅଛି । ଏଥିରେ ଭିତରଛ ରୋଷ, ଏମାରରୋଷ, କୋଠଭୋଗ ରୋଷ, ଥାଳି ଆଡ଼ ରୋଷ ସାତପୁରୀ ରୋଷ, ପିଠାଆଡ଼ ରୋଷ, ବଡ଼ଆଡ଼ରୋଷ, କୋଠଭୋଗ ରୋଷ, ଏମାର ରୋଷ, ଭିତରଛ ରୋଷ, ରାଘବ ଦାସ ମଠ ରୋଷ, ଶ୍ରୀରାମ ମଠ ରୋଷ, ଉତ୍ତରପାର୍ଶ୍ୱ ରୋଷ, ଓଡ଼ିଆ ମଠ ରୋଷର ବ୍ୟବସ୍ଥା ଅଛି । ପ୍ରତିଟି ରୋଷରେ ଅନେକଗୁଡ଼ିଏ ଚୁଲି ରହିଛି । ଏତଦ୍ ବ୍ୟତୀତ ଭିତରବେଢ଼ା ଭିତରେ ଲକ୍ଷ୍ମୀଙ୍କ ଛୋଟ ରୋଷେଇଶାଳ ମଧ୍ୟ ଅଛି । ମୁଖ୍ୟମନ୍ଦିରକୁ ଛାଡ଼ିଦେଲେ ଅନ୍ୟ ମନ୍ଦିରଗୁଡ଼ିକ ପାଇଁ ଏଠାରୁ କାକରା, ଡାଳିମ୍ବ, ମାଣ୍ଡୁଅ,

ମହନଭୋଗ ଆଦି ବାହାର ଦେଉଳି ରୋଷରେ ସୁଆରଙ୍କ ଦ୍ୱାରା ପ୍ରସ୍ତୁତ ହୁଏ । ରୋଷ ଶାଳାର ଦୈର୍ଘ୍ୟ ଶହେପଚାଶ ଫୁଟ ଓ ପ୍ରସ୍ଥ ଶହେ ଫୁଟ ବିଶିଷ୍ଟ । ଏହି ପାକଶାଳା ଏଗାରଟି ଗୃହରେ ବିଭକ୍ତ । ତନ୍ମଧ୍ୟରୁ ଗୋଟିଏ ଗୃହରେ ରୋଷ ସାମଗ୍ରୀ ରହୁଥିବାରୁ ତାହାକୁ ରୋଷ ପାଇକ ଘର କୁହାଯାଏ । ଅବଶିଷ୍ଟ ଦଶଟି ଗୃହରେ ରୋଷ ଚୁଲି ରହିଛି । ଚୁଲିଗୁଡ଼ିକ ସାଧାରଣତଃ ଛ' ଝିଙ୍କା, ଏଥିରେ ଏକ ସଙ୍ଗେ ନଅଗୋଟି କୁଡୁଆରେ ଅନ୍ନ ରନ୍ଧନ କରାଯାଏ । ନାଲିବର୍ଣ୍ଣର କୁଡୁଆରେ କେବଳ ମହାପ୍ରସାଦ ପ୍ରସ୍ତୁତ କରାଯାଏ । ଯାହାକି କୁମ୍ଭାରପଡ଼ା, ଟିକରପଡ଼ା, ଜେନାପୁର, ପାର୍ବତୀପୁର ଓ ଗୋପାଳପୁର ପ୍ରଭୃତି କୁମ୍ଭାରମାନେ ଯୋଗାଇଥାନ୍ତି । ପୂର୍ବେ ପାକଶାଳାରେ ସାତଶହବାଉନ ଚୁଲି ଥିଲା । ବର୍ତ୍ତମାନ ଦୁଇଶହଚଉରାଳିଶିଟି ଚୁଲି ରହିଛି । ଜୀଉଙ୍କ ନିକଟରେ ଲାଗି ହେଉଥିବା ଭୋଗ ସାଧାରଣତଃ ଦୁଇଭାଗରେ ବିଭକ୍ତ । ସଙ୍କୁଡ଼ି ଓ ଶୁଖିଲି । ଏହି ଭୋଗ ପୁଣି କୋଠ ଭୋଗ ବା ରାଜଭୋଗ ଅନ୍ୟଟି ବରାଦି ଭୋଗ ବା ଭଣ୍ଡ ଭୋଗ ନାମରେ ପରିଚିତ । କୋଠ ଭୋଗ ରତ୍ନ ସିଂହାସନ ନିକଟରେ ଭୋଗ ହେଉଥିଲା ବେଳେ ବରାଦି ଭୋଗ ଭୋଗମଣ୍ଡପରେ ଶ୍ରୀଜୀଉଙ୍କୁ ଅର୍ପଣ କରାଯାଇ ଆନନ୍ଦବଜାରକୁ ଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬୧-୨୬୮) ।

**ପାଗପଟି**-*ଦେ.ବି.*- ସିଂହାସନ ପ୍ରଭାରେ ଥିବା ଲୁହାକଡ଼ାରେ ନାରାଚ ମିଶାଇ ପାଗପଟି ଭିଡ଼ାଯାଏ । ପହଣ୍ଡି ସମୟରେ ଏହା କଢ଼ାଯାଏ ।
(ପୁ.ବୋ.- ପୃ. ୧୨୧) ।

**ପାଗ ମଲମଲ**-*ଦେ.ବି.*- ଏକ ପ୍ରକାର ସୂକ୍ଷ୍ମ ବସ୍ତ୍ର । ଏହା ଶ୍ରୀଜୀଉଙ୍କୁ ଲାଗିହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬୧-୧୬୬) ।

**ପାଗୁଆ**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ଏ ବଡ଼ସୁଆର ଗୋଷ୍ଠୀର ସେବକ ।
(ଶ୍ରୀ.ସ୍ୱ. ୧ମ - ପୃ. ୧୨୨) ।

**ପାଚେଡ଼ି**-*ଦେ.ବି.*- ଏକ ସ୍ୱାଦିଷ୍ଟ ଭୋଗ ବିଶେଷ । ସରୁ ସରୁ ଓ ଚେକା ଅଦାରେ ତେନ୍ତୁଳି ମଣ୍ଡ ଓ ଖଣ୍ଡ ଦିଆଯାଇ ପ୍ରସ୍ତୁତ ସ୍ୱାଦିଷ୍ଟ ଭୋଗଦ୍ରବ୍ୟ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୯) ।

**ପାଚେଡ଼ି ସୁଆର**-*ଦେ.ବି.*- ସୁଆରମାନଙ୍କ ମଧ୍ୟରୁ ଜଣେ ସେବକ । ଶ୍ରୀଠାକୁରଙ୍କ ରୋଷଘରେ ଏମାନେ କାର୍ଯ୍ୟ କରିଥାନ୍ତି । ଯେଉଁ ସୁଆର ପାଚେଡ଼ି ପ୍ରସ୍ତୁତ କରନ୍ତି ସେ ହେଉଛନ୍ତି ପାଚେଡ଼ି ସୁଆର । ଅଁଳା, ଟଭା, ଲେମ୍ବୁରେ ଖଟା ନୈବେଦ୍ୟ ନିମନ୍ତେ ଯୋଗାନ୍ତି ।
(ପୁ.ବୋ. - ପୃ. ୨୪୬) ।

**ପାଚେଲି**-*ଦେ.ବି.*- ଶ୍ରୀଠାକୁରଙ୍କର ଏକ ପ୍ରକାର ଭୋଗ ବିଶେଷ ।
(ପୁ.ବୋ.- ପୃ. ୨୪୬) ।

**ପାଞ୍ଜି**-*ଦେ.ବି.*- ମାସ, ତିଥି, ବାର, ନକ୍ଷତ୍ର ଆଦି ସମ୍ବନ୍ଧୀୟ ଜ୍ୟୋତିଷ ଗ୍ରନ୍ଥ । ତାଳପତ୍ରରେ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ବିବରଣୀ ଲେଖାଯାଉଥିବାରୁ ତାଙ୍କ ପାଞ୍ଜିକୁ 'ମାଦଳାପାଞ୍ଜି' କୁହାଯାଏ । ପ୍ରତ୍ୟହ ଅବକାଶ ସମୟରେ ଠାକୁରଙ୍କ ବାଡରେ ଖୁରି ନାୟକ ନକ୍ଷତ୍ର ବିଚାର ଶୁଣାନ୍ତି । ପାଞ୍ଜିପଠନକାର ଜ୍ୟୋତିଷ ଖୁରି ନାହାକ । ଠାକୁରଙ୍କର ସ୍ୱନକ୍ଷତ୍ର ବା ଯାନିଯାତ୍ରା ହେବାର ଥିଲେ ପୂର୍ବରୁ ତଡ଼ାଉ କରଣକୁ ଜଣାନ୍ତି । ଦୋଳପୂର୍ଣ୍ଣମୀ ଦିନ ଅବକାଶ ବଢ଼ିଲା ପରେ ଶ୍ରୀଛାମୁରେ ନୂତନ ପଞ୍ଜିକା ପାଠ କରନ୍ତି ।
(ପୁ.ବୋ. - ପୃ. ୧୭୫, ପୂ.ଓ.ଭା. - ୪୭୨୧, ଓ.ସାଂ.ଶ.- ପୃ. ୨୩୧) ।

**ପାଞ୍ଜିଆକରଣ**-*ଦେ.ବି.*- ମାଦଳାପାଞ୍ଜିର ତତ୍ତ୍ୱାବଧାରକ କରଣ ସେବକ ।
(ଉ.ଇ.ଅ.ଅ.- ପୃ. ୩୪୪) ।

**ପାଟ ଅଗଣା**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାର ଉତ୍ତରପାର୍ଶ୍ୱରେ ଥିବା ବଡ଼ ଅଗଣା । ଏହାର ଅନ୍ୟନାମ କୀର୍ତ୍ତନ ଚକଡ଼ା । ପ୍ଲଟ ନଂ. ୧୧୭ । ଅଗ୍ନି ମନ୍ଦିର ସମ୍ମୁଖରେ ଥିବା ଖୋଲା ସ୍ଥାନ ।
(କ୍ଷେ.ସ.) ।

**ପାଟଛତ୍ର**-*ଦେ.ବି.*-ପାଟଛତି ବା ପାଟଛତା । ରାଜା ଓ ଦେବଦେବୀଙ୍କ ମସ୍ତକ ଉପରେ ଟେକା ଯାଉଥିବା ରେଶମ କନାରେ ଆବୃତ ଛତା । ମହାପ୍ରଭୁଙ୍କ ବିମାନ ବିଜେ ଆଗରୁ ପାଟବସ୍ତ୍ରରେ ଆଚ୍ଛାଦିତ ପାଟଛତା ବିରାଜିତ ହୁଏ ।
(ଓ.ସାଂ.ଶ.- ପୃ. ୨୩୧) ।

**ପାଟଝୁମ୍ପା**-*ଦେ.ବି.*-ଏକ ଅଙ୍ଗଭୂଷା ବିଶେଷ । ପୃଷ୍ଠଦେଶକୁ ମଣ୍ଡିତ କରେ । ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତିଙ୍କ କଟୀ ଦେଶରେ ଲମ୍ବିତ ପାଟ ଝୁମ୍ପା ବା ଝୋବାକଣ୍ଠି ଭାବରେ ପରିଚିତ ।
(ଓ.ସାଂ.ଶ. - ପୃ. ୨୩୧) ।

**ପାଟଟେରା**-*ଦେ.ବି.*-ଏକ ପରଦା ବିଶେଷ । ରତ୍ନପଲଙ୍କ ଉପରେ ମହାପ୍ରଭୁଙ୍କ ଦୈନିକ ପହୁଡ଼ ପାଇଁ ପାଟଶେଯ ପ୍ରସ୍ତୁତ ହୁଏ । ଏଥିପାଇଁ ମଧ୍ୟ ପାଟଟେରା ବା ପାଟର ପରଦା ପଡ଼େ ।
(ଓ.ସାଂ.ଶ.- ପୃ. ୨୩୧) ।

**ପାଟଡୋର**-*ଦେ.ବି.*- ଶ୍ରୀଠାକୁରଙ୍କ ରଥଯାତ୍ରା ଓ ସ୍ନାନଯାତ୍ରା, ପହଣ୍ଡି ବିଜେ ସମୟରେ ଲଗାଯାଉଥିବା ପାଟ ଦଉଡ଼ି ବା ଡୋର ।
(ଶ୍ରୀ.ସ୍ୱ. ୨ୟ - ପୃ. ୫୭) ।

**ପାଟନେତ**-*ଦେ.ବି.*- ରେଶମରୁ ପ୍ରସ୍ତୁତ ସରୁ ଲୁଗା ବା ଚାନ୍ଦୁଆ । ଶ୍ରୀଠାକୁରଙ୍କ ରତ୍ନବେଦୀ ଉପରେ ଲାଗି ହେଉଥିବା ପାଟ ଚାନ୍ଦୁଆ ।
(ଓ.ସାଂ.ଶ.- ପୃ. ୨୩୧) ।

**ପାଟପତନି**- ଶ୍ରୀଠାକୁରମାନଙ୍କର ବ୍ୟବହୃତ ଅଙ୍ଗବାସ । ପାଟଫେଟା, ପାଟଲୁଗା, ରେଶମର ଧୋତି ।
(ଓ.ସାଂ.ଶ.- ପୃ. ୨୩୧) ।

**ପାଟରାବିଶୋଇ ସେବକ**-*ଦେ.ବି.*- ପାଟରା ସେବକ । ଏମାନେ ଠାକୁରଙ୍କ ପାଟ ଓ କୁସୁମୀ ଲୁଗା ରଙ୍ଗ କରନ୍ତି ଓ ପାଟ ଦଉଡ଼ି ଶ୍ରୀଜୀଉଙ୍କ ପାଇଁ ତିଆରି କରନ୍ତି । ଏହାବ୍ୟତୀତ ପାଗ, କୁସୁମୀ, ଲୁଗାରଙ୍ଗ କରିବା, ରାକ୍ଷୀ ପୂର୍ଣ୍ଣିମା ପାଇଁ ରାକ୍ଷୀ ଡୋର, ଚନ୍ଦନରେ ମଦନମୋହନଙ୍କ ପାଇଁ ପାଟଡୋର, ପୁଷ୍ୟାଭିଷେକ ପାଇଁ ଷୋହଳଟି ପାଟଫୁଲି, ମାଘସପ୍ତମୀ ଦିନ ସୂର୍ଯ୍ୟଙ୍କ ଗୁନ୍ଧାଡୋରି, ବସନ୍ତ ପଞ୍ଚମୀରେ ଷୋହଳ ଖଣ୍ଡ କୁସୁମି ସଜ ରଙ୍ଗ କରିଥାନ୍ତି । ଫାଲଗୁନରେ ଦୋଳରେ ଚଉଦଗୋଟି ଲୁଗା ରଙ୍ଗ କରନ୍ତି । ବୈଶାଖରେ ଚନ୍ଦନଯାତ୍ରା ପାଇଁ ମଦନମୋହନଙ୍କ ପାଟଡୋରି ତିଆରି କରନ୍ତି । ଜ୍ୟେଷ୍ଠ ମାସରେ ଊଣେଇଶି ଖଣ୍ଡ କୁସୁମି ରଙ୍ଗ କରନ୍ତି । ବିଜେମାନଙ୍କରେ ଦରକାରୀ ଲୁଗା ରଙ୍ଗ କରି ଝୋବା ନଷ୍ଟ ଥିଲେ ତଆରି କରନ୍ତି । ରେଖାପଞ୍ଚମୀରେ ରାହୁରେଖା, ବନଭୋଜି ବେଶରେ ପାଟଶିକା ପାଟ ବନମାଳା ଆଦି, ବାମନଜନ୍ମ ପାଇଁ ପବିତ୍ର ପଇତା, ଷୋଳପୂଜାରେ ବିମଳାଙ୍କ ଝୋବା କୃଷ୍ଣବେଶର ଗୁନ୍ଧା ଜିନିଷ ପ୍ରସ୍ତୁତ କରନ୍ତି । ବିଜେ ଓ ଆଲଟ ଲାଗି ପାଇଁ ଲୁଗାରଙ୍ଗ କରିବା, ଝୋବା ଶ୍ରୀପଟ୍ଟ, ପଇତା, ଗୁଆମାଳ, ଗହ୍ମା ଫୁଲି, ଅଣସର ଓ ମହାଅଣସର ପାଇଁ ଘଣା, ଅଧା, ଚଉଡ଼ା, ପଇତା, ବାଇଶିହାତିଆ ତିଆରି କରନ୍ତି ।
(ଶ୍ରୀ.ସ୍ୱ. ୩ୟ - ପୃ. ୬୫) ।

**ପାଟଯୋଶୀ**-*ଦେ.ବି.*- ଶ୍ରୀମନ୍ଦିରର ପଟ୍ଟଜ୍ୟୋତିଷ । ଗଜପତିଙ୍କ ପ୍ରଧାନ ଗଣକ । ଛତିଶା ନିଯୋଗ ନାୟକ ସେବକ ।
(ଶ୍ରୀ.ସ୍ୱ. ୧ମ - ପୃ. ୪) ।

**ପାଟଯୋଶୀ ମହାପାତ୍ର**-*ଦେ.ବି.*- ଛତିଶା ନିଯୋଗ ନାଏକ ଭାବେ ପ୍ରତ୍ୟେହ ମଙ୍ଗଳ ଆଳତି ପୂର୍ବରୁ ବେହେରଣକୁ ଆସି ଶ୍ରୀଜୀଉଙ୍କ ନୀତି ସେବା ସୁଚାରୁ ରୂପେ ପରିଚାଳନା କରନ୍ତି । କାର୍ଯ୍ୟ, ନୀତି ବା ସେବାରେ କୌଣସି ତ୍ରୁଟି ହେଲେ କର୍ତ୍ତୃପକ୍ଷଙ୍କୁ ରିପୋର୍ଟ ପଠାଇଥାନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୪/୫) ।

**ପାଟଶାଣି**-*ଦେ.ବି.*- ରାଜନଅର ସେବକ ବିଶେଷ । ଗଜପତିଙ୍କ ବିଜେ, ଛେରାପହଁରାଦିରେ ଗଜପତିଙ୍କ ସହ ରହିଥାନ୍ତି । ରାଜାଙ୍କ ନିକଟରେ ଚାମର ସେବା କରିବା, ଶ୍ରୀନଅରରେ ମହାନାୟକ ସେବକମାନଙ୍କ ମୁଣ୍ଡରେ ଶାଢ଼ୀ ରାଜଗୁରୁ ଅଭିମନ୍ତ୍ରିତ କଳାପରେ ବାନ୍ଧନ୍ତି ।
(ପୁ.ବୋ. - ପୃ. ୮୬) ।

**ପାଟସୂତା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରମାନଙ୍କର ଅଙ୍ଗବସ୍ତ୍ର । ଶୁଭ ମାଙ୍ଗଳିକ କାର୍ଯ୍ୟରେ ପାଟସୂତାରେ ନିର୍ମିତ ବସ୍ତ୍ର ପରିଧାନ କରି ପୂଜା ହୋମ ଆଦି କର୍ମ କରାଯାଏ ।
(ଓ.ସାଂ.ଶ.- ପୃ. ୨୩୨) ।

**ପାଟହାତୀ ମାହୁନ୍ତ ସେବକ**-*ଦେ.ବି.*- ପାଟହାତୀର ମାହୁନ୍ତ ଭାବରେ କାର୍ଯ୍ୟ କରୁଥିବା ସେବକ ବିଶେଷ ।
(ଉ.ଇ.ଅ.ଅ. - ପୃ. ୩୪୯) ।

**ପାଣିଆପାଟ ସେବକ**-*ଦେ.ବି.*- ପୂଜା ନିମନ୍ତେ ପାଣି ଯୋଗାଇବା ସେବକ ବିଶେଷ । ପୂଜା ଥାଳି, ପରଖ, ଗରା, ଝରିଆଦି, ଦର୍ପଣିଆ, ସେବକ ସକାଳେ ମାଜିବା ପରେ ବାକି ଦିନସାରା ଏ ସେବକ ସମସ୍ତ ମାଜି ସଫା କରନ୍ତି । ଭିତରେ ଧୋପଖାଳ, ଅବକାଶ, ମହାସ୍ନାନ, ସଙ୍ଖୁଡ଼ି ଧୂଆ ପାଇଁ ଯେତେ ପାଣି ଲାଗେ, ବିମଳା କୂଅରୁ ଆଣି ଅଣସର ପିଣ୍ଡି ପାଖରେ ପାଣି ପହଞ୍ଚାନ୍ତି । ରାତ୍ର ଚନ୍ଦନଲାଗି ପରେ ପିଙ୍ଗଣ, ଦୈନିକ ବ୍ୟବହୃତ ଜିନିଷମାନ ସଫା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୮, ୩ୟ - ପୃ. ୪୫) ।

**ପାଣିକୁଣ୍ଡ ସେବକ**-*ଦେ.ବି.*- ଦୈନିକ ମଙ୍ଗଳ ଆଳତି ପୂର୍ବରୁ ଏହି ସେବକ ବିମଳା ପାଖ କୂଅରୁ ପାଣି ଆଣି ବଟ ଗଣେଶ ମନ୍ଦିର ପିଣ୍ଡାରେ ଥିବା କୁଣ୍ଡରେ ରଖନ୍ତି । ଦୈନିକ ଅବକାଶ ମଇଲମ ପରେ ଚାଙ୍ଗଡ଼ା ମେକାପ ମଇଲମ ହୋଇଥିବା ତଡ଼ପ ଉତ୍ତରୀୟମାନ ଭଣ୍ଡାରଦ୍ୱାର ଉପରେ ରଖିଲେ ଏହି ସେବକ ତାହା ଆଣି ବଟ ଗଣେଶ ଦେଉଳ ମଧ୍ୟରେ ଉକ୍ତ ଲୁଗା ଧୋଇ ଶୁଖାଇ ସେଦିନ ରାତ୍ରକୁ ଭଣ୍ଡାର ଦ୍ୱାର ଚାଙ୍ଗଡ଼ାରେ ରଖି ଦେଇଥାନ୍ତି । ଯେତେ ନୂତନ ସୂତା ବସ୍ତ୍ର ଲାଗିହେବ, ଲାଗିହେବା ପୂର୍ବରୁ ଏହି ସେବକ ସେସବୁ ଧୋଇ ଶୁଖାଇଦେବେ । ମଇଳା ଲୁଗା ଧୋବା ସଫା କରିବା ପରେ ଏହି ସେବକ ଧୋଇ ଶୁଖାଇ ଚାଙ୍ଗଡ଼ା ମେକାପକୁ ଦିଅନ୍ତି । ଓଢ଼ଣ ଷଷ୍ଠୀଠାରୁ ବସନ୍ତପଞ୍ଚମୀ ଯାଏ ଲାଗି ହେଉଥିବା ସୂତାଫୁଟା ମାନ ଧୋଇ ଶୁଖାଇ ଦିଅନ୍ତି ।
(ଶ୍ରୀ.ସ୍ୱ. ୩ୟ - ପୃ. ୯୨,୯୬) ।

**ପାଣିଛତ୍ର ଘର**-*ଦେ.ବି.*- ମନ୍ଦିର ବାହାର ବେଢ଼ାରେ ଆନନ୍ଦ ବଜାର ପରିସରରେ ଥିବା ଏକ ଘର । ଏଠାରେ ରଥର ସାରଥିଙ୍କୁ ରଖାଯାଉଥିଲା ।
(ଶ୍ରୀ.ସ୍ୱ.- ପୃ. ୨୫୧) ।

**ପାଣିଝରୀ**-*ଦେ.ବି.*- ଶ୍ରୀଠାକୁରଙ୍କ ଆଳତି ସମୟରେ ବ୍ୟବହୃତ ହେଉଥିବା ଗଡୁଢାଳ । ଏହାକୁ 'ମୁଦୁଲି' ଯୋଗାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫/୧୮) ।

**ପାଣିତୋଳା ସେବକ**-*ଦେ.ବି.*- ଶ୍ରୀମନ୍ଦିର ପରିସର ମଧ୍ୟରେ ଥିବା ବିମଳାଙ୍କ କୂପରୁ ପାଣି କାଢ଼ି ଶ୍ରୀମନ୍ଦିରକୁ ଯୋଗାଉଥିବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୮) ।

**ପାଣିପଡ଼ିବା**-*ଦେ.ବି.*- ଶ୍ରୀମନ୍ଦିରର ଅବକାଶ ନୀତି ପୂର୍ବରୁ ଭିତର ପୋଖରୀଆରେ ପାଣି ପଡ଼ି ଧୁଆଯାଏ । ଏହାକୁ ଅବକାଶ ପାଇଁ 'ପାଣିପଡ଼ିବା' କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩, ପୂ.ଓ.ଭା. - ପୃ. ୪୭୪୪) ।

**ପାଣିଶଙ୍ଖୁଆ**-*ଦେ.ବି.*- ଶ୍ରୀଠାକୁରଙ୍କ ନିଦ୍ରାଭଙ୍ଗ ପାଇଁ ଅତି ପ୍ରତ୍ୟୁଷରୁ ଶଙ୍ଖ ବଜାଉଥିବା ସେବକ ବିଶେଷ । ବର୍ତ୍ତମାନ ଏ ପ୍ରଥା ପ୍ରଚଳିତ ନାହିଁ ।

**ପାତାଳି**-*ଦେ.ବି.*- ଭୂସମାଧି । ମାଟିତଳେ ପୋତିଦେବା । ଗୋପ୍ୟ ନିବାସ । ଶ୍ରୀଠାକୁରମାନଙ୍କ ପ୍ରତି ବିଭିନ୍ନ ସମୟରେ ବିପତ୍ତି କାଳରେ ମୁସଲମାନଙ୍କ ଆକ୍ରମଣ ହେତୁ ତାଙ୍କୁ ବିଭିନ୍ନ ସ୍ଥାନକୁ ନେଇ ମାଟିତଳେ ଗୋପନ କରାଯାଉଥିଲା । ଏହାକୁ 'ପାତାଳି' କୁହାଯାଏ । ଶତ୍ରୁ କବଳରୁ ରକ୍ଷା କରିବା ସକାଶେ ସେବକମାନେ ଜଗନ୍ନାଥଙ୍କୁ ପାତାଳି କରୁଥିଲେ । ନବକଳେବର ସମୟରେ ପୁରୁଣା ବିଗ୍ରହମାନଙ୍କୁ କୋଇଲି ବୈକୁଣ୍ଠରେ ପାତାଳି କରାଯାଏ ।
(ମା.ପା. - ପୃ ୪, ପୂ.ଓ.ଭା. - ପୃ ୪୭୫୬, ପ୍ର.ଅ. - ପୃ ୧୫୬୧, କ୍ର.ବି.ଓ.ଶ.ସ. - ପୃ ୫୯୪) ।

**ପାତାଳେଶ୍ୱର ମହାଦେବ**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାର ଉତ୍ତର ଦ୍ୱାରର ପ୍ରାରମ୍ଭରେ ଡାହାଣପଟେ ଅଗ୍ନିକୋଣରେ ପାତାଳେଶ୍ୱର ମନ୍ଦିର ଅବସ୍ଥିତ । ଏହାଙ୍କ ସମ୍ମୁଖରେ ଆନନ୍ଦବଜାର । ଏହି ମନ୍ଦିରରେ ବିମଳାଙ୍କ ପାଳିଆ ସେବକ ପୂଜା କରନ୍ତି ।
(ଶ୍ରୀ.ସ୍ୱ.-ପୃ ୨୧୯, ଶ୍ରୀ.ବେ.ଦେ.-ପୃ ୧୧୮) ।

**ପାତ୍ର**-*ଦେ.ବି.*- ଯେଉଁ ସେବକ ଶ୍ରୀଜୀଉଙ୍କ ପାଇଁ ମାଳ ପ୍ରସ୍ତୁତ କରନ୍ତି । ମାଳଗୁନ୍ଥିବା ସେବକ ।
(ଉ.ଇ.ଅ.ଅ. - ପୃ. ୩୩୯) ।

**ପାତ୍ରସଜ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କ ସକାଳ ଧୂପ ସମୟରେ ପତ୍ରୀବଢ଼ୁ ପୂଜା ନିମନ୍ତେ ଅଠର ମୂର୍ତ୍ତି ରୂପା ଗିନା ଓ ପିତ୍ତଳ ଥାଳିରେ ଅଳେଇଚ, ଲବଙ୍ଗ, ଯବଧାନ, ଗୁଡ଼ ପଇତା ଏବଂ ଚନ୍ଦନ ଇତ୍ୟାଦି ମୁଦୁଲିଙ୍କୁ ଯୋଗାଇଥାଆନ୍ତି । ଏହାକୁ ପାତ୍ରସଜ କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୮) ।

**ପାତ୍ରପାଯେଡ଼ା**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କର ବ୍ୟବହୃତ ଏକ ପ୍ରକାର ବସ୍ତ୍ର ବିଶେଷ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୪୭, ୧୫୨, ୧୬୦) ।

**ପାଦ୍ୟ**-*ସଂ.ବି.*- ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କର ପଦପ୍ରକ୍ଷାଳନ ନିମିତ୍ତ ଜଳ ।
(କ୍ର.ବି.ଓ.ଶ.ସ.- ପୃ. ୫୯୫, ଶ୍ରୀ.ଶ.- ପୃ. ୧୦୯, ଓ.ସାଂ.ଶ.- ପୃ. ୨୩୨, ପୂ.ଓ.ଭା.- ପୃ. ୪୭୬୪, ପ୍ର.ଅ. ୨ୟ- ପୃ. ୧୫୬୪) ।

**ପାଦୁକ ଖୁଆବାନା**-*ଦେ.ବି.*- ଶ୍ରୀମନ୍ଦିରର ନୀଳଚକ୍ର ଉପରେ ଏହି ବାନା ବନ୍ଧା ହୋଇ ଶ୍ରୀମନ୍ଦିର ଉତ୍ତରପାର୍ଶ୍ୱରେ ଥିବା ପାଦୁକ କୁଣ୍ଡ ପର୍ଯ୍ୟନ୍ତ ଲମ୍ବିଥାଏ । ଏହି ବାନାର ଲମ୍ବ ପ୍ରାୟ ୧୩୦ରୁ ୧୫୦ ହାତ ଥିଲା । ମାନସିକ କରିଥିବା ବ୍ୟକ୍ତି ଏହି ବାନାକୁ ସ୍ୱତନ୍ତ୍ର ଭାବେ ବାନ୍ଧନ୍ତି ଓ ବାନ୍ଧଣା ପାଉଣା ଦେବାକୁ ପଡିଥାଏ ।
(ଶ୍ରୀ.କି. - ୭୦) ।

**ପାପୁଡ଼ି**-*ଦେ.ବି.*- ଶ୍ରୀଠାକୁରଙ୍କ ଭୋଗ ଲାଗି ପାଇଁ ଉଦ୍ଦିଷ୍ଟ ଏକ ପିଷ୍ଟକ । ସର ଚଉଡ଼ା ହୋଇ ମିଠା ଦିଆଯାଇ ଭୋଗ ପାଇଁ ପ୍ରସ୍ତୁତ କରାଯାଉଥିବା ଦ୍ରବ୍ୟ । ଏହା ବଲ୍ଲଭ ବାଳଧୂପ ଭୋଗରେ ଶ୍ରୀଠାକୁରଙ୍କୁ ଲାଗିହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୮୮) ।

**ପାହାଡ଼ା**-*ଦେ.ବି.*- ଦେବତା ଓ ରାଜାଙ୍କ ବିଜେ ମାର୍ଗରେ ପ୍ରସାରିତ ବସ୍ତ୍ର । ଶୀତ ସମୟରେ ଠାକୁରଙ୍କ ପାଦତଳୁ ରତ୍ନପଲଙ୍କ ପର୍ଯ୍ୟନ୍ତ ପ୍ରସାରିତ ବସ୍ତ୍ର । ଶୀତ ସମୟରେ ରତ୍ନପଲଙ୍କଠାରୁ ଅଣସର ପିଣ୍ଡି ପର୍ଯ୍ୟନ୍ତ ପ୍ରସାରିତ ବସ୍ତ୍ର ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬୦, ଓ.ସାଂ.ଶ.- ପୃ. ୨୩୨, କ୍ର.ବି.ଓ.ଶ.ସ. - ପୃ. ୫୯୮) ।

**ପାବନ**-*ଦେ.ବି.*- ପବିତ୍ର, ଯାହା ପବିତ୍ର କରେ ତାହା ପାବନ । ପରମ ପାବନ ତୀର୍ଥକ୍ଷେତ୍ର ଶ୍ରୀକ୍ଷେତ୍ର - ଶ୍ରୀପୁରୁଷୋତ୍ତମକ୍ଷେତ୍ର ।
(ପୂ.ଓ.ଭା. - ପୃ. ୪୭୭୪, ପ୍ର.ଅ. ୨ୟ - ପୃ. ୧୫୭୫, କ୍ର.ବି.ଓ.ଶ.ସ.- ପୃ. ୫୯୭) ।

**ପାରୁଶ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କୁ ଲାଗି ହୋଇସାରିଥିବା ଭୋଗଦ୍ରବ୍ୟର ଏକ ଅଂଶ । ପାର୍ଶ୍ୱଭାଗ । ଭଙ୍ଗାକୁଆଡ଼ରେ ଏକ ଅଂଶରେ ପ୍ରଦତ୍ତ ଅନ୍ନ- ମହାପ୍ରସାଦ ।
(କ୍ର.ବି.ଓ.ଶ.ସ. - ପୃ. ୬୦୦, ପୂ.ଓ.ଭା. - ପୃ. ୪୭୯୨) ।

**ପାରିଜାତକ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କ ଲାଗି ଏକ ପିଷ୍ଟକ ବିଶେଷ । ଅଟା, ଚିନି ଓ ଛେନାରେ ତିଆରି ଘିଅରେ ଛଣାଯାଇଥିବା ପିଠା । ଏହା ମକର ଚଉରାଶି ଭୋଗ ଓ ଦୟଣାଚୋରୀ ଭୋଗରେ ଶ୍ରୀଠାକୁରଙ୍କୁ ସଞ୍ଜଧୂପ ଓ ବଡ଼ସିଂହାର ଧୂପରେ ଅର୍ପଣ କରାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୫/୧୮୦, ପୂ.ଓ.ଭା. - ପୃ. ୪୭୮୮) ।

**ପାଳିଆ**-*ଦେ.ବି.*- ଶ୍ରୀମନ୍ଦିରରେ ପାଳି ଖଟୁଥିବା ସେବକ ।
(ପୁ.ବୋ. - ପୃ. ୨୪୭) ।

**ପାଳିଆ ଖୁଣ୍ଟିଆ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ଦାୟିତ୍ୱ କାର୍ଯ୍ୟରେ ଥିବା ଶ୍ରୀମନ୍ଦିରର ଏକ

ସେବକ ବିଶେଷ । ଖୁଣ୍ଟିଆ ସେବକ । ଏହି ସେବକ ଶ୍ରୀଠାକୁରଙ୍କର ବିଭିନ୍ନ ବେଶ ପାଇଁ ଫୁଲମାଳା ଯୋଗାଇଥାନ୍ତି । ପୂଜା ସମୟରେ ଖଣ୍ଡୁଆ ଧରି ଠିଆ ହୁଅନ୍ତି, ବେତ ଧରି ମଣିମା, ମଣିମା ଡାକ ଦିଅନ୍ତି । ପହୁଡ଼ ନିମନ୍ତେ ଖଟଶେଯ ମେକାପକୁ ଡାକନ୍ତି । ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଆସିଥିବା ସମସ୍ତ ନିମନ୍ତ୍ରଣ ପତ୍ର ଗ୍ରହଣ କରନ୍ତି ।
(ଶ୍ରୀ.ସ୍ୱ. ୧ମ- ପୃ. ୮୮/୮୯) ।

**ପାଳିଆ ପଢ଼ିହାରୀ**-*ଦେ.ବି.*- ଶ୍ରୀମନ୍ଦିରରେ ମଧ୍ୟାହ୍ନ ପହୁଡ଼ ନୀତିରେ ତିନିବାଡ଼ରେ ବିଡ଼ିଆ ଭୋଗ ଲଗାଇବା ସେବକ । ମଇଲମ ଓ ଚନ୍ଦନ ଲାଗି ବେଳେ ବେତ ଧରି ଆଡ଼େଇ ହୁଅ ବୋଲି ଡାକଦିଅନ୍ତି । ବଡ଼ସିଂହାର ଭୋଗ ପରେ ରୂପା ବଟାରେ ପଇଡ଼ ୩ ବାଡ଼ରେ ରଖନ୍ତି । ସଞ୍ଜ କାହାଳୀ ପୁଷ୍ପାଳକ ହାତକୁ ବଢ଼ାଇ ଦିଅନ୍ତି । ଶୟନ ସମୟରେ ମଣିମା ମଣିମା ଡାକ ଦିଅନ୍ତି । ଭିତର ଦକ୍ଷିଣ ଦ୍ୱାର ବନ୍ଦ କରନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୪୮) ।

**ପାଳିଆ ପତ୍ରୀ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କ ଦୈନିକ ସୂର୍ଯ୍ୟପୂଜା ନୀତିରେ ଫୁଲ, ଚନ୍ଦନ, ଘଣ୍ଟ, ଶଙ୍ଖ, ପିଢ଼ା ଓ ଝରୀ ଇତ୍ୟାଦି ଆବଶ୍ୟକୀୟ ପୂଜା ସାମଗ୍ରୀ ଆଣି ଯୋଗାଇ ଥାଆନ୍ତି । ସକାଳ ଧୂପରେ ପୂଜା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬) ।

**ପାଳିଆ ପନ୍ତିବଡୁ**-*ଦେ.ବି.*- ଶ୍ରୀମନ୍ଦିରରେ ସକାଳ ଧୂପରେ ସୁଆର ରାନ୍ଧିଲା ପର ବିଡୁଆ ପନ୍ତିବଡୁକୁ ମଣାଇଲେ ସେମାନେ ମୂର୍ତ୍ତିମୂଳ କରନ୍ତି । ଭୋଗ ଡକାହେଲେ ପାଳିଆ ପନ୍ତିବଡୁ ମହାସୁଆର ସହ ଛେକନେଇ ଥାଳିରେ ବାଢ଼ନ୍ତି । ଅନ୍ୟ କୋଠଭୋଗ ଜିନିଷ ଥାଳି ସୁଆର ଓ ତୁଣ ସୁଆରଠାରୁ ନେଇ ଛାମୁରେ ଲଗାନ୍ତି ଓ ଭୋଗ ପରେ ବାହାରକୁ ଆଣନ୍ତି । ବିମଳାଙ୍କୁ ସମର୍ପଣ ପରେ ପାଳିଆ ବଡ଼ ବାଡ଼ ଥାଳି ନିଅନ୍ତି ଓ ସମର୍ପଣ ପରେ ଆଣି ଡାଟ ଜିନିଷ ଓ ପାଳିଆଗୁଳା ଦେଇ ମୁକ୍ତିମଣ୍ଡପରେ ଦେବା ପାଇଁ ପ୍ରଧାନୀଙ୍କୁ ଦିଅନ୍ତି । ପାଳିଆ ଓ ଅନ୍ୟମାନେ ଭୋଗ ଜିନିଷ ବାହାରକୁ ଆଣି ସରକାରୀ ପସରା ପାଖରେ ଖେଇକାରମାନଙ୍କୁ ବାଣ୍ଟନ୍ତି ଓ ପସରା ଜିନିଷ ପସରାରେ ଦିଅନ୍ତି । ମଧ୍ୟାହ୍ନ ଧୂପରେ ସେହିପରି ବେହେରା ଓ ବିଡୁଆଙ୍କ ସହ କାର୍ଯ୍ୟ କରନ୍ତି । ସନ୍ଧ୍ୟାଧୂପରେ ପଖାଳ ଓ ଶାକର ପନ୍ତିରେ ଲଗାନ୍ତି ଓ ପଖାଳ ତୋଳନ୍ତି । ବଲ୍ଲଭ ବଡ଼ସିଂହାରରେ ମହାସୁଆରଙ୍କ ସହ ପାଳିଆ ଛେକ ବୁହନ୍ତି । ଗୁଣ୍ଡିଚାଘରେ ଓ ବିଭିନ୍ନ ପର୍ବଯାତ୍ରା ସଙ୍ଖୁଡ଼ି ଭୋଗ, ଯାତ୍ରାଙ୍ଗୀ ଭୋଗ, ଚନ୍ଦନ ଓ ଚାଚେରୀରେ ପାଳିଆ ଖେଚେଡ଼ି ପଖାଳ ଆଦି ତୋଳନ୍ତି ।
(ପୁ.ବୋ. - ପୃ. ୨୩୩) ।

**ପାଳିଆ ପଶୁପାଳକ**-*ଦେ.ବି.*-ଶ୍ରୀମନ୍ଦିରର ଏକ ସେବକ ବିଶେଷ । ସିଂହାସନ ତଳେ ଠିଆହୋଇ ମଙ୍ଗଳ ଆଳତି କରନ୍ତି । ଠାକୁରଙ୍କର ବେଶ ବଦଳାନ୍ତି । ରାତ୍ର ପହୁଡ଼ ବେଳେ ଶୟନ ଠାକୁରଙ୍କୁ ଭିତରକୁ ନିଅନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୬୬) ।

**ପାଳିଆ ପୂଜାପଣ୍ଡା**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ସୂର୍ଯ୍ୟମନ୍ଦିରରେ ସୂର୍ଯ୍ୟପୂଜା କରିବା ସହିତ ଜୟବିଜୟ ଦ୍ୱାରଠାରେ ଦ୍ୱାରପାଳ ପୂଜା କରୁଥିବା ସେବକ ।
(ଶ୍ରୀ.ସ୍ୱ. ୧ମ - ପୃ. ୪୨, ୨ୟ - ପୃ. ୧୯) ।

**ପାଳିଆ ମହାସୁଆର**-*ଦେ.ବି.*- ଶ୍ରୀମନ୍ଦିରର ସକାଳ ଧୂପରେ ସର୍ବପ୍ରଥମେ ବିରିକାନ୍ତି ପିଠା ଓ ଅଦାପାଚେଡ଼ି ଭୋଗଧରି ଠାକୁରଙ୍କ ପାଖକୁ ଆସୁଥିବା ସେବକ । ଏହି ସେବକ ପନ୍ତିଭୋଗ ମଧ ଲଗାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୯) ।

**ପାଳିଆ ମାହାର**-*ଦେ.ବି.*- ବେଢ଼ା ମଧରେ କେହି ମଳ ତ୍ୟାଗ କଲେ ତାହା ସଫା କରନ୍ତି ।
(ଉ.ଇ.ଅ.ଅ. - ପୃ. ୩୫୦) ।

**ପାଳିଆ ମାହାରୀ**-*ଦେ.ବି.*- ଶ୍ରୀମନ୍ଦିରର ସକାଳ ଧୂପ ଓ ଅନ୍ୟାନ୍ୟ ନୀତିରେ ଶ୍ରୀଠାକୁରଙ୍କ ସମ୍ମୁଖରେ ଗୀତ ଗାଇ ନୃତ୍ୟ କରନ୍ତି । ଏମାନେ

ବାହାର ଗାଆଣୀ ନାମରେ ପରିଚିତ । ବର୍ତ୍ତମାନ ଏ ସେବା ଉପଲବ୍ଧ ନାହିଁ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ପାଳିଆ ମେକାପ ସେବା**-*ଦେ.ବି.*- ଶ୍ରୀମନ୍ଦିରର ଦ୍ୱାରଫିଟା ନୀତିରେ ସେବା କରୁଥିବା ସେବକ । ଠାକୁରଙ୍କ ମଇଲମ ପରେ ହାତଧୋଇ ଘଟୁଆରିଠାରୁ ପିଙ୍ଗଣ ନିଅନ୍ତି । ତିନିବାଡ଼ରେ ଚନ୍ଦନ ଲାଗି ବେଳେ ପୁଷ୍ପାଳକଙ୍କୁ ଚନ୍ଦନ ବଢ଼ାଇ ଦିଅନ୍ତି । ତିନିଗୋଟି କର୍ପୂର ଦାନୀ ଠାକୁରଙ୍କ ଆଗରେ ଲଗାଇ ରଖନ୍ତି । ରାତ୍ର ପହୁଡ଼ ବେଳେ ଛାମୁ ବଇଠା ଓହ୍ଲାଇ ରତ୍ନସିଂହାସନ ଚାରିପାଖେ ବୁଲି କଳାହାଟ ଦ୍ୱାର ଦେଇ ବାହାରକୁ ଆସନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୧୧୬) ।

**ପାଳିଆ ଲେଙ୍କା**-*ଦେ.ବି.*- ଶ୍ରୀଠାକୁରଙ୍କର ଦୈନିକ ପାଳି ଖଟନ୍ତି ଓ ଚର୍ଚ୍ଚା କାର୍ଯ୍ୟ କରିଥାନ୍ତି ।
(ଶ୍ରୀ.ସ୍ୱ. ୧ମ- ପୃ. ୭୬) ।

**ପାଳିଆ ସରଘର**-*ଦେ.ବି.*- ଶ୍ରୀମନ୍ଦିରର ପୂଜାପଣ୍ଡା ନିଯୋଗର ସେବକମାନେ ଯେଉଁସ୍ଥାନରେ ସେବା ପୂଜା ନିମନ୍ତେ ଅପେକ୍ଷା କରିଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୧୪) ।

**ପାଳିଆ ସୁଆର ବଡୁ**-*ଦେ.ବି.*- ଶ୍ରୀମନ୍ଦିର ମଙ୍ଗଳ ଆଳତି ଓ ଅନ୍ୟାନ୍ୟ ନୀତି ସକାଶେ ଯେଉଁ ସେବକଙ୍କ ମାର୍ଫତରେ ମୁରୁଜ ଓ ପିଠଉ ରଖାଯାଏ ।
(ଶ୍ରୀ.ସ୍ୱ. ୩ୟ - ପୃ. ୩୬) ।

**ପାଳିଦ୍ୱାର**-*ଦେ.ବି.*- ଶ୍ରୀମନ୍ଦିରର ବେଢ଼ାଦ୍ୱାର ପାଳିଦ୍ୱାର ରୂପେ ନାମିତ ।
(ଶ୍ରୀ.ଶ.- ପୃ. ୧୧୧) ।

**ପାଳିସରା**-*ଦେ.ବି.*- ଶ୍ରୀମନ୍ଦିରରେ ଭୋଗ ତାଟରେ ଭୋଗ ରଖିବା ଓ ବାଢ଼ିବା ନିମନ୍ତେ ବ୍ୟବହୃତ ହେଉଥିବା ମାଟି ସରା ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ପାର୍ଶ୍ୱଦେବତା**-*ଦେ.ବି.*- ଶ୍ରୀମନ୍ଦିରର ତିନି ପାର୍ଶ୍ୱରେ ସ୍ଥାନିତ ହୋଇଥିବା ବିଗ୍ରହ ଦକ୍ଷିଣ ଦିଗରେ ବରାହ, ପଶ୍ଚିମରେ ନରସିଂହ ଓ ଉତ୍ତରରେ ତ୍ରିବିକ୍ରମ ବିଦ୍ୟମାନ ।
(ଶ୍ରୀ.ଜି. - ପୃ. ୩୩୬) ।

**ପାର୍ଶ୍ୱ ପରିବର୍ତ୍ତନ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଏକ ନୀତି । ଭାଦ୍ରବ ଶୁକ୍ଳ ଏକାଦଶୀ ଦିନ ଶୟନ ଠାକୁରଙ୍କର ପାର୍ଶ୍ୱ ପରିବର୍ତ୍ତନ ବା କଡ଼ ଲେଉଟାଇବା ପାଇଁ ଏକ ବିଧିବିଧାନ ଓ ପୂଜାନୀତି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୫) ।

**ପାହାଡ଼ା ଉଠା ମହାସ୍ନାନ**-*ଦେ.ବି.*- ଶ୍ରୀମନ୍ଦିରର ଏକ ନୀତି ବିଶେଷ । ପୂଜା ହେବା ପରେ କିମ୍ବା ପୂଜା ଚାଲିଥିବା ବେଳେ ଚକାତଳୁ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଅଞ୍ଚଳରେ ପାନଛେପ, ରକ୍ତ, ମଇଳା, ପରିସ୍ରା ଆଦି କିଛି ପଡ଼ିଥିବାର ଜଣାଗଲେ ଠାକୁରଙ୍କର ମହାସ୍ନାନ ନୀତି ହୁଏ । ଏହାକୁ ପାହାଡ଼ାଉଠା ମହାସ୍ନାନ କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୫) ।

**ପାହାଡ଼ା ଘର**-*ଦେ.ବି.*- ଏକ କୋଠରୀ ବିଶେଷ । ଶ୍ରୀଠାକୁରଙ୍କର ବ୍ୟବହୃତ ସମସ୍ତ ବସ୍ତ୍ରାଦି ଯେଉଁଠାରେ ରୁହେ । ଏହାକୁ ଚାଙ୍ଗଡ଼ା ଘର ମଧ୍ୟ କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୨୧୧) ।

**ପାହାନ୍ତି ଭୋଗ**-*ଦେ.ବି.*- ପ୍ରତ୍ୟୁଷରେ ଯେଉଁ ଭୋଗ ଶ୍ରୀଜୀଉଙ୍କୁ ଅର୍ପଣ କରାଯାଏ । ପହିଲିଭୋଗ - ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଶ୍ରୀଜୀଉଙ୍କୁ ଯେଉଁ ଭୋଗ ପାହାନ୍ତା ସମୟରେ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୩) ।

**ପିଙ୍ଗଣ**-*ଦେ.ବି.*- ଚନ୍ଦନ ରଖାଯିବା ପାଇଁ ଏକ ଛୋଟ ରୂପା ପାତ୍ର ।
(ଶ୍ରୀ.ସ୍ୱ. ୨ୟ - ପୃ ୨୬, ୬୩, ୧୦୫, ପୁବୋ.- ପୃ ୨୪୭, କ୍ର.ବି.ଓ.ଶ.ସ.- ପୃ ୬୦୬) ।

**ପିଠଉ**-*ଦେ.ବି.*- ଶ୍ରୀଠାକୁରଙ୍କ ଆଳତି ସକାଶେ କରାଯାଉଥିବା ପିଠଉ । ଅରୁଆ ଚାଉଳ ବଟା ଯାହା ଅତି ମୋଟା ବା କାଠୁଆ ଅବସ୍ଥାରେ ଏହାକୁ

ସୁଆର ବଡୁଙ୍କ ଜିମାରେ ରଖାଯାଏ । ପ୍ରତ୍ୟହ ଆଳତି ସମୟରେ ଏହା ବ୍ୟବହୃତ ହୁଏ ।
(ପୂ.ଓ.ଭା. - ପୃ. ୪୮୩୩) ।

**ପିଠାଆଡ଼ରୋଷ**- ଶ୍ରୀମନ୍ଦିରର ରୋଷ ଘରର ଏକ ପାର୍ଶ୍ୱ ବା ଅଂଶବିଶେଷ । ଯେଉଁ ରୋଷ ଆଡ଼େ ପିଠା ଭୋଗ ପ୍ରସ୍ତୁତ ହୁଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୬୪) ।

**ପିଷ୍ଟକାବର୍ତ୍ତୀ**-*ଦେ.ବି.*-ଏକ ପ୍ରକାର ଆଳତି ବିଶେଷ । ପିଠଉ ମାଧ୍ୟମରେ ଶ୍ରୀଜୀଉଙ୍କୁ ଆଳତି ଅର୍ପଣ କରାହେବାକୁ ପିଷ୍ଟକାବର୍ତ୍ତୀ କୁହାଯାଏ ।
(ଶ୍ରୀ.ଶ.- ପୃ. ୧୧୨) ।

**ପିଢ଼ା**-*ଦେ.ବି.*-କାଷ୍ଠ ନିର୍ମିତ ଏକ ଆସନ । କାଠ ତିଆରି ଆୟତାକାର ବଡ଼ ବଡ଼ ଆସନ । ଯାହା ଉପରେ ବସି ପଣ୍ଡାମାନେ ପୂଜା କରିଥାନ୍ତି ।
(ପୂ.ଓ.ଭା. - ପୃ. ୪୮୩୭, କ୍ର.ବି.ଓ.ଶ.ସ. - ପୃ. ୬୦୮, ପ୍ର.ଅ. ୨ୟ- ପୃ. ୧୫୮୧) ।

**ପିଣ୍ଡ**-*ଦେ.ବି.*- ତନ୍ତ୍ର ଓ ଯୋଗ ସାଧନରେ ମାନବ ଶରୀରକୁ ପିଣ୍ଡ ରୂପେ ପରିକଳ୍ପନା କରାଯାଇଛି । ନିଷ୍ପାପର ଭାବେ ପ୍ରସ୍ତୁତ ସମସ୍ତ ରନ୍ଧା ଖାଦ୍ୟକୁ ଏକାଠି ମିଶାଇ ଗୋଲାକାର କରି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଭୋଜ୍ୟ ସାମଗ୍ରୀ । ଶ୍ରୀମନ୍ଦିରର ବାଇଶି ପାହାଚରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ନୈବେଦ୍ୟ ।
(ଓ.ସାଂ.ଶ. - ପୃ. ୨୩୪) ।

**ପିଣ୍ଡା**-*ଦେ.ବି.*- ମୁଦୁଲିମାନେ ବସୁଥିବା ସ୍ଥାନ । ଏହାକୁ ମୁଦୁଲି ପିଣ୍ଡା କୁହାଯାଏ ।
(ପୂ.ଓ.ଭା. - ପୃ. ୪୮୩୯) ।

**ପିଣ୍ଡି**-*ସଂ.ବି.*- ଦେବମୂର୍ତ୍ତିଙ୍କ ପାଦତଳେ ଥିବା ବଇଠି । ରତ୍ନସିଂହାସନରେ ଦେବତାଙ୍କ ଉପବେଶନ ନିମନ୍ତେ ଉଦ୍ଦିଷ୍ଟ ଗୋଲାକାର ପ୍ରସ୍ତର ନିର୍ମିତ ଆସନ । ଶ୍ରୀଜଗନ୍ନାଥଙ୍କ ପିଣ୍ଡିର ପରିଧି ୯ ଫୁଟ ବଳଭଦ୍ରଙ୍କର ୭ ଫୁଟ ୩ ଇଞ୍ଚ ଓ ସୁଭଦ୍ରାଙ୍କର ୫ ଫୁଟ ୬ ଇଞ୍ଚ । ଏ'ଗୁଡ଼ିକର ଉଚ୍ଚତା ୨ ଫୁଟ ଅଟେ ।
(ପ୍ର.ଅ. ୨ୟ - ପୃ. ୧୫୮୩, ପୂ.ଓ.ଭା. - ପୃ. ୪୮୪୦) ।

**ପିଣ୍ଡିକା**-*ଦେ.ବି.*- ସିଂହାସନ ଉପରେ ଥିବା ତିନିଠାକୁରଙ୍କ ପାଇଁ ତିନିଗୋଟି ପିତଳ ଝରି । ଏଥିରେ ଯାତ୍ରୀ ଭକ୍ତମାନେ ଦାନ ଆକାରରେ ଟଙ୍କା ସୁନା ଇତ୍ୟାଦି ପ୍ରଦାନ କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪) ।

**ପିଣ୍ଡିକା ଚଢ଼ା**-*ଦେ.ବି.*- ଦେବତାଙ୍କୁ ଦର୍ଶନ କଲାବେଳେ ତାଙ୍କ ପାଦପୀଠରେ ଭେଟି ରଖିବାକୁ ପିଣ୍ଡିକା ଚଢ଼ା କୁହାଯାଏ ।
(ପ୍ର.ଅ. ୨ୟ - ପୃ. ୧୫୮୩, ପୂ.ଓ.ଭା. - ପୃ. ୪୮୪୦) ।

**ପୀଠ**-*ଦେ.ବି.*- ଦକ୍ଷ ଯଜ୍ଞରେ ସତୀ ନିଜକୁ ଆହୂତି ଦେଲାପରେ କୋପାନ୍ୱିତ ମହାଦେବ ସତୀଙ୍କ ଶବଧରି ବିଶ୍ୱ ବ୍ରହ୍ମାଣ୍ଡ ବୁଲିଲେ । ଦେବତାଙ୍କ ଅନୁରୋଧରେ ବିଷ୍ଣୁ ଏହାକୁ ସୁଦର୍ଶନ ଚକ୍ରରେ ଖଣ୍ଡ ଖଣ୍ଡ କରିଦେଲେ ତାହା ଏକାବନଟି ସ୍ଥାନରେ ପଡ଼ିଲା । ଯେଉଁ ଯେଉଁ ସ୍ଥାନରେ ପଡ଼ିଲା ସତୀଙ୍କ ଅଙ୍ଗାଂଶମାନ ସେଠାରେ ଜଣେ ଜଣେ ଭୈରବ ଓ ଭୈରବୀ ରହି ପୂଜା ପାଇଲେ । ଏହି ପୂଜାସ୍ଥାନ ଶକ୍ତି ପୀଠ ନାମରେ ପରିଚିତ ।
(ଓ.ସାଂ.ଶ. - ପୃ. ୨୩୫) ।

**ପୀଢ଼ଦେଉଳ**-*ଦେ.ବି.*- ଯେଉଁ ଦେଉଳର ଛାତ ଏକାଧିକ ପୀଢ଼କୁ ନେଇ ଗଠିତ ।
(ଶ୍ରୀ.ଜି.- ପୃ. ୩୩୬) ।

**ପୁଅବ୍ରାହ୍ମଣ**-*ଦେ.ବି.*- ଗଜପତି ପରମ୍ପରାରେ ଗଜପତିଙ୍କ ପିତାମାତାଦିଙ୍କ ପରଲୋକ ହେଲେ ସେ ଅଶୌଚ ହୁଅନ୍ତି ନାହିଁ । କ୍ରିୟା କର୍ମ ପାଇଁ ପୁଅ ବ୍ରାହ୍ମଣ ନିଯୁକ୍ତ ହୁଏ । କ୍ରିୟା କର୍ମ ପରେ ରାଜା ସାରା ଜୀବନ ତାଙ୍କର ମୁଖାବଲୋକନ କରନ୍ତି ନାହିଁ । ରାଜା ତାଙ୍କ ଭରଣପୋଷଣର ସୁବନ୍ଦୋବସ୍ତ କରିଦିଅନ୍ତି ଓ ପୁଅ ବ୍ରାହ୍ମଣ ଦେଶାନ୍ତରୀ ହୁଅନ୍ତି । ନେପାଳରେ ମଧ୍ୟ ଅନୁରୂପ ପରମ୍ପରା ରହିଛି ।
(ପୁ.ବୋ. - ପୃ. ୮୭) ।

**ପୁରଖରଡ଼ା**-*ଦେ.ବି.*- ଭାଦ୍ରବ ଅମାବାସ୍ୟା ହେଉଛି ସପ୍ତପୁରୀ ଅମାବାସ୍ୟା । ଏହି ଦିନ ଶ୍ରୀଜୀଉଙ୍କ ଭୋଗ ଲାଗିବା ପାଇଁ କାକରା, ତାଡ଼, ଚଉଠା,

କାକରାଚାଟୀ ପ୍ରସ୍ତୁତିରେ ପୁରଦିଆ ହୋଇଥାଏ । ଏହି ପୁର ଖରଡ଼ା ଯେଉଁ ସେବକ କରନ୍ତି ତାକୁ ପୁରଖରଡ଼ା ବୋଲି କହନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୧/୧୯୩) ।

**ପୁରାଣପଣ୍ଡା ସେବା**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ଏହି ସେବକ ଶ୍ରୀଜଗନ୍ନାଥ ମନ୍ଦିରରେ ପୁରାଣ ପଢ଼ିବା ବା ଅଣସର ପିଣ୍ଡିଠାରେ ଭାଗବତ ପାଠ କରିଥାନ୍ତି । ପ୍ରତ୍ୟହ ଧୂପରେ ଟେରା ପଡ଼ିଲେ ଏମାନେ ଶ୍ରୀଜୀଉଙ୍କ କଳାହାଟ ଦ୍ୱାର ପାଖେ ପୁରାଣ ପାଠ କରିଥାନ୍ତି ।
(ଶ୍ରୀ.ସ୍ୱ.- ପୃ. , ପୂ.ଓ.ଭା. - ପୃ. ୪୯୧୧, ଶ୍ରୀ.ଶ.- ପୃ. ୧୧୨) ।

**ପୁରାଣପଣ୍ଡା ଘର**-*ଦେ.ବି.*- ଏକ ଗୃହ ବିଶେଷ । ଯେଉଁ ଘରେ ପୁରାଣପଣ୍ଡାମାନେ ଏକକ ଜଗନ୍ନାଥ ମୂର୍ତ୍ତି ପତିତପାବନଙ୍କୁ ସେବା ପୂଜା କରନ୍ତି । ପ୍ରତ୍ୟେକ ଧୂପରେ ଟେରା ପଡ଼ିଲେ ଶ୍ରୀଜୀଉଙ୍କ କଳାହାଟ ଦ୍ୱାର ପାଖରେ ପୁରାଣ ପାଠ କରନ୍ତି । ଏ ସେବା ଏମାନଙ୍କର ବଂଶାନୁକ୍ରମିକ । ପୁରାଣ ଗାଇବା ସକାଶେ ଖେଇ ନେଇଥାଆନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୧୪) ।

**ପୁରି**-*ଦେ.ବି.*- ଅଟା ବା ମଇଦା ଓ ଘିଅ ପ୍ରସ୍ତୁତ ଛଣା ପିଠା । କାକରାପିଠା । ମଇଦାକୁ ବେଲି ଘିଅରେ ଛଣା ହୁଏ । ଶ୍ରୀଠାକୁରଙ୍କର ପ୍ରତ୍ୟେକ ଧୂପରେ ଏହା ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. - ପୃ. ୧୭୧, ୧୭୩, କ୍ର.ବି.ଓ.ଶ.ସ. - ପୃ. ୬୧୯, ପୂ.ଓ.ଭା. - ପୃ. ୪୯୧୨, ପ୍ର.ଅ. ୨ୟ - ପୃ. ୧୬୦୩) ।

**ପୁରୁଷ ସୂକ୍ତ**-*ସଂ.ବି.*- 'ପୁରୁଷ ସୂକ୍ତ' ପୁରୁଷୋତ୍ତମ ଦର୍ଶନର ମୂଳବୀଜ । ବର୍ତ୍ତମାନ ଶ୍ରୀକ୍ଷେତ୍ରରେ ପ୍ରକଟିତ ଶ୍ରୀପୁରୁଷୋତ୍ତମ ପୁରୁଷ ସୂକ୍ତର ମୂଳାଧାର । ସେହି ବିରାଟ ପୁରୁଷ ଋଗ୍‌ବେଦରେ କେଉଁଠି ବିଶ୍ୱକର୍ମା ଓ ଆଉ କେଉଁଠି ପ୍ରଜାପତି । ସୃଷ୍ଟିର ଆଦିରେ ସେ ବର୍ତ୍ତମାନ, ସର୍ବମୟ ଏବଂ ପରିବ୍ୟାପ୍ତ । ସେ ସୃଷ୍ଟିରୂପୀ ସର୍ବ ବ୍ୟାପୀ ବ୍ରହ୍ମ ।
(ମ.ନ.-ପୃ. ୬୬) ।

**ପୁରୁଷୋତ୍ତମ**-*ସଂ.ବି.*- ପୁରୁଷ ବା ଆତ୍ମାଠାରୁ ଉତ୍ତମ ବା ପରମାତ୍ମା । ପୁରୁଷମାନଙ୍କ ମଧ୍ୟରେ ଯେ ଉତ୍ତମ ବା ଶ୍ରେଷ୍ଠ । ପୁରୁଷମାନଙ୍କ ମଧ୍ୟରେ ଉତ୍ତମ- ନିଷ୍ପାପ ପୁରୁଷ । ସତ୍ୟ ଯୁଗରେ ଶ୍ରୀ ନୃସିଂହ, ତ୍ରେତାରେ ଶ୍ରୀରାମଚନ୍ଦ୍ର, ଦ୍ୱାପରଯୁଗରେ ଶ୍ରୀକୃଷ୍ଣ, ଉତ୍ତମ ପୁରୁଷ ତ୍ରିଦେବ- ଶ୍ରୀନୃସିଂହ, ଶ୍ରୀରାମ ଓ ଶ୍ରୀକୃଷ୍ଣ ଏମାନଙ୍କୁ ପୁରୁଷୋତ୍ତମ କୁହାଯାଏ । ଗୁଣ, କର୍ମ ଓ ବୃତ୍ତିରେ ଯିଏ ଠିକ୍ ଭାବେ କାୟମନୋବାକ୍ୟରେ ବିଶ୍ୱାସାଭିମୁଖୀ ହୋଇ କାର୍ଯ୍ୟ କରେ । ପୁରୁଷଶ୍ରେଷ୍ଠ, ନରପୁଙ୍ଗବ, ଭଗବାନ ବିଷ୍ଣୁ, ଜଗନ୍ନାଥ କ୍ଷେତ୍ର, ଶ୍ରୀକ୍ଷେତ୍ର, ପୁରସ୍ତମ, ନୀଳାଚଳଧାମ, ପୁରୀ, ନିଷ୍ପାପ ପୁରୁଷ । ମଳମାସ (ଅଧିମାସ) ପୁରୁଷୋତ୍ତମ ମାସ ବୋଲି କୁହାଯାଏ ।
(ଓ.ସାଂ.ଶ.- ପୃ. ୨୩୭, ପୂ.ଓ.ଭା. - ପୃ. ୪୯୧୮, ପ୍ର.ଅ. ୨ୟ - ପୃ. ୧୬୦୫) ।

**ପୁରୁଷୋତ୍ତମଦେବ**-*ସଂ.ବି.*- ପୁରୀର ମହାରାଜ କପିଳେନ୍ଦ୍ରଦେବଙ୍କର ଅଠର ପୁଅ ଜାତ ହୋଇଥିଲେ । କିନ୍ତୁ ପୁରୁଷୋତ୍ତମଙ୍କ ଗୁଣରେ ମୁଗ୍ଧ ହୋଇ କପିଳେନ୍ଦ୍ରଦେବ ଏହାଙ୍କୁ ଉପଯୁକ୍ତ ଦାୟାଦ ବା ଉତ୍ତରାଧିକାରୀ ରୂପେ ମନୋନୀତ କରିଥିଲେ । ଅନ୍ୟ ଭାଇମାନେ ବିଦ୍ରୋହ କରିବାରୁ ପୁରୁଷୋତ୍ତମଦେବ ସେମାନଙ୍କୁ ଖଣ୍ଡେ ଖଣ୍ଡେ ରାଜ୍ୟ ଦେଇ ନିଜ ଅଧୀନରେ ସାମନ୍ତ ରାଜା ରୂପେ ରଖିଥିଲେ । କାଞ୍ଚିର ରାଜା ଶାଳ୍ୱ ନରସିଂହଦେବଙ୍କୁ ପରାସ୍ତ କରି ବହୁ ଧନ ରତ୍ନ ନିଜ ରାଜ୍ୟକୁ ଆଣିବା ସଙ୍ଗେ ସଙ୍ଗେ ରାଜକନ୍ୟା ପଦ୍ମାବତୀ (ରୂପାମ୍ବିକା)ଙ୍କୁ ବିବାହ କରି କାଞ୍ଚି ଜୟ କରିଥିଲେ । ସେ ବିଦ୍ୟାନୁରାଗୀ ଓ ପଣ୍ଡିତ ଥିଲେ ଓ ସଂସ୍କୃତରେ ତ୍ରିକାଣ୍ଡ ଶେଷ ନାମକ ସଂସ୍କୃତ ଅଭିଧାନ ରଚନା କରିଥିଲେ । ତାଙ୍କର ସଭା- ପଣ୍ଡିତ ବିଶ୍ୱନାଥ ମହାପାତ୍ର ସାହିତ୍ୟ ଦର୍ପଣ ନାମକ ସଂସ୍କୃତ ଅଳଙ୍କାର ସମ୍ବନ୍ଧରେ ପ୍ରାମାଣିକ ଗ୍ରନ୍ଥ ରଚନା କରିଥିଲେ । ଶ୍ରୀପୁରୁଷୋତ୍ତମପୁର ଓ ବୀରପୁରୁଷୋତ୍ତମପୁର ନାମକ ଶାସନ ବସାଇଥିଲେ ।
(ପୂ.ଓ.ଭା. - ପୃ. ୪୯୧୮) ।

**ପୁରୁଷୋତ୍ତମ ବଲ୍ଲଭ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କର ଏକ ବିଶେଷନୀତି । ଭାଦ୍ରବ ଶୁକ୍ଳ ତୃତୀୟାରେ ଏହି ନୀତି ହୋଇଥାଏ । ପୁରୁଷୋତ୍ତମ ବଲ୍ଲଭ ନାମରେ ଏକଦା ଏକ ନୀତି ଥିବା ଜଣାଯାଏ । ପୁରୀର ମାଳତୀ ପାଟପୁର ଷ୍ଟେସନ ନିକଟସ୍ଥ ଏକ ଗ୍ରାମର ନାମ ପୁରୁଷୋତ୍ତମ ବଲ୍ଲଭ । ଏଠାରୁ ଶ୍ରୀମନ୍ଦିରକୁ ଚୂଆ, ଅଳତା ଓ କାର୍ତ୍ତିକ ମାସରେ ପ୍ରତିଦିନ ଅଁଳା କୋଳି ଆସେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୩) ।

**ପୁଳି**-*ଦେ.ବି.*- ଏକ ପ୍ରକାର ପିଷ୍ଟକ ଖାଦ୍ୟ ବିଶେଷ । ଏହା ଶ୍ରୀଜୀଉଙ୍କୁ ନବାନ୍ନ, ଦେବସ୍ନାନ ପନ୍ତି ଭୋଗ ଶ୍ରୀଗୁଣ୍ଡିଚା ଖେଚେଡ଼ି ଭୋଗରେ ଶ୍ରୀମନ୍ଦିରରେ ଓ ଗୁଣ୍ଡିଚାଘରେ, ରୁକ୍ମିଣୀହରଣ ଏକାଦଶୀ, ମକର ପର୍ବରେ ଓ ପୁଷ୍ୟାଭିଷେକ ହରିବଲ୍ଲଭରେ ଲାଗି କରାଯାଇଥାଏ । ପୁଳି-ମାଠପୁଳି, ପିଂପୁଳି ଓ ସରପୁଳି ପ୍ରଭୃତି ଭିନ୍ନ ଭିନ୍ନ ପ୍ରକାରର ଠାକୁରଙ୍କୁ ଲାଗି ହୁଏ ।
(କ୍ଷୁ.ବି.ଓ.ଶ.ସ. - ପୃ. ୬୨୧, ଶ୍ରୀ.ସ୍ୱ. ୨ୟ - ପୃ. ୧୭୦, ୧୭୩, ୧୭୫,୧୮୫, ୧୮୬, ପୂ.ଓ.ଭା. - ପୃ. ୪୯୨୩, ପ୍ର.ଅ. ୨ୟ - ପୃ. ୧୬୦୭) ।

**ପୁଳିସରା**-*ଦେ.ବି.*- ପିଠା ଓ ଝଡ଼େଇନେଦା ରଖାଯିବା ନିମନ୍ତେ ଏକ ସରା ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪-୨୬, ପୁ.ବୋ. - ପୃ. ୨୪୯) ।

**ପୁଷ୍ୟାଭିଷେକ**-*ଦେ.ବି.*- ପୌଷ ପୂର୍ଣ୍ଣିମା ଦିନ ହେଉଥିବା ଶ୍ରୀଜଗନ୍ନାଥଙ୍କର ଅଭିଷେକ ନୀତି । ଯେଉଁବର୍ଷ ପୌଷ ପୂର୍ଣ୍ଣିମାରେ ପୁଷ୍ୟାନକ୍ଷତ୍ର ଯୋଗଥିବ ସେହିବର୍ଷ ହରିଙ୍କର ପୁଷ୍ୟାସ୍ନାନ ମହୋତ୍ସବ ବିଧେୟ, ମାତ୍ର ପୁଷ୍ୟାଭିଷେକ ପ୍ରତି ପୌଷପୂର୍ଣ୍ଣିମାରେ ଅନୁଷ୍ଠିତ ହୁଏ । ଠାକୁରଙ୍କର ସୁନା ବେଶ ହୁଏ । ଏହି ଦିନ ଶ୍ରୀରଘୁନାଥ ଆସ୍ଥାନ ପଡ଼ିଆରୀ ଓ ପାଳିଆ ଖୁଣ୍ଟିଆ ସହ ସିଂହଦ୍ୱାର ଦେଇ ଯମେଶ୍ୱର ଠାକୁର ବିଜେ କରିବେ । ସେଠାରୁ ଫେରି ମଙ୍ଗଳାର୍ପଣ ବଢ଼ିବା ଉତ୍ତାରେ ସେ ଘରେ ରହିବେ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୦୫) ।

**ପୁଷ୍ପ ଅଳଙ୍କାର**-*ଦେ.ବି.*- ଶ୍ରୀଜୀଉଙ୍କର ପୁଷ୍ପ ଅଳଙ୍କାର ହେଲା- ୧. କରପଲ୍ଲବ, ୨. କୁଣ୍ଡଳ, ୩. ତଡ଼ଗି, ୪. ଚନ୍ଦ୍ରିକା, ୫. ଗଭା, ୬. ଅଳକା, ୭. ତିଳକ, ୮. ଝୁମ୍ପା, ୯. ନାକୁଆସି, ୧୦. ଦୟଣା, ୧୧. ଅଧରମାଳ, ୧୨. ମକର କୁଣ୍ଡଳ, ୧୩. ଶ୍ରୀପୟର ମାଳ, ୧୪. ହୃଦୟପଦକ, ୧୫. କଳିପଦକ, ୧୬. କୌସ୍ତୁଭ ପଦକ, ୧୭. ଚଉସରା ମାଳ, ୧୮. ଗୁଣା ଫୁଲମାଳ ମଧ୍ୟରେ ଆଦୌ ଗଣ୍ଠି ପଡ଼େ ନାହିଁ ।
(ଶ୍ରୀ.ଜି. - ପୃ. ୨୦୭) ।

**ପୁଷ୍ପାଳକ**-*ଦେ.ବି.*- ନିତ୍ୟ ସକାଳେ ଶ୍ରୀମନ୍ଦିର ଦ୍ୱାର ଫିଟିବା ପରେ ମହାପ୍ରଭୁଙ୍କ ବାଡ଼ରେ ଭିତରଛ ଓ ଅନ୍ୟ ଦୁଇ ବାଡ଼ରେ ଦୁଇ ପାଳିଆ ପୁଷ୍ପାଳକ ଠାକୁରଙ୍କ ମଙ୍ଗଳ ଆଳତି କରନ୍ତି । ଠାକୁରଙ୍କ ଶ୍ରୀଅଙ୍ଗରେ ଥିବା ଅଳଙ୍କାର ମଣାଇ କରି ମାଳଫୁଲ ମଇଲମ କରି ବେଶ କରାନ୍ତି । ଚନ୍ଦନଯାତ୍ରା ବୟାଳିଶି ଦିନ, କାର୍ତ୍ତିକ ମାସ, ପର୍ବାଣି ଦିନମାନଙ୍କରେ, ମଧ୍ୟାହ୍ନ ଧୂପ ପରେ, ପହୁଡ଼ ପରେ ଦ୍ୱାର ଫିଟିଲେ ଆଳତି ପରେ ମଇଲମ କରି ବେଶ କରନ୍ତି । ପ୍ରତ୍ୟେକ ଏକାଦଶୀରେ ଶାଢ଼ୀ ଲାଗି କରାଇ ଆଳତି ଓ ସର୍ବାଙ୍ଗ ବେଶ ପରେ, ସନ୍ଧ୍ୟା ଧୂପ ପରେ, ତିନି ବାଡ଼ରେ ଚନ୍ଦନ ଲାଗି, ବଡ଼ସିଂହାର ପରେ ଭଣ୍ଡାର ଘରୁ ଶୟନ ଠାକୁରଙ୍କୁ ବଡ଼ଠାକୁରଙ୍କ ବାଡ଼ରେ ଚନ୍ଦନ ଲାଗି ଶୟନ ଠାକୁରଙ୍କୁ ଗଭାମାଳ ଲାଗି କରାନ୍ତି । ଡମ୍ଫରୁ ଉପରେ ବିଜେ କରାଇ ବିଡ଼ିଆ ମଣୋହି ଓ ଆଳତି କରନ୍ତି । ଗୁଣ୍ଡିଚା ଘରେ ଓ ରଥ ଉପରେ ଏହି କାର୍ଯ୍ୟ କରିଥାନ୍ତି । ଅଣସର ପଟି ଠାକୁରଙ୍କୁ ଅବକାଶ ସେବା ସହିତ ବିଗ୍ରହମାନଙ୍କୁ ସୁନାବେଶ ମଧ୍ୟ କରିଥାନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୬୬) ।

**ପୁଷ୍ପାଞ୍ଜଳି ଠାକୁର**-*ଦେ.ବି.*- ଶ୍ରୀମନ୍ଦିରର ଶୟନ ଠାକୁର । ଅର୍ଦ୍ଧନାରୀଶ୍ୱର ଲକ୍ଷ୍ମୀନାରାୟଣ ପ୍ରତିମା ।
(ଶ୍ରୀ.ସ୍ୱ. - ପୃ. ୨୮) ।

**ପୂଜାଝରୀ**-*ଦେ.ବି.*- ଏକ ପୂଜା ସାମଗ୍ରୀ ରୂପାର ଗଡୁ । ଯେଉଁ ଗଡୁରେ ଶ୍ରୀଠାକୁରଙ୍କର ପୂଜା କାର୍ଯ୍ୟ ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୩/୧୮) ।

**ପୂଜାପଣ୍ଡା**-*ଦେ.ବି.*- ଯେଉଁ ପଣ୍ଡା ମନ୍ତ୍ରପାଠ ପୂର୍ବକ ଶ୍ରୀମନ୍ଦିରରେ ପୂଜା କରନ୍ତି ବା ନୈବେଦ୍ୟ ଲଗାନ୍ତି । ପ୍ରତ୍ୟହ ଅବକାଶ ପରେ ରୋଷରେ ହୋମ, ଦ୍ୱାରପାଳ, ସୂର୍ଯ୍ୟପୂଜା ପଞ୍ଚୋପଚାର ପୂଜା କରନ୍ତି । ଚାରି ବାଡ଼ ଭୋଗନୀତିରେ ପାଳିଆ ଅନ୍ୟ ପାଳିଆ ସହ ପୂଜା କରନ୍ତି । ଅଣସର ପିଣ୍ଡିରେ ଗୋପାଳବଲ୍ଲଭ ଭୋଗ କରନ୍ତି । ସକାଳ ଧୂପ ପୂର୍ବରୁ ଓ ଲକ୍ଷ୍ମୀଙ୍କ ପନ୍ତିରେ ମୁରୁଜ ପକାନ୍ତି । ଭୋଗମଣ୍ଡପରେ ଭୋଗ କରନ୍ତି । ମଧ୍ୟାହ୍ନ ଧୂପରେ ଥାଳିପଡ଼ିବା ପରେ ମୁରୁଜ କାଟନ୍ତି, ପୂଜା ଓ ଆଳତି କରନ୍ତି । ସନ୍ଧ୍ୟାରେ ସେହିପରି କରନ୍ତି ଓ ଜୟମଙ୍ଗଳ ଆଳତି କରନ୍ତି । ବଡ଼ ସିଂହାର ଧୂପ ତଳେ ବସି ଭୋଗ ସାରନ୍ତି । ଜଗମୋହନଠାରେ ଯଜମାନି ଭୋଗସର୍ପାମଣୋହି କରନ୍ତି । ଭିତରପନ୍ତି, ବାହାରପନ୍ତି ଓ ପର୍ବଯାତ୍ରା ପ୍ରଭୃତିରେ ନୈବେଦ୍ୟ କରନ୍ତି । ପର୍ବପର୍ବାଣିରେ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ମଙ୍ଗଳାର୍ପଣ କରନ୍ତି । ବଡ଼ବାଡ଼ରେ ବନ୍ଦାପନା, ଚନ୍ଦନଯାତ୍ରାରେ ଆଲଟ ଲାଗି, ଜନ୍ମବିଧିମାନଙ୍କରେ ଆଚାର୍ଯ୍ୟବରଣ, ସହସ୍ର କୁମ୍ଭ ଅଭିଷେକ ଓ ରୁକ୍ମିଣୀ ବିବାହ ବରଣ ହୁଅନ୍ତି, ପୁଷ୍ୟାଭିଷେକରେ ପୁରୋହିତ ସହ ଅଭିଷେକ କରନ୍ତି । ଅଧିବାସମାନଙ୍କରେ ସଂସ୍କାର, ଚନ୍ଦନଘର ପ୍ରତିଷ୍ଠା ଓ ନେତ୍ରୋତ୍ସବରେ ନୀତି କରନ୍ତି । ମୁଦିରସ୍ତଙ୍କ ଅନୁପସ୍ଥିତିରେ ପ୍ରସାଦଲାଗି କରନ୍ତି । ଋଷି ପଞ୍ଚମୀ ବ୍ରତରେ, ଅନନ୍ତବ୍ରତ ଓ ବିନାୟକ ବ୍ରତ କଥା ଶୁଣାନ୍ତି । ଦୀପାବଳୀରେ ଦୀପଦାନ କର୍ମ, ମହାଦୀପ ସଂସ୍କାର, ଦୈନିକ ବାହାର ଦେଉଳିଭୋଗ, ଦକ୍ଷିଣିଘର ଭୋଗ ଓ ଲକ୍ଷ୍ମୀଙ୍କ ପାଖରେ ଭୋଗ କରନ୍ତି । ଦୋଳ ଚତୁର୍ଦ୍ଦଶୀରେ ବହ୍ନିଉତ୍ସବ ହୋମ, ବାମନଜନ୍ମ ଶକ୍ରଧ୍ୱଜ ପୂଜା ହୋମ ଓ ଅନଙ୍ଗ ତ୍ରୟୋଦଶୀ ହୋମ କରିଥାନ୍ତି । ରଥ ଉପରେ, ଚନ୍ଦନଘରେ, ଦୋଳବେଦୀରେ, ଗୁଣ୍ଡିଚା ଘରେ ଭୋଗ କରନ୍ତି । ରଥକୁ ପହଣ୍ଡି ବିଜେରେ ଡୋରି ଧରନ୍ତି । ସଂକ୍ରାନ୍ତି ଓ ପ୍ରତିଦିନ ରଥରେ ବଳି ପୂଜା କରନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୪୨/୪୫, ପୂ.ଓ.ଭା. - ପୃ. ୪୯୪୦, ପ୍ର.ଅ. ୨ୟ - ପୃ. ୧୬୧୨) ।

**ପୂରା ଦୁଆର ଫିଟା ନୀତି**-*ଦେ.ବି.*- ଶ୍ରୀମନ୍ଦିରର ଖଟ ଶେଯ ଉଠିବା ପରେ ଭିତର କାଠ ଅର୍ଗଳି ଦେଇ ଜୟବିଜୟ ଦ୍ୱାର ତଥା ଭିତର ଦକ୍ଷିଣ ଦ୍ୱାର ଫିଟା ଯିବା ନୀତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨) ।

**ପୂରାଶୋଧ**-*ଦେ.ବି.*- ପୋଖରୀଆ ରତ୍ନସିଂହାସନର ସମ୍ମୁଖ ଭାଗ ସ୍ଥାନ ମଧ୍ୟରୁ ଦର୍ଶନାର୍ଥୀ ଯାତ୍ରୀମାନଙ୍କୁ ସମ୍ପୂର୍ଣ୍ଣ ଖାଲି କରିବା । ଏ କାର୍ଯ୍ୟ ପ୍ରତ୍ୟେକ ନୀତି ଓ ପୂଜା ପୂର୍ବରୁ ହୋଇଥାଏ ।
(ଶ୍ରୀ.ଶ.- ପୃ. ୧୧୩) ।

**ପେଣ୍ଡଘାଟ ବିଶୋଇ**-*ଦେ.ବି.*- ରାଜକର୍ମଚାରୀ ସେବକ ବିଶେଷ । ବହୁଦିନ ତଳେ ଶ୍ରୀକ୍ଷେତ୍ରକୁ ପଡ଼ିଥିବା ଘାଟରେ ନିଯୁକ୍ତି ଥିବା ଯାତ୍ରୀ ଗୁମାସ୍ତା । ବର୍ତ୍ତମାନ ଏ ସେବା ଉପଲବ୍ଧ ନୁହେଁ ।
(ପୁ.ବୋ. - ପୃ. ୨୫୧) ।

**ପୋଖରୀଆ**-*ଦେ.ବି.*- ଶ୍ରୀମନ୍ଦିରର ଗର୍ଭଗୃହର ରତ୍ନସିଂହାସନ ସମ୍ମୁଖସ୍ଥ ଅଞ୍ଚଳ । ଏଠାରେ ଶ୍ରୀଠାକୁରଙ୍କର ସଙ୍କୁଡ଼ି ଭୋଗ ଲଗାଯାଏ । ସାହାଣମେଲା ବେଳେ ଭିତରକାଠ ଠାରୁ ବାହାର କାଠ ପର୍ଯ୍ୟନ୍ତ ଭରା ଅଞ୍ଚଳକୁ ମଧ୍ୟ ପୋଖରୀଆ କୁହାଯାଏ । ଏକଦା ଏଠାରେ କ୍ଷୀରି ସମୁଦ୍ର କାକରାବାଡ଼ ନାମରେ ଏକ ବଡ଼ ଧରଣର ଭୋଗ ହେଉଥିଲା ବୋଲି ଜନଶ୍ରୁତି ରହିଅଛି ।
(ଶ୍ରୀ.ସ୍ୱ. - ପୃ. ୧୩, ପୁ.ବୋ. - ପୃ. ୨୫୧) ।

**ପୋଛମରା** - ଶ୍ରୀଠାକୁରଙ୍କ ଶ୍ରୀମୁଖ କିମ୍ୱା ଶ୍ରୀଅଙ୍ଗକୁ କୌଣସି ବସ୍ତ୍ର ଦ୍ୱାରା ପୋଛି ସଫା କରିବା । ଦତ୍ତ ମହାପାତ୍ର ପ୍ରତି ରବିବାର ଦିନ ଅବକାଶ ପୂର୍ବରୁ କର୍ପୂର ଜଳ ଓ କନା ଦେଇ ତିନି ଠାକୁରଙ୍କ ଓ ନୀଳମାଧବଙ୍କ ଶ୍ରୀମୁଖ ପୋଛନ୍ତି । ଏହାକୁ ମଧ ଅଧର ପୋଛା କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୦) ।

**ପୋଛା**-*ଦେ.ବି.*- ଶ୍ରୀମନ୍ଦିରର ସିଂହାସନରେ ପଡ଼ିଥିବା ଟଙ୍କା ପଇସା ପ୍ରଭୃତିକୁ ତଳେ ଠିଆହୋଇ ହାତ ପାଇବା ପର୍ଯ୍ୟନ୍ତ ପୋଛି ଆଣିବା ସେବକ । ଏତଦ୍ ବ୍ୟତୀତ ଶ୍ରୀବିଗ୍ରହମାନଙ୍କ ଅଙ୍ଗକୁ ସ୍ପର୍ଶ ନ କରି କପଡ଼ା ଦ୍ୱାରା ରତ୍ନସିଂହାସନ ପୋଛିବାକୁ ପୋଛ କୁହାଯାଏ ।
(ପୁ.ବୋ. - ପୃ. ୨୫୧) ।

**ପୋଡ଼ କରିବା**-*ଦେ.ବି.*- ଶ୍ରୀଜୀଉଙ୍କ ରଥରେ ବ୍ୟବହାର ପାଇଁ ଲୁହାକୁ ନିଆଁରେ ତତାଇ ବିଭିନ୍ନ ପ୍ରକାର ଆକୃତି କରିବା ।
(ଶ୍ରୀ.ଶ. - ପୃ. ୧୧୪) ।

**ପୋଡ଼ପିଠା**-*ଦେ.ବି.*- ଚାଉଳ ଚୂନା,ଛେନା, ସୁଜି, ଚିନି, ଗୁଡ଼ ଓ ବିଭିନ୍ନ ମସଲା ଦ୍ୱାରା ପ୍ରସ୍ତୁତ ପିଠା ।ଏହା କଦଳୀ ପତ୍ର ଗୁଡା ହୋଇ ନିଆଁ ଉପରେ ଓ ତଳେ ରଖି ପ୍ରସ୍ତୁତ କରାଯାଏ । ଏହା ବାହୁଡ଼ା ବେଳେ ମାଉସୀ ମା' ମନ୍ଦିରଠାରେ ଶ୍ରୀଜୀଉଙ୍କ ଭୋଗଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୭୯, ପୂ.ଓ.ଭା. - ୫୦୦୭, ପ୍ର.ଅ. ୨ୟ - ପୃ. ୧୬୨୮, କ୍ର.ବି.ଓ.ଶ.ସ. - ପୃ. ୬୨୯) ।

**ପ୍ରତାପରୁଦ୍ର ଦେବ**-*ଦେ.ବି.*- ଏହାଙ୍କ ରାଜତ୍ୱ ସମୟରେ ଶ୍ରୀଚୈତନ୍ୟ ପୁରୀ ଆସିଥିଲେ । ଏହାଙ୍କ ସମୟରେ ଶ୍ରୀମନ୍ଦିର ଜଗମୋହନ ନିର୍ମାଣ କରାଯାଇଥିଲା । ଏହାଙ୍କ ରାଜତ୍ୱ କାଳରେ ବଙ୍ଗର ପଠାଣମାନେ ଏକାଧିକବାର ଆକ୍ରମଣ କରି ପରାସ୍ତ ହୋଇଥିଲେ, ଦାକ୍ଷିଣାତ୍ୟରେ ବହୁକାଳ ଯୁଦ୍ଧରେ ଲିପ୍ତ ଥିଲେ, ବିଜୟ ନଗରର ରାଜା କୃଷ୍ଣ ରାୟଙ୍କ ସଙ୍ଗେ ସନ୍ଧି କରି ତାଙ୍କୁ ନିଜର କନ୍ୟା ପ୍ରଦାନ କରିଥିଲେ । ଏହାଙ୍କ ସମୟରେ ଚୈତନ୍ୟ ବୈଷ୍ଣବ ଧର୍ମ ପ୍ରଚାର କଲେ । ସେ ନିଜେ ମଧ ଚୈତନ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଯାଜପୁରରେ ବରାହନାଥ ମନ୍ଦିର ଓ ବୃହତ ଦଶାଶ୍ୱମେଧଘାଟ ନିର୍ମାଣ କରିଥିଲେ । ପୁରୀରେ ବୀର ପ୍ରତାପପୁର ଶାସନ ବସାଇଥିଲେ । ଏହାଙ୍କ ସମୟରେ ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ରାମାୟଣ ଓ ଅଚ୍ୟୁତାନନ୍ଦଙ୍କର ହରିବଂଶ ରଚିତ ହୋଇଥିଲା । ଏହାଙ୍କ ସମୟରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟର ବିଶେଷ ଆଦର ବଢ଼ିଥିଲା ।
(ପୂ.ଓ.ଭା. - ପୃ. ୫୦୫୯) ।

**ପ୍ରଥମାଷ୍ଟମୀ**-*ଦେ.ବି.*- ପ୍ରଥମ ସନ୍ତାନ ନିମିତ୍ତ ପାଳିତ ହେଉଥିବା ପୂଜା ଏହିଦିନ ହୁଏ । ଶ୍ରୀମନ୍ଦିରରେ ମାର୍ଗଶିର ମାସ କୃଷ୍ଣପକ୍ଷ ଅଷ୍ଟମୀ । ଏହି ଦିନ ମଧ୍ୟାହ୍ନ ଧୂପ ପରେ ତିନିବାଡ଼ରେ ମଙ୍ଗଳାର୍ପଣ ହୋଇ ଫୁଲୁଫୁଆରି ଖଦୀ ଓ ଛେଦା ପ୍ରସାଦ ଲାଗି ହୁଏ ।
(ପୂ.ଓ.ଭା. - ୫୦୮୯, ଶ୍ରୀ.ସ୍ୱ. ୨ୟ - ପୃ. ୧୦୨, ପ୍ର.ଅ. ୨ୟ - ପୃ. ୧୬୬୪) ।

**ପ୍ରଧାପନା**-*ଦେ.ବି.*- ବାଇଶି ହାତିଆ ସରୁ ପାଟଡୋର । ନବକଳେବର ସମୟରେ ବ୍ରହ୍ମସ୍ଥାନ ଉପରେ ପ୍ରଥମେ ଗୀତଗୋବିନ୍ଦ ଖଣ୍ଡୁଆ ତା'ପରେ ପ୍ରଧାପନା ଓ ଘଣା ଲାଗିହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୩, ପୁ.ବୋ.- ୧୨୧) ।

**ପ୍ରଧାପନା ବୁଣା**-*ସଂ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଅଣସର ସମୟର ଏକ ଗୋପନୀୟ କାର୍ଯ୍ୟବିଧି ।
(ପୁ.ବୋ. - ପୃ. ୨୫୬) ।

**ପ୍ରଧାନୀ**-*ଦେ.ବି.*-ଶାଢ଼ୀବନ୍ଧା ବ୍ରାହ୍ମଣ ସେବକ । ଅବକାଶ ଶେଷରେ ରୋଷ ସଫା ଦେଖି ରୋଷ ହୋମରୁ ପ୍ରସ୍ତୁତି ପରେ ପୂଜାପଣ୍ଡାଙ୍କୁ ହୋମପାଇଁ ଡାକିଥାନ୍ତି ।

ବଲ୍ଲଭ ପୂଜା ପରେ ପୂଜା ପଣ୍ଡାକୁ ଡାକିବା, ସକାଳ ଧୂପରେ ପଣ୍ଡାଙ୍କୁ ମୁରୁଜ ପକାଇବାକୁ ଡାକିବା, ମୁରୁଜ ପଡ଼ିଲେ ପଢ଼ିଆରିଙ୍କୁ ଡାକିବା, ମୁକ୍ତିମଣ୍ଡପ ଦ୍ୱାରା ରାଜାଙ୍କୁ ଆଶୀର୍ବାଦ ସମୟରେ, ଭୋଗମଣ୍ଡପ ପୂଜା ବେଳେ, ମଧ୍ୟାହ୍ନ ଧୂପ, ସନ୍ଧ୍ୟାଧୂପ, ବଡ଼ସିଂହାରରେ, ସ୍ନାନପୂର୍ଣ୍ଣିମା, ନୀଳାଦ୍ରି ମହୋଦୟ ଓ ପୁଷ୍ୟାଭିଷେକରେ ଏହାଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ।

ଆଶ୍ୱିନ ମାସ ଶ୍ରୀ ବିମଳା ମନ୍ଦିର ଷୋଳ ପୂଜାରେ ରାଜଗୁରୁ, ପୁରୋହିତ, ପରିଛା, ପୂଜକ ଏମାନଙ୍କ ସହ ସଂକଳ୍ପ ପୂଜା କରି ପ୍ରତ୍ୟେକ ଭୋଗରେ ଭୋଗଚର୍ଚ୍ଚା କରିବା, ବଳିଦାନ, ତର୍ପଣ ଓ ଶଙ୍ଖୁଡ଼ି ଭୋଗ କରାଇଥାନ୍ତି । ବଳି ସମୟରେ ସେବକଠାରୁ ସିନ୍ଦୂର, ମନ୍ଦାର ମାଳ ନେଇ କଟାଏତ ଗଳାରେ ଦେବେ ଓ ପୂଜା ବସିଥିବା ଖଡ୍‌ଗ ଆଣି ତା ହାତକୁ ଦେଇଥାନ୍ତି । ତର୍ପଣ ସମୟରେ ଚାଉଳ ପକାଇବା, ଛେଦ ପୂଜା କରିବା, ସରସ୍ୱତୀ ଓ ଗଣେଶ ପୂଜା ଇତ୍ୟାଦି ପାର୍ଶ୍ୱଦେବତାଙ୍କ ପୂଜାରେ ପଣ୍ଡାଙ୍କୁ ସାହାଯ୍ୟ କରିଥାନ୍ତି ।

(ପୁ.ବୋ. - ପୃ. ୨୫୫) ।

**ପ୍ରଧାନୀ ସେବକ**-*ଦେ.ବି.*-ଗୋପାଳ ବଲ୍ଲଭ ଭୋଗ ବେଳେ ଯେଉଁ ସେବକ ତିନିଜଣ ପୂଜାପଣ୍ଡାଙ୍କୁ ଡାକିଯାଏ ।

(ଶ୍ରୀ.ସ୍ୱ. - ପୃ. ୧୭) ।

**ପ୍ରଳମ୍ବାସୁରବଧ**-*ଦେ.ବି.*- ଭାଦ୍ରବ କୃଷ୍ଣ ଦ୍ୱାଦଶୀରେ ଏହି ପ୍ରସ୍ତାବ ହୁଏ । ଏହି ବେଶ ମଧ୍ୟାହ୍ନ ଧୂପ ସମାପ୍ତି ପରେ କରାଯାଏ ଓ ସନ୍ଧ୍ୟାଧୂପ ସରିବା ଯାଏ ରହେ । ଏ' ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀସୁଭଦ୍ରା ସାଧାରଣ ବେଶରେ ବିରାଜମାନ କରନ୍ତି । ଶ୍ରୀବଳରାମଙ୍କୁ ପ୍ରଳମ୍ବାସୁର ବଧ ବେଶରେ ସୁସଜ୍ଜିତ କରାଯାଏ । ବଳଭଦ୍ରଙ୍କ ସମ୍ମୁଖରେ ପ୍ରାୟ ୪ ଫୁଟ ଉଚ୍ଚର ଏକ ପ୍ରଳମ୍ବାସୁର ମୂର୍ତ୍ତି ସିଂହାସନରେ ରଖାଯାଏ । ସେହି ଅସୁରର କାନ୍ଧ ଏବଂ ଦୁଇଭୁଜରେ ବଳଭଦ୍ର ବସିଥିବା ଭଳି ଜଣାପଡ଼େ । ବେତ କାଠ, ଧଳା, ନେଳି, କଳା, କଇଥ ଅଠା ଇତ୍ୟାଦିରେ ଏହି ମୂର୍ତ୍ତି ଗଠିତ ହୋଇଥାଏ । ବଳଭଦ୍ରଙ୍କ ଦୁଇ ହସ୍ତରେ ହଳମୂଷଳ ଶୋଭାପାଏ । ଶ୍ରୀଜଗନ୍ନାଥଙ୍କ ସୁବର୍ଣ୍ଣ ଶ୍ରୀପୟର ଓ ଶ୍ରୀହସ୍ତ ଲାଗି ହୁଏ । ମସ୍ତକରେ ସୁନା କିଆ ଉଭୟ ବିଗ୍ରହଙ୍କ ଚୂଳ ମଣ୍ଡନ କରେ । ଶ୍ରୀଜଗନ୍ନାଥ ହସ୍ତରେ ଶଙ୍ଖ ଚକ୍ର ଧରିଥାନ୍ତି । ସୁଭଦ୍ରାଙ୍କ ବେଶରେ ବିଶେଷ ପରିବର୍ତ୍ତନ ହୁଏ ନାହିଁ । ମସ୍ତକରେ ସେ ସୁନା ମୁକୁଟ ଧାରଣ କରନ୍ତି । ସନ୍ଧ୍ୟା ଧୂପ ପରେ ରାମକୃଷ୍ଣ ଦକ୍ଷିଣି ଘରୁ ସିଂହାସନକୁ ବିଜେ ହୋଇ ପଣ୍ଡା ଆଜ୍ଞାମାଳ ଦେବା ଉତ୍ତାରେ ମହାଜନଙ୍କ ହାତରେ ବିଜେ କରାଇ ଆଣି ଜଗମୋହନରେ ଥିବା ଖଟ ଉପରେ ବିଜେ କରାନ୍ତି । ଏଠାରେ ଦୋଳମଣ୍ଡପ ସାହି ଲୋକେ ପ୍ରଳମ୍ବାସୁର ବଧ ପ୍ରସ୍ତାବ କରନ୍ତି ।

(କ୍ଷେ.ସ.) ।

**ପ୍ରସାଦଲାଗି**-*ସଂ.ବି.*- ବନ୍ଦାପନାର ଏକ ଅଙ୍ଗ ବା ନୀତି । ଦଅଣା, ଚଉସମ, ତୁଳସୀ କାଠି, ସୂତାରେ ଗଣ୍ଠିପଡ଼ି ଚାରିପାଞ୍ଚ ଇଞ୍ଚର ମାଳ ପ୍ରସ୍ତୁତ କରାଯାଇ ବନ୍ଦାପନାରେ ଲାଗି ହେବାକୁ ପ୍ରସାଦ ଲାଗି କୁହାଯାଏ ।

(ଶ୍ରୀ.ସ୍ୱ.- ପୃ. ୧୧୭) ।

**ପ୍ରସାଦବଡୁ**-*ସଂ.ବି.*- ଶ୍ରୀମନ୍ଦିରରେ ଦୈନିକ ପର୍ବପର୍ବାଣି ତାଟମାନ ମନ୍ଦିରରୁ ଶ୍ରୀନଅରକୁ ଯାଏ । ସେବକ ସେସବୁ ପ୍ରସାଦ ବଡୁ ମହାସୁଆରଠାରୁ ବୁଝିନେଇ ତାହାଙ୍କଠାରେ ଥିବା ସୁନାମୁଦିରେ ମୁଦଦେଇ ତାଟୁଆ ଦ୍ୱାରା ପଠାଇଥାନ୍ତି । ଶ୍ରୀନଅରକୁ ଯେତେ ପ୍ରସାଦ, ଚନ୍ଦନ ଇତ୍ୟାଦି ଘଣ୍ଟ, ଛତା, କାହାଳି ସହ ଯିବ, ସେସବୁ ନିଜେ ନେଇ ଦେଇଥାଆନ୍ତି । ବଡ଼ସିଂହାର ବେଶରେ ଯଦି ଅକସ୍ମାତ୍ ଚନ୍ଦ୍ରିକା ଖସିଯାଏ, ପ୍ରସାଦବଡୁ ତାହା ଘଣ୍ଟ ଛତା କାହାଳି ସହ ରାଜନବରକୁ ନେଇ ରାଜାଙ୍କ ଶିରରେ

ଲାଗି କରାଇବା ନିମନ୍ତେ ରାଜଗୁରୁଙ୍କ ହସ୍ତରେ ଚଢ଼ାଇ ଦିଅନ୍ତି ।

(ଶ୍ରୀ.ସ୍ୱ. ୩ୟ - ପୃ. ୬୨-୬୩) ।

**ପ୍ରସ୍ତାବ-** *ସଂ.ବି.-* କୌଣସି ଏକ ଲୀଳା ବା ଅଭିନୟ ବିଶେଷ । ଶ୍ରୀମନ୍ଦିରରେ ବିଭିନ୍ନ ପର୍ବ ଓ ନୀତିରେ ବିଭିନ୍ନ ଲୀଳା ଅଭିନୀତ ହୁଏ, ଯଥା- ରାବଣବଧ, ବକାସୁର ବଧ, କେଶୀ ବଧ ଇତ୍ୟାଦି ଲୀଳା ଅଭିନୟ । ଏଗୁଡ଼ିକୁ ପ୍ରସ୍ତାବ କୁହାଯାଏ ।

(ଶ୍ରୀ.ସ୍ୱ. - ପୃ. ୯୦-୯୪) ।

**ପ୍ରାଚୀ-** *ସଂ.ବି.-* ପ୍ରାଚୀ ନଦୀ ପୁରୀ ଜିଲ୍ଲା ବାଲିଅନ୍ତା ନିକଟସ୍ଥ ଖଡନପଡ଼ା ଗ୍ରାମର ଦୁଇମାଇଲ ଦୂରରେ କୁଆଘର ନଦୀର ଉତ୍ତର-ପୂର୍ବରୁ ବାହାରି ଦକ୍ଷିଣ-ପୂର୍ବ ଦିଗକୁ ପ୍ରବାହିତ ହୋଇ ପୁରୀଜିଲ୍ଲା କାକଟପୁର ଥାନାର କେଉଟଜଂଗା ନିକଟରେ ବଙ୍ଗୋପସାଗରରେ ମିଶିରହିଛି । ନବକଳେବର ସମୟରେ ବନଯାଗ ବିଧିରେ ଯାଇଥିବା ସମସ୍ତ ସେବକମାନେ ଏହି ନଦୀକୂଳରେ ସ୍ନାନ କରି ନଦୀକୂଳସ୍ଥ ଦେଉଳିମଠରେ ଅବସ୍ଥାନ କରନ୍ତି ।

(ମ.ନ. - ପୃ. ୫୦, ପୂ.ଓ.ଭା. - ପୃ. ୫୧୫୫) ।

**ପ୍ରତିହାରୀ-** *ଦେ.ବି.-* ଏହାଙ୍କ ସେବା ସନ୍ଧ୍ୟାଧୂପଠାରୁ ଆରମ୍ଭ ହୁଏ । ସନ୍ଧ୍ୟା ଆଳତି ପରେ ଧୁକୁଡ଼ି ଦ୍ୱାରଠାରେ ପହୁଡ଼ ପର୍ଯ୍ୟନ୍ତ ଉପସ୍ଥିତ ରହି ଧୂପ ଡାକିବା, ଚନ୍ଦନ ବିଜେରେ ଡାକିବା କାର୍ଯ୍ୟ କରନ୍ତି । ବଡ଼ସିଂହାର ଭୋଗ ପରେ ପଇଡ଼କୁ ନଖିମାରି ରୂପାବଟାମାନଙ୍କରେ ରଖି ଭିତରକୁ ନେଇ ତିନି ବାଡ଼ରେ ରଖନ୍ତି । ଶୟନଠାକୁର ଜୟବିଜୟ ଦ୍ୱାରକୁ ଆସିବା ପରେ ଜୟବିଜୟ ଦ୍ୱାରଠାରେ ରୁପା ବଟାରେ ପଇଡ଼ ନେଇ ପୁଷ୍ପାଳକ ହାତକୁ ବଢ଼ାଇ ଦିଅନ୍ତି । ସଞ୍ଜ କାହାଳି ପୁଷ୍ପାଳକ ହାତକୁ ବଢ଼ାଇ ଦିଅନ୍ତି । ପହୁଡ଼ ଆଳତି ବେଳେ ଏହି କାମ କରନ୍ତି । ଶୟନ ସମୟରେ "ମଣିମା, ମଣିମା" ଡାକ ଦିଅନ୍ତି । ଦୁଆର ଆଉଜାଇ ବାହାରକୁ ଆସନ୍ତି- ଭିତର ଦକ୍ଷିଣ ଦ୍ୱାର ବନ୍ଦ କରନ୍ତି । ସେହି ସେବକ ସକାଳ ମଙ୍ଗଳ ଆଳତି ସମୟରେ ଦ୍ୱାରଫିଟା ନୀତି କରନ୍ତି । ଭିତର ଶୋଧ କରି ମଣିମା, ମଣିମା ଡାକ ଦେଇ ଦ୍ୱାର ଖୋଲନ୍ତି । ଭିତରୁ ପଲଙ୍କ ଆସିବା ପରେ ଭିତର କାଠ ଲଗାନ୍ତି । ପୂର୍ବ ରାତ୍ରରେ କାଠ ବାହାର କରିବା ଏହାଙ୍କ କାମ । ଜୟବିଜୟ ଦ୍ୱାର ଖୋଲନ୍ତି । ଦିନ ପହୁଡ଼ ସମୟରେ ଭିତର କାଠ ବାହାର କରନ୍ତି । ଶୟନ ପରେ ମଣିମା, ମଣିମା ଡାକଦେଇ କବାଟ ବନ୍ଦ କରନ୍ତି ଓ ପହୁଡ଼ ଭାଙ୍ଗିବା ବେଳେ ଦ୍ୱାର ଫିଟାନ୍ତି । (ଜୟବିଜୟ, କଳାହାଟ ଓ ଭିତର ଦକ୍ଷିଣ ଦ୍ୱାର) । ପ୍ରତିହାରୀ ସେବାରେ ଅଛନ୍ତି ବଡ଼ଦ୍ୱାର ପ୍ରତିହାରୀ, ଦ୍ୱାରି ନାଏକ ପ୍ରତିହାରୀ, ଜୟବିଜୟ ଦ୍ୱାର ପ୍ରତିହାରୀ, ଭୋଗମଣ୍ଡପ ପ୍ରତିହାରୀ, ଦ୍ୱାର ଘର ଓ ସିଂହ ଦ୍ୱାର ପ୍ରତିହାରୀ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୪୮) ।

**ପ୍ରାତ୍ୟହିକ-** *ସଂ.ବି.-* ସୁବର୍ଣ୍ଣ ନିର୍ମିତ ଅଷ୍ଟଭୁଜଯୁକ୍ତ ଅର୍ଦ୍ଧନାରୀଶ୍ୱର । ଲକ୍ଷ୍ମୀ-ନାରାୟଣ ମୂର୍ତ୍ତି । ଏହାଙ୍କ ବାମ ଭାଗ ନାରୀ ପଟ ହସ୍ତରେ ଦର୍ପଣ, ପଦ୍ମ, ପୁସ୍ତକ ଓ କଳସ ଏବଂ ଡାହାଣ ପଟହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ରହିଛି । ବଡ଼ସିଂହାର ପରେ ଭଣ୍ଡାର ମେକାପ ତାଙ୍କୁ ନେଇ ସିଂହାସନରେ ବିଜେ କରାନ୍ତି । ସେଠାରେ ମାଳଫୁଲ ଲାଗି, ପଇଡ଼, ବିଡ଼ିଆ, ମଣୋହି ଆଦି ପରେ ତାଙ୍କୁ ଜୟବିଜୟ ଦ୍ୱାରଠାରେ ଡମ୍ବରୁରେ ବିଜେ କରାଯାଏ । ସେଠାରେ ପୁନର୍ବାର ପଇଡ଼, ବିଡ଼ିଆ ମଣୋହି କର୍ପୂର ଆଳତି, ସଞ୍ଜକାଳି ଆଳତି, ପୁଷ୍ପାଞ୍ଜଳି ପରେ ଜଗନ୍ନାଥଙ୍କ ରତ୍ନ ପଲଙ୍କରେ ଶୟନ କରାଇ ଦିଆଯାଏ ଓ ପରେ ଭଣ୍ଡାର ଘରକୁ ବିଜେ କରାଇ ନିଆଯାଏ । ଉକ୍ତ ନୀତି ପ୍ରତ୍ୟେହ ଅନୁଷ୍ଠିତ ହେଉଥିବାରୁ ମୂର୍ତ୍ତିଙ୍କୁ ପ୍ରାତ୍ୟହିକ କୁହାଯାଏ ।

(ପୁ.ବୋ. - ପୃ. ୩୦୬) ।

**ପ୍ରୋହିତ ଖଟଣୀ ନିଯୋଗ**-*ଦେ.ବି.*- ସେବକ ବିଶେଷ । ସେ ପରମେଶ୍ୱରଙ୍କ ଅଙ୍ଗଲାଗି କାର୍ଯ୍ୟ କରିଥାନ୍ତି । ପୁଷ୍ୟାଭିଷେକ, ଘୃତାଭିଷେକ, ଜଳବିଜେ, ପୁରୁଷସୂକ୍ତ ଗାନମନ୍ତ୍ର, ଯାଗଅଭିମନ୍ତ୍ରିତ ବା ରୋଷହୋମ କରି ବୈଷ୍ଣବାଗ୍ନି, ବାଡ଼ବାଗ୍ନି, ପଞ୍ଚାମୃତ କରିବା, ବିଜେ କାଳେ, ମଙ୍ଗଳାରୋପଣ ବେଳେ, ବଡ଼ଭାଗାରି ମହାପ୍ରଭୁଙ୍କ ବାଡ଼େ ସୂକ୍ତ ପଢ଼ିବା, ଗୁରୁବାର ମାଜଣା ବେଳେ ଶ୍ରୀସୂକ୍ତ ପଢ଼ିବା, ସହସ୍ରାକୁମ୍ଭ ଅଭିଷେକ କାଳେ କୁମ୍ଭାଧିବାସ କରିବା, ପୁଷ୍ୟାଭିଷେକ ଯାଗ କର୍ମକୁ ଶ୍ରୋତ୍ରିୟ ଦେବା, ରଥ, ଦାରୁଶାଳ, ଚାପପିଣ୍ଡୀ, ବନଯାଗ ପ୍ରତିଷ୍ଠା ପ୍ରଭୃତିରେ ବିଧି କରିବା ।
(ଶ୍ରୀ.ଛି. - ପୃ. ୧୧୫) ।



# ଫ

**ଫଗୁ**-*ଦେ.ବି.*- ଭେଷଜ ତତ୍ତ୍ୱାନୁସାରେ ଶତାବରୀ, ପାଳୁଅ, ମୁଥା, ଅଙ୍କରାନ୍ତି ସହିତ ସିନ୍ଦୂର ମିଶ୍ରଣରେ ଫଗୁ ପ୍ରସ୍ତୁତ କରାଯାଏ । ଏହା ଦେହରେ ପଡ଼ିଲେ ବହୁ ରୋଗ ଜୀବାଣୁ ନଷ୍ଟ ହୁଏ ଓ ବାୟୁମଣ୍ଡଳରୁ ମଧ ଜୀବାଣୁ ନାଶ ହୁଏ । ଏହାକୁ ଅବିର ବୋଲି ମଧ କୁହାଯାଏ । ମାଘ ଶୁକ୍ଳ ପଞ୍ଚମୀ ଦିନ ମୁଦିରସ୍ତ ଠାକୁରଙ୍କ ନିକଟରେ ତିନିବାଡ଼ରେ ଝିମିରିଫଗୁ ଅଞ୍ଜଳି କରନ୍ତି । ରତ୍ନସିଂହାସନ ଉପରେ ଫଗୁ ଚନ୍ଦନ ମୁଦ ପ୍ରସାଦ ଲାଗି କରନ୍ତି । ଘଟୁଆରୀ ଦେଇଥିବା ଫଗୁ ଡବା ମୁଦିରସ୍ତ ତିନିଠାକୁରଙ୍କ ପ୍ରଭା ଉପରକୁ ପକାଇଲା ପରେ ଫଗୁ ଖେଳ ଆରମ୍ଭ ହୁଏ । (ଶ୍ରୀ.ସ୍ୱ. - ପୃ. ୧୦୯)

**ଫଗୁ ଦଶମୀ**-*ଦେ.ବି.*- ଫଗୁ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଦୋଳଯାତ୍ରା ପାଳିତ ହୁଏ । ଦଶମୀ ଦିନ ମଇଲମ ହୋଇ ଠାକୁର ନାଲି ଲୁଗା ପିନ୍ଧନ୍ତି । ପାଳିଆ ମେକାପ ଭଣ୍ଡାର ଘରଠାରୁ ଚନ୍ଦନ ଆଣିଲେ ସର୍ବାଙ୍ଗରେ ଲାଗି କରାଇଥାନ୍ତି । ଚାଚେରୀ ବେଶ ନିମନ୍ତେ ଲକ୍ଷ୍ମୀ ଓ ସରସ୍ୱତୀ ଦକ୍ଷିଣି ଘରକୁ ବିଜେ କରନ୍ତି । ବିମାନରେ ଜଗନ୍ନାଥ ବଲ୍ଲଭକୁ ବିଜେ କରନ୍ତି । ସେଠାରେ ଭୋଗ ଓ ଜଉଡାବ ଖେଳ ବଢ଼ିଲା ପରେ ବାହୁଡ଼ା ବିଜେ ହୁଅନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୦) ।

**ଫତେ ହନୁମାନ**-*ଦେ.ବି.*- ସିଂହଦ୍ୱାର ଅତିକ୍ରମ କରି ଶ୍ରୀମନ୍ଦିର ମଧକୁ ପ୍ରବେଶ କଲେ ବାମପାର୍ଶ୍ୱରେ ପ୍ରଥମେ ଏକ ହନୁମାନ ମୂର୍ତ୍ତି ଦର୍ଶନ କରିବାକୁ ମିଳିଥାଏ । ଏହାଙ୍କ ନାମ ଫତେ ହନୁମାନ । ଶ୍ରୀମନ୍ଦିରକୁ ରକ୍ଷା କରିବା ପାଇଁ ଚାରିଦ୍ୱାରରେ ହନୁମାନ ବିରାଜମାନ । ପୂର୍ବଦିଗରୁ ରକ୍ଷା କରୁଥିବା ହନୁମାନଙ୍କୁ ଫତେ ହନୁମାନ କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୨୫୮) ।

**ଫାରକ**-*ଦେ.ବି.*- ମୁଦୁଲି ଗୋଷ୍ଠୀର ଭଣ୍ଡାର ରକ୍ଷୀ । (ଦ୍ର. ମୁଦୁଲି, ପୁ.ବୋ. - ପୃ. ୨୫୬) ।

**ଫାରକ ମୁଦୁଲି**-*ଦେ.ବି.*- ସବୁ ଦ୍ରବ୍ୟର ମଣତି ନିଅନ୍ତି । କୋଠ ଯଜମାନଙ୍କ ପାଖକୁ ଯେଉଁ ଦ୍ରବ୍ୟମାନ ଆସେ ସେ ପଦାର୍ଥମାନ ସାଇତି ରଖନ୍ତି । କଉଡ଼ିଆ ଦ୍ରବ୍ୟ ମଣତି କରନ୍ତି । ପରଯାତ୍ରୀକୁ ଯିବା ଅଳଙ୍କାରମାନଙ୍କର ତାଲିକା ରଖନ୍ତି । ବେଶ ସମୟରେ ଲାଗି ହେଉଥିଲେ ଡାକିହାକି ନିଅନ୍ତି । ସତର୍କତାର ସହ ଦ୍ରବ୍ୟମାନ ମଣତି କରିରଖନ୍ତି ।

**ଫୁଟା**-*ଦେ.ବି.*- ଶ୍ରୀଜୀଉଙ୍କ ଏକ ବସ୍ତ୍ର ବିଶେଷ । ଚବିଶ ହାତ ଲମ୍ବ ଓ ଦୁଇ ହାତ ଓସାରର ପାଟ ବସ୍ତ୍ର ବିଶେଷ । ଏହା ଉପରେ ଗୀତଗୋବିନ୍ଦ ପଦାବଳୀ ମୁଦ୍ରିତ ହୋଇଥାଏ । ସ୍ନାନପୂର୍ଣ୍ଣିମା, ଅଣସର ଏକାଦଶୀ, ଷୋଳପୂଜା, ଦୋଳପୂର୍ଣ୍ଣିମା, ଅକ୍ଷୟତୃତୀୟା ପ୍ରଭୃତିରେ ଠାକୁରଙ୍କୁ ଲାଗି ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୪୭) ।

**ଫୁଲଘର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେଥିବା ଏହି ଘରେ ବିଗ୍ରହମାନଙ୍କ ଲାଗି ନିମନ୍ତେ ଦୈନିକ ଫୁଲ ଗୁନ୍ଥା ହେଉଥାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୨୭୩) ।

**ଫୁଲ ଟାହିଆ**-*ଦେ.ବି.*- ଖଡ଼ିକାରେ ବା ସରୁ ବାଉଁଶ କାଠିରେ ଗୁନ୍ଥା ହୋଇଥିବା ମୟୂର ପଙ୍ଖା ଆକାରରେ ସଜ୍ଜିତ ପୁଷ୍ପମାନ । ଏହା ଦେବପ୍ରତିମାଙ୍କ ପଛଆଡ଼େ ଖଞ୍ଜାଯାଏ । ରଥଯାତ୍ରା ଦିନ ସାତ ପାହାଚରେ ଠାକୁରଙ୍କୁ

ଟାହିଆ ଲାଗେ ଓ ବାହୁଡ଼ା ଯାତ୍ରାରେ ଜଗମୋହନଠାରେ ଟାହିଆ ଲାଗି ହୁଏ । ଏହି ଟାହିଆ ରାଘବ ଦାସ ମଠ ପ୍ରଦାନ କରନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୭୨/୬୯, ପୂ.ଓ.ଭା. - ପୃ. ୫୨୪୮) ।

**ଫୁଲଦୋଳ**-*ଦେ.ବି.*- ଚୈତ୍ରପୂର୍ଣ୍ଣିମା ସମୟରେ ଅନୁଷ୍ଠିତ ଶ୍ରୀକୃଷ୍ଣଙ୍କର ପୁଷ୍ପଦୋଳ ଉତ୍ସବ । ଏହା ଚୈତ୍ର ଶୁକ୍ଳ ଏକାଦଶୀଠାରୁ ଚୈତ୍ର ପୂର୍ଣ୍ଣିମା ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । (ପୂ.ଓ.ଭା. - ପୃ. ୫୨୪୮) ।

**ଫୁଲଧନୁ**-*ଦେ.ବି.*- ପୁଷ୍ପଧନୁ / କାମଦେବ ବା କନ୍ଦର୍ପଙ୍କର କଳ୍ପିତ ପୁଷ୍ପନିର୍ମିତ ଧନୁ । (ପୂ.ଓ.ଭା. - ପୃ. ୫୨୪୮) ।

**ଫୁଲପାଣି**-*ଦେ.ବି.*- ଦେବପ୍ରତିମା ଉପରେ ଚଢ଼ାଯିବା ପୁଷ୍ପ ଓ ଜଳ । (ପୂ.ଓ.ଭା. - ପୃ. ୫୨୪୯) ।

**ଫୁଲ ମେଲଣ**-*ଦେ.ବି.*- ଶ୍ରୀମନ୍ଦିରରେ ନବାଙ୍କ ଦିନର ଏକ ନୀତି । ଏହିଦିନ ନୂଆ ବିରି ଓ ନୂଆ ଚାଉଳ ଭୋଗରେ ଲାଗି ହୁଏ । ମଧ୍ୟାହ୍ନ ଧୂପରେ ବେଶ ହୋଇ ସୁନା ଅଳଙ୍କାରାଦି ଛଅ ମୂର୍ତ୍ତି ଲାଗି ଓ ପ୍ରସାଦ ଲାଗି ବନ୍ଦାପନା ହେବେ । ଏହି ଦିନ ମାଳିମାନେ ବାଘମୁହାଁ ବାନ୍ଧି ମାଳ, ଚୂଳ ଓ ଫୁଲମାଳ ଘେନି ତଳଛ ପଟୁଆରରେ ଘଣ୍ଟ, ଛତା ଓ କାହାଳି ସହ ବଡ଼ଦେଉଳକୁ ବେଢ଼ାଏ ବୁଲନ୍ତି । ବେହେରା ଓ ଦରଶୁଆ କରାଇ ପାଳିଆ ଖୁଣ୍ଟିଆ ଏହି ମାଳ ନେଇ ସନ୍ଧ୍ୟା ଆଳତି ବେଶରେ ଲାଗି କରନ୍ତି । ଏହିଦିନ ଶ୍ରୀ ମଦନମୋହନ ରତ୍ନସିଂହାସନ ଚାରିପାଖେ ସାଢ଼େ ଚାରିଘେରା ବେଢ଼ା ବୁଲନ୍ତି । ଏହାକୁ 'ଫୁଲ ମେଲାଣ ନୀତି' କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୦୬) ।

**ଫୁଲଫୁଲିଆ ଖଦି**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରଥମାଷ୍ଟମୀ ଦିନ ମଧ୍ୟାହ୍ନ ଧୂପରେ ତିନିବାଡ଼ରେ ବିଗ୍ରହମାନଙ୍କୁ ଲାଗି ହେଉଥିବା ଏକ ବସ୍ତ୍ର ବିଶେଷ । (ପୁ.ବୋ. - ପୃ. ୧୨୧) ।

**ଫୁଲବଟା ଘର**-*ଦେ.ବି.*- ପ୍ଲଟ ନଂ. ୨୫୯ । ଶ୍ରୀଠାକୁରଙ୍କ ଲାଗି ହେବା ପାଇଁ ଫୁଲ ଓ ତୁଳସୀ ପ୍ରଭୃତି ଯେଉଁ ଘରେ ଖୁଣ୍ଟିଆ ଜିମାରେ ରଖାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୨୭୨) ।

**ଫୁଲବଡୁ**-*ଦେ.ବି.*- ଶ୍ରୀଠାକୁରଙ୍କ ଫୁଲ ପ୍ରସାଦ ନେଇ ମହାରାଜାଙ୍କ ଶ୍ରୀନଅରରେ ପହଞ୍ଚାଇବା ସେବକ ବିଶେଷ । (ଶ୍ରୀ.ସ୍ୱ. ୨ୟ - ପୃ. ୧୨) ।

**ଫୁଲୁରି**-*ଦେ.ବି.*- ଏକ ସୁବାସିତ ତୈଳ ବିଶେଷ । ଘଣାପେଡ଼ା ରାଶିତେଲରେ ବେଣାଚେର, ମାଳତୀ, କିଆ, କେତକୀ, ବଉଳଫୁଲ, କୃଷ୍ଣଭୋଗ ଧାନ (ପରେ ଛାଣିକରି ବାହାର କରାଯାଏ) ପଡ଼ି ଏ ତେଲ ପ୍ରସ୍ତୁତ ହୁଏ । ଓଡ଼ିଆ ମଠ ଶ୍ରୀଠାକୁରଙ୍କ ଲାଗି ନିମନ୍ତେ ଏହି ତେଲ ପଠାଏ । ଅଣସର ସପ୍ତମୀ ଦିନ ଦଇତା ନିଯୋଗ ଏକ ପିଙ୍ଗଣରେ ବିଜେ କରାଇ ଫୁଲୁରି ନୀତି ଲାଗି ବଢ଼ାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୬୩) ।

**ଫେଣି**-*ଦେ.ବି.*- ମଇଦା, ଚିନି ଓ ଘିଅରେ ପ୍ରସ୍ତୁତ ଖଜା । ଏହା ମକର, ମକର ଚଉରାଶିଆ, ଗୁଣ୍ଡିଚା ରଥ ଉପରେ ଭୋଗ ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୭୨/୧୭୫) ।

# ବ

**ବଇଠା**-*ଗ୍ରା.ବି.*- ପ୍ରଦୀପର ଆସ୍ଥାନ । ଏକ ପ୍ରଦୀପ ବିଶେଷ ଭାବରେ ମଧ ବ୍ୟବହୃତ ହୁଏ । ଅଖଣ୍ଡ ବଇଠା ଠାକୁରଙ୍କ ରାତ୍ର ପହଡ଼ ଯାଏ ଜଳିବା ବିଧି ରହିଛି ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୧, ପୂ.ଓ.ଭା. - ପୃ. ୫୨୬୮) ।

**ବଇଠାଦାନ**-*ଦେ.ବି.*- କଳାହାଟ ଦ୍ୱାରରେ ପୂର୍ବ ରାତ୍ରରେ ପଡ଼ିଥିବା ତାଲାର ମୁଦ ଯାଞ୍ଚ କରନ୍ତି । ଏଥିପାଇଁ ପ୍ରତିହାରୀଙ୍କୁ ଗୋଟିଏ ବଇଠା ଦିଆଯାଏ ।
(ଶ୍ରୀ.ସ୍ୱ.- ପୃ.୨୯) ।

**ବଇଠା ବସା ଘଟୁଆରି**-*ଦେ.ବି.*- ଘଟୁଆରି ସେବକ । ଏହି ସେବକ ଭୋଗମଣ୍ଡପ ଦ୍ୱାରରେ ବଇଠା ବସାନ୍ତି । ମନ୍ଦିର ବିଦ୍ୟୁତ୍‌କରଣ ହେଲାପରେ ଏ ସେବା ବନ୍ଦ ଅଛି ।
(ଶ୍ରୀ.ସ୍ୱ. - ପୃ. ୫୮-୫୯) ।

**ବଇଠି**-*ଦେ.ବି.*- ଆସ୍ଥାନ, ଶ୍ରୀଜଗନ୍ନାଥଙ୍କର ଚକା ଆସନ ।
(ଶ୍ରୀ.ସ୍ୱ. - ପୃ. , ପୂ.ଓ.ଭା. - ପୃ. ୫୨୬୮, କୃ.ବି.ଓ.ଶ.ସ. - ପୃ. ୬୫୭) ।

**ବଇଠିକରଣ ସେବକ**-*ଦେ.ବି.*- ଏହି ସେବକ ଶ୍ରୀମନ୍ଦିରର ଯାବତୀୟ ସଉଦାପତ୍ର ତନଖି କରନ୍ତି । ବେହରଣରେ ଶ୍ରୀମନ୍ଦିର ଦକ୍ଷିଣି ଘର ପିଣ୍ଡା) ଉପସ୍ଥିତ ରହି ଧ୍ୱଜା ପିଣ୍ଡିକା ଇତ୍ୟାଦି ଆଣନ୍ତି । ରୋଷଶାଳାରେ ଭୋଗ ତଦାରଖ ସହିତ ବାହାରକୁ ଯିବା ଭୋଗର ହିସାବ ରଖନ୍ତି । ସେବା ବଂଶାନୁକ୍ରମିକ ।
(ଶ୍ରୀ.ସ୍ୱ. - ପୃ. ୧୪୨) ।

**ବଇଠିପାଳିଆ**-*ଦେ.ବି.*- ବଇଠା ଲଗେଇବା ସେବକ । ଅଖଣ୍ଡ ମେକାପଙ୍କ ଭାଗାରି ।
(ଶ୍ରୀ.ସ୍ୱ. - ପୃ. ୧୨, ପୁ.ବୋ. - ପୃ. ୨୫୬) ।

**ବଇତମ**-*ଦେ.ବି.*- ସରୁ ସୁତା କନା ଯାହା ଶ୍ରୀଜଗନ୍ନାଥଙ୍କ ରାହୁରେଖା ଲାଗି ଚିତାଲାଗି ସମୟରେ ରୁନ୍ଧା କାର୍ଯ୍ୟ ପାଇଁ ଆବଶ୍ୟକ ହୋଇଥାଏ ।
(ଶ୍ରୀ.ସ୍ୱ.- ପୃ. ୮୫, ୮୮) ।

**ବଇରଖିଆ**-*ଦେ.ବି.*- ଦର୍ପଣିଆ ସେବକଙ୍କ ଏକ ସେବା । ଏହା ଦୈନିକ ସେବା ନୁହେଁ । ବିବାହ, ବିଜେ, ରାଜପ୍ରସାଦ ଓ ଖଡ଼ି ପ୍ରସାଦ ବିଜେରେ ପୂର୍ଣ୍ଣକୁମ୍ଭ ବସାନ୍ତି । ବିବାହରେ ବେଦୀରେ ମଧ ପୂର୍ଣ୍ଣକୁମ୍ଭ ବସାନ୍ତି । ଶ୍ରୀଗୁଣ୍ଡିଚା ଓ ସ୍ନାନପୂର୍ଣ୍ଣିମାରେ ବିଜେ ଓ ବାହୁଡ଼ାରେ ନିଜ ମୁଣ୍ଡ ଉପରେ ପୂର୍ଣ୍ଣକୁମ୍ଭ ବସାଇ ଆଗରେ ଚାଲନ୍ତି ।
(ଶ୍ରୀ.ସ୍ୱ. ୪ର୍ଥ - ପୃ. ୨୪/୨୫) ।

**ବଉଳ ଅମବାସ୍ୟା**-*ଦେ.ବି.*- ପୌଷ ମାସର ଅମାବାସ୍ୟାକୁ ବଉଳ ଅମାବାସ୍ୟା କୁହାଯାଏ । ଏହିଦିନ ଦେବାଳୟମାନଙ୍କରେ ବଉଳଖିରୀ ଲାଗିହୁଏ । ଶ୍ରୀମନ୍ଦିରରେ ସକାଳ ଧୂପ ସମୟରେ ବଉଳ ଗଇଁଠା ତାଟ ଶ୍ରୀଛାମୁକୁ ଆସେ । ଦକ୍ଷିଣିଘର ଶ୍ରୀନାରାୟଣ ଠାକୁର ସିଂହାସନରେ ବିଜେ କରି ଝୁଲଣ ମଣ୍ଡପଠାରୁ ପାଲିଙ୍କିରେ ସାଗର ବିଜେ କରନ୍ତି । ଏଦିନ ଆଳତି ଅବକାଶ ପରେ ଆଜ୍ଞାମାଳ ଲାଗି ହୁଏ ଓ ବଲ୍ଲଭ ସରି ସକାଳ ଧୂପ ଉଠିବା ସମୟରେ ରୋଷରୁ ବଉଳ ଗଇଁଠା ୩ତାଟ ଛାମୁକୁ ଆସେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୪, ପୂ.ଓ.ଭା. - ୫୨୭୨-୭୩) ।

**ବଏ**-*ଦେ.ବି.*- ମହାଜନୀ ଖାତା । ବ୍ୟୟ ବା ଖରଚ । ହିସାବ ବହିର ଖରଚ ଲେଖା ହୋଇଥିବା ଅଂଶ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୯, ପୂ.ଓ.ଭା. - ପୃ. ୫୨୯୪) ।

**ବକ ପଞ୍ଚକ / ଭୀଷ୍ମ ପଞ୍ଚକ**-*ସଂ.ବି.*- କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏହା ପାଳନ କରାଯାଏ । କାର୍ତ୍ତିକ ମାସର ରୀତିନୀତି ଏହି ବ୍ରତରେ ମଧ୍ୟ ନିଷ୍ଠାର ସହକାରେ ଶ୍ରୀଜଗନ୍ନାଥଙ୍କ ପ୍ରୀତ୍ୟର୍ଥେ ପାଳନ କରାଯାଇଥାଏ ।
(କ୍ଷେ.ସ.) ।

**ବକାସୁର ବଧ**-*ଦେ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣ ପକ୍ଷ ଦଶମୀ ଦିନ ଠାକୁର ମଦନମୋହନ ଜଗମୋହନ ବିଜେ ହେବା ପରେ ବାଲି ସାହିର ଲୋକେ ଜଣେ ବ୍ୟକ୍ତିଙ୍କୁ ବକାସୁର ବେଶ କରି ଶ୍ରୀମନ୍ଦିର ଆଣନ୍ତି । ଅନ୍ୟ ଜଣେ କୃଷ୍ଣ ବେଶ ହୋଇଥାଏ । ଜଗମୋହନରେ ବକାସୁରବଧ ପ୍ରସ୍ତାବ ଅନୁଷ୍ଠିତ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୧) ।

**ବକୁଳ ଚଉତରା**-*ଦେ.ବି.*- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ବୈକୁଣ୍ଠ ବଗିଚା ସମେତ ଅଞ୍ଚଳ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭୨) ।

**ବର୍ଗୀ ହନୁମାନ**-*ଦେ.ବି.*- ଶ୍ରୀଲୋକନାଥ ମନ୍ଦିର ମାର୍ଗରେ ପ୍ରାୟ ଦଶଫୁଟ ଉଚ୍ଚ ଉତ୍ତରାଭିମୁଖୀ ମହାବୀର ମୂର୍ତ୍ତି । କେତେକଙ୍କ ମତରେ ବର୍ଗୀଙ୍କ କବଳରୁ ପୁରୀକୁ ସୁରକ୍ଷିତ ରଖିବା ନିମନ୍ତେ ଏହି ମୂର୍ତ୍ତି ସ୍ଥାପିତ ହୋଇଥିଲେ ।
(ପୁ.ବୋ. - ପୃ. ୨୬୦) ।

**ବଙ୍ଗଣ**-*ଦେ.ବି.*- ଏହା ଶ୍ରୀଠାକୁରଙ୍କର ପୂଜାରେ ବ୍ୟବହୃତ ହେଉଥିବା ଏକ ରୌପ୍ୟ ପାତ୍ର ବିଶେଷ ।
(ଶ୍ରୀ.ଶ.- ପୃ. ୧୧୮) ।

**ବଚନିକା**-*ଦେ.ବି.*- ଦୁଇଜଣଙ୍କ ମଧ୍ୟରେ ଅନୁଷ୍ଠିତ ଉକ୍ତି ଓ ପ୍ରତ୍ୟୁକ୍ତି । ଶ୍ରୀମନ୍ଦିରରେ ନୀଳାଦ୍ରି ବିଜେ ଦିନ ଲକ୍ଷ୍ମୀ-ନାରାୟଣଙ୍କ ବଚନିକା ହୁଏ । ବିଗ୍ରହମାନେ ରଥରୁ ରତ୍ନ ସିଂହାସନକୁ ବିଜେ କରନ୍ତି । କିନ୍ତୁ ମହାପ୍ରଭୁ ସିଂହଦ୍ୱାରକୁ ଆସିବା ପୂର୍ବରୁ ଦେବଦସୀମାନେ ଦରଜା ବନ୍ଦ କରିଥାଆନ୍ତି । ଦଇତା ଓ ଦେବଦାସୀଙ୍କ ମଧ୍ୟରେ ବଚନିକା ଆରମ୍ଭ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୧, ପୂ.ଓ.ଭା. - ପୃ. ୫୨୯୪) ।

**ବଜନ୍ତରୀ**-*ଦେ.ବି.*- ବାଦ୍ୟକାର । ସକାଳ ଧୂପରେ ଶ୍ରୀମନ୍ଦିରରେ ବାଦ୍ୟ ବଜାନ୍ତି ।
(ଶ୍ରୀ.ସ୍ୱ. - ପୃ. ୫୮) ।

**ବଜନ୍ତରୀ ମଣ୍ଡପ**-*ଦେ.ବି.*- ଶ୍ରୀମନ୍ଦିରର ବଜନ୍ତରୀ ମଣ୍ଡପ ହେଉଛି ନାଭିକଟା ମଣ୍ଡପ । ଶ୍ରୀକୃଷ୍ଣ ଜନ୍ମବିଧି ସମୟରେ ଏଠାରେ ନାଭିକଟା କର୍ମ ହୁଏ । ଏହିଠାରେ ବଜନ୍ତରୀମାନେ ବସି ବାଦ୍ୟ ବଜାନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୧୬, ପୂ.ଓ.ଭା. - ୫୨୯୬) ।

**ବଜ୍ରକାଛେଣୀ**-*ଦେ.ବି.*- ନବକଳେବର ସମୟରେ ବ୍ରହ୍ମଙ୍କୁ ବ୍ରହ୍ମ ରନ୍ଧ ମଧ୍ୟରେ ଅବସ୍ଥାପନ କରିବା ପରେ ବ୍ରାହ୍ମଣମାନେ ପ୍ରତିଷ୍ଠା କରିସାରିଥିବା ନ୍ୟାସଦାରୁଙ୍କୁ ବାଡ଼ଗ୍ରାହୀ ଶାସ୍ତ୍ର ପ୍ରମାଣ ବିଧି ଅନୁସାରେ ପୂର୍ବରୁ ଯେଉଁ ଚାରିଖଣ୍ଡରେ ବିଭକ୍ତ କରି ରଖିଥାଆନ୍ତି, ତହିଁରେ ବ୍ରହ୍ମରନ୍ଧ୍ରଙ୍କୁ ବ୍ରହ୍ମକପାଟରେ ଆବରଣ କରି ବ୍ରହ୍ମ ସ୍ଥାପିତ ସ୍ଥଳକୁ ବସ୍ତ୍ରଦ୍ୱାରା ଦୃଢ଼ ଭାବରେ ବାନ୍ଧି ଦିଅନ୍ତି । ଏହାର ନାମ ହେଉଛି 'ବଜ୍ରକାଛେଣୀ' ।
(ମ.ନ. - ପୃ. ୧୧୬) ।

**ବଟକୃଷ୍ଣଠାକୁର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ବଟବୃକ୍ଷ ପାର୍ଶ୍ୱରେ ଥିବା ଠାକୁର । ଏହାକୁ ପ୍ରତିହାରୀ ସେବକ ପୂଜା କରନ୍ତି । କୋଠରୁ ଠାକୁରଙ୍କ ନିମନ୍ତେ ଭୋଗ ଖଞ୍ଜା ଅଛି । ବଟକୃଷ୍ଣ ମନ୍ଦିର ପ୍ଲଟ-୯୯, ଶ୍ରୀମନ୍ଦିର ଭିତର ବେଢ଼ାରେ ଏହି ମନ୍ଦିର ବିଦ୍ୟମାନ ।
(ଶ୍ରୀ.ସ୍ୱ.- ପୃ. ୨୪୨) ।

**ବଟଗଣେଶ**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାରେ କଳ୍ପବଟ ନିକଟରେ ଥିବା ଗଣେଶ । ଏହି ଠାକୁରଙ୍କ ନୀତି ପାଇଁ କୋଠରୁ ଭୋଗ ଖଞ୍ଜା ଅଛି । ଏହି ଗଣେଶ କଳ୍ପ ଗଣେଶ, ଚିନ୍ତାମଣି ଗଣେଶ, ସିଦ୍ଧ ଗଣେଶ ନାମରେ ପରିଚିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪୨) ।

**ବଟ ପତିତପାବନ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ଏହି ମନ୍ଦିର ମଧ୍ୟରେ ବଟ ଅବକାଶ ଠାକୁର ପୂଜିତ ।
(ଶ୍ରୀ.ସ୍ୱ. - ପୃ. ୨୪୨) ।

**ବଟ ବଳଭଦ୍ର ଠାକୁର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ବଟ ବଳଭଦ୍ର ଠାକୁରଙ୍କ ଆସ୍ଥାନ । ଏହି ଠାକୁରଙ୍କୁ ପୂଜାପଣ୍ଡା ନିଯୋଗର ସେବକମାନେ ପୂଜା କରିଥାନ୍ତି । ବାହାର ଦେଉଳି ଭୋଗରୁ ଦୈନିକ ଏକ ଓଳି ମହନଭୋଗ ଠାକୁରଙ୍କୁ ଲାଗିହୁଏ । (ଉ.ଇ.ଅ.ଅ. - ପୃ. ୩୨୧) ।

**ବଟମଙ୍ଗଳା**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାରେ ବଟ ନିକଟରେ ଅବସ୍ଥାନ କରୁଥିବା ମଙ୍ଗଳା ଠାକୁରାଣୀ । ଷୋଳପୂଜାରେ ଏଠାରେ ବିଶେଷ ନୀତି ଅନୁଷ୍ଠିତ ହୁଏ ଓ ଠାକୁରାଣୀଙ୍କ ନିମନ୍ତେ କୋଠରୁ ଭୋଗ ଖଞ୍ଜା ଅଛି । ଶିବରାତ୍ରି ଓ ଦୋଳପୂର୍ଣ୍ଣିମାରେ ଚଣା ଓ ଖଜା ଭୋଗ କରାଯାଏ । (ଶ୍ରୀ.ସ୍ୱ. - ପୃ. ୨୪୩) ।

**ବଟା**-*ଦେ.ବି.*- ଫୁଲ କିମ୍ବା ପାନ ରଖାଯିବା ପାତ୍ର । ବିଡ଼ିଆ ପାନ ଯୋଗାଣିଆ ଖିଲିପାନ ଭାଙ୍ଗି ତିନିଠାକୁରଙ୍କ ପାଖରେ ଲାଗି ପାଇଁ ରୂପାବଟାରେ ହଡ଼ପ ନାୟକଙ୍କୁ ଦିଅନ୍ତି । ନାୟକ ପଣ୍ଡାଙ୍କୁ ଦେଲେ ସେ ବିଡ଼ିଆ ମଣୋହି କରନ୍ତି । (ଶ୍ରୀ.ସ୍ୱ. - ପୃ. ୨୦) ।

**ବଡ଼ ଅମାଲୁ**-*ଦେ.ବି.*- ଅଟା, ଚାଉଳଚୁନା ଓ ଗୁଡ଼ ମିଶ୍ରିତ ଘିଅରେ ଛଣା ଏକ ପିଠା ବିଶେଷ । ଏହା ବଡ଼ ଆକାରରେ ବଡ଼ ଅମାଲୁ ସାନ ଆକାରରେ ସାନ ଅମାଲୁ ରୂପେ ପରିଚିତ । ପ୍ରତ୍ୟହ ସନ୍ଧ୍ୟାଧୂପରେ ବିଗ୍ରହମାନଙ୍କୁ ଲାଗି କରାଯାଏ । (ଓ.ଇ.ଅ.ଅ. - ପୃ. ୩୨୩, ଶ୍ରୀ.ସ୍ୱ. - ପୃ. ୨୫୭) ।

**ବଡ଼ ଆରିସା**-*ଦେ.ବି.*- ଏକ ପ୍ରକାର ପିଠା । ଚାଉଳ ଚୁନା ଓ ଗୁଡ଼ର ଏକ ପାଗ ମିଶ୍ରଣ କରି ଜନ୍ତିବା ପରେ ପିଠା ବଡ଼ ଓ ସାନ ଆକାରରେ ଗଢ଼ାଯାଏ ଓ ଏହା ମଧ୍ୟରେ ମଧ୍ୟ ଛେନାଗୁଡ଼ ମିଶ୍ରଣର ପୁର ବା ନଡ଼ିଆ କୋରା ଓ ଗୁଡ଼ ମିଶ୍ରଣର ପୁର ଭର୍ତ୍ତି ହୋଇ ପିଠା ଗଢ଼ାଯାଏ । ଏହା ଘିଅରେ ଛଣାହୁଏ । ଏହା କୋଠଭୋଗରେ ଶ୍ରୀଠାକୁରମାନଙ୍କୁ ଲାଗିହୁଏ । (ଶ୍ରୀ.ସ୍ୱ. ୨ୟ - ୧୮୨-୮୪) ।

**ବଡ଼ଆଡ଼ରୋଷ**-*ଦେ.ବି.*- ଶ୍ରୀମନ୍ଦିରର ଏକ ରୋଷଗୃହ । (ଶ୍ରୀ.ସ୍ୱ. - ପୃ. ୨୬୫) ।

**ବଡ଼ି କଣ୍ଟେଇ**-*ଦେ.ବି.*- ଏକ ପ୍ରକାର ଭୋଗ ଦ୍ରବ୍ୟ । ବଡ଼ ବଡ଼ି ଓ କଞ୍ଚା ଆରିସାକୁ ଛୋଟ ଛୋଟ କରି ଘିଅରେ ଛାଣି ଏହା ପ୍ରସ୍ତୁତ କରାଯାଏ ଏବଂ ଶ୍ରୀଠାକୁରମାନଙ୍କର ପହିଲି ଭୋଗରେ ଲାଗି ହୋଇଥାଏ । (ଶ୍ରୀ.ସ୍ୱ. ୨ୟ - ପୃ.୧୭୨, ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୨୬୩) ।

**ବଡ଼କାକରା**-*ଦେ.ବି.*- ଅଟା କିମ୍ବା ମଇଦାରେ କିଛି ଗୁଡ଼ ଦିଆଯାଇ ଜନ୍ତୁଣି ପ୍ରସ୍ତୁତ ହୁଏ । ଟିକେ ଶୀତଳ ହେଲାପରେ ଛେନା କିମ୍ବା ନଡ଼ିଆ ପୁର ଦିଆଯାଇ ବଡ଼ ଓ ସାନ ଆକାରରେ ଗଢ଼ା ହୁଏ ଓ ଘିଅରେ ଛଣାହୁଏ । ଏହା ଠାକୁରଙ୍କ ଭୋଗରେ ଲାଗି ହୋଇଥାଏ । ଦୋଳପୂର୍ଣ୍ଣିମା, ଗୁଣ୍ଡିଚା ବିଜେ, ମକର ଚଉରାଶି ଭୋଗରେ ମଧ୍ୟ ଏହା ଲାଗି ହୋଇଥାଏ । (ଶ୍ରୀ.ସ୍ୱ.- ପୃ. ୧୭୪, ୧୭୮) ।

**ବଡ଼ଚିଟା ମହାସୁଆର**-*ଦେ.ବି.*- ଶ୍ରୀମନ୍ଦିରର ରୋଷଘର ମଧ୍ୟରେ ଥିବା ମହାସୁଆର ମଧ୍ୟରୁ ଏକ ଗୋଷ୍ଠୀ । (ଶ୍ରୀ.ସ୍ୱ. ୧ମ - ପୃ. ୮୪) ।

**ବଡ଼ଠାକୁର**-*ଦେ.ବି.*- ଶ୍ରୀମନ୍ଦିରରେ ବଡ଼ ଠାକୁର ହେଉଛନ୍ତି ଶ୍ରୀ ବଳଭଦ୍ର, ଶ୍ରୀଜଗନ୍ନାଥଙ୍କର ବଡ଼ଭାଇ ଓ ତାଙ୍କ ବାଡ଼ ହେଉଛି ବଡ଼ ବାଡ଼ । (ଶ୍ରୀ.ସ୍ୱ. - ପୃ. ୬୪-୬୯) ।

**ବଡ଼ ତଡ଼ାଉବେଶ**-*ଦେ.ବି.*- ଶ୍ରୀଠାକୁରଙ୍କର ସୁନାବେଶକୁ ବୁଝାଏ । (ଶ୍ରୀ.ସ୍ୱ. - ପୃ. ୮୦) ।

**ବଡ଼ନାଡ଼ୀ**-*ଦେ.ବି.*- ବିରି ବା ବେସନରେ ଏକ ପ୍ରକାର ପିଠା । ଶ୍ରୀଠାକୁରମାନଙ୍କୁ ଭୋଗରେ ଅର୍ପଣ କରାଯାଏ । ନବାନ୍ନ, ବକୁଳ ଅମାବାସ୍ୟା, ପୁଷ୍ୟାଭିଷେକ, ମାଘପଞ୍ଚମୀ, ଦୋଳପୂର୍ଣ୍ଣିମାରେ ବିଗ୍ରହମାନଙ୍କୁ ଲାଗି ହୋଇଥାଏ । (ଶ୍ରୀ.ସ୍ୱ. - ପୃ. ୧୭୦-୧୯୪) ।

**ବଡ଼ପଣ୍ଡା**-*ଦେ.ବି.*- ଶ୍ରୀମନ୍ଦିରର ବିଶିଷ୍ଟ ସେବକ ବିଶେଷ । ଶ୍ରୀମନ୍ଦିରର ମୁରବୀ ସ୍ଥାନୀୟ ପଣ୍ଡା ସେବକ (ପ୍ରଧାନ ବ୍ରାହ୍ମଣ ପୂଜକ) । ଅନ୍ୟ ପୂଜାପଣ୍ଡାମାନେ ନିଜନିଜର କର୍ତ୍ତବ୍ୟ ବିଧିମତେ କରୁଛନ୍ତି କି ନାହିଁ ତାହା ବଡ଼ପଣ୍ଡା ତଦାରଖ କରନ୍ତି । ମହାନାୟକ ଶାଢ଼ୀପିନ୍ଧା ସେବକ । ପୂଜା ବସିବା ବେଳେ ତିନି ଧୂପରେ ଅଣସର ପିଣ୍ଡିରେ ସୁନା ଚାମର ସେବା, ରାଜେନ୍ଦ୍ରାଭିଷେକରେ ବଚନିକା, ରକ୍ମିଣୀ ହରଣ, ଚିଟାଉପାଠ, ପୂଜାପଣ୍ଡା ସେବା ଏହାଙ୍କର କାର୍ଯ୍ୟ । ପୂର୍ବରୁ ଦଣ୍ଡୀ, ସନ୍ୟାସୀ ଓ ମୁକ୍ତିମଣ୍ଡପ ପଣ୍ଡିତଙ୍କ ଦ୍ୱାରା ପରୀକ୍ଷିତ ହେଉଥିଲେ । ବର୍ତ୍ତମାନ ପୂଜାପଣ୍ଡା ନିଯୋଗରେ ପରୀକ୍ଷିତ ହୋଇ ବଡ଼ପଣ୍ଡା ହେଉଛନ୍ତି । ସେବା ବଂଶାନୁକ୍ରମିକ ।
(ଶ୍ରୀ.ସ୍ୱ. - ପୃ. ୬୨-୬୩, ଓ.ସାଂ.ଶ.- ପୃ. ୨୫୩) ।

**ବଡ଼ପିଠା**-*ଦେ.ବି.*- ଶ୍ରୀଠାକୁରମାନଙ୍କ ମଣୋହି ନିମନ୍ତେ ପ୍ରସ୍ତୁତ ବୃହତକାୟ ପିଠା । ଏହିପରି ବଡ଼ବଡ଼ା (ବିରିବଟାରେ ଗଢ଼ାହୋଇ ଘିଅରେ ଛଣାଯାଏ । ବାମନଜନ୍ମ ରାମଜନ୍ମ, ଦମନକ ଚତୁର୍ଦ୍ଦଶୀ, ଚମ୍ପକ ଦ୍ୱାଦଶୀ, ରକ୍ମିଣୀବିଭା, ନେତ୍ରୋତ୍ସବ, ଗୁଣ୍ଡିଚା, ନବାନ୍ନ, ପୁଷ୍ୟାଭିଷେକ, ମକର ଚଉରାଶି, ତୁଳାସଂକ୍ରାନ୍ତି ପ୍ରଭୃତିରେ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୭୦-୧୯୪) ।

**ବଡ଼ବଡୁଆ ଅମାବାସ୍ୟା**-*ଦେ.ବି.*- ଏହାକୁ ପିମ୍ପେଇ ଅମାବାସ୍ୟା ବୋଲି ମଧ କୁହାଯାଏ । କାର୍ତ୍ତିକ ମାସର ଅମାବାସ୍ୟା ଦୀପାବଳୀ ଅମାବାସ୍ୟା । ଏହି ଦିନ ପ୍ରତି ହିନ୍ଦୁଘରେ ପିତୃଲୋକଙ୍କର ପୂଜା ଶ୍ରାଦ୍ଧ ଓ ନୈବେଦ୍ୟ ଅର୍ପଣ ଓ ସନ୍ଧ୍ୟାରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ କାଉଁରିଆ କାଠି ଜାଳି ଆଲୋକ ପ୍ରଦର୍ଶନ କରି ତାଙ୍କୁ ବିଦାୟ ପ୍ରଦାନ କରନ୍ତି । ବାଇଶି ପାହାଚରେ ପିଣ୍ଡଦାନ କରନ୍ତି ଓ ଅରୁଣସ୍ତମ୍ଭ ପାଖରେ କାଉଁରିଆ ଜାଳି ବଡ଼ବଡୁଆ ଡାକନ୍ତି । ଏହା ଲୋକାଚାରରେ ପାଳିତ ହେଉଛି ।
(ପୂ.ଓ.ଭା. - ପୃ. ୫୩୧୩) ।

**ବଡ଼ବାଡ଼**-*ଦେ.ବି.*- ଶ୍ରୀବଳଭଦ୍ରଙ୍କୁ ବୁଝାଏ । ଶ୍ରୀବଳଭଦ୍ରଙ୍କ ପୂଜକ ଗୋଷ୍ଠୀ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨) ।

**ବଡ଼ବାଡ଼ ଖାଉନ୍ଦାଣୀ**-*ଦେ.ବି.*- ମା' ବିମଳାଦେବୀଙ୍କୁ ବୁଝାଏ ।
(ପୁ.ବୋ. - ପୃ. ୨୫୭) ।

**ବଡ଼ଦାଣ୍ଡ**-*ଦେ.ବି.*- ଶ୍ରୀପୁରୁଷୋତ୍ତମ ଧାମ ହେଉଛି ସର୍ବବିଧରେ ବୃହତ୍ । ସେଥିପାଇଁ ଏଠାରେ ଦେଉଳ-ବଡ଼ଦେଉଳ, ଦାଣ୍ଡ-ବଡ଼ଦାଣ୍ଡ, ପ୍ରସାଦ-ମହାପ୍ରସାଦ, ସମୁଦ୍ର-ମହୋଦଧି ଆଉ ଶ୍ମଶାନ-ସ୍ୱର୍ଗଦ୍ୱାର ।

ବଡ଼ଦାଣ୍ଡର ବିସ୍ତୃତି ବୃହତ୍ ନ ହେଲେ ମଧ ବ୍ୟାପ୍ତି ପ୍ରଶସ୍ତ । ଶ୍ରୀମନ୍ଦିରର ସିଂହଦ୍ୱାରଠାରୁ ଗୁଣ୍ଡିଚାମନ୍ଦିର ପର୍ଯ୍ୟନ୍ତ ଲମ୍ବ ପ୍ରାୟ ତିନି କିଲୋମିଟର । ପୁରୀ ସହରର ବିଭିନ୍ନ ସାହି ମଧ ବଡ଼ଦାଣ୍ଡ ସହିତ ସଂଯୋଜିତ । ପୂର୍ବରେ ଦୋଳମଣ୍ଡପ ସାହି, ମୋଚି ସାହି, କୁଣ୍ଡେଇବେଣ୍ଟ ସାହି, ହେରାଗୌରୀ ସାହି, ପଶ୍ଚିମରେ ହରଚଣ୍ଡୀ ସାହି, ଦକ୍ଷିଣ-ପଶ୍ଚିମରେ ଗୌଡ଼ବାଡ଼ ସାହି, ଦକ୍ଷିଣରେ ବାଲିସାହି, ମାଟିମଣ୍ଡପ ସାହି ଓ କାଳିକା ଦେବୀ ସାହି ଅବସ୍ଥିତ ।

ବଡ଼ଦାଣ୍ଡରେ ଅଳ୍ପକେତୋଟି ବାସଗୃହକୁ ଛାଡ଼ିଦେଲେ ପ୍ରାୟତଃ ଧର୍ମଶାଳା, ମଠ, ହୋଟେଲ, ଥାନା, ଡାକ୍ତରଖାନା ଏବଂ କିଛି ଦୋକାନମାନ ରହିଛି । ସହରର ବ୍ୟବସାୟ ଓ ବାଣିଜ୍ୟ ମୁଖ୍ୟତଃ ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥଙ୍କୁ ନେଇ ଗଢ଼ିଉଠିଛି । କେବଳ ବ୍ୟବସାୟ ଦୃଷ୍ଟିରୁ ନୁହେଁ ପୁରୀ ବଡ଼ଦାଣ୍ଡର ପ୍ରସିଦ୍ଧି ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ପାଇଁ । ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଶ୍ରୀଜଗନ୍ନାଥଙ୍କର ସବୁଠାରୁ ବଡ଼ଯାତ୍ରା ରଥଯାତ୍ରାରେ ଏହି ବଡ଼ଦାଣ୍ଡ ବ୍ୟବହୃତ ହୋଇଆସୁଅଛି ଯୁଗ ଯୁଗ ଧରି । ତିନି ଠାକୁର ଶ୍ରୀବଳଭଦ୍ର, ସୁଭଦ୍ରା ଓ ଶ୍ରୀଜଗନ୍ନାଥ ତାଙ୍କର ରଥ ତାଳଧ୍ୱଜ, ଦେବଦଳନ ଏବଂ ନନ୍ଦିଘୋଷ ଚଢ଼ି ଗୁଣ୍ଡିଚା ମନ୍ଦିର ଉପଲକ୍ଷେ ଯାତ୍ରା

କରନ୍ତି ଏହି ବଡ଼ଦାଣ୍ଡ ଉପରେ । ସାଗରର ଉତ୍ତାଳ ତରଙ୍ଗ ପରି ସମଗ୍ର ବିଶ୍ୱର କୋଣ ଅନୁକୋଣରୁ ଆସିଥିବା ଲକ୍ଷ ଲକ୍ଷ ଭକ୍ତଙ୍କର ଜନସମାଗମରେ ସଜୀବ ହୋଇଉଠେ ବଡ଼ଦାଣ୍ଡ । ପ୍ରଥମରୁ ବଡ଼ଦାଣ୍ଡ ବର୍ତ୍ତମାନ ପରି ପ୍ରଶସ୍ତ ଏବଂ ଅବିଚ୍ଛିନ୍ନ ନ ଥିଲା । ପୂର୍ବେ ଏହି ବଡ଼ଦାଣ୍ଡ ମଝିରେ ଏକ ନଦୀ ପ୍ରବାହିତ ହେଉଥିଲା, ଯାହାର ନାମ ଥିଲା ମାଳିନୀ, ଏହା ଶଙ୍ଖୁଆ ନଦୀର ଏକଧାର ବା ଶାଖା ନଦୀ ଯାହାକି ମାଉସୀ ମା' ମନ୍ଦିରକୁ ଗୁଣ୍ଡିଚା ମନ୍ଦିରଠାରୁ ଅଲଗା କରୁଥିଲା । ସେଥିପାଇଁ ରଥଯାତ୍ରା ସମୟରେ ତିନୋଟି ରଥ ପରିବର୍ତ୍ତେ ଛଅଟି ରଥ ନିର୍ମାଣ କରାଯାଇ ନଦୀର ଉଭୟ ପାର୍ଶ୍ୱରେ ତିନୋଟି ଲେଖାଏଁ ରଥ ରଖାଯାଉଥିଲା । ଠାକୁରମାନେ ସିଧାସଳଖ ଶ୍ରୀମନ୍ଦିରରୁ ଗୁଣ୍ଡିଚାମନ୍ଦିର ପର୍ଯ୍ୟନ୍ତ ଆସିପାରୁ ନ ଥିଲେ । ସେମାନେ ପ୍ରଥମେ ତିନୋଟି ରଥରେ ଶ୍ରୀମନ୍ଦିରରୁ ମାଉସୀ ମା' ମନ୍ଦିର ପର୍ଯ୍ୟନ୍ତ ଯାଇ ସେଠାରୁ ଡଙ୍ଗାରେ ନଦୀପାର ହୋଇ ଇନ୍ଦ୍ରଦ୍ୟୁମ୍ନ ପାଟଣାରେ ପୁନରାୟ ତିନିଗୋଟି ରଥରେ ବସି ଗୁଣ୍ଡିଚା ମନ୍ଦିରକୁ ଯାଉଥିଲେ ।

କଥିତ ଅଛି ରାଜା ଅନଙ୍ଗ ଭୀମଦେବ ଦ୍ୱିତୀୟଙ୍କ ପୁତ୍ର ଭାନୁଦେବଙ୍କର ରାଣୀ ଶ୍ରଦ୍ଧାଦେବୀଙ୍କ ପ୍ରରୋଚନାରେ ରାଜା ମାଳିନୀ ନଦୀରେ ସେତୁ ନିର୍ମାଣ କରି ଗୁଣ୍ଡିଚା ମନ୍ଦିର ନିକଟବର୍ତ୍ତୀ ସ୍ଥାନକୁ ବାଲୁକାପୂର୍ଣ୍ଣ କରିଥିଲେ । ମାଦଳାପାଞ୍ଜି ବର୍ଣ୍ଣନା ଅନୁଯାୟୀ ଭାନୁଦେବଙ୍କ ପରବର୍ତ୍ତୀ ରାଜା ଦ୍ୱିତୀୟ ନରସିଂହ ଦେବଙ୍କ ଦ୍ୱାରା ଏହି କାର୍ଯ୍ୟ ଶେଷ ହୋଇଥିଲା । ଫଳରେ ଛଅରଥ ପରିବର୍ତ୍ତେ ତିନିରଥର ପ୍ରଚଳନ କରାଗଲା, ଅର୍ଥାତ୍ ତ୍ରୟୋଦଶ ଶତାବ୍ଦୀରେ ଏହି ବଡ଼ଦାଣ୍ଡର ବିକାଶ ହୋଇ ବାଙ୍କି ମୁହାଣ ପୋତାଯାଇ ଶରଧାବାଲିର ନିର୍ମାଣ ହୋଇଥିଲା । ରାଜା କପିଳେନ୍ଦ୍ରଦେବଙ୍କ ସମୟରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ରଥଯାତ୍ରା ସମୟରେ ରାଜା କେବଳ ରଥନୁହେଁ ବଡ଼ଦାଣ୍ଡ ଓ ଶ୍ରୀନଅରକୁ ମଧ ଓଳାଉଥିଲେ । ପରବର୍ତ୍ତୀ ସମୟରେ ଏହା କେବଳ ରଥ ଉପରେ ସୀମିତ ରହିଛି ।

ଭକ୍ତମାନଙ୍କ ଦୃଷ୍ଟିରେ ଶ୍ରୀମନ୍ଦିର ଶ୍ରୀଜଗନ୍ନାଥଙ୍କର ମହତ୍ତ୍ୱ ଯେତିକି, ଠିକ୍ ସେହିପରି ଭାବ ସେମାନଙ୍କ ହୃଦୟରେ ଜାତ ହୁଏ ଯେତେବେଳେ ଭକ୍ତ ଦାସିଆ ବାଉରୀ ବଡ଼ଦାଣ୍ଡରେ ଠିଆହୋଇ ବଡ଼ଠାକୁରଙ୍କୁ ଦେଖି ରୋମାଞ୍ଚିତ ହୋଇଉଠିଥିଲେ, ଭକ୍ତ ବଳରାମ ଦାସ ଗୁଣ୍ଡିଚା ଯାତ୍ରାରେ ରଥାରୂଢ଼ ପ୍ରଭୁଙ୍କ ସମ୍ମୁଖରେ ଅପମାନିତ ହୋଇ ବଡ଼ଦାଣ୍ଡରେ ଧୂଳି ଧୂସରିତ ହୋଇ ଶରଧାବାଲିକୁ ଧାଇଁ ଆସିଥିଲେ ବାଲି ରଥ ନିର୍ମାଣ କରିବା ପାଇଁ । ରାଧାକୃଷ୍ଣ ମଧୁର ଭକ୍ତିର ପ୍ରଚାରକ ଶ୍ରୀଚୈତନ୍ୟ ଶିଷ୍ୟମାନଙ୍କ ସହ ପ୍ରମତ୍ତ ହୋଇ କୀର୍ତ୍ତନ କରୁଥିଲେ ଏହି ବଡ଼ଦାଣ୍ଡରେ । କବି ସାଲବେଗ, ହରିଦାସ ମଧ ପ୍ରଭୁଙ୍କୁ ଦର୍ଶନ କରିଥିଲେ ଏହି ବଡ଼ଦାଣ୍ଡରେ । ଶିଖ୍ ଧର୍ମର ପ୍ରଚାରକ ନାନକ ଏବଂ ଖ୍ରୀଷ୍ଟଧର୍ମର ପ୍ରଚାରକ ଯୀଶୁଖ୍ରୀଷ୍ଟ ବଡ଼ଦାଣ୍ଡରେ ପ୍ରଭୁଙ୍କର ଦର୍ଶନ ଲାଭ କରିଥିଲେ ।

ମନ୍ଦିର ଯେଉଁଠି, ସେଠାରେ କିଛିଟା ନିୟମ, ନୀତି ଓ ବନ୍ଧନ ଥାଏ, କିନ୍ତୁ ବଡ଼ଦାଣ୍ଡ ସମ୍ପୂର୍ଣ୍ଣ ମୁକ୍ତ । ଏଠାରେ ମ୍ଳେଚ୍ଛ, ପତିତ, ଅସ୍ପୃଶ୍ୟର ବାରଣ ନାହିଁ । ଏହା ଜାତିଧର୍ମବର୍ଣ୍ଣର ବନ୍ଧନରୁ ବହୁତ ଉର୍ଦ୍ଧ୍ୱରେ । ଏହି ଦାଣ୍ଡରେ ସାଧାରଣ ଭକ୍ତ ସାନ୍ନିଧ ଲାଭ କରିଥାଏ ପ୍ରଭୁ ଶ୍ରୀଜଗନ୍ନାଥଙ୍କର । ସେ ଏହି ବଡ଼ଦାଣ୍ଡରେ ପ୍ରଭୁଙ୍କୁ ଦର୍ଶନ କରି ମଜ୍ଜିଯାଏ ଶ୍ରୀଜଗନ୍ନାଥଙ୍କ ଚେତନାରେ । ଏଠାରେ ଜୀବ ସହିତ ପରମର, ପୁରୁଷ ସହିତ ପୁରୁଷୋତ୍ତମଙ୍କର, ରଥ ସହିତ ପଥର ହୁଏ ଅପୂର୍ବ ସମନ୍ୱୟ । ଧନ୍ୟ ପ୍ରଭୁ ଶ୍ରୀଜଗନ୍ନାଥ, ଧନ୍ୟ ତୁମର ବଡ଼ଦାଣ୍ଡ । (କ୍ଷେ.ସ.) ।

**ବଡ଼ଦୁଆର**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନ ଥିବା ଗର୍ଭଗୃହ ପ୍ରବେଶର ବଡ଼ ଦ୍ୱାର । ଏହା ବଡ଼ ମନ୍ଦିରର ବଡ଼ ପ୍ରବେଶ

ଦ୍ୱାର ବା ଛାମୁ ଦୁଆର । ଏହା କଳାହାଟ ନାମରେ କଥିତ ।
(ଓ.ସାଂ.ଶ. - ପୃ. ୨୫୩) ।

**ବଡ଼ଦେଉଳ**-*ଦେ.ବି.*- ପୁରୀର ଶ୍ରୀମନ୍ଦିର, ଶ୍ରୀଜଗନ୍ନାଥଙ୍କ ମନ୍ଦିର । ଏହା ଶ୍ରୀବସ୍ତ ଖଣ୍ଡଶାଳ ପ୍ରାସାଦ ନାମରେ ମଧ୍ୟ ନାମିତ ।
(ଓ.ସାଂ.ଶ. - ପୃ. ୨୫୨) ।

**ବଡ଼ବାଡ଼ ପଶୁପାଳକ**-*ଦେ.ବି.*- ଠାକୁରଙ୍କ ରାତ୍ର ପହଡ଼ ସମୟରେ ବଡ଼ ବାଡ଼ ପୁଷ୍ପାଳକ ଶୟନ ଠାକୁରଙ୍କୁ ଚନ୍ଦନଲାଗି କରାଇ ରତ୍ନସିଂହାସନ ପାଖେ ବିଜେ କରାନ୍ତି ।
(ଶ୍ରୀ.ସ୍ୱ.- ପୃ. ୬୬, ୬୭) ।

**ବଡ଼ମଠ କୁଡୁଆ**-*ଦେ.ବି.*- ବଡ଼ବଡ଼ ମାଟିପାତ୍ର କୁଡୁଆ ବା ହାଣ୍ଡି ବିଶେଷ ।

**ବଡ଼ମହାସ୍ନାନ**-*ଦେ.ବି.*- ଶ୍ରୀମନ୍ଦିର ଭିତରେ ପରିସ୍ରା, ମଳ, ବାନ୍ତି, ରକ୍ତ କିମ୍ବା ଛେପ ପଡ଼ିଲେ ଠାକୁରଙ୍କର ବଡ଼ ମହାସ୍ନାନ ହୁଏ । ଏହି ସମୟରେ ସିଂହାସନଠାରୁ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଧୂଆ ହୋଇ ମନ୍ତ୍ରପାଠ କରି ପଞ୍ଚାମୃତ ଦ୍ୱାରା ମହାସ୍ନାନ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪-୧୫) ।

**ବଡ଼ସିଂହାରଧୂପ**-*ଦେ.ବି.*- ଶ୍ରୀମନ୍ଦିର ପରମ୍ପରାରେ ରାତ୍ର ଘ ୧୧/୧୨ ମିନିଟରେ ବଡ଼ସିଂହାର ଧୂପ ହେବା ନିୟମ । ଏହି ଧୂପରେ ସିଂହାସନ ତଳେ ପୂଜା ହୁଏ । ଏହି ଧୂପରେ ଭୋଗ ପାଇଁ ମୁରୁଜ କଟାଯାଏ ନାହିଁ । ରୋଷ ପାଇକ ରୂପା ପିଙ୍ଗଣରେ ଖାଲି ଘିଅ ଆଣି ଠାକୁରମାନଙ୍କୁ ଭୋଗ ସକାଶେ ଦିଏ, ଟେରା ଫିଟିଲା ପରେ ଆଳତି ହୁଏ ନାହିଁ । ଅନ୍ୟସବୁ ନୀତି ଅନ୍ୟାନ୍ୟ ଧୂପର ନୀତି ପରି ହୁଏ । ଅମାଲୁ (ବଡ଼/ସାନ) ଟାକୁଆ, ଭୋଗ ସରପୁଳି, ସୁଆର ପିଠା, ରୋଷ ପାଇକ ପିଠା, ଖଇରଚୂଳ, କଦଳୀବଡ଼ା, ଖିରୀ, କାଞ୍ଜି, ଟଭାପଖାଳ, ସୁବାସ ପଖାଳ, ଏହି ଧୂପରେ ପୂର୍ବ ନିୟମାନୁଯାୟୀ ଲାଗି ହେଉଥିଲା କିନ୍ତୁ ବର୍ତ୍ତମାନର ଭୋଗ ତାଲିକାରେ କେବଳ କଦଳୀ ବଡ଼ା କ୍ଷୀରି, ସାକରା, ପିଠା ଓ କାଞ୍ଜି ଏହି ଧୂପରେ ଲାଗି ହେଉଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬, ପୂ.ଓ.ଭା. - ପୃ. ୫୩୧୩) ।

**ବଡ଼ସିଂହାରବେଶ**-*ଦେ.ବି.*- ଶ୍ରୀଜଗନ୍ନାଥ ପରମ୍ପରାରେ ପ୍ରତ୍ୟେହ ରାତ୍ର ୧୦.୩୦ମି. ବଡ଼ସିଂହାର ବେଶ ହେବାର ନିୟମ । ରାତ୍ର ପହଡ଼ ପୂର୍ବରୁ ଠାକୁରଙ୍କର ଅନୁଷ୍ଠିତ ହେଉଥିବା ବିଶେଷ ଶୃଙ୍ଗାର ବେଶ । ଏହି ବେଶରେ ଠାକୁରମାନେ ବାରଲାଗି ପାଟ, ଚନ୍ଦ୍ରିକା, କରପଲ୍ଲବ ଆଦି ବସ୍ତ୍ର ଓ ପୁଷ୍ପାଳଙ୍କାର ଲାଗି ହୁଅନ୍ତି । ବାରଲାଗି ପାଟ ଦେହରେ ଗୀତଗୋବିନ୍ଦର ଶ୍ଳୋକ ବୁଣାଯାଇଥାଏ । ଏହାକୁ ଓଡ଼ିଶାର ବିଶିଷ୍ଟ ଶ୍ରେଣୀର ବୁଣାକାରମାନେ ତିଆରି କରିଥାନ୍ତି । ଏହି ଧୂପରେ କେବଳ କଦଳୀ ବଡ଼ା, ପିଠା, ଖିରୀ, କାଞ୍ଜି ଓ ସାକରା ଭୋଗ ଲାଗି ହୁଏ । ଏହି ବେଶ ପାଇଁ ଶ୍ରୀରାମଦାସ ମଠ ଫୁଲର କରପଲ୍ଲବ, କୁଣ୍ଡଳ ଓ ତଡ଼ଗି ଯୋଗାଏ, ଏମାର ମଠ ଯୋଗାଏ ଫୁଲଚନ୍ଦ୍ରିକା । ଏଥିନିମନ୍ତେ ଉକ୍ତ ଦୁଇମଠ ଖଞ୍ଜା ଜମି ଭୋଗ କରନ୍ତି । ଚାଙ୍ଗଡ଼ା ମେକାପ ବାରଲାଗି ପାଟ ଯୋଗାଏ । ଚନ୍ଦନ ଲାଗି ପରେ ପୁଷ୍ପାଳକ ଚାଙ୍ଗଡ଼ ମେକାପ ଦେଇଥିବା ବାରଲାଗି ପାଟ ପିନ୍ଧାନ୍ତି । ମାଳଫୁଲ ଲାଗି କରାନ୍ତି । କର ପଲ୍ଲବ ଓ କୁଣ୍ଡଳ ଚନ୍ଦ୍ରିକା ଦୁଇ ଠାକୁରଙ୍କୁ ଓ ତଡ଼ଗି ଓ ଚନ୍ଦ୍ରିକା ସୁଭଦ୍ରାଙ୍କୁ ଲାଗିହୁଏ । ଏହି ବେଶରେ ଶ୍ରୀଠାକୁରମାନେ କେବଳ ଏକ ଫୁଲରେ ବେଶ ହୁଅନ୍ତି । ବେଶ ପରେ କର୍ପୂର ଲାଗି କରି ପୁଷ୍ପାଳକ ସିଂହାସନରୁ ତଳକୁ ଆସନ୍ତି ଓ ବଡ଼ସିଂହାର ଧୂପର ଆୟୋଜନ ହୋଇ ପୂଜା ପରେ ମନ୍ଦିର ଶୋଧ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬) ।

**ବଡ଼ି**-*ଦେ.ବି.*- ବଟା ମୁଗ ବା ବିରିକୁ ଛୋଟ ଗୋଲି କରି କୁଲା କିମ୍ବା ଡାଲା କିମ୍ବା ଟିଣ ପ୍ଲେଟ ଉପରେ ପକାଇ ତାକୁ ଶୁଖାଇ ତରକାରୀରେ ବ୍ୟବହାର କରିବା ନିମନ୍ତେ ରଖାଯିବା ପଦାର୍ଥ ।

ପହିଲି ଭୋଗରେ ଦରସୁଆ ବଡ଼ି ମଧ ଭୋଗରେ ଠାକୁରଙ୍କୁ ଲାଗି ହୁଏ । ବଡ଼ି ଖିରିସା ଷଷ୍ଠୀ ଓଷାରେ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୨, ପୂ.ଓ.ଭା. - ପୃ. ୫୩୧୪) ।

**ବଡ଼ୁସୁଆର ସେବା**-ଦେ.ବି.- ତୁଣସୁଆର - ଦୈନିକ ଭୋଗ, ପର୍ବପର୍ବାଣି ନିମନ୍ତେ ସମସ୍ତ ପ୍ରକାର ତୁଣ, ଖିରି, କଡ଼ମ୍ବା, ପଖାଳ, କାନିକା, ଏମାନେ ସବୁ ରାନ୍ଧିବେ । କାନିକାରେ ଯଗିଆ ମହାସୁଆର ସାମନାରେ ପନ୍ତିବଡ଼ୁ ଘିଅ ପକାଇବେ ।
ଥାଳି ସୁଆର- ଥାଳି ଅନ୍ନ, ଥାଳି ଖେଚେଡ଼ି, ସାଦା ଓ ଖିଆ ସନ୍ଧ୍ୟାଧୂପ ପଖାଳ ସବୁ ରାନ୍ଧିବେ । ଉପରୋକ୍ତମତେ ଘିଅ ପଡ଼ିବ । ଏମାନଙ୍କୁ ଯୋଗାଣ ଅନୁଯାୟୀ କାମ ଦିଆଯାଏ ।
ଅମାଲୁ ସୁଆର- ଦୈନିକ କୋଠ ଭୋଗ ପାଇଁ ଅମାଲୁ ପ୍ରସ୍ତୁତ କରନ୍ତି ଓ ପର୍ବପର୍ବାଣିରେ ମୋଡ଼ିଆ ସରୁ ଚକୁଳି ଓ ଅମାଲୁ ପ୍ରସ୍ତୁତ କରନ୍ତି । ସେବା ବଂଶାନୁକ୍ରମିକ । ଅଶୌଚ ହେଲେ ଅନ୍ୟ ବାଡ଼ର ସେବକ କାର୍ଯ୍ୟ ଚଳାଇବେ । ସବୁ ବାଡର ଅସୁବିଧା ହେଲେ ଅନ୍ୟ ସୁଆର ମହାସୁଆର ଦ୍ୱାରା କରାଯାଇପାରିବ । କାମ ତ୍ରୁଟି କଲେ ଖେଇ ଓ ପାଉଣା ବନ୍ଦ ହୋଇ ଅନ୍ୟ ସୂପକାର ନିଯୁକ୍ତି ହୋଇପାରିବେ ।
ନିତ୍ୟ ଶୁଦ୍ଧପୂତ ଭାବରେ ମଠା, ମକୁଟା କିମ୍ବା ଗାମୁଛା ପରିଧାନ କରି ରୋଷ ଭିତରକୁ ଯିବେ । ନିଶ, ଦାଢ଼ି ରଖିପାରିବେ ନାହିଁ । ମୁଣ୍ଡରେ ସିନ୍ଦୂର ଟୋପା ବା ଶିରି ଲଗାଇବେ ନାହିଁ । ଟେରି ରଖିପାରିବେ ନାହିଁ । ଛେକ ନେଲାବେଳେ ବାଘମୁହାଁ ବାନ୍ଧିବେ । ଘଡ଼ି, ଚଷମା ପ୍ରଭୃତି ସଉକିନ ଜିନିଷ ନେଇପାରିବେ ନାହିଁ । ସଂକ୍ରାମକ ରୋଗ ଥିଲେ ଯାଇପାରିବେ ନାହିଁ । ରୋଷରେ ଅଶ୍ଳୀଳ ଭାଷା ବା ସଙ୍ଗୀତ କହିପାରିବେ ନାହିଁ । ଅତି ବୟସର ବୁଢ଼ା ଓ ୧୨ ବର୍ଷରୁ କମ୍ ବୟସ୍କ ପିଲା ରୋଷମଧକୁ ଯାଇପାରିବେ ନାହିଁ ।
(ଶ୍ରୀ.ସ୍ୱ. ୧ମ - ପୃ. ୧୨୨) ।

**ବଡ଼ା ଭାତ**-ଦେ.ବି.-ପହିଲି ଭୋଗରେ ଶ୍ରୀଠାକୁରଙ୍କୁ ଲାଗି ହେଉଥିବା ଏକ ପ୍ରକାର ଅନ୍ନ ।
(ଶ୍ରୀ.ସ୍ୱ. - ପୃ. ୧୦୪) ।

**ବଢ଼ିଲା**-ଦେ.ବି.- ସରିଯିବା, ଶେଷ ହୋଇଯିବା ।

**ବଢ଼େଇ ସେବକ** - ଦେ.ବି.- ରଥ ନିର୍ମାଣ, ଚନ୍ଦନଯାତ୍ରା ସମୟରେ ଚାପ, ଝୁଲଣ ଯାତ୍ରା ନିମନ୍ତେ ବିମାନ ଓ କୁଞ୍ଜ ଏବଂ ପୂଜା ପାଇଁ ପିଢ଼ା, ରୁଖ ଓ ଭଦ୍ରାସନ ଇତ୍ୟାଦି ନିର୍ମାଣ କରୁଥିବା ବଢ଼େଇ ସେବକ ।
(ଶ୍ରୀ.ସ୍ୱ.- ପୃ. ୫୦-୫୬) ।

**ବଣଭୋଜି ବେଶ**-ଦେ.ବି.- ଭାଦ୍ରବ କୃଷ୍ଣ ଦଶମୀ ଦିନ ସନ୍ଧ୍ୟାଧୂପ ପରେ ଏହି ବେଶ କରାଯାଏ । ପୁଷ୍ପାଳକମାନେ ତିନିବାଡ଼ରେ ଏ ବେଶ କରନ୍ତି । ଏହି ବେଶ ପୁଷ୍ପାଳକ, ଭଣ୍ଡାର ମେକାପ, ପାଳିଆ ମେକାପ, ଖୁଣ୍ଟିଆ ଇତ୍ୟାଦି ସେବକଙ୍କ ସହଯୋଗରେ ହୋଇଥାଏ । ମଧ୍ୟାହ୍ନ ଧୂପ ପରେ ବଡ଼ବାଡ଼ରୁ ଏକ ଖଣ୍ଡ ଓ ଜଗନ୍ନାଥଙ୍କ ବାଡ଼ରୁ ଏକ ଖଣ୍ଡ ଆଜ୍ଞାମାଳ ଅଣାଯାଇ ସେହି ଆଜ୍ଞାମାଳ ଯଥାକ୍ରମେ ଦକ୍ଷିଣି ଘରେ ଥିବା ରାମକୃଷ୍ଣ ମୂର୍ତ୍ତିକୁ ଲାଗି କରାଯାଏ । ଏହାପରେ ରାମକୃଷ୍ଣଙ୍କୁ ବଟ ଦ୍ୱାରଠାରେ ପାଲିଙ୍କିରେ ବିଜେ କରି ବଡ଼ଛତା ମଠ ନିକଟ ଲକ୍ଷ୍ମି ଆଖଡ଼ା ଆଗରେ ଥିବା କାଠ ସିଂହାସନରେ ବିଜେ କରାଯାଏ । ସେଠାରେ କୋଳିବିକା ନୀତି କରାଯାଏ । ରାମକୃଷ୍ଣ ବିଜେ ହୋଇ ସାରିବା ପରେ ମହାପ୍ରଭୁଙ୍କର ବେଶ କରାଯାଏ । ଠାକୁର ବଡ଼ଛତା ମଠ ଆଗରେ କାଠ ସିଂହାସନ ଉପରେ ବିଜେ ହେବା ପରେ ଲେଙ୍କା ଜଗନ୍ନାଥଙ୍କ ରେଖସୁନ୍ଦରୀ ଦେଇଥିବା ଜଣେ ଲୋକ ଶବରୁଣୀ ବେଶ ହୁଏ ଓ ଗୁଆ କୋଳି ନଡ଼ିଆ ମିଶାଇ ଏକତ୍ର ନିମ୍ନଲିଖିତମତେ ଡାକେ, - "ପାଣିର ଫଳ ସିଙ୍ଗିଡ଼ାର କୋଳି ଖାଇବ ଆସ ଏ' ପୁଏ ।" ଭିତରଛ ମହାପାତ୍ର ଭକ୍ତ ଶବରୁଣୀଠାରୁ କୋଳି ନେଇ ଏକ ରୂପା ପିଙ୍ଗଣରେ ରଖି ସମର୍ପଣ କରି ମଣୋହି କରାନ୍ତି । ପଣ୍ଡା ଶୀତଳ ଭୋଗ ସମର୍ପଣ କଲା

ପରେ ଭିତରଛ ମହାପାତ୍ର ବନ୍ଦାପନା କରନ୍ତି । ଏହାପରେ ଠାକୁର ବାହୁଡ଼ା ବିଜେ ହୋଇ ଜଗମୋହନରେ ଥିବା ଖଟ ଶେଯ ଉପରେ ବିଜେ କରନ୍ତି । ଜଗନ୍ନାଥ ଓ ବଳଭଦ୍ରଙ୍କ ମସ୍ତକରେ ସୋଲ, ବେତ ଓ କନାରେ ନିର୍ମିତ ଚୂଳରେ ସୁନାକିଆ ଖୋସା ଯାଇଥାଏ । ଦୁଇଠାକୁରଙ୍କ ହସ୍ତରେ ଶିକାରେ (କନା ଓ ଜରିରେ ନିର୍ମିତ ଚାରି ଫୁଟ ଲମ୍ବର) ରୂପା ପିଙ୍ଗଳ ରଖାଯାଇ ତା' ମଧରେ ସର ରଖାଯାଏ ଓ ଅନ୍ୟ ହସ୍ତରେ ଏକ (ଯଷ୍ଟି) କାଠବାଡ଼ି ଧରାଇ ଦିଆଯାଏ । ଏହି ବେଶରେ ଠାକୁର ସ୍ୱତନ୍ତ ଭାବରେ ଦୁଇଟି ଖୁଆ ପେଡ଼ା ମାଳି ଧାରଣ କରନ୍ତି । ପରମ୍ପରାନୁସାରେ ମହାଭୋଇ ସେବକମାନେ ସର ଯୋଗାନ୍ତି । ଖୁଆପେଡ଼ା ମାଳି ପଟ୍ଟଯୋଶୀ ମହାପାତ୍ର ଯୋଗାନ୍ତି । ବଣକୁ ଗାଈ ଚରାଇବାକୁ ଯାଇଥିବା ମହାପ୍ରଭୁ ଭାତ ନ ନେଇ ସର ଲହୁଣୀ ନେଇକରି ଯାଆନ୍ତି । ଏହା ଜଣାଇବା ପାଇଁ ସିକାରେ ସର ଓ ଦେହରେ ଖୁଆପେଡ଼ାର ମାଳ ଲମ୍ବାନ୍ତି । ଜଗନ୍ନାଥ ଓ ବଳଭଦ୍ରଙ୍କୁ ରାମକୃଷ୍ଣ ଭାବରେ କଳ୍ପନା କରାଯାଇ ପୂର୍ଣ୍ଣ ଅବୟବଯୁକ୍ତ କରାଯାଏ । ଶ୍ରୀଚୈତନ୍ୟଙ୍କ ପରେ ଜଗନ୍ନାଥ କୃଷ୍ଣ ହୋଇଯିବାରୁ ତାଙ୍କ ସମୟରେ କିମ୍ବା ତାଙ୍କର ପରବର୍ତ୍ତୀ କେହି ସାଧୁ ଏହି ବେଶ ପ୍ରବର୍ତ୍ତନ ରାଜାଙ୍କ ଦ୍ୱାରା କରାଇଥିବାର ଅନୁମାନ କରାଯାଏ । କେତେକ ବିଦ୍ୱାନ୍ ମହାରାଜ ପ୍ରତାପରୁଦ୍ରଙ୍କ ସମୟରେ ଏହି ବେଶ ହେବାର ଯୁକ୍ତି ଦର୍ଶାଇଥାନ୍ତି । ବଳରାମ ଦୁଇ ହାତରେ ଶିଙ୍ଗା ଓ କ୍ଷୀର ଶିକା ତଥା କୃଷ୍ଣ (ଜଗନ୍ନାଥ)ଙ୍କ ହାତରେ ବଂଶୀ ଓ ଲହୁଣୀ ପସରା ମହାପ୍ରଭୁଙ୍କୁ ଓଡ଼ିଶାର ମାନବ କୁଳ ଓ ମହାଭୋଇକୁଳଙ୍କର ଅତି ନିକଟତର କରିଥାଏ । ପାଟଯୋଶୀ ମହାପାତ୍ର ଦେଇଥିବା ପେଡା ମାଳି ଲାଗି ହୁଅନ୍ତି । କାର୍ଯ୍ୟାଳୟ ତରଫରୁ ଦୁଇ ବାଡକୁ ଶିକା, ରୁପା ପିଙ୍ଗଣ ଓ ସର ଯୋଗା ହୋଇଥାଏ । ମଝିବାଡ ସକାଶେ ଜଗନ୍ନାଥ ବଲ୍ଲଭ ମଠରୁ ଯୋଗା ହୋଇଥାଏ । ବେଶ ସରିବା ପରେ ଭିତରେ ପାଣିପଡି ସନ୍ଧ୍ୟା ଧୂପ ପୂଜା ବସେ ଓ ଅନ୍ୟାନ୍ୟ ନୀତିମାନ ସମାପନ ହୁଏ ।
(ଶ୍ରୀ.ସ୍ୱ- ପୃ. ୯୧)

**ବଣିଆ ସେବକ**-*ଦେ.ବି.*- ଶ୍ରୀଠାକୁରମାନଙ୍କର ଅଳଙ୍କାର ତିଆରି, ମରାମତି ଓ ସଫେଇ କାର୍ଯ୍ୟ କରୁଥିବା ସେବକ । ଏମାନେ ସୋଲଚିତା, ସୁନା ଚିତା, ରାହୁରେଖା ଓ ବିନ୍ଧାଣି ନାୟକ ସେବାରେ ବିଭକ୍ତ ହୋଇ ସେବା କରିଥାନ୍ତି । (ଶ୍ରୀ.ସ୍ୱ. ୩ୟ - ପୃ. ୪୫, ୪୬, ୪୭) ।

**ବତିଶକଳା**-*ଦେ.ବି.*- ବତିଶ କଳାର ସମାହାର । ଚନ୍ଦ୍ରକଳା-୧୬କଳା + ସୂର୍ଯ୍ୟକଳା-୧୨କଳା + (ଉର୍ମି+ଧୂର୍ମି + ଜ୍ୟୋତି + ଜ୍ୱାଳା= ୪) = ୩୨ କଳା । ଶ୍ରୀଜଗନ୍ନାଥଙ୍କୁ ବତିଶି କଳାର ସମନ୍ୱୟ ବିଗ୍ରହ ବୋଲି ବର୍ଣ୍ଣନା କରାଯାଇଛି । (ଓ.ସାଂ.ଶ. - ପୃ. ୨୫୩) ।

**ବତିଶାକ୍ଷର ମନ୍ତ୍ର**-*ଦେ.ବି.*- "ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ । ହରେ ରାମ ହରେ ରାମ ରାମ ରାମ ହରେ ହରେ ।" ଏହା କଳିଯୁଗର ମହାମନ୍ତ୍ର- ବୈଷ୍ଣବଙ୍କ ବତିଶାକ୍ଷର ମହାନ୍ ଭଜନ କୀର୍ତ୍ତନ ମନ୍ତ୍ର, ପ୍ରତ୍ୟେକ ବୈଷ୍ଣବାନୁଷ୍ଠାନମାନଙ୍କରେ ନାମସଂକୀର୍ତ୍ତନରେ ଗାନ କରାଯାଏ । ଶ୍ରୀମନ୍ଦିର ବେଢ଼ା ଭିତରେ ପ୍ରତ୍ୟହ ଏହି ମନ୍ତ୍ର ଗାନ କରାଯାଇ ସଂକୀର୍ତ୍ତନ କରାଯାଏ ।
(ଓ.ସାଂ.ଶ. - ପୃ. ୨୫୩) ।

**ବନକ**-*ଦେ.ବି.*- ରଙ୍ଗ । ଶ୍ରୀମନ୍ଦିରରେ ସରଘର ଠାରେ ଠାକୁରଙ୍କ ଲାଗି ବନକ ବଟାଯାଏ । ଏହା ରୂପା ଷଡ଼େଇରେ ରଖାଯାଇ ମଧ୍ୟାହ୍ନଧୂପ ପରେ ଶ୍ରୀବିଗ୍ରହମାନଙ୍କର ବନକ ଲାଗି ବା ଚିତ୍ର କରାଯାଏ । ଚିତ୍ରକାର ବାହାର ବନକ ସେବକ ଦତ୍ତ ମହାପାତ୍ର ଭିତର ବନକ ସେବକ ଶ୍ରୀମୁଖ ସିଂହାରୀ । ଏକାନ୍ତ ପୂର୍ବରୁ ବୁଧବାର ଓ ଅନ୍ୟ କେତେକ ଦିନରେ ମହାପ୍ରଭୁଙ୍କ ଶ୍ରୀମୁଖରେ ବନକଲାଗି ହୁଏ ବା ଚିତ୍ର କରାଯାଏ । (ଶ୍ରୀ.ସ୍ୱ.- ପୃ. ୯୦-୯୧, ଉ.ଇ.ଅ.ଅ.- ପୃ. ୩୧୪) ।

**ବନକଲାଗି ନୀତି**-*ଦେ.ବି.*- ଶ୍ରୀଠାକୁରଙ୍କ ଶ୍ରୀମୁଖରେ ବନକଲାଗି ହେବା ଏକ ବିଶେଷ ନୀତି । ସପ୍ତାହରେ ବୁଧବାର ବା ଗୁରୁବାର ଦିନ ଦ୍ୱିପ୍ରହର ଧୂପ ପରେ ବିଗ୍ରହମାନଙ୍କୁ ବନକଲାଗି କରାଯାଏ । ଏହି ବନକ ହିଙ୍ଗୁଳ, ହରିତାଳ, ଶଙ୍ଖ, କେଶର, କର୍ପୂର, କଇଁଥ ଅଠା, କସ୍ତୁରୀ, କଜ୍ଜଳ ଓ ତେଲର ସମ୍ମିଶ୍ରଣରେ ପ୍ରସ୍ତୁତ କରାଯାଏ । ଦତ୍ତ ମହାପାତ୍ର ଏହି ନୀତି ସମ୍ପାଦନ କରନ୍ତି । ଏହି ନୀତିକୁ 'ଶ୍ରୀମୁଖସିଂହାର' କୁହାଯାଏ । ନବକଳେବର ବିଧିରେ ମଧ ଠାକୁର ବନକଲାଗି ହୋଇଥାନ୍ତି ।
(ଶ୍ରୀ.ସ୍ୱ. ୩ୟ - ପୃ. ୯୦) ।

**ବନଯାଗ**-*ଦେ.ବି.*- ନବକଳେବର ଦାରୁ ସଂଗ୍ରହ କରିବା ନିମନ୍ତେ ଯାତ୍ରା । ଚୈତ୍ର ଶୁକ୍ଳ ଦଶମୀ ଦିନ ମଧାହ୍ନ ଧୂପ ପରେ ପତି ମହାପାତ୍ର, ଦଇତା, ଲେଙ୍କା, ବିଶ୍ୱକର୍ମା ଆଜ୍ଞାମାଳ ଲାଭ କରି ଶାଢ଼ିବନ୍ଧା କାର୍ଯ୍ୟ ଶେଷ ପରେ ଗଜପତିଙ୍କଠାରୁ ଗୁଆ ନଡ଼ିଆ ନେଇ କାକଟପୁର ମଙ୍ଗଳାଙ୍କ ନିକଟକୁ ଯାତ୍ରା କରନ୍ତି । ଏମାନଙ୍କୁ ବନଯାଗୀ କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୬୪) ।

**ବନେଇବା**-*ଦେ.ବି.*- ପରିବା କାଟିବା । ରୋଷ କାର୍ଯ୍ୟ ସମ୍ପାଦନ ପାଇଁ ନିଯୁକ୍ତ ସେବକ ପରିବା କାଟିଥାନ୍ତି ।
(ଶ୍ରୀ.ଶ.- ପୃ.୧୨୧) ।

**ବରଗଣିଆ**-*ଦେ.ବି.*- ଚାର, ବାର୍ତ୍ତା ଦେବାନେବା କରନ୍ତି । ଲେଙ୍କା ଗୋଷ୍ଠୀର ସେବକ । ଶ୍ରୀମନ୍ଦିରରେ ସାତପୁରୀ ଓ ମକରରେ କୁମ୍ଭାରଠାରୁ ତାଡ଼ ଆଣି ଦେବା ଓ ଶାଢ଼ୀ ବନ୍ଧା ବେଳେ ମହାପ୍ରସାଦ ନେବା ଆଦି କାର୍ଯ୍ୟ ସମ୍ପାଦନ କରୁଥିବା ସେବକ ।
(ଶ୍ରୀ.ସ୍ୱ - ପୃ. ୭୬) ।

**ବରଗିବା**-*ଦେ.କ୍ରି.*- କୌଣସି କାର୍ଯ୍ୟରେ ନିୟୋଗ କରିବା ବା ଦୂତ ଆଦି ପଠାଇବା ।
(ପୂ.ଓ.ଭା. - ପୃ. ୫୩୭୩) ।

**ବରାହ ନାରାୟଣ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଅବସ୍ଥିତ । ପୂଜାପଣ୍ଡା ସେବକ ଏଠାରେ ପୂଜା ସେବା କରନ୍ତି କିନ୍ତୁ ଠାକୁରଙ୍କ ପାଇଁ କୌଣସି ଭୋଗ ଖଞ୍ଜା ନାହିଁ ।
(ଶ୍ରୀ.ସ୍ୱ. ୨ୟ - ପୃ.୨୪୨) ।

**ବରାହ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଏହି ମନ୍ଦିର ବିରାଜମାନ । ବିମଳାଙ୍କ ପାଳିଆ ସେବକ ଏହି ଠାକୁରଙ୍କୁ ପୂଜା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୫) ।

**ବଳଗଣ୍ଡି**-*ଦେ.ବି.*- ଶ୍ରୀମନ୍ଦିର ଓ ଶ୍ରୀଗୁଣ୍ଡିଚା ମନ୍ଦିରର ମଧ୍ୟବର୍ତ୍ତୀ ଅଞ୍ଚଳ । ମାଉସୀ ମା' ଘର ଏହି ଅଞ୍ଚଳରେ ଅବସ୍ଥିତ । ଶ୍ରୀମନ୍ଦିର ଓ ବୃହତ୍ତମ ଭୂଖଣ୍ଡ ମଧରେ ପ୍ରବାହିତ ମାଳିନୀ ନଦୀର ଏହା ବଡ଼ ଗଣ୍ଡ ଥିଲା । ସମ୍ଭବତଃ ତାହାର ଏହି ଅପଭ୍ରଂଶ ରୂପ । ରଥଟଣା ସମୟରେ ରଥ ଏଠାରେ ଅଟକି ରହେ ।
(ଓ.ସାଂ.ଶ. - ପୃ. ୨୫୬, ପୂ.ଓ.ଭା. - ପୃ. ୫୪୦୮) ।

**ବଳଭଦ୍ର**-*ଦେ.ବି.*- ଶ୍ରୀମନ୍ଦିରରେ ଚତୁର୍ଦ୍ଧା ମୂର୍ତ୍ତି ପୂଜିତ ଯଥା - ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ ପୂଜା ପାଉଛନ୍ତି । ସେମାନଙ୍କ ମଧରେ ବଳଭଦ୍ର ଜ୍ୟେଷ୍ଠ ଭ୍ରାତା ରୂପେ କଳ୍ପିତ । ବଳଭଦ୍ର, ବଳଦେବ, ବଳରାମ, ପ୍ରଳମ୍ବଘ୍ନ, ତାଳାଙ୍କ, ମୂଷଳୀ, ହଳୀ, ରେବତୀ ରମଣ, ରାମ, କାମପାଳ, ହଳାୟ, ନୀଳାମ୍ବର, ରୋହିଣେୟ, ସଙ୍କର୍ଷଣ, ଶିରପାଣି, କାଳନ୍ଦୀ ଭେଦନ, ବଳ ଆଦି ନାମରେ ଅଭିହିତ । ଶଙ୍ଖ, କୁନ୍ଦପୁଷ୍ପ, ଇନ୍ଦୁ ବା ଚନ୍ଦ୍ରଙ୍କ ପରି ବଳଦେବ ଶୁକ୍ଳବର୍ଣ୍ଣ ଓ ଦ୍ୱିଭୁଜ ବିଶିଷ୍ଟ । ତାଙ୍କ ଦକ୍ଷିଣ ହସ୍ତରେ ମୂଷଳ ଓ ବାମହସ୍ତରେ ହଳାୟୁଧ ଶୋଭିତ । ସେ ବଳପୂର୍ବକ ଦେବକୀଙ୍କ ଗର୍ଭରୁ ଆସି ରୋହିଣୀଙ୍କ ଗର୍ଭରେ ଅବସ୍ଥାପିତ ହୋଇଥିବାରୁ ତାଙ୍କ ନାମ ହେଲା ସଙ୍କର୍ଷଣ । ଅଧିକ ବଳ ଥାଇ ମଧ ସୌମ୍ୟ ଦର୍ଶନ ହୋଇଥିବାରୁ ସେ ବଳୀ, ବଳ, ବଳରାମ, ବଳଭଦ୍ର ଆଦି ନାମରେ ପରିଚିତ । ହଳ ଆୟୁଧ ଧାରଣ କରିଥିବାରୁ ସେ ହଳୀ, ଶିରପାଣି, ହଳଭୃତ୍, ହଳାୟୁଧ ନାମରେ

ଅଭିହିତ । ମୁଷଳ ଆୟୁଧ ଧାରଣ କରିଥିବାରୁ ସେ ମୁଷଳୀ ଓ ସୌନନ୍ଦୀ । ରୋହିଣୀ ଗର୍ଭରୁ ଅବତୀର୍ଣ୍ଣ ହୋଇଥିବାରୁ ରୋହିଣେୟ, ରେବତୀଙ୍କ ପାଣିଗ୍ରହଣ କରିଥିବାରୁ ରେବତୀ ରମଣ ଏବଂ ପ୍ରଳମ୍ବାସୁରକୁ ନିଧନ କରିଥିବାରୁ ପ୍ରଳମ୍ବଘ୍ନ ନାମରେ ନାମିତ ।
(ଶ୍ରୀ.ଶ୍ରୀ. ୧ମ - ପୃ. ୩୬) ।

**ବଳଭଦ୍ର ଜନ୍ମ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରାବଣ ପୂର୍ଣ୍ଣିମାରେ ଏହି ନୀତି ପାଳିତ ହୁଏ । ଏହାକୁ ଗହ୍ମାପୂର୍ଣ୍ଣିମା ବା ରାକ୍ଷୀପୂର୍ଣ୍ଣିମା ବୋଲି କୁହାଯାଏ । ଏହି ଦିନ ବୋଇରାଣୀ ପତନି ସୁନାଲାଗି ଥିବା ପାଟରାକ୍ଷୀ ମହାପ୍ରଭୁଙ୍କଠାରେ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୭/୮୮, ପୂ.ଓ.ଭା. - ପୃ. ୫୪୧୨) ।

**ବଳଭଦ୍ର ବଲ୍ଲଭ**-*ଦେ.ବି.*- ଜଗନ୍ନାଥ ବଲ୍ଲଭ ମଠ ସମ୍ମୁଖସ୍ଥ ପୋଖରୀଆ ଅଞ୍ଚଳ ଓ ମ୍ୟୁନିସିପାଲିଟି ସମେତ ସ୍ଥାନର ପ୍ରାଚୀନ ନାମ । ବର୍ତ୍ତମାନ ଏଠାରେ ପୌରପାଳିକା ମାର୍କେଟ ପ୍ରତ୍ୟହ ଖୋଲାରହୁଛି ।
(ପୁ.ବୋ. - ପୃ. ୨୫୮) ।

**ବଳିତା**-*ଦେ.ବି.*- କପା ତୁଳାରେ ପ୍ରସ୍ତୁତ । ଏହା ଆଳତିରେ ବ୍ୟବହୃତ ହୁଏ ।

**ବଳିତା ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଠାକୁରଙ୍କ ଆଳତି ସକାଶେ ବଳିତା ଯୋଗାଉଥିବା ସେବକ । ଦିନଯାକ ଆଳତିରେ ଯେତେ ବଳିତା ଦରକାର ହୁଏ, ଏହି ସେବକ ସବୁ ଯୋଗାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ବଳିତା ବସାଇବା**-*ଦେ.କ୍ରି.*- ଠାକୁରଙ୍କ ସମ୍ମୁଖରେ ବା ଠାକୁରଙ୍କ ଉଦ୍ଦେଶ୍ୟରେ ତୁଳସୀ ଗଛ, ମୂଳରେ ସକାଳ ଓ ସନ୍ଧ୍ୟାରେ ଘିଅବତୀ ଭକ୍ତ ବା ସେବକମାନେ ଜାଳନ୍ତି । ଏହି ଘିଅବତୀ ବସାଇବା ବେଳେ ନିଜର ଅଭୀଷ୍ଟ ପୂର୍ଣ୍ଣ ପାଇଁ କିମ୍ବା ସନ୍ତାନସନ୍ତତିମାନଙ୍କର ମଙ୍ଗଳ କାମନା କରାଯାଏ ।
(ପୂ.ଓ.ଭା. - ପୃ. ୫୪୧୯) ।

**ବଳିଦାନ କରିବା**-*ଦେ.କ୍ରି.*- ଦେବଦେବୀଙ୍କ ଉଦ୍ଦେଶ୍ୟରେ ପଶୁବଧ, ବୈଶ୍ୱଦେବ, ଭୂତ ଓ ପିତୃଗଣଙ୍କୁ ପିଣ୍ଡ ପ୍ରଦାନ କରିବା । ଦେବୀ ପୂଜାରେ ମଧ୍ୟ ବଳିଦାନ କରାଯାଏ । ଆଶ୍ୱିନ ମାସର ନବରାତ୍ର ପୂଜାରେ ସପ୍ତମୀ, ଅଷ୍ଟମୀ ଓ ନବମୀରେ ଦୁର୍ଗା, ଚଣ୍ଡୀ, କାଳୀଙ୍କ ନିକଟରେ ଚାରି ବୋଦା, ମାଛ ଓ କେଉଁଠି କେଉଁଠି ପାଣିକଖାରୁ ବଳି ପଡ଼ିଥାଏ । ଶ୍ରୀମନ୍ଦିରରେ ବିମଳାଙ୍କ ସମ୍ମୁଖରେ ଉପରୋକ୍ତ ଦିବସର ରାତ୍ରରେ ବଳିଦାନ ଓ ଗୁପ୍ତ ପୂଜାର ବ୍ୟବସ୍ଥା ରହିଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୮, ପୂ.ଓ.ଭା. - ପୃ. ୫୪୨୦) ।

**ବଳିବାମନ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାର ଉପର ଘରେ ଏହି ବିଗ୍ରହ ବିଦ୍ୟମାନ ।
(ଶ୍ରୀ.ସ୍ୱ. - ପୃ. ୨୧୫) ।

**ବଳିବାମନ ମୁଗ**-*ଦେ.ବି.*- ଅଦା ଛୋଟ ଛୋଟ କଟା ହୋଇ ପ୍ରସ୍ତୁତ ହୋଇଥିବା ଗୋଟା ମୁଗ ତରକାରୀ । ମକରଚଉରାଣିରେ ଭୋଗ ଲାଗେ ।
(ଶ୍ରୀ.ଛି. - ୧୯୬) ।

**ବଳିଭୋଜା**-*ଦେ.ବି.*- ପୂଜୋପହାର, ନୈବେଦ୍ୟ, ଭୋଜା ବଳି ପୂଜା । ଏଠାରେ ପଶୁବଳି ନାହିଁ ।
(ଓ.ସାଂ.ଶ. - ପୃ. ୨୫୬) ।

**ବଳି ମଣ୍ଡପ**-*ଦେ.ବି.*- ଗୁଣ୍ଡିଚା ମନ୍ଦିରସ୍ଥ ମଧ୍ୟାହ୍ନ ଧୂପରେ ଭୋଗ ବାଢ଼ିବା ମଣ୍ଡପ ।
(ଶ୍ରୀ.ସ୍ୱ.- ପୃ. ) ।

**ବଳୀୟାର**-*ଦେ.ବିଣ.*- ବଳୀୟାନ, ବଳବତ୍ତର, ବଳିଷ୍ଠ । ଶ୍ରୀଜଗନ୍ନାଥଙ୍କୁ ବଳୀୟାର ଭୁଜ (ବଳିଷ୍ଠ ବାହୁ) ବୋଲି ଡକାଯାଏ । କାରଣ ସେ ତାଙ୍କର ବଳିଷ୍ଠ ଭୁଜରେ ପାପତାପ ସଂସାରରୁ ତାରଣ କରନ୍ତି ।
(ପୂ.ଓ.ଭା. - ପୃ. ୫୪୧୮) ।

**ବଳିୟାର ଭୁଜ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କୁ ବଳିୟାର ଭୁଜ, ଶରଣ ଦାତା, ତ୍ରାଣକର୍ତ୍ତା ରୂପେ ସମ୍ବୋଧନ କରାଯାଏ ।
(କ୍ଷେ.ସ.) ।

**ବଳିରାଜ**-*ଦେ.ବି.*- ଶ୍ରୀଠାକୁରଙ୍କ ଦକ୍ଷିଣାୟନ ବନ୍ଦାପନା ସମୟରେ ପଣ୍ଡା, ପତି, ସୁଆରବଡୁ ଇତ୍ୟାଦି ତୁଣ ସୁଆରଠାରୁ ଓଳିଏ ବଳିଭାତ ନେଇ ମନ୍ଦିର ଚତୁର୍ଦ୍ଦିଗରେ ଅନ୍ନବଳି ଦିଅନ୍ତି । ରଥରେ ଠାକୁର ଥାଇ ସଂକ୍ରାନ୍ତି ପଡ଼ିଲେ ଏହି ନୀତି ମଧ୍ୟ ରଥରେ କରାଯାଏ । ମାତ୍ର ଅନ୍ନ ବଦଳରେ ଶୁଖିଲା ଚାଉଳ ଓ ବିରି ଦ୍ୱାରା ବଳି ଦିଆଯାଏ । ଏହି ଚାଉଳ, ବିରି ପର୍ବଯାତ୍ରା ଯୋଗାଣିଆ ଯୋଗାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୪) ।

**ବଲ୍ଲଭ**-*ଦେ.ବି.*- ପ୍ରିୟତମ । ଶ୍ରୀମନ୍ଦିରର ଶ୍ରୀଠାକୁରମାନଙ୍କର ପ୍ରାତଃକାଳୀନ ଭୋଗ, ଗୋପାଳବଲ୍ଲଭ ବା ସକାଳର ଜଳଖିଆ । ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ନଅ ଘଣ୍ଟା । ଏହି ନୀତି ପାଇଁ ପାଗ ଖଇ, ନଡ଼ିଆ କୋରା, ପାଚିଲା କଦଳୀ, ଖଣ୍ଡ, ଦହି, ଲବଣୀ, ପାତି ବା ଖୁଦି ନଡ଼ିଆ ଆବଶ୍ୟକ। ଧନୁମାସରେ ବଲ୍ଲଭ ଅଲଗା ନ ହୋଇ ପହିଲିଭୋଗ ସହ ହୁଏ । ଦୋଳପୂର୍ଣ୍ଣିମା ଓ ସ୍ନାନପୂର୍ଣ୍ଣିମାରେ ବଲ୍ଲଭ ଅଲଗା ନ ହୋଇ ସକାଳ ଧୂପ ସହିତ ଲାଗେ । ଅନବସର ପନ୍ଦର ଦିନ ବଲ୍ଲଭ ଭୋଗ ବସେ ନାହିଁ । ମାତ୍ର ଜଣେ ପୂଜାପଣ୍ଡା ଆସି ଜୟବିଜୟ ଦ୍ୱାର ନିକଟରେ ଠିଆହୋଇ ସମର୍ପଣ କରିଦିଅନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୭, ଓ.ସାଂ.ଶ. - ପୃ. ୨୫୫) ।

**ବଲ୍ଲଭଘର**-*ଦେ.ବି.*- ଶ୍ରୀମନ୍ଦିରରେ ବଲ୍ଲଭ ଭୋଗ ସାମଗ୍ରୀ ରହୁଥିବା ଘର ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୫୨) ।

**ବଲ୍ଲଭପିଣ୍ଡି**-*ଦେ.ବି.*- ଅଣସର ପିଣ୍ଡି । ଏଠାରେ ଗୋପାଳ ବଲ୍ଲଭ ପୂଜା ଅନୁଷ୍ଠିତ ହୁଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୭) ।

**ବଲ୍ଲଭ ବଡ଼ସିଂହାର**-*ଦେ.ବି.*- କେତେକ ବିଶେଷ ଦିନରେ ବଡ଼ସିଂହାର ପରେ ଏକ ଅତିରିକ୍ତ ଭୋଗ । ଶୟନ ଏକାଦଶୀ, ପାର୍ଶ୍ୱ ପରିବର୍ତ୍ତନ, ଉତ୍‌ଥାପନ, ଓଢ଼ଣ ଷଷ୍ଠୀ ଆଦି ପୂର୍ବଦିନମାନଙ୍କରେ ବଡ଼ସିଂହାର ପରେ ଆଉଥରେ ସବୁ ବାଡ଼ରେ ମହାସ୍ନାନ ନୂଆ ଲୁଗା ଲାଗି, ସର୍ବାଙ୍ଗ ବେଶ ପରେ ଏହି ଘଣ୍ଟ ଛତା ଲାଗି ଭୋଗ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୨) ।

**ବଲ୍ଲଭ ଯୋଗାଣିଆ ସେବା**-*ଦେ.ବି.*- ଗୋପାଳ ବଲ୍ଲଭ ସାମଗ୍ରୀ ଯୋଗାଉଥିବା ସେବକ । ରୋଷ ହୋମ ପରେ ଧୁକୁଡ଼ି ଦ୍ୱାରଠାରେ ସୁଦୁସୁଆର ଭୋଗ ସାମଗ୍ରୀ ଦିଅନ୍ତି । ମନ୍ଦିରର ପାର୍ଶ୍ୱଦେବତାଙ୍କ ପାଇଁ ଖଞ୍ଜାଥିବା ବଲ୍ଲଭ ପହଞ୍ଚାନ୍ତି । ଅଣସର ସମୟରେ ଜୟବିଜୟ ଦ୍ୱାରଠାରେ ଜଗନ୍ତି । ରଥ ଉପରକୁ ଗୁଣ୍ଡିଚା ଘରକୁ ପ୍ରଧାନୀ ସହ ବଲ୍ଲଭ ନିଅନ୍ତି । ଛତାର, ବିମାନ ବଡୁ, ଧୋ-ପଖାଳ, ବାହାର ଦେଉଳି, ଯୋଗାଣିଆ ଆଦି ଗୋଷ୍ଠୀର ସେବକ ଏ ସେବା କରିଥାନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୦୧) ।

**ବଲ୍ଲଭ ସରଘର**-*ଦେ.ବି.*- ଶ୍ରୀମନ୍ଦିରର ବାହାର ବେଢ଼ାରେ ଥିବା ଏହି ଘରେ ବଲ୍ଲଭ ତିଆରି ହୋଇ ବଡ଼ଦେଉଳ ବେଢ଼ାରେ ଥିବା ଅନ୍ୟ ଦେଉଳ ଓ ବାହାର ଖଞ୍ଜାରେ ଥିବା ଦେଉଳକୁ ଯୋଗାଇ ଦିଆଯାଏ । ବଲ୍ଲଭ ଯୋଗାଣିଆ ଏହି କାର୍ଯ୍ୟ ସମ୍ପାଦନା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୨୫୨ ) ।

**ବଂଶୀକାର**-*ଦେ.ବି.*- ତିନିଧୂପ ଓ ବଡ଼ସିଂହାର ବେଳେ ବଂଶୀବାଦନ କରୁଥିବା ସେବକ ।
(ପୁ.ବୋ.- ପୃ. ୨୬୭) ।

**ବର୍ଷପଡ଼ି ଶାଢ଼ୀ**-*ଦେ.ବି.*- ଶ୍ରୀମନ୍ଦିର ପରମ୍ପରାରେ ପୁଷ୍ୟାଭିଷେକ ଦିନ ମୁଦିରଥଙ୍କ ମସ୍ତକରେ ଅଣସର ପିଣ୍ଡିରେ ବନ୍ଧାଯିବା ଶାଢ଼ୀ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୦୬) ।

**ବସନ ଭୂଷଣ**-*ଦେ.ବି.*- ଶ୍ରୀମନ୍ଦିର ବିଗ୍ରହମାନଙ୍କ ପିନ୍ଧା ବସ୍ତ୍ର ଓ ବିଭିନ୍ନ ଅଳଙ୍କାର ।

**ବସନ୍ତୋତ୍ସବ**-*ସଂ.ବି.*- ପୂର୍ବେ ମାଘ ଶୁକ୍ଳ ପଞ୍ଚମୀର ପରଦିନ ଅର୍ଥାତ୍ ଓ ଷଷ୍ଠୀରେ କାମଦେବ ଓ ବସନ୍ତର ପୂଜା କରାଯାଉଥିବା ଉତ୍ସବ । ଏହାକୁ ମଧ୍ୟ ମଦନୋତ୍ସବ କୁହାଯାଏ । ପୂର୍ବେ ଏ ଉତ୍ସବ ଚୈତ୍ର

ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଥିଲା । ଅଧୁନା ଫାଲଗୁନ ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଅଛି । (ଶ୍ରୀ.ସ୍ୱ. ୨ୟ - ପୃ.୧୦୮, ପୂ.ଓ.ଭା. - ପୃ. ୫୪୩୩) ।

**ବସନ୍ତ ଗୁଣ୍ଡିଚା**-*ଦେ.ବି.*- ବସନ୍ତ ପଞ୍ଚମୀ ଦିନ ଦୋଳଗୋବିନ୍ଦ, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ଫଗୁ ଖେଳ ଓ ଶିକାର ନିମନ୍ତେ ନରେନ୍ଦ୍ର ଓ ଜଗନ୍ନାଥବଲ୍ଲଭ ବା ବସନ୍ତ ଗୁଣ୍ଡିଚା ତୋଟାକୁ ଯାତ୍ରା କରନ୍ତି । ବସନ୍ତ ପଞ୍ଚମୀ ଦିନ ଦୋଳଗୋବିନ୍ଦ, ଲକ୍ଷ୍ମୀ ସରସ୍ୱତୀ ବିମାନରେ ପଛରେ ପଞ୍ଚପାଣ୍ଡବ ବିଜେ କରନ୍ତି । ସେଠାରେ ସେମାନଙ୍କ ଭିତରେ ଫଗୁଖେଳ ନୀତି ଅନୁଷ୍ଠିତ ହୁଏ । ତାହା ପରେ ଠାକୁର ଶିକାର ନିମନ୍ତେ ବେଣ୍ଟପୋଖରୀ ବିଜେ କରନ୍ତି ।
(ପୁ.ବୋ.- ପୃ.୧୮୧-୧୮୨) ।

**ବସନ୍ତ ଗୁଣ୍ଡିଚା ତୋଟା**-*ଦେ.ବି.*- ପୁରୀର ନରେନ୍ଦ୍ର ପୋଖରୀ ଓ ଜଗନ୍ନାଥ ବଲ୍ଲଭ ଅଞ୍ଚଳ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୬) ।

**ବସନ୍ତ ପଞ୍ଚମୀ**-*ଦେ.ବି.*- ମାଘ ଶୁକ୍ଳ ପଞ୍ଚମୀ । ଶ୍ରୀମନ୍ଦିରରେ ଏହିଦିନ ଦକ୍ଷିଣି ଘରୁ ଲକ୍ଷ୍ମୀ, ସରସ୍ୱତୀ ଓ ଦୋଳଗୋବିନ୍ଦ ବିମାନରେ ବସି ବସନ୍ତ ଗୁଣ୍ଡିଚା ତୋଟା ବା ନରେନ୍ଦ୍ର ଚକଡ଼ାକୁ ବିଜେ କରନ୍ତି । ଏହି ଦିନଠାରୁ ଘୋଡଲାଗି ବେଶ ଉଠିଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୯) ।

**ବସନ୍ତ ଭୂଇଁ**-*ଦେ.ବି.*- ଶ୍ରୀଠାକୁରଙ୍କ ଶ୍ରୀମୁଖର ପୀତ ରଙ୍ଗର ରଞ୍ଜିତ ଅଂଶ ଯାହା, ଚମ୍ପା ଫୁଲ ପରି ହଳଦିଆ ବା ଫିକା ହଳଦିଆ ।
(ପୁ.ବୋ. - ପୃ. ୨୫୮) ।

**ବସ୍ତ୍ର ଉଲାଗି**-*ସଂ.ବି.*- ଶ୍ରୀମନ୍ଦିରରେ ରାତ୍ର ଏକ ପ୍ରହର ଥାଉଣୁ ଠାକୁରମାନଙ୍କର ବସ୍ତ୍ର ଉଲାଗି କରି (ବସ୍ତ୍ର ଉତାରି) ଖଣ୍ଡିଏ ଲେଖାଏଁ ଖଦି ପିନ୍ଧାଇବା ନୀତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫-୨୬) ।

**ବସ୍ତ୍ରଭୂଷା**-*ସଂ.ବି.*- ଶ୍ରୀଜଗନ୍ନାଥଙ୍କ ଦୈନିକ ବେଶ ଓ ବିଭିନ୍ନ ପର୍ବପର୍ବାଣିରେ ନିମ୍ନ ଲିଖିତ ବସ୍ତ୍ରମାନ ଲାଗି ହୋଇଥାଏ । ଯାଥା- ଅଧରବଳା, ଆଳୁମୁଣ୍ଡିଆ ଲୁଗା, ତଳମାଳ, କାଣ୍ଡହେଙ୍ଗୁଳ, କାନ୍ଧ ପଇତି, କିନାରୀ, କୁସୁମୀ, କେନ୍ଦୁଲି ଫେଟା, ଖଣ୍ଡୁଆ, ଖସାପଡ଼ା, ଗଡ଼ା, ଗଦି ଫେଟା, ଗିଲାସ, ଘଣା, ଘୋଡ଼, ଟେକା ଘୋଡ଼, ଠିଆଘୋଡ଼, ଚଞ୍ଚୁଶାଢ଼ୀ, ଚନ୍ଦନଗୁଡ଼ା, ଚିହିଲି / ଚେହେଲି, ଚେମେଡ଼ି, ଚୋରି ନେତ, ଜାମା, ଝଲକ, ଝୋଲି ଲୁଗା, ତଡ଼ପ, ତାରାବଳୀସଜ, ପଇତାଲାଗି, ପତନି, ପହରଣା, ପାଗପଟି, ପ୍ରଧାପନା, ଫୁଟା, ଫୁଲପୁରିଆ ଖଦି, ବସ୍ତ୍ର ଘଡ଼ି ଶାଢ଼ୀ, ବହୁରୁଣି, ବାରପାଟି ଲୁଗା, ବାରଲାଗି, ବୀରବର ବାନା, ବୋଳା, ମାଧାବଳୀ ସଜ, ମୁକୁସାବାଦି କାଛ, ଗୋଡ଼ା, ଯାଉଁଳିକରଡ଼ା ଓ ଶିରକପଡ଼ା ।
(ପୁ.ବୋ. - ପୃ. ୧୧୮-୧୨୨) ।

**ବସ୍ତ୍ର ହରଣ ଲୀଳା**-*ସଂ.ବି.*- ଭାଦ୍ରବ ଅମାବାସ୍ୟା, ସପ୍ତପୁରୀ ଅମାବାସ୍ୟା । ଶ୍ରୀମନ୍ଦିରରେ ଭାଦ୍ରବ ମାସ ଅମାବାସ୍ୟା ଦିନ ସନ୍ଧ୍ୟା ଧୂପ ପରେ ମଦନମୋହନ ସିଂହାସନ ଉପରକୁ ବିଜେ କଲା ପରେ ଆଜ୍ଞାମାଳ ପାଇ ଉତ୍ତର ପାର୍ଶ୍ୱ ନାଟପା ମନ୍ଦିର ଖଟକୁ ବିଜେ କରନ୍ତି । ପରେ ତାହାଙ୍କ ସମ୍ମୁଖରେ କାଳିକା ଦେବୀ ସାହିର ଲୋକେ ବସ୍ତ୍ରହରଣ ପ୍ରସ୍ତାବ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୩) ।

**ବସାଣ(ଣି)**-*ଦେ.ବି.*- ଶ୍ରୀମନ୍ଦିର ରୋଷଘରେ କାକରା, ଅମାଲୁ, ପିଠା ଆଦି ଉପରକୁ ଉପର ସଜାଇ ରଖିବା ପାଇଁ ବ୍ୟବହୃତ ପଲମ, ତାଡ଼ ବା ତାଡ଼ିଆ ।
(ପୂ.ଓ.ଭା. - ପୃ. ୫୪୩୪) ।

**ବସୁଦେବ**-*ସଂ.ବି.*- ଶ୍ରୀକୃଷ୍ଣଙ୍କ ପିତା । ବସୁଦେବ ଯଦୁବଂଶର ରାଜା, ଏହାଙ୍କର ବାରଜଣ ପତ୍ନୀ ଥିଲେ । ସେମାନଙ୍କଧରୁ ରୋହିଣୀ ଗର୍ଭରୁ ବଳରାମ ଓ ଦେବକୀଙ୍କ ଗର୍ଭରୁ ଶ୍ରୀକୃଷ୍ଣ ଜନ୍ମ ଲାଭ କରିଥିଲେ । ପାଣ୍ଡବଙ୍କ ମାତା କୁନ୍ତୀ ଏହାଙ୍କର ଭଗିନୀ ଥିଲେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୯, ପୂ.ଓ.ଭା. - ପୃ. ୫୪୩୮, ଓ.ସାଂ.ଶ. - ପୃ. ୨୫୭) ।

**ବସୁଧାରା**-*ସଂ. ବି.*- ଆଭ୍ୟୁଦୟିକ ବା ନାନ୍ଦୀମୁଖ ଶ୍ରାଦ୍ଧ ପୂର୍ବରୁ ଗୃହର କାନ୍ଥରେ ଘୃତର ସାତୋଟି ଧାରା ଦିଆଯାଇ ତାହାର ମୁଣ୍ଡରେ ଚନ୍ଦନ ଓ ସିନ୍ଦୂର ଟୋପା ମାରିବାରୂପ କୃତ୍ୟ ବିଶେଷ । ଏ କୃତ୍ୟରେ ରାଜା ବସୁଙ୍କ ଉଦ୍ଦେଶ୍ୟରେ ଘୃତରେ ସାତଟି ଧାରା କାନ୍ଥରେ ଦିଆଯାଏ । ପ୍ରଥମେ କାନ୍ଥରେ ଚନ୍ଦନଦ୍ୱାରା ସାତଟି ବିନ୍ଦୁ ଚିହ୍ନ କରାଯାଏ । ପରେ ବେଦମନ୍ତ୍ର ପାଠପୂର୍ବକ ପାତ୍ରୀର ମୁଖକୁ କାନ୍ଥରେ ଲଗାଇ ତଳକୁ ଧାର ବୋହିଯିବା ଭଳି ୭ଟି ଗାର ପାଖେ ପାଖେ ଲଗାଇ ଢାଳିବାକୁ ହୁଏ । ବୈଶାଖ ମାସ ପଣାସଂକ୍ରାନ୍ତିଠାରୁ ଏକମାସ ପର୍ଯ୍ୟନ୍ତ ତୁଳସୀ ଗଛ ବା ଦେବତା ଉପରେ ସଛିଦ୍ର ଜଳପୂର୍ଣ୍ଣ କଳସ ଝୁଲାଇ ତାହାର ଛିଦ୍ର ବାଟେ ଜଳଧାରା ବୋହିବାର ଯେଉଁ ବ୍ୟବସ୍ଥା କରାଯାଇଥାଏ । (ପୂ.ଓ.ଭା. - ପୃ. ୫୪୩୯) ।

**ବାଇଶିପାହାଚ**-*ସଂ. ବି.*- ମହାପ୍ରଭୁଙ୍କ କରୁଣାର ଅଜସ୍ର ଆଶିଷଧାରା ବାଇଶି ପାହାଚ ଦେଇ ବହିଆସିଛି ବଡ଼ଦାଣ୍ଡକୁ । ଗବେଷକଙ୍କ ମତରେ ପାହାଚର ସଂଖ୍ୟାରେ ଭିନ୍ନତା ପରିଲକ୍ଷିତ ହେଲେ ମଧ ଭକ୍ତମନ ଭାବରେ ପାହାଚର ସଂଖ୍ୟା ବାଇଶି ଏବଂ ଏହା ବାଇଶି ପାହାଚ ନାମରେ ପରିଚିତ । ଏହି ପାହାଚ ବାମପାଖକୁ ରହିଛି ରୋଷଘର ଓ ଦକ୍ଷିଣ ପାର୍ଶ୍ୱରେ ଆନନ୍ଦ ବଜାର, ମଧରେ ପଥ ଲମ୍ବିଛି ମହାପ୍ରଭୁଙ୍କ ଆସ୍ଥାନକୁ । ଏହି ସ୍ଥାନରେ ରହିଛି ବ୍ରହ୍ମଲୋକ, ପିତୃଲୋକ ତଥା ଧ୍ରୁବଲୋକ । ଏଠି ଅଛି ଅଷ୍ଟ ବୈକୁଣ୍ଠ । ନିତ୍ୟସ୍ଥଳୀ ଏହି ପୁରୁଷୋତ୍ତମକ୍ଷେତ୍ରରେ ମହାପ୍ରଭୁ ନିତ୍ୟ ଲୋକରୁ ଭୂଲୋକକୁ ଓହ୍ଲାଇ ଆସନ୍ତି ଏହି ବାଇଶି ପାହାଚ ଦେଇ । ଏହି ବାଇଶି ପାହାଚ ଡେଇଁ ଭକ୍ତ ତା'ର ପ୍ରିୟ ଭଗବାନଙ୍କର ଦର୍ଶନ ଲାଭ କରିପାରେ । ମହାପ୍ରଭୁ ରଥଯାତ୍ରା ସମୟରେ ଏହି ବାଇଶି ପାହାଚ ଦେଇ ହାତୀ ପରି ଝୁଲି ଝୁଲି ଟାହିଆ ହଲାଇ ଦୁଇହାତ ପ୍ରସାରିତ କରି ବଡ଼ଦାଣ୍ଡର ଜନସମୁଦ୍ରକୁ ଓହ୍ଲାଇ ଆସନ୍ତି । ବାଇଶି ପାହାଚ ଭକ୍ତମାନଙ୍କ ଚରଣରଜରେ ରଞ୍ଜିତ । ଏଥିସହିତ ମହାପ୍ରଭୁଙ୍କ ଶରଧା ରେଣୁରେ ବାଇଶି ପାହାଚରେ ପ୍ରବେଶ ମାତ୍ରେ ଶରୀର ରୋମାଞ୍ଚିତ ହୋଇଉଠେ । ପାହାଚ ଉପରେ ଲୋଟିପଡ଼ିଲେ ଦୂର ହୁଏ ଶରୀରର ସମସ୍ତ ପାପ, ତାପ, ତପ୍ତ, କଳି କଳୁଷ । ଏହି ପଥର ସ୍ପର୍ଶ ଲିଭାଇ ଦିଏ ମଣିଷ ମନର ସକଳ ଗୁପ୍ତ ପାପରାଶି । ଭକ୍ତର ଏହି ବିଚିତ୍ର ଭାବନା ଉତ୍କଳର ସକଳ ପ୍ରାଣରେ ବସାବାନ୍ଧି ରହିଛି, ଛୋଟ ଶିଶୁର ମା' ମଧ ଏହି ବାଇଶି ପାହାଚରେ ଗଡ଼ାଇ ଦେଇଥାଏ ତା'ର ଶିଶୁକୁ, ତା'ର ସକଳ ରିଷ୍ଟ ଖଣ୍ଡନ ନିମିତ୍ତ । ଭଗବାନଙ୍କର ବିଜେସ୍ଥଳୀ ଗୋଲକ, ଗୋଲକ ତଳକୁ ଅଷ୍ଟ ବୈକୁଣ୍ଠ ଏବଂ ତା' ତଳକୁ ରହିଛି ଚତୁର୍ଦ୍ଦଶ ଭୁବନ । ରତନବେଦୀରେ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ହେଲେ ଚତୁର୍ଦ୍ଦଶ ଭୁବନ ତଥା ଅଷ୍ଟବୈକୁଣ୍ଠକୁ ଅତିକ୍ରମ କରିବାକୁ ହୋଇଥାଏ । ବାଇଶି ପାହାଚ ହେଉଛି ଚତୁର୍ଦ୍ଦଶ ଭୁବନ - ଭୂଃ, ଭୂବଃ ସ୍ୱଃ ମହଃ ଜନ, ତପଃ ସତ୍ୟ, ଅତ, ସୁତଳ, ବିତଳ, ମହୀତଳ, ରସାତଳ ତଥା ପାତାଳ ଏବଂ ଅଷ୍ଟ ବୈକୁଣ୍ଠ ଯଥା-ଶ୍ରୀବୈକୁଣ୍ଠ, କୈବଲ୍ୟବୈକୁଣ୍ଠ, କାରଣାର୍ଣ୍ଣବ ବୈକୁଣ୍ଠ, ଶେଷଶାୟୀ ବୈକୁଣ୍ଠ, ଶ୍ୱେତଦ୍ୱୀପ ବୈକୁଣ୍ଠ, ପରବ୍ୟୋମ ବୈକୁଣ୍ଠ, ଗର୍ଭୋଦକଶାୟୀ ବୈକୁଣ୍ଠ, କୈଳାସ ବୈକୁଣ୍ଠ ଆଦିଙ୍କର ଅଧିଷ୍ଠାନ । ଭଗବାନଙ୍କୁ ଦର୍ଶନ କରିବାର ବ୍ୟାକୁଳତାର ଆଂଶିକ ପୂର୍ଣ୍ଣତା ଏହି ବାଇଶି ପାହାଚରେ ଘଟିଲେ ତାଙ୍କର କୃପା କରୁଣାର ପ୍ରାପ୍ତି ସମ୍ଭବ । ବାଇଶି ପାହାଚ ବାଇଶିଟି ତୀର୍ଥଭୂମିର ପ୍ରତୀକ । ଏହା ବାଇଶିଟି ତତ୍ତ୍ୱର ପରିପ୍ରକାଶ ତଥା ବାଇଶିଟି ଭାବର ସ୍ୱରୂପ । ପଞ୍ଚରସ, ଅଷ୍ଟସାତ୍ତ୍ୱିକ ଭାବ, ତ୍ରିବୀଜ, ତ୍ରିଗୁଣର ସମାହାର ବୋଲି ମଧ କେତେକ ମତ ଦେଇଥାଆନ୍ତି । ଏହା ପୁଣି ପଞ୍ଚମାତ୍ରା, ପଞ୍ଚଭୂତ, ପଞ୍ଚବୀଜ, ପଞ୍ଚଦେବ ତଥା ଜୀବ ଓ ପରମର ରୂପ ହେଉଛି ଏହି ବାଇଶି ପାହାଚ,

ଅତି ରହସ୍ୟମୟ ଏହାର ଭାବ । ସଂଖ୍ୟାରେ ଭିନ୍ନ ହେଲେ ମଧ ଏହା ବାଇଶି ପାହାଚ ରୂପରେ ପରିଚିତ । ପ୍ରତ୍ୟେକ ପାହାଚର ଲମ୍ବ ସତେଇଶି ଫୁଟ ଓସାର ଛଅ ଫୁଟ ଓ ଉଚ୍ଚତା ଛଅ ଇଞ୍ଚ । ଭକ୍ତି ଭାବନା ନେଇ ଭକ୍ତମାନେ ପିତୃମାତୃ ଶ୍ରାଦ୍ଧ, ମହାଳୟା ଶ୍ରାଦ୍ଧ, ଦୀପଦାନ ଶ୍ରାଦ୍ଧ ତଥା ଦୀପଦାନ କରିଥାଆନ୍ତି । ପୂର୍ବେ ଏଠାରେ ଭୋଗଦ୍ରବ୍ୟ ବିକ୍ରୟ ହେଉଥିଲା ।
(ଶ୍ରୀ.ସ୍ୱ. - ପୃ. ୨୫୭) ।

**ବାଇଶି ବସାଣ**-*ଦେ.ବି.*- ରାଜତନ୍ତ୍ର ପ୍ରଚଳନ ଥିବା ସମୟରେ ପ୍ରଜାମାନେ ରାଜାଙ୍କ ଘରୋଇ ବ୍ୟବହାର ପାଇଁ ୨୨ ଗୋଟି ପଦାର୍ଥ କର ସୂତ୍ରରେ ଦେଉଥିଲେ । ଏହାକୁ ମନ୍ଦିର ପରିଭାଷାରେ ବାଇଶି ବସାଣ କୁହାଯାଏ । ଏହି ପ୍ରଥା ୧୮୮୨ ପର୍ଯ୍ୟନ୍ତ ଚାଲିଥିଲା । ୧. କାଙ୍ଗୁଲ ହରଡ଼, ୨. ଖଇର, ୩. ଖଣ୍ଡିସା, ୪. ଖଳି ଚଉପଦି, ୫. ଗହମ, ୬. ଘିଅ, ୭. ଚଣା, ୮. ଚିରାକାଠ, ୯. ଝୋଟ ଓ ଛଣ, ୧୦. ତେଲ, ୧୧. ଦହି, ଦୁଧ, ଛେନା, ୧୨. ଧନିଆ, ୧୩. ଫୁଲଗୁଡ଼ ଓ ଶାଳ ଉଖୁଡ଼ା, ୧୪. ମଠା ଲୁଗା, ୧୫. ମୁଗ, ୧୬. ମୁନ୍ଦୁରା ଓ ମଶିଣା, ୧୭. ରଥକାଠ ଓ ଦଉଡ଼ା, ୧୮. ରାଶି, ୧୯. ସୋରିଷ, ୨୦. ହଳଦୀ ଓ ପାଳୁଅ, ୨୧. ହାଣ୍ଡି ଆଟିକା ସରା ଆଦି, ୨୨. ହୁଡୁମ୍ବ ।
(ଶ୍ରୀ.ଜି. - ପୃ. ୧୦୩) ।

**ବାଇହାଣ୍ଡି**-*ଦେ.ବି.*- ଶ୍ରୀମନ୍ଦିରର ରୋଷଘରେ ପ୍ରାଚୀନ ପ୍ରଣାଳୀର ରନ୍ଧନ ପ୍ରକ୍ରିୟାର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ରହିଛି । ରୋଷକାର୍ଯ୍ୟରେ କେବଳ ମୃଣ୍ମୟ ପାତ୍ର ବ୍ୟବହୃତ ହୋଇଥାଏ । ବାଇହାଣ୍ଡି ହେଉଛି ଏକ ବୃହତକାୟ ମାଟିହାଣ୍ଡି ଯାହା କି ଶ୍ରୀମନ୍ଦିରର ଚୁଲିରେ ବସି ରୋଷେଇ ହୁଏ । ଏହାଛଡ଼ା ଦାସିଆ, ଏମାର ହାଣ୍ଡି, ବଡ଼ମଠ କୁଡୁଆ, ସାନମଠ କୁଡୁଆ, ନମ୍ବର କୁଡୁଆ, ଢଳା କୁଡୁଆ, ଭାତ କୁଡୁଆ, ଅଙ୍ଗବାସ ଓଳି, ପଖାଳ ଓଳି, ଚକ ଓଳି, ମୁଗଓଳି ବ୍ୟତୀତ ପୁରୀସରା, ପାଳସରା, ବଡ଼ା, କଟାସରା, ମଝାଲ, ସରା, ଟିପେଇ ହାଣ୍ଡି, ଥାଳି କୁଡୁଆ, ପାଇକିଆ ଓଳି, ଦଉସିଂହ ନାଥିଆ, ସାନତାଡ଼, ବଡ଼ତାଡ଼, ଅଧର ହାଣ୍ଡି, ପାହାନ୍ତି ତାଡ଼ ଆଦି ବ୍ୟବହୃତ ହୋଇଥାଏ ।
(ଶ୍ରୀ.ପ.ସେ.ପୂ. - ପୃ. ୩୫୯) ।

**ବାଉନକୋଟି ଭଣ୍ଡାର**-*ଦେ.ବି.*- ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରତ୍ନଭଣ୍ଡାରକୁ ବାଉନକୋଟି ଭଣ୍ଡାର ବୋଲି କୁହାଯାଏ ।
(ଓ.ସାଂ.ଶ. - ପୃ. ୨୫୯) ।

**ବାଘମୁହାଁ**-*ଦେ.ବି.*- ଏକ ଗାମୁଛାକୁ ପାଟି, ନାକ ଓ କାନରେ ଗୁଡ଼ାଇ ରୋଷଘରୁ ସୁଆର ସେବକମାନେ ଶ୍ରୀଜୀଉଙ୍କ ସମ୍ମୁଖକୁ ଭୋଗ ଆଣନ୍ତି ।
(ପୂ.ଓ.ଭା. - ପୃ. ୫୪୭୮) ।

**ବାଙ୍କଚୂଡ଼ବେଶ**-*ଦେ.ବି.*- ଶ୍ରୀମନ୍ଦିରରେ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ତିଥିରେ ରତ୍ନ ସିଂହାସନରେ ପ୍ରଭୁଙ୍କର ଏହି ବାଙ୍କଚୂଡ଼ ବେଶ ହୋଇଥାଏ । ଏହାକୁ ବାମନ ବେଶ ମଧ କୁହାଯାଏ । ଏହି ବେଶର ବିଶେଷତ୍ୱ ଏହି ଯେ, ବିଗ୍ରହଙ୍କ ମସ୍ତକର ଚନ୍ଦ୍ରିକା ଚୂଳ ସହିତ ଦକ୍ଷିଣକୁ ଖୋସାପଡ଼େ ଏବଂ ଏହି ଖୋସାର ଅଗରେ ଏକ ସୁବର୍ଣ୍ଣ କିଆ ଖଞ୍ଜାଯାଏ । ଛୋଟ ସ୍ୱର୍ଣ୍ଣ କିରୀଟ ବିଗ୍ରହଙ୍କ ମସ୍ତକରେ ଶୋଭା ପାଇଥାଏ । ଏହି ବେଶରେ ପିନ୍ଧାଯାଇଥିବା ଜୁଡ଼ାଟି ବେତ ଓ କନାରେ ନିର୍ମିତ ହୁଏ । ବେତରେ କଳାକନା ଆବୃତ ହୋଇ ଏହି ଆଭୂଷଣ ପ୍ରସ୍ତୁତ କରାଯାଏ । ଏହା ଉପରେ ସୁନାର କିରୀଟ ଶୋଭାପାଏ । ସୁନାର କାନ ଓ କୁଣ୍ଡଳ ମଧ ପିନ୍ଧାଯାଏ । ଝାବଡ଼ା ମାଳି, ପଦ୍ମଫୁଲ ମାଳି, ଅଗସ୍ତି ମାଳି, କଣ୍ଠିମାଳି ଦ୍ୱାରା ଠାକୁର ଶୋଭା ପାଆନ୍ତି । ଏହି ବେଶରେ ମଧ ଜଗନ୍ନାଥ ଓ ବଳଭଦ୍ର ସୁବର୍ଣ୍ଣ ହସ୍ତପଦଯୁକ୍ତ ହୋଇ ଚକ୍ର ଓ ଶଙ୍ଖ ଏବଂ ବଳଭଦ୍ର ହଳମୂଷଳ ଧାରଣ କରନ୍ତି । ଏହି ବେଶରେ ସୁଭଦ୍ରାଙ୍କର ଆଭୂଷଣ ପରିବର୍ତ୍ତନ ହୁଏ ନାହିଁ । ମସ୍ତକ ସୁବର୍ଣ୍ଣ କିଆରେ ଶୋଭିତ ହୁଏ । ଲକ୍ଷ୍ମୀ ନାରାୟଣ ବେଶରେ ଲାଗୁଥିବା ଅଧିକାଂଶ ଅଳଙ୍କାର ଏଥିରେ ଲାଗି ହୁଏ ।

ଏହି ବେଶ ସ୍ନାନ ପରେ ଆରମ୍ଭ ହୋଇ ବାଳଧୂପ ଶେଷ ହେବା ପର୍ଯ୍ୟନ୍ତ ରହେ । ଉକ୍ତ ଦିନ ଅବକାଶ ନୀତି ଶେଷ ହେବା ପରେ ପାଳିଆ ମେକାପ, ଖୁଣ୍ଟିଆ, ଚାଙ୍ଗଡ଼ା ମେକାପ ଓ ପ୍ରାୟ ୫ଜଣ ପୁଷ୍ପାଳକ ଶ୍ରୀବିଗ୍ରହଙ୍କୁ ବାଙ୍କଚୂଡ଼ା ବେଶରେ ସୁସଜ୍ଜିତ କରନ୍ତି । ଏହି ବେଶ ଦର୍ଶନ ନିମନ୍ତେ ସାହାଣମେଲା ହୁଏ । ଏହି ବେଶର ସମସ୍ତ ଜିନିଷ ଶ୍ରୀମନ୍ଦିର ପ୍ରଶାସନ ଯୋଗାଇଥାଏ । ବାଙ୍କଚୂଡ଼ା ବେଶ ହେଉଛି କୃଷ୍ଣ ସମ୍ପର୍କିତ ବେଶ । ଅତୀତରେ ଏହି ବେଶ ଗୋପୀମାନଙ୍କୁ ଆକୃଷ୍ଟ କରିଥିଲା । ବୈଷ୍ଣବ ପନ୍ଥୀ ଭକ୍ତମାନେ ବୋଧହୁଏ ଏହି ବେଶ ଆରମ୍ଭ କରିଥିଲେ । ବିଶେଷକରି ଶ୍ରୀଚୈତନ୍ୟଙ୍କ ସମୟରେ ଏହି ବେଶ ଆରମ୍ଭ ହୋଇଥିବ ବୋଲି ଆଶା କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦, ଶ୍ରୀ.ବେ.ବୈ. - ପୃ. ୨୬) ।

**ବାଙ୍କୀମୁହାଣ**-*ଦେ.ବି.*- ବଡ଼ଦାଣ୍ଡର ବଳଗଣ୍ଡିଠାରୁ ବଡ଼ଶଙ୍ଖ ମଧ୍ୟରେ ବଙ୍କେଇ ହୋଇ ବହିଯାଉଥିବା ନଈ । ଏହାର ନାମ ଥିଲା ମାଳିନୀ । ବାଙ୍କୀର ଚର୍ଚ୍ଚିକା ପାହାଡ଼ର କ୍ଷୀଣଧାର ନଦୀରୂପେ ବହି ଆସି ପୁରୁଷୋତ୍ତମକ୍ଷେତ୍ରରେ ସମୁଦ୍ରରେ ମିଶିଛି । ସେହି ମୁହାଣରେ ଚକ୍ରତୀର୍ଥ ନାମକ ଏକ ତୀର୍ଥ ରହିଛି । ଏଠାରେ ପ୍ରଥମେ ଦାରୁବ୍ରହ୍ମ ଲାଗିବାର ବିବରଣୀ ପୁରାଣମାନଙ୍କରେ ବର୍ଣ୍ଣିତ ।

**ବାଘନଖ**-*ଦେ.ବି.*- ଶ୍ରୀଜୀଉଙ୍କର ଏକ ପ୍ରକାର ସୁବର୍ଣ୍ଣ ନିର୍ମିତ ଅଳଙ୍କାର ।

**ବାଜପେୟୀ**-*ଦେ.ବି.*- ବାଜପେୟ ଯଜ୍ଞର ଯାଜ୍ଞିକ ବ୍ରାହ୍ମଣ । ଶ୍ରୀମନ୍ଦିର ତତ୍ତ୍ୱ ସମ୍ପର୍କରେ ଦୁଇଜଣ ବାଜପେୟୀ ସ୍ମରଣୀୟ । ଶ୍ରୀମନ୍ଦିର ନିର୍ମାଣ, ନିଯୋଗାଦି ବ୍ୟବସ୍ଥା, ପରମହଂସ ବାଜପେୟୀଙ୍କୁ ଅର୍ପିତ ହୋଇଥିଲା । ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସଂସ୍କୃତିରେ ମଧ୍ୟ ଦେଉଳ ନିର୍ମାଣ ନୀତିକାନ୍ତି ନିଯୋଗ ବିଧାନରେ ତାଙ୍କ ନାମରେ ଉଲ୍ଲେଖ ରହିଛି । ଆଉ ଜଣେ ବାଜପେୟୀ ହେଲେ ନରସିଂହ ବାଜପେୟୀ - ସେ ଦାରୁବ୍ରହ୍ମ ପ୍ରତିଷ୍ଠା ବିଧିର ରଚୟିତା ।
(ପୁ.ବୋ. - ପୃ. ୨୬୦) ।

**ବାଜେମାହାଲ**-*ଦେ.ବି.*- ଶ୍ରୀମନ୍ଦିରର ରାଜସ୍ୱ ଆୟ ଅଭିବୃଦ୍ଧିରେ ସାହାଯ୍ୟ କରୁଥିବା ଏକ ମାହାଲ ।
(ଶ୍ରୀ.ଶ. - ପୃ. ୧୨୪) ।

**ବାଜୁବନ୍ଧ**-*ଦେ.ବି.*- ଶ୍ରୀଜୀଉଙ୍କର ମୁକ୍ତା ନିର୍ମିତ ଅଳଙ୍କାର ବିଶେଷ ।
(ଶ୍ରୀ.ଶ. - ପୃ. ୧୨୪) ।

**ବାଟକରଣ**-*ଦେ.ବି.*- ଶ୍ରୀମନ୍ଦିରର କରଣ କର୍ମଚାରୀ ସେବକ ବିଶେଷ । ପ୍ରାଚୀନ ସନନ୍ଦରୁ, ଛାମୁ ଚିଟାଉରୁ ଜଣାଯାଏ ଯେ, ଚାରୋଟି ବାଟ ପାଇଁ (ପୁରୀକୁ ପ୍ରବେଶପଥ) ଚାରିଜଣ ବାଟକରଣ ଏକଦା ନିଯୁକ୍ତ ଥିଲେ । ଚାରୋଟି ବାଟ- ଲୋକନାଥ ଘାଟ, ମଙ୍ଗଳା ଘାଟ, ଅଠରନଳା ଘାଟ, ବାଲିଘାଟ । ଏହି ଘାଟ ପଥରେ ନିଯୁକ୍ତ କରଣ କର୍ମଚାରୀ, ବାଟକରଣ ନାମରେ ପରିଚିତ ଥିଲେ ।
(ପୁ.ବୋ. - ପୃ. ୩୧୫/୨୬୦) ।

**ବାଟକୁ ଯିବା**-*ଦେ.କ୍ରି.*- ଯାତ୍ରୀ ସଂଗ୍ରହ ଓ ବକେୟା ଅର୍ଥ ଅସୁଲ ପାଇଁ ଯାତ୍ରୀ ବୃତ୍ତିଧାରୀ ଜଗନ୍ନାଥ ପଣ୍ଡାମାନେ ଦୂରସ୍ଥାନକୁ ଗମନ କରିବା ।
(ପୁ.ବୋ. - ପୃ. ୨୬୦) ।

**ବାଟଗୁମାସ୍ତା**-*ଦେ.ବି.*- ଯାତ୍ରୀମାନଙ୍କୁ ନେବା ଆଣିବା କରିବା ଓ ସେମାନଙ୍କର ଅଭାବ ଅସୁବିଧା ବୁଝି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରାଇବା ନିମନ୍ତେ ନିଯୁକ୍ତ ଗୁମାସ୍ତା ।
(କ୍ଷେ.ସ.) ।

**ବାଟପିଆଦା**-*ଦେ.ବି.*- ଯାତ୍ରୀଙ୍କୁ ସାହାଯ୍ୟ କରୁଥିବା ପାଇକ ।
(ପୂ.ଓ.ଭା. - ପୃ. ୪୮୧୮) ।

**ବାଟେଶ୍ୱର**-*ଦେ.ବି.*-ଇନ୍ଦ୍ରାଣୀ ମନ୍ଦିରର ସିଂହାସନର ନିମ୍ନ ଭାଗରେ ଯେଉଁ ଶିବଲିଙ୍ଗ ବିରାଜମାନ, ସେ ଶ୍ରୀବଟେଶ୍ୱର ନାମରେ ପୂଜିତ । ତାଙ୍କ ସମ୍ମୁଖରେ ବିଦ୍ୟମାନ ଏକ ବୃଷଭ ଏବଂ ପାର୍ଶ୍ୱରେ ସିଦ୍ଧ

ଗଣେଶ ମୂର୍ତ୍ତି (ଶୁଣ୍ଢ ଦକ୍ଷିଣପଟକୁ ରହିଛି) ଶିବରାତ୍ରି ଦିନ ରାତ୍ରକାଳରେ ଏହି ମନ୍ଦିରରେ ମହାଦେବଙ୍କ ନିକଟରେ କ୍ଷୀରାଭିଷେକ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୮) ।

**ବାଡ଼**-ଦେ.ବି.- ଭାଗ ବା ଅଂଶ । ଶ୍ରୀମନ୍ଦିରରେ ପ୍ରଭୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ଦେବୀଙ୍କ ପାର୍ଶ୍ୱକୁ ବାଡ଼ ନାମରେ ନାମିତ କରାଯାଇଛି । ବଡ଼ବାଡ଼ (ଶ୍ରୀବଳଭଦ୍ରଙ୍କ ବାଡ଼), ମଝିବାଡ଼ (ଶ୍ରୀ ସୁଭଦ୍ରାଙ୍କ ବାଡ଼), ମହାପ୍ରଭୁଙ୍କ ବାଡ଼ (ଶ୍ରୀଜଗନ୍ନାଥଙ୍କ ବାଡ଼) ବୋଲି କୁହାଯାଏ ।
(ଓ.ସାଂ.ଶ. - ପୃ. ୨୫୮) ।

**ବାଡ଼ଗ୍ରାହୀ**-ଦେ.ବି.- ଶ୍ରୀମନ୍ଦିରରେ ବାଡ଼ ସେବକଙ୍କ ମଧ୍ୟରେ ମୁଖ୍ୟ ।
(ପୁ.ବୋ. - ପୃ. ୨୬୦) ।

**ବାଡ଼ିନୃସିଂହ**-ଦେ.ବି.- ଶ୍ରୀମନ୍ଦିରର ଦକ୍ଷିଣି ଘରେ ରଖାଯାଇଥିବା ନୃସିଂହ ଠାକୁରଙ୍କର ବିଜେ ପ୍ରତିମା । ଚୈତ୍ର କୃଷ୍ଣ ଚତୁର୍ଦ୍ଦଶୀ ଓ ଶ୍ରାବଣ ଶୁକ୍ଳ ନବମୀ ଦିନ ବାଡ଼ି ନୃସିଂହ ଚାରି ଆଶ୍ରମରେ ବିଜେ ହୁଅନ୍ତି । ଶ୍ରୀମନ୍ଦିରରେ ଶ୍ରୀ ରାଜକିଶୋର ଦାସ ମ୍ୟାନେଜର ଥିବା ସମୟରେ ବାଡ଼ି (ହଇଜା) ବ୍ୟାପିବାରୁ ଏହି ନୀତି ଆରମ୍ଭ ହୋଇଥିଲା । ଏହି ନୃସିଂହ ମାର୍ଗଶିର ପୂର୍ଣ୍ଣିମା ବା ପଣ୍ଡୁ ପୂର୍ଣ୍ଣିମା ଦିନ ପଣ୍ଡୁ ନୃସିଂହ ରୂପେ ଚାରି ଆଶ୍ରମ ବିଜେ କରନ୍ତି । ପର୍ବଯାତ୍ରା ଯୋଗାଣିଆ ଦେଇଥିବା ଶୀତଳ ଭୋଗ ଲାଗି ହୁଏ । ପ୍ରତ୍ୟେକ ଆଶ୍ରମରେ ଭୋଗ ହୁଏ । ତା'ପରେ ଠାକୁରେ ଫେରିଆସନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୫) ।

**ବାଣୁଆ**-ଦେ.ବି.- ଠାକୁରଙ୍କ ଯାନିଯାତ୍ରାରେ ଯେଉଁ ବ୍ୟକ୍ତି ଆବଶ୍ୟକ ମୁତାବକ ବାଣ ଯୋଗାନ୍ତି ।
(ଶ୍ରୀ.ଶ. - ପୃ. ୧୨୪) ।

**ବାଣୁଆ ସେବକ**- ଠାକୁରଙ୍କ ମହାଦୀପ ଜାଳିବା ବେଳେ, ଚନ୍ଦନଯାତ୍ରାରେ, ବିବାହ ଉତ୍ସବ ଦିନମାନଙ୍କରେ ଯାହା ବାଣ ଫୁଟା ଯାଏ ତାହା ଏହି ସେବକ କର୍ତ୍ତୃପକ୍ଷଙ୍କଠାରୁ ତତ୍କାଳୀନ ମୂଲ୍ୟ ନେଇ ଯୋଗାଏ । ଏବେ ଏହି ସେବା ହେଉନାହିଁ ।
(ଶ୍ରୀଜଗନ୍ନାଥ - ପୃ. ୮୯) ।

**ବାନାୟର**-ଦେ.ବି.- ସାହିମାନଙ୍କରେ ପ୍ରତିଷ୍ଠିତ ଶିବ ମୂର୍ତ୍ତି । ବାନାୟରଙ୍କ ଉପରେ ଏକ କିମ୍ବଦନ୍ତୀ ଶ୍ରୀମର୍ତ୍ତ୍ୟବୈକୁଣ୍ଠରେ ବର୍ଣ୍ଣିତ ଅଛି । କୁଣ୍ଡେଇବେଣ୍ଟ ସାହିର ଏକ ଛକରେ ଲୋକେ ମାହାର୍ଦ୍ଦ କୁଡ଼ିଆର ଭଙ୍ଗା ଖପରା ଜମାଇଥିଲେ । ସାହି ପିଲାମାନେ ଖେଳିଲାବେଳେ ଜଣେ ପିଲା ଖେଳେ ଓ ଖେଳ ଶେଷରେ ପିଲା ଚୁଟିଧରି ମାଡ଼ ଦିଏ । ଦିନେ ଜଣେ ପିଲା ତା'ର ବାପାଙ୍କୁ କହିବାରୁ ସେ ଘଟଣାକୁ ଦେଖିବା ନିମନ୍ତେ ଜଗିଲେ । ଦେଖିଲେ ପିଲାଟିଏ ମୁଣ୍ଡ କେଶ ଧରି ମାଡ଼ ମାରି ଗୋଡ଼ି ଗଦା ମଧ୍ୟରେ ପଶିଗଲା । ରାତିରେ ଏକ ସ୍ୱପ୍ନ ହେଲା ଓ ଶୁଣିବାକୁ ପାଇଲେ ଯେ ଗୋଡ଼ିଗଦା ଖୋଲିଲେ ଏକ ଦିବ୍ୟ ଲିଙ୍ଗ ମୂର୍ତ୍ତି ମିଳିବ । ମୋ ମୁଣ୍ଡ ଉପରେ ଖପରା ଗଦା ଅଛି, ମୁଁ ତାହା ସହିଛି, କାରଣ ଏହା ମହାପ୍ରସାଦ କୁଡୁଆ ଖପରା, କିନ୍ତୁ ଖେଳୁଥିବା ପିଲା ମୋ ଉପରେ ପରିସ୍ରା କରିବାରୁ ମୁଁ ସହି ନ ପାରି ସେମାନଙ୍କର ଚୁଟି ଧରି ମାଡ଼ ଦେଇଛି । ତା'ପରେ ଖପରା ଗଦା କଢ଼ାଯାଇ ବାନାୟର ମୂର୍ତ୍ତି ଉଦ୍ଧାର ହୋଇ ମନ୍ଦିର ନିର୍ମାଣ ହେଲା । ସେହିଦିନଠାରୁ ପ୍ରତିସାହିରେ ବାନାୟର ଲିଙ୍ଗ ସ୍ଥାପିତ ହେଲେ ।
(ପୁ.ବୋ. - ପୃ. ୨୬୧) ।

**ବାମନ**-ସଂ.ବି.- ଖର୍ବକାୟ ବ୍ୟକ୍ତି । ବିଷ୍ଣୁଙ୍କର ଚତୁର୍ଥ ଅବତାର । ଏ ଅବତାରରେ ବିଷ୍ଣୁ ଏକ ଖର୍ବକାୟ ବ୍ରାହ୍ମଣ ରୂପଧରି ବଳିରାଜାଙ୍କୁ ତିନିପାଦ ଭୂମି ଦାନ ମାଗି ତାଙ୍କୁ ନିଜର ତୃତୀୟ ପାଦରେ ପାତାଳକୁ ଚାପି ଦେଇଥିଲେ ।
(ପୂ.ଓ.ଭା. - ପୃ. ୫୫୨୬, ଓ.ସା.ଶ. - ପୃ. ୨୫୯) ।

**ବାମନଜନ୍ମ ନୀତି**-ଦେ.ବି.- ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଦିନ ବାମନ ଜନ୍ମ ନୀତି ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୬) ।

**ବାମନ ବେଶ**-ଦେ.ବି.- ଭାଗବତ କଥାବସ୍ତୁ ଅନୁସାରେ ଭାଦ୍ରବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥିରେ ମହାପ୍ରଭୁ ବାମନ ଜନ୍ମ ହୋଇଥିଲେ ।

ସେହିଦିନ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ବାମନ ବେଶ ଅନୁଷ୍ଠିତ ହୁଏ । ପୁଷ୍ପାଳକ ସେବକମାନେ ଏହି ବେଶ କରିଥାନ୍ତି । ଏହିଦିନ ଦ୍ୱିପ୍ରହର ଧୂପ ଶେଷ ହେବା ପରେ ଜଗନ୍ନାଥ ବାମନ ବେଶ ଧାରଣ କରନ୍ତି ଓ ବାମନ ଜନ୍ମ ଉତ୍ସବ ପାଳିତ ହୁଏ । ଶ୍ରୀଜୀଉମାନେ ବଳିବାମନ ବେଶ ଧାରଣ କରନ୍ତି । ଶ୍ରୀବଳଭଦ୍ର ବଳିରାଜାବେଶ ହୋଇଥାନ୍ତି । ବାମ ହସ୍ତରେ ଧନୁ ଓ ଦକ୍ଷିଣ ହସ୍ତରେ ଶର ସ୍ୱର୍ଣ୍ଣର ଶ୍ରୀପୟର ଓ ଶ୍ରୀହସ୍ତ, କିରୀଟି, କୁଣ୍ଡଳ, ଚନ୍ଦ୍ରିକା, ଆଡ଼କାନି, ଅଣ୍ଟାପେଟି ତିଳକ ଓ ପାଞ୍ଚଟି ହାର ପିନ୍ଧନ୍ତି । ସୁଭଦ୍ରା, ବଳି ପତ୍ନୀ ବନ୍ଧ୍ୟାବଳୀ ବେଶ ଧାରଣ କରନ୍ତି । ଜଗନ୍ନାଥ ବାମନ ବେଶ ଧାରଣ କରିଥାନ୍ତି । ଶିରରେ ନଣ୍ଡା କିରୀଟି । ମସ୍ତକର ଦକ୍ଷିଣ ପଟେ କଳାକନାରେ ଜୁଡ଼ା ତିଆରି ହୋଇଥାଏ ଓ ତା' ଉପରେ ଚନ୍ଦ୍ରିକା ଥାଏ । କପାଳର ତିଳକ କଳାକନା ଉପରେ ଧଳାକନାରେ ଗାର ସଦୃଶ ଏପରି ତିଆରି ହୋଇଥାଏ । ଏହା ଭସ୍ମପରି ଦୃଶ୍ୟମାନ ହୁଏ । ବାମହସ୍ତରେ ଛତ୍ରି ଓ ଦକ୍ଷିଣ ହସ୍ତରେ ରୂପାର କମଣ୍ଡଳୁ, କୁଶଗୁଛ, ରୂପାର ପାତ୍ରୀ ଧରିଥାନ୍ତି । ଗ୍ରୀବାରେ ରୁଦ୍ରାକ୍ଷର ମାଳା, ବାମପଟ ସ୍କନ୍ଧରେ ମୃଗ ଛାଲ ପକାଇଥାଆନ୍ତି । ଏହି ବେଶ ସନ୍ଧ୍ୟା ବେଶ ଧୂପ ପର୍ଯ୍ୟନ୍ତ ରହେ । ଏହାର ଖର୍ଚ୍ଚ ଶ୍ରୀମନ୍ଦିର ପ୍ରଶାସନ ବହନ କରେ ।
(ଶ୍ରୀ.ଜ.ପ.ସେ.ପୂ. - ପୃ. ୨୫୬) ।

**ବାମମାର୍ଗ**-*ସଂ.ବି.*- ବେଦ- ବିରୁଦ୍ଧ ମାର୍ଗ । ତାନ୍ତ୍ରିକ ପଞ୍ଚ-ମ'କାରାତ୍ମକ ମୁକ୍ତି ସାଧନ ମାର୍ଗ । ମଦ୍ୟ, ମତ୍ସ୍ୟ, ମାଂସ, ମୁଦ୍ରା ଓ ମୈଥୁନ । ଏହାଦ୍ୱାରା ଉପାସନା କରାଯାଏ ।
(ଓ.ସାଂ.ଶ. - ପୃ. ୨୫୯) ।

**ବାରକୁଡୁଆ**-*ଦେ.ବି.*- ଅନ୍ନ କିମ୍ବା ଖେଚୁଡ଼ି ରଖାଯିବା ଓଳି ।
(ଶ୍ରୀ.ଶ. - ପୃ. ୧୨୫) ।

**ବାରଗୋଠିଆଳ**-*ଦେ.ବି.*- ବାରଗୋଠିଆଳ ଅର୍ଥାତ୍ ବାରଗୋଠ ଗାଈ ପଲ ସେବକ ବା ବାରଗୋଠ ଗାଈ ରକ୍ଷକ ସେବକ । ଗାଈଗୋରୁ ଯାହା ପରମେଶ୍ୱର ସେବା ଖଟଣି ପାଇଁକି ଥିବେ, ସେ ସକଳ ନେଇ ଚରାଇ ମଣି, ମୁହାଁଇ ରଖିବେ ଓ ସମ୍ଭାଳିବେ । ପରମେଶ୍ୱରଙ୍କ ପାଇଁ ଗୋରସ ଆଣି ମହାଭୋଇ ପାଖରେ ଦେବେ ।
(ପୁ.ବୋ. - ପୃ. ୨୬୧/୨୮୧) ।

**ବାରଭାୟା**-*ଦେ.ବି.*- ଜନ୍ମହନୁମାନ, ଗୟ, ଗବାକ୍ଷ, ସୁଷେଣ, ହନୁମାନ, ଜମ୍ୱେବ, ତାରାକ୍ଷ, ଅଙ୍ଗଦ, ସୌରୀ, ସୁଗ୍ରୀବ, ନଳ, ନୀଳ, ଏହିଭଳି ବାର ମୂର୍ତ୍ତି ହନୁମାନ । ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ବାହାର ବେଢ଼ାରେ ସ୍ଥାପିତ । ଏହାକୁ ବାରଭାୟା ହନୁମାନ କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୨୭୧) ।

**ବାରଲାଗି**-*ଦେ.ବି.*- ଶ୍ରୀଠାକୁରଙ୍କ ବସ୍ତ୍ର ବିଶେଷ । ଏହା ୪ ପ୍ରକାର । ବାରଲାଗି ଫୁଟା, ବାରଲାଗି ଫେଟା, ବାରଲାଗି ଶାଢ଼ୀ, ବାରଲାଗି ଖଣ୍ଡୁଆ ପର୍ବାନୁଯାୟୀ ଏହା ବ୍ୟବହୃତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୭) ।

**ବାରଲାଗି ଖଣ୍ଡୁଆ**-*ଦେ.ବି.*- ଏକ ପ୍ରକାର ଖଣ୍ଡୁଆ ବସ୍ତ୍ର । ସ୍ନାନମଣ୍ଡପଠାରୁ ଠାକୁରମାନେ ଅଣସର ପିଣ୍ଡିକୁ ବିଜେକଲା ପରେ ଦଇତା ଚାଙ୍ଗଡ଼ା ମେକାପଙ୍କଠାରୁ ବାରଲାଗି ଖଣ୍ଡୁଆ ନେଇ ତିନିବାଡ଼ରେ ଲାଗି କରାନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୪୮) ।

**ବାରଲାଗି ପାଟ**-*ଦେ.ବି.*- ପାଟବସ୍ତ୍ର ବିଶେଷ । ଶ୍ରୀଠାକୁରଙ୍କ ଶ୍ରୀଅଙ୍ଗରେ ଲାଗି ହେଉଥିବା ବାରଟି ପାଟବସ୍ତ୍ର । ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଚାରିଗୋଟି, ଶ୍ରୀବଳଭଦ୍ରଙ୍କ ବାଡ଼ରେ ଚାରିଗୋଟି, ଶ୍ରୀସୁଭଦ୍ରାଙ୍କ ବାଡ଼ରେ ଦୁଇ ଗୋଟି ଓ ଶ୍ରୀସୁଦର୍ଶନଙ୍କ ବାଡ଼ରେ ଦୁଇଗୋଟି କରି ମୋଟ ବାରଟି ପାଟବସ୍ତ୍ର ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫୭) ।

**ବାରି ଖଣ୍ଡୁଆ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କ ଖଣ୍ଡୁଆ ବସ୍ତ୍ର । ବିଭିନ୍ନ ବାରରେ ନିର୍ଦ୍ଦିଷ୍ଟ ରଙ୍ଗର ଖଣ୍ଡୁଆ ବସ୍ତ୍ର ଲାଗି ହେବାର ବିଧି ରହିଛି । ରବିବାର ଲାଲରଙ୍ଗ, ସୋମବାର ଧଳା (କଳାଛିଟ ମିଶା), ମଙ୍ଗଳବାର ବାରପଟିଆ (ପାଞ୍ଚରଙ୍ଗ ବିଶିଷ୍ଟ), ବୁଧବାର ସବୁଜ, ଗୁରୁବାର ହଳଦୀ ବସନ୍ତ ରଙ୍ଗ, ଶୁକ୍ରବାର ଶୁକ୍ଳ, ଶନିବାର କଳାରଙ୍ଗ । (ଶ୍ରୀ.ସ୍ୱ. ୨ୟ - ପୃ. ୪୪) ।

**ବାରୁଣୀ**-*ଦେ.ବି.*- ପଶ୍ଚିମ ଦିଗ ।

**ବାଳଭୋଗ**-*ସଂ.ବି.*- ଶ୍ରୀଜଗନ୍ନାଥଙ୍କ ନିକଟରେ ବାଳଭୋଗ ନାମକ ଏକ ସ୍ୱତନ୍ତ୍ର ଭୋଗ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ହୋଇଥାଏ । ଏହି ବାଳଭୋଗ ପଶ୍ଚାତ୍‌ପଟରେ ଏକ ଉପାଖ୍ୟାନ ରହିଛି । ତଳିଛ ମହାପାତ୍ର ଜଗନ୍ନାଥଙ୍କର ନିଷ୍ଠାପର ସେବକ ଥିଲେ । ଏକଦା ରାଜା ପ୍ରତାପରୁଦ୍ର ଦେବ ଶ୍ରୀଜଗନ୍ନାଥ ଦର୍ଶନରେ ଆସିଥାନ୍ତି, ଏତିକି ବେଳେ ତଳିଛ ନିଜ ମୁଣ୍ଡର ଫୁଲ ଜଗନ୍ନାଥଙ୍କ ମସ୍ତକରେ ରଖି, ତାକୁ ପ୍ରସାଦି ଫୁଲ ରୂପେ ରାଜାଙ୍କୁ ପ୍ରଦାନ କଲେ । ରାଜା ଯାଇ ଦେଖନ୍ତି ଯେ, ସେ ପ୍ରସାଦି ଫୁଲରେ ଏକ କେଶ ବା ବାଳ ରହିଛି । ରାଜା ଜାଣିଲେ ତଳିଛ ମୁଣ୍ଡର ପୁଷ୍ପ ତାଙ୍କୁ ଦେଇଛନ୍ତି । ସେ ତଳିଛଙ୍କୁ ଡକାଇ ସମସ୍ତ ଘଟଣା ବର୍ଣ୍ଣନା ପରେ ଶ୍ରୀଜଗନ୍ନାଥଙ୍କ ମସ୍ତକରେ କେଶର ପ୍ରମାଣ ଦେବାକୁ କହିଲେ । ନଚେତ୍ ରାଜଦଣ୍ଡ ଭୋଗ କରିବାକୁ ପଡିବ । ଏହା ଶୁଣି ତଳିଛ ଠାକୁରଙ୍କର ଶରଣାପନ୍ନ ହେଲେ ଓ ଠାକୁର ମଧ୍ୟ ସ୍ୱପ୍ନରେ ତଳିଛଙ୍କୁ ସାନ୍ତ୍ୱନା ଦେଲେ । ତହିଁ ଆରଦିନ ରାଜା ଆସି ତଳିଛଙ୍କୁ ଶ୍ରୀଜଗନ୍ନାଥଙ୍କ କେଶ ଦେଖିବାକୁ ଦାବି କରିବାରୁ ସେ କହିଲେ "ମହାରାଜ ଆପଣ ଶ୍ରୀଜଗନ୍ନାଥଙ୍କ କେଶ ଦେଖନ୍ତୁ । ରାଜା ଶ୍ରୀବିଗ୍ରହଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ପୁନଶ୍ଚ କୃତ୍ରିମ କେଶ ଭାବି ଶ୍ରୀଜଗନ୍ନାଥଙ୍କ ମସ୍ତକରୁ କେଶକୁ ଝିଙ୍କିବାରୁ ଶ୍ରୀମସ୍ତକରୁ ରକ୍ତ ଝରିଆସିଲା । ରାଜା ଆଶ୍ଚର୍ଯ୍ୟ ହୋଇ ଅଚେତ ହୋଇ ପଡ଼ିଲେ ଓ ଚେତନା ଲଭି ଠାକୁରଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ ଓ ତଳିଛଙ୍କ ପାଦ ତଳେ ପଡ଼ିଗଲେ । ଏହାର ସ୍ମାରକୀ ସ୍ୱରୂପ ରାଜା ଏକ ସ୍ୱତନ୍ତ୍ର ଭୋଗ ଖଞ୍ଜିଲେ ଓ ତାହା 'ବାଳଭୋଗ' ନାମରେ ନାମିତ ଓ ଏହାକୁ ମାଦଳାପାଞ୍ଜିରେ ଲିପିବଦ୍ଧ ପାଇଁ ରାଜା ଆଦେଶ ଦେଇଥିଲେ । ଏହି ଘଟଣାର ସ୍ମୃତି ରକ୍ଷା କରି ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଗୋପାଳବଲ୍ଲଭ ସହିତ ବାଳଭୋଗ ଅର୍ପିତ ହୁଏ । (ଶ୍ରୀ.ସ୍ୱ.- ୨ୟ- ପୃ.୯୯/ ଶ୍ରୀ.ପ.ସେ.ପୂ. - ପୃ. ୩୫୨) ।

**ବାଲି ଉପର ସାଆନ୍ତ**-*ଦେ.ବି.*- ଶ୍ରୀକ୍ଷେତ୍ରର ଶ୍ରୀ ଲୋକନାଥ ।

**ବାଲି ତୃତୀୟା**-*ଦେ.ବି.*- ଭାଦ୍ର ଶୁକ୍ଳ ତୃତୀୟା, କଥିତ ଅଛି ଯେ ଏ ଦିନ ଗୌରୀ (ପାର୍ବତୀ) ଶିବଙ୍କୁ ସ୍ୱାମୀ ରୂପେ ପାଇବା ନିମନ୍ତେ ବାଲିରେ ଶିବଲିଙ୍ଗ କରି ପୂଜା କରୁଥିଲେ । ଏଣୁ ଏହି ଦିନ ସଧବା ଓ କୁମାରୀମାନେ ନଦୀ ବା ପୁଷ୍କରିଣୀର କୂଳରେ ଓଦା ବାଲିରେ ଶିବଲିଙ୍ଗ ନିର୍ମାଣ କରି ପୂଜା କରି, ଅହୋରାତ୍ର ନିର୍ଜଳା ଉପବାସ କରନ୍ତି । ଏ ବ୍ରତ କଲେ ସ୍ତ୍ରୀମାନେ ବିଧବା ଓ ନିଃସନ୍ତାନ ଦୋଷ ଭୋଗ କରନ୍ତି ନାହିଁ । ଶ୍ରୀମନ୍ଦିରରେ ପୁରୁଷୋତ୍ତମ ବଲ୍ଲଭ, ଟେରାଫିଟା ଆଳତୀ (ସନ୍ଧ୍ୟା ଆଳତି) ବଢ଼ିଲା ଉତ୍ତାରେ ଦକ୍ଷିଣିଘରୁ ରାମକୃଷ୍ଣ ଆଜ୍ଞାମାଳ ପାଇ ବଟତଳେ ଥିବା ପାଲିଙ୍କିରେ ବିଜେ ହୋଇ ଶ୍ରୀମନ୍ଦିର ବେଢ଼ା ନ ବୁଲି ସିଂହଦ୍ୱାର ଦେଇ ଉତ୍ତରପାର୍ଶ୍ୱ ନକ୍ଷିଉଦର ଆଗେ କାଠ ସିଂହାସନରେ ପାଲିଙ୍କି ସହିତ ବିଜେ ହୁଏନ୍ତି । ଏହାଙ୍କ ଛାମୁରେ ବାସେଳି ସାହି ଲୋକେ ଅନ୍ଧମନ୍ଦିର ହାତୀ ପ୍ରସ୍ତାବ କରିଥାନ୍ତି । ଏ ଉତ୍ତାରୁ ଶୀତଳ ଭୋଗ ବନ୍ଦାପନା ହୋଇ ଦକ୍ଷିଣି ଘରକୁ ବାହୁଡ଼ା ବିଜେ କରନ୍ତି । ସନ୍ଧ୍ୟାଧୂପ ପରେ ମଦନମୋହନ ନାଟପା ଖଟ ଉପରେ ବିଜେ ହେଲେ ଅନ୍ଧ ପ୍ରସ୍ତାବ କରାଯାଏ । (ଶ୍ରୀ.ସ୍ୱ. ୨ୟ- ପୃ. ୯୩, ପୂ.ଓ.ଭା. - ପୃ. ୫୫୬୨) ।

**ବାଲିରଥ**-*ଦେ.ବି.*- କ୍ଷଣସ୍ଥାୟୀ, ଅସ୍ଥାୟୀ ଶରୀର । ମଣିଷ ଶରୀର ମଧ୍ୟ ବାଲିରଥ ସଦୃଶ ଅସ୍ଥାୟୀ, କ୍ଷଣଭଙ୍ଗୁର, ମାତ୍ର ତାର ଗୁଣ, କର୍ମ କୃତି ହିଁ ତାଙ୍କୁ ଯଶସ୍ୱୀ କରାଏ । ବାଙ୍କୀ ମୁହାଣରେ ବଳରାମ ଦାସ ନିର୍ମିତ ବାଲିରଥରେ ମହାପ୍ରଭୁ ଜଗନ୍ନାଥ ଆବିର୍ଭାବ ହୋଇଥିଲେ ।
(ଓ.ସାଂ.ଶ.- ପୃ. ୨୫୮) ।

**ବାଲି ଲୋକନାଥ**-*ଦେ.ବି.*- ପୁରୀ ସହରର ପଶ୍ଚିମାଂଶରେ ବାଲୁକାମୟ ପ୍ରଦେଶରେ ପ୍ରତିଷ୍ଠିତ ଶିବଲିଙ୍ଗ । ପୁରୀର ରକ୍ଷକ ଦେବ ଓ ପୁରୀ କ୍ଷେତ୍ର ଏହାଙ୍କ ଯୋଗୁ ଶୈବକ୍ଷେତ୍ର ରୂପେ ପରିଚିତ ।
(ପୂ.ଓ.ଭା. - ପୃ. ୫୫୬୩) ।

**ବାଲିସାହି**-*ଦେ.ବି.*- ବାଲୁକାମୟ ସ୍ଥାନରେ ପ୍ରତିଷ୍ଠିତ ଲୋକବସତି ପୁରୀ ସଦରର ଗୋଟିଏ ସାହି । ଉକ୍ତ ଜିଲାର ରାହଙ୍ଗା ପ୍ରଗଣାର ଗୋଟିଏ ଗ୍ରାମକୁ ବାଲିସାହି ନାମ ଦିଆଯାଇଅଛି । ଭାଦ୍ର କୃଷ୍ଣାଷ୍ଟମୀ କୃଷ୍ଣ ଜନ୍ମ ପରେ କୃଷ୍ଣାଦଶମୀରେ ଠାକୁର ଜଗମୋହନରେ ବିଜେ ହେଲା ପରେ ବାଲିସାହି ଲୋକେ ବକାସୁର ବଧ ପ୍ରସ୍ତାବ କରନ୍ତି । ଏହାପରେ ଶୀତଳ ଭୋଗ, ବନ୍ଦାପନା ଓ ଠାକୁର ଦକ୍ଷିଣିଘରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୧, ପୂ.ଓ.ଭା. - ପୃ. ୫୫୬୩) ।

**ବାସନଘର**-*ଦେ.ବି.*- ଶ୍ରୀମନ୍ଦିରରେ ଯେଉଁ ସ୍ଥାନରେ ଠାକୁରଙ୍କ ବ୍ୟବହୃତ ବାସନ ମୁଦୁଲି ଜିମା ଜମା ରଖାଯାଏ ।

**ବାସବିଡ଼ିଆ**-*ଦେ.ବି.*- ଶ୍ରୀଠାକୁରଙ୍କ ଅର୍ପଣ କରାଯାଉଥିବା ସୁବାସ ଖିଲିପାନ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ବାସନ୍ତୀକ ପୂଜା**-*ସଂ.ବି.*- ବାସନ୍ତିକ ଦୁର୍ଗୋତ୍ସବ । ଚୈତ୍ର ଶୁକ୍ଳ ପ୍ରତିପଦଠାରୁ ଆରମ୍ଭ କରି ୯ମୀ ପର୍ଯ୍ୟନ୍ତ କରାଯାଉଥିବା ଦୁର୍ଗାପୂଜା ଉତ୍ସବ ।
(ପୂ.ଓ.ଭା. - ପୃ. ୫୫୭୨) ।

**ବାସିପାଳିଆ** - *ଦେ.ବି.*- ଶ୍ରୀମନ୍ଦିରରେ ରାତିରୁ ସେବାରେ ରହିଥିବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୯) ।

**ବାସୁଦେବ**-*ଦେ.ବି.*- ଶ୍ରୀକୃଷ୍ଣ । ବସୁଦେବଙ୍କ ଔରସରୁ ଦେବକୀଙ୍କ ଅଷ୍ଟମ ଗର୍ଭରେ ଜାତ ହୋଇଥିବାରୁ ଶ୍ରୀକୃଷ୍ଣ ବାସୁଦେବ ରୂପେ ପରିଚିତ ।
(ପୂ.ଓ.ଭା. - ପୃ. ୫୫୭୭, ଓ.ସାଂ.ଶ. - ପୃ. ୨୬୨) ।

**ବାହନ**-*ଦେ.ବି.*- ଦେବଦେବୀଙ୍କୁ ବହନ କରୁଥିବା ପଶୁପକ୍ଷୀ / ଅନ୍ୟ ପ୍ରାଣୀ ।

**ବାହାର କାଠ**-*ଦେ.ବି.*- ଶ୍ରୀମନ୍ଦିରର ଜଗମୋହନ ମଧ୍ୟରେ ଜୟବିଜୟ ଦ୍ୱାରରେ ଦିଆଯାଉଥିବା କାଠଆଡ଼ି ।

**ବାହାର କୁଆଁର**-*ଦେ.ବି.*- କୁମାର ପୂର୍ଣ୍ଣିମା ଦିନ ଶ୍ରୀଲକ୍ଷ୍ମୀଙ୍କ ଜଗମୋହନରେ ଲକ୍ଷ୍ମୀ ଓ ମଦନମୋହନଙ୍କ ଦ୍ୟୁତକ୍ରୀଡ଼ା ବା ପଶାଖେଳ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୯-୧୦୦) ।

**ବାହାର ଗରାବଡୁ**-*ଦେ.ବି.*- କୋଠଭୋଗ ପାଣିଆ ।

**ବାହାର ଗାଆଣୀ**-*ଦେ.ବି.*- ଶ୍ରୀମନ୍ଦିରର ମାହାରୀ ବିଶେଷ । ଏମାନେ ଜୟବିଜୟ ଦ୍ୱାର ଲଙ୍ଘନ କରି ଭିତରକୁ ଯାଆନ୍ତି ନାହିଁ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ବାହାର ଚନ୍ଦନ**-*ଦେ.ବି.*- ଅକ୍ଷୟ ତୃତୀୟାଠାରୁ ସ୍ନାନପୂର୍ଣ୍ଣିମା ପର୍ଯ୍ୟନ୍ତ ଠାକୁରଙ୍କର ଗ୍ରୀଷ୍ମ ନୀତି ବା ଚନ୍ଦନ ନୀତିର ପ୍ରଥମାର୍ଦ୍ଧ । ଏହି ସମୟରେ ଚନ୍ଦନ ପୋଖରୀ ଠାରେ ଏକୋଇଶି ଦିନ ଅନୁଷ୍ଠିତ ଚାପ ନୀତିକୁ ବାହାର ଚନ୍ଦନ କୁହାଯାଏ । ଏକୋଇଶି ଦିନ ବାହାର ଚନ୍ଦନ ଓ ଅପର ଏକୋଇଶି ଦିନ ଭିତର ଚନ୍ଦନ ରୂପେ ପରିଚିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୯) ।

**ବାହାରଟେରା**-*ଦେ.ବି.*- ଶ୍ରୀଠାକୁରଙ୍କ ସକାଳ ବଲ୍ଲଭ ଭୋଗ ଲାଗି ହେବା ସମୟରେ ଏବଂ ଧୂପ ସମୟରେ ମଧ୍ୟ ଭିତର କାଠ ପାଖରେ ପ୍ରତିହାରୀଙ୍କ ଦ୍ୱାରା ଟେରାବନ୍ଧା ପ୍ରଥା ପ୍ରଚଳିତ ଅଛି । ଧୂପ ସରିଲା ପରେ ଟେରା (ଲୁଗାର ପରଦା) ଖୋଲାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬, ୧୮, ୨୦) ।

**ବାହାର ଦେଉଳି ଯୋଗାଣିଆ ସେବା** -*ଦେ.ବି.*- ଏମାନେ ପ୍ରତିଦିନ ସକାଳ ଧୂପ ପରେ ଗୋଦାମରୁ

ବାହାର ଦେଉଳି ଭୋଗର ଅମୁଣିଆ ଜିନିଷ ନେଇ ଲକ୍ଷ୍ମୀଙ୍କ ରୋଷରେ ବାହାର ଦେଉଳି ସୁଆର ଜିମା ଦିଅନ୍ତି । ଏମାନେ ଲକ୍ଷ୍ମୀଙ୍କ ରୋଷ ଧୋପଖାଳ କରନ୍ତି । ରୋଷକୁ ବିମଳାଙ୍କ କୂଅରୁ ପାଣି ଯୋଗାନ୍ତି । ବାହାର ଦେଉଳିଭୋଗ ଦକ୍ଷିଣି ଘରକୁ ନେବାବେଳେ ରୋଷଆଡୁ କାଠ ଖଣ୍ଡେ ଧରି ଜଗି ଛେକ ସହ ଆସନ୍ତି । ପତି ମହାପାତ୍ର ନୃସିଂହଙ୍କ ନିକଟକୁ ଭୋଗ ନେଲେ ଜଗି ତା' ସହ ଯାଆନ୍ତି । ପାର୍ଶ୍ୱଦେବତାଙ୍କ ସେବକମାନେ ଏହାଙ୍କ ମାର୍ଫତରୁ ଯେଝା ଠାକୁରଙ୍କ ପାଇଁ ଭୋଗ ନିଅନ୍ତି । ପର୍ବପର୍ବାଣିମାନଙ୍କରେ ଅଧିକ ଜିନିଷ ଗୋଦାମରୁ ନେଇ ରୋଷରେ ଦିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨-୨୩) ।

**ବାହାରଦେଉଳି ରୋଷ**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାସ୍ଥିତ ଲକ୍ଷ୍ମୀଙ୍କ ଛୋଟ ରୋଷେଇଶାଳ । ମୁଖ୍ୟ ମନ୍ଦିରକୁ ଛାଡ଼ିଦେଲେ ଅନ୍ୟ ମନ୍ଦିରଗୁଡ଼ିକ ପାଇଁ ଏଠାରେ କାକରା, ଡାଲିମ୍ବ, ମାଣ୍ଡୁଅ, ମହନଭୋଗ ଆଦି ବାହାର ଦେଉଳି ସୁଆରଙ୍କ ଦ୍ୱାରା ପ୍ରସ୍ତୁତ ହୁଏ । ବଡପଣ୍ଡା ଭୋଗଛେକ ଲକ୍ଷ୍ମୀଙ୍କ ଦେଉଳକୁ ନେଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨) ।

**ବାହାର ଦେଉଳି ସୁଆର**-*ଦେ.ବି.*- ଶ୍ରୀମନ୍ଦିରର ବାହାର ଦେଉଳି ରୋଷ ରାନ୍ଧୁଣିଆ । ଦୈନିକ ଗୋଦାମରୁ ଯୋଗାଣିଆ କୋଠଭୋଗ ଜିନିଷ ନେଇ ଲକ୍ଷ୍ମୀଙ୍କ ରୋଷରେ ପଇଠ କରନ୍ତି ଓ ଏଠାରେ ବିଭିନ୍ନ ପ୍ରକାର ଛଣା ଜାତୀୟ ମିଷ୍ଟାନ୍ନ ପ୍ରସ୍ତୁତ କରାଯାଏ ।
(ଶ୍ରୀ.ସ୍ୱ. - ପୃ. ୧୪) ।

**ବାହାର ବନକ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ଚିତ୍ରକର ସେବକ । ଯେଉଁ ଚିତ୍ରକରମାନେ ଶ୍ରୀଜୀଉଙ୍କ ଚିତ୍ର କରିଥାନ୍ତି, ସେମାନେ ଶ୍ରୀମୁଖ ସିଂହାରୀ ବା ଭିତର ବନକ ସେବକ । ଶ୍ରୀଠାକୁରଙ୍କ ବ୍ୟତୀତ ବାହାର ଚିତ୍ର କାର୍ଯ୍ୟ ଯେଉଁ ସେବକମାନେ କରନ୍ତି ସେମାନେ ବାହାର ବନକ ସେବକ ।
(ଶ୍ରୀ.ସ୍ୱ. ୬ଷ - ପୃ. ୩୬) ।

**ବାହାରବେଢ଼ା**-*ଦେ.ବି.*- କୂର୍ମବେଢ଼ା ପ୍ରାଚୀରଠାରୁ ମେଘନାଦ ପାଚେରୀ ପର୍ଯ୍ୟନ୍ତ ବିସ୍ତୃତ ସ୍ଥାନ । ଶ୍ରୀମନ୍ଦିର ମଧ୍ୟସ୍ଥ ପରିସରକୁ ଦୁଇ ଭାଗରେ ବିଭକ୍ତ କରାଯାଏ । ବାହାର ବେଢ଼ା ଓ ଭିତର ବେଢ଼ା । ପ୍ଲଟ ନମ୍ବର ୧୩୫ରୁ ପ୍ଲଟ ନମ୍ବର ୨୮୬ ମଧ୍ୟରେ ଥିବା ସ୍ଥାନ ଓ ଦେବଦେବୀ ମନ୍ଦିର ବାହାର ବେଢ଼ାର ଅନ୍ତର୍ଭୁକ୍ତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୬/୨୪୯) ।

**ବାହାର ମେକାପ**-*ଦେ.ବି.*- ଯାତ୍ରାକାଳରେ ଦେବବିଗ୍ରହଙ୍କୁ ମନ୍ଦିରର ବାହାରକୁ ଆଣିବା ସମୟରେ ତାଙ୍କର ବସ୍ତ୍ରାଳଙ୍କାରମାନଙ୍କ ପାଇଁ ଯେଉଁ ସେବକ ଦାୟୀ ରହନ୍ତି ।
(ପୂ.ଓ.ଭା. - ପୃ. ୫୫୮୪) ।

**ବାହାର ସେବା**-*ଦେ.ବି.*- ଦେବଦେବୀ ବିଗ୍ରହର ଛାମୁକୁ ନ ଯାଇ ଯେଉଁ ସେବା କରାଯାଏ । ଯଥା- ମନ୍ଦିର ବେଢ଼ା ଓଳାଇବା, ଘଣ୍ଟ କାହାଳୀ ଆଦି ବଜାଇବା, ବାସନ ମାଜିବା ଓ ଚନ୍ଦନ ଘୋରିବା ।
(ପୂ.ଓ.ଭା. - ପୃ. ୫୫୮୪) ।

**ବାହାଲ**-*ଦେ.ବି.*- ପିଠଉ ବଳିତାରେ ଠାକୁରଙ୍କୁ ବନ୍ଦାପନା କରିବାର ବିଧି ।

**ବାହୁଟ**-*ଦେ.ବି.*- ବାହୁର ଏକ ଅଳଙ୍କାର । ବାହୁର ରକ୍ଷା କବଚ । ଶ୍ରୀମନ୍ଦିରରେ ପହଣ୍ଡି ସମୟରେ ଶ୍ରୀଜଗନ୍ନାଥଙ୍କ ଶ୍ରୀଭୁଜକୁ ଦୃଢ଼ ରଖିବା ପାଇଁ ଏକ ନିର୍ଦ୍ଦିଷ୍ଟ ଆକୃତିର କାଷ୍ଠଦଣ୍ଡ ଭିଡ଼ାଯାଏ । ପ୍ରତି ପହଣ୍ଡିରେ ଥରେ ଲେଖାଏଁ ନୂଆ ବାହୁଟ ଲାଗେ । ଏଥିନିମନ୍ତେ ସାକ୍ଷୀଗୋପାଳର ବକୁଳବନରୁ କାଠ ଆସେ । କିମ୍ବଦନ୍ତୀ ଅଛି ଶ୍ରୀଜଗନ୍ନାଥ ନୀଳାଚଳରେ ସବୁ କାର୍ଯ୍ୟ ସାରି ଆଳସ୍ୟ ମେଣ୍ଟାଇବା ପାଇଁ ଫୁଲଅଳସା ବା ସାକ୍ଷୀଗୋପାଳକୁ ଯାଆନ୍ତି । କାରଣ ସେଠାରେ ଦେବସଭା ହୁଏ । ସିଦ୍ଧ ବକୁଳ ବନ ଏକକ ଜଗନ୍ନାଥ ପୁରୀ ଜଗନ୍ନାଥଙ୍କ ଅଳା ହିସାବ ହୁଅନ୍ତି । ଜଗନ୍ନାଥ ପଣସ ଖାଇ ତାଙ୍କ ମୁଣ୍ଡରେ ଅଠା ବୋଲିଥିବାରୁ ରାଜା ଭାବିଲେ ବୋଧେ ସିଦ୍ଧ ବକୁଳଙ୍କୁ ପଣସ ଭଲ ଲାଗେ । ଏଣୁ ତାଙ୍କ

ନିକଟରେ ପଣସ ଭୋଗ ବିଧି ଆରମ୍ଭ କଲେ । ଜଗନ୍ନାଥ ସିଦ୍ଧବକୁଳକୁ ଚୋର କରିଦେଇଥିବାରୁ ସେ ଜଗନ୍ନାଥଙ୍କୁ କହିଲେ, ରଥବେଳେ ମୋରି ବଣର କାଠରେ ତୁମକୁ ବନ୍ଧାହେବାକୁ ପଡ଼ିବ । (ଶ୍ରୀ.ସ୍ୱ. ୨ୟ - ପୃ. ୬୬, ଓ.ସାଂ.ଶ. - ପୃ. ୨୬୨) ।

**ବାହୁଡ଼ାଯାତ୍ରା**-*ଦେ.ବି.*- ଆଷାଢ଼ ଶୁକ୍ଳ ଦଶମୀରେ ବାହୁଡ଼ାଯାତ୍ରା ଅନୁଷ୍ଠିତ ହୁଏ । ଏହା ଜନ୍ମବେଦୀରୁ ରତ୍ନବେଦୀକୁ ଫେରିଆସିବା ଉତ୍ସବ । କେହି କେହି ଏହାକୁ 'ଦକ୍ଷିଣାଭିମୁଖୀ ଯାତ୍ରା' ବୋଲି କହିଥାନ୍ତି । ଏହିଦିନ ବିଗ୍ରହମାନେ ଗୁଣ୍ଡିଚା ମନ୍ଦିରରୁ ଧାଡ଼ି ପହଣ୍ଡିରେ ଦକ୍ଷିଣଦ୍ୱାର ଦେଇ ରଥ ଉପରେ ବିଜେ କରି ଶ୍ରୀମନ୍ଦିର ଅଭିମୁଖେ ଯାତ୍ରା କରିଥାଆନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୭୯/୮୦, ପୂ.ଓ.ଭା. - ପୃ. ୫୫୯୧) ।

**ବାଳମୁକୁନ୍ଦ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ପରିସର ମଧ୍ୟରେ ବଟ ଜଗନ୍ନାଥଙ୍କ ସମ୍ମୁଖ ଭାଗରେ ତଥା ବାଟ ମଙ୍ଗଳାଙ୍କ ଦକ୍ଷିଣ କୋଣରେ ବାଳମୁକୁନ୍ଦ ମନ୍ଦିର ଅବସ୍ଥିତ । ଏହି କ୍ଷୁଦ୍ର ମନ୍ଦିରଟିରେ ପ୍ରାୟ ଏକ ଫୁଟ ଲମ୍ବ ବିଶିଷ୍ଟ କଳା ଚିକ୍କଣ ମୁଗୁନି ପ୍ରସ୍ତରରେ ନିର୍ମିତ ବାଳମୁକୁନ୍ଦ ବିଗ୍ରହ ଦକ୍ଷିଣ ଆଡ଼କୁ ମସ୍ତକ ରଖି ଚିତ୍ ହୋଇ ଶୋଇଛନ୍ତି । ପ୍ରସ୍ତର ନିର୍ମିତ ଏକ ବଟପତ୍ର ଉପରେ ଏହି ବିଗ୍ରହ ଶୟନ କରିଥିବା ଦୃଷ୍ଟିଗୋଚର ହୁଏ । ବାଳମୁକୁନ୍ଦ ତାଙ୍କର ପାଦର ଆଙ୍ଗୁଠିକୁ ହସ୍ତରେ ଧରି ମୁଖପଦ୍ମରେ ପ୍ରବେଶ କରାଇଛନ୍ତି । କେହି କେହି ବାଳମୁକୁନ୍ଦ ଓ ବଟକୃଷ୍ଣଙ୍କୁ ଏକ ବୋଲି ମତ ଦେଇଥାନ୍ତି । ମାତ୍ର ପ୍ରକୃତରେ ଏହା ଦୁଇଟି ଭିନ୍ନ ବିଗ୍ରହ ଅଟନ୍ତି । (ପୂ.ଓ.ଭା. - ପୃ. ୫୫୫୪, ଶ୍ରୀ.ସ୍ୱ. - ପୃ. ୨୪୩, ଶ୍ରୀ.ବେ.ଦେ. - ପୃ. ୩୩) ।

**ବାହୁଟ ବିଜୟ ତୁଳିଗଡ଼**-*ଦେ.ବି.*- ଶ୍ରୀଜୀଉଙ୍କର ଏକ ବସ୍ତ୍ର ବିଶେଷ । (ଶ୍ରୀ.ସ୍ୱ. ୨ୟ - ପୃ.୧୪୭) ।

**ବାହୁଟ ମାପ**-*ଦେ.ବି.*- ଶ୍ରୀଭୁଜରେ ବଉଳ କାଠ ବାହୁଟ ନିର୍ମାଣ ଲାଗି ମାପ । (ଶ୍ରୀ.ସ୍ୱ. ୨ୟ - ପୃ. ୬୬, ପୁ.ବୋ. - ପୃ.୨୬) ।

**ବିଗ୍ରହ**-*ଦେ.ବି.*- ମୂର୍ତ୍ତି, ଆକୃତି, ଦେବମୂର୍ତ୍ତି । ପାଷାଣ ମୂର୍ତ୍ତି, ଦାରୁବିଗ୍ରହ, ମଣି ବିଗ୍ରହ ଧାତୁ ବିଗ୍ରହ, ସ୍ୱର୍ଣ୍ଣ ବିଗ୍ରହ ଇତ୍ୟାଦି । ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା, ଶ୍ରୀବଳଭଦ୍ର ଓ ଶ୍ରୀସୁଦର୍ଶନ ଦାରୁ ବିଗ୍ରହ । ଏମାନଙ୍କର ବିଜେ ବିଗ୍ରହ ବା ଚଳନ୍ତି ପ୍ରତିମା ମଧ୍ୟ ସ୍ୱର୍ଣ୍ଣ ନିର୍ମିତ । (ପୂ.ଓ.ଭା. - ପୃ. ୫୬୧୧) ।

**ବିଘ୍ନ ବିନାୟକ**-*ସଂ.ବି.*- ହିନ୍ଦୁମାନେ ବିଘ୍ନ ବିନାଶାର୍ଥ ପୂଜା ଆଦିରେ ପ୍ରଥମେ ଗଣେଶଙ୍କର ପୂଜା କରନ୍ତି । ଶ୍ରୀମନ୍ଦିର ପରିସର ମଧ୍ୟରେ ଭିନ୍ନ ଭିନ୍ନ ନାମରେ ଅନେକ ବିନାୟକ ବିଗ୍ରହ ପୂଜିତ । (ପୂ.ଓ.ଭା. - ପୃ. ୫୬୧୪) ।

**ବିଜୟ/ବିଜେ**-*ଦେ.ବି.*- କୌଣସି ସ୍ଥାନକୁ ବିମାନ ପାଲିଙ୍କି ଦ୍ୱାରା ରାଜା ବା ଠାକୁରଙ୍କ ଗମନ କିମ୍ବା କୌଣସି ସ୍ଥାନରେ ଉପବେଶନ । (ଶ୍ରୀ.ସ୍ୱ. ୨ୟ - ପୃ. ୪୫) ।

**ବିଜେ କାହାଳୀ**-*ଦେ.ବି.*- ମହାରାଜ କିମ୍ବା ଶ୍ରୀଜୀଉଙ୍କର ବିଜେ ବେଳେ ବାଜୁଥିବା କାହାଳୀ । (ଶ୍ରୀ.ସ୍ୱ. - ପୃ. ) ।

**ବିଜେ ପ୍ରତିମା**-*ସଂ.ବି.*- ଶ୍ରୀମନ୍ଦିରରେ ବିଭିନ୍ନ ସମୟରେ ବିଭିନ୍ନ ପର୍ବପର୍ବାଣି ବର୍ଷତମାମ ଲାଗି ରହିଛି । ସ୍ନାନଯାତ୍ରା, ଗୁଣ୍ଡିଚା ଯାତ୍ରା ବ୍ୟତୀତ ଅନ୍ୟ ଯାତ୍ରାରେ ଶ୍ରୀଜୀଉଙ୍କ ବିଜେ ପ୍ରତିମା ପ୍ରତିନିଧିତ୍ୱ କରିଥାଆନ୍ତି । ସେମାନେ ହେଲେ- ଶ୍ରୀମଦନମୋହନ, ରାମକୃଷ୍ଣ, ଦୋଳଗୋବିନ୍ଦ, ରାମଲକ୍ଷ୍ମଣ, ନାରାୟଣ ଓ ରାଧାମାଧବ । ଏମାନଙ୍କ ମଧ୍ୟରେ ପ୍ରଧାନ ବିଜେ ପ୍ରତିମା ହେଉଛନ୍ତି ଶ୍ରୀମଦନମୋହନ । ପ୍ରାଚୀନ ଚଳନ୍ତି ପ୍ରତିମା ମଦନମୋହନ ଶତାଧିକ ବର୍ଷ ପୂର୍ବେ ନରେନ୍ଦ୍ର ପୁଷ୍କରଣୀରେ ଚାପ ସମୟରେ ଚାପଟି ବୁଡ଼ିଯାଇଥିଲା ଓ ମଦନମୋହନ ମୂର୍ତ୍ତି ଜଳମଗ୍ନ ହୋଇ ଯାଇଥିଲେ । ବହୁ ଖୋଜାଖୋଜି ପରେ

ଉଦ୍ଧାର ହୋଇ ନ ପାରିବାରୁ ରାଘବ ଦାସ ମଠ ଏହି ଚଳନ୍ତି ପ୍ରତିମାଙ୍କୁ ଶ୍ରୀମନ୍ଦିରକୁ ଅର୍ପଣ କରିଥିଲେ । ୧୫୬୮ ଖ୍ରୀଷ୍ଟାବ୍ଦରେ କଳାପାହାଡ଼ ଶ୍ରୀମନ୍ଦିର ଲୁଣ୍ଠନ କରି ତତ୍‌କାଳୀନ ଶ୍ରୀଜୀଉଙ୍କର ଚଳନ୍ତି ପ୍ରତିମା 'ଇନ୍ଦ୍ରନୀଳମଣି'କୁ ନେଇଯାଇଥିଲେ । ଏହି 'ଇନ୍ଦ୍ରନୀଳମଣି' ବିଜେ ପ୍ରତିମା ଅତୀବ ରମଣୀୟ ଓ ମୂଲ୍ୟବାନ ଥିଲେ । କାରଣ ଏହା ୩୦ ମହଣ ସୁନାରେ ନିର୍ମିତ ହୋଇଥିଲେ ଓ ଏହାଙ୍କ ଆଖି ଦୁଇଟିରେ ହୀରା ଥିଲା ।
(ଶ୍ରୀ.ଜି. - ପୃ. ୨୩୧/୩୧୭) ।

**ବିଜେ ମହାଜନ**-*ଦେ.ବି.*- ଶ୍ରୀମନ୍ଦିରରେ ନୀତି ସମୟରେ ବିଜେ ପ୍ରତିମାଙ୍କୁ ହାତରେ ଧରି ବିଜେ କରାଉଥିବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୬) ।

**ବିଜେସ୍ଥଳୀ**-*ଦେ.ବି.*- ପୁରୀ ମଠ ମଧ୍ୟରେ ଦେବାଳୟ ଥିବା ସ୍ଥାନ ।
(ଶ୍ରୀ.ସ୍ୱ. - ପୃ. ) ।

**ବିଡ଼ିଆ**-*ଦେ.ବି.*- ନଳି ଖିଲିପାନ କିମ୍ବା ଛାଚି ପାନରେ ଲବଙ୍ଗ, ଅଳେଇଚ, ଗୁଆ, କର୍ପୂର, ଜାଇଫଳ ତଥା ଜାଇତ୍ରୀ ଦେଇ ପ୍ରସ୍ତୁତ ହୋଇଥିବା ବିଡ଼ିଆ ପାନ । ଧୂପ ପରେ ପରେ ଠାକୁରଙ୍କ ପାଖରେ ବିଡ଼ିଆ ଓ ପାନବଟା ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ ୨୦, ଶ୍ରୀ.ଶ. - ପୃ ୧୨୭) ।

**ବିଡ଼ିଆମଣୋହି**-*ଦେ.ବି.*- ଶ୍ରୀଜୀଉଙ୍କୁ (ଶ୍ରୀ ବଳଭଦ୍ର, ଦେବୀ ସୁଭଦ୍ରା, ଶ୍ରୀଜଗନ୍ନାଥ)ଦୁଇଟି ଲେଖାଏଁ ଛଅଟି, ସେହି କ୍ରମରେ ସକାଳ ଧୂପରେ ଛଅଟି ଦ୍ୱିପ୍ରହର ଧୂପରେ ଛଅଟି, ସନ୍ଧ୍ୟା ଧୂପରେ ଛଅଟି, ବଡ଼ସିଂହାର ବେଶରେ ଛଅଟି ଓ ପହୁଡ଼ ପରେ ପଲଙ୍କ ତଳେ ରଖଯାଏ ଛଅଟି, ମୋଟରେ ଛଅ ଥରରେ ଛତିଶଟି ପାନ ଅର୍ପଣ କରାଯାଏ । ବିଡ଼ିଆ କାରଣ ଚୂନ ଅଶୁଦ୍ଧ ଯୋଗୁ ବ୍ୟବହାର ହୁଏ ନାହିଁ । ଏଥିରେ ଗୁଆ, ଲବଙ୍ଗ, କର୍ପୂର, ଜାଇଫଳ, ଅଳେଇଚ ପକାଯାଏ । ଭକ୍ତି ମାର୍ଗରେ ବିଚାର କଲେ ଏଥିରେ ଚଉଷଠି ମସଲା ଯୁକ୍ତ ହୋଇଥାଏ । ଏଗୁଡ଼ିକ ହେଲା - (ପାଞ୍ଚ ମନ + ପଚିଶ ପ୍ରକୃତି + ନବଧା ଭକ୍ତି + ଚଉଦ ଭୁବନ + ଆଠ ବୈକୁଣ୍ଠ + ତିନି ଶକ୍ତି = ଚଉଷଠି । ବିଡ଼ିଆ ମଣୋହିରେ ଥାଏ ଖିଲ ଓ ଛାଚିପାନ । ହଡ଼ପ ନାଏକ ବନ୍ଧା ବିଡ଼ିଆ ଗୁପାବଟାରେ ତିନି ଠାକୁରଙ୍କ ପାଖରେ ଲାଗିହୁଏ । (କ୍ଷେ.ସ.) ।

**ବିଡ଼ିଆଯୋଗାଣିଆ ସେବା**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ହଡ଼ପ ନାହାକଙ୍କର ସହକାରୀ । ଦୈନିକ ଓ ପର୍ବପର୍ବାଣିରେ ସବୁ ପ୍ରକାର ବିଡ଼ିଆ ଓ ମକର ସଂକ୍ରାନ୍ତି ଦିନ ଛଅଟି ପାନଚୂଳ ଯୋଗାଇଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ବିଡୁଆ ପନ୍ତିବଡୁ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ବଡ଼ସୁଆର ସେବକ ବିଶେଷ । ଅମାଲୁ ସୁଆର, ତୁଣ ସୁଆର, ଥାଳି ସୁଆର, ତୋଳାବଡୁ, ପାଗୁଆ, ଚଣାପୁଆ, ପିପସୁଆର ଏହି ଗୋଷ୍ଠୀର ସେବକ । ଏମାନେ ବିଶେଷତଃ ପିଠାର ବିଣ୍ଡ କରି ତହିଁରେ ଆବଶ୍ୟକ ମସଲା ମିଶାନ୍ତି । ଅଟା, ବିରି, ଚୂନା ଆଦି ଚକଟି ସମସ୍ତ ଜିନିଷ ପ୍ରସ୍ତୁତ କରି ସୁଆରଙ୍କୁ ଯୋଗାନ୍ତି ।
(ଶ୍ରୀ.ସ୍ୱ.- ପୃ. ୧୧୮ ) ।

**ବିଦ୍ୟାପତି**-*ଦେ.ବି.*- ରାଜା ଇନ୍ଦ୍ରଦ୍ୟୁମ୍ନ ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ପୂଜିତ ନୀଳମାଧବଙ୍କ ସନ୍ଧାନ ଲାଗି ବିଦ୍ୟାପତିଙ୍କୁ ନୀଳକନ୍ଦରକୁ ପଠାଇଥିଲେ । ବିଦ୍ୟାପତି ନୀଳକନ୍ଦରରେ ପହଞ୍ଚି ବିଶ୍ୱାବସୁର କନ୍ୟା ଲଳିତାକୁ ବିବାହ କରି ତାଙ୍କ ସହଯୋଗରେ ନୀଳମାଧବଙ୍କୁ ଦର୍ଶନ କରିପାରିଥିଲେ ।
(ଶ୍ରୀ.ଜି. - ପୃ.୧୦) ।

**ବିଭୀଷଣ ବନ୍ଦାପନା**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ବନ୍ଦାପନା ନୀତିରେ କରାଯାଉଥିବା ଦକ୍ଷିଣାଭିମୁଖୀ ବନ୍ଦାପନା ।
(ଶ୍ରୀ.ସ୍ୱ. - ପୃ. ୫୯) ।

**ବିମଳା ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ବିମଳା ଠାକୁରାଣୀଙ୍କର ମନ୍ଦିର । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟେକ ନୀତିର ଠିକ୍ ପରେ ପରେ ଏଠାରେ ସେହିପରି ନୀତି ବଢ଼େ । ବଡ଼ ଦେଉଳର

ପ୍ରତ୍ୟେକ ଭୋଗ ବିମଳାଙ୍କୁ ସମର୍ପିତ ହୁଏ ଓ ବଡ଼ବାଡ଼ର ପିଙ୍ଗଣ ବଲ୍ଲଭ ସକାଶେ ଦିଆହୋଇଥାଏ । ଶ୍ରୀକ୍ଷେତ୍ରରେ ବିମଳାଙ୍କର ପ୍ରସିଦ୍ଧି ରହିଛି । ସ୍କନ୍ଦ ପୁରାଣ ମତେ ଶ୍ରୀକ୍ଷେତ୍ରର ଅଷ୍ଟଶକ୍ତି ମଧ୍ୟରୁ ଅନ୍ୟତମ । ପାର୍ଶ୍ୱଦେବତା ହେଲେ ଚିତ୍ରରେ ଦଶ ମହାବିଦ୍ୟା ଗଣେଶ ଓ କାର୍ତ୍ତିକେୟ ।
(ଶ୍ରୀ.ସ୍ୱ.- ପୃ. ୨୩୫, ପୁ.ବୋ. - ପୃ. ୨୬୩ /୨୬୪) ।

**ବିମଳାଇ ମଣ୍ଡପ**-*ଦେ.ବି.*- ବିମଳା ମନ୍ଦିର । ଷୋଳପୂଜାରେ ମାହାରୀ (ବହୁପୂର୍ବେ) ବିମଳାଇଙ୍କ ମଣ୍ଡପରେ ନାଚୁଥିଲେ । ଏହାକୁ ପରମେଶ୍ୱରୀ ମଣ୍ଡପ କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩୫, ପୁ.ବୋ. - ପୃ. ୨୬୪) ।

**ବିମଳି ମଣୋହି**-*ଦେ.ବି.*- ଶ୍ରୀମନ୍ଦିରରେ ଦେବୀ ବିମଳାଙ୍କୁ ପ୍ରଦତ୍ତ ନୈବେଦ୍ୟ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୭) ।

**ବିମାନ**-*ଦେ.ବି.*- ଶ୍ରୀମନ୍ଦିରର ମୁଖ୍ୟ ମନ୍ଦିରଟି ଏକ ପଞ୍ଚରଥ ମନ୍ଦିର । ଅରୁଣସ୍ତମ୍ଭ ନିକଟସ୍ଥ ରାସ୍ତା ଉପରୁ ବିମାନରେ ଖପୁରୀ ପର୍ଯ୍ୟନ୍ତ ଉଚ୍ଚତା ୨୧୪ ଫୁଟ ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୧, ୧୧୫, ୧୧୮) ।

**ବିମାନବଡୁ ସେବା**-*ଦେ.ବି.*- ବିମାନ ବାହକ । ପାଲିଙ୍କି ବାହକ । ଠାକୁରଙ୍କ ବିଜେ ପ୍ରତିମାମାନଙ୍କୁ ବିମାନ, ପାଲିଙ୍କି, ଚଉଦଳ ଆଦିରେ କାନ୍ଧେଇ ଭିତରେ ଓ ବାହାର ବିଜେ କରାନ୍ତି । ଏମାନେ ବ୍ରାହ୍ମଣ ସେବକ ।
(ଶ୍ରୀ.ସ୍ୱ. ୧ମ - ପୃ. ୪, ୪ର୍ଥ - ପୃ. ୪) ।

**ବିମାନ ସରଘର**-*ଦେ.ବି.*- ପ୍ଲଟ ନଂ- ୧୨୯ । ଏଠାରେ ଶ୍ରୀଜୀଉଙ୍କ ବିମାନ, ପାଲିଙ୍କି ଇତ୍ୟାଦି ବିମାନବଡୁଙ୍କ ଜିମାରେ ରହେ । ନିଯୋଗର ପନ୍ତି ମଧ୍ୟ ଏଠାରେ କରାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୪୭) ।

**ବିରିବଟା ସମର୍ଥା ସେବା**-*ଦେ.ବି.*- ରୋଷର ବିରିମୁଣ୍ଡି ଘରେ କୋଠଭୋଗ ନିମନ୍ତେ ନିଜେ ଓ ଲୋକ ଲଗାଇ ବିରିଚାଉଳ ବାଟୁଥିବା ସେବକ ।
(ଶ୍ରୀ.ସ୍ୱ. - ପୃ. ୩୬) ।

**ବିରିବୁହା ସେବକ**-*ଦେ.ବି.*- ଶ୍ରୀମନ୍ଦିରର କୋଠଭୋଗ ପାଇଁ ବଟା ବିରି ନେଇ କୋଠ ଭୋଗ ସୁଆରଙ୍କୁ ଯୋଗାଉଥିବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୫୪, ୫୫, ପୁ.ବୋ. - ପୃ. ୨୬୪) ।

**ବିରିମୁଣ୍ଡ ବିଶୋଇ**-*ଦେ.ବି.*- ବିରିଚୁନା କରିବା କିମ୍ବା ବିରିବଟା କାର୍ଯ୍ୟରେ ତଦାରଖ କରୁଥିବା ସେବକ ବିଶେଷ ।
(ଶ୍ରୀ.ସ୍ୱ. - ପୃ.) ।

**ବିରିମୁଣ୍ଡି**-*ଦେ.ବି.*- ଶ୍ରୀମନ୍ଦିରର ରୋଷଘରେ ଏକ ଘରେ ତିନୋଟି ବଡ଼ ଶିଳରେ ବିରିବଟାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦୮) ।

**ବିଳାସ**-*ସଂ.ବି.*- ଭଗବାନ 'ପ୍ରକାଶ' ଓ ବିଳାସ ରୂପରେ ଆତ୍ମପ୍ରକାଶ କରନ୍ତି । ଏକ ବିଗ୍ରହ ଲୀଳା ଯୋଗୁ ଭିନ୍ନ ରୂପରେ ମାତ୍ର ସେହି ଶକ୍ତି ପ୍ରକଟିତ ହେଲେ ତାହାକୁ ବିଳାସ କୁହାଯାଏ । ବଳଦେବ, ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ଈଶ୍ୱରଙ୍କର ବିଳାସ ରୂପ ।
(ପୂ.ଓ.ଭା. - ପୃ. ୫୭୩୧, ଓ.ସାଂ.ଶ. - ପୃ. ୨୬୬) ।

**ବିଲେଇଜଗା ଖୁଣ୍ଟିଆ**-*ଦେ.ବି.*- ଭୋଗ ଆସିବାଠାରୁ ଟେରା ଫିଟିବା ପର୍ଯ୍ୟନ୍ତ ଭୋଗକୁ ଜଗି ରଖିବା ସେବକ ବିଶେଷ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୪) ।

**ବିଲେଶ୍ୱର**- ନାରଦଙ୍କର ପରାମର୍ଶରେ ଇନ୍ଦ୍ରଦ୍ୟୁମ୍ନ ସହସ୍ରାଶ୍ୱମେଧ ଯଜ୍ଞ ସମ୍ପାଦନ କରି ଏହି ବିଲେଶ୍ୱର ଶିବଙ୍କ ନିକଟରୁ ସମୁଦ୍ରକୂଳରୁ ଦାରୁଙ୍କ ସନ୍ଧାନ ପାଇଥିଲେ ।
(ମ.ନ. - ପୃ. ୨୫) ।

**ବିଶରମହାନ୍ତି**-*ଦେ.ବି.*- କଳାପାହାଡ଼ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିକୁ ନେଇ ଗଙ୍ଗାନଦୀ କୂଳରେ ଅଗ୍ନିରେ ନିକ୍ଷେପ କରୁଥିବା ସମୟରେ ବିଶର ମହାନ୍ତି ସେଠାରେ ଉପସ୍ଥିତ ଥିଲେ । କୌଶଳକ୍ରମେ ଶ୍ରୀଜଗନ୍ନାଥଙ୍କ ଦେହରେ ଥିବା ବ୍ରହ୍ମକୁ ଏକ ମୃଦଙ୍ଗ ଭିତରେ ଲୁଚାଇ ଆଣି ନିଜ ଗ୍ରାମ କୁଜଙ୍ଗରେ ଓଳିଆ ଭାଡ଼ିରେ ଲୁଚାଇ

ରଖିଥିଲେ । ୧୫୭୭ ଖ୍ରୀଷ୍ଟାବ୍ଦରେ ଗଜପତି ରାମଚନ୍ଦ୍ରଦେବ-୧ମ, କୁଜଙ୍ଗ ରାଜା ଅନନ୍ତ ନରେନ୍ଦ୍ର ସାମନ୍ତଙ୍କ ସହଯୋଗରେ ବିଶର ମହାନ୍ତି ଲୁଚାଇ ଆଣି ରଖିଥିବା ଶ୍ରୀଜଗନ୍ନାଥଙ୍କ ବ୍ରହ୍ମକୁ ଶ୍ରୀକ୍ଷେତ୍ର ଅଣାଇ ଶ୍ରୀଜଗନ୍ନାଥଙ୍କୁ ପୁନଃ ପ୍ରତିଷ୍ଠା କରାଇଥିଲେ ।
(ଶ୍ରୀ.ଜି. - ପୃ. ୨୨) ।

**ବିଶ୍ୱକର୍ମା**-*ସଂ.ବି.*- ସୃଷ୍ଟିକର୍ତ୍ତା । ଦେବଶିଳ୍ପୀ ବିଶ୍ୱକର୍ମାଙ୍କୁ ଦେବକାର୍ଯ୍ୟରେ ଆବାହନ କରାଯାଏ । ଏଣୁ ବର୍ଷକେ ଥରେ ତାଙ୍କର ପୂଜା ଆରାଧନା ଅଛି । ଅନ୍ୟ ମତରେ ସେ ଅଷ୍ଟମ ବସୁ ଦେବତା । ପ୍ରଭାସଙ୍କ ଔରସରେ ଯୋଗସିଦ୍ଧାଙ୍କ ଗର୍ଭରୁ ବିଶ୍ୱକର୍ମା ଜାତ ହୋଇଥିଲେ । ଶ୍ରୀମନ୍ଦିରରେ ନବକଳେବର ସମୟରେ ନୂତନ ଦେବ ପ୍ରତିଷ୍ଠା ପାଇଁ ଦାରୁବ୍ରହ୍ମ ଆସିଲା ପରେ ବିଶ୍ୱକର୍ମା ସ୍ୱୟଂ ଠାକୁରଙ୍କୁ ନିର୍ମାଣ କରିବା କଥା କଥିତ ଓ ବର୍ଣ୍ଣିତ ।
(ପୂ.ଓ.ଭା. - ପୃ. ୫୭୫୧, ଓ.ସାଂ.ଶ. - ପୃ. ୨୬୬) ।

**ବିଶ୍ୱାବସୁ**-*ଦେ.ବି.*- ଶବର ରାଜା ଯେ କି ପ୍ରଥମେ ନୀଳମାଧବଙ୍କୁ ଉପାସନା କରୁଥିଲେ । ସେତେବେଳେ ତାଙ୍କର ରୂପ ଥିଲା 'ଇନ୍ଦ୍ରନୀଳମଣି' ।

**ବିଶିଷ୍ଟାଦ୍ୱୈତବାଦ**-*ଦେ.ବି.*- ବେଦାନ୍ତ ଦର୍ଶନର ମତ ବିଶେଷ । ଏହି ମତାନୁସାରେ ବ୍ରହ୍ମ, ପ୍ରକୃତି ଓ ପୁରୁଷ, ଏହା ଦ୍ୱୈତଗୁଣ ବିଶିଷ୍ଟ ବୋଲି ସ୍ୱୀକାର କରାଯାଏ । ବେଦାନ୍ତ ଦର୍ଶନରେ ଦ୍ୱୈତ, ଅଦ୍ୱୈତ ଓ ବିଶିଷ୍ଟା ଦ୍ୱୈତ ଭେଦରେ ୩ଟି ପ୍ରସିଦ୍ଧ ମତ ରହିଛି । ରାମାନୁଜ ସମ୍ପ୍ରଦାୟର ବୈଷ୍ଣବମାନେ ବିଶିଷ୍ଟ ଅଦ୍ୱୈତମତବାଦୀ ଥିଲେ ।
(ପୂ.ଓ.ଭା. - ପୃ. ୫୭୪୩, ଓ.ସାଂ.ଶ. - ପୃ. ୨୬୭) ।

**ବିଶୋଇ**-*ଦେ.ବି.*- ରାଜକର୍ମଚାରୀ । ରାଜା ଓ ନଅର ମଧ୍ୟରେ ସମ୍ପର୍କ ରକ୍ଷା କରୁଥିବା ଏକମାତ୍ର ସେବକ ।
(ଶ୍ରୀ.ସ୍ୱ. - ପୃ. ୫) ।

**ବୀରକାହାଳୀ**-*ଦେ.ବି.*- ରାଜାଙ୍କ ଯୁଦ୍ଧ ଭେରୀ । ରାଜାମାନଙ୍କର ଦେବାର୍ଚ୍ଚନା ଓ ଅନ୍ୟାନ୍ୟ ନୀତି କରୁଥିବା ସମୟରେ ବାଜିବା ତୁରୀ । ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ଯାନିଯାତ୍ରା କିମ୍ବା ଗଜପତିଙ୍କ ଶ୍ରୀମନ୍ଦିର ବିଜେ ସମୟରେ ଏହା ବାଜେ ।
(ପୂ.ଓ.ଭା. - ପୃ. ୫୮୦୩) ।

**ବୀରକିଶୋର ଦେବ (୧ମ)**-*ଦେ.ବି.*- ଏହି ରାଜା ବୀରକେଶରୀପୁର ଶାସନ ବସାଇଲେ । ନିର୍ମାଲ୍ୟ ମଣ୍ଡପ ଖଳା ଜୀର୍ଣ୍ଣ ହୋଇଥିବାରୁ ପୁନର୍ନିର୍ମାଣ କଲେ କନକମଣ୍ଡପ, ଦୋଳଯାତ୍ରା ପାଇଁ ମଣ୍ଡପ ଜୀର୍ଣ୍ଣ ହୋଇଥିବା ଦୋଳମଣ୍ଡପ ନିର୍ମାଣ କଲେ । ମହାରାଜାଙ୍କ ପାଟଦେଈ ବଡ଼ଦେଉଳକୁ ଚୂନ ଦେଲେ । ସ୍ନାନଯାତ୍ରାକୁ ବିଜେ ମଣ୍ଡପ ପଥର ବସାଇଲେ । ଶ୍ରୀଜୀଉଙ୍କ ପାଇଁ ଖଟ ଶେଯ ଘର, ଶୟନ ଘର, ଫୁଲବଟା ଚାଙ୍ଗଡ଼ାଘର ନୂତନ ନିର୍ମାଣ କରାଇଲେ । ଦେଉଳ ଚାରିପାଖେ ପଥର ବସାଇଥିଲେ, ଚକଡ଼ା ମଧ୍ୟ ନିର୍ମାଣ କରିଥିଲେ ।
(ମା.ପା. - ପୃ. ୫୭) ।

**ବୀଣାକାର ସେବକ**-*ଦେ.ବି.*- ବୀଣାବାଦକ । ଠାକୁରଙ୍କ ମନୋରଞ୍ଜନ ବା ସୁଖନିଦ୍ରା ପାଇଁ ପହୁଡ଼ ପୂର୍ବରୁ ବୀଣାବାଦନ କରୁଥିବା ସେବକ । ବର୍ତ୍ତମାନ ଏହି ସେବା ବନ୍ଦ ଅଛି ।
(ଶ୍ରୀ.ସ୍ୱ. - ପୃ. ୨୦-୨୧) ।

**ବୀଣାଲାଗି ଗାନ**-*ଦେ.ବି.*- ଶ୍ରୀମନ୍ଦିରର ଠାକୁରଙ୍କ ରାତ୍ର ପହୁଡ଼ନୀତିରେ ଖଟ ଓ ଶେଯ ଲାଗି ଓ ପୁଷ୍ପାଞ୍ଜଳି ସହ ବୀଣାବାଦନ କରାଯାଏ । ଏହି ସମୟରେ ଭିତର ଗାଏଣୀମାନେ ଗୀତ ଗାଆନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୮) ।

**ବୀରମଣୋହି**-*ଦେ.ବି.*- ଗଜପତି ମହାରାଜା କୌଣସି ରାଜ୍ୟ ଜୟ କଲାପରେ ପୁରବାସୀଙ୍କ ପକ୍ଷରୁ ସମ୍ମାନାର୍ଥେ ଆୟୋଜିତ ଭୋଜି ବ୍ୟବସ୍ଥା ।
(ପୁ.ବୋ. - ପୃ. ୨୬୫) ।

**ବୀରବରବାନା**-*ଦେ.ବି.*- ସରୁ ସରୁ ପାଟଡୋର । ରାହୁରେଖା ଲାଗିଲେ ଆବଶ୍ୟକ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୮, ପୂ.ଓ.ଭା. - ପୃ. ୫୮୦୪) ।

**ବୁଢ଼ାଲେଙ୍କା** -*ଦେ.ବି.*- ପ୍ରମୁଖ ସ୍ଥାନୀୟ ଲେଙ୍କା ସେବକ ବା ମୁଖ୍ୟ ସେନାପତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୪) ।

**ବେଣ୍ଟପୋଖରୀ**-*ଦେ.ବି.*- ରାଣୀ ହଂସପୁର ଅଗଣା ମଧ୍ୟସ୍ଥ ଥିବା ସୁନିର୍ମଳ ଜଳଯୁକ୍ତ ପୁଷ୍କରିଣୀ । ଏହାକୁ ରାଣୀ, ସହଚରୀ ଓ ନାରୀମାନେ କେବଳ ବ୍ୟବହାର କରନ୍ତି- ଏହାକୁ ବେଣ୍ଟ ପୋଖରୀ କୁହାଯାଏ । ଉଆସକୁ ଲାଗି ମଧୁବନ ତୋଟା । ତା' ମଧ୍ୟରେ ଥାଏ ବେଣ୍ଟ ପୋଖରୀ । ଜଗନ୍ନାଥ ବଲ୍ଲଭ ମଠ ପରିସରସ୍ଥିତ ଏକ ପୁଷ୍କରିଣୀ ଯେଉଁଠାରେ ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ବେଣ୍ଟ ଶିକାର ନୀତି କାର୍ଯ୍ୟ ସମ୍ପନ୍ନ ହୁଏ । ଏହି ପୋଖରୀକୁ ମଧ ବେଣ୍ଟ ପୋଖରୀ ନାମରେ ଅଭିହିତ କରାଯାଇଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୫,୪୬, ପୂ.ଓ.ଭା. - ପୃ. ୫୮୮୧) ।

**ବେଣ୍ଟବିନ୍ଧାପାଇକ ସେବକ**-*ଦେ.ବି.*- ବେଣ୍ଟ ନୀତିରେ ଶର ବିନ୍ଧୁଥିବା ସେବକ । ଦଳବେହେରା ବା ଏହାଙ୍କ ଅସୁବିଧା ହେଲେ ଲେଙ୍କାଏ କାର୍ଯ୍ୟ କରନ୍ତି । ଏହି ନୀତି କାର୍ଯ୍ୟ ବ୍ୟତୀତ ପ୍ରତିଦିନ ଆଳତି ପୂର୍ବରୁ ପାଇକଙ୍କ ସଙ୍ଗେ ଦଳବେହେରା ଭାବରେ ପାଳିଆ ସେବକଙ୍କୁ ଖଟିବାକୁ ଡାକନ୍ତି । ବସନ୍ତ ପଞ୍ଚମୀ ଚନ୍ଦନ ଅନୁକୂଳ ଦିନ, ଜାଗର ଠାରୁ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ, ଦ୍ୱାଦଶୀ ଓ ଦଶହରା ଦିନ ଠାକୁରଙ୍କ ବେଣ୍ଟବିନ୍ଧା ନିୟମ ଏ ସେବକ ଧନୁଶର ଧରି ମୃଗ ରୂପେ କଳ୍ପନା କରି ପଇଡ଼କୁ ଲାଖ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୬୦) ।

**ବେଣ୍ଟଲୀଳା**-*ଦେ.ବି.*- ବେଣ୍ଟ ଶିକାର । ମାଘ ଶୁକ୍ଳପକ୍ଷ ପଞ୍ଚମୀ- ଶ୍ରୀପଞ୍ଚମୀ - ବସନ୍ତ ପଞ୍ଚମୀ- ମଧ୍ୟାହ୍ନଧୂପ ପରେ କିମ୍ବା ଫାଲ୍‌ଗୁନ ଶୁକ୍ଳ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ ଓ ଦ୍ୱାଦଶୀ ଏବଂ ଜାଗର ତିଥିରେ ଠାକୁରଙ୍କ ମଙ୍ଗଳ ଆଳତି ପରେ ଠାକୁରଙ୍କ ବେଣ୍ଟ ଶିକାରକୁ ବିଜେ କରିବାର ନିୟମ ।
(ଶ୍ରୀ.ସ୍ୱ.- ପୃ. ୪୫) ।

**ବେଣ୍ଟୁଲି ମହାଜନ**-*ଦେ.ବି.*- ବେଣ୍ଟ ସହ ସଂପୃକ୍ତ ବିଶିଷ୍ଟ ସେବକ । ଭିତରଛ ବେଣ୍ଟୁଲି ମହାଜନ ଭାବରେ ଶ୍ରୀଅଙ୍ଗରେ ଶର ଲାଗି କରାଇ ଦଳବେହେରା ବା ଲେଙ୍କାକୁ ଦିଅନ୍ତି ।
(ପୁ.ବୋ.- ପୃ. ୨୬୬) ।

**ବେଢ଼**-*ଦେ.ବି.*- ପାଳି । କ୍ରମାନୁସାରେ ପଡୁଥିବା ସେବକଙ୍କ ପାଳି ।

**ବେଢ଼ପତ୍ର**-*ଦେ.ବି.*- ବେଢ଼ ବା ପାଳି ସମ୍ବନ୍ଧୀୟ କାଗଜପତ୍ର । ଏଥିରେ ସେବା ସମ୍ବନ୍ଧୀୟ ବିକ୍ରି ଖର୍ଦ୍ଦି ଓ ଦାଖଲ ଖାରଜ ବିବରଣୀମାନ ଲିପିବଦ୍ଧ ହୋଇଥାଏ । ପଟ୍ଟଯୋଶୀ ମହାପାତ୍ର, ତଡାଉକରଣ, ଦେଉଳକରଣଙ୍କ ପାଖରେ ବେଢ଼ପତ୍ର ଥାଏ ।

**ବେଢ଼ା**-*ଦେ.ବି.*- ଶ୍ରୀମନ୍ଦିର ଚାରିପାଖରେ ଥିବା ବିସ୍ତୃତ ଅଞ୍ଚଳ । ଏହା ଦୁଇ ଭାଗରେ ବିଭକ୍ତ । ବାହାର ବେଢ଼ା ଓ ଭିତର ବେଢ଼ା ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୧୭) ।

**ବେଢ଼ାକାଳୀ**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାସ୍ଥ ଶ୍ରୀନୀଳମାଧବ ମନ୍ଦିର ଉତ୍ତରକୁ ବେଢ଼ାକାଳୀ ମନ୍ଦିର ବିଦ୍ୟମାନ । ଶ୍ରୀମନ୍ଦିରର ପଶ୍ଚିମକୋଣରେ ତଥା ଶ୍ରୀନୀଳମାଧବ ଓ ଶ୍ରୀଲକ୍ଷ୍ମୀ ମନ୍ଦିରର ଦକ୍ଷିଣ ପାର୍ଶ୍ୱକୁ ଲାଗି ଏକ ଅଳ୍ପ ଉଚ୍ଚ ମନ୍ଦିର । ବେଢ଼ାକାଳୀଙ୍କୁ ଭଦ୍ରକାଳୀ ବା ଗୁହ୍ୟ କାଳୀ ଭାବେ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରାଯାଇଥାଏ । ମନ୍ଦିରଟିର ଗର୍ଭଗୃହ ମଧ୍ୟରେ ମା' ଭଦ୍ରକାଳୀ ତଥା ବେଢ଼ାକାଳୀ ଅଧିଷ୍ଠାତ୍ରୀ ଅଟନ୍ତି । ଭଦ୍ରକାଳୀ ପରମ ବୈଷ୍ଣବୀ । ଏହି କାଳୀମୂର୍ତ୍ତି ଓଷୁଅ ଝୁଣା ଓ ତୈଳ ମିଶ୍ରିତ ଏକ ଉପାଦାନରେ ନିର୍ମିତ । ମୂଳ ପ୍ରସ୍ତର ମୂର୍ତ୍ତି । ଏହି ମୂର୍ତ୍ତିର ପଶ୍ଚାତ୍ ଭାଗରେ ଅଧିଷ୍ଠିତା, ତାହା ଦର୍ଶନୀୟ ନୁହେଁ । ମୂର୍ତ୍ତିର ଡାହାଣ ପାଖେ ଏକ ରନ୍ଧ୍ର ରହିଛି । ଏହି ବାଟେ ପ୍ରତ୍ୟେହ ଫୁଲ

ଚନ୍ଦନ ଦିଆଯାଇ ପଶ୍ଚାତ୍ ଭାଗରେ ଥିବା ମୂଳ ଦେବୀଙ୍କୁ ପୂଜାର୍ଚ୍ଚନା କରାଯାଇଥାଏ । ବର୍ତ୍ତମାନର ଦୃଶ୍ୟମାନ ଦେବୀ ବିଗ୍ରହ ବ୍ୟାଘ୍ର ଚର୍ମ ଉପରେ ଅଧିଷ୍ଠିତା । ପ୍ରାୟ ତିନି ଫୁଟ ଉଚ୍ଚତା ଥିବା କାଳୀ ବିଗ୍ରହ ଦ୍ୱିଭୁଜା ବିଶିଷ୍ଟ । ଦକ୍ଷିଣହସ୍ତ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରି ସେ ଖଡ୍ଗ ଧାରଣ କରିବା ସ୍ଥଳେ ବାମହସ୍ତ ଖଡ୍ଗ ଧାରଣ ସହିତ ଜାନୁ ଉପରେ ରଖିଛନ୍ତି । ଲହ ଲହ ଜିହ୍ୱା ଓ ବିସ୍ତାରିତ ନେତ୍ର । ମା'ଙ୍କର ଉଗ୍ରଭାଗର ସୂଚକ, ଗଳାରେ ମୁଣ୍ଡମାଳ । ମା'ଙ୍କୁ କେବଳ ଶୀତଳ ଭୋଗ ମଣୋହି କରାଯାଇଥାଏ । ଭଦ୍ରକର ଭଦ୍ରକାଳୀ ପୀଠ ଓଡ଼ିଶା ପ୍ରସିଦ୍ଧ । (ଶ୍ରୀ.ସ୍ୱ. - ପୃ. ୨୨୯, ଶ୍ରୀ.ବେ.ଦେ. - ପୃ. ୧୪୭) ।

**ବେଢ଼ା ପରିକ୍ରମା**-*ଦେ.ବି.*- ମନ୍ଦିରର ମୁଖ୍ୟ ଦେବତାଙ୍କୁ ଡାହାଣ ପାଖରେ ରଖି ସିଂହଦ୍ୱାରଠାରୁ ଆରମ୍ଭ କରି ବେଢ଼ା ମଧ୍ୟରେ ଥିବା ଦେବଦେବୀଙ୍କ ଦର୍ଶନ ସାରି ପୁଣି ସିଂହଦ୍ୱାରକୁ ଫେରିଆସିବାକୁ ବେଢ଼ାପରିକ୍ରମା କୁହନ୍ତି ।

**ବେତ**-*ଦେ.ବି.*- ବେତର ବାଡ଼ି, ବେତ ଗଛରୁ ବାହାରିଥିବା ଲମ୍ବା ନାଶୀକୁ ଯଷ୍ଟି ବା ବାଡ଼ି ରୂପେ ବ୍ୟବହାର କରାଯାଏ । ଶ୍ରୀମନ୍ଦିରରେ ପଣ୍ଡାମାନେ ବେତବାଡ଼ିରେ ଭକ୍ତମାନଙ୍କୁ ବାଡ଼ାନ୍ତି । କଥିତ ଅଛି, ମନ୍ଦିରରେ ବେତବାଡ଼ି ଦେହରେ ବାଜିଲେ ପାପକ୍ଷୟ ହୁଏ ।

**ବେତୁଆ**-*ଦେ.ବି.*- ଦୋଷୀକୁ ବେତରେ ପିଟୁଥିବା ବ୍ୟକ୍ତି । ଲେଙ୍କାଙ୍କ ଅଧୀନରେ ପାଇକ, ଡାକୁଆ, ବେତୁଆ ଆଦି ଥିଲେ । (ପୁ.ବୋ. - ପୃ. ୨୬୬) ।

**ବେଦମନ୍ତ୍ର**-*ସଂ.ବି.*- ବ୍ରହ୍ମାଙ୍କ ମୁଖନିଃସୃତ ହିନ୍ଦୁମାନଙ୍କର ଧର୍ମଶାସ୍ତ୍ର ବର୍ଣ୍ଣିତ ମନ୍ତ୍ର । ବ୍ରହ୍ମାଙ୍କ ମୁଖରୁ ଉଚ୍ଚାରିତ ହୋଇ ଋଷି ପରମ୍ପରାକ୍ରମେ ସୃଷ୍ଟି ଆଦ୍ୟରୁ ଚଳିଆସିଛି ବୋଲି ହିନ୍ଦୁମାନଙ୍କର ବିଶ୍ୱାସ । ଲୌକିକ ଓ ପରମାର୍ଥିକ କର୍ତ୍ତବ୍ୟ । କର୍ତ୍ତବ୍ୟ କର୍ମର ଶାସନ ରୂପକ ଶାସ୍ତ୍ର । (ଓ.ସାଂ.ଶ. - ପୃ. ୨୭୧) ।

**ବେଦୀ**-*ସଂ.ବି.*- ବ୍ରାହ୍ମଣମାନଙ୍କ ସଂଜ୍ଞା; ଯଥା- ତ୍ରିବେଦୀ, ଦ୍ୱିବେଦୀ, ଚତୁର୍ବେଦୀ । ଯଜ୍ଞାଦି କ୍ରିୟାର୍ଥେ ପରିଷ୍କୃତ ସ୍ତୂପୀକୃତ ଭୂମି । ବେଦୀର ଆକୃତି ସାଧାରଣତଃ ଚତୁରସ୍ତି ଓ ଡମ୍ବରୁ ସଦୃଶ । ବିଭିନ୍ନ କ୍ରିୟାରେ ବେଦୀର ଭିନ୍ନ ଭିନ୍ନ ନାମ ଯଥା- ସ୍ନାନବେଦୀ, ଗହ୍ମା ବେଦୀ, ଦୋଳବେଦୀ, ଝୁଲଣବେଦୀ, ଯଜ୍ଞବେଦୀ, ହୋମବେଦୀ, ବ୍ରତବେଦୀ, ବିବାହବେଦୀ । ପୁରୀ ଶ୍ରୀମନ୍ଦିର ବେଢ଼ାରେ ସ୍ନାନବେଦୀ, ରତ୍ନବେଦୀ, ଦୋଳବେଦୀ, ଝୁଲଣବେଦୀ, ଯଜ୍ଞବେଦୀ, ହୋମବେଦୀ, ବ୍ରତବେଦୀ, ସବୁରି ମଧ୍ୟରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ରତ୍ନବେଦୀ ଖ୍ୟାତ । (ଓ.ସାଂ.ଶ. - ପୃ. ୨୭୨, ପୂ.ଓ.ଭା. - ପୃ. ୫୮୯୧) ।

**ବେରଭୋଇ ପ୍ରଧାନ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । (ଶ୍ରୀ.ଶ.- ପୃ. ୧୩୦) ।

**ବେଶ**-*ଦେ.ବି.*- ଶ୍ରୀଜଗନ୍ନାଥ ବର୍ଷ ମଧ୍ୟରେ ବିଭିନ୍ନ ବେଶ ହୋଇଥାନ୍ତି । ଏହି ବେଶର ଅନ୍ୟନାମ ଶୃଙ୍ଗାର । ଏହା ପ୍ରାଚୀନକାଳରୁ ଚଳିଆସୁଅଛି । ଜଗନ୍ନାଥ ବର୍ଷରେ ଚବିଶି ବେଶ ହୁଅନ୍ତି । ଏହାକୁ ଚବିଶି ତତ୍ତ୍ୱ ସହିତ ସମ୍ପର୍କିତ କରି ପୁରୁଷୋତ୍ତମ ଗୀତିକାର ତାଙ୍କ ବ୍ୟକ୍ତିଗତ ଭାବାନୁଭୂତ ବ୍ୟକ୍ତ କରିପାରିଛନ୍ତି । ମହାପ୍ରଭୁଙ୍କ ଚବିଶି ବେଶରୁ ଶ୍ରୀରାମ- ୧, ଶ୍ରୀଗଣେଶ- ୧, ନୃସିଂହ - ୧, ବାମନ-୨, ଶ୍ରୀକୃଷ୍ଣ – ୭ ଓ ଜଗନ୍ନାଥଙ୍କ ନିଜସ୍ୱ ୧୨ ମୋଟ ୨୪ ବେଶ । ଏହି ବେଶକୁ ୩ ଭାଗରେ ବିଭକ୍ତ କରାଯାଇପାରେ । ଯଥା- ୧. ବସ୍ତ୍ରବେଶ, ୨. ଭୂଷଣ ବେଶ, ୩. ପୁଷ୍ପ ବେଶ ।

୧. ଅବକାଶ ବେଶ – (ଏହାକୁ ତଡ଼ପ ଉତୁରୀ ଅବକାଶ ବେଶ କୁହାଯାଏ । ପ୍ରତିଦିନ ଏହି ବେଶ ହୋଇଥାଏ ।)

୨. ବଡ଼ସିଂହାର ବେଶ- ଏହା ପହୁଡ଼ ବେଶ ରୂପେ ଖ୍ୟାତ । ଏହା ପ୍ରତ୍ୟେକ ଦିନ ହୁଏ ।

୩. ଚନ୍ଦନଲାଗି ବେଶ- ସ୍କନ୍ଦ ପୁରାଣ ଅନୁଯାୟୀ ଏହା ସର୍ବପ୍ରାଚୀନ ବେଶ । ଏହା ପ୍ରତ୍ୟହ ହୁଏ ।

୪. ଚକ୍ର ନାରାୟଣ ବେଶ - ଏହି ବେଶ ବୈଶାଖ ମାସ ଶୁକ୍ଳ ଦଶମୀ ଦିନ ହୋଇଥାଏ ।

୫. ରକ୍ମିଣୀ ହରଣ ବେଶ - ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ହୋଇଥାଏ । ଏ ବେଶରେ ଜଗନ୍ନାଥ ରକ୍ମିଣୀ ହରଣ କରିଥାଆନ୍ତି ।

୬. ଗଣପତି ବେଶ (ହାତୀ ବେଶ)- ଏହି ବେଶ ଜ୍ୟେଷ୍ଠ ସ୍ନାନ ପୂର୍ଣ୍ଣିମା ଦିନ ସ୍ନାନବେଦୀରେ ହୋଇଥାଏ । ବୈଷ୍ଣବ ସମ୍ପ୍ରଦାୟର ଶିଷ୍ୟ ଶ୍ରୀମଧୁସୂଦନ, ବୈଷ୍ଣବ ଦାସ ଗଣପତି ଭକ୍ତଙ୍କ ଦ୍ୱାରା ପ୍ରଭାବିତ ହୋଇ ଏହି ବେଶ ପ୍ରବର୍ତ୍ତନ କରିଥିଲେ ।

୭. ନବଯୌବନ ବେଶ- ଏହି ବେଶ ଅନବସରରୁ ଠାକୁରେ ଆସି ପ୍ରଥମ ଦର୍ଶନର ବେଶ । ଏହା ଆଷାଢ଼ ଅମାବାସ୍ୟା ଦିନ ହୋଇଥାଏ ।

୮. ସୁନାବେଶ - (ତଢ଼ାଉ ବେଶ / ରାଜାବେଶ) ଆଷାଢ଼ ଶୁକ୍ଳ ଏକାଦଶୀ ଦିନ ଏହି ବେଶ ରଥ ଉପରେ ହୋଇଥାଏ ।

୯. ଚିତାଲାଗି ବେଶ- ଏହି ବେଶ ଶ୍ରାବଣ ମାସର ଅମାବାସ୍ୟା ଦିନ ହୋଇଥାଏ । ଆଦିଶଙ୍କରାଚାର୍ଯ୍ୟ ମହାପ୍ରଭୁଙ୍କୁ ହୀରା ଚିତା ଲାଗି କରି ଏହି ବେଶ ପ୍ରବର୍ତ୍ତନ କରିଥିଲେ ।

୧୦. ରେଖାଲାଗି ବେଶ- ଭାଦ୍ର କୃଷ୍ଣ ପଞ୍ଚମୀରେ ଏହି ବେଶ ହୋଇଥାଏ । ଏହି ବେଶରେ ଠାକୁରମାନଙ୍କୁ ରେଖାଲାଗି କରାଯାଏ ।

୧୧. ବନଭୋଜି ବେଶ - ଭାଦ୍ରବ କୃଷ୍ଣ ଦଶମୀ ଦିନ ଏହି ବେଶ ହୋଇଥାଏ । ଶ୍ରୀଚୈତନ୍ୟ ଏହି ବେଶ ପ୍ରବର୍ତ୍ତନ କରିଥିଲେ ।

୧୨. କାଳୀୟ ଦଳନ ବେଶ - ଭାଦ୍ର କୃଷ୍ଣ ଏକାଦଶୀ ତିଥିରେ ମାର୍କଣ୍ଡେୟ ପୁଷ୍କରଣୀରେ କାଳୀୟ ଦଳନ ଲୀଳା ପରେ ହୋଇଥାଏ ।

୧୩. ପ୍ରଲମ୍ବାସୁର ବଧ ବେଶ । ଏହି ବେଶ ଭାଦ୍ର କୃଷ୍ଣ ଦ୍ୱାଦଶୀରେ ଅନୁଷ୍ଠିତ ହୋଇଥାଏ । ତାଳ ବଣରେ କାଦମ୍ବରୀ ପ୍ରମତ୍ତ ଦେବ ପ୍ରଲମ୍ବାସୁରକୁ ବଧ କରିବାର ସ୍ମୃତିରେ ଏହି ବେଶ ହୋଇଥାଏ । ଷୋଡଶ ଶତାବ୍ଦୀରେ ବଳରାମ ଦାସ ଏହାକୁ ପ୍ରବର୍ତ୍ତନ କରିଥିଲେ ।

୧୪. କୃଷ୍ଣ ବଳରାମ ବେଶ - ଭାଦ୍ର କୃଷ୍ଣ ତ୍ରୟୋଦଶୀରେ ଅନୁଷ୍ଠିତ ହୁଏ । ଷୋଡ଼ଷ ଶତକରେ ଶ୍ରୀବଲ୍ଲଭାଚାର୍ଯ୍ୟ ଏହି ବେଶ ପ୍ରବର୍ତ୍ତନ କରିଥିଲେ ।

୧୫. ବାମନ ବେଶ - (ବଳିବାମନ ବେଶ) - ଭାଦ୍ର ଶୁକ୍ଳ ଦ୍ୱାଦଶୀ ବାମନ ଜନ୍ମ ଅବସରରେ ଏହି ବେଶ ହୋଇଥାଏ । ଏକାଦଶ ଶତକରେ କଳିଙ୍ଗ ବ୍ରାହ୍ମଣ ସମାଜ ଏହା ପ୍ରବର୍ତ୍ତନ କରିଥିଲେ ।

୧୬. ରାଜାବେଶ - ଆଶ୍ୱିନ ଶୁକ୍ଳ ଦଶମୀ (ଦଶହରା)ରେ ଏହି ବେଶ ହୋଇଥାଏ ।

୧୭. ରାଧା ଦାମୋଦର ବେଶ - ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ । ତଳିଛ ମହାପାତ୍ରଙ୍କ ନିମିତ୍ତ ଜଗନ୍ନାଥଙ୍କ ମୁଣ୍ଡରେ କେଶ ହେବାର ସ୍ମୃତିରେ ହୋଇଥାଏ । ପଞ୍ଚଦଶ ଶତକରେ ବୈଷ୍ଣବ ସମ୍ପ୍ରଦାୟର ମାଧବାଚାର୍ଯ୍ୟ ଏହା ପ୍ରବର୍ତ୍ତନ କରିଥିଲେ ।

୧୮. ଲକ୍ଷ୍ମୀ ନାରାୟଣ ବେଶ - (ଠିଆକିଆ ବେଶ) । କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଏହା ହୋଇଥାଏ । ଏହାକୁ ଦ୍ୱାଦଶ ଶତକରେ ରାମାନୁଜାଚାର୍ଯ୍ୟ ପ୍ରବର୍ତ୍ତନ କରିଥିଲେ ।

୧୯. ବାଙ୍କଚୂଡ଼ା ବେଶ (ବାମନ ବେଶ) - କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ଦିନ ଏହି ବେଶ ହୁଏ ।

୨୦. ଆଡ଼କିଆ ବେଶ (ନୃସିଂହ ବେଶ)- କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ଦିନ ହୁଏ । ଉତ୍କଳ ଅତିବଡ଼ୀ ସମ୍ପ୍ରଦାୟର ମନସ୍କାମନା ପୂରଣ ସ୍ମୃତିରେ ଏହା ହୋଇଥାଏ ।

୨୧. ଡାଳକିଆ ବେଶ- (ପର୍ଶୁରାମ ବେଶ) - ଏହା କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ହୁଏ । ଉକ୍ତ ବେଶ ନିମିତ୍ତ ନେପାଳର ରାଜା ଶ୍ରୀରାମ ଦାସ ମଠ ତଥା ବଡ଼ଛତା ମଠ ସାହାଯ୍ୟ କରିଥାନ୍ତି ।

୨୨. ରାଜରାଜେଶ୍ୱର ବେଶ - ଏହି ବେଶ କାର୍ତ୍ତିକ ପୂର୍ଣ୍ଣିମା ଓ ଫାଲଗୁନ ପୂର୍ଣ୍ଣିମା ଦିନ ଅନୁଷ୍ଠିତ ହୁଏ ।

୨୩. ନାଗାର୍ଜ୍ଜୁନ ବେଶ - କାର୍ତ୍ତିକ ମାସରେ ପଞ୍ଚୁକ ପାଞ୍ଚ ଦିନ ନ ହୋଇ ଛ' ଦିନ ହେଲେ ଅଧିକ ଦିନ / ତିଥିରେ ଏହି ବେଶ ହୋଇଥାଏ । ଏ ବେଶକୁ ହିମାଚଳ ପ୍ରଦେଶର ପର୍ଶୁରାମ ଭକ୍ତ ତଥା ସନାତନ ବ୍ରାହ୍ମଣ ସମାଜ ପ୍ରବର୍ତ୍ତନ କରିଥିଲେ ।

୨୪. ଘୋଡ଼ଲାଗି ବେଶ- (ଓଢ଼ଣ ଲାଗି) - ମାର୍ଗଶିର ଶୁକ୍ଳ ଷଷ୍ଠୀଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ହୋଇଥାଏ । ବିଭିନ୍ନ ବାରରେ ବିଭିନ୍ନ ରଙ୍ଗର ଘୋଡ଼ଲାଗି ହୋଇଥାଏ ।

୨୫. ଠିଆଘୋଡ଼ ଲାଗି- ବସନ୍ତ ପଞ୍ଚମୀଠାରୁ ଫଗୁ ଦଶମୀ ପର୍ଯ୍ୟନ୍ତ ଠାକୁରମାନେ ଠିଅଘୋଡ଼ ଲାଗି ହୋଇଥାନ୍ତି । ଏହି ଘୋଡ଼ଲାଗି ଜୀଉମାନଙ୍କ ଶରୀର ସମ୍ପୂର୍ଣ୍ଣ ଘୋଡ଼ ହୁଏ ନାହିଁ । ଏହାକୁ ୧୬ଶ ଶତାବ୍ଦୀରେ କବୀର ଓ ନାନକ ପ୍ରବର୍ତ୍ତନ କରିଥିଲେ ।

୨୬. ଶ୍ରାଦ୍ଧ ବେଶ - ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀଠାରୁ ଶୁକ୍ଳ ପ୍ରତିପଦ ପର୍ଯ୍ୟନ୍ତ ଏହି ବେଶ ହୋଇଥାଏ । ଶ୍ରୀଜୀଉମାନେ ତିନିଦିନ ଧରି ଶ୍ରାଦ୍ଧ ଦାନ କରିଥାନ୍ତି ।

୨୭. ମକର ଚୂଳ ଲାଗି ବେଶ - ମକର ସଂକ୍ରାନ୍ତି ଦିନ ଜୀଉମାନଙ୍କୁ ମକର ଚୂଳ ଲାଗି କରାଯାଇଥାଏ ।

୨୮. ପଦ୍ମବେଶ - (ପଦ୍ମମୁଖ ବେଶ) - ମାଘମାସ ଅମାବାସ୍ୟା ପରେ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ଶନିବାର ବା ବୁଧବାର ପଡ଼ିଲେ ଏହି ବେଶ ହୁଏ । ସପ୍ତଦଶ ଶତକରେ ସନ୍ଥ ରଘୁବର ଦାସ ଏହା ପ୍ରବର୍ତ୍ତନ କରିଥିଲେ ଓ ବଡ଼ଛତା ମଠ ଦ୍ୱାରା ଏହା ହୋଇଥାଏ । ଏହି ବେଶର ପ୍ରଥମ ପ୍ରବର୍ତ୍ତକ ମନୋହର ଦାସ ନାମକ ଜନୈକ ସାଧୁ । ୨୦୧୧ ମସିହାଠାରୁ ଭୁବନେଶ୍ୱରର ଚିନ୍ତାମଣି ଦାଶ ନାମକ ଜନୈକ ସଂସ୍କୃତ ଶିକ୍ଷକ ନିଜ ଉଦ୍ୟମରେ ପ୍ରାୟ ପାଞ୍ଚ ହଜାରରୁ ଅଧିକ ବିକଶିତ ପଦ୍ମଫୁଲ ଏହି ବେଶ ପାଇଁ ଯୋଗାଉ ଅଛନ୍ତି । କେବଳ ଏହି ଗୋଟିଏ ବେଶରେ ମହାପ୍ରଭୁ ପହୁଡ଼ ହୁଅନ୍ତି ।

୨୯. ଗଜ ଉଦ୍ଧାରଣ ବେଶ - (ଗଜେନ୍ଦ୍ର ମୋକ୍ଷ ବେଶ) - ଏହା ମାଘ ପୂର୍ଣ୍ଣିମା ଦିନ ହୁଏ । ଦ୍ୱାଦଶ ଶତକରେ ରାମାନୁଜାଚାର୍ଯ୍ୟ ଏହା ପ୍ରବର୍ତ୍ତନ କରିଥିଲେ ।

୩୦. ଚାଚେରୀ ବେଶ - ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଚୈତ୍ର ପ୍ରତିପଦ ପର୍ଯ୍ୟନ୍ତ ଏହି ବେଶ ଦୋଳଯାତ୍ରା ଅବସରରେ ହୋଇଥାଏ ।

୩୧. ରାମରାଜା ବେଶ - ଏକାଦଶୀ ଗୁରୁବାର ପଡ଼ିଲେ ପୌଷପୂର୍ଣ୍ଣିମା ତଥା ଚୈତ୍ର ଶୁକ୍ଳ ନବମୀ ରାମଚନ୍ଦ୍ରଙ୍କ ଜନ୍ମ ଅବସରରେ ଏହି ବେଶ ହୋଇଥାଏ । ଏହି ବେଶରେ ଦଣ୍ଡଛତ୍ର ନୀତି ପାଳିତ ହୋଇଥାଏ । ସନ୍ଥ ତୁଳସୀ ଦାସ ଜଗନ୍ନାଥଙ୍କୁ ଦର୍ଶନ କରିଥିବାର ସ୍ମୃତିରେ ଏହି ବେଶ ହୋଇଥାଏ । ଷୋଡଶ ଶତକରେ ରାମାନୁଜାଚାର୍ଯ୍ୟ ଏହା ପ୍ରବର୍ତ୍ତନ କରିଥିଲେ ।

୩୨. ରଘୁନାଥ ବେଶ - ଏହା ରାମନବମୀ ବା ଚୈତ୍ର ଶୁକ୍ଳ ନବମୀ ଦିନ ହୁଏ । ଏହା ସବୁଠାରୁ ବ୍ୟୟବହୁଳ ବେଶ ଅଟେ । ଷୋଡଶ ଶତକରେ ରାମାନୁଜାଚାର୍ଯ୍ୟ ଏହା ପ୍ରବର୍ତ୍ତନ କରିଥିଲେ ।

(ଶ୍ରୀ.ପ.ସେ.ପୂ. - ପୃ. ୨୨୭) ।

**ବେଶଲାଗି**-ଦେ.ବି.- ପ୍ରତ୍ୟହ ସକାଳ ୮ଘଟିକାରୁ ୮-୩୦ ମିନିଟ୍ ମଧ୍ୟରେ ବେଶ ଲାଗି ହେବା ନିୟମ । ଶ୍ରୀମନ୍ଦିରରେ ପୁଷ୍ପାଳକ ସେବକମାନେ ଠାକୁରଙ୍କ ବସ୍ତ୍ର ଓ ଅଳଙ୍କାର ଲାଗି କରନ୍ତି । ଆବଶ୍ୟକୀୟ ଅଳଙ୍କାର ଠାକୁରଙ୍କ ରତ୍ନଭଣ୍ଡାରରୁ ଯୋଗାଇ ଦିଆଯାଏ । ଏତଦ୍‌ବ୍ୟତୀତ ବିଭିନ୍ନ ସମୟରେ ଠାକୁରଙ୍କର ବିଭିନ୍ନ ବେଶ ହୋଇଥାଏ । ୧. ସାଧାରଣ ବେଶ- ଚୈତ୍ର କୃଷ୍ଣ ପ୍ରତିପଦାଠାରୁ ଆଶ୍ୱିନ ଶୁକ୍ଳ ୯ମୀ ପର୍ଯ୍ୟନ୍ତ ଓ ମାର୍ଗଶିର କୃଷ୍ଣ ପ୍ରତିପଦଠାରୁ ଓଢ଼ଣଷଷ୍ଠୀ ଯାଏ ସକାଳ ସାଧାରଣ ବେଶ । ଏହି ବେଶରେ ୩ ମୂର୍ତ୍ତି ଠାକୁର ଝୋବାକର୍ଣ୍ଣି, ହୀରା ଚିତା ଓ ରାହୁରେଖା ଲାଗି ହୁଅନ୍ତି । ସ୍ନାନପୂର୍ଣ୍ଣିମାଠାରୁ ରେଖାପଞ୍ଚମୀ ପର୍ଯ୍ୟନ୍ତ ରାହୁରେଖା ଲାଗି ହୁଏ

ନାହିଁ । ସ୍ନାନପୂର୍ଣ୍ଣିମା, ଅଣସର ଓ ରଥଯାତ୍ରା ବେଶ ପର୍ବାଣିନୀତିରେ ଉଲ୍ଲେଖ ଅଛି । ୨. ଆଶ୍ୱିନ ଶୁକ୍ଳ ଦଶମୀ, ଦଶହରା - ରାଜାବେଶ, ୩. ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ- ରାଧାଦାମୋଦର ବେଶ, ୪. କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ- ଲକ୍ଷ୍ମୀ ନାରାୟଣ ବେଶ ଓ ଅନ୍ୟ ବେଶ, ୫. କାର୍ତ୍ତିକ ପୂର୍ଣ୍ଣିମା (ରାଜାବେଶ), ୬. ମାର୍ଗଶିର ଓଢ଼ଣ ଷଷ୍ଠୀ (ଶୁକ୍ଳଷଷ୍ଠୀ)ଠାରୁ ବସନ୍ତ ପଞ୍ଚମୀ ପର୍ଯ୍ୟନ୍ତ ଘୋଡ଼ଲାଗି ବେଶ । ଏ ବେଶରେ ଝୋବାକଣ୍ଠି ଲାଗେ ନାହିଁ । ଘୋଡ଼ଲାଗି ମଧ ୭ଦିନରେ ଭିନ୍ନ ଭିନ୍ନ ରଙ୍ଗରେ ଘୋଡ଼ଲାଗି ହୁଏ । ଘୋଡ଼ାଲାଗି (ଶୀତବସ୍ତ୍ର)- ରବିବାର- ଲାଲରଙ୍ଗର ଘୋଡ଼, ସୋମବାର- କଳାଛିଟ ମିଶା ଶୁକ୍ଳ ଘୋଡ଼, ମଙ୍ଗଳବାର- ବାରପଟିଆ (ପାଞ୍ଚରଙ୍ଗ) ମିଶା ଘୋଡ଼, ବୁଧବାର- ନୀଳରଙ୍ଗର ଘୋଡ଼, ଗୁରୁବାର- ବସନ୍ତ ରଙ୍ଗର ଘୋଡ଼, ଶୁକ୍ରବାର- ଶୁକ୍ଳରଙ୍ଗର ଘୋଡ଼, ଶନିବାର- କଳାରଙ୍ଗର ଘୋଡ଼ । ୭. ବସନ୍ତପଞ୍ଚମୀଠାରୁ ଫଗୁଦଶମୀ ଯାଏ ଠାକୁରମାନେ (ଜାମାଲାଗି) ଠିଆ ଘୋଡ଼ ଲାଗି ହୁଅନ୍ତି । ଜାମାଲାଗି ଓ ଶ୍ରୀରାଧା ଦାମୋଦର ବେଶରେ ଠାକୁରମାନେ ନିମ୍ନଲିଖିତ ୩୦ ମୂର୍ତ୍ତି ସୁନା ଅଳଙ୍କାରମାନ ବ୍ୟବହାର କରନ୍ତି । ଘୋଡ଼ାଲାଗି ବେଶରେ ୮ ମୂର୍ତ୍ତି ସୁନା ଅଳଙ୍କାର ଲାଗି ହୁଅନ୍ତି, ତ୍ରିଶାଖା- ୨, କୁଣ୍ଡଳ-୪, ବଡ଼ିଗି-୨ = ୮ ମୂର୍ତ୍ତି । ଲକ୍ଷ୍ମୀନାରାୟଣ ବେଶରେ - ଶ୍ରୀଭୁଜ-୪, କାନ-୨, ଚନ୍ଦ୍ରିକା-୬, ଚନ୍ଦ୍ରିକା-୨, ତଡ଼ଗି-୨, କିଆ-୫୪, ଶ୍ରୀପୟର-୪, ଆଡ଼କାନି-୪, ଚନ୍ଦ୍ରସୂର୍ଯ୍ୟ-୬, ଚନ୍ଦ୍ରସୂର୍ଯ୍ୟ-୬, ଓଡ଼ିଆଣି-୩, ରାଜବେଶରେ ଅଧିକ ୩ଟି ସ୍ୱର୍ଣ୍ଣକିରୀଟ ଲାଗିହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୪, ୧୫, ୧୬) ।

**ବେଶକ୍ଷିରୀ**-*ଦେ.ବି.*-ଶ୍ରୀମନ୍ଦିରରେ ଠାକୁରଙ୍କର ବିଭିନ୍ନ ବେଶ ସମୟରେ ଯେଉଁ କ୍ଷିରୀ ଲାଗି ହୁଏ ତା'ର ନାମ ବେଶ କ୍ଷିରୀ । ଏହା ଖିର, ସାଚୀ, ଖୁଆ, ଚାଉଳ ବା ସୁଜି ଆଦି ମିଶ୍ରଣରେ ପ୍ରସ୍ତୁତ ହୋଇଥାଏ ।
(ଶ୍ରୀ.ଜି. - ପୃ. ୨୧୪) ।

**ବେହରଣ**-*ଦେ.ବି.*- ଶ୍ରୀମନ୍ଦିରର ଦକ୍ଷିଣଘର ପିଣ୍ଡା । ଶ୍ରୀନଅରରେ ଗଜପତି ମହାରାଜାଙ୍କର ବୈଠକ ଘର/କାର୍ଯ୍ୟାଳୟ ।
(ଶ୍ରୀ.ସ୍ୱ. - ପୃ. ୧୪୩, ୮୪) ।

**ବେହେରା**-*ଦେ.ବି.*- ଯାନ / ପାଲିଙ୍କି ବାହକ । ରାଜଦତ୍ତ ଉପାଧି ବିଶେଷ । ଜାତି ବା ଉପଜାତିର ମୁଖିଆ । ହାଟୁଆ ଜାତିର ନେତା ବା ଦଳପତି, ଜାତି ବେହେରା । କେତେକ ଜାତିଙ୍କ ବଂଶ ଉପାଧି ବେହେରା ଅଟେ ।
(ପୂ.ଓ.ଭା. - ପୃ. ୫୯୧୩) ।

**ବେହେରାକରଣ ସେବା**-*ଦେ.ବି.*- ଶ୍ରୀମନ୍ଦିରର କରଣ ସେବକ ବିଶେଷ । ଚନ୍ଦନଲାଗି ଓ ଆଲଟ ଲାଗି ଶେଷରେ ବିଶେଷ କାର୍ଯ୍ୟ ସମ୍ପାଦନ କରୁଥିବା ସେବକ ବିଶେଷ । ୧୯୮୮ରୁ ଏହା ପୁନଃ ପ୍ରଚଳନ କରାଯାଇଛି । ଶ୍ରୀଜୀଉଙ୍କ ନୀତି କିପରି ହେଉଛି ତାହା ପ୍ରଶାସନକୁ ଜଣାଇବେ । ଚନ୍ଦନ ଅର୍ଗଳିକାଠାରେ ରାମକୃଷ୍ଣ ଚାପ ଉପରେ, ରଥ ଉପରେ ଚାମର ସେବା କରନ୍ତି । ଚାପରେ ସେବକଙ୍କ ସେବା ତନଖି କରନ୍ତି ।
(ଶ୍ରୀ.ଜି. - ପୃ.୧୬୯) ।

**ବେହେରା ଖୁଣ୍ଟିଆ**-*ଦେ.ବି.*- ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ରାଜାଙ୍କଠାକୁ ବଡୁ ନେବା ପାଇଁ ମାଳଫୁଲ ଟାଟ ସାଇତିବା, ରାଜା ବିଜେ ହେଲେ ସିଂହଦ୍ୱାରଠାରୁ ସାଙ୍ଗରେ ବେତଧରି ଯିବା, ରାଜପ୍ରାସାଦ ଓ ଖଡ଼ିପ୍ରସାଦ ବେଳେ ନଅରକୁ ଯିବା, ରାଜନୀତିରେ ରାଜାଙ୍କ ପୁଷ୍ପାଞ୍ଜଳି ନିମିତ୍ତ ରାଜଗୁରୁଙ୍କ ହାତକୁ ଫୁଲ ବଢ଼ାଇବା, କୃଷ୍ଣଜନ୍ମ ଦିନ ବାସୁକି, କଂସ ବଧ ଦିନ ଅକ୍ରୁର ସେବା କରିବା ଏହାର କାର୍ଯ୍ୟ ।
(ଶ୍ରୀ.ସ୍ୱ. - ପୃ. ୯୯) ।

**ବୈଜୟନ୍ତୀ**-*ଦେ.ବି.*- ନାଭିକଟା ମଣ୍ଡପରେ ବସି ଦୈନିକ ସକାଳ ଧୂପ ଓ ସନ୍ଧ୍ୟା ଧୂପ ବେଳେ ବାଜା ବଜାଉଥିବା ସେବକ । ଏତଦ୍‌ବ୍ୟତୀତ ବିଭିନ୍ନ

ପର୍ବପର୍ବାଣୀ ଯାନିଯାତ୍ରା ବେଳେ ବେଢ଼ା ଭିତର ଓ ବାହାର ଗିଛେ ସମୟରେ ବାଜା ବଜାଇଥାନ୍ତି । (ଶ୍ରୀ.ସ୍ୱ. ପୃ. ୬।୫୮) ।

**ବୈଦ୍ୟ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ଚିକିତ୍ସକ । ଅଣସର ସମୟରେ ପୀଡ଼ିତ ବୋଲି କଳ୍ପିତ ଠାକୁରଙ୍କ ନିମନ୍ତେ ଅଣସର ଦଶମୀ ସନ୍ଧ୍ୟାରେ ଦଶମୂଳ ମୋଦକ ଦେଲେ । ତାହା ଏକାଦଶୀ ଦିନ ଭୋଗ ସହିତ ଭୋଗ ହୁଏ । (ଶ୍ରୀ.ସ୍ୱ. - ପୃ. ୬୦।୬୨) ।

**ବୈରାଗୀ**-*ଦେ.ବି.*- ଶ୍ରୀମନ୍ଦିରକୁ ଆସୁଥିବା କରମୁକ୍ତ ଯାତ୍ରୀ ଅଥବା ସନ୍ନ୍ୟାସୀ । (କ୍ଷେ.ସ.) ।

**ବୈରାଣୀ ଖଣ୍ଡୁଆ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ନବଯୌବନ ଗୁନ୍ଧା ବେଳେ ଏହି ବସ୍ତ୍ର ଦଇତାପତିଙ୍କ ଦ୍ୱାରା ଠାକୁରଙ୍କୁ ଲାଗି ହୁଏ । ଏତଦ୍‌ବ୍ୟତୀତ ନନ୍ଦ ଉତ୍ସବ, ନୃସିଂହ ଜନ୍ମ ତୁଳା ସଂକ୍ରାନ୍ତି, ଚିତାଲାଗି ଅମାବାସ୍ୟାରେ ଲାଗି ହୁଏ । (ଶ୍ରୀ.ସ୍ୱ. - ପୃ. ୧୫୦) ।

**ବୈକୁଣ୍ଠ**- ସିଂହଦ୍ୱାର ଗୁମୁଟର ଉତ୍ତରପାର୍ଶ୍ୱରେ ପତିତପାବନ ବିଗ୍ରହଙ୍କ ସ୍ଥାନ ପୂର୍ବ ବୈକୁଣ୍ଠ ନାମରେ ପରିଚିତ ।

ମୁକ୍ତିମଣ୍ଡପ ନିକଟସ୍ଥ ସ୍ଥାନ ବ୍ରହ୍ମବୈକୁଣ୍ଠ ଶ୍ରୀଜଗନ୍ନାଥଙ୍କ ଦକ୍ଷିଣପକ୍ଷ ଅନନ୍ତ ବୈକୁଣ୍ଠ ନାମରେ ପରିଚିତ ।

ଶ୍ରୀଜୀଉଙ୍କ ବିଭିନ୍ନ ଉତ୍ସବ ଓ ପର୍ବପର୍ବାଣି ଲୀଳା ବୈକୁଣ୍ଠ ନାମରେ ପରିଚିତ ।

ଶ୍ରୀମନ୍ଦିର ବେଢ଼ାର ପାତାଳେଶ୍ୱର ମନ୍ଦିର ନିକଟସ୍ଥ ସ୍ଥାନ ପାତାଳ ବୈକୁଣ୍ଠ ନାମରେ ପରିଚିତ ।

ଶ୍ରୀକ୍ଷେତ୍ରର ମହୋଦଧି ନିକଟସ୍ଥ ସ୍ୱର୍ଗଦ୍ୱାର ଅମର ବୈକୁଣ୍ଠ ନାମରେ ପରିଚିତ ।

ଶ୍ରୀକ୍ଷେତ୍ରର ବିଗ୍ରହମାନଙ୍କର ଆବିର୍ଭାବ ସ୍ଥଳ ହେଉଛି ସର୍ବଶ୍ରେଷ୍ଠ ପୁଣ୍ୟତମ କୋଇଲି ବୈକୁଣ୍ଠ ।

**ବୈଷ୍ଣବ**-*ସଂ.ବି.*- ବିଷ୍ଣୁଙ୍କର ଭକ୍ତ । ଯାହାଙ୍କ ମୁଖରୁ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଥରେ ମାତ୍ର କୃଷ୍ଣ ନାମ ଶୁଣାଯାଏ ସେ ବୈଷ୍ଣବ । (ପୂ.ଓ.ଭା. - ପୃ. , ଓ.ସାଂ.ଶ. - ପୃ. ୨୭୪) ।

**ବୈଷ୍ଣବାଗ୍ନି**-*ସଂ.ବି.*- ଶ୍ରୀମନ୍ଦିର ରୋଷ ଘର ଚୁଲାରେ ଅନବରତ ରହିଥିବା ଅଗ୍ନିର ନାମ । (ଶ୍ରୀ.ସ୍ୱ.- ପୃ. ୨୬୧) ।

**ବୋଇରାଣୀ**-*ଦେ.ବି.*- ଶ୍ରୀଠାକୁରଙ୍କର ଅଙ୍ଗଲାଗି ଏକ ଆକାଶିଆ ରଙ୍ଗର ବସ୍ତ୍ର ବିଶେଷ । ଏହା ନନ୍ଦ ଉତ୍ସବରେ ଲାଗି ହୋଇଥାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୫୩, ପୁ.ବୋ. - ପୃ. ୨୫୯) ।

**ବୋଝିଆ**-*ଦେ.ବି.*- ଶ୍ରୀଠାକୁରଙ୍କ ଧୂପ ବଢ଼ିବା ପରେ ଭୋଗ ବୋଝ ଧରି ଯେଉଁ ବ୍ୟକ୍ତି ବାହାରକୁ ଆଣନ୍ତି । ବୋଝ ବୋହୁଥିବା ବ୍ୟକ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୮) ।

**ବୋଳା**-*ଦେ.ବି.*- ଶ୍ରୀଠାକୁରଙ୍କ ଶ୍ରୀମୁଖ ଚାରିପାଖେ ମୋଡ଼ା ବା ବୋଳା ହୋଇଥିବା ବସ୍ତ୍ରର ଆଭୂଷଣ । (ଶ୍ରୀ.ଶ.- ପୃ. ୧୩୦) ।

**ବୌଦ୍ଧ ଅବତାର**-*ସଂ.ବି.*- ବୁଦ୍ଧଙ୍କୁ ଶ୍ରୀଜଗନ୍ନାଥଙ୍କ ଅବତାର ବୋଲି ମଧ୍ୟ ବର୍ଣ୍ଣନା କରାଯାଇଛି । (କୃ.ବି.ଓ.ଶ.ସ.- ପୃ. ୬୫୯) ।

**ବ୍ୟକ୍ତିଗତ ସେବା**-*ଦେ.ବି.*- ବ୍ୟକ୍ତିଗତ ସେବା ବା ଆନୁଷ୍ଠାନିକ ସେବା ବା ଉପସତ୍ତ୍ୱ । ଯେଉଁ ବ୍ୟକ୍ତି ବା ଅନୁଷ୍ଠାନମାନଙ୍କର କେବଳ ଉପସତ୍ୱ (ସୁବିଧା) ଅଛି ମାତ୍ର ମନ୍ଦିର ନୀତି ସମ୍ପର୍କୀୟ ସେବା ନାହିଁ, ସେମାନେ ଗଣ୍ୟ ନୁହନ୍ତି ଓ ସେମାନଙ୍କର ସେବା ମନ୍ଦିର ନୀତି ଅନ୍ତର୍ଭୁକ୍ତ ନୁହେଁ । ଯେଉଁ ଅନୁଷ୍ଠାନ ଓ ବ୍ୟକ୍ତିମାନଙ୍କ ନୀତି ସମ୍ପର୍କୀୟ ଜିନିଷ ଯୋଗାଇବା / ନୀତିରେ ସେବା କରିବା ଦାୟିତ୍ୱ ଅଛି, ସେମାନେ ସେବକ ଅଟନ୍ତି ଓ ସେବା ଯୋଗାଇବା ବନ୍ଦ କଲେ ସେମାନଙ୍କ ପ୍ରାପ୍ୟ ବା ଉପସତ୍ୱ ବନ୍ଦ ହୋଇପାରିବ ଓ ସେହି ସେବା ବା ଜିନିଷ ପାଇ କର୍ତ୍ତୃପକ୍ଷ ଅନ୍ୟ ବନ୍ଦୋବସ୍ତ କରିପାରିବେ । ସେବାକାରୀ ବା ଯୋଗାଇବା ବ୍ୟକ୍ତି ବା ଅନୁଷ୍ଠାନ ସେହି କାମ ପାଇଁ ଯେଉଁସବୁ ଖଞ୍ଜା ଜମିଜମା ପାଇଅଛନ୍ତି ତାହା କରିବା ପାଇଁ ଉପଯୁକ୍ତ କାର୍ଯ୍ୟ ଅନୁଷ୍ଠାନ ହୋଇପାରିବ । (ଶ୍ରୀ.ସ୍ୱ. - ପୃ. ୧୭୬) ।

**ବ୍ରତ**-*ସଂ.ବି.*- ଯାହାଦ୍ୱାରା ସ୍ୱର୍ଗାଦି ପ୍ରାର୍ଥନା କରାଯାଏ । ସ୍ୱର୍ଗସୁଖ, ଧନାଦି କାମନାରେ ନିୟମିତ ବା ସଂକଳ୍ପିତ ଧର୍ମକର୍ମାନୁଷ୍ଠାନ ଓ ଉପବାସାଦି, ପ୍ରାୟଶ୍ଚିତ୍ତ, ପାପକ୍ଷୟକର, ଚାନ୍ଦ୍ରାୟଣାଦି କର୍ମ । ତପସ୍ୟା, ତପଶ୍ଚରଣ, ପୁଣ୍ୟଜନକ, ପାପକ୍ଷୟକର କର୍ମ, ଧର୍ମ ନିୟମ, ଯମନିୟମାଦି, କର୍ମ, କାର୍ଯ୍ୟ, ଶାସନ, ସଂକଳ୍ପ, ରକ୍ଷଣ, ବ୍ରାହ୍ମଣର ଉପନୟନ, ପୁଣ୍ୟ ପର୍ବ, ବ୍ରତଧାରୀମାନେ ହାତରେ ଯେଉଁ ସୂତ୍ର ବାନ୍ଧନ୍ତି । ଆମ ଦେଶରେ ଅନେକଗୁଡ଼ିଏ ବ୍ରତ ପାଳନ ହୁଏ । ଯଥା- ଅନନ୍ତବ୍ରତ, ସୁଦଶାବ୍ରତ, ସୋମନାଥବ୍ରତ, କୁକୁଟୀବ୍ରତ ଇତ୍ୟାଦି । ସ୍ତ୍ରୀମାନଙ୍କର ବ୍ରତକୁ 'ଓଷା' କୁହାଯାଏ । ଦେବୀମାନଙ୍କର ଉତ୍ସବକୁ ଯାତ୍ରା କୁହାଯାଏ । ଦୃଢ଼ ସଂକଳ୍ପ ପୂର୍ବକ ନିଷ୍ଠା ବା ଐକାନ୍ତିକତା ସହକାରେ କରାଯିବା କର୍ମ । ଆମ ସମାଜରେ ପ୍ରଚଳିତ ଅନେକ ବ୍ରତ ଶ୍ରୀମନ୍ଦିର ପରିସର ମଧ୍ୟରେ ପାଳନ କରାଯାଏ ।
(କ୍ରି.ବି.ଓ.ଶ.ସ.- ପୃ. ୭୬୫, ପୂ.ଓ.ଭା. - ପୃ. ୫୯୭୯) ।

**ବ୍ରହ୍ମ**-*ସଂ.ବି.*- ଜଗତର କାରଣ, ଏକମାତ୍ର ନିତ୍ୟ ଚେତନ ସତ୍ତା । ବେଦୋକ୍ତ ବିରାଟ ପୁରୁଷ, ପରମ ପୁରୁଷ, ପରମେଶ୍ୱର, ପରମବ୍ରହ୍ମ, ନିରାକାର ବ୍ରହ୍ମ , ବ୍ରହ୍ମ ଅଟେ । ଏହା ସତ୍, ଚିତ୍ ଓ ଆନନ୍ଦ ସ୍ୱରୂପ ତତ୍ତ୍ୱ ଅଟେ । ଜଗତରେ ଆଉ ଯାହା ସବୁ ପ୍ରତୀତ ହୁଏ ତାହା ସବୁ ଅସତ୍ ଓ ମିଥ୍ୟା ଅଟେ । ବ୍ରହ୍ମ ସଚ୍ଚିଦାନନ୍ଦ, ଅଖଣ୍ଡ, ନିତ୍ୟ, ନିର୍ଗୁଣ ଓ ଅଦ୍ୱିତୀୟ ଅଟେ । ଜଗତ ବ୍ରହ୍ମର ପରିଣାମ ବିକାର ନୁହେଁ, ଏହା ଜଗତ ବ୍ରହ୍ମର ବିବର୍ତ୍ତନ ଅଟେ । ବ୍ରହ୍ମ ଜଗତ୍‌ରୂପେ ପ୍ରତୀତ ହେଉଅଛି । ବ୍ରହ୍ମଛଡ଼ା ଅନ୍ୟସବୁ ମିଥ୍ୟା ଓ ଭ୍ରମ । ଆଉ କାହିଁରେ ପାରମାର୍ଥିକ ସତ୍ତା ନାହିଁ । ବ୍ରହ୍ମର ସମ୍ୟକ୍ ନିରୂପଣକାରୀ ଆଦିଗ୍ରନ୍ଥ ଉପନିଷଦ ଅଟେ । ଏଥିରେ ନେତି ନେତି (ଏହା ବ୍ରହ୍ମ ନୁହେଁ, ଏହା ବ୍ରହ୍ମ ନୁହେଁ) ପ୍ରଣାଳୀରେ ବ୍ରହ୍ମର ସ୍ୱରୂପକୁ ବୁଝାଇବାକୁ ଚେଷ୍ଟା କରାଯାଇଛି । ତତ୍ତ୍ୱମସି (ତାହା ତୁମ୍ଭେ ଅଟ) ଏହି ବଚନ ଦ୍ୱାରା ଆତ୍ମାର ଓ ବ୍ରହ୍ମର ଅଭେଦ୍ୟ ବର୍ଣ୍ଣନା କରାଯାଇଅଛି । ବ୍ରହ୍ମ ସମ୍ବନ୍ଧୀୟ ଏହି ଜ୍ଞାନର ପ୍ରାଚୀନ ନାମ 'ବ୍ରହ୍ମବିଦ୍ୟା' । ପରେ ବ୍ୟାସଦେବ 'ବ୍ରହ୍ମସୂତ୍ର'ରେ ବ୍ରହ୍ମକୁ ବ୍ୟବସ୍ଥିତ ରୂପେ ପ୍ରତିପାଦିତ କରିଅଛନ୍ତି । ବ୍ରହ୍ମସୂତ୍ର ବେଦାନ୍ତ ଦର୍ଶନର ଆଧାର ଅଟେ । ଶ୍ରୀଜଗନ୍ନାଥଙ୍କ ଦାରୁରେ ବ୍ରହ୍ମତ୍ୱ ଆରୋପ କରାଯାଇ ତାଙ୍କୁ ଦାରୁବ୍ରହ୍ମ ବୋଲି କୁହାଯାଏ । ନବକଳେବରବେଳେ ବ୍ରହ୍ମ ପରିବର୍ତ୍ତନ କରାଯାଏ ।
(ଶ୍ରୀ.ସ୍ୱ. - ପୃ. ୬୪, ପୂ.ଓ.ଭା. - ପୃ. ୫୯୮୨, ଓ.ସାଂ.ଶ. - ପୃ. ୨୭୬) ।

**ବ୍ରହ୍ମକପାଟ**-*ସଂ.ବି.*- ନବକଳେବର ସମୟରେ ଦାରୁ ପ୍ରତିଷ୍ଠା କର୍ମର ଶେଷରେ ନ୍ୟାସଦାରୁଙ୍କୁ ଚାରିଖଣ୍ଡରେ ବିଭକ୍ତ କରାଯାଇ ଆବଶ୍ୟକୀୟ ଆକାରରେ ନୂତନ ବିଗ୍ରହମାନଙ୍କ ବକ୍ଷସ୍ଥଳ ରନ୍ଧ୍ର ଉପରେ ଗୁପ୍ତ ବ୍ରହ୍ମ ପଦାର୍ଥଙ୍କର ସ୍ଥାପନ ପରେ ଢାଙ୍କୁଣୀ ଭାବରେ ସ୍ଥାପନ କରାଯାଏ । ଏହାର ତାତ୍ତ୍ୱିକ ନାମ ହେଉଛି 'ବ୍ରହ୍ମକପାଟ' ।
(ମ.ନ. - ପୃ. ୧୦୬) ।

**ବ୍ରହ୍ମବସ୍ତୁ**-*ସଂ.ବି.*- ସଂସାରରେ ସବୁଠାରୁ ପବିତ୍ର ବସ୍ତୁ ହେଉଛି ଗଙ୍ଗାଜଳ, ବ୍ରଜଧୂଳି ଓ ମହାପ୍ରସାଦ । ଏହାକୁ ବ୍ରହ୍ମବସ୍ତୁ ବୋଲି କୁହାଯାଏ । ତନ୍ମଧ୍ୟରୁ ମହାପ୍ରସାଦର ମାହାତ୍ମ୍ୟ ବଡ଼ ବିଚିତ୍ର କାରଣ ଏଥିରେ ଅଇଁଠା ବାରଣ ନାହିଁ । ଆଚାଣ୍ଡାଳ ବ୍ରାହ୍ମଣ ସମସ୍ତେ ସମାନ । ଏଥିରେ ଭରି ରହିଛି ଶ୍ରଦ୍ଧା, ପ୍ରେମ, ଭକ୍ତି ଓ ଆତ୍ମ ନିବେଦନ ।
(ଶ୍ରୀ.ଜି. - ପୃ. ୧୮୯) ।

**ବ୍ରହ୍ମା**-*ସଂ.ବି.*- ସୃଷ୍ଟିକର୍ତ୍ତା, ବିଧାତା, ପ୍ରଜାପତି, ବ୍ରାହ୍ମଣ । ବ୍ରହ୍ମା ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି ଓ ଶିବ ସଂହାର କରନ୍ତି । ମନୁସ୍ମୃତି ଅନୁସାରେ ସ୍ୱୟଂଭୂ ଭଗବାନ ପ୍ରଥମେ ଜଳକୁ ସୃଷ୍ଟି କରି ତହିଁରେ ବୀଜକୁ ଦେଲେ ସେଥିରୁ ଗୋଟିଏ ଜ୍ୟୋତିର୍ମୟ ଅଣ୍ଡ ବାହାରିଲା ଓ ସେହି

ଅଣ୍ଡ ମଧ୍ୟରୁ ବାହାରିଥିଲେ ବ୍ରହ୍ମା । ଭାଗବତ ଆଦି ପୁରାଣରେ ବର୍ଣ୍ଣିତ ଅଛି ଯେ, ଭଗବାନ ବିଷ୍ଣୁ ପ୍ରଥମେ ମହାତତ୍ତ୍ୱ, ଅହଙ୍କାର ଓ ପଞ୍ଚଭୂତ ଦ୍ୱାରା ଏକାଦଶ ଇନ୍ଦ୍ରିୟ ଓ ପଞ୍ଚମହାଭୂତ, ଏହି ୧୬ କଳାରୁ ସଂଗୃହୀତ ବିରାଟ ରୂପ ଧାରଣ କଲେ । ବିଷ୍ଣୁ ଯେତେବେଳେ ଯୋଗ ନିଦ୍ରାରେ ଶୋଇଥିଲେ, ତାଙ୍କ ନାଭିରୁ ଏକନାଡ଼ ଲଗା ପଦ୍ମ ଫୁଟିଲା ଓ ସେହି ପଦ୍ମ ମଧ୍ୟରୁ ଜନ୍ମିଲେ ବ୍ରହ୍ମା । ବ୍ରହ୍ମାଙ୍କର ଅନ୍ୟନାମ - ଧାତା, ବିଧାତା, ପ୍ରଜାପତି, ପିତାମହ, ପରମେଷ୍ଠି, ପଦ୍ମଯୋନି, ବିଧି, ବିରଞ୍ଚି, ବିଶ୍ୱସୃକ୍ । ବ୍ରହ୍ମାଙ୍କର ଦଶଜଣ ମାନସପୁତ୍ର, ଯଥା- ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ, କ୍ରତୁ, ପ୍ରଚେତା, ବଶିଷ୍ଠ, ଭୃଗୁ ଓ ନାରଦ । ମନୁଷ୍ୟର ଜନ୍ମ ପୂର୍ବରୁ ବ୍ରହ୍ମା ପ୍ରତ୍ୟେକ ବ୍ୟକ୍ତିର ଭାଗ୍ୟ ନିର୍ଣ୍ଣୟ କରନ୍ତି । ଶ୍ରୀମନ୍ଦିରର ଗରୁଡ଼ସ୍ତମ୍ଭ ନିକଟରେ ବ୍ରହ୍ମା ଅବସ୍ଥାନ କରିଥିବାର ଦେଖାଯାଏ । ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ବ୍ରହ୍ମା ନିମନ୍ତିତ ହୋଇ ଶ୍ରୀମନ୍ଦିର ପ୍ରତିଷ୍ଠା କରିଥିଲେ ବୋଲି ସ୍କନ୍ଦ ପୁରାଣରେ ବର୍ଣ୍ଣିତ ।

(ପୂ.ଓ.ଭା. - ପୃ. ୫୯୯୨, ଓ.ସାଂ.ଶ. - ପୃ. ୨୭୮) ।

**ବ୍ରହ୍ମାସନ**-*ଦେ.ବି.*- ମୁକ୍ତିମଣ୍ଡପକୁ ବ୍ରହ୍ମାସନ କୁହାଯାଏ । ଏହା ବ୍ରହ୍ମବିଦ୍ ବ୍ରାହ୍ମଣ ପଣ୍ଡିତଙ୍କ ଆସ୍ଥାନ ।

(ଶ୍ରୀ.ସ୍ୱ. - ପୃ. ୨୩୯, ପୁ.ବୋ. - ପୃ. ୨୬୭) ।

**ବ୍ରାହ୍ମଣ ସେବକ**-*ଦେ.ବି.*- ବ୍ରାହ୍ମଣ ଜାତିର ଦେବ ସେବକ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୬,୧୮) ।





**ଭଅଣ୍ଡ**-ଦେ.ବି.- ଅନ୍ନ ମହାପ୍ରସାଦ । ଭୋଗମଣ୍ଡପରେ ହେଉଥିବା ଭୋଗ । ଧୂପରେ କୋଠଭୋଗ ସହ ସାଧାରଣ ଯାତ୍ରୀଙ୍କ ନିମନ୍ତେ ଭୋଗ ଉଦ୍ଦିଷ୍ଟ ହୋଇ ଶ୍ରୀଠାକୁରଙ୍କୁ ଲାଗୁଥିବା ଭୋଗକୁ ଭଅଣ୍ଡ କୁହାଯାଏ ।
(ଓ.ସାଂ.ଶ. - ପୃ.୨୭୯, ପୂ.ଓ.ଭା. - ପୃ. ୬୦୦୫, ପ୍ର.ଅ. ୩ୟ - ପୃ. ୧୯୭୭) ।

**ଭଅଣ୍ଡ ଗଣେଶ**-ଦେ.ବି.- ଶ୍ରୀମନ୍ଦିର ପଶ୍ଚିମ ଦ୍ୱାର ପାଖକୁ ଥିବା ଉପାସିତ ଗଣେଶ ମୂର୍ତ୍ତି । ତାତ୍ତ୍ୱିକ ଦୃଷ୍ଟିରୁ ଏ ମୂର୍ତ୍ତି ଭଣ୍ଡ ଗଣେଶ ଭାବରେ କଥିତ । ଭଣ୍ଡ ଗଣେଶ ଅର୍ଦ୍ଧପର୍ଯ୍ୟଙ୍କାସନରେ ଡାହାଣ ପାଦ ଭାଙ୍ଗି ବାମପାଦ ଲମ୍ବାଇ ଉପବିଷ୍ଟ । ଏହା କଳାମୁଗୁନି ପଥରରେ ନିର୍ମିତ । ଜଟାମୁକୁଟ ମଣ୍ଡିତ, ସର୍ପ ଉପବୀତ ଶୋଭିତ । ତାଙ୍କର ବାମ ଉପର ହସ୍ତରେ ପରଶୁ ଓ ବାମତଳ ହସ୍ତରେ ସିଦ୍ଧିଦେବୀଙ୍କୁ ଆଲିଙ୍ଗନ କରିଛନ୍ତି । ଦକ୍ଷିଣ ଉପର ହସ୍ତରେ ଭଗ୍ନଦନ୍ତ ଓ ଦକ୍ଷିଣ ତଳହସ୍ତରେ ଅକ୍ଷୟମାଳା ରହିଛି । କାଞ୍ଚିକାବେରୀ ଯୁଦ୍ଧରେ କାଞ୍ଚିରାଜା ନିଜର ସୁନିଶ୍ଚିତ ପରାଜୟ ଜାଣି ରଣାଙ୍ଗନରୁ ଛତ୍ରଭଙ୍ଗ ଦେଲାବେଳେ ନିଜର ଇଷ୍ଟଦେବ ଗଣପତିଙ୍କୁ ସ୍ମରଣ କରିବାରୁ ସେ କାଞ୍ଚିସେନା ସହ ରହି ଯୁଦ୍ଧ କଲେ । ଜଗନ୍ନାଥ ଓ ବଳଭଦ୍ର ରାଉତ ଭାବରେ ଓଡ଼ିଆ ରାଜା ପୁରୁଷୋତ୍ତମଦେବଙ୍କ ପକ୍ଷରେ ଯୁଦ୍ଧ କରିବା ଗଣେଶଙ୍କୁ ଜଣା ନ ଥିଲା । ଜଗନ୍ନାଥଙ୍କ ଶ୍ୱେତଶଙ୍ଖ ବାରୁ (ଧଳାଘୋଡ଼ା) ହଠାତ୍ ମଞ୍ଜାରି (ମାର୍ଜାର) ରୂପ ଧାରଣ କରିବାରୁ ଗଣେଶଙ୍କ ମୂଷା ଦଉଡ଼ି ପଳାଇଲା । ଗଣେଶ ଜଗନ୍ନାଥଙ୍କ କୂଟ ଜାଣିପାରି କ୍ଷମା ମାଗିଲେ ଓ କାଞ୍ଚି ରାଜାଙ୍କଠାରୁ ଅଭୟ ପ୍ରତ୍ୟାହାର କରିନେଲେ । ଯୁଦ୍ଧରେ ପୁରୁଷୋତ୍ତମଦେବ ବିଜୟୀ ହେଲେ । ରାଜା ପ୍ରତ୍ୟାବର୍ତ୍ତନ କଲାବେଳେ କାମଦ ଗଣେଶଙ୍କୁ ସାଥୀରେ ଆଣିଥିଲେ । ଏହାଙ୍କୁ କେହି କେହି କାମଦ ଗଣେଶ, ଚୌର ଗଣେଶ, ଉଚ୍ଛିଷ୍ଟ ଗଣେଶ, କାଞ୍ଚିଗଣେଶ ବୋଲି କହିଥାଆନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୩୨, ପୂ.ଓ.ଭା.- ପୃ. ୬୦୩୫) ।

**ଭଉଁରୀ**-ଦେ.ବି.- ଶ୍ରୀଜଗନ୍ନାଥଙ୍କ ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇଥିବା ଚନ୍ଦନଯାତ୍ରାର (ଜଳକ୍ରୀଡ଼ା) ପ୍ରଥମ ଏକୋଇଶି ଦିନ ବାହ୍ୟ ଚନ୍ଦନଯାତ୍ରା ଓ ଏହାର ଶେଷଦିନ ମହାପ୍ରଭୁଙ୍କୁ ଡଙ୍ଗାରେ ବସାଇ ଚନ୍ଦନ ଚକଡ଼ା ମଧ୍ୟରେ ଚକ୍ରାକାରରେ ପ୍ରତି କୋଣରେ ଓ ମଧ୍ୟଭାଗରେ ସାତଥର ଲେଖାଏ ଭଉଁରୀ କରାଯାଏ । ଏହାକୁ ଭଉଁରୀ ଯାତ୍ରା କହନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୧୭/୧୧୮, ଓ.ସାଂ.ଶ. - ପୃ. ୨୭୯, ପୂ.ଓ.ଭା. - ପୃ. ୬୦୦୬) ।

**ଭକତ ଜନବନ୍ଧୁ**-ଦେ.ବି.- ଭକ୍ତ ଜନମାନଙ୍କର ବନ୍ଧୁ । ଭଗବାନ, ବିଷ୍ଣୁ, ସ୍ୱୟଂ ମହାପ୍ରଭୁ ଶ୍ରୀଜଗନ୍ନାଥ ।
(ଓ.ସାଂ.ଶ. - ପୃ. ୨୭୯) ।

**ଭକତ ବତ୍ସଳ**-ଦେ.ବି.- ଭକ୍ତ ପ୍ରତି ଅନୁରକ୍ତି । ଭଗବାନ, ଈଶ୍ୱର, ଶ୍ରୀଜଗନ୍ନାଥ ।
(ଓ.ସାଂ.ଶ. - ପୃ. ୨୭୯) ।

**ଭକ୍ତି**-ବି.- ଈଶ୍ୱରଙ୍କୁ ଐକାନ୍ତିକ ଭଲପାଇବାର ନାମ ଭକ୍ତି । ନବଧା ଭକ୍ତିମାର୍ଗ ସମ୍ପର୍କରେ ବୈଷ୍ଣବ ଧର୍ମଗ୍ରନ୍ଥ ଓ ହିନ୍ଦୁ ଧର୍ମଶାସ୍ତ୍ରରେ ବହୁ ବର୍ଣ୍ଣନା ଅଛି । ଏହି ନଅଟି ମାର୍ଗ ହେଲା ନାମ ଭଜନ, କୀର୍ତ୍ତନ, ସ୍ମରଣ, ପାଦସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମନିବେଦନ । ଏହି ଭକ୍ତି ପୁଣି ଦୁଇପ୍ରକାର । ଯଥା- ଶ୍ରଦ୍ଧା ଭକ୍ତି ବା ରାଗାନୁଗା ଓ ଜ୍ଞାନମିଶ୍ରା ଭକ୍ତି । ସବୁ କର୍ମକୁ ଭଗବାନଙ୍କଠାରେ ଅର୍ପଣ କରି ସମଗ୍ର ବିଶ୍ୱକୁ

ତାଙ୍କରି ଶରୀର ଜ୍ଞାନ କରିବା ହେଉଛି ଶୁଦ୍ଧା ଭକ୍ତି ବା ରାଗାନୁଗା । ଅଚ୍ୟୁତାନନ୍ଦ ଆଦି ପଞ୍ଚସଖା ଜ୍ଞାନମିଶା ଭକ୍ତିମାର୍ଗର ଅନୁଗାମୀ । ସେମାନେ ଯନ୍ତ୍ର, ତନ୍ତ୍ର, ମନ୍ତ୍ର, ଛାୟା, ଜ୍ୟୋତି, ଅବାଡ଼, ହଜ, ସମାଧି ଓ ରସଗୁଣ ଆଦିକୁ ସାଧକର ସିଦ୍ଧିର ସୋପାନ ବୋଲି ମନେକରନ୍ତି । ଶ୍ରୀଜଗନ୍ନାଥଙ୍କୁ ଉଭୟ ଭକ୍ତିମାର୍ଗର ଭକ୍ତମାନେ ପୂଜା ଉପାସନା କରିଥାଆନ୍ତି । (ପୂ.ଓ.ଭା. - ପୃ. ୬୦୧୦, ଓ.ସାଂ.ଶ. - ପୃ. ୨୭୯) ।

**ଭଗବତୀ**-*ଦେ.ବି.*- ବିଷ୍ଣୁଙ୍କର ମାୟାଶକ୍ତି, ଦୁର୍ଗାମାତା ।

**ଭଗବାନ**-*ସଂ.ବି.*- ବିଷ୍ଣୁ, ଈଶ୍ୱର, ପରମେଶ୍ୱର, ଐଶ୍ୱର୍ଯ୍ୟ, ବୀର୍ଯ୍ୟ (ମଣିବନ୍ତ ମହୋଷଧିର ନ୍ୟାୟ ଅଲୌକିକ ପ୍ରଭାବ), ଯଶଃ (ଶରୀରାଦିର ସଦ୍‌ଗୁଣାଦି ଖ୍ୟାତି), ଶ୍ରୀ (ସର୍ବପ୍ରକାର ସମ୍ପତ୍ତି) ଜ୍ଞାନ (ଗୁରୁତତ୍ତ୍ୱ ଅନୁଭୂତି) ଓ ବୈରାଗ୍ୟ (ପ୍ରପଞ୍ଚ ବସ୍ତୁରେ ଅନାସକ୍ତ) ପୂର୍ଣ୍ଣଭାବେ ଏଇ ଛଅଟି ଯାହାଠାରେ ବିଦ୍ୟମାନ ସେ ଭଗବାନ । (ଓ.ସାଂ.ଶ. - ପୃ. ୨୮୦) ।

**ଭଜନ ଗୃହ**-*ଦେ.ବି.*- ଉପାସନା ମନ୍ଦିର । ଯେଉଁ ମନ୍ଦିରରେ ଦେବତାଙ୍କୁ ଆରାଧନା କରାଯାଏ । ପ୍ରତି ମନ୍ଦିରରେ ଏହା ସଂଲଗ୍ନ । ଶ୍ରୀମନ୍ଦିର ଦକ୍ଷିଣପଟେ ମୁକ୍ତିମଣ୍ଡପ ସମ୍ମୁଖରେ ଥିବା ଗୃହ ଯେଉଁଠାରେ ଭକ୍ତମାନେ ଭଜନ ଓ ଗାନ କରନ୍ତି । (ପୂ.ଓ.ଭା. - ପୃ. ୬୦୨୩) ।

**ଭଜନି ନିଯୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ମଙ୍ଗଳ ଆଳତି ପୂର୍ବରୁ ଝାଞ୍ଜ, ଗିନି ଆଦି ବଜାଇ ଜଗମୋହନରେ ଭଜନ କରୁଥିବା ସେବକ ଗୋଷ୍ଠୀ । ଧୂପ ସମୟରେ କଂଟା ଝାଞ୍ଜ ଧରି ସକଳ ପାର୍ଶ୍ୱଦେବତାଙ୍କୁ ଜାଗ୍ରତ କରାଇବା ନୀତି । ଗରୁଡ଼ଖମ୍ବ ନିକଟରେ ଭଜନ ବୋଲନ୍ତି । ପରମେଶ୍ୱର ବିଜେ କାଳେ ପହଡ଼ ଫିଟିଲେ ଝାଞ୍ଜ ବଜାନ୍ତି । ଚଉଷଠି ବୈଷ୍ଣବ ଖଣେ । ଦୁଇଭାଗ ଗାଉଣି, ବଜନ୍ତି ଗାଉଣି, ପରମେଶ୍ୱରଙ୍କ ଧୂପକାଳେ, ସଞ୍ଜଧୂପକାଳେ, ବଡ଼ସିଂହାର ବେଳେ, ଗୀତଗୋବିନ୍ଦ ଜୟବିଜୟ ଦ୍ୱାରେ ବୋଲନ୍ତି । (ଶ୍ରୀ.ଜି.- ପୃ. ୧୩୯)

**ଭଙ୍ଗା ଦେଉଳ**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ା ଏକ ଭଗ୍ନମନ୍ଦିର ଅଛି । ପୂର୍ବେ ବଟକୃଷ୍ଣ ଠାକୁର ଅବସ୍ଥାନ କରୁଥିଲେ । ବର୍ତ୍ତମାନ ଅତ୍ୟନ୍ତ ଜୀର୍ଣ୍ଣ ଅବସ୍ଥାରେ ଥିବାରୁ ଏହାକୁ ଭଙ୍ଗାଦେଉଳ କୁହାଯାଉଅଛି । (ଶ୍ରୀ.ସ୍ୱ. ୨ୟ - ପୃ. ୨୪୪) ।

**ଭାଙ୍ଗୁଣିଆ ମାରିବା**-*ଦେ.ବି.*- ଜଣେ ଯାତ୍ରୀ ଗୁମାସ୍ତା ବା ପଣ୍ଡାଙ୍କ ଯାତ୍ରୀଙ୍କୁ ଅନ୍ୟ ଜଣେ ଗୁମାସ୍ତା ପଣ୍ଡା ଛଡ଼ାଇ ନେବା । (ଶ୍ରୀ.ଶ. - ପୃ. ୧୩୨) ।

**ଭଣ୍ଡାର କରଣ**-*ଦେ.ବି.*- ଯେଉଁ ସେବକ ଅନୁମତି ପାଇଥିବା ସନ୍ଥ, ମହନ୍ତ, ସାଧୁ ଇତ୍ୟାଦିଙ୍କୁ ଠାକୁରଙ୍କ ଚାମର ସେବା ଓ ଆଲଟ ସେବା ପାଇଁ ଭଣ୍ଡାରରୁ ଆଲଟ ଓ ଚାମର ଯୋଗାଇ ଦିଅନ୍ତି । (ଶ୍ରୀ.ସ୍ୱ. - ପୃ. ୧୦୨) ।

**ଭଣ୍ଡାର ଘର**-*ଦେ.ବି.*- ବାହାର ଭଣ୍ଡାର ଘର । ଶ୍ରୀଜଗନ୍ନାଥଙ୍କ ଭଣ୍ଡାରରେ ଶ୍ରୀଜୀଉଙ୍କର ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁ, ଘୋଡ଼ବସ୍ତ୍ର, ଅଳଙ୍କାର ଇତ୍ୟାଦି ରହେ । ଭଣ୍ଡାର ଘରର ଚାବି ଭଣ୍ଡାର ମେକାପଙ୍କ ପାଖରେ ରହେ । (ଶ୍ରୀ.ସ୍ୱ. - ପୃ. ୨୧୧) ।

**ଭଣ୍ଡାର ଠାକୁର**-*ଦେ.ବି.*- ଶ୍ରୀମନ୍ଦିର ଶ୍ରୀଜୀଉଙ୍କ ବଲ୍ଲଭ ପୂଜା ସରିଲେ ପାଳିଆ ପୂଜା ପଣ୍ଡା ଏହି ଠାକୁରଙ୍କୁ ଭୋଗ କରନ୍ତି ଓ ବେଶ ମଧ କରାନ୍ତି । ଏଠାରେ କେବଳ କୋରା ଭୋଗ ହୁଏ । ଭୋଗ କେବଳ ଭଣ୍ଡାର ମେକାପ ନିଅନ୍ତି । (ଶ୍ରୀ.ସ୍ୱ. - ପୃ. ୨୧୧) ।

**ଭଣ୍ଡାର ନାୟକ**-*ଦେ.ବି.*- ପାଟଯୋଷୀ ମହାପାତ୍ର ହେଉଛନ୍ତି ଭଣ୍ଡାର ନାୟକ । (ଶ୍ରୀ.ସ୍ୱ. ୧ମ - ପୃ. ୪) ।

**ଭଣ୍ଡାରମେକାପସେବା**-*ଦେ.ବି.*- ବିଗ୍ରହମାନଙ୍କଠାରେ ଦୈନିକ ଲାଗି

ସୁନାଜିନିଷ, ସୁନାର ଶୟନଠାକୁର ତିନିମୂର୍ତ୍ତି ସୁନାର ପୁଷ୍ପାଞ୍ଜଳି ଠାକୁର, ରୂପାର ଲୋକନାଥ ଓ ଦୁର୍ଗାମୂର୍ତ୍ତି ଏହାଙ୍କ ପାଖରେ ରହେ । ଘୋଡ, ଜାମା, ଖଣ୍ଡୁଆ, ଟୋପର, ଝଲକ ଚିତା, ରାହୁରେଖା ଆଦି ଲାଗି ନ ହୋଇଥିବା ଝୋଡ଼ା, ରୂପା ପିଙ୍ଗଣ, ଝରି, ଜୟମଙ୍ଗଳ, ସୁନା କର୍ପୂର ଆଳତି, ସୁନାପଦକ ଉପଚାର ତିନିମୂର୍ତ୍ତି, ସୁନା ଚାମର, ସୁନା ଆଲଟ, ସୁନା ଖଡ଼ିକା, ସୁନାବେତ ଆଦି ଏହାଙ୍କ ପାଖରେ ମଧ୍ୟରୁହେ । ଭଣ୍ଡାର ଘରେ ବିଜେ ହୋଇଥାନ୍ତି ସୁନା ଲକ୍ଷ୍ମୀ ମୂର୍ତ୍ତି, ରୂପା ସରସ୍ୱତୀ, ଏମାନଙ୍କ ଜିମାରେ ରହେ । ଅଣସର ତ୍ରୟୋଦଶୀରୁ ନୀଳାଦ୍ରି ବିଜେ ଯାଏ ରୂପାର ରସିକ, ଶୁଆଥଣ୍ଡିଆ, ତମ୍ବା ନାରାଚ ଏହାଙ୍କ ମାର୍ଫତରେ ରହେ । ଛେରାପହଁରା ସମୟରେ ଫୁଲ ଛିଞ୍ଚନ୍ତି ଓ ଚନ୍ଦନ ଦିଅନ୍ତି । ଶାଢ଼ୀ ବନ୍ଧାରେ ମଧ୍ୟ ଚନ୍ଦନ ଛାପ ଦିଅନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୦୭,୧୧୨) ।

**ଭଦ୍ରକାଳୀ**-*ସଂ.ବି.*- ଦୁର୍ଗାଙ୍କ ମୂର୍ତ୍ତି ବିଶେଷ । ଏ ଦେବୀ କ୍ରୋଧରୁ ସଂଭୂତ ହୋଇ ବୀରଭଦ୍ର ସହିତ ଦକ୍ଷଯଜ୍ଞ ନଷ୍ଟ କରିଥିଲେ । ଏହାଙ୍କର ୧୬ଟି ହାତ ଥିବା କଳ୍ପିତ ଓ କାର୍ତ୍ତିକେୟଙ୍କର ଛ' ମା'ଙ୍କ ମଧ୍ୟରୁ ଏକ ମା' । ବିମଳାଙ୍କ ମନ୍ଦିର ଜଗମୋହନ ଭିତରେ ଭଦ୍ରକାଳୀଙ୍କ ଚିତ୍ର ରହିଛି ।
(ପୂ.ଓ.ଭା. - ପୃ. ୬୦୪୦) ।

**ଭାଗବତ**-*ସଂ.ବି.*- ଯେଉଁ ଗ୍ରନ୍ଥରେ ଭଗବାନଙ୍କର ଗୁଣଧର୍ମ, କର୍ମ, ଲୀଳା ପ୍ରଭୃତି ବର୍ଣ୍ଣିତ ହୋଇଥାଏ । ଅଷ୍ଟାଦଶ ପୁରାଣ ଅନ୍ତର୍ଗତ ଏକ ମହାପୁରାଣ । ବେଦବ୍ୟାସକୃତ ବେଦାନ୍ତ ସାର, ଶୁକ ଦେବଙ୍କର ମୁଖରେ ବର୍ଣ୍ଣିତ ଗ୍ରନ୍ଥ । ଶ୍ରୀଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରିଛନ୍ତି ଓ ସେ ଏହାକୁ ନିତ୍ୟ ଶ୍ରୀମନ୍ଦିର ବେଢ଼ାରେ କଳ୍ପବଟ ପାଖରେ ପାଠ କରୁଥିଲେ ।
(ଓ.ସାଂ.ଶ. - ପୃ. ୨୮୧) ।

**ଭାଗାରି**-*ଦେ.ବି.*- ଶ୍ରୀମନ୍ଦିର ସେବକ ଗୋଷ୍ଠୀର ଭାଇଆଳି ।
(ପୁ.ବୋ. - ପୃ. ୨୬୮) ।

**ଭାବ**-*ଦେ.ବି.*- କାବ୍ୟରେ ରସରୁ ଉତ୍ପନ୍ନ ମାନସିକ ଅବସ୍ଥା । ସାହିତ୍ୟରେ ଭାବ ତିନି ପ୍ରକାର । ଯଥା- ସ୍ଥାୟୀ ଭାବ, ବ୍ୟଭିଚାରୀ ଭାବ ଓ ସଞ୍ଚାରୀ ଭାବ । ଅନୁରାଗର ଚରମ ପରିଣତିକୁ ଭାବ କୁହାଯାଏ । ଯେଉଁ ଦୁଃଖ ନିକଟରେ ପ୍ରାଣ ବିସର୍ଜନ, ଦୁଃଖକୁ ତୁଚ୍ଛ ମନେକରାଯାଏ ତାହା ହିଁ ଭାବ । କୃଷ୍ଣ ପ୍ରାପ୍ତି ନିମିତ୍ତ ଦୁଃଖକୁ ଭାବୋଦୟ ପରମସୁଖ ମନେକରାଯାଏ । ଭକ୍ତ ହୃଦୟରେ ଭାବ ରହିଲେ ହିଁ ଶ୍ରୀଜଗନ୍ନାଥ ପ୍ରାପ୍ତ ହୋଇଥାଏ ।
(ଓ.ସାଂ.ଶ. - ପୃ. ୨୮୨) ।

**ଭାବଗ୍ରାହୀ**-*ଦେ.ବି.*- ଯେ ଭାବ ଗ୍ରହଣ କରନ୍ତି । ଯେ ଅନ୍ୟର ମନୋଭାବ ବୁଝିପାରନ୍ତି । ଭଗବାନ । ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ଭାବଗ୍ରାହୀ ଭାବେ ଭକ୍ତି ଅର୍ଘ୍ୟ ପ୍ରଦାନ କରାଯାଏ ।
(ଓ.ସାଂ.ଶ. - ପୃ. ୨୮୨) ।

**ଭାବସମୁଦ୍ର**-*ଦେ.ବି.*- ସାଗର ପରି ଭାବରାଜ୍ୟରେ ବୁଡ଼ି ରହିବା, ନିଜର ଭାବନାକୁ ସେହି ପରମ ପୁରୁଷଙ୍କ ପାଦପଦ୍ମରେ ସମର୍ପଣ କରିଦେବା ବା ଲୀନ କରିଦେବା ।
(ଓ.ସାଂ.ଶ. - ପୃ. ୨୮୨) ।

**ଭାଟ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ସ୍ତୁତିକାରୀ ସେବକ । ଏମାନେ ବର୍ତ୍ତମାନ ନାହାନ୍ତି ।
(ପୁ.ବୋ. - ପୃ. ୨୬୮) ।

**ଭିଆଇବା**-*ଦେ.କ୍ରି.*- ସୃଷ୍ଟି କରିବା, ବ୍ୟବସ୍ଥା କରିବା, ବିଧାନ କରିବା ।
(ପୁ.ବୋ. - ପୃ. ୨୬୮) ।

**ଭିତର ଅଗଣା**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାରେ ଥିବା ଚତୁଃପାର୍ଶ୍ୱ ଖୋଲାସ୍ଥାନ । ଅତୀତରେ ମନ୍ଦିର କାର୍ଯ୍ୟାଳୟରେ ନିର୍ଦ୍ଧାରିତ ଫିସ୍ ଦେଇ ଯାତ୍ରୀମାନେ ନାମ ଖୋଦିତ କରିଥିବା ପଥରମାନ ଚଟାଣରେ ସ୍ଥାପନ କରୁଥିଲେ । ବର୍ତ୍ତମାନ ଏହା ବନ୍ଦ ଅଛି ।
(କ୍ଷେ.ସ.) ।

**ଭିତରକାଠ**-*ଦେ.ବି.*- ଶ୍ରୀମନ୍ଦିର କଳାହାଟ ଦ୍ୱାର ବା ଛାମୁଦ୍ୱାର ନିକଟରେ ଆଡବାଗରେ

ଦିଆଯାଇଥିବା କାଠଗଡ଼ା । ଏହା କଳାହାଟ ଦ୍ୱାର ପୂର୍ବ ଅର୍ଗଳ ବା ଚନ୍ଦନ ଅର୍ଗଳୀ ।
(ଶ୍ରୀ.ସ୍ୱ. - ପୃ. ୨୪) ।

**ଭିତରକାଠ ଅର୍ଗଳି**-*ଦେ.ବି.*- ଶ୍ରୀମନ୍ଦିର ଭିତର କାଠ ପାଖରେ ଭିତର ପୋଖରୀଆକୁ ପଡ଼ିଥିବା ଅର୍ଗଳୀ ବା ସଂକୀର୍ଣ୍ଣ ରାସ୍ତା ।
(ଶ୍ରୀ.ସ୍ୱ. - ପୃ. ୧୨) ।

**ଭିତର କୁଆଁର**-*ଦେ.ବି.*- କୁମାର ପୂର୍ଣ୍ଣିମା ଦିନ ଠାକୁରଙ୍କ ରତ୍ନସିଂହାସନ ତଳେ ଲକ୍ଷ୍ମୀ ଓ ମଦନମୋହନଙ୍କ ତରଫରୁ କରାଯାଇଥିବା ପ୍ରତୀକାତ୍ମକ କଉଡ଼ି, ପଶା, ଶକଟା ଆଦି ଖେଳ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦) ।

**ଭିତର ଗରାବଡୁ**-*ଦେ.ବି.*- ଶ୍ରୀମନ୍ଦିରର ଭିତର ପୋଖରୀଆରେ ଶ୍ରୀଜଗନ୍ନାଥଙ୍କ ପୂଜା ଆବଶ୍ୟକମତେ ପାଣି ଯୋଗାଉଥିବା ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧-୨୨) ।

**ଭିତର ଗାଆଣୀ ଦେବଦାସୀ**- ଶ୍ରୀମନ୍ଦିର ପରମ୍ପରାରେ ଏହି ସେବିକା ସକାଳ ଧୂପ ପଟୁଆର ବେଳେ ଜଗମୋହନଠାରେ ନୃତ୍ୟ କରିଥାନ୍ତି । ବଡ଼ସିଂହାର ଭୋଗ ପରେ ଶୟନ ଠାକୁର ଭିତରକୁ ବିଜେ କଲେ କଳାହାଟ ଦ୍ୱାର ଲଣ୍ଡାବର୍ତ୍ତଠାରେ ଠିଆହୋଇ ଗୀତଗୋବିନ୍ଦ ଗାଇବେ । ଶୟନ ଠାକୁର ବିଜେ ହୋଇ ଆସିବା ପରେ ଗୀତ ଗାନ କରନ୍ତି । କାର୍ତ୍ତିକ ମାସରେ ବାଲ୍ୟଧୂପ ବେଳେ, ଚନ୍ଦନ ଲାଗି ୪୨ ଦିନ ଆଳଟ ଲାଗିରେ ଏମାନେ ଭିତରକୁ ଯାଇ ଅଣସର ପିଣ୍ଡିରେ ଠିଆହୋଇ ଗୀତ ବୋଲିବେ । ବଇଆଳିଶ ଦିନ ଚନ୍ଦନଲାଗି ସମୟରେ ଜଗମୋହନରେ, ଏକୋଇଶି ଦିନ ଚାପରେ, ମଦନମୋହନଙ୍କ ଚାପରେ, ରୁକ୍ମିଣୀ ବିବାହରେ ଲକ୍ଷ୍ମୀଙ୍କ ମନ୍ଦିରରେ ମଙ୍ଗଳଗାନ କରନ୍ତି । ପୁଷ୍ୟାଭିଷେକ ଦିନ ମୁଦିରସ୍ତ ସହ ତାଙ୍କ ଘରଠାକୁ ଯାଇ ବନ୍ଦାପନା କରନ୍ତି । ଫଗୁଣ ମାସରେ ଫଗୁ ଦଶମୀଠାରୁ ଭୋଗବେଳେ ବେଦୀରେ ସେବା କରନ୍ତି । ଚତୁର୍ଦ୍ଦଶୀ ଦିନ ଲକ୍ଷ୍ମୀଙ୍କ ଜଗମୋହନଠାରେ ମୁଦିରସ୍ତଙ୍କ ସହିତ ଫଗୁଖେଳ କରନ୍ତି । ନବପତ୍ରିକାରେ ଶ୍ରୀନଅରରେ ଦୁର୍ଗାଙ୍କ ସେବା କରନ୍ତି । ସ୍ନାନବେଦୀଠାରେ ନୃତ୍ୟ କରନ୍ତି । ନବକଳେବରରେ ଦାରୁ ସହ ହୁଳହୁଳି ଦେଇ ଆସନ୍ତି । ବର୍ତ୍ତମାନ ଶ୍ରୀମନ୍ଦିରରେ ଏହି ସେବା ବନ୍ଦ ଅଛି ।
(ଶ୍ରୀ.ସ୍ୱ. - ପୃ. ୪୨-୪୪) ।

**ଭିତର ଚନ୍ଦନ**-*ଦେ.ବି.*- ବୈଶାଖ ଶୁକ୍ଳ ତୃତୀୟାରେ ଶ୍ରୀଠାକୁରଙ୍କର ଚନ୍ଦନ ଯାତ୍ରା ଆରମ୍ଭ ହୁଏ । ଏହି ଯାତ୍ରା ଓ ଆଳଟ ଲାଗି ବଇଆଳିଶ ଦିନ ହୁଏ । ବାହାର ଚନ୍ଦନ ଏକୋଇଶି ଦିନ ଓ ଭିତର ଚନ୍ଦନ ଏକୋଇଶି ଦିନ । ଶ୍ରୀଜୀଉଙ୍କ ଠାରେ ଜ୍ୟେଷ୍ଠ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ପ୍ରତିଦିନ ଯାଏ ଦୁଇଥର ଆଳଟ ଲାଗି ହୁଏ । ଭିତର ଚନ୍ଦନ ସମୟରେ ଦ୍ୱିପ୍ରହର ଧୂପ ଓ ଯାତ ଭୋଗ ଏକାଠି ହୁଏ । ଏହି ଭିତର ଚନ୍ଦନ ୨୧ ଦିନରେ ଜ୍ୟେଷ୍ଠ କୃଷ୍ଣ ଏକାଦଶୀ, ସାବିତ୍ରୀ ଅମାବାସ୍ୟା, ଶୀତଳ ଷଷ୍ଠୀ ଓ ରୁକ୍ମିଣୀ ହରଣ, ଏକାଦଶୀ ଏ ଚାରିଦିନ ଜଳକ୍ରୀଡ଼ା ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୮-୧୨୧) ।

**ଭିତର ପୂଜା**-*ଦେ.ବି.*- ଶରତକାଳୀନ ନବରାତ୍ର ପୂଜାର ପ୍ରଥମ ଛ'ଦିନ ଅର୍ଥାତ୍ ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ଷଷ୍ଠୀ ଯାଏ ପ୍ରତିମାଙ୍କୁ ମନ୍ଦିର ମଧ୍ୟରେ ପୂଜା କରାଯାଉଥିବା ହେତୁ ଏହାକୁ ଭିତର ପୂଜା କୁହାଯାଏ । ୭ମୀରୁ ୯ମୀ ଯାଏ ପୂଜାକୁ ବାହାର ପୂଜା କୁହାଯାଏ ।
(ପୂ.ଓ.ଭା. - ପୃ. ୬୦୯୯, ଶ୍ରୀ.ସ୍ୱ. - ପୃ. ୯୮) ।

**ଭିତର ପୋଖରିଆ**-*ଦେ.ବି.*- ରତ୍ନବେଦୀର ଚତୁଃପାର୍ଶ୍ୱସ୍ଥାନ ଭିତର ପୋଖରିଆ ନାମରେ ଅଭିହିତ । ରତ୍ନବେଦୀରେ ବିଜେ ହୋଇଥିବା ବିଗ୍ରହମାନଙ୍କର ଅବକାଶ, ପୂଜା, ଧୂପ, ଆଳତି, ଶୟନ ସମୟ ନୀତିକାନ୍ତି ଏହି ସ୍ଥାନରେ ହୁଏ । ପ୍ରତ୍ୟହ ଧୂପ ସମୟରେ (ସ୍ନାନପୂର୍ଣ୍ଣିମା ନୀତି ଆରମ୍ଭଠାରୁ ବିଗ୍ରହ ପୁନର୍ବାର ରତ୍ନସିଂହାସନରେ ବିଜେ ହେବା ପର୍ଯ୍ୟନ୍ତ ଦିନମାନଙ୍କ ଛଡ଼ା) ଏହି ସ୍ଥାନରେ ମୁରୁଜ ପଡ଼ି ବିଗ୍ରହମାନଙ୍କର ଭୋଗ ବଢ଼ାହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦୨) ।

**ଭିତର ଦକ୍ଷିଣଦ୍ୱାର**-*ଦେ.ବି.*- ଭିତର ବେଢ଼ାରେ ଶ୍ରୀମନ୍ଦିର ଦକ୍ଷିଣ ପାର୍ଶ୍ୱକୁ ଥିବା ଦ୍ୱାର ।

**ଭିତର ବନକ ସେବକ**-*ଦେ.ବି.*- ଦତ୍ତ ମହାପାତ୍ର ହିଁ ଭିତର ବନକ ସେବକଙ୍କର କାର୍ଯ୍ୟ କରିଥାନ୍ତି । ଏମାନେ ଶ୍ରୀଠାକୁରଙ୍କ ଚିତ୍ର ସେବା କରିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୯୦) ।

**ଭିତରବେଢ଼ା**-*ଦେ.ବି.*- ଶ୍ରୀମନ୍ଦିର ପରିସରସ୍ଥ ପ୍ଲଟ ନମ୍ବର ୪୦-୧୩୪ ମଧ୍ୟରେ ଥିବା ସ୍ଥାନ, ମନ୍ଦିର ଓ ସବୁକିଛି ଭିତର ବେଢ଼ା (କୂର୍ମବେଢ଼ା)ର ଅନ୍ତର୍ଭୁକ୍ତ । କୂର୍ମ ବେଢ଼ାର ଭିତର ଅଂଶକୁ ଭିତର ବେଢ଼ା କୁହାଯାଏ । ଶ୍ରୀମନ୍ଦିରର ଏହି ଅଞ୍ଚଳରେ ବହୁ ଦେବଦେବୀ ମନ୍ଦିର, ମୁକ୍ତିମଣ୍ଡପ ବିଦ୍ୟମାନ । (ଶ୍ରୀ.ସ୍ୱ. ୨ୟ - ପୃ. ୨୧୭) ।

**ଭିତରଛମହାପାତ୍ର**-*ଦେ.ବି.*- ଶ୍ରୀଠାକୁରଙ୍କ ସର୍ବପ୍ରଥମ ନୀତି, ଦୁଆର ଫିଟା ସମୟରେ ଶ୍ରୀମନ୍ଦିର ଭିତର ବେଢ଼ାକୁ ପ୍ରଥମେ ପ୍ରବେଶ କରନ୍ତି ଓ ରତ୍ନସିଂହାସନ ସମ୍ମୁଖରେ ମଙ୍ଗଳ ଆଳତି କରନ୍ତି । ମଧ୍ୟାହ୍ନ ପହୁଡ଼ ପରେ ସନ୍ଧ୍ୟା ଆଳତି ନିମନ୍ତେ କଳାହାଟ ଦ୍ୱାର ଖୋଲିବା ପାଇଁ ମୁଦୁଲିଙ୍କୁ ନିର୍ଦ୍ଦେଶ ଦିଅନ୍ତି । ପ୍ରସାଦ ଲାଗି, ଚନ୍ଦନଲାଗି, କର୍ପୂର ଆଳତି, ବଳିତା ଆଳତି ଓ ଅକ୍ଷତ ଦ୍ୱାରା ବନ୍ଦାପନା କରନ୍ତି । ଏତଦ୍‌ବ୍ୟତୀତ ଶାଢ଼ୀବନ୍ଧା ନୀତି ଓ ଅମୁଣିହା ପରୀକ୍ଷା କରିବା ଏହି ସେବକଙ୍କ କାର୍ଯ୍ୟ । ପନ୍ତିବତ୍ତୁ, ଗନ୍ଧଣ ମେକାପ, ବିଡ଼ିଆ, ଯୋଗାଣିଆ, ଘଟୁଆରି ଆଦିଙ୍କ ସରଘର ନିରୀକ୍ଷଣ କରନ୍ତି । ଜଳଘଡ଼ି ଦେଖି କଳାହାଟ ଦୁଆର ଫିଟାନ୍ତି, ବେହରଣରେ ବସନ୍ତି ଓ ସକାଳ ବନ୍ଦାଣ କରନ୍ତି । ପୁଷ୍ୟାଭିଷେକରେ ମହାରଥୀ ଓ ଜନ୍ମାଷ୍ଟମୀ ଅନ୍ତେ ମହାଖୁଡ଼ ନନ୍ଦବେଶ ହୋଇ ସେବା କରନ୍ତି । ଜୟବିଜୟ ଦ୍ୱାର ଫିଟିଲେ ଭିତରକୁ ଯାଇ କଳାହାଟ ଦ୍ୱାର ମୁଦ ଖୋଲି ଠାକୁରଙ୍କ ଶ୍ରୀଅଙ୍ଗରୁ ଖସି ପଡ଼ିଥିବା ବସ୍ତ୍ରମାନ ସଜାଡ଼ନ୍ତି । ମଙ୍ଗଳ ଆଳତିରେ ମହାପ୍ରଭୁଙ୍କ ବାଡ଼ରେ ଆଳତି କରନ୍ତି, ପ୍ରତ୍ୟହ ପହୁଡ଼ରେ ଲକ୍ଷ୍ମୀଙ୍କ ପାଇଁ ଦୁବ ଦେବା ଆଦି କାର୍ଯ୍ୟ କରନ୍ତି । ଗୁରୁବାର ମାଜଣାରେ ବନ୍ଦାପନା, ପ୍ରସାଦଲାଗି, ଲକ୍ଷ୍ମୀନାରାୟଣ ଏକାଦଶୀ ଓ ପୌଷପୂର୍ଣ୍ଣିମା ଦିନ ଦଣ୍ଡଛତ୍ର ଧରନ୍ତି । ଏକାଦଶୀରେ ଜୟବିଜୟ ଦ୍ୱାରରେ ମଦନମୋହନଙ୍କୁ ବନ୍ଦାପନା, ଦୟଣାଚୋରି ଦିନ ଜଗନ୍ନାଥ ବଲ୍ଲଭ ମଠାଧିକାରୀ ଓ ସ୍ନାନପୂର୍ଣ୍ଣିମୀ ଦିନ ସ୍ନାନବେଦୀରେ ରାଘବଦାସ ମଠାଧିକାରୀଙ୍କୁ ଶାଢ଼ୀ ବାନ୍ଧନ୍ତି, ରାଜଗୁରୁ, ସନ୍ଥ, ମହନ୍ତ, ରାଜା ମହାରାଜା, ତଡ଼ାଉ ଓ ଦେଉଳକରଣଙ୍କୁ ମହାନାୟକ ଶାଢ଼ୀ ବନ୍ଧାଇବା ଆଦି କାର୍ଯ୍ୟ କରନ୍ତି । ମୁଦୁଲି ମହାଜନ ଭାବରେ ନନ୍ଦୋତ୍ସବରେ ଦୁଧ ମେଲାଣ, ସମର୍ପଣ, ନନ୍ଦସାଜନ୍ତି, ବେଣ୍ଟରେ ଜଗନ୍ନାଥ ବଲ୍ଲଭଠାରେ ତୀର ଛୁଇଁ ଲେଙ୍କାଙ୍କୁ ଦିଅନ୍ତି ଓ ବନ୍ଦାପନା କରାନ୍ତି । ଦୋଳପୂର୍ଣ୍ଣମୀ ଦିନ ବାହୁଡ଼ା ବିଜେରେ ଦକ୍ଷିଣମୂର୍ତ୍ତି ବନ୍ଦାପନା, ବାହୁଡ଼ା ଓ ସରସ୍ୱତୀ ବନ୍ଦାପନା, ପଣା ସଂକ୍ରାନ୍ତିରେ ମହାବୀର, ଅଶୋକାଷ୍ଟମୀରେ ଚନ୍ଦ୍ରଶେଖର, ଈଶାନେଶ୍ୱରଙ୍କ ବନ୍ଦାପନା, ହଳଦୀ ପାଣିରେ, ଚାପରେ ଭଉଁରୀ ଦିନ ଜଗତୀ ଉପରେ ଓ ବାହୁଡ଼ା ବେଳେ ଜୟବିଜୟ ଦ୍ୱାରେ ଆଳତି ଓ ବନ୍ଦାପନା ଶୀତଳ ଷଷ୍ଠୀ ଦିନ ବନ୍ଦାପନା, ରୁକ୍ମିଣୀ ବିବାହ ଦିନ ଚିଟାଉ ମୁଦଲାଗି, ବିମଳା ମନ୍ଦିରରେ ଲକ୍ଷ୍ମୀଙ୍କ ବନ୍ଦାପନା, ଲକ୍ଷ୍ମୀଙ୍କୁ ବିମଳା ମନ୍ଦିରରୁ ଉଠାଇ ଆଣି ମଦନମୋହନଙ୍କର ରଥରେ ଗୁନ୍ଧିବା, ରୁକ୍ମିଣୀ ବିବାହରେ କନ୍ୟା କର୍ତ୍ତା ହେବା, ଚମ୍ପକ ଦ୍ୱାଦଶୀ ଦିନ ବରକନ୍ୟାଙ୍କୁ ଯମେଶ୍ୱରଙ୍କ ମନ୍ଦିରରେ ବନ୍ଦାପନା ଓ ପ୍ରସାଦ ଲାଗି, ହେରାପଞ୍ଚମୀ ଦିନ ନାକଚଣା ଦ୍ୱାରରେ ଲକ୍ଷ୍ମୀଙ୍କୁ ଦହିପଟୋଇ ଭୋଗ ଓ ବନ୍ଦାପନା, ଲକ୍ଷ୍ମୀ ନାରାୟଣ ଭେଟ ସମୟରେ ଦହି ପଟୋଇ ଭୋଗ ମଣୋହି, ନୀଳାଦ୍ରି ବିଜେ ଦିନ ଭେଟ ମଣ୍ଡପରେ ବନ୍ଦାପନା, ଗରୁଡ଼ଙ୍କ ବନ୍ଦାପନା, ଜଗନ୍ନାଥଙ୍କ ରଥରୁ ସିଂହାସନ ବିଜେ କାଳେ ରୁକ୍ମିଣୀଙ୍କ ଗଇଁଠାଳ ଫିଟାରେ ଦହିପଟୋଇ, ଘଷା ବିଡ଼ିଆ ମଣୋହି ଓ ଭୋଗ କରିବା, ବେଣ୍ଟୁଲି ମହାଜନ (ମୁଦିରସ୍ତ) ସହ

ନନ୍ଦୋତ୍ସବରେ ପ୍ରସାଦ ଲାଗି ଓ ଆଳତି, କାଳୀୟଦଳନ ଏକାଦଶୀରେ ମହାଭୋଇ ଘରକୁ ଯିବାବେଳେ ବନ୍ଦାପନା, ଓଳି ମଣୋହି, ମଥୁରାହାଟ ଓ କଂସବଧରେ ଆଳତି ଓ ବନ୍ଦାପନା ଓ ସଂସ୍କାର ଇତ୍ୟାଦି ସମସ୍ତ କାର୍ଯ୍ୟ କରନ୍ତି । ଲବଣୀ ଖିଆଠାରେ ବନ୍ଦାପନା, ଋଷିପଞ୍ଚମୀ, ଅନନ୍ତବ୍ରତ ଓ ଲକ୍ଷ୍ମୀବ୍ରତରେ ବନ୍ଦାପନା, ଦମନକ ଯାତ୍ରା ଓ ଦୟଣାଚୋରୀରେ ପରମେଶ୍ୱରଙ୍କୁ ଦୟଣା ଅର୍ପଣ, ଶରତ ଗୁଣ୍ଡିଚାରେ ନାରାୟଣ ଓ ବିମଳାଙ୍କ ପାଖେ ବନ୍ଦାପନା, ଚମ୍ପକ ଦ୍ୱାଦଶୀ ଦିନ ଶ୍ରୀନଅରରେ ବନ୍ଦାପନା, ସମସ୍ତ ବିଜେରେ ଜଳଲାଗି ଓ ପାଣିଘେନା କରିବା, ଚାପକୁ ଲକ୍ଷ୍ମୀଙ୍କୁ ବିଜେ କରିବା, ଚନ୍ଦନବେଶ କରିବା, ଇନ୍ଦ୍ରଗୋବିନ୍ଦ ବନ୍ଦାପନା କରିବା, ଯଜମାନୀ ବେଶରେ ସର୍ବାଙ୍ଗ ଓ ଫୁଟା, ପହରଣା ଲାଗି କରିବା ଆଦି କାର୍ଯ୍ୟ କରନ୍ତି । ତଳିଛଙ୍କ ସମସ୍ତ କାର୍ଯ୍ୟ ଓ ପଶୁପାଳକଙ୍କ ସେବା ମଧ୍ୟ କରିପାରନ୍ତି । (ଶ୍ରୀ.ସ୍ୱ. ୧ମ - ପୃ. ୧୨-୧୯) ।

**ଭିତରଛ ରୋଷ**-*ଦେ.ବି.*- ଭିତରଛଙ୍କ ମାଲିକାନାରେ ଥିବା ରୋଷଘର । (ଶ୍ରୀ.ସ୍ୱ. ୨ୟ - ପୃ. ୨୬୧) ।

**ଭିତର ସେବାୟତ**-*ଦେ.ବି.*- ଶ୍ରୀମନ୍ଦିରର ରତ୍ନସିଂହାସନ ପର୍ଯ୍ୟନ୍ତ ଅଞ୍ଚଳରେ ରହି ଯେଉଁମାନେ ଠାକୁରଙ୍କ ସେବା ଖଟନ୍ତି । ଯଥା- ସଂହାରୀ, ମୁଦିରସ୍ତ, ପୂଜାପଣ୍ଡା, ପତି, ପଣ୍ଡା, ପଶୁପାଳକ, ଖୁଣ୍ଟିଆ, ମେକାପ, ଗରାବଡୁ, ଦତ୍ତମହାପାତ୍ର, ସୁଦୁସୁଆର ଓ ସୁଆରବଡୁ, ପତ୍ରିବଡୁ ସେବକ ଇତ୍ୟାଦି ।

**ଭୀମସେନୀ କର୍ପୂର**-*ଦେ.ବି.*- ବୋର୍ଣ୍ଣିଓ ଓ ସୁମାତ୍ରା ଦ୍ୱୀପଜାତ କର୍ପୂର । ଏହା ଅପକ୍ୱ ବା ଅସିଦ୍ଧ କର୍ପୂର । ଜାପାନ ଓ ଚୀନରେ ଏକପ୍ରକାର କାଠକୁ ସିଝାଇ କର୍ପୂର ବାହାର କରାଯାଏ । ଲୋକେ ଏହାକୁ କର୍ପୂର ବା ଭାସ୍କର କହନ୍ତି । କର୍ପୂରକୁ ବାଷ୍ପୀଭୂତ କରି ଶୋଧିତ କରାଯାଇ ପ୍ରସ୍ତୁତ କର୍ପୂରକୁ ଶ୍ରୀକର୍ପୂର ଓ କର୍ପୂର ରୂପେ କାଣ୍ଡରୁ ପ୍ରାପ୍ତ କର୍ପୂରକୁ ଭୀମସେନ କର୍ପୂର କୁହନ୍ତି । ଶ୍ରୀମନ୍ଦିରର ଦୈନନ୍ଦିନ କାର୍ଯ୍ୟରେ ଭୀମସେନ କର୍ପୂର ହିଁ ବ୍ୟବହୃତ ହୋଇଥାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧, ପୂ.ଓ.ଭା. - ପୃ. ୬୧୦୭) ।

**ଭୁଆସିକ**-*ଦେ.ବି.*- ସାହିଯାତ୍ରାକୁ ମଣ୍ଡନ କରୁଥିବା ନାଗା, ସଟରା, କେଳାକେଳୁଣୀ, ସନ୍ନ୍ୟାସୀ, ପାଲାବାଲା ପ୍ରଭୃତି ରାମ, ରାବଣ ପ୍ରଭୃତି । (ପୁ.ବୋ. - ପୃ. ୫୯) ।

**ଭୁତୁଙ୍ଗ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ମାତ୍ର ଚାରି ଦିନ ଅବସ୍ଥାନ କରୁଥିବା ଯାତ୍ରୀ । (କ୍ଷେ.ସ.) ।

**ଭୁବନ**-*ଦେ.ବି.*- ସପ୍ତ ପାତାଳ ଓ ସପ୍ତ ସ୍ୱର୍ଗ ସହ ସମଗ୍ର ବିଶ୍ୱ । ପୃଥିବୀ । ସପ୍ତ ସ୍ୱର୍ଗ - ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ ଓ ସତ୍ୟ । ସପ୍ତ ପାତାଳ- ଅତଳ, ବିତଳ, ସୁତଳ, ତଳ, ତଳାତଳ, ରସାତଳ ଓ ପାତାଳ । ଏହି ସମସ୍ତଙ୍କୁ ଚଉଦଭୁବନ ବୋଲି କଳ୍ପନା କରି ଶ୍ରୀଜଗନ୍ନାଥଙ୍କୁ ଏହାର ନାଥ ବା ପ୍ରଭୁ ବୋଲି ବର୍ଣ୍ଣନା କରାଯାଇଛି । (ଓ.ସାଂ.ଶ. - ପୃ. ୨୮୩) ।

**ଭୁବନେଶ୍ୱରୀ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଭୁବନେଶ୍ୱରୀ ମନ୍ଦିର । ମନ୍ଦିର ଭିତର ଗର୍ଭଗୃହ ମଧ୍ୟରେ ମା' ଭୁବନେଶ୍ୱରୀ ଓ ବାହାର ବଖରାରେ ସରସ୍ୱତୀ, ଷଷ୍ଠୀ, ସାବିତ୍ରୀ ଓ ଗାୟତ୍ରୀ ଦେବୀ ବିରାଜମାନ କରିଛନ୍ତି । ହ୍ରୀଁ ଭୁବନେଶ୍ୱରୀଙ୍କର ଏକାକ୍ଷରୀ ମନ୍ତ୍ର । ସିଦ୍ଧିକାରୀମାନେ ଏହି ବୀଜମନ୍ତ୍ରରେ ସାଧନା କରିଥାନ୍ତି । କ୍ଷେତ୍ରର ଅଧୀଶ୍ୱରୀ ବିମଳା ଏବଂ ସୁଭଦ୍ରା ମଧ୍ୟ ଭୁବନେଶ୍ୱରୀ ମନ୍ତ୍ରରେ ପୂଜିତା ହୁଅନ୍ତି । ଦେବୀ ଭୁବନେଶ୍ୱରୀ ଉଦୀୟମାନ ସୂର୍ଯ୍ୟ ପରି ପ୍ରଭାମୟୀ । ମସ୍ତକରେ ଚନ୍ଦ୍ରମା ଶୋଭିତା । ଦେବୀ ଉନ୍ନତ ସ୍ତନୀ, ତ୍ରୀ ନୟନା, ସ୍ମିତ ହାସ୍ୟମୁଖୀ, ଚତୁର୍ଭୁଜା । (ଶ୍ରୀ.ସ୍ୱ. ୨ୟ - ପୃ. ୨୩୧) ।

**ଭୁଷଣ୍ଡ**-*ଦେ.ବି.*- ଶ୍ରୀମନ୍ଦିର ଭିତରବେଢ଼ାରେ ଅବସ୍ଥିତ । ଏକ ଚିରଞ୍ଜୀବୀ କାକ, ସେ

ତ୍ରିକାଳଜ୍ଞ । ଏ କାକ ବିଷ୍ଣୁ କୁଣ୍ଡରେ ସ୍ନାନ କରି ଚତୁର୍ଭୁଜ ହୋଇଥିଲେ । ପୁରୀ ଶ୍ରୀମନ୍ଦିରସ୍ଥ ବିମଳାଙ୍କ ମନ୍ଦିର ସମ୍ମୁଖରେ ଭୁଷଣ୍ଡ କାକର ଏକ ମୂର୍ତ୍ତି ଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩୯, ପୂ.ଓ.ଭା. - ପୃ. ୬୧୨୪, ଓ.ସାଂ.ଶ. - ପୃ. ୨୮୩) ।

**ଭୂଦେବୀ**-*ଦେ.ବି.*- ଶ୍ରୀମନ୍ଦିରର ରତ୍ନସିଂହାସନସ୍ଥିତା ଭୂଦେବୀ । ବିଶ୍ୱଧାତ୍ରୀ ଦେବୀ । ତେଜସ୍ୱିନୀ ଧବଳାକୃତି ବିଶିଷ୍ଟ ଧରାଦେବୀ ଦକ୍ଷିଣହସ୍ତରେ ଜ୍ଞାନମୁଦ୍ରା ଓ ବାମହସ୍ତରେ ସୁନ୍ଦର ପଦ୍ମ ଧାରଣ କରିଛନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬) ।

**ଭେଟମଣ୍ଡପ**-*ଦେ.ବି.*- ଶ୍ରୀମନ୍ଦିରର ବାହାର ବେଢ଼ାରେ ଏହି ମଣ୍ଡପ ଅବସ୍ଥିତ । ନୀଳାଦ୍ରିବିଜେ ଦିନ ଶ୍ରୀଜଗନ୍ନାଥ ରଥରୁ ଓହ୍ଲାଇବା ବେଳେ ଶ୍ରୀଲକ୍ଷ୍ମୀ (ଶ୍ରୀଦେବୀ) ଠାକୁରାଣୀ ଏହି ମଣ୍ଡପରେ ଉଭା ହୋଇ ଶ୍ରୀଠାକୁରଙ୍କୁ ଭେଟନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୯) ।

**ଭେଟି**-*ଦେ.ବି.*- ଶ୍ରୀଠାକୁରଙ୍କୁ ଦର୍ଶନ କରିବା ସମୟରେ ଦର୍ଶନାଭିଳାଷୀ ଭକ୍ତ ଦେଇଥିବା ଉପଢୌକନ, ଦର୍ଶନୀ ବା ଉପହାର ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪) ।

**ଭୈରବ**-*ଦେ.ବି.*- ମହାଦେବଙ୍କ ଭୟାନକ ଅଷ୍ଟ ମୂର୍ତ୍ତି । ରୁକ୍ଷ, ଚଣ୍ଡ, କ୍ରୁଦ୍ଧ, କୁପିତ, ଭୀଷଣ, ଅସିତାଙ୍ଗ, ଉନ୍ମତ୍ତ ଓ ସଂହାର । ତାନ୍ତ୍ରିକମାନେ ଭୈରବ ଉପାସନା କରିଥାନ୍ତି । ଯେଉଁ ସମୟରେ ଅନ୍ଧକ ରାକ୍ଷସ ସଙ୍ଗେ ମହାଦେବଙ୍କର ଯୁଦ୍ଧ ହେଲା, ସେହି ସମୟରେ ଅନ୍ଧକର ଗଦାବାଜି ମହାଦେବଙ୍କର ମୁଣ୍ଡ ଚାରିଚିରୁଡ଼ା ହୋଇଗଲା । ସେଥିରୁ ରକ୍ତଧାର ବହିଲା । ସେହି ରକ୍ତଧାରରୁ ୫ଟି ଭୈରବ ଉତ୍ପନ୍ନ ହେଲେ । କିନ୍ତୁ ପୁରାଣ ମତରେ ଭୈରବଙ୍କ ସଂଖ୍ୟା ଆଠ - ଯଥା- ମହାଭୈରବ, ସଂହାର ଭୈରବ, ଅସିତାଙ୍ଗ ଭୈରବ, ରୁରୁ ଭୈରବ, କାଳଭୈରବ, କ୍ରୋଧ ଭୈରବ, ତାମ୍ରଚୂଡ଼ ଭୈରବ ଓ ଚନ୍ଦ୍ରଚୂଡ଼ ଭୈରବ । ତାନ୍ତ୍ରିକମାନେ ଭୈରବଙ୍କୁ ବିଶିଷ୍ଟ ଦେବତା ରୂପେ ଉପାସନା କରନ୍ତି । ରେଖାପଞ୍ଚମୀ ଦିନ କବାଟରେ, କାନ୍ଥରେ ଚିତ୍ରିତ ଭୈରବ ମୂର୍ତ୍ତି ଏକପଦ ବିଶିଷ୍ଟ ଅଟନ୍ତି । ତେଣୁ ଏହାକୁ ଏକପାଦ ଭୈରବ କହନ୍ତି । ତାନ୍ତ୍ରିକମାନଙ୍କ ମତରେ ଶ୍ରୀଜଗନ୍ନାଥ ଭୈରବ ରୂପେ କଳ୍ପିତ ।
(ପୂ.ଓ.ଭା. - ପୃ. ୬୧୪୯, ଓ.ସାଂ.ଶ.- ପୃ. ୨୮୪) ।

**ଭୈରବୀ**-*ଦେ.ବି.*- ଦୁର୍ଗା, ସତୀ, ଭୈରବାନୁଚରୀ ଦେବୀ । ଭୈରବୀଙ୍କର କେତେକ ମୂର୍ତ୍ତି କଳ୍ପିତ ହୋଇଅଛି । ଯଥା- ତ୍ରିପୁର ଭୈରବୀ, କୌଳେଶ ଭୈରବୀ, ରୁଦ୍ର ଭୈରବୀ, ନିତ୍ୟା ଭୈରବୀ, ଚୈତନ୍ୟ ଭୈରବୀ । ଦଶ ମହାବିଦ୍ୟାର ଏକତମା, ଚାମୁଣ୍ଡା ଦୁର୍ଗାପୂଜାର ଦୁର୍ଗାରୂପେ କଳ୍ପିତା, ଦ୍ୱାଦଶ ବର୍ଷିୟା କନ୍ୟା । ଶ୍ରୀମନ୍ଦିରରେ ବିମଳାଙ୍କୁ ଭୈରବୀ ରୂପେ କଳ୍ପନା କରାଯାଇଛି ।
(ପୂ.ଓ.ଭା. - ପୃ. ୬୧୫୦, ଓ.ସାଂ.ଶ.- ପୃ. ୨୮୪) ।

**ଭୋଗ**-*ସଂ.ବି.*- ଦେବତାଙ୍କ ନୈବେଦ୍ୟ ସମର୍ପିତ ହେବା ପରେ ନିବେଦିତ ବସ୍ତୁକୁ ଭୋଗ ବୋଲାଯାଏ ଓ ଭୋଗ ହେବା ପୂର୍ବରୁ ତାକୁ ଅମୁଣିଆ ବୋଲାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭, ପୂ.ଓ.ଭା. - ପୃ. ୬୧୫୩) ।

**ଭୋଗ ଉଠିବା**-*ଦେ.ବି.*- ଶ୍ରୀଠାକୁରଙ୍କ ନିରାଜନା ପୂଜା ପାଇଁ ଭୋଗ ରଖାଯିବା ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ଭୋଗପରିଛା**-*ଦେ.ବି.*- ଭୋଗଦ୍ରବ୍ୟ ଦାୟିତ୍ୱରେ ଥିବା ପରିଛା । କର୍ମାଙ୍ଗୀରେ ପାଟଯୋଷୀଙ୍କୁ ଭୋଗକରଣ ପରିଛା, ଭିତରଛ ଓ ତଳିଛ ଅମୁଣିହା ପରିଛା, ପୁଣି ତଳିଛଙ୍କୁ ଭୋଗ ବିଶୋଇ ପରିଛା କୁହାଯାଇଛି । ପାଟଯୋଷୀ କୋଠଭୋଗ ରୋଷକୁ ଯିବା ଜିନିଷ, ଭୋଗ ରୀତିମତ ହେବା ନ ହେବା ଇତ୍ୟାଦି ତଦାରଖ

କରିଥାନ୍ତି । ପଢ଼ିଆ ଉଠିଆ ହିସାବ ରଖି ଯୋଗାଇବା ଆଦି କାର୍ଯ୍ୟ କରନ୍ତି । ସେ ଭୋଗ ବିଶୋଇଙ୍କ ଚିଟାଉ ଚଳାନ୍ତି । ଭୋଗ ମାରା ହେବା ନ ହେବା ଦେଖନ୍ତି । ମାରାହେଲେ ପଣ୍ଡାଙ୍କୁ ପୂଜା ଛାଡ଼ି ଆସିବା ପାଇଁ କହିବା ଓ ଭୋଗ ସାମଗ୍ରୀ କଢ଼ାଇବା ଏହାଙ୍କ କର୍ତ୍ତୃତ୍ୱରେ ରହିଛି । ଗଙ୍ଗ ରାଜତ୍ୱ ସମୟରେ ଶ୍ରୀମନ୍ଦିର ସମ୍ପତ୍ତିର ଦାୟିତ୍ୱ, କର୍ମଚାରୀଙ୍କ ନିଯୁକ୍ତି ଓ କର୍ମଚ୍ୟୁତ ଆଦି ଭୋଗ ପରିଛାଙ୍କ କାର୍ଯ୍ୟ ଥିଲା ।
(ଶ୍ରୀ.ସ୍ୱ. ୧ମ - ପୃ. ୨୮/୪) ।

**ଭୋଗପିଠା**-*ଦେ.ବି.*- ସନ୍ଧ୍ୟାଧୂପରେ ଯେଉଁସବୁ ପିଷ୍ଟକ ଓ ମିଷ୍ଟାନ୍ନ ଭୋଗ ହୁଏ ତନ୍ମଧ୍ୟରୁ ଭୋଗ ପିଠା ଅନ୍ୟତମ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬) ।

**ଭୋଗଡାକିବା**-*ଦେ.କ୍ରି.*- ଶ୍ରୀମନ୍ଦିରରେ ପନ୍ତିରେ ଭୋଗ ବାଢ଼ିବା ପାଇଁ ପୂଜାପଣ୍ଡାଙ୍କୁ ଡାକିବାକୁ ଯିବା । ପାଳିଆ ମହାସୁଆର ଭୋଗ ପ୍ରସ୍ତୁତ ହେଲା ବୋଲି ଖବର ଦେଲେ ପାଳିଆ ପଢ଼ିଆରୀ ବେତ ଧରି ଲେଙ୍କା, ପ୍ରଧାନୀ ଓ ପାଇକଙ୍କୁ ସଙ୍ଗରେ ଧରି ଡାକଦେବେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୯) ।

**ଭୋଗ ପ୍ରକାର**-*ଦେ.ବି.*- ପୁରୀ ଶ୍ରୀମନ୍ଦିରରେ ଭୋଗର ପ୍ରକାର । ଆଦିଭୋଗ - କୋଠଭୋଗ, ଉପନଭୋଗ - ସକାଳ ଉପାୟନ ଭୋଗ, ଉପାଧି ଭୋଗ- ବରାଦ ମୁତାବକ ଭୋଗ, ଖଞ୍ଜା ଭୋଗ- ସରକାରୀ ଭୋଗ, ଘଣ୍ଟଛତା ଭୋଗ- ଯଜମାନ, ମଠ, ସାଧୁସନ୍ଥ ବା ସନ୍ନ୍ୟାସୀ ଓ ଅତିଥି ଅଭ୍ୟାଗତଙ୍କୁ ଦିଆଯିବା ଭୋଗ, ପହିଲିଭୋଗ- (ପାହାନ୍ତି ଭୋଗ-ଧନୁସଂକ୍ରାନ୍ତିରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ), ବାଳଭୋଗ- ଆଶ୍ୱିନ ଶୁକ୍ଳ ଏକାଦଶୀରୁ କାର୍ତ୍ତିକ ପୂର୍ଣ୍ଣିମା, ମଇଲମ ଭୋଗ- ଅଣସର କାଳର ସ୍ୱତନ୍ତ୍ର ଭୋଗ, ଯାତଭୋଗ- ଠାକୁରଙ୍କ ଯାତ୍ରା ନୀତି ପୂର୍ବରୁ ଭୋଗ, ଷୋଳ ଶାସନ ଭୋଗ- ମୁକ୍ତିମଣ୍ଡପ ତରଫରୁ କାର୍ତ୍ତିକ ଶୁକ୍ଳ ୭ମୀ ଦିନ ସର୍ବସାଧାରଣଙ୍କୁ ପ୍ରଦାନ କରାଯାଉଥିବା ବିପୁଳ ପରିମାଣର ଭୋଗ ।
(ଓ.ସାଂ.ଶ. - ପୃ. ୨୮୪) ।

**ଭୋଗବତୀ**-*ଦେ.ବି.*- ପାତାଳ ଗଙ୍ଗା । ଶ୍ରୀମନ୍ଦିରସ୍ଥ ସୁନା କୂଅରେ ସ୍ନାନପୂର୍ଣ୍ଣିମା ଦିନ ଏହାଙ୍କ ଆବିର୍ଭାବ ଘଟେ ବୋଲି ଲୋକବିଶ୍ୱାସ ରହିଛି ।

**ଭୋଗବସିବା**-*ଦେ.ବି.*- ଶ୍ରୀଠାକୁରଙ୍କୁ ଭୋଗ ବା ନୈବେଦ୍ୟ ଅର୍ପଣ କରିବା ।

**ଭୋଗବିଶୋଇ**-*ଦେ.ବି.*- ଶ୍ରୀମନ୍ଦିରରେ ବିଭିନ୍ନ ପ୍ରକାରର ବିଶୋଇ ସେବକ ଅଛନ୍ତି ଯଥା- ଭିଆଣ ନିଯୋଗ ବିଶୋଇ, ଗଉଡ଼ ନିଯୋଗ ବିଶୋଇ, କୁମ୍ଭାର ନିଯୋଗ ବିଶୋଇ, ଭୋଗ ବିଶୋଇ, ରାତି ବିଶୋଇ । ଏହି ବିଶୋଇମାନଙ୍କ ମଧ୍ୟରୁ ଭୋଗ ବିଶୋଇ ଅନ୍ୟତମ । ଭୋଗ ବିଶୋଇ ଭୋଗ ଦାୟିତ୍ୱରେ ଥିବା କର୍ମଚାରୀ ବା ତଳିଛ ସେବକ ।
(ଶ୍ରୀ.ସ୍ୱ. ୧ମ - ପୃ. ୫୮) ।

**ଭୋଗବୁଢ଼ା ହେବା**-*ଦେ.ବି.*- ଧନୁସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ପହିଲି ଭୋଗ ହୁଏ । ମାସ ଶେଷ ଭାଗର ପହିଲି ଭୋଗକୁ 'ଭୋଗ ବୁଢ଼ା ହେଲା' ବୋଲି କୁହାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୭) ।

**ଭୋଗମଣ୍ଡପ**-*ଦେ.ବି.*- ଯେଉଁ ମଣ୍ଡପରେ ଶ୍ରୀଜୀଉଙ୍କ ଧୂପରେ ଭୋଗ ଅର୍ପଣ କରାଯାଏ ମଣ୍ଡପର ନାମାନୁଯାୟୀ ଏହାର ନାମ ଭୋଗମଣ୍ଡପ ବା ଭଅଣ୍ଡ । ଦ୍ୱିପ୍ରହର ଓ ସନ୍ଧ୍ୟାଧୂପ ପରେ ଦୁଇ ଦୁଇଟି ଭଅଣ୍ଡ ମଧ୍ୟ ହୋଇପାରେ । ଭୋଗର ପରିମାଣ ବଢ଼ିବାରୁ, ବିପୁଳ ପରିମାଣରେ ଛତ୍ରଭୋଗ ନିମନ୍ତେ ପୋଖରିଆରେ ସ୍ଥାନାଭାବ ହେବାରୁ ଏହାର ଆବଶ୍ୟକତା ପଡ଼ିଥିଲା । ଭଅଣ୍ଡ ଖଞ୍ଜା ଧୂପ ହୋଇ ନ ଥିବାରୁ କେହି କେହି ଏହାକୁ ଭଣ୍ଡ ଭୋଗ ବୋଲି ଅର୍ଥ କରନ୍ତି । ଶ୍ରୀମନ୍ଦିରର ଭୋଗମଣ୍ଡପ ମାଦଳାପାଞ୍ଜି ଅନୁଯାୟୀ

ସୂର୍ଯ୍ୟବଂଶୀ ପୁରୁଷୋତ୍ତମଦେବଙ୍କ ୭ମ ଅଙ୍କରେ ନିର୍ମିତ । ଦିବ୍ୟସିଂହଦେବ ୧ମଙ୍କ ସମୟରେ ଭୋଗମଣ୍ଡପରେ ଗୁଣ୍ଡିଚାଯାତ୍ରା ହୋଇଥିଲା । ଯେଉଁସ୍ଥାନରେ ଭୋଗମଣ୍ଡପ ରହିଛି ସେଠାରେ ଶଙ୍କରାଚାର୍ଯ୍ୟଙ୍କ ଆସ୍ଥାନ ଥିଲା । ପରବର୍ତ୍ତୀକାଳରେ ଏଠାରେ ଭୋଗମଣ୍ଡପ ନିର୍ମିତ ହୋଇଛି । ପୂଜା ପଣ୍ଡା ଏଠାରେ ଭୋଗ କରନ୍ତି । ଏଦ୍ୱାର ଉପର ଭାଗରେ ଗଣେଶ ମୂର୍ତ୍ତି ଅଛନ୍ତି । ଏହାର ବାହାର କାନ୍ଥରେ ବ୍ରହ୍ମାଙ୍କ ମୂର୍ତ୍ତି ବିଦ୍ୟମାନ । ପାଳିଆ ପୂଜାପଣ୍ଡା ଏହି ପାଖରେ ଦୈନିକ ପୂଜା କରିଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨/୨୧୩) ।

**ଭୋଗମଣ୍ଡପ ପ୍ରତିହାରୀ**-*ଦେ.ବି.*- ଭୋଗମଣ୍ଡପର ଦ୍ୱାର ରକ୍ଷକ । ଅମୁଣିହା ପାଣି ପଡ଼ିବା ପରେ ସେ ସ୍ଥାନ ଜଗିବା ଓ ଟେରା ବାନ୍ଧିବା ଏହାଙ୍କର କାର୍ଯ୍ୟ ଅଟେ । ଭୋଗମଣ୍ଡପ ଭୋଗ ସମୟରେ ଭୋଗମଣ୍ଡପ ଶୋଧ କରି ଦ୍ୱାରମାନଙ୍କୁ ବନ୍ଦ କରିବା ଉତ୍ତାରୁ ପାଳିଆ ସୁଆର ବଡ଼ୁ ଅମୁଣିହା ପାଣି ପକାଇଲା ଉତ୍ତାରେ ଭୋଗଦ୍ୱାର ଜଗିବସିବେ । ପ୍ରତ୍ୟେକ ଦିନ ଦୁଇଜଣ ଲେଖାଏଁ ସେବା କରନ୍ତି । ଟେରା ପକାନ୍ତି ଓ ଫିଟାନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୯) ।

**ଭୋଗମଣ୍ଡପ ଭୋଗ**-*ଦେ.ବି.*- ଭୋଗମଣ୍ଡପ ଭୋଗ ଶ୍ରୀମନ୍ଦିର ନୀତିରେ ବାଧ୍ୟତାମୂଳକ ନୁହେଁ । ଯାତ୍ରୀମାନଙ୍କ ସୁବିଧା ନିମନ୍ତେ ତଥା ବିଭିନ୍ନ ମଠବାଡ଼ି ପ୍ରତିଷ୍ଠାନ ପ୍ରସାଦ ବିକ୍ରୟକାରୀ, ସେବକ ତଥା ସର୍ବସାଧାରଣଙ୍କ ସୁବିଧା ନିମନ୍ତେ ଏହି ଭୋଗ ବହୁକାଳରୁ ମନ୍ଦିରରେ ପ୍ରଚଳିତ । ଏହାକୁ ଶଙ୍କରାଚାର୍ଯ୍ୟ ପ୍ରଚଳନ କରିଥିଲେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨) ।

**ଭୋଗ ମୁରୁଜ କଟା**-*ଦେ.ବି.*- ଶ୍ରୀମନ୍ଦିରର ଧୂପ ସମୟରେ ସିଂହାସନ ନିକଟରେ ଭୋଗ ବସିବା ନିମନ୍ତେ ପୂଜାପଣ୍ଡା ପକାଉଥିବା ମୁରୁଜ ଚିତା ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୯) ।

**ଭୋଗ ସାଇତା ସୁଆର ବଡୁ**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ପ୍ରତ୍ୟେକ ଭୋଗ ଶେଷରେ କୋଠଭୋଗ ମାଲ୍ ସାଇତି ସେବକ ଖେଇ ଓ ପରର ମାଲ ବାଣ୍ଟି 'ହଣା' ନିଅନ୍ତି । ମାସନ୍ତ ଦିନ ସବୁ ସେବକଙ୍କ ଖେଇ ନିଅନ୍ତି । ଭୋଗ ଶେଷରେ ସେବା ଥିବାରୁ ଏ କାମ ଓ ଶାଢ଼ୀ ବନ୍ଧା ମଧ୍ୟ କରନ୍ତି । ମାତ୍ର ଭୋଗ ଶେଷ ପର୍ଯ୍ୟନ୍ତ ଭିତରକୁ ଯାଇପାରିବେ ନାହିଁ । ଏମାନେ ସୁଆରବଡୁ ସେବକ ଶ୍ରେଣୀର ।
(ଶ୍ରୀ.ସ୍ୱ. - ପୃ. ୪୭-୪୮) ।

**ଭୌମଏକାଦଶୀ**-*ଦେ.ବି.*- ମାଘ ଶୁକ୍ଳ ଏକାଦଶୀ ଭୌମ ଏକାଦଶୀ ନାମରେ ପରିଚିତ । ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କର ସର୍ବାଙ୍ଗ ଲାଗି ନିମନ୍ତେ ସର୍ବାଙ୍ଗ ଚନ୍ଦନ ବିଜେ ହୁଏ । ଏହି ଚନ୍ଦନ ଘଟୁଆରୀ ଘରୁ ଆସେ । ଭୋଗମଣ୍ଡପରେ ପଞ୍ଚାମୃତ ମହାସ୍ନାନ ହୋଇ ମୈଲମ ହେବା ପରେ ଘଟୁଆରୀ ଘରଠାରୁ ପଣ୍ଡା, ପତି, ମୁଦିରସ୍ତ ସର୍ବାଙ୍ଗ ବିଜେ କରାଇ ଆଣି ଲାଗି କରାନ୍ତି । ଛଅ ମୂର୍ତ୍ତି ଅଳଙ୍କାର ଓ କର୍ପୂର ଲାଗି ହୋଇ ବେଶ ହେବାପରେ ପାଣି ପଡ଼ି ମଧ୍ୟାହ୍ନ ଧୂପ ଛେକ ଆସିଲେ ମୁଦିରସ୍ତ ପ୍ରସାଦ ଲାଗି କରାନ୍ତି । ଷୋଡ଼ଶ ଉପଚାର ପୂଜା ହୋଇ ତିନି ବାଡ଼ରେ ବନ୍ଦାପନା ହୁଏ । ଏହାପରେ ଅନ୍ୟାନ୍ୟ ଦୈନନ୍ଦିନ ନୀତି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୯) ।

●

# ମ

**ମଇଲମ**-*ଦେ.ବି.*- ଶ୍ରୀମନ୍ଦିରରେ ମଇଲମର ଅର୍ଥ ହେଉଛି ଶ୍ରୀଜୀଉଙ୍କର ପରିହିତ ବସ୍ତ୍ର ଭୂଷଣ ଓହ୍ଲାଇ ଦିଆଯାଇ ପୁନଃ ପରିଧାନ କରାଇବା । ଶ୍ରୀମନ୍ଦିର ପରମ୍ପରାରେ ସ୍ୱତ୍ୱଲିପି ଅନୁସାରେ ମଇଲମ ନୀତିର ନିର୍ଦ୍ଧାରିତ ସମୟ ହେଲା ପୂର୍ବାହ୍ନ ଛଅ ଘଟିକା । ଯେଉଁଦିନ ମଙ୍ଗଳ ଆଳତି ଯେତେଶୀଘ୍ର ସରିବ, ସେଦିନ ସେତେ ଶୀଘ୍ର ମଇଲମ ହେବ । ଶ୍ରୀଜୀଉଙ୍କ ନିକଟରେ ଯେତେଥର ଭୋଗ ଓ ଧୂପ ଲାଗି ହେବ ସେତେଥର ମଇଲମ ହେବ । ଏଥିନିମନ୍ତେ ଚାରି ଖଣ୍ଡ ତଡ଼ପ, ଦୁଇ ଖଣ୍ଡ ଉତ୍ତରୀୟ ଓ ଏକ ଖଣ୍ଡ ଖଣ୍ଡୁଆ ଆବଶ୍ୟକ । ଏହା ମନ୍ଦିରର ଭଣ୍ଡାର ଓ ଚାଙ୍ଗଡ଼ାଘରୁ ଯୋଗାହୁଏ । ଏହି ନୀତି ସମ୍ପନ୍ନ କରିବା ପାଇଁ ପୁଷ୍ପାଳକ ତିନି ଜଣ, ଖୁଣ୍ଟିଆ, ଚାଙ୍ଗଡ଼ା ମେକାପ ଓ ଧୋବା ଆବଶ୍ୟକ ହୁଅନ୍ତି । ପୁଷ୍ପାଳକମାନେ ଠାକୁରଙ୍କଠାରୁ ପୂର୍ବରାତ୍ରର ବେଶ ଫୁଲ ଉତାରି ଦିଅନ୍ତି, ଯାହା ମାଳଚୂଳ ତୁଳସୀ ଉଲାଗି କରାଯାଏ ଖୁଣ୍ଟିଆମାନେ ଅଧେ ନିଅନ୍ତି ଓ ପୁଷ୍ପାଳକ ଅଧେ ନିଅନ୍ତି । କେତେକ ନିର୍ଦ୍ଦିଷ୍ଟ ଜିନିଷ ଟାଟ ରାଜାଙ୍କ ଶ୍ରନଅରକୁ ଯାଇଥାଏ । ଚାଙ୍ଗଡ଼ ମେକାପ ତଳେ ଚାଙ୍ଗଡ଼ ଧରି ଠିଆ ହୋଇଥାଏ । ଏଥିରେ ଅବକାଶ ବା ସ୍ନାନ ସକାଶେ ତଡ଼ପ ଓ ଉତ୍ତରୀୟ ଚତୁର୍ଦ୍ଧା ମୂର୍ତ୍ତିଙ୍କ ପାଇଁ ଥାଏ । ଚାଙ୍ଗଡ଼ ମେକାପ ଅବକାଶ ଉତ୍ତରୀୟ ତିନି ଜଣ ପୁଷ୍ପାଳକଙ୍କୁ ଦିଏ । ଏହି ସମୟରେ ଖୁଣ୍ଟିଆ ଗୋଟିଏ ଖଣ୍ଡୁଆ ଧରି ଶ୍ରୀଅଙ୍ଗ ରକ୍ଷାକରେ, ପୁଷ୍ପାଳକମାନେ ଠାକୁରଙ୍କୁ ଲୁଗା ପିନ୍ଧାନ୍ତି । ତିନି ଠାକୁରଙ୍କୁ ତିନି ଗୋଟି ତଡ଼ପ ଓ ସୁଦର୍ଶନଙ୍କୁ ଏକ ଗୋଟି ତଡ଼ପ ଲାଗି କରାଯାଏ । ଉତ୍ତରୀୟ ଦୁଇ ଗୋଟି ବଡ଼ଠାକୁର ଓ ଜଗନ୍ନାଥଙ୍କୁ ଲାଗି କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨-୧୩) ।

**ମଇଲମ ଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ଅଣସର ସମୟର ଭୋଗ । ଧୁଆମୁଗ, କୋରା, ନଡ଼ିଆ ଓ ଚିନି ଆଦି ଏହି ଭୋଗରେ ଲାଗେ । କିନ୍ତୁ ଏହି ଭୋଗ ପାଇଁ କୌଣସି ନିର୍ଦ୍ଦିଷ୍ଟ ଦ୍ରବ୍ୟ ବା ଭୋଗ ନାହିଁ । ଯେ ଯାହା ସମର୍ପଣ କରେ ତାହା ଭୋଗ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨) ।

**ମଉଡ଼**-*ଦେ.ବି.*- ଏକ ପ୍ରକାର ମଉଡ଼ ଫୁଲ, ଯାହା ଶ୍ରୀଠାକୁରଙ୍କୁ ଅର୍ପଣ କରାଯାଏ ।
(ପୂ.ଓ.ଭା. - ପୃ. ୬୧୭୪) ।

**ମଉଡ଼ମଣି**-*ଦେ.ବି.*- ଜ୍ଞାନୀ, ବିଦ୍ୱାନ, ମୁକୁଟ, ଶ୍ରେଷ୍ଠ ବ୍ୟକ୍ତି । ପୁରୀ ଗଜପତି ମହାରାଜ ଶ୍ରୀମନ୍ଦିରର ଚଳନ୍ତି ବିଷ୍ଣୁ ରୂପେ ପରିଚିତ । ଏଣୁ ତାଙ୍କୁ ଲକ୍ଷେ ରାଜାର ମଉଡ଼ମଣି ବୋଲି କୁହାଯାଏ ।
(ଓ.ସାଂ.ଶ. - ପୃ. ୨୮୭, ପୂ.ଓ.ଭା. - ପୃ. ୬୧୭୪) ।

**ମଉଳା ଅମାବାସ୍ୟା**- ଆଶ୍ୱିନ ମାସ ଅମାବାସ୍ୟା । ପିତୃପକ୍ଷରେ ବା ଆଶ୍ୱିନ କୃଷ୍ଣପକ୍ଷରେ କରାଯାଉଥିବା ପିତୃଶ୍ରାଦ୍ଧ । ଯେକୌଣସି ମାସର ଯେଉଁ ତିଥିରେ ପିତାମାତାଙ୍କର ମୃତ୍ୟୁ ହୋଇଥାଏ ପିତୃପକ୍ଷରେ ସେହି ତିଥିରେ ମହାଳୟା ଶ୍ରାଦ୍ଧ କରାଯାଏ । ଉଦ୍ଦିଷ୍ଟ ତିଥିରେ ଶ୍ରାଦ୍ଧ ଦେବାକୁ ଅକ୍ଷମ ହେଲେ ଏହି ଅମାବାସ୍ୟା ଦିନ ମହାଳୟା ଶ୍ରାଦ୍ଧ ମଧ୍ୟ କରାଯାଇଥାଏ । ଏହି ଦିନ ଶ୍ରୀମନ୍ଦିରର ବାଇଶି ପାହାଚରେ ପିତୃଲୋକଙ୍କୁ ଶ୍ରାଦ୍ଧ ଦେବା ଏକ ପରମ୍ପରା ହୋଇଅଛି ।
(ପୂ.ଓ.ଭା. - ପୃ. ୬୧୭୬) ।

**ମଉଳାଇଦେବା**-*ଦେ.କ୍ରି.*- ଶ୍ରୀଠାକୁରଙ୍କ ଶ୍ରୀଅଙ୍ଗରୁ ସବୁ ଉଲାଗି କରିବା ବା କାଢିଦେବା ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨) ।

**ମକର କୁଣ୍ଡଳ**-*ସଂ.ବି.*- ମକର ଆକୃତିର କୁଣ୍ଡଳ । ମକରାକୃତି କର୍ଣ୍ଣଭୂଷଣ । ଏହା ଭଗବାନ ଶ୍ରୀଜଗନ୍ନାଥଙ୍କର ପ୍ରିୟ ଅଳଙ୍କାର । (ଓ.ସାଂ.ଶ. - ପୃ. ୨୮୬, ପୂ.ଓ.ଭା. ୫ମ - ପୃ. ୬୧୭୯) ।

**ମକର ଚଉରାଶିଆ ଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତିରେ ଶ୍ରୀଜୀଉଙ୍କ ପାଖରେ ଭୋଗ ଲାଗି ହେଉଥିବା ପଦାର୍ଥକୁ ମକର ଚଉରାଶିଆ ବୋଲାଯାଏ । ଯଥା- ୧. ଜଗନ୍ନାଥ ବଲ୍ଲଭ, ୨. ଖଜା, ୩. ଗଜା, ୪. ଶ୍ୱେତଫେଣି, ୫. ମିଠା ଫେଣି, ୬. ଲୁଣି ଖୁରୁମା, ୭. ମିଠା ଖୁରୁମା, ୮. ବଡ଼ପୁରୀ, ୯. ସାନପୁରୀ, ୧୦. କାକତୁଆ ଝିଲି, ୧୧. ବଡ଼ନାଡ଼ି, ୧୨. ସାନନାଡ଼ି, ୧୩. କାକରା, ୧୪. ହଂସକେଳି, ୧୫. ଚନ୍ଦ୍ରକାନ୍ତି, ୧୬. ବଡ଼ା, ୧୭. ନାନମାନ, ୧୮. ବସନ୍ତ ଆରିସା, ୧୯. ପାଗ ଆରିସା, ୨୦. ମରିଚଲଡ୍ଡୁ, ୨୧. ବଡ଼ ଖିରିସା, ୨୨. କଦମ୍ବା, ୨୩. ମେଣ୍ଢାମୁଣ୍ଡିଆ ଖେଚେଡ଼ି, ୨୪. ନେତ୍ରପୁରୀ, ୨୫. ମଗଜଲଡ୍ଡୁ, ୨୬. ଅମାଲୁ, ୨୭. ଡାଳିମ୍ବ, ୨୮. ମନୋହର, ୨୯. ସରଭଜା, ୩୦. ପାରିଜାତକ, ୩୧. ମାଣ୍ଡୁଅ, ୩୨. ବଲ୍ଲଭ କୋରା, ୩୩. ଗୋପାଳ ବଲ୍ଲଭ, ୩୪. ଅମୃତ ରସାବଳୀ, ୩୫. ସୁଆରୀ, ୩୬. ଚଢ଼େଇନଦା, ୩୭. ବଡ଼କାନ୍ତି, ୩୮. ମାଠପୁଳି, ୩୯. ଗଗୁଡ଼ି, ୪୦. ନଡ଼ିଆ ଖୁଡ଼ି, ୪୧. ବୁନ୍ଦିଆ ଖିରି, ୪୨. ଟାକୁଆ, ୪୩. ପଣା, ୪୪. ମହାଦେଈ ଖେଚେଡ଼ି, ୪୫. ମହନଭୋଗ, ୪୬. କେନାମଣି, ୪୭. ସୁଜି ଗଜା, ୪୮. ବଳିବାମନ ମୁଗ, ୪୯. ସୁଆର ପିଠା/ପୋଡ଼ପିଠା, ୫୦. ମାଖନ, ୫୧. ଖଳିଗୁଟି, ୫୨. କାନିକା, ୫୩. ଅଭଡ଼ା, ୫୪. ଡାଲି, ୫୫. ତରକାରୀ, ୫୬. ପାୟସ, ୫୭. ପୁରଏଣ୍ଡୁରୀ, ୫୮. ଅଡ଼ାପାକନ, ୫୯. ଖୁଆମଣ୍ଡା, ୬୦. ଖଇରଚୂଳ, ୬୧. ଲକ୍ଷ୍ମୀବିଳାସ, ୬୨. ଘିଅଅନ୍ନ, ୬୩. ଅନ୍ନ ରସାବଳୀ, ୬୪. ଲଡ୍ଡୁ, ୬୫. ନଡ଼ିଆ କେଳି, ୬୬. ଖଇର ଚୂଳ, ୬୭. ମୋତିଚୂଳ, ୬୮. ଧନୁସଂକ୍ରାନ୍ତି ପିଠୋଇ, ୬୯. ପଣସୁଆଲଡ୍ଡୁ, ୭୦. ଅରଖଫୁଲ, ୭୧. ସରକୁମ୍ପା, ୭୨. ଖେଇ ମଣ୍ଡା, ୭୩. କଦମ୍ବା, ୭୪. ଛେନାପିଠା, ୭୫. ଶ୍ରୀହସ୍ତକୋରା, ୭୬. ରାଧାବଲ୍ଲଭୀ, ୭୭. ଏଣ୍ଡୁରୀ, ୭୮. ଚୁଳିଆ କୁପଡ଼, ୭୯. ଗଇଣ୍ଠା ପିଠା, ୮୦. ଯେଉଟ, ୮୧. କାନଫୁଲି, ୮୨. ମେଣ୍ଢାସିଙ୍ଗିଆ, ୮୩. ଖଣ୍ଡମଣ୍ଡା, ୮୪. କାନ୍ତି ।

(କ୍ଷେ.ସ.) ।

**ମକର ଚାଉଳ**-*ଦେ.ବି.*- ମକର ସଂକ୍ରାନ୍ତି ଦିନ ଦେବତାଙ୍କୁ ଭୋଗ କରାଯାଉଥିବା ଗୁଡ଼ ମିଶ୍ରିତ ଅପକ୍ୱ ତଣ୍ଡୁଳ । ଏହି ଦିନ ସୂର୍ଯ୍ୟ ମକରସଂକ୍ରାନ୍ତିରୁ ଉତ୍ତର ଆଡ଼କୁ ଫେରନ୍ତି । ଏହି ସଂକ୍ରାନ୍ତିରେ ଶ୍ରୀଜଗନ୍ନାଥଙ୍କର ସ୍ୱତନ୍ତ୍ର ଯାତ୍ରା ଉପଲକ୍ଷେ ଅପକ୍ୱ ଚାଉଳ ସଙ୍ଗେ ଗୁଡ଼, ନଡ଼ିଆ, ପାଚିଲା କଦଳୀ ଆଦି ମିଶ୍ରିତ ହୋଇ ବିଗ୍ରହଙ୍କଠାରେ ଭୋଗ କରାଯାଏ । ଏହାକୁ ମକର ଚାଉଳ କୁହାଯାଏ । ଏହାକୁ ଲୋକେ ପରସ୍ପର ମଧ୍ୟରେ ଆଦାନ ପ୍ରଦାନ କରି ମକର ବସନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୦୭, ପୂ.ଓ.ଭା. - ପୃ. ୧୬୮୦) ।

**ମକର ବେଢ଼ା**-*ଦେ.ବି.*- ଶ୍ରୀମନ୍ଦିର ଭିତରେ ମକରସଂକ୍ରାନ୍ତି ଦିନ ପ୍ରାତଃ କାଳରୁ ଆଳତି, ଅବକାଶ, ଫୁଟା ପହରଣ ଲାଗି, ତ୍ରିମୁଣ୍ଡିରେ ମକର ଚୂଳଲାଗି, ମାଳଲାଗି, ବେଶ ପରେ, କର୍ପୂର ଲାଗି ହୋଇ ବଲ୍ଲଭ ଓ ସକାଳ ଧୂପ ପରେ ତିନି ଠାକୁରଙ୍କ ମଇଲମ ଓ ମହାସ୍ନାନ ହୋଇଥାଏ । ପରେ ସର୍ବାଙ୍ଗ, ନବବସ୍ତ୍ର, ଚୂଳ, ମାଳ ଲାଗି ପରେ ଛଅ ମୂର୍ତ୍ତି ଅଳଙ୍କାର ଲାଗି ହୋଇ ବେଶ ଉତ୍ତାରେ ଦ୍ୱିପ୍ରହର ଧୂପ ସହିତ ଯାତ୍ରାଙ୍ଗ ଭୋଗ ଘଣ୍ଟ ଛତ୍ର କାହାଳି ସହିତ ପଟୁଆରରେ ଆସି ଷୋଡ଼ଶ ଉପଚାର ମଣୋହି ହୋଇଥାଏ । ଟେରା ପଡ଼ିବା ପରେ ଏକ ଓଳି ଅନ୍ନ ମନ୍ଦିର ଚତୁଃପାର୍ଶ୍ୱରେ ଦିଗବଳି ଉତ୍ତାରେ ମଣୋହି ହୋଇ ଭୋଗ ସରି ଆଳତି ପରେ ପୁନଶ୍ଚ ଟେରା ବନ୍ଧାଯାଇ ଅଧିବାସିତ ମକର ଚାଉଳ ଠାକୁରଙ୍କ ନିକଟକୁ ଆସେ ।

ନାରିକେଳ, ଘୃତ, ଶର୍କରା, ମସଲା, ଦୁଗ୍ଧସର ଅଣାଯାଇ ଭୋଗ ଲାଗି କରିବା ପାଇଁ ଚାଉଳକୁ ତିନିଟି ରୂପାଥାଳିରେ ଦେଉଳିଆ କରି ରଖାଯାଏ । ସେବକମାନେ ବାଘମୁହଁ ବାନ୍ଧି ଘଣ୍ଟ ଛତ୍ର କାହାଳୀ ସହ ପଟୁଆରରେ ଶ୍ରୀମନ୍ଦିରକୁ ତିନି ଥର ପ୍ରଦକ୍ଷିଣ କରି ଭିତର ପଂକ୍ତିରେ ବଢ଼ାଯାଇଥାଏ । ଏହାକୁ 'ମକରବେଢ଼ା' କୁହାଯାଏ । ରୋଷଘରୁ ଏହାପରେ 'ଚଉରାଶିଭୋଗ' ଘଣ୍ଟ ଛତ୍ର କାହାଳି ସହ ପଟୁଆରରେ ଶ୍ରୀଜୀଉଙ୍କ ନିକଟକୁ ଆସେ । ମହାଭୋଇମାନେ ବାଘମୁହଁ ବାନ୍ଧି ଦୁଧଘର ଠାରୁ ଦଧି ଘଣ୍ଟ ଛତ୍ର କାହାଳି ପଟୁଆରରେ ଜୟବିଜୟ ଦ୍ୱାର ଲଣ୍ଡାବର୍ତ୍ତରେ ପରମେଶ୍ୱରଙ୍କଠାରେ ଲାଗି କରାଇ ଶ୍ରୀମନ୍ଦିରକୁ ଏକବାର ପ୍ରଦକ୍ଷିଣ କରି ମହାସୁଆରଙ୍କୁ ପ୍ରଦାନ ପରେ ଶ୍ରୀଛାମୁରେ ବାଢ଼ନ୍ତି । ଏହାପରେ ହଡ଼ପ ନାୟକମାନେ ହଡ଼ପ ଘରଠାରୁ ବାଘମୁହଁ ବାନ୍ଧି ଘଣ୍ଟଛତ୍ର କାହାଳି ସହିତ ପଟୁଆରରେ ଶ୍ରୀମନ୍ଦିରକୁ ଏକଥର ପ୍ରଦକ୍ଷିଣ କରି ନଳିପାନ ଓ ଛାଚିପାନ ଭୋଗରେ ସମର୍ପଣ ନିମିତ୍ତ ମହାସୁଆରଙ୍କୁ ପ୍ରଦାନ କରିଥାନ୍ତି ।
(ଶ୍ରୀ.ପ.ସେ.ପୂ. - ପୃ. ୧୪୫, ଶ୍ରୀ.ସ୍ୱ. ୨ୟ - ପୃ. ୧୦୭) ।

**ମକର ସଂକ୍ରାନ୍ତି**-*ଦେ.ବି.*- ମାଘ ସଂକ୍ରାନ୍ତି । ଶ୍ରୀଜୀଉଙ୍କ ନିକଟରେ ଏହିଦିନ ମକର ଚାଉଳ ଭୋଗ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୭, କ୍ର.ବି.ଓ.ଶ.ସ.- ପୃ. ୮୦୦) ।

**ମକର ମେଲାଣ**- ସୂର୍ଯ୍ୟ ଧନୁ ରାଶିରୁ ମକର ରାଶିକୁ ଗମନ କରନ୍ତି । ଏହା ସୂର୍ଯ୍ୟଙ୍କର ଉତ୍ତରାୟଣ ଯାତ୍ରା ଅଟେ । ଶ୍ରୀମନ୍ଦିରରେ ମକର ସଂକ୍ରାନ୍ତି ଦିନ ଜଗନ୍ନାଥଙ୍କର ଉତ୍ତରାୟଣ ଯଥାବିଧିରେ ପାଳନ କରାଯାଇଥାଏ । ଏହି ପର୍ବରେ ଠାକୁରଙ୍କର ତିନୋଟି ମେଲାଣ ହୁଏ । ଯଥା- ଦୁଧ ମେଲାଣ, ଚାଉଳ ମେଲାଣ ଓ ଫୁଲ ମେଲାଣ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୭, ଶ୍ରୀ.ପ.ସେ.ପୂ. - ପୃ. ୧୪୩) ।

**ମଗଜଲଡ୍ଡୁ**-*ଦେ.ବି.*- ଅଟାକୁ ଘିଅରେ ଭାଜି ଚିନି ସହିତ ମିଶାଇ ଲଡ୍ଡୁ ପ୍ରସ୍ତୁତ କରାହୁଏ । ଏହା ଶ୍ରୀମନ୍ଦିରରେ ଓ ଅନ୍ୟାନ୍ୟ ମନ୍ଦିରରେ ଦିଅଁଙ୍କୁ ଭୋଗରେ ଲାଗି ହୁଏ ।
(ଉ.ଇ.ଅ.ଅ. - ପୃ. ୩୨୫, ଶ୍ରୀ.ସ୍ୱ. ୨ୟ - ପୃ. , ପୂ.ଓ.ଭା. - ପୃ. ୬୧୮୪) ।

**ମଘା ତ୍ରୟୋଦଶୀ**-*ସଂ.ବି.*- ଭାଦ୍ର ମାସର ମଘା ନକ୍ଷତ୍ର ଯୁକ୍ତ କୃଷ୍ଣ ତ୍ରୟୋଦଶୀ । ଏ ତିଥିରେ ମଧୁ ବା ପାୟସ ଦ୍ୱାରା ପିତୃଲୋକଙ୍କର ଉଦ୍ଦେଶ୍ୟରେ ଶ୍ରାଦ୍ଧ କରିବାକୁ ହୁଏ । ଶ୍ରୀମନ୍ଦିରରେ ଶ୍ରୀବିଗ୍ରହମାନେ କୃଷ୍ଣ ବଳରାମ ବେଶ ହୋଇଥାନ୍ତି । ଗୌଡ଼ବାଡ଼ ସାହିଲୋକେ ଅନ୍ନ ପ୍ରଥା ପ୍ରସ୍ତାବ କରନ୍ତି । ଶୀତଳ ଭୋଗ ପରେ ମଦନମୋହନ ଦକ୍ଷିଣି ଘରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ.- ପୃ. ୯୨, ପୂ.ଓ.ଭା. - ପୃ. ୬୧୮୭) ।

**ମଘାପଞ୍ଚମୀ ଯୋଗ**-*ସଂ.ବି.*- ପଞ୍ଚମୀ ତିଥି ଓ ମଘା ନକ୍ଷତ୍ରର ମିଳନ । ଏଥିରେ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଇନ୍ଦ୍ରଦ୍ୟୁମ୍ନ ତୀର୍ଥରେ ପିଣ୍ଡଦାନ କଲେ ପିତୃଗଣ ମୁକ୍ତିଲାଭ କରନ୍ତି ବୋଲି ବିଶ୍ୱାସ ଅଛି ।
(ପୂ.ଓ.ଭା. - ପୃ. ୬୧୮୭) ।

**ମଙ୍ଗଳବାଦ୍ୟ**-*ସଂ.ବି.*- ଶୁଭାନୁଷ୍ଠାନ ଉପଲକ୍ଷେ ବଜାଯିବା ବାଦ୍ୟ । ମଙ୍ଗଳ ଶଙ୍ଖ, ମଙ୍ଗଳ ମହୁରୀ ଆଦି ଶବ୍ଦର ବ୍ୟବହାର ଦେଖାଯାଏ ।
(ପୂ.ଓ.ଭା.- ପୃ. ୬୧୮୯) ।

**ମଙ୍ଗଳଆଳତି**-*ଦେ.ବି.*- ପ୍ରତିଦିନ ସକାଳେ ଦେବ ବିଗ୍ରହମାନଙ୍କର ନିଦ୍ରା ତ୍ୟାଗ ସୂଚକ ସର୍ବପ୍ରଥମେ କରାଯିବା ଆଳତି ବା ଦିଗାଦି ପ୍ରଦର୍ଶନ ପୂଜା । ପ୍ରତ୍ୟହ ଭୋର ୫ଟା କିମ୍ବା ତା' ପୂର୍ବରୁ ଶ୍ରୀମନ୍ଦିରରେ ମଙ୍ଗଳ ଆଳତି ହେବା ନିୟମ । କେବଳ ଦଶହରା ପର ଏକାଦଶୀ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ, ଧନୁ ସଂକ୍ରାନ୍ତିଠାରୁ ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ଏବଂ ବିଶେଷ ନୀତି ଦିନମାନଙ୍କରେ ରାତ୍ର ପ୍ରହରେ ଥାଇ ମଙ୍ଗଳ ଆଳତି ହେବା ନିୟମ । ଏହି

ନୀତି ପାଇଁ କର୍ପୂର, ପିଠଉ, ବଳିତା, ଘିଅ, ଆଳତି ବଇଠା, ପାଣିଝରି, ତେଲ ଓ ମଶାଲ ଆବଶ୍ୟକ । ପାଳିଆ ମେକାପ କର୍ପୂର ଆଳତି ଲଗାଇଦିଏ ଓ ପୁଷ୍ପାଳକ ଏବଂ ଭିତରଛ ମହାପାତ୍ର, ତିନି ଜଣ ସେବକ ଆଳତି କରନ୍ତି । ଏହାପରେ ସୁଆରବଡୁ ଏକୋଇଶି ବତୀ ଆଳତି ବଇଠାରେ ଏକୋଇଶିଗୋଟି ଘିଅବତୀ ସଜାଡ଼ି ତିନି ଠାକୁରଙ୍କ ସାମ୍ନାରେ ରଖେ । ଗରାବଡୁ ହାତ ଧୋଇବାକୁ ପାଣିଦିଏ । ତିନି ଜଣ ଯାକ ସେବକ ତିନି ଠାକୁରଙ୍କର ଏକୋଇଶି ବତୀ ଆଳତି କରନ୍ତି । ଏହାପରେ ସୁଆରବଡୁ ତିନି ଗୋଟି ଥାଳିରେ ପିଠଉବଟା ଓ ବତୀ ସଜାଡ଼ି ଲଗାଇ ରଖନ୍ତି । ଗରାବଡୁ ହାତ ଧୋଇବାକୁ ପାଣି ଦିଅନ୍ତି । ତିନି ଜଣ ଯାକ ସେବକ ତିନି ଠାକୁରଙ୍କର ପିଠଉବତୀ ଆଳତି କରନ୍ତି । ଏହି ପ୍ରକାର ମଙ୍ଗଳ ଆଳତି ନୀତି ବର୍ଷସାରା ଚାଲୁ ରହେ । ଆଳତି ସମୟରେ ସର୍ବସାଧାରଣ ଭିତର କାଠ ଅର୍ଗଳି ପାଖରେ ରହି ଦର୍ଶନ କରନ୍ତି । ରତ୍ନବେଦୀ ନିକଟକୁ ଯାଇ ଦର୍ଶନ କରିବାକୁ ଇଚ୍ଛା କଲେ ପାରିମାଣିକ ଦେବାକୁ ପଡ଼େ । ଆଳତି ପରେ ଶ୍ରୀଠାକୁରଙ୍କର ମଇଲମ ହୁଏ । ଏହା ଦିବସର ପ୍ରଥମ ଆଳତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧-୧୨, ପୂ.ଓ.ଭା. - ପୃ. ୬୧୮୮, ଓ.ସାଂ.ଶ. - ପୃ. ୨୮୭, ପ୍ର.ଅ. ୩ୟ- ପୃ. ୨୦୪୪, ପୁ.ବୋ. - ପୃ. ୨୭୦) ।

**ମଙ୍ଗଳକୃତ୍ୟ**-*ଦେ.ବି.*- ସାଧାରଣତଃ ବ୍ରତ ଓ ବିବାହର ପୂର୍ବଦିନ । ରୁକ୍ମିଣୀ ବିବାହ ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ । ଏହାର ପୂର୍ବଦିନ ଅର୍ଥାତ୍ ଶୁକ୍ଳ ଦଶମୀ ଦିନ ଠାକୁରଙ୍କ ବିବାହ ସମ୍ପର୍କିତ ବିଶେଷ ନୀତି । ତେବେ ବିବାହକୁ ମଧ୍ୟ ମଙ୍ଗଳକୃତ୍ୟ କୁହାଯିବାର ଦୃଷ୍ଟାନ୍ତ ଅଛି ।

(ପୂ.ଓ.ଭା. - ପୃ. ୬୧୮୯, ଶ୍ରୀ.ସ୍ୱ. ୨ୟ - ପୃ. ୧୨୨-୧୨୩) ।

**ମଙ୍ଗଳଗାନ**-*ଦେ.ବି.*- ଶୁଭାନୁଷ୍ଠାନ ଉପଲକ୍ଷେ ଗାନ କରାଯିବା ସଙ୍ଗୀତ । ମଙ୍ଗଳଗାୟନ, ମଙ୍ଗଳ ଗୀତ, ମଙ୍ଗଳ ଗୀତିକା, ମଙ୍ଗଳଗୀତି, ମଙ୍ଗଳ ସଙ୍ଗୀତ । ଶ୍ରୀମନ୍ଦିରରେ ବିଭିନ୍ନ ମାଙ୍ଗଳିକ କାର୍ଯ୍ୟରେ ଗାନ କରାଯାଉଥିବା ମଙ୍ଗଳଗୀତ । ଭିତର ଗାଆଣୀ କଳାହାଟ ଦୁଆରେ ଶ୍ରୀଜଗନ୍ନାଥଙ୍କ ପାର୍ଶ୍ୱରେ ରହି ଗାନ କରେ ।

(ପୂ.ଓ.ଭା. - ପୃ. ୬୧୮୯) ।

**ମଙ୍ଗଳା**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାର କଳ୍ପବଟ ମୂଳରେ ବଟମଙ୍ଗଳା ସର୍ବମଙ୍ଗଳା ମନ୍ଦିର ଅବସ୍ଥିତ । ଏହି ବଟମଙ୍ଗଳାଙ୍କୁ ପ୍ରାର୍ଥନା କଲେ ସମସ୍ତ କାମନା ପୂରଣ ହୁଏ ବୋଲି ଲୋକ ବିଶ୍ୱାସ । ନବକଳେବର ସମୟରେ ଦାରୁ ଅନ୍ୱେଷଣରେ ଶ୍ରୀଠାକୁରଙ୍କ ସେବକମାନେ କାକଟପୁର ମଙ୍ଗଳା ଠାକୁରାଣୀଙ୍କ ନିକଟକୁ ଆସି ଦେଉଳି ମଠରେ ରହନ୍ତି । ଦେବୀ ମଙ୍ଗଳାଙ୍କ ଆଜ୍ଞାନୁସାରେ ବନଯଜ୍ଞ କରି ଦାରୁ ସଂଗ୍ରହ କରିବାକୁ ଯାଆନ୍ତି ।

(ଶ୍ରୀ.ସ୍ୱ. ୨ୟ - - ପୃ. ୬୪, ୨୪୩, ପୂ.ଓ.ଭା.- ପୃ. ୬୧୯୦, ଓ.ସାଂ.ଶ. - ପୃ. ୨୮୭) ।

**ମଙ୍ଗଳାରୋପଣ**-*ସଂ.ବି.*- ବିବାହ ବା ବ୍ରତ କର୍ମର ପ୍ରାରମ୍ଭିକ କର୍ମ ଶ୍ରୀମନ୍ଦିରରେ ନୂତନ କାର୍ଯ୍ୟର ପ୍ରାରମ୍ଭିକ କର୍ମ ଯାହା ହୋଇସାରିଲା ପରେ ଅଶୌଚାଦି ଘଟିଲେ ମଧ୍ୟ ବିବାହ, ବ୍ରତ ଆଦି କର୍ମ ବନ୍ଦ ହୁଏ ନାହିଁ । ମଙ୍ଗଳ କାମନା କରି କରାଯାଉଥିବା ବିଧି । ଭୂମି ଗଙ୍ଗାମାଟି ତୁଳସୀମୂଳ ମାଟି ଦୀପ, ଫଳ ନାରିକେଳ, ଦୂର୍ବା, ଗୋରଚନା, ପୁଷ୍ପ, ଦର୍ପଣ, ଦଧି, ଧଳା ସୋରିଷ, ଘୃତ, ବସ୍ତ୍ର, ଅଳଙ୍କାର, ବରକୋଳିପତ୍ର, ଚନ୍ଦନ, ସିନ୍ଦୂର ଆଦି ଦ୍ରବ୍ୟରେ ମଙ୍ଗଳାରୋପଣ କାର୍ଯ୍ୟ କରାଯାଏ ।

(ଶ୍ରୀ.ସ୍ୱ.- ପୃ. ୮୭,୫୭, ପୂ.ଓ.ଭା. - ପୃ. ୬୧୯୧) ।

**ମଝାଳ**-*ଦେ.ବି.*- ଶ୍ରୀଠାକୁରଙ୍କୁ ଭୋଗ ଲାଗୁଥିବା ମଝାଳ କାକରା, ମଝାଳ କୋରା । ଏକ ପ୍ରକାର ଭୋଗ ବିଶେଷ ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୨୪, ପୂ.ଓ.ଭା. - ପୃ. ୬୧୯୭) ।

**ମଝା ପଡନୀ**-*ଦେ.ବି.*- ଶ୍ରୀଠାକୁରଙ୍କ କଟୀରେ ପିନ୍ଧାଯାଉଥିବା ପତଳା ବସ୍ତ୍ର ।
(ଓ.ସାଂ.ଶ. - ପୃ. ୨୮୭) ।

**ମଠ**-*ଦେ.ବି.*- ଶ୍ରୀମନ୍ଦିରକୁ ଆସୁଥିବା ସାଧୁ ସନ୍ଥ ସନ୍ନ୍ୟାସୀ କାଳକ୍ରମେ ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ ମଠ, ଆଶ୍ରମ ସ୍ଥାପନ କରି ସ୍ଥାୟୀ ଭାବେ ରହିଥିବା ସହ, ସେବା ନୀତିରେ ସହବନ୍ଧନ ସୂତ୍ରରେ ଶ୍ରୀମନ୍ଦିର ସହ ବାନ୍ଧିହୋଇଯାଇଛନ୍ତି । କେତେକ କୁହନ୍ତି ପୁରୀରେ ସାତଶହ ବାଉନ ମଠ ଥିଲା । ଆର୍ତ୍ତଦାସ ସାତଶ ବାଉନ ମଠ ପ୍ରତିଷ୍ଠା କରିଥିଲେ ବୋଲି କଥିତ ଅଛି । କେତେକଙ୍କ ମତରେ ତାହା ସାତସାହି ବାଉନ ମଠ । କେବଳ ଏତିକି ନୁହେଁ ସାଧୁ ସନ୍ଥାଦିକୁ ଆତିଥ୍ୟ, ନିରାଶ୍ରିତ, ସାଧୁ, ସନ୍ନ୍ୟାସୀ, ବ୍ରାହ୍ମଣ, ବୈଷ୍ଣବ, ଦୀନଦରିଦ୍ରଙ୍କ ନିମନ୍ତେ ଭୋଜନ ଦାନ ମହତ୍ତ୍ୱପୂର୍ଣ୍ଣ । ନିଜ ସାମ୍ପ୍ରଦାୟିକ ଧର୍ମଦର୍ଶନ ସହ ଜଗନ୍ନାଥ ସଂସ୍କୃତିର ପ୍ରଚାର ପ୍ରସାରର ମଠଗୁଡ଼ିକର ମହତ୍ତ୍ୱ ଭୂମିକା ରହିଛି ।
ଓଡ଼ିଶା ଦେବୋତ୍ତର ବିଭାଗ ପୁରୀସ୍ଥ କାର୍ଯ୍ୟାଳୟରେ ଥିବା ମୋଟ ଏକାଅଶିଟି ମଠ ତାଲିକା ହେଲା- ବଡ଼ ଆଖେଡ଼ା, ବଡ଼ ସନ୍ଥ, ବାଉଳି, ବଳଗଣ୍ଡି, ଛାଉଣୀ, ଦାମୋଦର ବଲ୍ଲଭ, ଏମାର (ରାଜଗୋପାଳଚାରୀ), ହଳଦିଆ, ହାତୀ ଆଖେଡ଼ା, ଜେଜେରାମ, ଜଟିଆ ବାବାଜୀ, କଳିତିଳକ, କୌଶଲ୍ୟା ଦାସ, କଟକୀ, ମଲ୍ଲଆଖେଡ଼ା (ନିର୍ବାଣୀ ଆଖେଡ଼ା) ମଙ୍ଗୁ, ନନ୍ଦିନୀ, ନୂଆ ମଠ, ନିମ ଆଖେଡ଼ା, ପଞ୍ଜାବୀ, ରାମଜୀ, ରାଘବ ଦାସ, ସିଦ୍ଧ, ଗୋବର୍ଦ୍ଧନ ବା ଶଙ୍କରାଚାର୍ଯ୍ୟ, ସମାଧି, ସାତ ବଖରିଆ, ସାତ ଆସନ, ତୋଟା ମହାବୀର ଆଖେଡ଼ା, ଭେଙ୍କଟାଚାରୀ, ବଡ଼ଝାଡୁ, ବିଶାଖା, ବଳରାମ କୋଟ, ବଡ଼ମଠ, ଚିକିଟି, ଦକ୍ଷିଣ ପାଶ୍ୱ (ଶ୍ରୀରାମ ଦାସ), ଗଙ୍ଗାମାତା, ଇନ୍ଦ୍ରସ୍ୱାମୀ, ହାବେଳୀ, ଜଗନ୍ନାଥ ବଲ୍ଲଭ, ଅର୍ଜ୍ଜୁନ ଦାସ, କୋଠଭୋଗ, କାପୁଡ଼ିଆ, ଲବଣୀ ଖିଆ, ଲକ୍ଷ୍ମୀଭଦ୍ର (ଲଙ୍ଗୁଳି), ନେବଳ ଦାସ, ନାରାୟଣ ଛତା ମଠ, ପଣ୍ଡିତ, ରାଧାବଲ୍ଲଭ, ରଘୁନାଥ ଓରଫ ଘୁମୁସର, ଶଙ୍କରାନନ୍ଦ, ଶିବ ତୀର୍ଥ, ସାନ ଛତା, ସାତ ଲହଡ଼ି, ଗିରିଧାରୀ, ତୋରାଣି ଛତ୍ର, ଜିୟର ସ୍ୱାମୀ (ଗିରିସ୍ୱାମୀ), ବ୍ରହ୍ମଚାରୀ, ବଡ଼ଓଡ଼ିଆ, ବଡ଼ଛତା, ଭଗବାନଦାସ ମଠ, ଚାଉଳିଆ, ଦୁଃଖିଶ୍ୟାମ ଛତା, ଗୋପାଳ ତୀର୍ଥ, ହରି ଦାସ, ଝାଞ୍ଜପିଟା, ଜଡ଼ା, ଖଜୁରିଆ, କୁଞ୍ଜ, ଖାକି ଆଖେଡ଼ା, ମହାପ୍ରକାଶ, ନରସିଂହାଚାରୀ, ନାଗା, ନିର୍ମୋହୀ ଆଖେଡ଼ା, ପାପୁଡ଼ିଆ, ରେବସା, ରାଧାକାନ୍ତ, ସୁନାଗୋସ୍ୱାମୀ, ସୁନ୍ଦର ଦାସ, ଉତ୍ତରପାର୍ଶ୍ୱ, ସାନ ଝାଡୁ, ସାନ ମଠ, ଶିଶୁ, ସ୍ୱର୍ଗଦ୍ୱାର ଛତା ମଠ । ଏହି ମଠ ସବୁ ଶ୍ରୀମନ୍ଦିରର ବିଭିନ୍ନ ନୀତି କାନ୍ତି ସହିତ ଜଡ଼ିତ ।
(ପୁ.ମ.ସଂ. - ପୃ. ୫-୬) ।

**ମଠଖଞ୍ଜା**-*ଦେ.ବି.*- ପୁରୀରେ ଥିବା ବିଭିନ୍ନ ମଠର ଖଞ୍ଜାନୁସାରେ ଶ୍ରୀମନ୍ଦିରକୁ ଦେଉଥିବା ପୂଜା ଭୋଗ ନିମନ୍ତେ ଦ୍ରବ୍ୟ ସାମଗ୍ରୀ ।
(ଶ୍ରୀ.ଶ. - ପୃ. ୧୩୭) ।

**ମଠସେବା**-*ଦେ.ବି.*- ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ପ୍ରାୟ ଛବିଶି ଗୋଟି ମଠ ଶ୍ରୀଜଗନ୍ନାଥଙ୍କ ପ୍ରତ୍ୟକ୍ଷ ସେବା ପୂଜା ସହିତ ଓତପ୍ରୋତଃ ଭାବେ ଜଡ଼ିତ ।
୧. ଜଗନ୍ନାଥ ବଲ୍ଲଭ ମଠ- ଅବକାଶ ସମୟରେ ମଶାଲ ଯୋଗାଇବା, ଦୈନିକ ବଲ୍ଲଭ ଯୋଗାଇବା, ବଡ଼ସିଂହାର ବେଶକୁ ତିଳକ, ଝୁମ୍ପା ଇତ୍ୟାଦି ଯୋଗାଇବା, କୃଷ୍ଣଲୀଳାରେ ଶ୍ରୀହସ୍ତ ଶର ଓ କେରା ଯୋଗାଇବା ଓ ନୀତି ବର୍ଣ୍ଣିତ ଅନ୍ୟାନ୍ୟ ସେବା ଅଛି ।
୨. ରାଘବ ଦାସ ମଠ- ସ୍ନାନଯାତ୍ରାର ଗଣପତି ବେଶ ଏହି ମଠ କରିଥାନ୍ତି । ଟାହିଆ ସେବା, ଅଧରପଣା ଓ ବିଜୟ ସମୟରେ ପନ୍ତି ତଥା ସିଂହାସନ ଗୋଛା ଚାମର ଆଲଟ ସେବା ଦୈନିକ ମଠରୁ ବଲ୍ଲଭ ଯୋଗାନ୍ତି । ଚନ୍ଦନଯାତ୍ରା ମଣି ବିମାନ ତିଆରି କରନ୍ତି । ଯାନିଯାତ୍ରାର ଜିନିଷ ଯୋଗାଇବା ଓ ସର୍ବାଙ୍ଗ କରନ୍ତି ।
୩. ଓଡ଼ିଆ ମଠ- ଅଧରପଣା ଯୋଗାଇବା, ରତ୍ନସିଂହାସନ ମାର୍ଜନା, ତ୍ରିମୂର୍ତ୍ତି ଚାନ୍ଦୁଆ ଓ ଚକା

ଅପସର ଯୋଗାଇବା କନକ ମୁଣ୍ଡାଇ ତିଆରି, ଅଣସର ପଣା, ଭୋଗ, ବଲ୍ଲଭ ପଠାଇବା, ଦୀପାବଳୀ ନିମିତ୍ତ ତେଲ, ଘିଅ ଦେବା, କାର୍ତ୍ତିକରେ ଅଖଣ୍ଡ ଦୀପ ବସାଇବା । ରତ୍ନସିଂହାସନ ମରାମତି, ଚାମର ଆଲଟ ସୁଗନ୍ଧି ସେବା । ଗୁଣ୍ଡିଚା ମନ୍ଦିର ସର୍ବାଙ୍ଗ, ଚନ୍ଦନ ବେଳେ ଆଲଟ ସେବା ।

୪. ଗୋପାଳତୀର୍ଥ ମଠ- ବଳଭଦ୍ର ଓ ସୁଭଦ୍ରାଙ୍କର ଗଣେଶ ବେଶ ଦେବା ସେବା କରିଥାଆନ୍ତି ।

୫. ଉତ୍ତର ପାର୍ଶ୍ୱ ମଠ- ଚାମର ଓ ଆଲଟ ସେବା, ରଥ ସମୟରେ ପନ୍ତିଭୋଗ ଓ ରଥକାଠ ବୋହିବା ।

୬. ଶଙ୍କରାନନ୍ଦ ମଠ- ଗୁଣ୍ଡିଚା ଓ ବାହୁଡ଼ା ସମୟରେ ପନ୍ତିଭୋଗ ସେବା ।

୭. ଝାଞ୍ଜପିଟା ମଠ - ପାଦପଦ୍ମ ସେବା ।

୮. ଶିବତୀର୍ଥ ମଠ - ମନ୍ଦିର ବେଢ଼ାରେ ଆସନ ପକାଇ ବସିବା ଅଧିକାର ଅଛି ।

୯. ବଡ଼ଛତା ମଠ- ମଙ୍ଗଳ ଆଳତି, ପହୁଡ଼, ବାଲଧୂପ, ଚନ୍ଦନ, ଦୋଳରେ କୀର୍ତ୍ତନ ସେବା ।

୧୦. ପାପୁଡ଼ିଆମଠ - ସୁନାବେଶ, ଚାମର ଓ ଆଲଟ ସେବା ।

୧୧. ଚାଉଳିଆମଠ - ଚାମର ସେବା, ଚାଉଳିଆ ଫଳ ଯେଗାଇବା ।

୧୨. ଗୋବର୍ଦ୍ଧନ ମଠ - ଅନ୍ୟ ସ୍ୱାମୀଙ୍କ ପରି ସମସ୍ତ ଅଧିକାର । ମନ୍ଦିର ନୀତି ବିଷୟରେ ମତ ଦେବା ଅଧିକାର ମୁକ୍ତିମଣ୍ଡପର ନାଏକ ଅଧିକାର, ପୂଜାପଣ୍ଡାମାନଙ୍କ ପରୀକ୍ଷା ଅଧିକାର ଅଛି । ଅନ୍ୟ ସମସ୍ତ ମଠ ପ୍ରତ୍ୟହ ଶ୍ରୀମନ୍ଦିରକୁ ଖେଇ ଦେଉଥିବା ବେଳେ ଏକମାତ୍ର ଗୋବର୍ଦ୍ଧନ ମଠ/ ଭୋଗବର୍ଦ୍ଧନ ମଠ / ଶଙ୍କରାଚାର୍ଯ୍ୟ ମଠ / ବାଲିମଠ ପ୍ରତ୍ୟହ ତିନି ଧୂପରେ ଶ୍ରୀମନ୍ଦିରରୁ ଖେଇ ପାଇଥାଆନ୍ତି ।

୧୩. ରାଧାକାନ୍ତ ମଠ- ଗୁଣ୍ଡିଚାଘର ବାହାର ଓ ଭିତର ବେଢ଼ା ପରିଷ୍କାର ଓ ଚାମର ସେବା ।

୧୪. ଗଙ୍ଗାମାତା ମଠ- ସୁନାବେଶ ଚାମର ଓ ଆଲଟ ସେବା ।

୧୫. ରେବସା ମଠ - ଚାମର ଓ ଆଲଟ ସେବା ।

୧୬. ଏମାର ମଠ - ଦୈନିକ ବଲ୍ଲଭ ଯୋଗାଇବା, ଚାମର ଓ ଆଲଟ ସେବା, ବଡ଼ସିଂହାର ବେଶକୁ ଚନ୍ଦ୍ରିକା ଓ ଚଉସରାମାନ ଯୋଗାନ୍ତି ।

୧୭. ରାଧାବଲ୍ଲଭ ମଠ - ଚାମର ଓ ଆଲଟ ସେବା ।

୧୮. ତ୍ରିମାଳି ମଠ- ଚାମର ଓ ଆଲଟ ସେବା ଓ ଅବକାଶକୁ ଦିହୁଡ଼ି ଯୋଗାଇବା ।

୧୯. ରାମଜୀ ମଠ- ଚାମର ସେବା ।

୨୦. ସାନଛତା ମଠ- ଚାମର ଓ ଆଲଟ ସେବା ।

୨୧. ଭେଙ୍କଟାଚାରୀ ମଠ - ଚାମର ଓ ଆଲଟ ସେବା ।

୨୨. ନୂଆମଠ - ଚାମର ସେବା ।

୨୩. ଛାଉଣି ମଠ - ଚାମର ଓ ଆଲଟ ସେବା ।

୨୪. ବଳରାମ ମଠ - ଚାମର ଓ ଆଲଟ ସେବା ।

୨୫. ଶ୍ରୀରାମଦାସ ମଠ - ଚାମର ଓ ଆଲଟ ସେବା, ଚନ୍ଦନଘରଠାରେ ସର୍ବାଙ୍ଗ କରନ୍ତି ।

୨୬. ଲାଙ୍ଗୁଳି ମଠ - ଶୀତଳା କୂପର ପର୍ଯ୍ୟବେକ୍ଷଣ ସ୍ନାନପୂର୍ଣ୍ଣିମାରେ ଜଳାଧିବାସ ସେବା ।

(ଶ୍ରୀ.ପ.ସେ.ପୂ. - ପୃ. ୩୩୦/ ପୁ.ମ.ସଂ.- ପୃ. ୧୨) ।

**ମଡ଼ଫୁଲ ଘର**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ମଧ୍ୟସ୍ଥ ଦେବତାଙ୍କ ପାଇଁ ଭୋଗ ପ୍ରସ୍ତୁତି ନିମନ୍ତେ ରୋଷଘର ।

(ପୁ.ବୋ. - ପୃ. ୨୭୧) ।

**ମଡ଼ଫୁଲି ପରିଛା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଭୋଗର ନିରୀକ୍ଷକ । ରାଜପସରା ତନଖି ଓ ତତ୍ତ୍ୱାବଧାନରେ ନିଯୁକ୍ତ ଥିବା ପରିଛା । ରୋଷଘର ଦାୟିତ୍ୱରେ ଥିବା ପରିଛା । ସେ ରୋଷଘର ଦାୟିତ୍ୱରେ ରହି ପ୍ରତ୍ୟେକଟି ଉପରେ ଟିକିନିଖି ନଜର ରଖୁଥିଲେ ।

(ପୁ.ବୋ. - ପୃ. ୨୩୭/୨୭୧) ।

**ମଡ଼ଫୁଲି**-*ଦେ.ବି.*- ରାନ୍ଧଣା । ରାଜା ବା ଦେବଦେବୀଙ୍କ ଖାଦ୍ୟ ।

(କୃ.ବି.ଓ.ଶ.ସ. - ପୃ. ୮୦୨) ।

**ମଢ଼ିଆ**-*ଦେ.ବି.*- ପଣ୍ଡା ବ୍ରାହ୍ମଣ ସେବକ । ଗ୍ରାମଦେବତାଙ୍କୁ ପୂଜା କରନ୍ତି । ଶାସନୀ ଅଶୌଚ ହେଲେ ତାଙ୍କ ଘରେ ପୂଜା କରନ୍ତି । ଶାସନୀ ନିମନ୍ତ୍ରଣ ଦେବା ବେଳେ ଗୁଆ ପାତ୍ରୀ ଧରି ସାଥୀରେ ରହନ୍ତି । ନିମନ୍ତ୍ରଣ ଡାଟ ନିଅନ୍ତି । ଫୁଲସଭା ବେଳେ ସମବେତ ବ୍ରାହ୍ମଣଙ୍କୁ ଚନ୍ଦନ ଦିଅନ୍ତି । ଆଶୀର୍ବାଦ ଚାଉଳ ଦିଅନ୍ତି ଓ ସଂଗ୍ରହ କରନ୍ତି । ଶ୍ରାଦ୍ଧରେ ପତ୍ରର ଦନା ତିଆରି କରନ୍ତି ।
(ପୂ.ଓ.ଭା. - ପୃ. , ପୁ.ବୋ. - ୩୧୯) ।

**ମଢ଼ିଆଳ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କ ବସ୍ତ୍ର, ପାଲଟା ଲୁଗା, ସଫା ହେଉଥିବା ପୋଷାକ, ସଫା କରୁଥିବା ଧୋବା ସେବକ, ଏହାକୁ ପୂର୍ବେ ମଢ଼ିଆଳ କୁହାଯାଉଥିଲା । ଏବେ ଏମାନଙ୍କୁ ମହାସେଠି କୁହାଯାଉଅଛି ।
(ଓ.ସାଂ.ଶ. - ପୃ. ୨୮୮) ।

**ମଢ଼ିଆଳ ଖୁଣ୍ଟିଆ**-*ଦେ.ବି.*- ଶ୍ରୀମନ୍ଦିରର ଖୁଣ୍ଟିଆ ସେବକ ବିଶେଷ । ଚାଙ୍ଗଡ଼ା ଘରେ ବୈଠକ କରିବା ବ୍ୟକ୍ତି । ଠାକୁରଙ୍କ ଫୁଲ ଚଉସରି, ନାକୁଆସି ଆଦି ପୁଷ୍ପାଳକଙ୍କୁ ଦେବା ବ୍ୟକ୍ତି । ମଇଲମ ବେଳେ ମହାଶ୍ରମ ଶ୍ରୀନଅରକୁ ଡାଟ ସଂଗେ ବେତ ଧରି ଯାଆନ୍ତି । ସଂପ୍ରତି ବେହେରା ଖୁଣ୍ଟିଆ ଏ କାର୍ଯ୍ୟ କରୁଛନ୍ତି । କେହି ମାଳଫୁଲ ଆଦି ଦେଲେ ତାହା ପରଖିବା ଆଦି ଏହାଙ୍କ କାର୍ଯ୍ୟ ।
(ଶ୍ରୀ.ସ୍ୱ. ୧ମ- ପୃ. ୯୬/୯୯) ।

**ମଣତି**-*ଦେ.କ୍ରି.*- ନିଜ ଦାୟିତ୍ୱରେ ଥିବା ଜିନିଷକୁ ଅନ୍ୟକୁ ବୁଝାଇବାକୁ ଶ୍ରୀମନ୍ଦିରର ସେବକମାନେ ମଣତି ଦେବା ଶବ୍ଦ ପ୍ରୟୋଗ କରିଥାନ୍ତି ।
(ପୁ.ବୋ. - ପୃ. ୨୬୧) ।

**ମଣିକର୍ଣ୍ଣିକା**-*ଦେ.ବି.*- ଏକ ପବିତ୍ର ସ୍ଥାନ ବିଶେଷ । ପୁରୀରେ ମଣିକର୍ଣ୍ଣିକା କପାଳମୋଚନ ଶିବଙ୍କ ଆସ୍ଥାନ, ଯେଉଁଠାରେ ସେ ବ୍ରହ୍ମ ହତ୍ୟା ପାପରୁ ମୁକ୍ତ ହୋଇଥିଲେ । ଏହା ମନ୍ଦିର ନିକଟସ୍ଥ ଅଞ୍ଚଳ, ମଣିକର୍ଣ୍ଣିକା ସାହି ନାମରେ ପରିଚିତ । ଶ୍ରୀମନ୍ଦିରରେ ଶ୍ରୀଠାକୁରଙ୍କର ଏକ ସ୍ୱର୍ଣ୍ଣ ନିର୍ମିତ କର୍ଣ୍ଣଭୂଷା ।
(ଓ.ସାଂ.ଶ. - ପୃ. ୨୮୮) ।

**ମଣିବିଗ୍ରହ**- ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧାମୂର୍ତ୍ତିର ପୂର୍ବ କଳେବର ନୀଳମାଧବ ।
(ମ.ନ. - ପୃ. ୨୩) ।

**ମଣି ବିମାନ**-*ଦେ.ବି.*- ଶ୍ରୀମନ୍ଦିରରେ ବର୍ଷର ବିଭିନ୍ନ ସମୟରେ ପର୍ବପର୍ବାଣି ଲାଗି ରହିଥାଏ । ସ୍ନାନଯାତ୍ରା ଓ ଗୁଣ୍ଡିଚା ଯାତ୍ରା ବ୍ୟତୀତ ଅନ୍ୟ ଯାତ୍ରାରେ ଶ୍ରୀଜୀଉଙ୍କ ବିଜେ ପ୍ରତିମା ପ୍ରତିନିଧିତ୍ୱ କରିଥାନ୍ତି । ସେମାନେ ହେଲେ - ଶ୍ରୀମଦନମୋହନ, ଦୋଳଗୋବିନ୍ଦ, ରାମକୃଷ୍ଣ, ରାମଲକ୍ଷ୍ମଣ, ନାରାୟଣ ଓ ରାଧାମାଧବ । ସେମାନଙ୍କ ମଧ୍ୟରୁ ପ୍ରଧାନ ବିଜେ ପ୍ରତିମା ହେଉଛନ୍ତି ଶ୍ରୀମଦନମୋହନ । ସେହି ବିଜେ ପ୍ରତିମା ଯେଉଁ ଯାନରେ ଯାଆନ୍ତି ତା'ର ନାମ ମଣିବିମାନ । ତାଙ୍କ ଶୟନ ନିମନ୍ତେ ଯେଉଁ ଖଟ ବ୍ୟବହୃତ ତାହା ରତ୍ନଖଟ (ରତ୍ନପଲଙ୍କ) ଓ ପାଲିଙ୍କିର ନାମ ଗଜଦନ୍ତ ପାଲିଙ୍କି । ଏହା ଶିଶୁକାଠ ଓ ହାତୀ ଦାନ୍ତରେ ନିର୍ମିତ । ଏହି ମଣିବିମାନକୁ ରାଘବଦାସ ଦେଇଥିଲେ । ଚନ୍ଦନଯାତ୍ରା ସମୟରେ ନରେନ୍ଦ୍ର ପୁଷ୍କରଣୀକୁ ମଦନମୋହନ, ଲକ୍ଷ୍ମୀ ଓ ସରସ୍ୱତୀ ବିଜେ ନିମନ୍ତେ ଏହା ଏକ ସୁନ୍ଦର ବିମାନ ।
(ଶ୍ରୀ.ଜି. - ପୃ. ୨୩୧) ।

**ମଣିବିମାନ ଚାଲି**-*ଦେ.ବି.*- ଶ୍ରୀଠାକୁରଙ୍କର ମଣିବିମାନ ବାହକ ବା ବିମାନ ବଡୁଙ୍କ ଛନ୍ଦାୟିତ ଚାଲି । ବିଶେଷ ଭଙ୍ଗୀରେ ଦୋଳାୟିତ ହୋଇ ଚାଲିବା ଢଙ୍ଗ ।
(ପୁ.ବୋ. - ପୃ. ୨୬୧) ।

**ମଣିମଣ୍ଡପ**-*ଦେ.ବି.*- ଦେବତାଙ୍କ ପୀଠ ସ୍ଥାନ । ରତ୍ନଖଚିତ ମଣ୍ଡପ ।

**ମଣିମା ଡାକ**-*ଦେ.ବି.*- ଶ୍ରୀମନ୍ଦିରର ଦ୍ୱାରଫିଟା ନୀତି ସମ୍ପାଦନା ବେଳେ ଶ୍ରୀଛାମୁରେ ପ୍ରତିହାରୀଙ୍କ ମଣିମା, ମଣିମା ଡାକ । ରାତ୍ର ପହଡ଼ ସମୟରେ ରତ୍ନ ସିଂହାସନ ପାଖରେ ପଢ଼ିଆରୀ ମଣିମା ମଣିମା ଡାକ ଦିଅନ୍ତି । ପାଳିଆ ମେକାପ ଛାମୁ ବଇଠା ଧରି, ସିଂହାସନ ଚାରିଆଡ଼ ବୁଲି କଳାହାଟ ଦ୍ୱାରଦେଇ ଆସନ୍ତି ।
(ଶ୍ରୀ.ସ୍ୱ. - ପୃ. ୧୧, ୨୫, ୨୯) ।

**ମଣେଇ ଦେବା**-*ଦେ.କ୍ରି.*- କୌଣସି ଦାୟିତ୍ୱ ନିଜେ ନ ରଖି ଅନ୍ୟକୁ ଅର୍ପଣ କରିବା ।
(ଶ୍ରୀ.ଶ. - ପୃ. ୧୩୮) ।

**ମଣୋହି**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କୁ ଭୋଗ ସମର୍ପଣ । ରାଜା ବା ଦେବତାଙ୍କ ଭୋଜନ । ଏହା ସମୟ ଅନୁସାରେ ଭିନ୍ନ ଭିନ୍ନ ଭାବରେ ପରିଚିତ । ଅମୃତ ମଣୋହି - ଶ୍ରୀଜଗନ୍ନାଥ ଦେବଦେବୀଙ୍କ ନିମନ୍ତେ ଉତ୍ସର୍ଗିତ ଭୂସମ୍ପତ୍ତି । ଅଶୋକା ମଣୋହି- ଅଶୋକାଷ୍ଟମୀରେ ଶ୍ରୀଜଗନ୍ନାଥ ବଲ୍ଲଭରେ ଭଣ୍ଡାର ଲୋକନାଥଙ୍କୁ ଅର୍ପିତ ନୈବେଦ୍ୟ । ଚକ୍ରମଣୋହି- ଶ୍ରୀମନ୍ଦିର ପରିସରରେ ଶ୍ରୀନୀଳଚକ୍ର ଆଡ଼କୁ ଟେକି ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟ । ବିମଳା ମଣୋହି- ଦୁର୍ଗୋତ୍ସବରେ ବିମଳାଙ୍କ ତ୍ରିକାଳ ପୂଜାରେ ହେଉଥିବା ଭୋଗ, ଶାରଦୀୟ ଷୋଳପୂଜା ଦିନଗୁଡ଼ିକୁ ଛାଡ଼ିଦେଲେ, ସବୁଦିନେ ବିମଳାଙ୍କ ପାଖରେ ପୂଜା ବା ଭୋଗ ହୁଏ ନାହିଁ । କେବଳ ଜଗନ୍ନାଥଙ୍କ ପ୍ରସାଦ ସମର୍ପିତ ହୁଏ । ବୀର ମଣୋହି- ରାଜ୍ୟ ଜୟ ପରେ ରାଜାଙ୍କ ସମ୍ମାନାର୍ଥେ ଆୟୋଜିତ ଭୋଜିସଭା । କପିଳେନ୍ଦ୍ରଦେବ ବିଜୟନଗର ରାଜା ମଲ୍ଲିକାର୍ଜୁନଙ୍କୁ ପରାସ୍ତ କରି ଫେରିବା ପଥରେ ଶ୍ରୀପୁରୁଷୋତ୍ତମ କଟକରେ (ପୁରୀରେ) ବୀରମଣୋହି କରିବା ବିବରଣ ଜୟ ବିଜୟ ଦ୍ୱାରର ଏକ ଶିଳାଲେଖରେ ଉତ୍କୀର୍ଣ୍ଣ । ଶୀତଳ ମଣୋହି- ଅରନ୍ଧା ଫଳାଦି ଭୋଗଦ୍ରବ୍ୟ । ସର୍ପା ମଣୋହି - ଠାକୁରଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି କରାଯାଉଥିବା ଭୋଗ ।
(ଶ୍ରୀ.ସ୍ୱ. - ପୃ. ୨୧, ୪୧, ୬୩, ୯୭, ୧୧୩ , କ୍ର.ବି.ଓ.ଶ.ସ. - ପୃ. ୮୦୫) ।

**ମଣୋହି କୋଠା**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ମଧ୍ୟସ୍ଥ ଏକ କୋଠା ବିଶେଷ । ଶ୍ରୀମନ୍ଦିରରେ ନୈବେଦ୍ୟ ବଢ଼ା ହେବା ସ୍ଥାନ ।

**ମଣ୍ଡଣି**-*ଦେ.ବି.*- ଶୋଭିତ କରିବା, ମଣ୍ଡନ କରିବା, ଅଳଙ୍କାର, ଭୂଷଣ, ଅଳଙ୍କରଣ, ଅଳଙ୍କାରରେ ଭୂଷିତ କରିବା । ବିମାନକୁ ସାଜସଜ୍ଜା କରିବା ।
(ପୁ.ଓ.ଭା. - ପୃ. ୬୨୧୩) ।

**ମଣ୍ଡଣିଖୁଣ୍ଟିଆ**-*ଦେ.ବି.*- ମଣ୍ଡପ ଓ ରଥ ମଣ୍ଡଣି କରୁଥିବା ସେବକ ବିଶେଷ ।
(ପୁ.ବୋ. - ୧୭୫/୨୭୨) ।

**ମଣ୍ଡଣି ଘର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ଗୃହ । ଏଠାରେ ଗୋପେଶ୍ୱର ମହାଦେବ, ନନ୍ଦ, ଯଶୋଦା, ଦେବକୀ, ବାସୁଦେବ, ଦାମ ସୁଦାମ, ରାମଗୋପାଳ, ଗୋବତ୍ସା, ନୃସିଂହ, ରାମଚନ୍ଦ୍ର, ହନୁମାନ, ପଟମହାପ୍ରଭୁ, ଅନବସର ତାଟି ମହାପ୍ରଭୁ ଅଛନ୍ତି । ଏହି ଠାକୁରମାନଙ୍କ ପାଇଁ କୋଠରୁ ଭୋଗ ଖଞ୍ଜା ଅଛି । ଏହି ଘର ଅନ୍ତର୍ଗତ ଏକ ସରଘରକୁ ମଣ୍ଡଣି ସରଘର କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୨୩୨) ।

**ମଣ୍ଡଣିପଟ ଠାକୁର**-*ଦେ.ବି.*- ଅଣସର ସମୟରେ ପୂଜା ପାଉଥିବା ପଟିଚିତ୍ର ଠାକୁରଙ୍କୁ ମଣ୍ଡଣି ପଟ ଠାକୁର କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୬୨) ।

**ମଣ୍ଡଣି ସେବକ**-*ଦେ.ବି.*- ଶ୍ରୀମନ୍ଦିର ମଣ୍ଡନ କାର୍ଯ୍ୟ କରୁଥିବା ସେବକ । ବିମାନ ଆଦି କନା ଛାଉଣି କରନ୍ତି । ଦେବୀଙ୍କ ମସ୍ତକ ଉପରେ ଛୋଟ ଚାନ୍ଦୁଆ ବାନ୍ଧନ୍ତି । ଗୁରୁବାର ଦିନ ମାଜଣା ମଣ୍ଡପରେ ଜଳକ୍ରୀଡ଼ାରେ, ଜଳକ୍ରୀଡ଼ା ମଣ୍ଡପରେ, ଅଧିବାସରେ, ଭୋଗମଣ୍ଡପରେ ଚାନ୍ଦୁଆ ବାନ୍ଧନ୍ତି । ଦୁର୍ଗା ମାଧବ ରଥ ରାଜେନ୍ଦ୍ରାଭିଷେକ, ରକ୍ମିଣୀ ବିଭାରେ ରଥ ମଣ୍ଡଣି କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୮୯) ।

**ମଣ୍ଡଣି ସେବା**- ଶ୍ରୀମନ୍ଦିର ଭିତରେ ପର୍ବପର୍ବାଣିରେ ବିଗ୍ରହମାନେ ଯେତେଥର ବିଜେ କରିଥାନ୍ତି, ଏହି ସେବକମାନେ ସେତେଥର ବିଗ୍ରହଙ୍କ ଉପରେ ଚାନ୍ଦୁଆ ବାନ୍ଧନ୍ତି । ଗୁରୁବାର ଦିନ ଲକ୍ଷ୍ମୀ ମାଜଣା ମଣ୍ଡପରେ, ଜଳକ୍ରୀଡ଼ା ମଣ୍ଡପ ଓ ଅଧିବାସ ସମୟରେ ଭୋଗ ମଣ୍ଡପରେ ଚାନ୍ଦୁଆ ବାନ୍ଧନ୍ତି । ଆଶ୍ୱିନ ଗୁଣ୍ଡିଚାରେ ଦୁର୍ଗାମାଧବଙ୍କ

ରଥ, ଦଶହରାରେ ଦୁର୍ଗାମାଧବଙ୍କ ରଥ, ରାଜେନ୍ଦ୍ରାଭିଷେକ ଓ ରୁକ୍ମିଣୀ ବିବାହରେ ରଥମଣ୍ଡଣି କରନ୍ତି । ଅଣସର ପରେ ଚିତ୍ରପଟି ଫିଟିଲେ ତାହା ଆଣି ମଣ୍ଡଣି ଘରେ ରଖନ୍ତି । ଚନ୍ଦନଯାତ ଏକୋଇଶି ଦିନରେ ଚନ୍ଦନଚକଡ଼ାଠାରେ ପାଣିକୁଣ୍ଡମାନଙ୍କରେ ପାଣି ଭରନ୍ତି । ମଣ୍ଡଣୀଘର ଓ ତହିଁରେ ରହିବା ଜିନିଷ ଏହାଙ୍କ ଜିମାରେ ଥାଏ । ସେଠା ବିଜେ ଠାକୁରଙ୍କୁ ପୂଜା କରନ୍ତି । ପ୍ରତ୍ୟେକ ରଥ ମଣ୍ଡଣି କରିବା ଏହାଙ୍କ କାମ ଓ ସେଥିରେ କୋଠ ସୁଆଁସିଆଠୁ ସାହାଯ୍ୟ ପାଆନ୍ତି । ଶାଢ଼ୀବନ୍ଧା ସେବା ନୁହେଁ । ବ୍ରତ ପରେ ସାବାଳକ ହେଲେ ସେବା କରନ୍ତି । କାମ ବନ୍ଦ ହେଲେ ଖେଇ ବନ୍ଦ । ସେବା ବନ୍ଦ ହେଲେ ଅନ୍ୟ ବ୍ରାହ୍ମଣ ସେବକ ଦ୍ୱାରା କାମ କରାଯାଇପାରିବ ।
(ଶ୍ରୀ.ସ୍ୱ. ୪ର୍ଥ - ପୃ. ୮/୯) ।

**ମଣ୍ଡା**-*ଦେ.ବି.*- ଅରୁଆ ଚାଉଳ ଚୂନାକୁ ସିଝାଇ ଖଳି କରିବାକୁ ହୁଏ । ସେହି ଖଳିକୁ ଗିନା ଆକାରରେ ଗଢ଼ି ତା' ମଧ୍ୟରେ ନଡ଼ିଆ, ଗୁଡ଼, ଚିନି, ମୁଗସିଝା, ଛେନାଗୁଡ଼ ପ୍ରଭୃତି ପୁର ଦେଇ ମୁହଁ ବୁଜି ଗୋଲ କରି ବାମ୍ଫରେ ସିଝାଯାଏ । ଏହାକୁ ମଣ୍ଡାପିଠା କୁହନ୍ତି । ଶ୍ରୀଠାକୁରଙ୍କ କୋଠଭୋଗରେ କୁମାର ପୂର୍ଣ୍ଣିମାରେ ମଣ୍ଡାପିଠା ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ.- ପୃ. ୧୮୪, ୧୯୦) ।

**ମଣ୍ଡପ**-*ଦେ.ବି.*- ମନ୍ଦିର, ଦେବାଳୟ, ବିଶ୍ରାମଗୃହ, ଉପରଛାତ କିନ୍ତୁ ଚାରିପାଖରେ ମେଲା ଥିବା ଘର । ଏଥିରେ ବହୁଲୋକ ଆଶ୍ରୟ ଗ୍ରହଣ କରିପାରନ୍ତି । ମଞ୍ଚ, ବେଦୀ, ଅଳ୍ପକାଳ ନିମିତ୍ତ ବାସସ୍ଥାନ ଦେବା ଉଦ୍ଦେଶ୍ୟରେ ନିର୍ମିତ ଗୃହ । ଚାନ୍ଦୁଆ, ସାମିଆନା, ଛାୟାମଣ୍ଡପ, ଛାମୁଣ୍ଡିଆ, ଉତ୍ସବ ସମାରୋହାର୍ଥେ ନିର୍ମିତ ଛାୟାଯୁକ୍ତ ଅସ୍ଥାୟୀ ମଣ୍ଡପ, ଦେଉଳର ଉପର ଭାଗରେ କ୍ରମ ସୂକ୍ଷ୍ମ ଆବରଣ । ଏହି ମଣ୍ଡପ ଶବ୍ଦ ଯୁକ୍ତ ମାଟିମଣ୍ଡପ ସାହି, ଦୋଳମଣ୍ଡପ ସାହି, ପୁରୀରେ ଅବିକଳ ଉଚ୍ଚାରିତ । ମଣ୍ଡପ ଶବ୍ଦର ନିର୍ବାଚନ କୌତୁକପ୍ରଦ । ଶ୍ରୀମନ୍ଦିରରେ ଅନେକ ମଣ୍ଡପ ଅଛି, ଯଥା- ୧. ଆଡ଼ପ ମଣ୍ଡପ ୨. କନକମୁଣ୍ଡାଇ , ୩. ଗର୍ହିକଟା ମଣ୍ଡପ, ୪. ଚାହାଣି ମଣ୍ଡପ, ୫. ଜଳକ୍ରୀଡ଼ା ମଣ୍ଡପ, ୬. ଜହ୍ନିମୁଣ୍ଡିଆ ମଣ୍ଡପ, ୭. ଦେବସଭା ମଣ୍ଡପ, ୮. ଦୋଳମଣ୍ଡପ, ୯. ନାଟପା ମଣ୍ଡପ, ୧୦. ନାଭିକଟା ମଣ୍ଡପ, ୧୧. ନିର୍ମାଲ୍ୟ ମଣ୍ଡପ, ୧୨. ନୀଳାଦ୍ରି ମଣ୍ଡପ, ୧୩. ଭେଟ ମଣ୍ଡପ, ୧୪. ଭୋଗ ମଣ୍ଡପ, ୧୫. ମଣିମଣ୍ଡପ, ୧୬. ମୁକ୍ତିମଣ୍ଡପ, ୧୭. ମାଜଣା ମଣ୍ଡପ, ୧୮. ରତ୍ନ ମଣ୍ଡପ, ୧୯. ଲବଣୀଖିଆ ମଣ୍ଡପ, ୨୦. ସୋମନାଥ ମଣ୍ଡପ, ୨୧. ସ୍ନାନ ମଣ୍ଡପ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୩-୨୫୯, ପୁ.ବୋ. - ପୃ. ୨୭୧) ।

**ମର୍ତ୍ତ୍ୟ ବୈକୁଣ୍ଠ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଶ୍ରୀଠାକୁରଙ୍କ ଅବସ୍ଥାନ ଯୋଗୁ ଏହି କ୍ଷେତ୍ର ମର୍ତ୍ତ୍ୟ ବୈକୁଣ୍ଠ ନାମରେ କଥିତ । ଏହା ଐଶ୍ୱର୍ଯ୍ୟମୟୀ ନଗରୀ । ଭୋଗବିଳାସର କ୍ଷେତ୍ର । ଶ୍ରୀମନ୍ଦିର ପରିସର ମଧ୍ୟ ମର୍ତ୍ତ୍ୟ ବୈକୁଣ୍ଠ ରୂପେ ପରିଚିତ ।
(ଶ୍ରୀ.ଶ. - ପୃ. ୧୩୮) ।

**ମଦନମୋହନ**-*ଦେ.ବି.*-ଶ୍ରୀଜଗନ୍ନାଥଙ୍କର ବାରମାସରେ ତେର ଯାତ୍ରା ମଧ୍ୟରୁ ତିନୋଟି ଯାତ୍ରା ପ୍ରଧାନ । ସ୍ନାନ, ଗୁଣ୍ଡିଚା ଓ ଦୋଳଯାତ୍ରା । ଏହି ଯାତ୍ରାମାନଙ୍କରେ ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ୱୟଂ ଶ୍ରୀମନ୍ଦିରସ୍ଥ ରତ୍ନବେଦୀରୁ ପହଣ୍ଡିରେ ଆସି ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି । ୧୫୬୧ ଖ୍ରୀ.ରେ ଦୋଳପୂର୍ଣ୍ଣିମା ଦିନ ଦୋଳ ଛିଣ୍ଡି ଯିବାରୁ ୧୫୬୨ରୁ ଶ୍ରୀଜଗନ୍ନାଥଙ୍କ ପରିବର୍ତ୍ତେ ବିଜେ ପ୍ରତିମା ମଦନମୋହନଙ୍କୁ ଦୋଳମଣ୍ଡପକୁ ବିଜେ କରାହେଉଅଛି । ସେହିଦିନଠାରୁ ମଧ୍ୟ ସ୍ନାନ ଓ ଗୁଣ୍ଡିଚା ବ୍ୟତୀତ ଆଉ ସବୁ ପର୍ବପର୍ବାଣି ଯାତ୍ରା ମହୋତ୍ସବରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତିନିଧି ଭାବେ ମଦନମୋହନଙ୍କୁ ବିଜେ କରାଯାଉଛି । ମୁକ୍ତିମଣ୍ଡପ ସମ୍ମୁଖସ୍ଥ ଶ୍ରୀମନ୍ଦିରର ଦକ୍ଷିଣ ପ୍ରବେଶ ଦ୍ୱାରରେ ପଶ୍ଚିମକୁ ପୂର୍ବାଭିମୁଖୀ ମନ୍ଦିର

ମଦନମୋହନଙ୍କ ବିଜୟସ୍ଥଳୀ । ସାଧାରଣତଃ ସେ ବାହାରକୁ ଆସିଲାବେଳେ ମଣିବିମାନ ବା ହାତରେ ମଧ୍ୟ ବିଜେ ହୋଇଥାନ୍ତି । ଏହାକୁ ଚନ୍ଦନ, କସ୍ତୁରୀ, ଅଗୁରୁ, ଧୂପ ଦୀପ, କର୍ପୂର, ତୁଳସୀ ଓ ପୀତାମ୍ବରୀ, ଝିନ ବସନ ଲାଗି କରାଯାଏ । ବିଭିନ୍ନ ଯାତ୍ରା ମହୋତ୍ସବରେ ଶ୍ରୀ ମଦନମୋହନ ବିଭିନ୍ନ ମଠ, ମନ୍ଦିର, ଜାଗା, ଆଖଡ଼ା, ତୀର୍ଥସ୍ଥଳୀ ଓ ଆଶ୍ରମ ପ୍ରଭୃତି ସ୍ଥାନକୁ ବିଜେ କରିଥାନ୍ତି ।

ଶ୍ରୀମଦନମୋହନ ହେଉଛନ୍ତି କାମଦେବ ସ୍ୱରୂପ । ଶ୍ରୀଜଗନ୍ନାଥ, ଶ୍ରୀକୃଷ୍ଣ ଓ ଶ୍ରୀମଦନମୋହନ ଏକ ବା ଅଭିନ୍ନ । ବିଷ୍ଣୁଙ୍କ ସହ କାମଦେବଙ୍କ ସମ୍ମିଶ୍ରଣ ଫଳରେ ଦୋଳ ଉତ୍ସବରେ କୃଷ୍ଣ ହେଲେ ମଦନମୋହନ / ରଥଯାତ୍ରା ସମୟରେ ଶ୍ରୀଜଗନ୍ନାଥ ନିଜେ ବିଜେ କରୁଥିଲେ ମଧ୍ୟ ମଦନମୋହନ ନନ୍ଦିଘୋଷ ରଥରେ ବି ଯାତ୍ରା କରନ୍ତି ।

ସନ୍ଧ୍ୟା ଧୂପ ପରେ ମଦନମୋହନ ଗୁଣ୍ଡିଚା ମନ୍ଦିରର ଜଗମୋହନକୁ ବିଜେ କରିବା ସମୟରେ ରାସୋତ୍ସବ ପାଳିତ ହୁଏ । ଏହାକୁ ଗୁଣ୍ଡିଚା ରାସ ବା ରାହାସ କୁହାଯାଏ । ଶ୍ରାବଣ ଶୁକ୍ଳ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ସାତଦିନ ଧରି ଝୁଲଣଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ଯାତ୍ରାରେ ମଦନମୋହନ ବିଜେ କରିଥାନ୍ତି । ବୈଶାଖ ଶୁକ୍ଳ ତୃତୀୟାଠାରୁ ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଜଗନ୍ନାଥଙ୍କର ଚନ୍ଦନଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ଚନ୍ଦନଯାତ୍ରା ବେଳେ ରାମକୃଷ୍ଣ ଓ ମଦନମୋହନ ରତ୍ନସିଂହାସନକୁ ବିଜେ କରନ୍ତି । ମୁକ୍ତିମଣ୍ଡପ ନିକଟସ୍ଥ ନୃସିଂହ ମନ୍ଦିର ପଶ୍ଚାତ୍ ଭାଗରେ ଜଳକ୍ରୀଡ଼ା ମଣ୍ଡପ । ଜ୍ୟେଷ୍ଠମାସ କୃଷ୍ଣପକ୍ଷ ଏକାଦଶୀଠାରୁ ପାଳିତ ହେଉଥିବା ଏକୋଇଶ ଦିନ ପର୍ଯ୍ୟନ୍ତ ଜଳକ୍ରୀଡ଼ା ଉତ୍ସବକୁ ମଦନମୋହନ ବିଜେ କରନ୍ତି । ଏତଦ୍‌ବ୍ୟତୀତ ଶ୍ରୀକୃଷ୍ଣ ଜନ୍ମୋତ୍ସବ, କାଳୀୟଦଳନ ଉତ୍ସବ, ଦୟଣାଚୋରୀ, ରୁକ୍ମିଣୀ ବିଭା, ଚମ୍ପକ ଦ୍ୱାଦଶୀ, ଓଢ଼ଣ ଷଷ୍ଠୀ, ମକରଯାତ୍ରା, ଶାକ୍ତ ଗୁଣ୍ଡିଚା, ଶମ୍ଭୁ ଏକାଦଶୀ ପ୍ରଭୃତି ଉତ୍ସବମାନଙ୍କରେ ଶ୍ରୀମଦନମୋହନ ଅନ୍ୟାନ୍ୟ କେତେକ ଦେବଦେବୀଙ୍କ ସହ ବିଜେ କରିଥାନ୍ତି । ଶ୍ରୀଜଗନ୍ନାଥଙ୍କ ପରି ଶ୍ରୀମଦନମୋହନଙ୍କୁ ମଧ୍ୟ ସମାନ ଧାରାରେ ଭକ୍ତବୃନ୍ଦ ପ୍ରଣତି ଜଣାଇଥାନ୍ତି ।

**ମଦନମୋହନ ମୁଦ**-*ଦେ.ବି.*- ଶ୍ରୀଠାକୁରମାନେ ସ୍ନାନମଣ୍ଡପରୁ ସ୍ନାନ ବିଧି ସାରି ଶ୍ରୀଜଗନ୍ନାଥଙ୍କ ମସ୍ତକରେ ଲାଗିଥିବା ହୀରା ଚିତା, ଶ୍ରୀବଳଭଦ୍ରଙ୍କ ନୀଳା ଓ ଶ୍ରୀସୁଭଦ୍ରାଙ୍କ ମାଣିକ୍ୟ ଚିତା ଉଲାଗି କରାଯାଏ । ସେତେବେଳେ ରାଘବ ଦାସ ମଠ ଅଣସର ପିଣ୍ଡିରେ ଗୋଟିଏ କାଠର କନକମୁଣ୍ଡି କରାଇଥାନ୍ତି ଓ ସ୍ନାନମଣ୍ଡପରୁ ଠାକୁରମାନେ ଆସି ସେଠାରେ ବିଜେ ହୁଅନ୍ତି । ରତ୍ନଅଳଙ୍କାର ଉଲାଗି ହୋଇ ତଡ଼ାଉ ଓ ଦେଉଳକରଣଙ୍କ ମାର୍ଫତରେ ଦିଅନ୍ତି । ସେମାନେ ଏହାକୁ ଚାଙ୍ଗଡ଼ା ମେକାପଙ୍କଠାରୁ ଆଣିଥିବା ଶ୍ରୀକପଡ଼ାରେ ଉତ୍ତମ ରୂପେ ବାନ୍ଧି ମଦନମୋହନଙ୍କ ମୁଦରେ ମୁଦଦେଇ ଭଣ୍ଡାର ମେକାପଙ୍କ ମାର୍ଫତରେ ଭଣ୍ଡାର ଘରେ ରଖି ଦିଅନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୬୨) ।

**ମନ୍ଦାରମାଳ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ରାମ ନବମୀ ଆରମ୍ଭ ସାହି ଯାତର ଅଷ୍ଟମ ଦିନ ରାବଣ ବଧ ପ୍ରସଙ୍ଗ ଉପସ୍ଥାପନା ବେଳେ ବଧରାବଣ ପ୍ରଭୂଙ୍କ ଠାରୁ ମନ୍ଦାର ମାଳ ନେଇଥାନ୍ତି । ତେଣୁ ବର୍ଷ ମଧ୍ୟରେ ଏହି ଗୋଟିଏ ଦିନ ଶ୍ରୀଜୀଉଙ୍କ ପାଦ ତଳେ ମନ୍ଦାର ଫୁଲ ଲାଗି ହୁଏ ।

(କ୍ଷେ.ସ.) ।

**ମନ୍ଦିର ସିପାହୀ**-*ଦେ.ବି.*- ପୁରୀ ଶ୍ରୀମନ୍ଦିର ଜଗୁଥିବା ସିପାହୀ । ରାତ୍ରରେ ମଧ୍ୟ ପହରା ଦିଅନ୍ତି ଓ ଜଗି ଶୁଅନ୍ତି ।

(ଶ୍ରୀ.ସ୍ୱ. - ପୃ. ୨୯) ।

**ମଞ୍ଜାକଡ଼େଇ**-*ଦେ.ବି.*- ଏହା ଏକ ପ୍ରକାର ଭୋଗ । ଏହା ମକର ଚଉରାଶିରେ ଭୋଗ ଲାଗି ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୭୬) ।

**ମଧ୍ୟାହ୍ନଧୂପ**-*ସଂ.ବି.*- ମଧ୍ୟାହ୍ନରେ ଭୋଗ କରାଯାଇଥିବା ଅନ୍ନ, ସାକରା, କଡ଼ମ୍ବା, ଆରିଷା, ଧଉଳା, ମାଠପୁଳି, ତ୍ରିପୁରୀ, ମନୋହର, କାକରା, ବଡ଼ା, ନାଡ଼ି, ପିପସରା, ପଣା, ମୁଗ, ବଡ଼ି ଖିରିଷା, ଦୁଧ ଓ ଖଜା, ପଟିଆପିଠା, ସୁଜିଖିରି, ଭଜା, ତାଟମନୋହର, ବୁନ୍ଦିଆ ଖିରି, ଓରିଆ, ନିଯୋଗ ପିଠା, ମରିଚିଲଡୁ ପ୍ରଭୃତି ଭୋଗ । ଏହି ଧୂପ ୧୨.୩୦ରୁ ୧.୦୦ ମଧ୍ୟରେ ହେବା ନିୟମ । ଷୋଡ଼ଶ ଉପଚାରରେ ପୂଜା ହୁଏ । କେବଳ ପଟୁଆର ହୁଏ ନାହିଁ । ଭୋଗ ସାମଗ୍ରୀ ସକାଳ ଧୂପର ସାମଗ୍ରୀଠାରୁ ପୃଥକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩-୨୪) ।

**ମଧ୍ୟାହ୍ନ ପହୁଡ଼**-*ଦେ.ବି.*- ଶ୍ରୀମନ୍ଦିର ପରମ୍ପରାରେ ଦିବା ଏକ ଘଟିକାରୁ ଏକଟା ତିରିଶି ମଧ୍ୟରେ ମଧ୍ୟାହ୍ନ ପହୁଡ଼ ହେବା ନିୟମ । ଏହି ନୀତି ସକାଶେ ମନ୍ଦିର କାର୍ଯ୍ୟାଳୟ ତରଫରୁ ଶାଢ଼ୀ, ଖଣ୍ଡୁଆ, ମାଳଫୁଲ, କର୍ପୂର ଓ ବିଡ଼ିଆ ଯୋଗାଇ ଦିଆଯାଏ । ପାଳିଆ, ପଢ଼ିଆରୀ, ବଡ଼ଦ୍ୱାର ପଢ଼ିହାରୀ, ମୁଦୁଲି, ଚାଙ୍ଗଡ଼ା ମେକାପ, ଖଟଶେଯ ମେକାପ, ସୁଆର ବଡୁ, ପାଳିଆ ଖୁଣ୍ଟିଆ, ପୁଷ୍ପାଳକଙ୍କର ସେବା ଏ ପହୁଡ଼ ନୀତି ପାଇଁ ଆବଶ୍ୟକ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୯) ।

**ମଧୁପର୍କ**-*ସଂ.ବି.*- ଶ୍ରୀମନ୍ଦିରରେ ଦ୍ୱିପହର ଧୂପ ବେଳେ ଦେବଦୀପାବଳୀ ତିନିଦିନ ଧରି କେବଳ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଲାଗି ହେଉଥିବା ପଞ୍ଚାମୃତ ଭୋଗ ।

**ମଧୁପୁର ନଈ**-*ଦେ.ବି.*- ଶ୍ରୀକ୍ଷେତ୍ରର ପଶ୍ଚିମ-ଉତ୍ତର ଦିଗରେ ଥିବା ଏକ ନଦୀର ଧାର । ଏହା ମଧ ମାଟିଆ ନଈ ବୋଲି କଥିତ । ବର୍ତ୍ତମାନର ନାମ ମଧୁବନ ।
(ଶ୍ରୀ.ଶ. - ପୃ. ୧୩୯) ।

**ମଧୁପୁର ପାଟଣା**-*ଦେ.ବି.*- ଶ୍ରୀକ୍ଷେତ୍ରରେ ଥିବା ଏକ ପ୍ରାଚୀନ ଜନବସତି ।
(ଶ୍ରୀ.ଶ. - ପୃ. ୧୩୯) ।

**ମଧୁବନ**-*ଦେ.ବି.*- ଶ୍ରୀକ୍ଷେତ୍ରର ଇନ୍ଦ୍ରଦ୍ୟୁମ୍ନ ସରୋବର ନିକଟବର୍ତ୍ତୀ ଅଞ୍ଚଳ ।
(ଶ୍ରୀ.ଶ. - ପୃ. ୧୩୯) ।

**ମଧୁରଭକ୍ତି**-*ସଂ.ବି.*- ପ୍ରେମଭକ୍ତି । ଚୈତନ୍ୟ ପ୍ରଚାରିତ ବୈଷ୍ଣବ ଧର୍ମର ମୁଖ୍ୟ ବିଭବ । ଭଗବାନଙ୍କୁ ଆରାଧନା କରିବା ପାଇଁ ଏହା ଶ୍ରେଷ୍ଠ ମାର୍ଗ ବୋଲି ସେମାନେ ପ୍ରଚାର କରୁଥିଲେ ।
(ଓ.ସାଂ.ଶ. - ପୃ. ୨୯୦) ।

**ମଧୁରୁଚି**-*ଦେ.ବି.*- ଏକ ପ୍ରକାର ମଧୁର ଖଟା । ମଇଦା, ସେଓ, ଅଙ୍ଗୁର, ନାସପାତି, କିସ୍‌ମିସ୍ ଆଦି ଦ୍ୱାରା ପ୍ରସ୍ତୁତ ଖଟା, ଏହା ଛପନ ଭୋଗ ମଧ୍ୟରୁ ଅନ୍ୟତମ ।
(ପୁ.ବୋ. - ପୃ. ୨୭୮) ।

**ମନସାଧ**-*ଦେ.ବି.*- ଏହା ଜେଉଡ଼ ଭୋଗ । ଏହା ରେଖାପଞ୍ଚମୀରେ ଶ୍ରୀଠାକୁରଙ୍କ ଭୋଗରେ ଲାଗି ହୋଇଥାଏ ।
(ପୁ.ବୋ. - ପୃ. ୨୭୮) ।

**ମନୋହର**-*ଦେ.ବି.*- ଚାଉଳଚୂନା ଓ ଲିଆଗୁଣ୍ଡରେ ପ୍ରସ୍ତୁତ ଏକ ବିଶେଷ ପ୍ରକାରର ଲଡୁ । ଏହାକୁ ସୁଆର ମନୋହର କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୧୭୪-୧୮୩) ।

**ମନ୍ତ୍ର**-*ସଂ.ବି.*- ମନ୍ତ୍ରଣା, ବିଚାର, ବେଦର ପରାମର୍ଶ, ସାରବତ୍ତା । ବୈଦିକ ଶାସ୍ତ୍ରମତେ ଉପାସନାରେ ବ୍ୟବହୃତ ଦେବତା ବିଶେଷଙ୍କ ଉଦ୍ଦେଶ୍ୟରେ ବାକ୍ୟ ବା ପଦ । ଯାହା ଦ୍ୱାରା ବିଶ୍ୱ ଜ୍ଞାନ ଲାଭ ହୁଏ ଓ ସଂସାର ସାଗରରୁ ମନୁଷ୍ୟ ଉଦ୍ଧାର ପାଏ ତାହା ମନ୍ତ୍ର ନାମରେ ପରିଚିତ । ନିରୁକ୍ତ ଅନୁସାରେ ପରୋକ୍ଷକୃତ, ପ୍ରତ୍ୟେକ୍ଷକୃତ ଓ ଆଧ୍ୟାତ୍ମିକ ଭେଦରେ ତିନିଭାଗରେ ବିଭକ୍ତ କରାଯାଏ । ମାତ୍ର ପରବର୍ତ୍ତୀକାଳରେ କୌଣସି ଅଲୌକିକ ଶକ୍ତିର ସିଦ୍ଧିରେ ସାଧାରଣ ବ୍ୟକ୍ତିଙ୍କୁ ଚମତ୍କୃତ କରିବା ମନ୍ତ୍ରର ଭୂମିକା । ତନ୍ତ୍ର ସାଧନାରେ ମନ୍ତ୍ରର ଏଭଳି ଅପପ୍ରୟୋଗ ହୋଇଥିଲା ।

ସନ୍ଥକବିମାନେ ଏହାକୁ ପରିତ୍ୟାଗ କରିବାକୁ ବାରମ୍ବାର ଉପଦେଶ ଦେଇଛନ୍ତି ।
(ପୂ.ଓ.ଭା. - ପୃ. ୬୨୭୯, ଓ.ସାଂ.ଶ. - ପୃ. ୨୯୧) ।

**ମନ୍ତରାଜ**-*ସଂ.ବି.*- ମନ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଓଁ ଶ୍ରୀଂ କ୍ଲୀଂ ହ୍ଲୀଂ ଗୋପୀଜନବଲ୍ଲଭାୟ ସ୍ୱାହା ଓଁ କ୍ଲୀଂ ହ୍ଲୀଂ ଶ୍ରୀଂ କୁ କେହି କେହି ଗ୍ରହଣ କରିଥିଲା ବେଳେ କେହି କେହି ଚୈତନ୍ୟ ପନ୍ଥୀଙ୍କ ମନ୍ତ୍ର ତଥା କଳିଯୁଗର ମହାମନ୍ତ୍ର- "ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ, ହରେ ରାମ ହରେ ରାମ ରାମ ରାମ ହରେ ହରେ ।" ଅପରପକ୍ଷରେ "ଉଗ୍ରଂ ବୀରଂ ମହାବିଷ୍ଣୁଂ ଜ୍ୱଳନ୍ତଂ ସର୍ବତୋମୁଖମ ମନ୍ତ୍ରକୁ ମନ୍ତ୍ରରାଜ ରୂପେ ଗ୍ରହଣ କରିଥାନ୍ତି ।
(ଓ.ସାଂ.ଶ. - ପୃ. ୨୯୨) ।

**ମର୍ଯ୍ୟାଦାଲଙ୍ଘନ**- ବଡ଼ଦେଉଳରେ ଶ୍ରୀଜଗନ୍ନାଥଙ୍କ ଗରୁଡ଼ସ୍ତମ୍ଭ ଅତିକ୍ରମ କରି ପ୍ରାଚୀନ ଭୋଗମଣ୍ଡପକୁ ଯିବା ଦ୍ୱାରା ମର୍ଯ୍ୟାଦାଲଙ୍ଘନ ହୁଏ ।
(ଓ.ସାଂ.ଶ. - ପୃ. ୨୯୩) ।

**ମୟୂର ଚନ୍ଦ୍ରିକା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଏକ ପ୍ରକାର ସୁବର୍ଣ୍ଣ ଅଳଙ୍କାର । ମୟୂର ଚନ୍ଦ୍ରିକାରେ ଥିବା ଚନ୍ଦ୍ରାକୃତି ବିଚିତ୍ର ବର୍ଣ୍ଣ ବିଶିଷ୍ଟ ।
(ପୂ.ଓ.ଭା. - ପୃ. ୬୨୯୭) ।

**ମଲମଲ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ଏକ ପ୍ରକାର ପରିଧେୟ ବସ୍ତ୍ର ।
(ଶ୍ରୀ.ସ୍ୱ. - ପୃ. ୧୪୬, ୧୪୭, ୧୫୨) ।

**ମଳମାସ**-*ସଂ.ବି.*- ଅମାବାସ୍ୟା ଦ୍ୱୟଯୁକ୍ତ ଓ ରବି ସଂକ୍ରାନ୍ତି ବର୍ଜିତ ଚାନ୍ଦ୍ରମଳମାସ, ଅଧିମାସ, ମାସବୃଦ୍ଧି, ସୌରମାସ ବର୍ଷ ସହ ମେଳତାଳ ରଖିବା ପାଇଁ ପ୍ରତି ଅଢ଼େଇ ବର୍ଷରେ ଏକ ଅଧିଚାନ୍ଦ୍ରମାନ ମାସ ଗଣନା କରାଯାଏ । ସେହି ମାସଟି ଯେଉଁ ଚାନ୍ଦ୍ରମାନ ମାସ ମଧ୍ୟରେ ଆସେ, ସେହି ମାସର ନାମ ବହନ କରେ, ଯଥା- କାର୍ତ୍ତିକ ମଳ, ଆଶ୍ୱିନ ମଳ କିନ୍ତୁ ଯେଉଁବର୍ଷ ଆଷାଢ଼ ମଳ ଆସେ ସେ ବର୍ଷ ଶ୍ରୀଜଗନ୍ନାଥଙ୍କର ନବକଳେବର ଅନୁଷ୍ଠିତ ହୁଏ । ମଳମାସ କେବେହେଲେ ପୁଷମାସରେ ପଡ଼େ ନାହିଁ, କ୍ୱଚିତ୍ ମାଘମାସରେ ପଡ଼େ, କିନ୍ତୁ ସାଧାରଣତଃ ଫାଲଗୁନଠାରୁ ମାର୍ଗଶିର ମାସରେ ପଡ଼ିଥାଏ । ମଳମାସରେ ଦେବତା ଓ ପିତୃ କାର୍ଯ୍ୟ ନିଷିଦ୍ଧ । ସାଧାରଣ ମାସରେ ପ୍ରଥମେ କୃଷ୍ଣପକ୍ଷ ଓ ପରେ ଶୁକ୍ଳପକ୍ଷ ପଡ଼େ, କିନ୍ତୁ ମଳମାସରେ ଶୁକ୍ଳପକ୍ଷ ଆଗ ଓ ପରେ କୃଷ୍ଣପକ୍ଷ ଆସେ । ମଳମାସକୁ ପୁରୁଷୋତ୍ତମ ମାସ ବୋଲି କୁହାଯାଏ ଓ ଏହି ସମୟରେ ଭକ୍ତମାନେ ଶ୍ରୀଜଗନ୍ନାଥଙ୍କ ନୀତିକାନ୍ତି ପୂଜାବିଧି ଅଧିକ କରିଥାନ୍ତି । ଯେଉଁବର୍ଷ ଯୋଡ଼ା ଆଷାଢ଼ ବା ଆଷାଢ଼ ମଳ ପଡ଼େ ସେହିବର୍ଷ ଠାକୁରଙ୍କର ନବକଳେବର ବିଧି ହୁଏ ।
(ଶ୍ରୀ.ସ୍ୱ. - ପୃ. ୬୪, ପୂ.ଓ.ଭା. - ପୃ. ୬୩୨୦) ।

**ମଳମାସଦିଅଁ**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତରେ ଦକ୍ଷିଣ ପାର୍ଶ୍ୱରେ କଳ୍ପବଟ ତଳେ ମଙ୍ଗଳାମନ୍ଦିର ସମ୍ମୁଖ ଭାଗରେ ପଞ୍ଚମହାଦେବଙ୍କ ମଧ୍ୟରେ ଦକ୍ଷିଣ ଭାଗରୁ ତୃତୀୟ ମନ୍ଦିରରେ ପୂଜିତ ବିଗ୍ରହ । ସେ କେବଳ ମଳମାସ ମାନଙ୍କରେ ପୂଜା ପାଇଥାନ୍ତି । ଅନ୍ୟ ଦିନମାନଙ୍କରେ ଏହି ମନ୍ଦିର ବନ୍ଦ ରହିଥାଏ ।
(କ୍ଷେ.ସ.) ।

**ମଲ୍ଲା**-*ସଂ.ବି.*- ନାବିକ, ମାଝି, ନୌବାହକ ଜାତି ବିଶେଷ । ଶ୍ରୀଜଗନ୍ନାଥଙ୍କ ଚନ୍ଦନଯାତ୍ରାରେ ସନନ୍ଦ ଦ୍ୱାରା ଚାପ ଅଧିକାର ମଲ୍ଲାଙ୍କର ଅଛି । ଶ୍ରୀଜଗନ୍ନାଥଙ୍କ ମନ୍ଦିରର ବାଇଶି ପାହାଚରେ ଯେଉଁ ପାହାଚଟି ମାଙ୍କଡ଼ା ପଥରରେ ତିଆରି ସେ ପାହାଚରେ ମଲ୍ଲାମାନଙ୍କର କୌଳିକ ଅଧିକାର ଥିବା ଜଣାଯାଏ । ପୁରୀ ଗୁଣ୍ଡିଚାଘର ପାଖେ ମଲ୍ଲେଇ ମଠ ଅଛି । ସେଠାରେ ମଲ୍ଲାଜାତିର ବୈଷ୍ଣବଙ୍କ ପାଇଁ ପୂର୍ବେ ଜଗନ୍ନାଥ ମନ୍ଦିରରୁ ଅଭଡ଼ା ଖଞ୍ଜା ଥିଲା ବୋଲି କଥିତ ଅଛି ।
(ପୂ.ଓ.ଭା. - ପୃ. ୬୩୨୯) ।

**ମରୀଚିପାଣି**-*ଦେ.ବି.*- ଏହା ଏକ ବ୍ୟଞ୍ଜନ । ଯେଉଁଥିରେ ଗୋଲମରିଚ ଭାଗ ଅଧିକ ଥାଏ ।
(ପୁ.ବୋ. - ପୃ. ୨୭୮, ଶ୍ରୀ.ସ୍ୱ. - ପୃ. ୬୮) ।

**ମରୀଚିଲଡୁ**-*ଦେ.ବି.*- ଚାଉଳଚୂନା ଓ ଗୋଲମରିଚ ସହିତ ମିଠା ଭାଗ ଦେଇ ପ୍ରସ୍ତୁତ କରାଯାଇଥିବା ଲଡୁ, ଏହା ଠାକୁରଙ୍କୁ ଦ୍ୱିପ୍ରହର ଧୂପରେ ଲାଗି ହୁଏ । (ଶ୍ରୀ.ସ୍ୱ. - ପୃ. ୨୩,୧୮୭, ପୁ.ବୋ. - ପୃ. ୨୭୮) ।

**ମରୀଚିକା**-*ଦେ.ବି.*- ପୁରୀ ବଡ଼ଦାଣ୍ଡ ପାର୍ଶ୍ୱରେ ପ୍ରତିଷ୍ଠିତା ଦେବୀ । ଶ୍ରୀକ୍ଷେତ୍ରରେ ଅଷ୍ଟଶକ୍ତି ମଧ୍ୟରୁ ଅନ୍ୟତମ । ମରୀଚିକା କଳା ମୁଗୁନୀ ନିର୍ମିତ ଅଷ୍ଟଭୁଜା ଦେବୀ ମୂର୍ତ୍ତି । ଦେବୀ ଶବାରୂଢ଼ା । ତାଙ୍କର ଦକ୍ଷିଣ ହସ୍ତରେ (ଉପରୁ ତଳ କ୍ରମରେ) ଖଣ୍ଡା, ଶଙ୍ଖ, ଅଙ୍କୁଶ, ଅକ୍ଷମାଳା ଓ ବାମହସ୍ତରେ ସେହି କ୍ରମରେ ଗଦାଚକ୍ର, ତ୍ରିଶୂଳ ଓ ପାନପାତ୍ର ରହିଛି ।
(ପୁ.ବୋ. - ପୃ. ୨୭୮) ।

**ମଶାଲ ଯୋଗାଣିଆ**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ମଙ୍ଗଳ ଆଳତି ସମୟରେ ମଶାଲ ଜାଳିବା ନିମନ୍ତେ ବିଭିନ୍ନ ମଠ ତରଫରୁ ନିଯୁକ୍ତ ଥିବା ସେବକ ।
(ଶ୍ରୀ.ଶ. - ପୃ. ୧୪୦) ।

**ମତ୍ସ୍ୟମାଧବ**-*ସଂ.ବି.*- ଶ୍ୱେତଗଙ୍ଗା ସରୋବର ପରିସରରେ ପୂଜିତ ମାଧବ । ଗୋଟିଏ ମନ୍ଦିରରେ ମତ୍ସ୍ୟ ଓ ଶ୍ୱେତ ମାଧବ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଦିଗକୁ ମୁଖ କରି ବିରାଜିତ । ମତ୍ସ୍ୟ ମାଧବ କଳା ମୁଗୁନି ପଥରରେ ନିର୍ମିତ । ମତ୍ସ୍ୟର ସଙ୍କେତ ନାହିଁ । ମଥାରେ କରଣ୍ଡ (କ୍ଷୁଦ୍ର ଅଳଙ୍କାର ବିହୀନ) ମୁକୁଟ, କର୍ଣ୍ଣରେ କୁଣ୍ଡଳ ରହିଛି । ଏହାଙ୍କ ଉପର ଓ ତଳ ବାମହସ୍ତରେ ଯଥାକ୍ରମେ ଶଙ୍ଖ ଓ ଗଦା, ଉପର ଓ ତଳ ଦକ୍ଷିଣ ହସ୍ତରେ ପଦ୍ମ ଓ ଚକ୍ର ରହିଛି ।
(ପୁ.ବୋ. - ପୃ. ୨୮୭) ।

**ମସାଲ୍‌ଚି**-*ଦେ.ବି.*- ଏ ହେଉଛନ୍ତି ଦିହୁଡ଼ିଆ । ରାତ୍ରିରେ ଦିହୁଡ଼ି ଧରି ଠିଆ ହେବା ସେବକ ବା ଧୂପ ସମୟରେ ମଶାଲ ଜାଳିବା ସେବକ ।
(ପୁ.ବୋ. - ପୃ. ୨୭୯) ।

**ମହନ**-*ଦେ.ବି.*- ଅସଲ ଦେଉଳକୁ ଲାଗିଥିବା କ୍ଷୁଦ୍ରତର ଦେଉଳ । ଜଗମୋହନ । ପୁରୀର ଶ୍ରୀଲକ୍ଷ୍ମୀ ଠାକୁରାଣୀଙ୍କ ମହନ । ରାଧାମୋହନ ଓ କୃଷ୍ଣମୋହନ ଆଦି ବ୍ୟକ୍ତିଙ୍କର ଡାକ ନାମ । (ପୂ.ଓ.ଭା. - ପୃ. ୬୩୪୬) ।

**ମହନ୍ତ**-*ସଂ.ବି.*- ମଠର ମାର୍ଫତଦାର । ସଂକୀର୍ତ୍ତନମଣ୍ଡଳୀର ବା ଆଖଡ଼ାର କର୍ତ୍ତୃତ୍ୱଭାର ପରିଚାଳକ ବ୍ୟକ୍ତି । ଗଉଡ଼ ଆଦି ହାଟୁଆ ଜାତିମାନଙ୍କର ସାମାଜିକ ଅନୁଶାସନ ଓ ନିୟମ ଚଳାଇବା ମୁଖ୍ୟ ବ୍ୟକ୍ତି । ପୁରୀରେ ବହୁ ସମ୍ପ୍ରଦାୟର ମଠ ଥିବାରୁ ପ୍ରତି ମଠରେ ମହନ୍ତ ଅଛନ୍ତି । ମହନ୍ତ, ଯାହାର ସକଳ ଶୁଦ୍ଧ, ଯିଏ ପ୍ରଶାନ୍ତ, କ୍ରୋଧଶୂନ୍ୟ, ସାଧୁ ଓ ସଦାଚାରୀ । ଯିଏ ସକଳ ପ୍ରାଣୀଙ୍କୁ ସମାନ ଦୃଷ୍ଟିରେ ଦେଖେ, ସେ ମହତ୍ ଅବା ମହନ୍ତ । ସେ ପୁତ୍ର-କଳତ୍ର, ଧନ, ମିତ୍ରାଦିରେ ବନ୍ଧନଯୁକ୍ତ ନୁହଁନ୍ତି । ସେ ସର୍ବଦା ପୁରୁଷାର୍ଥ ଜ୍ଞାନ ଲାଭରେ ଲିପ୍ତ । ପୁରୀର ମଠର ଶ୍ରୀଜଗନ୍ନାଥଙ୍କ ନୀତିକାନ୍ତିରେ ସକ୍ରିୟ ଅଂଶ ଗ୍ରହଣ କରି ଠାକୁରଙ୍କ କାର୍ଯ୍ୟ ନିର୍ବାହ କରନ୍ତି । (ଓ.ସାଂ.ଶ. - ପୃ. ୨୯୪, ପୂ.ଓ.ଭା. - ପୃ. ୬୩୪୭) ।

**ମହନ୍ତାଇ**-*ଦେ.ବି.*- ମଠର ମହନ୍ତ ଆସନରେ ବା ଗାଦିରେ ଆସୀନ ହେବା । ମହନ୍ତଗିରି ।
(ପୁ.ବୋ. - ପୃ. ୨୭୯) ।

**ମହାଅଣସର**-*ସଂ.ବି.*- ଜ୍ୟେଷ୍ଠ ପୂର୍ଣ୍ଣିମା ଠାରୁ ଆଷାଢ଼ ଅମାବାସ୍ୟା ପର୍ଯ୍ୟନ୍ତ ଏହି ପନ୍ଦରଦିନ ଶ୍ରୀଠାକୁରମାନେ ଅଣସର ଘରେ ରହିଥାନ୍ତି । କିନ୍ତୁ ନବକଳେବରର ଅବଧି ଆଉ ଏକମାସ କାଳ ଯୋଡ଼ା ଆଷାଢ଼ ଯୋଗୁ ବଢ଼ିଯାଏ । ଏଣୁ ଅଣସରର କାଳ ବଢ଼ିଯିବାରୁ ଏହାକୁ ମହାଅଣସର କୁହାଯାଏ । ଏହାର କାଳ ଦୋଆଷାଢ଼ି ଯୋଗୁ ପଇଁତାଳିଶି ଦିନ ହୋଇଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୨-୬୪, ପୁ.ବୋ. - ପୃ. ୨୭୯) ।

**ମହାକାର୍ତ୍ତିକ**-*ଦେ.ବି.*- ମହାପୁଣ୍ୟମୟ କାର୍ତ୍ତିକମାସ । ଏହିପରି ମହାବୈଶାଖ ଓ ମହାମାଘ ଶବ୍ଦମାନଙ୍କର ପ୍ରୟୋଗ ଅଛି । ଯେଉଁ

କାର୍ତ୍ତିକ ପୂର୍ଣ୍ଣିମାରେ ରୋହିଣୀ ନକ୍ଷତ୍ର ପଡ଼େ ତାହାକୁ ମହାକାର୍ତ୍ତିକ କହନ୍ତି ।
(ପୂ.ଓ.ଭା. - ପୃ. ୬୩୫୫) ।

**ମହାକାଳୀ ବା ବେଢ଼ାକାଳୀ**- ରୁଦ୍ରାଣୀ, ଶିବପତ୍ନୀ, କାଳୀ, ଶ୍ୟାମା, ପାର୍ବତୀଙ୍କ ରୂପ ବିଶେଷ । ଏହାଙ୍କର ପଞ୍ଚମୁଖ ଓ ଅଷ୍ଟଭୁଜ ଥିବାର ପୁରାଣରେ ବର୍ଣ୍ଣିତ । କାର୍ତ୍ତିକ ଅମାବାସ୍ୟା ଅର୍ଦ୍ଧରାତ୍ରରେ ମହାକାଳୀ ପୂଜା ହୁଏ । ଶ୍ରୀମନ୍ଦିର ଭିତର ବେଢ଼ାରେ ବେଢ଼ାକାଳୀ ପୂଜିତା ।
(ଶ୍ରୀ.ସ୍ୱ. ୧ମ - ପୃ. ୨୨୯) ।

**ମହାଖଳା**-*ଦେ.ବି.*- ଶ୍ରୀକ୍ଷେତ୍ରରେ ବଡ଼ଦାଣ୍ଡରେ ଥିବା ଶ୍ରୀନବର ସମ୍ମୁଖରେ ଯେଉଁ ସ୍ଥାନରେ ରଥ ନିର୍ମାଣ କାର୍ଯ୍ୟ ହୁଏ ତାହା ମହାଖଳା ନାମରେ କଥିତ ।
(ପୁ.ବୋ. - ପୃ. ୨୭୯) ।

**ମହାଖଳାପଦା**-*ଦେ.ବି.*- ଦଶହରା ଦିନ, ଆଶ୍ୱିନ ଶୁକ୍ଳ ଦଶମୀ ତିଥିରେ ଠାକୁର ପାଲିଙ୍କିରେ ଦୁର୍ଗାମାଧବ ରଥରେ ମଦନମୋହନ ବିମାନ ଯୋଗେ ଦଶହାରା ପଦା ବା ମହାଖଳାକୁ ବିଜେ କରନ୍ତି । ସେଠାରେ ମୁଦିରସ୍ତ ସେବକ ସମସ୍ତ ଠାକୁରଙ୍କୁ ପ୍ରସାଦ ଲାଗି କରନ୍ତି ଓ ପରେ ପରେ ଶୀତଳ ଭୋଗ ହୋଇ ବନ୍ଦାପନା ହେଲେ ବାହୁଡ଼ା ବିଜେ ହୋଇଆସି ମାଧବ ସିଂହାସନଙ୍କୁ ଦୁର୍ଗା ଭଣ୍ଡାରକୁ ଓ ଅନ୍ୟ ତିନିଠାକୁର ଦକ୍ଷିଣି ଘରକୁ ବିଜେ କରନ୍ତି । ଏହି ଠାକୁରମାନେ ଆଜ୍ଞାମାଳ ପାଇ ବିଜେ କଲା ଉତ୍ତାରୁ ଭୋଗ ଅର୍ପଣ ହୁଏ । ଏହା ପରେ ଦିଅଁ ଫେରି ଆସିଲା ପରେ ସର୍ବସାଧାରଣ ଦର୍ଶନ ଦିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୯) ।

**ମହାଖଳା ପରିଛା**-*ଦେ.ବି.*- ମହାଖଳାରେ ଯେଉଁ ସେବକ ବିଭିନ୍ନ ନୀତି ବିଭିନ୍ନ ସମୟରେ ସମ୍ପାଦନ କରନ୍ତି ।
(ଶ୍ରୀ.ଶ. - ପୃ. ୧୪୧) ।

**ମହାଖୁଡ଼**-*ଦେ.ବି.*- ଶ୍ରୀମନ୍ଦିରର ମହାନାୟକ ସେବକ ଭିତରଛ ମହାପାତ୍ର ଜନ୍ମାଷ୍ଟମୀ ପରେ ନନ୍ଦବେଶରେ ଯେଉଁ ସେବା କରନ୍ତି, କର୍ମାଙ୍ଗୀ ମାଦଳାରେ ତାହାକୁ ମହାଖୁଡ଼ ସେବା କୁହାଯାଇଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୧, ଓ.ସାଂ.ଶ. - ପୃ. ୨୯୪) ।

**ମହାଜନ ସେବା**-*ଦେ.ବି.*- ଏମାନେ ଦକ୍ଷିଣି ଘରର ସମସ୍ତ ଠାକୁରଙ୍କ ସେବା ଓ ବଲ୍ଲଭ ଭୋଗ କରନ୍ତି । ଏହି ସେବକମାନେ ଦକ୍ଷିଣି ଘରେ ବିଜେ ସମସ୍ତ ଦେବତାମାନଙ୍କୁ ସକଳ ବିଜେ ପ୍ରତିମାଙ୍କୁ ଯେତେବେଳେ ବିଜେ ହେବେ, ଏମାନେ ବିଜେ କରାନ୍ତି । ବିମାନବଡୁ ବିଜେ ଠାକୁରଙ୍କୁ ଚାପ, ଚନ୍ଦନ, ବେଷ୍ଟ ଇତ୍ୟାଦି ଯେଉଁ ସ୍ଥାନକୁ ନିଅନ୍ତି, ପାଳିଆ ମହାଜନ ତାଙ୍କ ସହ ଯିବେ । ଦମନକ ଚୋରୀ ଅଧିବାସ ଗୃହରେ ଥିବା ଲକ୍ଷ୍ମୀ, ସରସ୍ୱତୀ, ମଦନମୋହନଙ୍କୁ ବଲ୍ଲଭ ଭୋଗ କରନ୍ତି । ରାମଜନ୍ମରେ ଦଶରଥ, କୌଶଲ୍ୟା, କୃଷ୍ଣଜନ୍ମରେ ବାସୁଦେବ, ଦେବକୀ, ନନ୍ଦ, ଯଶୋଦା, ବାମନ ଜନ୍ମରେ ଅଦିତି, କଶ୍ୟପ ହୋଇ ବସନ୍ତି । ଶ୍ରୀଗୁଣ୍ଡିଚା ସମୟରେ ଲକ୍ଷ୍ମୀ, ସରସ୍ୱତୀ ଖଟ ଶେଯ ଘରେ ରଖିଲେ ଚଞ୍ଚଳ ଭୋଗ କରନ୍ତି । ରାଜେନ୍ଦ୍ରାଭିଷେକ ଦିନ କୁତ କଉତୁକ ରକ୍ଷି ସାଜନ୍ତି । ଗୁରୁବାର ମାଜଣା କରନ୍ତି । ଚନ୍ଦନ ଯାତ୍ରା ଏକୋଇଶି ଦିନ ମଦନମୋହନଙ୍କୁ ଏକୋଇଶି ପ୍ରକାର ବେଶ କରନ୍ତି । ଦକ୍ଷିଣି ଘରେ ଯେତେ ଭେଟ ପଇସା ମିଳେ ଉପସ୍ଥିତ ସମସ୍ତ ମହାଜନ ବାଣ୍ଟି ନିଅନ୍ତି । ବିଜେ ପ୍ରତିମାଙ୍କୁ ବିଜେ ସ୍ଥଳରେ ଓ ବାଟରେ ଯାହା ଭେଟ ମିଳେ, ତାହା ପାଳିଆ ମହାଜନ ନିଅନ୍ତି । ପସରାରୁ ରକୁଣାହରଣ ଏକାଦଶୀକୁ ଦୁଇ ସରପୁଳି ପିଠା ପାଆନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୭୮) ।

**ମହାନଳ**-*ଦେ.ବି.*- ବଳଭଦ୍ରଙ୍କ ଆୟୁଧ 'ହଳ'ର ନାମ ।

**ମହାଜ୍ୟେଷ୍ଠୀ**-*ସଂ.ବି.*- ଜ୍ୟେଷ୍ଠମାସରେ ଜ୍ୟେଷ୍ଠା ନକ୍ଷତ୍ରରେ ବୃହସ୍ପତି ଓ ଚନ୍ଦ୍ର ତଥା ରୋହିଣୀ ନକ୍ଷତ୍ରରେ ସୂର୍ଯ୍ୟ ଥାଇ ଗୁରୁବାର ପୂର୍ଣ୍ଣମୀ ପଡ଼ିଲେ

ତାହାକୁ ମହାଜ୍ୟେଷ୍ଠୀ କୁହାଯାଏ । ଜ୍ୟୋତିଷ ଶାସ୍ତ୍ର ଅନୁସାରେ ଶୁଭଯୋଗ ବିଶେଷ, ରବିବାର ଦିନ ଜ୍ୟେଷ୍ଠମାସର ପୂର୍ଣ୍ଣିମା ହେଲେ, ଜ୍ୟେଷ୍ଠମାସରେ ଗୁରୁବାର ବା ସୋମବାର ଦିନ ଜ୍ୟେଷ୍ଠା ନକ୍ଷତ୍ର ପଡ଼ିଲେ, ଜ୍ୟେଷ୍ଠମାସ ରବିବାର ଦିନ ରୋହିଣୀ ନକ୍ଷତ୍ର ପଡ଼ିଲେ, ଏହିଯୋଗ ହୋଇଥାଏ । କିନ୍ତୁ ମଦନମୋହନଙ୍କ ତୀର୍ଥାଦର୍ଶରେ ଲେଖାଅଛି ଯେ, ଜ୍ୟେଷ୍ଠମାସର ପୂର୍ଣ୍ଣିମା ଗୁରୁବାର ଦିନ ହେଲେ ଓ ଚନ୍ଦ୍ର ଏବଂ ବୃହସ୍ପତି ଜ୍ୟେଷ୍ଠା ନକ୍ଷତ୍ରରେ ରହିଲେ ଏହି ଶୁଭଯୋଗ ପଡ଼େ । ଏ ଦିନ ଶ୍ରୀଜୀଉଙ୍କ ମହାଜ୍ୟେଷ୍ଠୀ ହୋଇଥାଏ ।
(ପୂ.ଓ.ଭା. - ପୃ. ୬୩୫୯, ପୁ.ବୋ. - ପୃ.୨୭୮) ।

**ମହାଦୀପ**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତ୍ୟେକ ଏକାଦଶୀ ଦିନ ରାତ୍ରରେ ମହାଦୀପ ଆଳତି ହୁଏ । ସନ୍ଧ୍ୟା ଧୂପ ପରେ ଗରୁଡ଼ ସେବକ, ଚୂନରା ତିନିଟା ରୂପା କଳସରେ ଘିଅ ଓ ପ୍ରତ୍ୟେକରେ କଦଳୀ ବାସୁଙ୍ଗାରେ ନୂଆ କନା ଗୁଡ଼ାଇ ବଳିତା କରିଥାଏ । କଳସରେ ବାସୁଙ୍ଗା ବୁଡ଼ିଥାଏ । ବଳିତା କାଠି ଉପରକୁ ଥାଏ । ଚୂନରା ତାହା ଧରି ରତ୍ନ ସିଂହାସନ ପାଖକୁ ଯାଏ ଓ ତାହା ପତି ହାତରେ ଦିଏ । ପତି ବଳିତା ଲଗାଇ ତିନିବାଡ଼ରେ ତିନି ପଣ୍ଡାଙ୍କୁ ଦିଏ । ସେମାନେ ସଂସ୍କାର କରି ମହାଦୀପ ଆଳତି କରନ୍ତି । ସିଂହାସନ ଚାରିପଟେ ବେଢ଼ା ବୁଲେ ଜୟ ବିଜୟ ଦ୍ୱାରବାଟ ଦେଇ ଗଣେଶଙ୍କ ରାସ୍ତା ଦେଇ ମହାଦୀପ ଧରି ଶ୍ରୀ ଶ୍ରୀ ବିମଳା ମନ୍ଦିର ପର୍ଯ୍ୟନ୍ତ ଯାଆନ୍ତି । ଏହି ସମୟରେ ଘଟୁଆରି, ଚୂନରାକୁ ବାରଟି ଚନ୍ଦ୍ର ଉଦିଆ ଦିଅନ୍ତି । କଳସ ରଖିଦେଇ ମହାଦୀପ, ଚନ୍ଦ୍ରଉଦିଆ ଧରି ତିନିଜଣ ଚୂନରା ମନ୍ଦିର ଉପରକୁ ଯାଆନ୍ତି । ସାଙ୍ଗରେ ନଡ଼ିଆ କତା ଲଗାଇ ନିଅାଁ ନେଇଥାନ୍ତି । ଦଧିନଉତି ତଳେ ଠିଆହୋଇ ତୁଳସୀ ଚନ୍ଦନ ନୀଳଚକ୍ରକୁ ଲାଗିକରି ଚାରିପଟେ ତିନି ଘେରା ବୁଲନ୍ତି ଓ ଚନ୍ଦ୍ରଉଦିଆ ପ୍ରତ୍ୟେକ ଦିଗରେ ତିନିଟି ଲେଖାଏ ଢାଳନ୍ତି ।
(ଶ୍ରୀ.ସ୍ୱ. ୨ୟ- ପୃ. ୪୧/୪୨, ପୂ.ଓ.ଭା. - ପୃ. ୬୩୭୧) ।

**ମହାଦେଈ**-*ଦେ.ବି.*- ପୁରୀ ଗଜପତି ମହାରାଜାଙ୍କ ମାତା ଅର୍ଥାତ୍ ରାଜମାତା । ଶ୍ରୀ ଲକ୍ଷ୍ମୀ ଦେବୀ ।
(ଶ୍ରୀ.ଶ. - ପୃ. ୧୪୧) ।

**ମହାଦେଈ ଭୋଗ**-*ଦେ.ବି.*- ଚାଉଳ ମୁଗର ଖେଚୁଡ଼ି ଭୋଗ । ତିନିଥାଳି ଖେଚୁଡ଼ିରେ ଅଧକିଲୋ ସରିକି ଘିଅ ଢଳା ଯାଇ ସକାଳ ଧୂପରେ ଲାଗିହୁଏ । ଗଞ୍ଜାମ ଆଠଗଡ଼ ରାଣୀ ଦକ୍ଷିଣ ପାର୍ଶ୍ୱ ଶ୍ରୀରାମଦାସ ମଠ ଜରିଆରେ ଏହି ମହାଦେଈ ଭୋଗ ଥାଳିର ବ୍ୟବସ୍ଥା କରିଥିଲେ ।
(ପୁ.ବୋ. ପୃ. ୧୪୦) ।

**ମହାଦେଈ ସୁଆର**-*ଦେ.ବି.*- ମହାଦେଈ ଭୋଗ ରାନ୍ଧୁଣିଆ, ଅର୍ଥାତ୍ ଯେଉଁ ସୁଆର ମହାଦେଈ ଭୋଗ ରାନ୍ଧନ୍ତି ।
(ପୁ.ବୋ. - ପୃ. ୨୭୯) ।

**ମହାଦେବ**-*ସଂ.ବି.*- ଶିବ, ମହେଶ । ହିନ୍ଦୁମାନଙ୍କର ଶ୍ରେଷ୍ଠ ଦେବତା ତ୍ରୟଙ୍କ ମଧ୍ୟରୁ ଅନ୍ୟତମ ଓ ପରମେଶ୍ୱରଙ୍କ ସଂହାରଶକ୍ତି । ପୁରାଣରେ ବର୍ଣ୍ଣିତ ଅଛି ଯେ, ପ୍ରଥମେ ମହାଦେବ ପରମେଶ୍ୱରଙ୍କ ଦ୍ୱାରା ସୃଷ୍ଟି ହୋଇ ତପସ୍ୟାରେ ପ୍ରବୃତ୍ତ ହେଲେ । ଏହାଙ୍କର ପରିଧାନ ବ୍ୟାଘ୍ର ଚର୍ମ, ସର୍ପ ଏହାଙ୍କର କଟିବନ୍ଧ ଓ ଉତ୍ତରୀୟ । ଦେହ ଭସ୍ମବୋଳା, ମୁଣ୍ଡରେ ଜଟା ଓ ଜଟାରେ ଗଙ୍ଗା ପ୍ରବାହମାନ । ଏହାଙ୍କର ତିନିଟି ଆଖି- ଏଣୁ ତ୍ରିଲୋଚନ, ପାଞ୍ଚଗୋଟି ମୁଖ, ଏହାଙ୍କ ନାମ ପଞ୍ଚାନନ । ନନ୍ଦୀ ଏହାଙ୍କର ପ୍ରଧାନ ପାର୍ଶ୍ୱଚର । ଶ୍ମଶାନରେ ଏହାଙ୍କର ବିଚରଣ, ପ୍ରମଥଗଣ (ଭୂତଗଣ) ଏହାଙ୍କର ସହଚର । ବୃଷଭ ଏହାଙ୍କର ବାହନ । ଶିବ ହେଉଛନ୍ତି ଅତ୍ରିମୁନିଙ୍କର ଶିଷ୍ୟ । ସବୁ ପ୍ରକାର ଅସ୍ତ୍ରଶସ୍ତ୍ରରେ ନିପୁଣ । ତ୍ରିଶୂଳ ଏହାଙ୍କର ପ୍ରଧାନ ଆୟୁଧ । ଏହାଙ୍କ ଧନୁର ନାମ ପିନାକ । ଯୁଦ୍ଧ

ସମୟରେ ଏହା ଧନୁ ରୂପେ ଓ ଅନ୍ୟ ସମୟରେ ଏହା ବାଦ୍ୟ, ଡମ୍ବରୁ ଏହାଙ୍କର ଅନ୍ୟ ଏକ ବାଦ୍ୟ । ଏହାଙ୍କର ତାଣ୍ଡବ ନୃତ୍ୟ ଅତ୍ୟନ୍ତ ଭୟଙ୍କର ଓ ପ୍ରଳୟଙ୍କରୀ । ତ୍ରିପୁରାସୁର ବଧ କରିଥିବାରୁ ଏହାଙ୍କ ନାମ ତ୍ରିପୁରାରୀ । ବିଷ୍ଣୁଙ୍କ ସାହାଯ୍ୟରେ ଜଳନ୍ଧରକୁ ବଧ କରିଥିଲେ । ଥରେ ବିଷ୍ଣୁଙ୍କ ସହ ଯୁଦ୍ଧ କରି ପରାସ୍ତ ହୋଇଥିଲେ । ଏହାଙ୍କ ବାସସ୍ଥାନ କୈଳାସ । ଶ୍ରୀମନ୍ଦିର ପରିସରରେ ୨୧ଟି ଶିବ ମନ୍ଦିର ରହିଅଛି । ସେଗୁଡ଼ିକ ହେଲା ପାତାଳେଶ୍ୱର, ତାଣ୍ଡବେଶ୍ୱର, ମୁକ୍ତେଶ୍ୱର, କ୍ଷେତ୍ରପାଳ, ପଞ୍ଚପାଣ୍ଡବ ଯଥା- ଶ୍ରୀଲୋକନାଥ, ଶ୍ରୀ ଯମେଶ୍ୱର, ଶ୍ରୀ ନୀଳକଣ୍ଠେଶ୍ୱର, ଶ୍ରୀ ମାର୍କଣ୍ଡେଶ୍ୱର ଓ ଶ୍ରୀ କପାଳମୋଚନ ଇତ୍ୟାଦି, ହରି ସହଦେବ, ଅଗ୍ନିଶ୍ୱର, ଈଶାନେଶ୍ୱର, ଶ୍ରୀ ଧବଳେଶ୍ୱର, ଯୋଡ଼ାଲିଙ୍ଗ ମହାଦେବ, ବେଢ଼ା ଲୋକନାଥ, ପର୍ଶୁନାଥ ବା କାଶୀନାଥ, କାଶୀ ବିଶ୍ୱନାଥ, ସିଦ୍ଧେଶ୍ୱର ମହାଦେବ, ଏକାଦଶ ରୁଦ୍ର, ଶ୍ରୀ ଦକ୍ଷିଣେଶ୍ୱର ମହାଦେବ, ଜୟନ୍ତେଶ୍ୱର ମହାଦେବ, ରାମେଶ୍ୱର, ଧବଳେଶ୍ୱର, ଗୋପେଶ୍ୱର ଇତ୍ୟାଦି । ଶ୍ରୀମନ୍ଦିର ଜଗମୋହନରେ ଭୋଗମଣ୍ଡପ ବାହାର କାନ୍ଥରେ ମହାଦେବଙ୍କ ମୂର୍ତ୍ତି ବିରାଜମାନ । ପୂଜା ସମୟରେ ପାଳିଆ ପୂଜାପଣ୍ଡା ବାହାର ଦେଉଳି ଭୋଗରୁ ସାନକାକରା ଏଠାରେ ଭୋଗ କରିଥାନ୍ତି ।
(ପୂ.ଓ.ଭା. - ପୃ. ୬୩୨୧-୨୨, ଶ୍ରୀ.ବେ.ଦେ. - ପୃ. ୧୩୧-୧୩୨) ।

**ମହାର୍ଘ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ । ଏହାକୁ ମଧ ଅଭଡ଼ା କୁହାଯାଏ ।
(ପୁ.ବୋ. - ପୃ. ୨୮୦) ।

**ମହାର୍ଦ୍ଧ ପାଣି**-*ଦେ.ବି.*- ଶ୍ରୀମନ୍ଦିରର ଭୋଗ ପରେ ସୁଆରବଡୁ ଧୂଆଧୋଇ ପାଇଁ ବ୍ୟବହାର କରୁଥିବା ପାଣି ।
(ପୁ.ବୋ. - ପୃ. ୨୮୧) ।

**ମହାଧିନାୟକ**- ଆଦିଶଙ୍କରାଚାର୍ଯ୍ୟ ମହାପ୍ରଭୁଙ୍କୁ ଉଦ୍ଧାର କରିଥିଲେ ଏବଂ ଶ୍ରୀମନ୍ଦିରରେ ମହାପ୍ରଭୁଙ୍କର ସମସ୍ତ ସେବା ପୂଜା ନୀତିକାନ୍ତିରେ ଆମୂଳଚୂଳ ସଂସ୍କାର ଆଣିଥିବାରୁ ମହାରାଜାଙ୍କ ଦ୍ୱାରା ତାମ୍ରପତ୍ର ସନନ୍ଦରେ 'ମହାଧିନାୟକ' ଉପାଧିରେ ଭୂଷିତ ହୋଇଥିଲେ । ପରମ୍ପରାକ୍ରମରେ ଗୋବର୍ଦ୍ଧନପୀଠର ଶଙ୍କର ଭଗବତ୍ ପାଦମାନେ ଶ୍ରୀମନ୍ଦିରର ମହାଧିନାୟକ ଅଟନ୍ତି ।

**ମହାପ୍ରଭୁଙ୍କ ବାଡ଼**-*ଦେ.ବି.*- ଶ୍ରୀମନ୍ଦିର ସେବକ ବିଶେଷ । ଯେଉଁ କେତେକ ସଂଖ୍ୟକ ସେବକ, ପୂଜାପଣ୍ଡା, ପୁଷ୍ପାଳକ କେବଳ ମହାପ୍ରଭୁଙ୍କ ନୀତି ନିର୍ବାହ କରନ୍ତି, ଏମାନେ ମହାପ୍ରଭୁଙ୍କର ବାଡ଼ ନାମରେ ପରିଚିତ, ଠିକ୍ ସେହିପରି ବଡ଼ଠାକୁର ଓ ମା' ସୁଭଦ୍ରାଙ୍କ ବାଡ଼ ମଧ ଅଛି ।
(ଶ୍ରୀ.ସ୍ୱ. - ପୃ. ୬୨) ।

**ମହାପ୍ରଳୟ**-*ସଂ.ବି.*- ବ୍ରହ୍ମାଣ୍ଡର ବିନାଶକାଳ । ଜଣେ ବ୍ରହ୍ମାଙ୍କର ଆୟୁଷ କାଳର ଅବସାନ । ଏହା ୪୩୨ କୋଟି ବର୍ଷରେ ଥରେ ଘଟେ ।
(ପୂ.ଓ.ଭା. - ପୃ. ୬୩୬୭, ଓ.ସାଂ.ଶ. - ପୃ. ୨୯୫) ।

**ମହାପ୍ରଶସ୍ତ**-*ଦେ.ବି.*- ଶ୍ରୀମନ୍ଦିର ସେବକ ବିଶେଷ । ମାପ ସାଇତା କରଣଙ୍କ ସଂଜ୍ଞା ।
(ପୁ.ବୋ. - ପୃ. ୨୭୯) ।

**ମହାପ୍ରଶସ୍ତ ସେବା**-*ଦେ.ବି.*- ଶ୍ରୀମନ୍ଦିର ପରିସରରେ ପର୍ବପର୍ବାଣି ଦିନମାନଙ୍କରେ ଓ ପ୍ରତ୍ୟହ ଠାକୁରଙ୍କ ନୀତିରେ ଭୋଗ ସରିବା ପରେ ମହାପ୍ରସାଦ ଭୋଗ ବାହାରକୁ ଆସିଲେ ଯେଉଁ ସେବକ ଅନ୍ୟ ସେବକମାନଙ୍କୁ ତାଲିକା ଅନୁଯାୟୀ ଖେଇ ବଣ୍ଟନ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୮୨) ।

**ମହାପ୍ରସାଦ**-*ସଂ.ବି.*- ଶତାବ୍ଦୀ ଶତାବ୍ଦୀ ଧରି ଶ୍ରୀକ୍ଷେତ୍ରରେ ଆଧାତ୍ମିକ ଜଗତରେ ଯେଉଁ ପ୍ଲାବନ ସୃଷ୍ଟି ହୋଇଛି ତା'ର କାରଣ କେବଳ ଶ୍ରୀଜଗନ୍ନାଥ ନୁହନ୍ତି ବରଂ ତାଙ୍କୁ ସମର୍ପଣ କରାଯାଉଥିବା ମହାପ୍ରସାଦ । ପ୍ରସାଦର ଅର୍ଥ ଆନନ୍ଦ, ପ୍ରୀତି, ପ୍ରେମ, ପ୍ରସନ୍ନତା, ନିର୍ମଳତା, ପବିତ୍ରତା ଓ ପାବନତା । ଶ୍ରୀଜଗନ୍ନାଥଙ୍କ

ପ୍ରସାଦର ନାମ ମହାପ୍ରସାଦ । ଏହା ମହାନନ୍ଦ, ମହାପ୍ରେମ, ମହାଭାବ ଓ ମହାପବିତ୍ରତା ଆଦିର ପରିଚାୟକ । ଏହା ପୁଣି କୈବଲ୍ୟ ବା ନିର୍ମାଲ୍ୟ ଭାବରେ ଅଭିହିତ । କେବଳ ଶବ୍ଦରୁ କୈବଲ୍ୟ ଶବ୍ଦର ସୃଷ୍ଟି । ଏହାର ଅର୍ଥ ହେଉଛି ଏକମାତ୍ର ପରମ ପଦାର୍ଥ । ମୁକ୍ତି ବା ଭଗବତ ସାନିଧ ଯାହାକିଛି ଭକ୍ତର ପରମ ପଦାର୍ଥ ବା ପରମ କାମନା, କୈବଲ୍ୟ ଭିତରେ ରହିଛି ଏହାରି ପ୍ରାପ୍ତି । ଜୈନଧର୍ମାବଲମ୍ବୀମାନେ କୈବଲ୍ୟ ପ୍ରାପ୍ତିରେ ନିର୍ବାଣ ହୁଏ ବୋଲି ବିଶ୍ୱାସ କରନ୍ତି । ଏହି କୈବଲ୍ୟ ହେଉଛି କେବଳୀ ଭାବ , ଏଥିରେ ରହିଛି ନିର୍ମଳ ଭାବ ଓ ପବିତ୍ରତା । ଶ୍ରୀଜଗନ୍ନାଥ ନିଜେ ପାବନକାରକ, ତେଣୁ ତାଙ୍କର ଅନ୍ୟନାମ ପତିତପାବନ । ମହାପ୍ରସାଦ ସେବନରେ ଉଚ୍ଚନୀଚ ଭେଦଭାବ ନାହିଁ, ନାହିଁ ଜାତି ବିଚାରରେ ସଙ୍କୀର୍ଣ୍ଣତା । ମହାପ୍ରାଣତାର ମହାମାନବିକତାର ମହାନ୍ ପରିପ୍ରକାଶ ରହିଛି ମହାପ୍ରସାଦ ଭିତରେ । ମାନବ ହୃଦୟ ମହାଭାବରେ ଅଭିଭୂତ ହେଲେ ଅପବିତ୍ରତା ଆପେ ଆପେ ଅପସରିଯାଏ । ଅପବିତ୍ର ସ୍ୱତଃ ପବିତ୍ର ହୋଇଯାଏ । ଅପବିତ୍ରତାର ମାରାତ୍ମକତା ମନ ଓ ଦେହକୁ ସ୍ପର୍ଶ କରେ ନାହିଁ । ଶ୍ରୀମହାପ୍ରସାଦର ସେବନରେ ସେଇ ଭାବ ଉଦ୍ରେକ ରହିଛି । ଏଣୁ ଉଚ୍ଛିଷ୍ଟ ମଧ କ୍ଷତିକାରକ ନ ହୋଇ ଅମୃତରେ ପରିଣତ ହୋଇଥାଏ ।

ପୁରୀ ଜଗନ୍ନାଥ ଦେବଙ୍କୁ ନିବେଦିତ ଭୋଗ ପ୍ରସାଦ ବା ମାହାର୍ଦ୍ଦ । ଷଡ଼ଙ୍ଗ ସଂସ୍କାରବଶତଃ ଅନ୍ନତ୍ୱରେ ବ୍ରହ୍ମତ୍ୱର ଆରୋପ କରାଯିବାରେ ନୈବେଦ୍ୟ ମହାପ୍ରସାଦରେ ପରିଣତ ହୁଏ । ଦେବଦେବୀଙ୍କୁ ଭୋଗ ଦିଆଯିବା ନିମନ୍ତେ ଅଭିପ୍ରେତ ବସ୍ତୁକୁ ଅମୁଣିଆ ବୋଲାଯାଏ । ଜଗନ୍ନାଥ ମହାପ୍ରଭୁଙ୍କ ଚତୁର୍ଦ୍ଧାମୂର୍ତ୍ତିଙ୍କ ନିକଟରେ ଭୋଗ ପରେ ହୁଏ ମହାପ୍ରସାଦ । ଶ୍ରେଷ୍ଠ ପ୍ରସାଦ ବା ଭୋଗ । ମହାପ୍ରସାଦରେ ଶୌଚାଶୌଚ, ଭକ୍ଷ୍ୟାଭକ୍ଷ୍ୟ ଓ ସ୍ପୃଶ୍ୟାସ୍ପୃଶ୍ୟ ଦୋଷ ନାହିଁ । ଶୂଦ୍ର ଓ ଚଣ୍ଡାଳ ଛୁଇଁଲେ ମଧ ସେ ମହାପ୍ରସାଦକୁ ବ୍ରାହ୍ମଣ ଭକ୍ଷଣ କରିବା ଶାସ୍ତ୍ର ସିଦ୍ଧ । ବିବାହ ପ୍ରସଙ୍ଗର ବରପକ୍ଷ ଓ କନ୍ୟାପକ୍ଷଙ୍କ ମଧରେ ନିର୍ବନ୍ଧ ବା ଜବାବ୍ ମହାପ୍ରସାଦକୁ ସାକ୍ଷୀ ରଖି କରାଯାଏ । ଏହାକୁ ମହାପ୍ରସାଦ ନିର୍ବନ୍ଧ କହନ୍ତି । ଲୋକେ ମହାପ୍ରସାଦକୁ ଧରି ସତ୍ୟ କରନ୍ତି ଓ ଏହାକୁ ଛୁଇଁ ପ୍ରତିଜ୍ଞା କରନ୍ତି । ମହାପ୍ରସାଦ ସତ୍ୟକୁ ଲଙ୍ଘନ କଲେ ପାପର ଭାଗୀ ହେବାକୁ ହୁଏ । ଯେଉଁ କନ୍ୟା ସମ୍ବନ୍ଧେ ମହାପ୍ରସାଦ ନିର୍ବନ୍ଧ କୁହାଯାଏ ତାକୁ ବାଗ୍‌ଦତ୍ତା କନ୍ୟା କୁହାଯାଏ । ଯେଉଁମାନେ ମହାପ୍ରସାଦ ସତ୍ୟକୁ ଲଙ୍ଘନ କରନ୍ତି ତାଙ୍କୁ ମହାପାପୀ ବୋଲାଯାଏ । (ପୂ.ଓ.ଭା. - ପୃ. ୬୩୬୮, ଓ.ସାଂ.ଶ. - ପୃ. ୨୯୫) ।

**ମହାପାତକ**- *ସଂ. ବି.*- ଅତି ପାପ, ଶ୍ରେଷ୍ଠ ପାତକ । ମହାପାତକ ପାଞ୍ଚ ପ୍ରକାର । ଯଥା- ବ୍ରହ୍ମ ହତ୍ୟା, ଗୁରୁପତ୍ନୀ ହରଣ, ସୁରାପାନ, ପରଦ୍ରବ୍ୟ ହରଣ ଓ ମହାପାପୀଙ୍କ ସଂସର୍ଗ । ମଙ୍ଗଳମୟ ଶ୍ରୀଜଗନ୍ନାଥଙ୍କ ନାମ ଜପ ଦ୍ୱାରା ମହାପାତକ ବିନଷ୍ଟ ହୁଏ ବୋଲି ସାଧାରଣରେ ବିଶ୍ୱାସ । (ଓ.ସାଂ.ଶ. - ପୃ. ୨୯୫) ।

**ମହାବକ୍ରେଶ୍ୱରୀ ଦେବୀ ମନ୍ଦିର**- *ସଂ. ବି.*- ଶ୍ରୀଜଗନ୍ନାଥ ମନ୍ଦିରର ନାଟମଣ୍ଡପର ଦକ୍ଷିଣ ପଟକୁ ଲାଗି ମହାବକ୍ରେଶ୍ୱରୀ ଦେବୀଙ୍କ ମନ୍ଦିର । କେତେକ ମଧ ଏହାକୁ ଇନ୍ଦ୍ରାଣୀ କହିଥାନ୍ତି । ମହାବକ୍ରେଶ୍ୱରୀ ଶ୍ରୀକ୍ଷେତ୍ରର କ୍ଷେତ୍ରପାଳ ଶିବଙ୍କ ଶକ୍ତି ସ୍ୱରୂପା ଅଟନ୍ତି । କଳ୍ପବଟ ନିକଟସ୍ଥ ଶ୍ରୀମାର୍କଣ୍ଡେଶ୍ୱର ମନ୍ଦିର ସାମ୍ନାରେ ମାଜଣା ମଣ୍ଡପ ଆଡ଼କୁ ଯିବାବେଳେ ଡାହାଣ ପାର୍ଶ୍ୱରେ ଏହି ମନ୍ଦିର ପଡ଼ିଥାଏ । ମନ୍ଦିରଟି ଦକ୍ଷିଣାଭିମୁଖୀ, ଏହାର ପଶ୍ଚାତ୍ ଭାଗ ଭୋଗ ରାସ୍ତାକୁ ସଂଲଗ୍ନ ଅଛି । ମନ୍ଦିରର ମଧ ଭାଗରେ ଦେବୀ ଇନ୍ଦ୍ରାଣୀ ବିରାଜମାନ କରିଥିବା ବେଳେ ତାଙ୍କ ସିଂହାସନର ନିମ୍ନ ଭାଗରେ ଶିବଲିଙ୍ଗ ବିରାଜିତ ହୋଇଛନ୍ତି । କଥିତ ଅଛି ଯେ,

ମା' ଇନ୍ଦ୍ରାଣୀ ରୋଷ ପାର୍ଶ୍ୱରେ ଥିଲେ । ସେଠାରେ ରୋଷ ନିର୍ଗତ ଧୂଆଁ ଯୋଗୁ ଅସହ୍ୟବୋଧ ହେବାରୁ ଠାକୁରାଣୀଙ୍କ ସ୍ୱପ୍ନାଦେଶ ପରେ ଏଠାରେ ପୂଜା ପାଉଛନ୍ତି ।
(ଶ୍ରୀ.ସ୍ୱ.-ପୃ ୨୧୪, ଶ୍ରୀ.ବେ.ଦେ.-ପୃ ୪୬) ।

**ମହାବାହୁ**-*ସଂ. ବି.*- ମହାନ୍ ବାହୁ ଯୁକ୍ତ । ମହାବାହୁ କହିଲେ ଶ୍ରୀଜଗନ୍ନାଥଙ୍କୁ ହିଁ ବୁଝାଇଥାଏ । ଏ ସମ୍ବୋଧନ ଭକ୍ତଜନର ଅତ୍ୟନ୍ତ ପ୍ରିୟ ଓ ଲୋଭନୀୟ ସମ୍ବୋଧନ ଭାବରେ ଗ୍ରହଣୀୟ । ମହାଭାରତର ଉଦ୍ୟୋଗ ପର୍ବରେ ଭଗବାନଙ୍କ ଚବିଶଟି ନାମ ମଧ୍ୟରେ ମହାବାହୁ ନାମଟି ସ୍ଥାନିତ । ଏହି ମହାବାହୁ ନାମରେ ଶ୍ରୀଜଗନ୍ନାଥଙ୍କର ପ୍ରସିଦ୍ଧି ରହିଛି । ଏହା 'ବଳିୟାରଭୁଜ'ର ଏକ ବିକଳ୍ପ ।
(ପୂ.ଓ.ଭା. - ପୃ. ୬୩୭୧) ।

**ମହାବୀର ପିଠା**-*ଦେ. ବି.*- ଶ୍ରୀମନ୍ଦିରର ଏକ ପ୍ରକାର ପିଷ୍ଟକ ବିଶେଷ । ଠାକୁରଙ୍କୁ ଭୋଗ ଲାଗି ହୁଏ ।
(ଉ.ଇ.ଅ.ଅ. - ପୃ. ୩୨୪) ।

**ମହାବିଷ୍ଣୁ** - *ସଂ. ବି.*- କାରଣାର୍ଣ୍ଣବଶାୟୀ ପ୍ରଥମ ପୁରୁଷ, ପରମବ୍ରହ୍ମ ।
(ଓ.ସାଂ.ଶ. - ପୃ. ୨୯୫) ।

**ମହାବିଷୁବ**-*ସଂ. ବି.*- ବୈଶାଖ ସଂକ୍ରାନ୍ତି । ରବିଙ୍କର ମେଷରାଶିକୁ ଚଳନ । ଏହି ଦିବସଠାରୁ ସୌରବର୍ଷର ପ୍ରଥମ ଗଣନା ଆରମ୍ଭ ହୁଏ । ଏହା ସୌର ବୈଶାଖର ପ୍ରଥମ ଦିବସ । ଏହିଠାରୁ ନୂତନ ଶକାବ୍ଦ ଗଣନାର ଆରମ୍ଭ । ଏହି ଦିନ ଶ୍ରୀମନ୍ଦିରରେ ଦୈନନ୍ଦିନ ନୀତି ସହିତ କେତେକ ବିଶିଷ୍ଟ ଭୋଗର ବ୍ୟବସ୍ଥା ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୧୭, ପୂ.ଓ.ଭା. - ପୃ. ୬୩୭୨) ।

**ମହାବେଦୀ**-*ସଂ. ବି.*- ଶ୍ରୀକ୍ଷେତ୍ରର ଗୁଣ୍ଡିଚା ମଣ୍ଡପକୁ ମହାବେଦୀ କୁହାଯାଏ । ରଥଯାତ୍ରା ସମୟରେ ତିନିରଥ ଶ୍ରୀମନ୍ଦିରଠାରୁ ଏହି ସ୍ଥାନକୁ ଆସନ୍ତି ଓ ଗୁଣ୍ଡିଚା ମଣ୍ଡପ ମହାବେଦୀରେ ଅବସ୍ଥାନ କରନ୍ତି ।
(ପୂ.ଓ.ଭା. - ପୃ. ୬୩୭୩,) ।

**ମହାଭୋଇ ସେବକ**-*ଦେ. ବି.*- ଶ୍ରୀମନ୍ଦିରର ମୁଖ୍ୟ ଗଉଡ଼ ସେବକ କିମ୍ବା ପର୍ବଯାତ୍ରାଦିନମାନଙ୍କରେ ଠାକୁରଙ୍କୁ ଦୁଗ୍ଧ ବା ଦୁଗ୍ଧଜାତ ଦ୍ରବ୍ୟ ଯୋଗାଇବା ସେବକ । ଅବକାଶରେ ଶ୍ରୀମୁଖ ପ୍ରକ୍ଷାଳନ ପାଇଁ ଦହି ଯୋଗାନ୍ତି । ନବାଙ୍କ ପୂର୍ବଦିନ ରୋଷଘର ନିକାମ ଦୁଆରରୁ ଘଣ୍ଟ ଛତା କାହାଳୀ ପଟୁଆରରେ ରାମକୃଷ୍ଣଙ୍କ ଆଗରେ ଶିକା ବାହୁଙ୍ଗି ଓ ଘଡ଼ି ନେଇ ଜଗନ୍ନାଥ ବଲ୍ଲଭ ସମ୍ମୁଖ ଗୋଷ୍ଠକୁ ଶୋଧନ ନୀତି କରନ୍ତି । ଜଗନ୍ନାଥ ବଲ୍ଲଭରୁ ଗାଈଟିଏ ଅଣାଯାଏ । ମହାଭୋଇ ରୂପା ପିଙ୍ଗଣରେ ଗାଈ ଦୁହଁନ୍ତି । ସେଥିରୁ ଅର୍ଦ୍ଧେକ ଦୁଗ୍ଧରେ କର୍ପୂର ପଡ଼ି ରାମକୃଷ୍ଣଙ୍କୁ ଭୋଗ କରାଯାଏ । ଅବଶିଷ୍ଟ ଦୁଧ କୀର୍ତ୍ତନ ଚକଡ଼ାରେ ନୂଆ ପଲମରେ ଫୁଟା ହୋଇ ଦୁଧ ମେଲାଣ ହୁଏ । ମକର ସଂକ୍ରାନ୍ତି ଦିନ ମହାଭୋଇ ଦହି ଧରି କଳାହାଟ ଦ୍ୱାରକୁ ଆସନ୍ତି । ସେଠାରେ ସୁଆରବଡୁ ସେ ଦହିକୁ ଓଲଟାଇ ମହାଭୋଇଙ୍କ ହାତରେ ଦିଅନ୍ତି । ମହାଭୋଇ ତାକୁ ଧରି ଥରେ ବେଢ଼ା କରି ପୁଣି କଳାହାଟ ଦ୍ୱାରରେ ସୁଆରବଡୁଙ୍କ ହାତରେ ଦେଇଥାଆନ୍ତି । ନନ୍ଦୋତ୍ସବ ଦିନ ଭରତିଆ ଗଉଡ଼ ବେଶରେ ସ୍ନାନବେଦୀରେ ନନ୍ଦବେଶୀ ଭିତରଛଙ୍କୁ ପୁତ୍ରଜନ୍ମର ସମାଚାର ଜଣାନ୍ତି । କାଳୀୟଦଳନ ଏକାଦଶୀ ଦିନ ମଦନମୋହନ ଓ ରାମକୃଷ୍ଣଙ୍କୁ ଲବଣୀଖିଆ ମଣ୍ଡପକୁ ପାଛୋଟି ନିଅନ୍ତି । ମଣ୍ଡପରେ ଲବଣୀପନ୍ତି ବଢ଼ିବା ପରେ ମହାଭୋଇ ଘରର ବୋହୂମାନେ ପାରମ୍ପରିକ ବେଶରେ ପାହୁଡ଼, ବିଦ, ଗୋଡ଼ଖଡୁ, ମଗରବସା ଖଡୁ, ବାରଲାଗି ଖଣ୍ଡୁଆ ମୁଣ୍ଡରେ ପକାଇ ଅଳଙ୍କାରରେ ସଜ୍ଜିତ ହୋଇ ବନ୍ଦାପନା ଓ ଆଳତି କରନ୍ତି । ଭାଦ୍ରବ ଶୁକ୍ଳ ଦଶମୀ ଦିନ କୁଣ୍ଢେଇବେଣ୍ଟ ସାହି ଲବଣୀଖିଆରେ ଅନୁରୂପ ସେବା କରନ୍ତି । ଏଠାକୁ କେବଳ ରାମକୃଷ୍ଣ ବିଜେ କରନ୍ତି । ଏହାଙ୍କ ଅଧୀନରେ କିଛି ସେବକ କାମ କରିଥାନ୍ତି ।
(ପୁ.ବୋ. - ପୃ. ୨୮୦) ।

**ମହାରଣା ସେବକ** - ଦେ.ବି.- ଶ୍ରୀମନ୍ଦିରର ଏକ ସେବକ । ଏମାନେ ଭିନ୍ନ ଭିନ୍ନ କାମ ପାଇଁ ଭିନ୍ନ ଭିନ୍ନ ନାମରେ ନାମିତ ହୋଇଥାନ୍ତି । ପଥୁରିଆ ମହାରଣା (ମନ୍ଦିର ମରାମତି) ଚିତ୍ରକାର ମହାରଣା (ଚିତ୍ର ଓ ରଙ୍ଗ), ରୂପକାର ମହାରଣା (ମୂର୍ତ୍ତି ଗଢ଼ନ୍ତି), କଂସାରି ମହାରଣା (କଂସାବାସନ ଯୋଗାଏ), ଅଷ୍ଟଲୋହୀ ମହାରଣା (ଲୌହ ଧାତୁ) ସିପୁଟି ମହାରଣା (ଦର୍ଜି) (ସିପୁଟି - ସିଲେଇ), ବଢ଼େଇ ମହାରଣା (ରଥକାମ କରନ୍ତି) । (ଉ.ଇ.ଅ.ଅ. - ପୃ. ୩୪୮) ।

**ମହାରଥି ସେବା** - *ଦେ.ବି.*- ଲକ୍ଷ୍ମଣ ରୂପେ ଭିତରଛ ମହାପାତ୍ରଙ୍କ ସେବା । ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମଚନ୍ଦ୍ର ରୂପେ କଳ୍ପନା କରି ଭିତରଛ ମହାପାତ୍ର ଲକ୍ଷ୍ମଣ ରୂପେ କାର୍ଯ୍ୟ କରିଥାଆନ୍ତି । (ପୁ.ବୋ. - ପୃ. ୨୮୦) ।

**ମହାଲକ୍ଷ୍ମୀ** - *ସଂ.ବି.*- (ସ୍ତ୍ରୀ) - ନାରାୟଣୀ । ଧନଦା ଦେବୀ, ବିଭବ, ସମ୍ପତ୍ତି । ଦୁର୍ଗାପୂଜାରେ ଦୁର୍ଗା ରୂପେ କଳ୍ପିତା ତଥା ପୂଜିତା । ମାର୍ଗଶିର ମାସ ପ୍ରତି ଗୁରୁବାର ଦିନ ଲକ୍ଷ୍ମୀ ପୂଜନ ଉତ୍ସବ ମାଣବସା ଗୁରୁବାର । କୁମାରୋତ୍ସବ, କୁମାର ପୂର୍ଣ୍ଣିମା, ଆଶ୍ୱିନ ପୂର୍ଣ୍ଣିମା, କୁମାରୀମାନଙ୍କର ଚନ୍ଦ୍ରପୂଜା ଓ ବ୍ରତ । ରଜ ସଂକ୍ରାନ୍ତି (ମିଥୁନ ସଂକ୍ରାନ୍ତି)ର ତୃତୀୟ ଦିବସ ଠାକୁରାଣୀ ଗାଧୁଆ, ଏ ଦିନ ଅତି ପ୍ରତ୍ୟୁଷରେ ସ୍ତ୍ରୀମାନେ ସ୍ନାନାଦି କର୍ମ ପରେ ଅଗଣାରେ ଗୋଟିଏ ସ୍ଥାନ ଲିପାପୋଛା କରି ଓ ମୁରୁଜ ଦେଇ ସେଠାରେ ମହାଲକ୍ଷ୍ମୀଙ୍କୁ କଳ୍ପନା କରି ପୂଜା କରିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୦୦-୧୦୧, ପୂ.ଓ.ଭା. - ୬୩୮୩-୮୪) ।

**ମହାଶ୍ରମ** - ଦେ.ବି.- ବର୍ତ୍ତମାନ ଗଜପତି ମହାରାଜା ସେବା, ପୂର୍ବେ କିନ୍ତୁ ମହାଶ୍ରମ ରାଜ ନିଯୋଗ ଥିବା ଅତି ତାତ୍ପର୍ଯ୍ୟପୂର୍ଣ୍ଣ । କାରଣ କର୍ମାଙ୍ଗିର ପ୍ରତି ସ୍ଥାନରେ ଗଜପତି ରାଜା 'ମହାଶ୍ରମ' ଆଖ୍ୟାରେ ବର୍ଣ୍ଣିତ । ରାଜଗୁରୁ ବିବରଣୀମତେ ଏହାର ଆଖ୍ୟା ଥିଲା ରାଉତ ସେବା । ଶ୍ରୀଜଗନ୍ନାଥଙ୍କ ଏହି ରାଉତ ଉତ୍କଳର ଶାସକ ଅଟନ୍ତେ ମନ୍ଦିର ଶାସନର ସକଳ ଶୀର୍ଷାଧିକାରୀ । ସ୍ୱତ୍ୱଲିପିମତେ ଏହା ଆଦ୍ୟସେବକ ଗଜପତି ମହାରାଜ ସେବା । ଏହା ପୁରୀ ରାଜବଂଶର ପାରମ୍ପରିକ ସେବା । ତହିଁରେ ମନ୍ଦିର ଶାସନ - କର୍ତ୍ତୃତ୍ୱର ସମ୍ପର୍କ ନାହିଁ । ଜ୍ୟେଷ୍ଠାଧିକାର ସୂତ୍ରେ କେବଳ ଏହି ସେବକଙ୍କ ଜ୍ୟେଷ୍ଠପୁତ୍ର ବା ଜେନାମଣି ରାଜା ହେବାରେ ସେବାର ଉତ୍ତରାଧିକାରୀ ହୁଅନ୍ତି । ତେଣୁ ପୁତ୍ର ଜନ୍ମ ନ ହେଲେ ରାଜା ପୋଷ୍ୟ ଗ୍ରହଣ କରନ୍ତି । ରାଜା ହେଲା ପରେ ବି ଏ ବ୍ରତ ବିବାହ ଓ ଅଭିଷେକ ହୋଇ କେବଳ ଏହି ସେବା କରିପାରନ୍ତି । ନଚେତ ମୁଦିରଥ ଏହି ସେବା ଚଳାଇବେ । ସେବା ବାବଦ ଦୈନିକ ଓ ପର୍ବପର୍ବାଣିରେ ଖେଇ ପ୍ରାପ୍ୟ ରୂପେ ପାଇଥାଆନ୍ତି । ନୀତି ମଧ୍ୟରେ ରଥଯାତ୍ରାରେ ତିନି ରଥରେ ବିଜେ ଓ ବାହୁଡ଼ାରେ ଛେରାପହଁରା ଓ ରାଜନୀତି, ଚାପ ଉପରେ ପ୍ରଥମ ଓ ଶେଷ ଦିନ ଏବଂ ସ୍ନାନବେଦୀ ଓ ଦୋଳବେଦୀରେ ଛେରାପହଁରା କରିବାର ବ୍ୟବସ୍ଥା ଅଛି । ଦୋଳପୁନେଇଁ, ବାମନଜନ୍ମ ଆଦିରେ ରାଜ ବେଶମାନରେ ମନ୍ଦିରକୁ ବିଜେ କଲେ ରାଜନୀତି କରିବେ । ଏହିମାନେ ମନ୍ଦିରକୁ ସିଂହଦ୍ୱାର ଯାଏ ପାଲିଙ୍କି ବାଜା ଓ କାହାଳି ସହ ଆସିବେ ଓ ସେଠାରେ ପାଲିଙ୍କି ଛାଡ଼ି କରଣ, ପରିଛା ଓ ଅନ୍ୟ ସେବକ ଭିତରକୁ ବାଜା ଓ କାହାଳୀ ସହ ପାଛୋଟି ଅଣିବେ । ପରିଚ୍ଛା ସୁନାବେତ ଧରି ପାଖେ ପାଖେ ରହିବେ, ଗହଣ ବିଜେରେ ରାଣୀ ସହ ଆସିଲେ ତାଙ୍କ ସବାରି ଭିତରେ ବଟଯାଏ ଯିବ ଓ ମନ୍ଦିର ପୁରାଶୋଧ ହୋଇ କରଣ ଓ ସେବକଗଣ ରୋଷ ଆଡ଼େ ରହି କେବଳ ମୁଦିରସ୍ତ ଗହଣେ ରହି ଦର୍ଶନ କରାଇବେ । ରାଜା, ରାଣୀଙ୍କ ସହ ଦାସୀ ମଧ୍ୟ ରହିବେ । ଏହି ସେବକ ଆଶ୍ୱିନ ପର୍ବରେ ଗୁଆ, ନଡ଼ିଆ ଦେଲେ ବିମଳା ଓ ଅନ୍ୟାନ୍ୟ ଦେବୀ ପୀଠରେ ବ୍ରାହ୍ମଣ ବରଣ ହୋଇ କର୍ମ କରିବେ । ନବକଳେବରରେ

ଦଇତା ଓ ବ୍ରାହ୍ମଣଙ୍କୁ ଗୁଆ ଟେକିବେ । ଲକ୍ଷ୍ମୀନାରାୟଣ ଭେଟରେ ନଅର ଦ୍ୱାରେ ବନ୍ଦାପନା ଆଦି ନୀତି କରିବେ । ଚମ୍ପକ ଦ୍ୱାଦଶୀ (ରକ୍ମିଣୀ ବିଭା) ଦିନ ନଅର ଦାରୁ ଦିଅଁଙ୍କୁ ପାଛୋଟି ନେବେ ଓ ରାଜନୀତି କରିବେ । ନଅରକୁ ରାଜପ୍ରସାଦ ଓ ଖଡ଼ିପ୍ରସାଦ ବିଜେ ହେଲେ ଶାଢ଼ି ଦେବେ । ପ୍ରତ୍ୟହ ମଙ୍ଗଳ ଆଳତି ପ୍ରସାଦ, ପହୁଡ଼ରେ ମହାପ୍ରଭୁଙ୍କ ବାଡ଼ର ପଇଡ଼, ମାଳଚୂଳ, ଚର୍ଚ୍ଚାବାଲା, ମୁଖ ପଖାଳ ପଡ଼ିଆରୀ ଦୈନିକ ଅବକାଶ ଜଳ ନେଇ ଦେଇଥାନ୍ତି । ପ୍ରତ୍ୟେକ ଧୂପ, ପର୍ବ, ଶ୍ରାଦ୍ଧ ଓ ସ୍ୱନକ୍ଷତ୍ରରେ ନଅର ଡାଟ ଯିବ । ରାଜାରାଣୀ ଓ ତାଙ୍କ ସନ୍ତାନଙ୍କ ସ୍ୱନକ୍ଷତ୍ରରେ ମନ୍ଦିରରେ ଅଧିକ ଭୋଗ ହୋଇ ଟାଟ ଯିବ ।

(ଶ୍ରୀ.ସ୍ୱ. ୧ମ - ପୃ. ୧୨/୧୩, ଶ୍ରୀ.ଜି. - ୧୫୮) ।

**ମହାଶ୍ରମ ରାଜନିଯୋଗ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଆଦ୍ୟ ସେବକ ଗଜପତି ମହାରାଜା ଓ ତାଙ୍କ ନିଯୋଗ ।

(ଶ୍ରୀ.ଜି. - ପୃ. ୧୧୩) ।

**ମହାଷ୍ଟମୀ**-*ସଂ.ବି.*- ଆଶ୍ୱିନ ଶୁକ୍ଳ ଅଷ୍ଟମୀକୁ ମହାଷ୍ଟମୀ କୁହାଯାଏ । ଶ୍ରୀମନ୍ଦିରରେ ବିମଳାଙ୍କ ପୀଠରେ ଏହା ଅଷ୍ଟମୀ ପୂଜା ଭାବରେ ପାଳିତ ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୯୮) ।

**ମହାସ୍ନାନ**-*ଦେ.ବି.*- ଶ୍ରୀମନ୍ଦିରରେ ଅଶୌଚ ବେଳେ ଶ୍ରୀଠାକୁରଙ୍କ ସ୍ନାନ ଓ ମନ୍ଦିର ଧୌତ ବିଧି- ମହାସ୍ନାନ ନାମରେ କଥିତ । ଶ୍ରୀମନ୍ଦିର ପରମ୍ପରାରେ ସାହାଣମେଲା ସମୟରେ ଯଦି କୌଣସି ଲୋକ ଠାକୁରଙ୍କ ଶ୍ରୀଅଙ୍ଗକୁ ହାତବଢ଼ାଇ ସ୍ପର୍ଶକରେ, କିମ୍ବା କୌଣସି ଯାତ୍ରୀ, ଝାଡ଼ା ପରିସ୍ରା ବା ବାନ୍ତିକରେ କିମ୍ବା ରକ୍ତ ବା ଛେପ ପକାଇଥାଏ, ତେବେ ଠାକୁରଙ୍କର ମହାସ୍ନାନ ହୁଏ । ଛୁଆଁ ହେତୁ ମହାସ୍ନାନ ହେଲେ ମନ୍ଦିର ଧୂଆଯାଏ ନାହିଁ । କେବଳ ପୂଜାପଣ୍ଡା ଆସି ମନ୍ତ୍ରପଢ଼ି ପଞ୍ଚାମୃତରେ ମହାସ୍ନାନ କରାନ୍ତି । ପାଳିଆ ପୁଷ୍ପାଳକ ଓ ପୂଜା ସମୟରେ ପୂଜାପଣ୍ଡା ଛଡ଼ା ଅନ୍ୟ ସେବକ ମଧ୍ୟ ଛୁଇଁଲେ ଏହା ଛୁଆଁ ଦୋଷ, ଏଣୁ ମହାସ୍ନାନ ହୁଏ । ଛୁଆଁ ଛଡ଼ା ଅନ୍ୟ କୌଣସି ଉପରୋକ୍ତ କାରଣରୁ ମହାସ୍ନାନ ହେଲେ ତାହାକୁ ବଡ଼ ମହାସ୍ନାନ କୁହାଯାଏ । ବଡ଼ ମହାସ୍ନାନରେ ସିଂହାସନଠାରୁ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଧୂଆ ହୁଏ ଓ ଦୋଷ କରିଥିବା ଲୋକଠାରୁ ଜୋରିମାନା ଆଦାୟ କରାଯାଏ । ସାହାଣମେଲା ପରେ ମହାସ୍ନାନ ହେବା ଦରକାର ନ ହେଲେ ଠାକୁରଙ୍କ ବେଶ ହୁଏ (ମହାସ୍ନାନ ହେବା ଦରକାର ହେଲେ ମହାସ୍ନାନ ହୁଏ) । ପରେ ପରବର୍ତ୍ତୀ ନୀତି ଓ ବେଶ ଲାଗି ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୪-୧୫) ।

**ମହାସୁଆର ସେବା**-*ଦେ.ବି.*- ଶ୍ରୀମନ୍ଦିରର ପ୍ରମୁଖ ସୁପକାର ସେବକ । ସକାଳ ଧୂପରେ ଆଣିଥିବା ଜିନିଷ ଥାଳିରେ ରଖନ୍ତି । ଠାକୁରଙ୍କ ଭୋଗ ରାନ୍ଧିବା ଓ ପ୍ରଥମେ ପନ୍ତିକୁ ଛେକ ନେବା କାର୍ଯ୍ୟ ସମ୍ପାଦନ କରନ୍ତି । ପ୍ରତ୍ୟହ ରୋଷ ନାୟକ ସହ ବୁଲି ରୋଷ ପରିଷ୍କାର ଦେଖି ରୋଷହୋମ ପାଇଁ ଅନୁମତି ଦିଅନ୍ତି । ରନ୍ଧନ କାର୍ଯ୍ୟ ତନଖିବା, ହରିବଲ୍ଲଭ ଟାଟପିଠା ନିଜେ ରାନ୍ଧନ୍ତି । ଅବାଞ୍ଛିତ ବ୍ୟକ୍ତି ଯେପରି କୌଣସି ରୋଷରେ ପ୍ରବେଶ ନ କରନ୍ତି ତାହା ଦେଖିବା, ବଲ୍ଲଭରେ ସୁଦସୁଆରଠାରୁ ଭୋଗସାମଗ୍ରୀ ନେଇ ପନ୍ତିରେ ବାଢ଼ିବା, ଗରାବଡୁଠାରୁ ଘଷା ଜଳ ନେଇ ପନ୍ତିରେ ଲଗାଇବା, ତିନିଧୂପ ଓ ବଡ଼ସିଂହାର ପୂଜା ବସିବା ଆଗରୁ ସମସ୍ତ ନୈବେଦ୍ୟ ଠିକ୍ ଭାବରେ ପ୍ରସ୍ତୁତ ହୋଇଛି ନା ନାହିଁ ତାହା ତଦାରଖ କରିବା, ତ୍ରୁଟିଥିଲେ ରୋଷନାୟକାଦିଙ୍କୁ ଜଣାଇବା, ପ୍ରତି ଧୂପରେ ପ୍ରଥମ ଛେକ ପନ୍ତିରେ ବାଢ଼ିବା, ଟେରା ପଡ଼ିବା ପୂର୍ବରୁ ଭୋଗ ମଣୋହି କରିବା, ମଣୋହି ସମୟରେ ଖଦି ଧରି ବିଞ୍ଚିବା, ଭୋଗ ସରିଲେ ସମସ୍ତ ଜିନିଷ ବଢ଼ା ସେବକଙ୍କୁ ଦେଇ ବିମଳାଙ୍କ ପାଖରେ ସମର୍ପଣ କରାଇବା, ଅମାବାସ୍ୟା ବିଜେ, ଚନ୍ଦନଯାତ୍ରା ଇତ୍ୟାଦି ବାହାର ବିଜେରେ ଛାମୁରେ ପନ୍ତି ବାଢ଼ିବା ଓ

ଘଷାଜଳ ଲଗାଇବା, ରାମ,କୃଷ୍ଣ ଓ ବାମନଜନ୍ମରେ ଗଣ୍ଡୂଷ ମସଲା ଓ ସର ଲବଣୀ ବାଢ଼ିବା, ରକ୍ମିଣୀବିଭା ବେଦୀରେ, ଶୀତଳଷଷ୍ଠୀରେ ପଞ୍ଚ ମହାଦେବଙ୍କ ନିକଟରେ ପନ୍ତିବାଢ଼ିବା, କୁମାର ପୂର୍ଣ୍ଣିମା ଦିନ ଗୋଟା ଫଳମାନ ଛାମୁରେ ବାଢ଼ିବା, ବାଳଧୂପ ପନ୍ତିରେ ବାଢ଼ିବା, ବଣଭୋଜି ବେଶରେ କୋଠଭୋଗ ସର ଓ ଜଗନ୍ନାଥ ବଲ୍ଲଭ ସର ପୁଷ୍ପାଳକମାନଙ୍କ ହାତକୁ ଦେଲେ ତାହା ଶ୍ରୀଅଙ୍ଗରେ ଲାଗିହୋଇଥିବା ଶିକାରେ ଧରିବା ଓ ମଝି ବାଡ଼ ସର ପନ୍ତିରେ ଲଗାଇବା, କ୍ଷୀରି ଓ ହରିବଲ୍ଲଭ ଡାଟ ସନ୍ଧ୍ୟାଧୂପରେ ଲଗାଇବା, ଘଣ୍ଟଛତା ଭୋଗମାନଙ୍କରେ ପଟୁଆରରେ ପ୍ରଥମ ଛେକ ନେଇ ଛାମୁରେ ବାଢ଼ିବା ଆଦି କାର୍ଯ୍ୟ କରନ୍ତି ।
(କ୍ଷେ.ସ.) ।

**ମହାସୁନ୍ଦରୀ**-*ଦେ.ବି.*- ଏକ ପ୍ରକାର ଚୁଆ - ଯାହାକି ମାଜଣାରେ ବ୍ୟବହୃତ ହୁଏ ।
(ପୁ.ବୋ. - ପୃ. ୨୮୧) ।

**ମହାସୁଗନ୍ଧି ସେବା**-*ଦେ.ବି.*- ପ୍ରତ୍ୟହ ଅବକାଶ ଓ ପୁଷ୍ପାଞ୍ଜଳି ସମୟରେ, ରଥଯାତ୍ରା ପହଣ୍ଡି ବିଜେ ସମୟରେ ସୁଗନ୍ଧ ଜଳ ସିଞ୍ଚନ କରନ୍ତି । କଳାହାଟ ଦ୍ୱାରରେ ଧୂପକାଠି ଧରି ଠିଆ ହେଉଥିବା ସେବକ । ବର୍ତ୍ତମାନ ଏ ସେବା ନାହିଁ ।
(ପୁ.ବୋ. - ପୃ. ୨୮୧) ।

**ମହିଷମର୍ଦ୍ଦିନୀ**-*ସଂ.ବି.*- ମହିଷାସୁର ବିନାଶିନୀ ଦେବୀ ଦଶଭୁଜା ଦୁର୍ଗା । ଶରତକାଳରେ ଦୁର୍ଗାଙ୍କୁ ଏହି ରୂପରେ ପୂଜା କରାଯାଏ । ଶ୍ରୀମନ୍ଦିରରେ ଏହି ଦିନ ଅବକାଶ ପରେ ଭଣ୍ଡାର ଦ୍ୱାରଠାରୁ ଭଣ୍ଡାର ମେକାପ ରୂପା ବଟା ତିନି ଗୋଟିରେ ଚନ୍ଦନ ନେଇ ତିନି ବାଡରେ ଚନ୍ଦନ ଲାଗି କରନ୍ତି । ପରେ ନୂଆ ଲୁଗା ଲାଗି ହୋଇ ତଡାଉ ବତିଶି ମୂର୍ତ୍ତି ଲାଗି ହେଲା ପରେ ରାଜବେଶ ହୁଅନ୍ତି । କର୍ପୂର ବନ୍ଦାପନା ପରେ ପାଳିଆ, ପୁଷ୍ପାଳକ, ଖୁଣ୍ଟିଆ ଓ ମେକାପ ଶ୍ରୀଅଙ୍ଗ ମଣୋହି କରାଇଥାନ୍ତି । ଏହି ବେଶରେ ପାଞ୍ଚଖଣ୍ଡ ଆଜ୍ଞାମାଳ ଲାଗି ହୁଏ । ଭଣ୍ଡାର ଦ୍ୱାର ପୂଜା ପରେ ବସିଥିବା ଆୟୁଧମାନଙ୍କୁ ପଣ୍ଡା ଭଣ୍ଡାର ଦ୍ୱାରଠାରେ ମହାସ୍ନାନ କରାଇ ବରୁଣ ପୂଜାପରେ ସହସ୍ର କୁମ୍ଭାଭିଷେକ କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୮, ପୂ.ଓ.ଭା. - ପୃ. ୬୩୯୪) ।

**ମହୁଣିଆ**-*ଦେ.ବି.*- ବିରି ବଟାରେ ଲୁଣପଡ଼ି ଗୁଲୁଗୁଲା ଭଳି ଛଣାଯାଇଥିବା ଏକ ପ୍ରକାର ପିଠା ବିଶେଷ । ମକର ସଂକ୍ରାନ୍ତିରେ ମରିଚିଲଡୁ, ମାଠପୁଲି, ମୋଡ଼ିଆ, ମନୋହର, ମାଣ୍ଡୁଅ, ମଞ୍ଜି କଡ଼େଇ ପ୍ରଭୃତି ଭୋଗ ସହ ମହୁଣିଆ ମଧ୍ୟ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୫/୧୭୬) ।

**ମହୋଦଧି**-*ଦେ.ବି.*- ସମୁଦ୍ର, ବଙ୍ଗୋପସାଗର । ନାରାୟଣମୂର୍ତ୍ତି ଅମାବାସ୍ୟାରେ ସାଗର ବିଜେ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୪୪) ।

**ମା'**-*ଦେ.ବି.*- ଶ୍ରୀମନ୍ଦିର ପରିସର ମଧ୍ୟରେ ଥିବା ଠାକୁରାଣୀଙ୍କୁ ମା' ବିମଳା, ମା' କମଳା, ମା' ସରସ୍ୱତୀ, ମା' ସୁଭଦ୍ରାଙ୍କୁ ସମ୍ବୋଧନ କରି ଆହ୍ୱାନ କରାଯାଇଥାଏ ।
(ପୂ.ଓ.ଭା. - ପୃ. ୬୪୦୨) ।

**ମାଉସୀମା**-*ଦେ.ବି.*- ଜଗତର ନାଥ ଜଗନ୍ନାଥଙ୍କର ଲୀଳା ବଡ଼ ବିଚିତ୍ର । ଆର୍ଯ୍ୟ, ଅନାର୍ଯ୍ୟ, ବୌଦ୍ଧ, ଜୈନ, ଭୈରବ, ଗାଣପତ୍ୟ, ସୌର ସମସ୍ତଙ୍କର ସେ ଆରାଧ୍ୟ ଦେବତା ।

ଏହି ଦାରୁ ଦେବତାଙ୍କର ଅନେକ ଆଚରଣରେ ସାଧାରଣ ମଣିଷର ଆଚରଣପରି ପରିଲକ୍ଷିତ ହୁଏ । ବେଶ, ଖାଦ୍ୟ ପରିବର୍ତ୍ତନ, ଆତ୍ମୀୟମାନଙ୍କ ସହ ସମ୍ପର୍କ ଅନ୍ୟ ସମସ୍ତ କାର୍ଯ୍ୟରେ ମାନବୀୟ ପରିଭାସିତ ହୁଏ । ମଣିଷ ପରି ମଧ୍ୟ ସେ ଯାନ ଆରୋହଣ କରି ଯେଉଁ ଯାତ୍ରା କରନ୍ତି ତାହା ସୁପ୍ରସିଦ୍ଧ ଘୋଷଯାତ୍ରା । ଶ୍ରୀଜଗନ୍ନାଥଙ୍କ ମାଉସୀ ମା' ଅର୍ଦ୍ଧାଶନୀ । ଏହା ବଡ଼ଦାଣ୍ଡର ପୂର୍ବ ପାଖରେ ଥିବା ଠାକୁରାଣୀଙ୍କ ଲୋକ ପ୍ରଚଳିତ ନାମ । ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ବାହୁଡ଼ାଯାତ୍ରା ସମୟରେ

ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କର ବାହୁଡ଼ା ରଥ ଏହିଠାରେ ଅଟକେ । ମାଉସୀ ମା' ଘର ପୋଡ଼ପିଠା ଶ୍ରୀଜଗନ୍ନାଥଙ୍କୁ ଲାଗିହୁଏ । (ପୂ.ଓ.ଭା. - ପୃ. ୬୪୦୮, ଶ୍ରୀ.ସ୍ୱ. ୨ୟ - ପୃ. ୭୯) ।

**ମାର୍କଣ୍ଡ**-*ଦେ.ବି.*- ମାର୍କଣ୍ଡେୟ ଋଷିଙ୍କ ନାମରେ ପରିଚିତ । ଏହା ଏକ ପ୍ରାଚୀନ ତୀର୍ଥ ପୁଷ୍କରିଣୀ । ଏଠାରେ ମାର୍କଣ୍ଡେଶ୍ୱର ନାମକ ଶିବ ମନ୍ଦିର ଅଛି । (ପୁ.ବୋ. - ପୃ. ୨୮) ।

**ମାର୍କଣ୍ଡେଶ୍ୱରପୁଷ୍କରିଣୀ**-*ଦେ.ବି.*- ବଡ଼ଦାଣ୍ଡରେ ଠିଆ ହୋଇଥିବା ପ୍ରକାଣ୍ଡ ଧର୍ମଶାଳା ଦୁଦ୍‌ଓ୍ୱାଲା ଧର୍ମଶାଳାର ପଶ୍ଚାଦ୍‌ଭାଗରେ ଏହି ପୁଷ୍କରିଣୀ । ଏହା ତୀର୍ଥଯାତ୍ରୀ ସ୍ନାନ ନିମନ୍ତେ ପ୍ରସିଦ୍ଧି ଲାଭ କରିଛି । ଏହାର କୂଳରେ ସପ୍ତମାତୃକା ମନ୍ଦିର ଅବସ୍ଥିତ । ମାଦଳାପାଞ୍ଜି ବର୍ଣ୍ଣନାନୁସାରେ କେଶରୀ ବଂଶର ରାଜା ଭୀମକେଶରୀ ଉକ୍ତ ସପ୍ତମାତୃକା ମୂର୍ତ୍ତି ସ୍ଥାପନ କରିଥିଲେ । ସପ୍ତମାତୃକା ହେଲେ - ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା । ଏହାର ଉଭୟ ପାର୍ଶ୍ୱରେ ବୀରଭଦ୍ର ଓ ଗଣେଶଙ୍କ ମୂର୍ତ୍ତି ଦୃଷ୍ଟିଗୋଚର ହୁଏ । ନବକଳେବର ସମୟରେ ଶ୍ରୀଜୀଉଙ୍କ ଦଶାହ କର୍ମ ମଧ୍ୟ ଏହି ପୁଷ୍କରିଣୀରେ କରାଯାଇଥାଏ । ନବକଳେବରର ଦଶମ ଦିନ ଦଇତାମାନେ ଅଶୌଚ ପାଳନ କରି ଉକ୍ତ ପୁଷ୍କରିଣୀ କୂଳକୁ ଆସନ୍ତି, ଏହିଠାରେ କ୍ଷୌର ହୋଇ ସ୍ନାନ କରି ପୂଜାର୍ଚ୍ଚନା ପରେ ଶୁଦ୍ଧ ହୋଇ ପ୍ରତ୍ୟାବର୍ତ୍ତନ କରନ୍ତି । ଭାଦ୍ର କୃଷ୍ଣ ଏକାଦଶୀ ତିଥିରେ ଏହି ପୁଷ୍କରିଣୀରେ ଠାକୁରଙ୍କର କାଳୀୟଦଳନ ନୀତି ଅନୁଷ୍ଠିତ ହୁଏ । ଗହ୍ମା ପୂର୍ଣ୍ଣମାଦିନ ଶ୍ରୀଜଗନ୍ନାଥଙ୍କ ଜ୍ୟେଷ୍ଠ ଭ୍ରାତା ଶ୍ରୀବଳଭଦ୍ରଙ୍କର ଜନ୍ମୋତ୍ସବ ନୀତି ଏଠାରେ ପାଳିତ ହଏ । ଏହିଦିନ ଗ୍ରହରାଜ ସୁଦର୍ଶନ ମାର୍କଣ୍ଡେୟ କୂଳରେ ଥିବା ମାର୍କଣ୍ଡେଶ୍ୱର ମନ୍ଦିରକୁ ଆଜ୍ଞାମାଳ ନେଇ ଆସିଥାନ୍ତି ଏବଂ ଏଠାରେ ଆବଶ୍ୟକୀୟ ପୂଜାର୍ଚ୍ଚନା ସମ୍ପାଦିତ ହୁଏ । ଭାଦ୍ରବ କୃଷ୍ଣପକ୍ଷ ପଞ୍ଚମୀ ତିଥିରେ ଏହି ନୀତି ଏଠାରେ ପାଳିତ ହୋଇଥାଏ । ଉକ୍ତ ତିଥିରେ ମହାଲକ୍ଷ୍ମୀ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ପାଇଁ ମାର୍କଣ୍ଡେଶ୍ୱର ମନ୍ଦିରକୁ ଆସିଥାନ୍ତି । ମାର୍କଣ୍ଡେୟ ପୁଷ୍କରିଣୀ ନିକଟରେ ପାଳିତ ହେଉଥିବା ଯାନିଯାତ୍ରା ମଧ୍ୟରୁ ନେତ ପରମ୍ପରା ଅନ୍ୟତମ । ଆଶ୍ୱିନ ଶୁକ୍ଳ ସପ୍ତମୀ, ଅଷ୍ଟମୀ ଓ ନବମୀ ତିଥିରେ ସେବାୟତମାନଙ୍କର କୁଆଁରୀ କନ୍ୟାମାନେ ଏହି ବ୍ରତ ଉକ୍ତ ପୁଷ୍କରିଣୀରେ ପାଳନ କରି ହରଗୌରୀଙ୍କୁ ପୂଜା କରନ୍ତି । (ଶ୍ରୀ.ଜି. - ପୃ. ୯୭) ।

**ମାଜଣା**-*ଦେ.ବି.*- ଦେହ ମାଜିବା, ସ୍ନାନ, ଦେବଦେବୀଙ୍କର ସ୍ନାନ ବିଧି । ପ୍ରତ୍ୟେକ ଗୁରୁବାର ଦିନ, ଆଶ୍ୱିନ କୃଷ୍ଣ ଅଷ୍ଟମୀ ତିଥି ଓ ଆଷାଢ଼ ଶୁକ୍ଳ ଷଷ୍ଠୀ ଦିନ ଭଣ୍ଡାର ଘରେ ବିଜେ ହୋଇଥିବା ଲକ୍ଷ୍ମୀଙ୍କୁ ପାଳିଆ ମହାଜନମାନେ ମାଜଣା କରନ୍ତି । ବନକଲାଗି, ପାଟଶାଢ଼ୀ ଲାଗି ଓ ଅଳଙ୍କାର ଲାଗି ବଢ଼ିବା ପରେ ପୂଜାପଣ୍ଡା ପଣ୍ଡିଭୋଗ ଲାଗି କରନ୍ତି । ଏହାପରେ ଗୁଣ୍ଡିଚା ମନ୍ଦିର ଅଭିମୁଖେ ବିଜେ କରି ରଥଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ରଥ ପାଖେ ପହଞ୍ଚନ୍ତି । ଏତଦ୍ ବ୍ୟତୀତ ଚନ୍ଦନ ଯାତ୍ରା ଏକୋଇଶି ଦିନ ଅକ୍ଷୟତୃତୀୟାଠାରୁ ହଳଦି ପାଣି ପଡିବା ପର୍ଯ୍ୟନ୍ତ ଚନ୍ଦନ ବେଢ଼ାରେ ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନଙ୍କର ମାଜଣା ହୁଏ । (ପୂ.ଓ.ଭା. - ପୃ. ୬୪୨୬, ଶ୍ରୀ.ସ୍ୱ. - ପୃ. ୭୨) ।

**ମାଜଣା ମଣ୍ଡପ**-*ଦେ.ବି.*- ପ୍ରତି ଗୁରୁବାର ଦିନ ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନଙ୍କ ମାଜଣା ନୀତି ଅନୁଷ୍ଠିତ ହେଉଥିବା ମଣ୍ଡପ । (ପୁ.ବୋ. - ପୃ. ୨୭୫, ଶ୍ରୀ.ସ୍ୱ. - ପୃ. ୪୦) ।

**ମାର୍ଜାର ଜଗା ଖୁଣ୍ଟିଆ**-*ଦେ.ବି.*- ବିଗ୍ରହମାନଙ୍କ ସମ୍ମୁଖରେ ଅହ୍ଲଣିଆରେ ବିରାଡ଼ି କାଳେ ମୁହଁ ମାରିଦେବ ଏଣୁ ତାକୁ ଜଗିବା ନିମନ୍ତେ ମନ୍ଦିର ତରଫରୁ ବେତ ଧରି ଜଗିବା ସେବକ । (ଶ୍ରୀ.ସ୍ୱ. ୧ମ - ପୃ. ୮୮) ।

**ମାଣ୍ଡୁଅ**-*ଦେ.ବି.*- କେବଳ ଛେନାରେ ତାଡ଼ିଆ ତିଆରି ହୋଇ ଚାରି ପଟ ଲେଖାଏଁ ସରାରେ ବସାଯାଇ

ତାହା ଉପରେ ଖଣ୍ଡ ଦିଆଯାଏ । ଚନ୍ଦନଯାତ୍ରାରେ ଶ୍ରୀଠାକୁରଙ୍କ ପାଖରେ ମାଣ୍ଡୁଅ ଭୋଗ ହୁଏ ।
(ପୁ.ବୋ. - ପୃ. ୧୪୦) ।

**ମାଘ ପଞ୍ଚମୀ**- *ସଂ.ବି.*- ମାଘ ମାସ ଶୁକ୍ଳ ପଞ୍ଚମୀ । ଶ୍ରୀପଞ୍ଚମୀ ବା ବସନ୍ତ ପଞ୍ଚମୀ । ଶ୍ରୀମନ୍ଦିରରେ ସନ୍ଧ୍ୟାଧୂପ ବଢ଼ିବା ପରେ ସରସ୍ୱତୀ ମନ୍ଦିରରେ ପାଞ୍ଜିପୂଜା ହୁଏ । ସରସ୍ୱତୀଙ୍କ ନୀତି ସେଦିନ ଠିକ୍ ଗଣେଶ ଚତୁର୍ଥୀ ଭଳି ହୋଇଥାଏ । ଏହାପରେ ଅନ୍ୟାନ୍ୟ ନୀତିମାନ ହୁଏ । ପ୍ରଥମ ଥର ପାଇଁ ମୁଣିରେ ଥିବା ଫଗୁ ଓ ଚନ୍ଦନ ମୁଦିରସ୍ତ ପ୍ରସାଦ ଲାଗି କରାନ୍ତି । ପରେ ଫଗୁ ଖେଳ ପାଇଁ ମୁଦିରସ୍ତ, ସମ୍ପ୍ରଦାୟ ନିଯୋଗ ଜଉଡାବ (ଫଗୁଡାବ) ଖେଳନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୯, ପୂ.ଓ.ଭା. - ପୃ. ୬୪୧୯) ।

**ମାଘ ସପ୍ତମୀ**- *ସଂ.ବି.*- ଶ୍ରୀମନ୍ଦିରରେ ସନ୍ଧ୍ୟାଧୂପ ପରେ ସପ୍ତମୀ ନିମନ୍ତେ ସୂର୍ଯ୍ୟଙ୍କ ଦେଉଳରେ ଠାକୁର ବେଶହୋଇ ପାଣି ପଡ଼ି ଭୋଗ ପରେ ବନ୍ଦାପନା ହୁଏ । ଏହା ପରେ ଶ୍ରୀମନ୍ଦିର ଭିତରେ ଅନ୍ୟାନ୍ୟ ନୀତି ହୁଏ । ଏହାକୁ ତିଳ ସପ୍ତମୀ ମଧ୍ୟ କୁହାଯାଏ ।
(ପୂ.ଓ.ଭା. - ପୃ. ୬୪୧୯, ଶ୍ରୀ.ସ୍ୱ. ୨ୟ - ପୃ. ୧୦୯) ।

**ମାଠପୁଳି**-*ଦେ.ବି.*- ଏକ ପ୍ରକାର ସୁମିଷ୍ଟ ପିଷ୍ଟକ । ଏହା ମଧ୍ୟ ଶ୍ରୀଠାକୁରଙ୍କୁ ଭୋଗରେ ଅର୍ପଣ କରାଯାଏ । ନବାନ୍ନ, ଦୋଳପୂର୍ଣ୍ଣିମା, ରୁକ୍ମିଣୀହରଣ, ସ୍ନାନପୂର୍ଣ୍ଣିମା, ନେତ୍ରୋତ୍ସବ, ଶ୍ରୀଗୁଣ୍ଡିଚା ପ୍ରଭୃତି ଦିନରେ ପ୍ରଭୁଙ୍କ ପାଖରେ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୭୦-୧୯୦) ।

**ମାଠରେଖ**-*ଦେ.ବି.*- କ୍ଷୁଦ୍ର ରେଖ ମନ୍ଦିର । ବଟବୃକ୍ଷଠାରେ ବଟେଶ୍ୱରଦେବଙ୍କ ମାଠରେଖ ଦେଉଳ ।
(କ୍ଷେ.ସ.) ।

**ମାଢ଼**- ଧାତୁ ପଦାର୍ଥ ଓଜନର ଏକ ମାପ ବିଶେଷ । ମାଢ଼ ଅଧତୋଳା ବା ଦଶଚିନା ଓଜନର ସମାନ ସୁନା । ଏହି ମାପରେ ସୁନାରୂପା ଓଜନ କରାଯାଏ ।
(ପୂ.ଓ.ଭା. - ପୃ. ୬୪୪୦) ।

**ମାଣ-ଗୁଣ୍ଠ-ବିଶ୍ୱା**- ଏକମାଣ ପଚିଶ ଗୁଣ୍ଠ, ଏକ ଗୁଣ୍ଠ, ଷୋଳ ବିଶ୍ୱା, କୋଡ଼ିଏ ମାଣରେ ଏକ ବାଟି । ଶ୍ରୀଜଗନ୍ନାଥଙ୍କ ଜମି ମାଣ-ଗୁଣ୍ଠ-ବିଶ୍ୱାରେ ମପାଯାଉଥିଲା ।
(କ୍ଷେ.ସ.) ।

**ମାଣିକା**-*ଦେ.ବି.*- ତେଲ ବା ଘିଅ ମାପିବା ପାଇଁ ଧାତବ ପାତ୍ର ବିଶେଷ । ରୋଷଘରେ ଖାଦ୍ୟ ପ୍ରସ୍ତୁତିର ଉପକରଣ ରୂପେ ଘିଅପଲା ବା ମାଣିକା ରୂପେ ପ୍ରଚଳିତ ।
(ଶ୍ରୀ.ସ୍ୱ. - ପୃ. ୨୧୫) ।

**ମାଦଳ**-*ଦେ.ବି.*- ମର୍ଦ୍ଦଳ, ପଖାଉଜ, କାଠର ଦୁଇ ମୁହଁରେ ଚମଡ଼ା ଛାଉଣି ହୋଇଥିବା ବାଦ୍ୟ ବିଶେଷ । ଏକ ହାତ ବା ଦେଢ଼ ହାତ ଲମ୍ବ, ଏହା ମୃଦଙ୍ଗଠାରୁ ଆକାରରେ ଛୋଟ ଓ ଗଢ଼ର ଗଣ୍ଡିପରି ସମତୁଲ । ଏହା ଦୁଇ ହାତର କରତାଳ ଦ୍ୱାରା ବଜାଯାଏ । ମୃଦଙ୍ଗ ମାଟିରେ ତିଆରି, କିନ୍ତୁ ଏହା କାଠରେ ତିଆରି । ଶ୍ରୀମନ୍ଦିରରେ ମାହାରୀଙ୍କ ନୃତ୍ୟ, ଗାନ, ଭଜନ ପ୍ରଭୃତି ସମୟରେ ମାଦଳ ବଜାଯାଏ । ଚନ୍ଦନ ଚାପ ସମୟରେ ଚାପରେ ମଧ୍ୟ ମାଦଳର ଆବଶ୍ୟକ ଥାଏ । ଦୈନିକ ସକାଳ ଧୂପ, ପଟୁଆର, ଚାପ ଓ ବାହୁଡ଼ା ଚାପରେ ମାଦଳ ବାଜିଥାଏ । ରଥଯାତ୍ରା ଦୋଳଯାତ୍ରା କାର୍ତ୍ତିକ ମାସ ବାଳଧୂପ ସମୟରେ, ବିମଳାଙ୍କ ଷୋଳପୂଜା ସମୟରେ ମଧ୍ୟ ମାଦଳ ବାଜେ ।
ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ମାଦଳ ବୋଲି ସମ୍ବୋଧନ କରାଯାଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୫) ।

**ମାଦଳାପାଞ୍ଜି**-*ଦେ.ବି.*- ମାଦଳାପାଞ୍ଜି ହେଉଛି ପାରମ୍ପରିକ ଭାବରେ ଦୈନିକ ଓ ସାମୟିକ ଲେଖାଯାଉଥିବା ଶ୍ରୀମନ୍ଦିର ବିବରଣୀ । ଏହା ଐତିହାସିକ ଗ୍ରନ୍ଥ ନ ହେଲେ ମଧ୍ୟ ଏଥିରେ ଅନେକ ଐତିହାସିକ ଉପାଦାନ ଭରି ରହିଛି । କୋଠକରଣ, ବଇଠିକରଣ, ତଡ଼ଉକରଣ,

ଦେଉଳ କରଣ, ପାଞ୍ଜିକରଣ, ଏହି ପାଞ୍ଚକରଣ ଲେଖା କାର୍ଯ୍ୟରେ ନିଯୁକ୍ତ ଥିଲେ । ମାଦଳାପାଞ୍ଜି ପାଞ୍ଚ ଭାଗରେ ବିଭକ୍ତ । ଯଥା- ୧. ରାଜଖଞ୍ଜା, ୨. ଦେଶଖଞ୍ଜା, ୩. କର୍ମାଙ୍ଗୀ, ୪. ଦିନପାଞ୍ଜି, ୫. ଚକଡ଼ା ।
ରାଜଖଞ୍ଜା- ଏହା ତଢ଼ଉକରଣଙ୍କ ଦାୟିତ୍ୱରେ ରହି ରାଜ୍ୟର ଶାସନ ପ୍ରଣାଳୀ ବିଷୟରେ ଲେଖା ହୁଏ । ଦେଶଖଞ୍ଜା- କୋଠକରଣ ଦାୟିତ୍ୱରେ ରହି ଦାନଦକ୍ଷିଣା ଚଳନ୍ତି ଅଚଳନ୍ତି ସମ୍ପତ୍ତିର ତାଲିକା ଲିପିବଦ୍ଧ ହୁଏ । କର୍ମାଙ୍ଗୀ- ଏଥିରେ ଦୈନିକ ରୀତି, ନୀତି, ପର୍ବପର୍ବାଣି ଘଟଣା ଲିଖିତ ହୁଏ । ଦିନପାଞ୍ଜି- ପ୍ରତିବର୍ଷ ବିଷୁବ ସଂକ୍ରାନ୍ତି ବା ପଣା ସଂକ୍ରାନ୍ତିଠାରୁ ଆରମ୍ଭ ହୋଇ ବର୍ଷଶେଷରେ ସମାପ୍ତ ହୁଏ । ପ୍ରତ୍ୟେହ ଠାକୁରଙ୍କ ଅବକାଶ ସମୟରେ ପଠନ କରାଯାଏ । ଚକଡ଼ା- ଶତ୍ରୁ ଆକ୍ରମଣ, ବିପଦ ସମୟରେ ଠାକୁରଙ୍କର ବିଭିନ୍ନ ସ୍ଥାନରେ ଅବସ୍ଥାନ ବା ପାତାଳି ସମ୍ପର୍କରେ ଲେଖାହୁଏ । ଅନୁମାନ କରାଯାଏ ଏହା ଏକ ଠାକୁରଙ୍କର ଦୈନନ୍ଦିନ ଡାଏରୀ (ଦିନଲିପି) ଓ ଏହା ମନ୍ଦିର ତୋଳା ଆରମ୍ଭ ଦିନରୁ ଅର୍ଥାତ୍ ଚୋଳଗଙ୍ଗ ଦେବଙ୍କ ସମୟରୁ ଆରମ୍ଭ ହୋଇଅଛି । ୧୮୨୨ ମସିହାରେ ପ୍ରଥମେ ଷ୍ଟାଲିଂ ଏହାକୁ ଲୋକଲୋଚନକୁ ଆଣିଲେ । ୧୮୭୨ ମସିହାରେ ହଣ୍ଟର, ୧୮୭୯ରେ ପ୍ୟାରୀମୋହନ ଆଚାର୍ଯ୍ୟ, ୧୮୯୨ରେ ମନମୋହନ ଚକ୍ରବର୍ତ୍ତୀ, ୧୯୨୭ରେ ଫ୍ଲିଟ୍ ସାହେବ ଓ ରାମାପ୍ରସାଦ ଚାନ୍ଦ, ୧୯୨୯ରେ ଜଗବନ୍ଧୁ ସିଂହ, ୧୯୩୨ରେ ଡ. ଆର୍ତ୍ତବଲ୍ଲଭ ମହାନ୍ତି, ୧୯୫୧ରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, କୃପାସିନ୍ଧୁ ମିଶ୍ର, ଡ. ମାୟାଧର ମାନସିଂହ, ଡ. ସୁନୀତି କୁମାର ଚାଟାର୍ଜୀ, ଶ୍ରୀ ମୁକୁନ୍ଦ ଦାଶ, ପଣ୍ଡିତ ସଦାଶିବ ରଥଶର୍ମା, ଡ. ହରେକୃଷ୍ଣ ମହତାବ, ଭବାନୀଚରଣ ବନ୍ଦୋପାଧ୍ୟାୟ, ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ବିନାୟକ ମିଶ୍ର, ଡ. କୁଞ୍ଜବିହାରୀ ତ୍ରିପାଠୀ, ଡ. ସତ୍ୟନାରାୟଣ ରାଜଗୁରୁ, ଡ. ନବୀନ କୁମାର ସାହୁ, ଡ. ବଂଶୀଧର ମହାନ୍ତି, ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତି ବହୁ ଆଲୋଚକ, ପ୍ରାବନ୍ଧିକ, ଗବେଷକ ତଥା ଐତିହାସିକ ଏହା ଉପରେ ଆଲୋଚନା ତଥା ଆଲୋକପାତ କରିଯାଇଛନ୍ତି । ଓଡ଼ିଶାର ବିଭିନ୍ନ ରାଜବଂଶାବଳୀ, ରାଜତ୍ୱକାଳିନ ଚିତ୍ର ସହିତ ଶ୍ରୀମନ୍ଦିର ନିର୍ମାଣ ତଥା ସେସମ୍ପର୍କୀୟ ଅନେକ ତଥ୍ୟ ମାଦଳା ପାଞ୍ଜିରେ ଲିପିବଦ୍ଧ ହୋଇଅଛି । (ପୂ.ଓ.ଭା. - ପୃ. ୬୪୫୭, ପୁ.ବୋ. - ପୃ. ୨୮୨-୨୮୪) ।

**ମାଦେଳି ସେବକ**-*ଦେ.ବି.*- ଏମାନେ ଭିତର ଗାଏଣି ନିଯୋଗ ସେବକ । ଯେଉଁ ବ୍ୟକ୍ତି ମାଦଳ ବଜାଏ ତାଙ୍କୁ ମାଦେଳି କୁହାଯାଏ । ମାହାରୀ ନୃତ୍ୟ ବେଳେ ଶ୍ରୀମନ୍ଦିରରେ ମାଦଳ ବଜାନ୍ତି ଓ ଠାକୁରଙ୍କ ପଟୁଆର ସମୟରେ ମାଦଳା ବଜାଇ ଆଗେ ଆଗେ ଚାଲନ୍ତି । ଦୈନିକ ସକାଳ ଧୂପ ପଟୁଆରରେ, ଚାପ ଉପରେ, ଚାପ ବାହୁଡ଼ାପଟୁଆରରେ, ସ୍ନାନବେଦୀରେ, ପଟୁଆରରେ, କାର୍ତ୍ତିକମାସ ବାଳଧୂପ ପଟୁଆରରେ, ଷୋଳପୂଜାରେ ବିମଳାଙ୍କ ମନ୍ଦିରରେ ପଟୁଆରରେ ଦୋଳବେଦୀରେ, ନୃତ୍ୟ ସମୟରେ ଓ ରଥରେ କଂସାରି ଓ ଘଟୁଆଙ୍କ ମଧ୍ୟରେ ମାଦଳ ବଜାଯାଇଥାଏ ।
(ଶ୍ରୀ.ସ୍ୱ. - ପୃ. ୫୮/୫୯, ପୁ.ବୋ. - ପୃ. ୨୮୪) ।

**ମାଧବ**-*ଦେ.ବି.*- ବିଷ୍ଣୁ, ଶ୍ରୀକୃଷ୍ଣ, ନାରାୟଣ । ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିବା ବିଷ୍ଣୁଙ୍କର ଏକ ରୂପ । ଏହି ଆୟୁଧକୁ ଅଦଳବଦଳ କରି ଦ୍ୱାଦଶ ମାଧବ ପରିକଳ୍ପନା କରାଯାଇଛି । ରତ୍ନ ସିଂହାସନରେ ସପ୍ତଧାମୂର୍ତ୍ତିଙ୍କ ମଧ୍ୟରୁ ଅନ୍ୟତମ କ୍ଷୁଦ୍ରକାୟ ଏକକ ଜଗନ୍ନାଥ ମୂର୍ତ୍ତି । ପ୍ରାଚୀଉପତ୍ୟକା, ବିରଜାମଣ୍ଡଳାଦିରେ ଦ୍ୱାଦଶ ମାଧବ ଉପାସନା ଦେଖାଯାଏ । ପୁରୀରେ ନୀଳମାଧବ, ମତ୍ସ୍ୟ ମାଧବ, ଶ୍ୱେତମାଧବ, ଦୁର୍ଗାମାଧବ, ପୂଜିତ ହେବାର ଜଣାଯାଏ । ଏହାଛଡ଼ା ଗୌଡ଼ବାଡ଼ ସାହିରେ ଗାଳମାଧବ ମଧ

ପୂଜିତ । ଦୁର୍ଗାମାଧବ, ଶାରଦୀୟ ଦୁର୍ଗୋତ୍ସବରେ ଏକ ଉପାସିତ ଦୁର୍ଗା ଓ ମାଧବ । ବିମଳାଙ୍କ ଷୋଳପୂଜାରେ ଦୁର୍ଗା ଓ ବାଳ ଶ୍ରୀପୁରୁଷୋତ୍ତମ ଦେବଙ୍କୁ ଦଶହରା ପର୍ଯ୍ୟନ୍ତ ଗୋଟିଏ ପ୍ରଭାରେ ରୁନ୍ଧାଯାଏ । ପ୍ରଥମ ଆଠଦିନ ଦୁର୍ଗାମାଧବ ବିମଳାଙ୍କ ମନ୍ଦିରରେ ଓ ଅବଶିଷ୍ଟ ଦିନମାନ ଦୋଳମଣ୍ଡପ ସାହିର ନାରାୟଣୀ ମନ୍ଦିରରେ ବିଜେ ହୁଅନ୍ତି । ଦଶହରା ଦିନ ଦୁର୍ଗାମାଧବ, ବୀରବେଶରେ ସଜ୍ଜିତ ମଦନମୋହନ ଓ ରାମକୃଷ୍ଣଙ୍କ ସହ ଦଶହରା ପଦା ବା ମହାଖଳାକୁ ବିଜେ କରନ୍ତି । ସେଠାରେ ନୀତି ସରିଲା ପରେ ରୁନ୍ଧା ଫିଟି ମାଧବ ସିଂହାସନକୁ ଓ ଦୁର୍ଗା ଭଣ୍ଡାରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. - , ପୁ.ବୋ. - ପୃ. ୨୮୪-୨୮୭) ।

**ମାଧାବଳୀସଜ**-*ଦେ.ବି.*- ଶ୍ରୀଠାକୁରଙ୍କର ଏକ ପ୍ରକାର ବସ୍ତ୍ର ବିଶେଷ । ଚନ୍ଦନ ବଇଆଳିଶି ଦିନ ତିନି ଠାକୁରଙ୍କ ରାତ୍ର ଆଲଟ ଲାଗି ବେଳେ ଗ୍ରୀଷ୍ମରୁ ରକ୍ଷା ଲାଗି ଓ ଶ୍ରୀପଞ୍ଚମୀ ଦିନ ପରିଧାନ କରିଥିବା ଝୀନ ବସ୍ତ୍ର ।
(ଶ୍ରୀ.ସ୍ୱ. - ପୃ. ୧୦୮) ।

**ମାପସାଇତା କରଣ**-*ଦେ.ବି.*- ଖେଇ ବଣ୍ଟନ ଓ ପସରା ଦାୟିତ୍ୱରେ ଥିବା ସେବକ ।
(ଶ୍ରୀ.ସ୍ୱ. - ପୃ. ୮୨) ।

**ମାଳଚୂଳ**-*ଦେ.ବି.*- ଶ୍ରୀଠାକୁରଙ୍କର ପୁଷ୍ପଭୂଷା ବିଶେଷ । ବାଉଁଶ ପାତିଆ ତିଆରି ଫୁଲ ମଣ୍ଡିତ ଚୂଳିଆ ପୁଷ୍ପ ଭୂଷା ।
(ଶ୍ରୀ.ସ୍ୱ. - ପୃ. ୨୨, ପୁ.ବୋ. - ପୃ. ୨୮୭) ।

**ମାଳଚୂଳ ସେବକ**-*ଦେ.ବି.*- ମକର ସଂକ୍ରାନ୍ତି ପୂର୍ବଦିନ ଜଗନ୍ନାଥଙ୍କ ବାଡ଼ ପାଇଁ ଫୁଲ ତୁଳସୀ ଚୂଳ, ଜଳାକବରୀ ବେଣୀ ତିଆରି କରିଦେଉଥିବା ସେବକ । ସ୍ନାନବେଦୀରେ, ରଥରେ, ଗୁଣ୍ଡିଚା ଘରେ, ବାହୁଡ଼ା ଏକାଦଶୀରେ ମାଳଚୂଳ ଆଦି ଯୋଗାନ୍ତି । ଚନ୍ଦନ ବଇଆଳିଶି ଦିନ ସୁଦର୍ଶନଙ୍କ ବାଡ଼ ନିମନ୍ତେ ଅଳକା ଯୋଗାନ୍ତି । ଏ ଫୁଲମାଳ ଚୂଳ ଶ୍ରୀମନ୍ଦିର ଖୁଣ୍ଟିଆ ଫୁଲ ବଟାରେ ପାଳିଆ ଖୁଣ୍ଟିଆଙ୍କ ମାର୍ଫତରେ ଦିଅନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୨/୨୩, ପୁ.ବୋ. - ପୃ. ୨୮୭) ।

**ମାଳି ସେବକ**-*ଦେ.ବି.*- ପ୍ରତ୍ୟହ ଶ୍ରୀଠାକୁରଙ୍କୁ ପୂଜା ନିମନ୍ତେ ଫୁଲ ଯୋଗାଉଥିବା ସେବକ ।
(ଶ୍ରୀ.ସ୍ୱ. ୪ର୍ଥ - ପୃ. ୫୨) ।

**ମାଲ**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କ ଧୂପ ବଢ଼ିବା ପରେ ଭିତର ପୋଖରୀଆରୁ କିମ୍ବା ଭୋଗମଣ୍ଡପରୁ ଅଣାଯାଉଥିବା ଭୋଗଦ୍ରବ୍ୟ ବା ପହଣ୍ଡି ବିଜେ ବେଳେ ରଥରେ ବନ୍ଧାଯିବା ଚାରମାଳ ତଳେ ବ୍ୟବହୃତ ହୋଇଥିବା ଚାରୋଟି କାଠଗଡ଼ ।
(କୃ.ବି.ଓ.ଶ.ସ. - ପୃ. ୮୩୮) ।

**ମାଲ ବାହାରିବା**-*ଦେ.ବି.*- ଶ୍ରୀମନ୍ଦିରରେ ଠାକୁରଙ୍କର ଧୂପ ବଢ଼ି ଭିତରୁ ବା ଭଅଣ୍ଡ ଘରୁ ଭୋଗଦ୍ରବ୍ୟ ବାହାରକୁ ଅଣାଯିବା ।
(ପୁ.ବୋ. - ପୃ. ୨୮୭) ।

**ମାହାରୀ**-*ଦେ.ବି.*- ଦେବ ନର୍ତ୍ତକୀ । ଦେବ ବଲ୍ଲଭା । ଦେବଦାସୀ । ଶ୍ରୀମନ୍ଦିର ସେବା ବ୍ୟବସ୍ଥାରେ ଏକମାତ୍ର ନାରୀ ପ୍ରତିନିଧି । ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ଭିତର ଗାଆଣୀ ଓ ସମ୍ପ୍ରଦା ନିଯୋଗ ସେବାହିଁ ମାହାରୀ ସେବା । ସକାଳ ଧୂପ ପଟୁଆରରେ, ଜଗମୋହନରେ, ରାତ୍ରିରେ ଶୟନ ଠାକୁର ଭିତରକୁ ବିଜେ କଲେ କଳାହାଟ ଦ୍ୱାର ନନ୍ଦାବର୍ତ୍ତଠାରେ ଗୀତଗୋବିନ୍ଦ ଗାନ କରନ୍ତି । ବାଲଧୂପ ବେଳେ, ଆଲଟ ଲାଗିଲେ ଅଣସର ପିଣ୍ଡିରେ, ରୁକ୍ମିଣୀ ବିଭାରେ, ଲକ୍ଷ୍ମୀମନ୍ଦିରରେ, ନୀଳାଦ୍ରି ବିଜେ ସମୟରେ ଲକ୍ଷ୍ମୀଙ୍କ ସାଙ୍ଗରେ ଷୋଳପୂଜା ସମୟରେ ବିମଳା ମନ୍ଦିରରେ, ସ୍ନାନ ପୂର୍ଣ୍ଣିମା ଦିନ ବେଦୀ ତଳେ, ଚାହାଣୀ ମଣ୍ଡପରେ ଲକ୍ଷ୍ମୀଙ୍କ ସାଙ୍ଗରେ ମାହାରୀମାନେ ନୃତ୍ୟ ଗୀତ ପରିବେଷଣ କରିଥାଆନ୍ତି ଓ ପଟୁଆରମାନଙ୍କରେ ଯାତ୍ରା କରିଥାଆନ୍ତି । ମହାନାରୀ ବା ମହାରାଣୀ ଶବ୍ଦରୁ ମାହାରୀ ଶବ୍ଦ ଆସିଥାଇପାରେ ।
(ଶ୍ରୀ.ସ୍ୱ. ୩ୟ - ପୃ. ୪୦-୪୯, ପୂ.ଓ.ଭା. - ପୃ. ୬୫୩୦) ।

**ମାହାରୀ ନୃତ୍ୟ**-*ଦେ.ବି.*- ଶ୍ରୀମନ୍ଦିର ଠାକୁରଙ୍କ ପୂଜା ଘଣ୍ଟି ବାଜିବା ସମୟରେ କିମ୍ବା ପଟୁଆର ସମୟରେ ଶ୍ରୀଜୀଉଙ୍କ ସମ୍ମୁଖରେ ଦେବଦାସୀମାନଙ୍କର ନୃତ୍ୟ ।
(ଶ୍ରୀ.ସ୍ୱ. ୩ୟ - ପୃ. ୪୮) ।

**ମାହାଲ**-*ଦେ.ବି.*- ଏକ ପ୍ରକାର ଜମିଦାରୀ । ବ୍ରିଟିଶ ସରକାର ଶ୍ରୀମନ୍ଦିର ନିମନ୍ତେ ବାର୍ଷିକ କେତେ ଟଙ୍କା ଅନୁଦାନ କେବେ କେବେ ଦେଇଥିଲେ, କେତେ ରାଜସ୍ୱ ଓ କେଉଁ କେଉଁ ଭୂସମ୍ପତ୍ତି ଅନୁଦାନ ସ୍ୱରୂପ ପ୍ରଦାନ କରିଥିଲେ, ଏହା ଏଥିରେ ଉଲ୍ଲେଖ ଅଛି । ବ୍ରିଟିଶ ସରକାର ଶ୍ରୀମନ୍ଦିର ପରିଚାଳନା ହାତକୁ ନେବା ସହ ଏହାର ସମସ୍ତ ଖର୍ଚ୍ଚ ବହନ କରୁଥିଲେ । ଖ୍ରୀ.୧୮୪୩ରେ ସରକାର ରାଜାଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ କରି ମନ୍ଦିର ଦାୟିତ୍ୱ ସହ ଏହି ମାହାଲ ଏହାଙ୍କ ହସ୍ତରେ ଅର୍ପଣ କରିଥିଲେ ।
(ପୁ.ବୋ. - ପୃ. ୨୯୧) ।

**ମାୟାମୃଗ**-*ଦେ.ବି.*- ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ ସନ୍ଧ୍ୟା ଧୂପରେ ରାମ ଲକ୍ଷ୍ମଣ ପାଲିଙ୍କିରେ ଜଗନ୍ନାଥ ବଲ୍ଲଭକୁ ପୂର୍ବପରି ବିଜେ କରନ୍ତି । କୁଣ୍ଡେଇବେଣ୍ଟ ସାହି ଲୋକେ ମାୟାମୃଗ ପ୍ରସ୍ତାବ କରାନ୍ତି । ଏହାପରେ ବାହୁଡ଼ାବିଜେ କରି ଦିଅଁ ଦକ୍ଷିଣୀଘରେ ବିଜେ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧) ।

**ମିଥୁନ ମୂର୍ତ୍ତି**-*ଦେ.ବି.*- ଯେକୌଣସି କମନୀୟ ଭଙ୍ଗୀରେ ଥିବା ନାରୀ ଓ ପୁରୁଷଙ୍କ ଯୁଗଳ ମୂର୍ତ୍ତି ।
(ଶ୍ରୀ.କି. - ପୃ. ୩୩୭) ।

**ମୈଥୁନ ମୂର୍ତ୍ତି**-*ଦେ.ବି.*-ନାରୀ ଓ ପୁରୁଷଙ୍କର ରତି କ୍ରୀଡ଼ା ଯୁଗଳ ମୂର୍ତ୍ତି ।
(ଶ୍ରୀ.କି. - ପୃ. ୩୩୭) ।

**ମୀନନାୟକ**-*ଦେ.ବି.*- ଏ ମାହାରୀ ସହିତ ସଂପୃକ୍ତ ସେବକ । ଏ ନାଚୁଣୀମାନଙ୍କୁ ଘରୁ ଡାକି ଆଣନ୍ତି । ମାହାରୀମାନଙ୍କୁ ଆଣି ଖଟାଇବା । ଏ ମଧ୍ୟ ଜଣେ ଚର୍ଚ୍ଚା ସେବକ । ସେବକମାନଙ୍କୁ ଯଥାସମୟରେ ସେବା ନିମନ୍ତେ ଏକତ୍ର କରାନ୍ତି । ସେବକଙ୍କ ଉପସ୍ଥିତି / ଅନୁପସ୍ଥିତି ପରିଛାକୁ ଜଣାନ୍ତି । ରାଜନଅରକୁ ବଜନ୍ତୀ ଓ ମାହାରୀଙ୍କୁ ନେଇଯିବା ଏମାନଙ୍କର କାର୍ଯ୍ୟ ।
(ଶ୍ରୀ.ସ୍ୱ. ୩ୟ - ପୃ. ୧୫୮) ।

**ମୁକ୍ତଶିଳା** - *ଦେ.ବି.*- ଶ୍ୱେତଗଙ୍ଗା - ପୁଷ୍କରିଣୀ ପରିସରରେ ରହିଥିବା ଏକ ବଡ଼ ଶିଳା ।
(ଶ୍ରୀ.ଶ. - ପୃ. ୧୪୬) ।

**ମୁକ୍ତିମଣ୍ଡପ**-*ଦେ.ବି.*- ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ଏହି ମଣ୍ଡପ । ଏହାର ଅନ୍ୟନାମ ବ୍ରହ୍ମାସନ । ଷୋଡ଼ଶ ଶାସନବାଡ଼ିର ବ୍ରାହ୍ମଣ ବୈଠକୀ ସ୍ଥାନ । ଏହାର ଲମ୍ବ ଓ ପ୍ରସ୍ଥ ପ୍ରତ୍ୟେକ ୩୮ ଫୁଟ । ଆଦିଶଙ୍କରାଚାର୍ଯ୍ୟ ବନାରସ କାଶୀବିଶ୍ୱନାଥ ମନ୍ଦିରରେ ଏବଂ ପୁରୀ ଶ୍ରୀଜଗନ୍ନାଥ ମନ୍ଦିରରେ ମୁକ୍ତିମଣ୍ଡପ ପଣ୍ଡିତସଭା ସ୍ଥାପନ କରିଥିଲେ । ତେଣୁ ପରମ୍ପରାକ୍ରମରେ ଗୋବର୍ଦ୍ଧନ ମଠ, ପୁରୀର ଶଙ୍କରାଚାର୍ଯ୍ୟମାନେ ମୁକ୍ତିମଣ୍ଡପ ପଣ୍ଡିତ ସଭାର ସ୍ଥାୟୀ ସଭାପତି ଅଟନ୍ତି । ଖ୍ରୀ.୧୫୨୫ରେ ଗଜପତି ପ୍ରତାପରୁଦ୍ରଦେବ ଏହାକୁ ମରାମତି କରାଇଥିଲେ । ସ୍ୱତ୍ୱଲିପି ଅନୁଯାୟୀ ଏଥିରେ ପୁରୀ ଜିଲାର ରାହାଙ୍ଗ ପ୍ରଗଣାର ଦଶଶାସନ, ଲମ୍ବରେ ଛ'ଓ ଓସାରରେ ସାତ ଶାସନର ବ୍ରାହ୍ମଣ ମହାଜନ ବସିବାର ଅଧିକାର ରହିଛି । ଏତଦ୍‌ବ୍ୟତୀତ ଦଣ୍ଡୀ ସନ୍ନ୍ୟାସୀ, ରାଜଗୁରୁ, ରାୟଗୁରୁ ଓ ଦେଉଳ ପୁରୋହିତ ବସନ୍ତି । ଦେଉଳ ପୁରୋହିତ ମୁକ୍ତିମଣ୍ଡପର ଅଧିକାରୀ କିନ୍ତୁ ବର୍ତ୍ତମାନ ସମ୍ପାଦକଙ୍କ ଦ୍ୱାରା କାର୍ଯ୍ୟ ନିର୍ବାହ ହେଉଛି । ମଣ୍ଡପର ଷୋଳ ଖମ୍ବକୁ ଷୋଳ ଶାସନର ପ୍ରତୀକ ବୋଲି କୁହାଯାଏ । ୧୫୯୨ ଖ୍ରୀଷ୍ଟାବ୍ଦରେ ମୋଗଲ ସେନାପତି ରାଜା ମାନସିଂହ ଜଗନ୍ନାଥ ମନ୍ଦିର ଦର୍ଶନ କରିବାକୁ ଆସିଥିଲେ । ଏହାର ସ୍ମୃତିରକ୍ଷା ନିର୍ମିତ ତାଙ୍କ ପାଟରାଣୀ ଗୌରୀ ଦେବୀ ମନ୍ଦିର ବେଢ଼ା ମଧ୍ୟରେ ମୁକ୍ତିମଣ୍ଡପ ନିର୍ମାଣ କରିଥିବା ମାଦଳାପାଞ୍ଜିରୁ ଜଣାଯାଏ । ୧୮୦୦ ମସିହାରେ ବୀର କିଶୋରଦେବଙ୍କ ରାଜତ୍ୱ କାଳରେ ଏହାର ପୁନଃନିର୍ମାଣ

କରାଯାଇଥିଲା । ଏହି ମଣ୍ଡପରେ ବର୍ତ୍ତମାନ - ବୀରହରେକୃଷ୍ଣପୁର, ବୀରବଳଭଦ୍ରପୁର, ବୀରକିଶୋରପୁର (ଚନ୍ଦନପୁର), ବୀରନରସିଂହପୁର, ବୀର ପ୍ରତାପପୁର, ବୀରଗୋବିନ୍ଦପୁର, ବୀର ରାମଚନ୍ଦ୍ରପୁର, ଶ୍ରୀପୁରୁଷୋତ୍ତମପୁର, ବୀର ଶ୍ରୀପୁରୁଷୋତ୍ତମପୁର, ଶ୍ରୀରାମଚନ୍ଦ୍ରପୁର, ଶ୍ରୀମୁକୁନ୍ଦପୁର, ପ୍ରତାପ ପୁରୁଷୋତ୍ତମପୁର, ବିଶ୍ୱନାଥପୁର, ଗୋପୀନାଥପୁର, ଦାମୋଦରପୁର, କାଶୀ ଜଗନ୍ନାଥପୁର, ରାୟ ଚକ୍ରଧରପୁର, ଜଗନ୍ନାଥ ବିଦ୍ୟାଧରପୁର, ବାସୁଦେଇପୁର, ଗୋକୁଳପୁର, ପାଟଯୋଶୀପୁର, ରାୟଗୁରୁପୁର, ସିରିକିଆ- ବୀରକେଶରୀପୁର, କନ୍ହେଇ ବିଦ୍ୟାଧରପୁର ପ୍ରଭୃତି ଚବିଶଟି ଶାସନର ପ୍ରତିନିଧିତ୍ୱ କରନ୍ତି ।

ପରବର୍ତ୍ତୀକାଳରେ ମୁକ୍ତିମଣ୍ଡପରେ ବସିପାରିବାର ଅଧିକାର ଛଅ ଗୋଟି ଶାସନ ଯୋଗ କରାଯାଇ ଶାସନ ସଂଖ୍ୟା ତିରିଶି ହୋଇଛି । ସେହି ପରିବର୍ଦ୍ଧିତ ଛଅ ଗୋଟି ଶାସନ ଗ୍ରାମ ହେଲା- ଲଳିତାପାଟପୁର, ସୋମେଶ୍ୱରପୁର, କପିଳେଶ୍ୱରପୁର, ପ୍ରତାପରାମଚନ୍ଦ୍ରପୁର, ବିଜୟ ରାମଚନ୍ଦ୍ରପୁର, ଉଭୟମୁଖୀ ରାମଚନ୍ଦ୍ରପୁର । ବଳରାମ ଦାସଙ୍କ ବେଦାନ୍ତ ସାର ଗୁପ୍ତ ଗୀତା, ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' ଆଭାସ ପ୍ରଦାନ କରେ କି ମାନସିଂହଙ୍କ ପୂର୍ବରୁ ମୁକ୍ତିମଣ୍ଡପ ଶ୍ରୀମନ୍ଦିରରେ ଥିଲା ।

ପଣ୍ଡିତ ସଭାପକ୍ଷରୁ ଏକ ପୁସ୍ତକାଗାର ସ୍ଥାପନ, ତତ୍କାଳୀନ ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା ସମ୍ଭବ ହୋଇଥିଲା । ସାର୍ ଜନ୍ ଉଡ୍‌ରଫ୍, ମ୍ୟାକ୍‌ଡୋନାଲଡ୍, ବିହାର ଓଡ଼ିଶାର ରାଜ୍ୟପାଳ ସାର୍ ଏଡୱାର୍ଡ ଗେଟ୍, ସାର୍ ଆଶୁତୋଷ ମୁଖାର୍ଜୀ, ଯୋଗେଶଚନ୍ଦ୍ର ରାୟ, ବାମଣ୍ଡା ରାଜା ବାସୁଦେବ ସୁଢ଼ଳ ଦେବ, ବ୍ୟାସକବି ଫକୀରମୋହନ ପଣ୍ଡିତ ସଭା ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ । ଏହି ପଣ୍ଡିତମାନେ ସଭାକରି ହିନ୍ଦୁ ଧର୍ମର କର୍ମକାଣ୍ଡ ଓ ପ୍ରାୟଶ୍ଚିତ ସମ୍ବନ୍ଧେ ବ୍ୟବସ୍ଥା କରନ୍ତି । ଏହି ମଣ୍ଡପରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚଳନ୍ତି ପ୍ରତିମାଙ୍କର ଝୁଲଣଯାତ୍ରା ସମାହିତ ହୁଏ । ଜଗନ୍ନାଥଙ୍କ ସେବା ପୂଜା ଓ ତିଥି ଆଦି ସମ୍ବନ୍ଧେ କୌଣସି ଜଟିଳ ପ୍ରଶ୍ନ ଉଠିଲେ ପୁରୀର ଗଜପତି ମହାରାଜା ଓ ମନ୍ଦିରର ତତ୍ତ୍ୱାବଧାରକ ଏହି ମୁକ୍ତିମଣ୍ଡପ ସଭାର ମତ ଲୋଡ଼ିଥାଆନ୍ତି । ସମଗ୍ର ଉତ୍କଳରେ ଓ ଭାରତବର୍ଷରେ ପୁରୀର ମୁକ୍ତିମଣ୍ଡପ ପଣ୍ଡିତମାନଙ୍କ ବ୍ୟବସ୍ଥା ପ୍ରତି ହିନ୍ଦୁମାନଙ୍କର ବିଶେଷ ଆସ୍ଥା ଥାଏ ।

ବେଦ- କର୍ମକାଣ୍ଡ, ଧର୍ମଶାସ୍ତ୍ର, ଜ୍ୟୋତିଷ, ପୁରାଣ, ଦର୍ଶନ, ପରମ୍ପରା, ଲୌକିକତା ସବୁକିଛିର ଆବଶ୍ୟକତା ଏଠାରେ ଉପଲବ୍ଧ ହୁଏ । ଏହି ଆବଶ୍ୟକତାକୁ ଅନୁଭବ କରି ପୁରୀର ଗଜପତି ରାଜାମାନେ ମନ୍ଦିରର ସେବାର ସେବାପୂଜା ଖଞ୍ଜିବା ସହିତ ଶାସ୍ତ୍ରୀୟ ପରାମର୍ଶ ପାଇଁ ମୁକ୍ତିମଣ୍ଡପ ପଣ୍ଡିତ ସଭାର ଆବଶ୍ୟକତା ରଖିଯାଇଛନ୍ତି । ତାଙ୍କର ବଂଶଧରମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଷୋଳଶାସନଓ ବତିଶ କରବାଡ଼ରୁ ପ୍ରତିନିଧିମାନଙ୍କୁ ନେଇ ଏହି ପଣ୍ଡିତ ସଭା ଗଠନ କରାଯାଇଛି । ଗଜପତି ମହାରାଜାମାନେ ମଧ ମେଧାବୀ ବ୍ରାହ୍ମଣ ଛାତ୍ରମାନଙ୍କୁ ବିଦ୍ୟା ଅଧ୍ୟୟନ କରାଇ ଯୋଗ୍ୟ କରିବାରେ ପୃଷ୍ଠପୋଷକତା କରୁଥିଲେ । ବିଭିନ୍ନ ସମୟରେ ବହୁ ବିଚକ୍ଷଣ ପଣ୍ଡିତ, କବି, ଜ୍ୟୋତିଷ, ବାଗ୍ମୀ, ରାଜନୀତିଜ୍ଞ, ଧର୍ମ ତଥା ନୀତିଶାସ୍ତ୍ରବିତ୍ ବହୁ ଗ୍ରନ୍ଥ ପ୍ରଣେତା ଏଥିରେ ଅଂଶଗ୍ରହଣ କରିଅଛନ୍ତି । 'ଦୁର୍ଗୋତ୍ସବ ଚନ୍ଦ୍ରିକା'ର ପ୍ରଣେତା ତଥା ଓଡ଼ିଶାର ପୁରପଲ୍ଲୀରେ ଶାରଦୀୟ ଦୁର୍ଗାପୂଜା ପ୍ରଚଳନ କରାଇଥିବା ବିଜୟଲକ୍ଷ୍ମୀକାନ୍ତ ରାଜଗୁରୁ ଦିନେ ଏହି ସଭାମଣ୍ଡନ କରୁଥିଲେ । ଅନ୍ୟ ଏକ ସମୟର ସଦସ୍ୟ ରାୟଗୁରୁ ସାମନ୍ତ ଗଦାଧର ମହାପାତ୍ରଙ୍କ ରଚିତ 'ଗଦାଧର ପଦ୍ଧତି' ଏକ ବିଶିଷ୍ଟ ହିନ୍ଦୁ

ଆଚାର ସଂହିତା ହିସାବରେ ଗୃହୀତ । 'ସାହିତ୍ୟ ଦର୍ପଣ' ପ୍ରଣେତା ବିଶ୍ୱନାଥ କବିରାଜ ମଧ ଏହି ସଭାର ସଦସ୍ୟ ଥିଲେ । ପରମ ଉପାସ୍ୟ ବିଶ୍ୱ ବନ୍ଦନୀୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି, ପ୍ରଦୀପ ପ୍ରଦାନ କରି ଗମ୍ଭୀରାରୁ ବାହାରି ଆସିଲେ ଦକ୍ଷିଣ ଦିଗରେ ପରିଦୃଶ୍ୟମାନ ହୁଏ ମୁକ୍ତିମଣ୍ଡପ । ରାଜାଠାରୁ ଦିନମଜୁରିଆ ପର୍ଯ୍ୟନ୍ତ ସମସ୍ତେ ଏହି ମଣ୍ଡପକୁ ବିନମ୍ର ପ୍ରଣାମ କରିଥାଆନ୍ତି । ସେମାନଙ୍କ ବିଶ୍ୱାସରେ ଧର୍ମ, ଅର୍ଥ, କାମ, ମୋକ୍ଷପ୍ରଦାନକାରୀ ହେଉଛି ମୁକ୍ତିମଣ୍ଡପ । ଦେବତା ଏବଂ ମାନବ (ବ୍ରାହ୍ମଣ)ମାନଙ୍କ ମାଧ୍ୟମରେ ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦପ୍ରାପ୍ତିର ଏକ ମିଳନସ୍ଥଳ ଏଇ ମୁକ୍ତିମଣ୍ଡପ । ଏଠାରେ ପ୍ରଚାରିତ ହୁଏ, ବିଶ୍ୱଜନହିତାୟ, ବିଶ୍ୱଜନସୁଖାୟ । ସେଥିପାଇଁ ଭାରତର ରାଷ୍ଟ୍ରପତିଙ୍କଠାରୁ ନେପାଳର ରାଜା ପର୍ଯ୍ୟାୟ ସମସ୍ତେ ଆସିଛନ୍ତି ଏହି ମଣ୍ଡପ ନିକଟକୁ ଆଶୀର୍ବାଦ ପାଇବା ନିମନ୍ତେ । ଯଦି ଶ୍ରୀମନ୍ଦିରରେ କୌଣସି ଧାର୍ମିକ ବ୍ୟବସ୍ଥା ପ୍ରସଙ୍ଗରେ ନିର୍ଣ୍ଣୟ ଆବଶ୍ୟକ ପଡୁଥିଲା ତେବେ ପୁରୀ ଗୋବର୍ଦ୍ଧନପୀଠର ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ନିର୍ଣ୍ଣୟ କରୁଥିଲେ । ବହୁ ପ୍ରାଚୀନ ସମୟରୁ ଶ୍ରୀଜଗନ୍ନାଥ ମନ୍ଦିର ସହିତ ଶଙ୍କରାଚାର୍ଯ୍ୟଙ୍କର ଘନିଷ୍ଠ ସମ୍ପର୍କ ଥିଲା । ଆରମ୍ଭରୁ ଏ ପର୍ଯ୍ୟନ୍ତ ଉକ୍ତ ମଠର ମଠାଧୀଶମାନେ ମୁକ୍ତିମଣ୍ଡପ ପଣ୍ଡିତ ସଭାର ଅଧ୍ୟକ୍ଷ ଅଛନ୍ତି । ବିମଳାଙ୍କ ଦକ୍ଷିଣ ପାର୍ଶ୍ୱରେ ମୁକ୍ତିମଣ୍ଡପ ପଣ୍ଡିତ ସଭାର କାର୍ଯ୍ୟାଳୟ, ପାଠାଗାର ତଥା ସଭାସ୍ଥଳୀ ରହିଛି । ଗବେଷକମାନେ ଅନେକ ସମୟରେ ପାଠାଗାରରେ ଥିବା ଉପାଦେୟ ଦୁଷ୍ପ୍ରାପ୍ୟ ଗ୍ରନ୍ଥର ସାହାଯ୍ୟ ଲୋଡ଼ିଥାନ୍ତି । ବିଭିନ୍ନ ସ୍ଥାନରେ ମୁକ୍ତିମଣ୍ଡପ ସଭାର ଭୂସମ୍ପତ୍ତି ରହିଛି । ଏହି ସଭା ଷୋଳଶାସନକୁ ସମ୍ପୃକ୍ତ କରାଇ କାର୍ତ୍ତିକ ମାସରେ ଜଗନ୍ନାଥଙ୍କର ଏକ ବିଶିଷ୍ଟ ଭୋଗ ଷୋଳଶାସନ ଭୋଗ କରାଇଥାଏ । ନୃସିଂହଜନ୍ମ ଦିନ ମୁକ୍ତିମଣ୍ଡପ ଉପରେ ଶ୍ରୀଜଗନ୍ନାଥଙ୍କର ନୃସିଂହ ରୂପକୁ ପୂଜା କରାଯାଇଥାଏ । ପ୍ରତିଦିନ ସକାଳୁ ଶ୍ରୋତ୍ରୀୟ ବ୍ରାହ୍ମଣମାନେ ରାଜା ତଥା ରାଜ୍ୟର ମଙ୍ଗଳ କାମନା ପାଇଁ ପ୍ରାର୍ଥନା କରିଥାଆନ୍ତି । ଶାସ୍ତ୍ରୀୟ ପରାମର୍ଶ ଦେବା ପାଇଁ ମୁକ୍ତିମଣ୍ଡପ ପଣ୍ଡିତ ସଭାର ଜଣେକ ପ୍ରତିନିଧିଙ୍କୁ ଶ୍ରୀମନ୍ଦିର ପରିଚାଳନା ସଭାର ସଦସ୍ୟ ରୂପେ ଗ୍ରହଣ କରାଯାଇଅଛି । ବିଭିନ୍ନ ବ୍ୟକ୍ତିବିଶେଷ ତଥା ଅନୁଷ୍ଠାନ ଧାର୍ମିକ ସଂସ୍କାରଗତ ସମସ୍ୟାର ସମାଧାନ ବିଷୟରେ ବହୁ ପ୍ରଶ୍ନ ଆଣି ଏହି ସଭା ସମ୍ମୁଖରେ ଉପସ୍ଥାପନ କରିଥାଆନ୍ତି । ସଭା ଏହିସବୁକୁ ପରୀକ୍ଷା ନିରୀକ୍ଷା କରି ଶାସ୍ତ୍ରୀୟ ପରାମର୍ଶ ଦେଇଥାଏ । ପଞ୍ଜିକାର ପାଣ୍ଡୁଲିପିକୁ ପରୀକ୍ଷା କରି ଆବଶ୍ୟକ ମୁତାବକ ସଂଶୋଧନ କରିବା ମୁକ୍ତିମଣ୍ଡପ ସଭାର ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ହିନ୍ଦୁ ଆଚାରରେ ବିଶ୍ୱାସୀ ସନ୍ତାନମାନେ, ବ୍ରତାଦି ସମୟରେ ଏହି ଅନୁଷ୍ଠାନ ସଭା ତରଫରୁ ଆଶୀର୍ବାଦ କାମନା କରିଥାନ୍ତି । ଗରିବ ବ୍ରାହ୍ମଣ ପିଲାଙ୍କର ବ୍ରତୋପନୟନ ଏହି ସଭା ଦ୍ୱାରା କରାଯାଇଥାଏ । ବିଭିନ୍ନ ଧର୍ମାନୁଷ୍ଠାନରେ ଏହି ସଭାର ସଭ୍ୟମାନେ ଉପସ୍ଥିତ ରହି କାର୍ଯ୍ୟକ୍ରମକୁ ଶୃଙ୍ଖଳିତ କରିଥାନ୍ତି ।
(ପୂ.ଓ.ଭା. - ପୃ. ୬୫୭୨, ପୁ.ବୋ. - ପୃ. ୨୭୫, ଶ୍ରୀ.ଜି. - ପୃ. ୧୦୯) ।

**ମୁକ୍ତିଶାଳା**-*ଦେ.ବି.*- ନବକଳେବର ସମୟରେ ବ୍ରହ୍ମ ପରିବର୍ତ୍ତନ ପରେ ପୁରୁଣା ବିଗ୍ରହମାନଙ୍କୁ ନିତ୍ୟ ବୈକୁଣ୍ଠରେ ସାଂସାରିକ ଲୀଳାରୁ ବିଶ୍ରାମ ଦିଆଯାଏ । ସେଠାରେ ଯେଉଁ ବେଦୀ ଅଛି ତାହାର ନାମ ମୁକ୍ତିଶାଳା । ସେହି ମଣ୍ଡପର ନାମ କୈବଲ୍ୟବେଦୀକା । ସେଠାରେ ଜଗନ୍ନାଥାଦି ବିଗ୍ରହମାନଙ୍କୁ ନିତ୍ୟ ରାସ ପାଇଁ ପାତାଳି ଦିଆଯାଏ । ଶ୍ରୀଜଗନ୍ନାଥ ମନ୍ଦିରରେ ସ୍ୱର୍ଗଲୋକ, ମର୍ତ୍ତ୍ୟଲୋକ ଓ ପାତାଳଲୋକ

ତ୍ରିଲୋକର ସେବା ହୋଇଥାଏ । ଜଗନ୍ନାଥଙ୍କର ଏହା ପାତାଳୀ ଲୀଳା ଅଟେ । (ଶ୍ରୀ.ଜି. - ପୃ. ୨୮୦) ।

**ମୁକୁସାବାଜି କାଛି**-*ଦେ.ବି.*- ଶ୍ରୀଜୀଉଙ୍କର ବସ୍ତ୍ରବିଶେଷ । ଲାଲ କିମ୍ବା ପୀତ ରଙ୍ଗର କ୍ଷୁଦ୍ର ପାଟଲୁଗା । ଦୋଳପୂର୍ଣ୍ଣିମାରେ ଲାଗି ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୬୪, ଶ୍ରୀଜ.ବେ.ର. - ପୃ. ୧୨୪) ।

**ମୁକୁନ୍ଦ ଉଖୁଡ଼ା**-*ଦେ.ବି.*- ଏକ ପ୍ରକାର ଉଖୁଡ଼ା- ଶ୍ରୀଜୀଉଙ୍କ ପାଖରେ ଭୋଗ ଲାଗି ହୁଏ । (କ୍ଷେ.ସ.) ।

**ମୁକୁନ୍ଦଦେବ (୧ମ)**-*ଦେ.ବି.*- ଏହି ରାଜା ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କ ଜଗମୋହନ, ଯମେଶ୍ୱର ଦେଉଳର ଜଗମୋହନ, ଜଳକ୍ରୀଡ଼ା ମଣ୍ଡପ, ବାଲିସାହି ସୁଦର୍ଶନ ଦେବଙ୍କ ଦେଉଳ ପଥର ଚାନ୍ଦିନୀ ନିର୍ମାଣ କରିଥିଲେ । (ମା.ପା. - ପୃ. ୫୦) ।

**ମୁକ୍ତେଶ୍ୱର**-*ଦେ.ବି.*- ମୁକ୍ତିମଣ୍ଡପ ପାର୍ଶ୍ୱସ୍ଥ ଶିବଲିଙ୍ଗ । ମୁକ୍ତିମଣ୍ଡପର ବ୍ରାହ୍ମଣମାନେ ଦୈନିକ ପାଣି ଦିଅନ୍ତି । ଶିବରାତ୍ରି ଦିନ ପୂଜାପଣ୍ଡା ପର୍ବାଣି ଭୋଗ କରନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୨୪୦, ଶ୍ରୀ.ବେ.ଦେ. - ପୃ. ୧୩୧) ।

**ମୁଖ ପଖାଳ ସେବା**-*ଦେ.ବି.*- ମୁହଁ ଧୋଇବା । ପ୍ରତ୍ୟହ ଶ୍ରୀମନ୍ଦିରସ୍ଥ ଶ୍ରୀଜୀଉଙ୍କର ପ୍ରାତଃକାଳୀନ ମୁଖ ପ୍ରକ୍ଷାଳନ ନୀତି ତଥା ଶ୍ରୀଠାକୁରଙ୍କ ଦନ୍ତ ମାର୍ଜନ ନୀତି, ଏହି ଅବକାଶ ନୀତିରେ ସମାପନ ହୁଏ । ଦାନ୍ତ ମାର୍ଜନ ଓ ସ୍ନାନବିଧିକୁ ଅବକାଶ କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ମୁଖପଖାଳ ସେବକ**-*ଦେ.ବି.*- ଶ୍ରୀଠାକୁରଙ୍କ ଦୈନିକ ଅବକାଶ ସମୟରେ ଯେଉଁ ସେବକ ଉଦ୍ଦିଷ୍ଟ ନୀତି ସମାପନ କରିଥାନ୍ତି । (ଶ୍ରୀ.ସ୍ୱ. ୩ୟ - ପୃ. ୫୪) ।

**ମୁଗ**-*ଦେ.ବି.*- ଏକ ପ୍ରକାର ଡାଲି ଜାତୀୟ ଦ୍ରବ୍ୟ । ଏଥିରେ ଏକ ପ୍ରକାର ଭୋଗ ତିଆରି କରାଯାଇ ଶ୍ରୀଜୀଉଙ୍କର କୋଠଭୋଗରେ ଲାଗିହୁଏ । ଏହା ବ୍ୟତୀତ ନନ୍ଦ ଉତ୍ସବ, ଗହ୍ମାପୂର୍ଣ୍ଣିମା, ପ୍ରଥମାଷ୍ଟମୀ, ତୁଳାସଂକ୍ରାନ୍ତି, ଉତ୍ଥାନ ଏକାଦଶୀ, କାର୍ତ୍ତିକ ପୂର୍ଣ୍ଣିମା, ଗର୍ଭଣା ସଂକ୍ରାନ୍ତି, ଦଶହରା ପ୍ରସାଦରେ ଲାଗି ହୁଏ । ବିମଳାଙ୍କ ଷୋଳପୂଜାରେ ମଧ୍ୟ ଲାଗି ହୋଇଥାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୮୬-୧୯୪) ।

**ମୁଗେଇ**-*ଦେ.ବି.*- ସିଝା ମୁଗରେ ଅଦା ଓ ମସଲା ଦିଆହୋଇ ଘିଅରେ ଭଜାଯାଇ ଭୋଗ ପ୍ରସ୍ତୁତ କରାଯାଏ । ମକର ସଂକ୍ରାନ୍ତିରେ ଏହି ଭୋଗ ଶ୍ରୀଠାକୁରଙ୍କୁ ଲାଗିହୁଏ । (ଶ୍ରୀ.ସ୍ୱ. - ୧୭୨) ।

**ମୁଗେଇ ଓଳି**-*ଦେ.ବି.*- ଏକ ପ୍ରକାର ଛୋଟ ଓଳି । ରତ୍ନହାଣ୍ଡିକୁ ମଧ୍ୟ ମୁଗେଇ ଓଳି କୁହାଯାଏ । (ପୁ.ବୋ. - ପୃ. ୨୯୩) ।

**ମୁଣ୍ଡି**-*ଦେ.ବି.*- ମନ୍ଦିରର ଦଧିନଉତି । ଆମଳିକ ଶିଳାକୁ ମୁଣ୍ଡି କୁହାଯାଏ । (ପୁ.ବୋ. - ପୃ. ୨୯୩) ।

**ମୁଣ୍ଡିଆମରା**-*ଦେ.ବି.*- ଗୁଣ୍ଡିଚାଘର ପାଚେରୀ କଡ଼, ଯେଉଁ ବାଟଦେଇ ବାଲିଘାଟ ଆଡୁ ଶରଧାବାଲିରେ ପ୍ରବେଶ କରିବାକୁ ହୁଏ । ଏଠାରେ ଗଛ ଆଢୁଆଳରେ ଶ୍ରୀମନ୍ଦିର ଦିଶୁଥିବାରୁ ଲୋକେ ଏହିଠାରେ ଠିଆ ହୋଇ ମୁଣ୍ଡିଆ ମାରନ୍ତି । (ପୁ.ବୋ. - ପୃ. ୨୯୩) ।

**ମୁଦ**-*ଦେ.ବି.*- ଶ୍ରୀମନ୍ଦିରରେ ରାତ୍ରରେ ପହୁଡ଼ ପଡ଼ିବା ସମୟରେ ଜୟବିଜୟ ପହଡ଼ ପରେ ଗମ୍ଭୀରା ତଦାରଖ ପରେ କଳାହାଟ ଦ୍ୱାର ଏବଂ ବିଭିନ୍ନ ଦ୍ୱାରରେ ମାଟି ସାହାଯ୍ୟରେ ଦିଆଯାଉଥିବା ମୁଦ । ଏଥିରେ ମଦନମୋହନଙ୍କ ଛବିର ସିଲ ରହେ । (ଶ୍ରୀ.ସ୍ୱ. ୨ୟ - ପୃ. ୨୯) ।

**ମୁଦ ଯାଞ୍ଚକାରୀ**-*ଦେ.ବି.*- ସକାଳେ ଶ୍ରୀମନ୍ଦିର ଦ୍ୱାର ଫିଟିବା ପୂର୍ବରୁ ମୁଦ ଯାଞ୍ଚ କରୁଥିବା ପାଞ୍ଚ ଜଣ ସେବକ । ଯଥା- ପ୍ରତିହାରୀ, ଭିତରଛ ମହାପାତ୍ର, ମୁଦୁଲି, ଅଖଣ୍ଡ ମେକାପ, ପାଳିଆ ମେକାପ । ଏମାନେ ମୁଦ ଯାଞ୍ଚ କରି ସକାଳ ପାଞ୍ଚ ଘଟିକାରେ ଦ୍ୱାର ଖୋଲନ୍ତି । (ଶ୍ରୀ.ସ୍ୱ. - ପୃ. ୧୪୭) ।

**ମୁଦଲ**-ଦେ.ବି.- ମହାରାଜାଙ୍କର ହୁକୁମନାମା । ଆଦେଶ ।
(ପୁ.ବୋ. - ପୃ. ୨୯୪) ।

**ମୁଦ୍ରା ସେବା**-ଦେ.ବି.- ଶ୍ରୀମନ୍ଦିର ସେବକ । ମହାପ୍ରଭୁଙ୍କ ବାଡ଼ରେ ଚନ୍ଦନଲାଗି ପାଇଁ ଘଟୁଆରିଠାରୁ ଚନ୍ଦନ ଆଣି ପୁଷ୍ପାଳକଙ୍କୁ ଦିଅନ୍ତି । ପୁଷ୍ପାଞ୍ଜଳି ଠାକୁର ବିଜେ ଓ ବାହୁଡ଼ିବା ବେଳେ ଆଗରେ ବଇଠା ଦେଖାଇଥାନ୍ତି । ପହୁଡ଼ ପରେ କଳାହାଟ ଦ୍ୱାର ବନ୍ଦ ସମୟରେ ପଢ଼ିଆରୀ ମାଟି ମୁଦ ଦେଲେ ଏ ସେବକ ମୁଦୁଲିଠାରୁ ନେଇ ମାଟିରେ ମୁଦ୍ରା ଦେଇ ମୁଦୁଲିଙ୍କୁ ଫେରସ୍ତ କରନ୍ତି । କୁମାର ପୂର୍ଣ୍ଣିମା ଦିନ ଲକ୍ଷ୍ମୀଙ୍କ ଜଗମୋହନରେ ଲକ୍ଷ୍ମୀ ଓ ମଦନମୋହନଙ୍କ ଖେଳ ପାଇଁ କଉଡ଼ି ପଶାଗୋଟି ସିଂହାସନ ତଳେ କଉଡ଼ି ଖେଳ ପାଇଁ କଉଡ଼ି, ବସନ୍ତ ପଞ୍ଚମୀ ଦିନ ପ୍ରଥମ ଚାଚେରୀରେ ମହାପ୍ରଭୁଙ୍କ ବାଡ଼ରେ ଯୋଗାଇଥାନ୍ତି । ଫଗୁ ଓ ଚନ୍ଦନ ମୁଦିରଥଙ୍କୁ ଦୋଳଦଶମୀରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଜୟବିଜୟ ଦ୍ୱାରରେ ଦୋଳଗୋବିନ୍ଦ, ଲକ୍ଷ୍ମୀ, ସରସ୍ୱତୀଙ୍କୁ ପ୍ରସାଦ ଲାଗି ବେଳେ ଫଗୁ, ଚତୁର୍ଦ୍ଦଶୀଦିନ ଲକ୍ଷ୍ମୀମନ୍ଦିର ସମ୍ମୁଖରେ ବିଜେ ହେଲେ ଠାକୁରଙ୍କୁ ଲାଗି ପାଇଁ ଫଗୁ, ଚନ୍ଦନ ଗୁଣ୍ଡ ମୁଦିରଥଙ୍କୁ ଯୋଗାଇଥାନ୍ତି ।
(ଶ୍ରୀ.ଶ. - ପୃ. ୧-୮୪/୮୫) ।

**ମୁଦିରସ୍ତ (ମୁଦିରଥ)**-ଦେ.ବି.- ଶ୍ରୀମନ୍ଦିରରେ ଏହି ସେବକ ଗଜପତି ମହାରାଜଙ୍କର ପ୍ରତିନିଧି ସ୍ୱରୂପ କାମ କରନ୍ତି । ସିଂହାସନ ଉପରେ ସକଳ ରାଜନୀତି କରନ୍ତି । ରାଜା ବିଜେ ହୋଇ ନ ପାରିଲେ, ରାଜାଙ୍କ ସେବା ଯାହା ଅଛି, ସେ ସବୁ ସିଂହାସନ ତଳେ ଠିଆ ହୋଇ କରନ୍ତି । ପ୍ରତ୍ୟେକ ରାଜନୀତିମାନଙ୍କରେ ଏହି ତିନିବାଡ଼ରେ ନୀତି କରନ୍ତି । ସର୍ବାଙ୍ଗ ବନ୍ଦାପନା ଓ ମଙ୍ଗଳାର୍ପଣରେ ବଡ଼ବାଡ଼ରେ ନୀତି କରନ୍ତି । ସ୍ନାନପୂର୍ଣ୍ଣମୀ ଦିନ ସୁନା ଗୋସେଇଁ ସହ ପ୍ରଥମ ଜଳଛେକ ଆଣନ୍ତି । ରଥବାହୁଡ଼ା ଓ ସ୍ନାନ ବିଜେମାନଙ୍କରେ ଡୋର ଲାଗି ଓ ଆଞ୍ଜୁଳି ତିନିବାଡ଼ରେ କରନ୍ତି । ପୁଷ୍ୟାଭିଷେକ ଦିନ ଦଣ୍ଡଛତ୍ର ସଂସ୍କାର କରି ଭିତରଛ ହାତକୁ ଦିଅନ୍ତି । ଯେଉଁ ଦିନମାନଙ୍କରେ ପ୍ରସାଦ ଲାଗି ହୁଏ ସେ ଦିନ ଭୋଗ ଛାମୁକୁ ଆସିବା ଉତ୍ତାରେ ଗଦି ଫେଟା ସଂସ୍କାର କରି ମହାପ୍ରଭୁଙ୍କ ଆଡ଼େ ଲାଗି କରନ୍ତି । ପ୍ରତ୍ୟେକବର୍ଷ ପୁଷ୍ୟାଭିଷେକରେ ଅଣସର ପିଣ୍ଡିଠାରେ ଲାଗି ହୋଇଥିବା ତଡ଼ପ ଏହାଙ୍କ ଶିରରେ ସେ ବାନ୍ଧନ୍ତି, ଓଲାଗି ଉତୁରି ଧାରଣ କରନ୍ତି । ରାଜାଙ୍କ ଅନୁପସ୍ଥିତିରେ ରଥରେ ଛେରାପହଁରା କରନ୍ତି । ଗହଣ ବିଜେ ସମୟରେ ମନ୍ଦିରରେ ପୂର୍ଣ୍ଣଶୋଧ ହେଲେ କେବଳ ଏହି ସେବକ ରାଣୀଙ୍କ ସହ ରହି ଦର୍ଶନ କରାନ୍ତି । ପ୍ରତ୍ୟେକ ଜନ୍ମ ବିଧିରେ ରାଜ ପ୍ରତିନିଧି ରୂପେ ବ୍ରହ୍ମ ଆଚାର୍ଯ୍ୟ ବରଣ କରନ୍ତି । ଚନ୍ଦନଯାତ ହଳଦୀପାଣିରେ ଓ ଜଳକ୍ରୀଡ଼ାରେ ଫଗୁ ଖେଳନ୍ତି । ଷଷ୍ଠୀ ମାର୍କଣ୍ଡ ପୂଜାରେ ପଣ୍ଡା, ପଡିମହାପାତ୍ରଙ୍କ ସହ ବରଣ ହୁଅନ୍ତି ।
(ଶ୍ରୀ.ସ୍ୱ. - ପୃ. ୩୦) ।

**ମୁଦୁଲି ସେବକ**-ଦେ.ବି.- ଶ୍ରୀମନ୍ଦିରରେ ଏହି ସେବକ ଜିମାରେ ରୂପାପିଙ୍ଗଣ, ପର୍ବପର୍ବାଣି ପୂଜାପାତ୍ର ଜିନିଷ ରୂପାବଟା, ଏକୋଇଶି ବତୀ, ରୂପାଝରି ଦୈନିକ ପଟୁଆର, ସୁନାବେତ, ସୁନା କର୍ପୂର ଆଳତି, ଉପଚାର ଚାମର, ସୁନା ଜିଭଛେଲା, ସୁନାମୁଦ୍ରା ଛାପ ଇତ୍ୟାଦି ଦୈନିକ କାରବାର ଜିନିଷ ରହେ ।
(ଶ୍ରୀ.ସ୍ୱ. ୩ୟ - ପୃ. ୭୪-୭୯) ।

**ମୁହଁପାଡିବା**-ଦେ.କ୍ରି.- ରୋଷଶାଳାରୁ ଛେକ ବୋହିଲା ବେଳେ ସେବକମାନେ ଗାମୁଛାରେ ମୁହଁ ବାନ୍ଧିବା । ଯେଉଁଦିନ ଘଣ୍ଟ, ଛତା ଭୋଗ ହୁଏ ସେହିଦିନ ଛେକ ବୋହୁଥିବା ତୋଳାଳି ଗାମୁଛାକୁ ମୁହଁ ସହ ମୁଣ୍ଡରେ ତିନି ଘେରା ବୁଲାଇ ଭିଡେ । ଏହାକୁ ବାଘୁଆ ମୁହଁପଡା କୁହାଯାଏ ।
(କ୍ଷେ.ସ.) ।

**ମୂର୍ତ୍ତି**-ଦେ.ବି.- ଶ୍ରୀମନ୍ଦିରରେ ଭୋଗ ପସରା ଏବଂ ସ୍ୱର୍ଣ୍ଣ ଅଳଙ୍କାରମାନ ମୂର୍ତ୍ତି ହିସାବରେ ଗଣତି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫) ।

**ମୂର୍ତ୍ତ୍ମମୂଳ**-ଦେ.ବି.- ଶ୍ରୀଜୀଉଙ୍କ ନୈବେଦ୍ୟକୁ ଅର୍ପଣଯୋଗ୍ୟ କରିବା ନିମିତ୍ତ ସଜାଇ ରଖିବା ।
(କ୍ଷେ.ସ.) ।

**ମୂଳା ରାଇତା**-*ଦେ.ବି.*- ଦହି ଓ ମୂଳା ମିଶ୍ରିତ ଏକ ରାଇତା ଯାହା କି ପହିଲି ଭୋଗରେ ଠାକୁରଙ୍କଠାରେ ଲାଗି ହୋଇଥାଏ । ଏତଦ୍ ବ୍ୟତୀତ ମୂଳା ଶାଗ ପ୍ରଥମାଷ୍ଟମୀରେ ଶ୍ରୀଜୀଉଙ୍କୁ ଲାଗି ହୋଇଥାଏ । (ଶ୍ରୀ.ସ୍ୱ- ପୃ. ୧୯୧/ଶ୍ରୀ.ଜି. - ପୃ. ୨୧୪) ।

**ମୂଳିଆ ସୁଆଁସିଆ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ସମସ୍ତ ପର୍ବପର୍ବାଣିରେ କର୍ମକର୍ମାଣି ଲାଗି ପୀଢ଼ା, ଗୁଖା, ଭଦ୍ରାସନ, ଶ୍ରୁବ, ଶୁଚ ଆଦି ଯୋଗାନ୍ତି । ବିଭିନ୍ନ ନୀତିରେ ପ୍ରଦତ୍ତ ବଳି ପୋତନ୍ତି । ଭଉଁରୀ ଦିନ ରଥର ପ୍ରତ୍ୟେକ ଚକ ଧୁଅନ୍ତି । ହଳଦୀ ପାଣି ଓ ଜଳକ୍ରୀଡ଼ାରେ ବାଉଁଶ ପିଚକାରୀ ଦିଅନ୍ତି । ଷୋଳପୂଜା ସଙ୍ଖୁଡ଼ି ଭୋଗ ତିନିଦିନ ଖଟୁଆଠାରୁ ଆମିଷ ଆଣି ଯୋଗାନ୍ତି । ମାଛକଟା ହେବା ପରେ ଧୁଅନ୍ତି । ଅଣସର ଦଶମୀ ଦିନ ଚକା ବିଜେକୁ ଅଶିଟା ନଡ଼ିଆ ଯୋଗାନ୍ତି । ସ୍ନାନବେଦୀ, ରଥ, ଗୁଣ୍ଡିଚା ଘରକୁ ପୀଢ଼ା, ପୂଜା ଉପକରଣ ଯୋଗାଇଥାନ୍ତି । ଘୋଡ଼ା, ଚୌକି, ଗରା, ଢାଳ ଆଦି ଗୁଣ୍ଡିଚା ଘରକୁ ଓ ରଥକୁ ଆଣନ୍ତି । କାଳୀୟ ଦଳନ ବେଶକୁ ଫଣା ଓ ଦଶହରାକୁ ଲାଖପଟା ଯୋଗାନ୍ତି । (ଶ୍ରୀ.ସ୍ୱ. - ପୃ. ୧୬/୧୭) ।

**ମେକାପ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ଠାକୁରଙ୍କ ବସ୍ତ୍ର, ପଲଙ୍କ, ଶଯ୍ୟା, ଅଳଙ୍କାର, ପ୍ରଦୀପ ଦାୟିତ୍ୱରେ ଥିବା ସେବକ । ଭଣ୍ଡାର ମେକାପ, ଚାଙ୍ଗଡ଼ା ମେକାପ, ଖଟଶେଯ ମେକାପ, ଅଖଣ୍ଡ ମେକାପ ରୋଷ ସରଘର ମେକାପଙ୍କ ବ୍ୟତୀତ ଗନ୍ଧଣ ମେକାପ ଆଖ୍ୟାଧାରୀ ଭିନ୍ନ ଗୋଷ୍ଠୀର ସେବକ ମଧ କାର୍ଯ୍ୟ କରନ୍ତି । ଦୈନିକ ଲାଗି ସୁନା ଜିନିଷ ଭଣ୍ଡାର ମେକାପଙ୍କ ଜିମାରେ ରହିଥାଏ । ସୁନାର ଶୟନଠାକୁର ତିନିମୂର୍ତ୍ତି, ସୁନାର ପୁଷ୍ପାଞ୍ଜଳି ଠାକୁର, ରୁପାର ଲୋକନାଥ ଓ ଦୁର୍ଗାମୂର୍ତ୍ତି, ଘୋଡ଼ା ଜାମା, ଖଣ୍ଡୁଆ, ଟୋପର, ଝଲକ, ଚିତା ରାହୁରେଖା ଆଦି ଲାଗି ନ ହୋଇଥିବା ବେଳେ ଝୋବା ମଇଲମ ହେଲେ ଏହାକୁ ପାଖରେ ରଖନ୍ତି । ଏତଦ୍‌ବ୍ୟତୀତ ରୁପା ପିଙ୍ଗଳ ଝରି, ଜୟମଙ୍ଗଳ, ସୁନା କର୍ପୂର, ଆଳତି, ସୁନାପଦକ, ଉପଚାର, ତିନିମୂର୍ତ୍ତି, ସୁନା ଚାମର, ସୁନା ଆଲଟ, ସୁନା ଖଟକା, ସୁନାବେତ ଆଦି ଏହାଙ୍କ ଜିମାରେ ରହେ । ଭଣ୍ଡାର ଘରେ ବିଜେ ହୋଇଥିବା ସୁନା ଲକ୍ଷ୍ମୀ ମୂର୍ତ୍ତି, ରୁପା ସରସ୍ୱତୀ ମୂର୍ତ୍ତି ଏହାଙ୍କ ଜିମାରେ ରହନ୍ତି । ଅଣସର ତ୍ରୟୋଦଶୀରୁ ନୀଳାଦ୍ରିବିଜେ ଯାଏ ରୁପାର ରସିକ, ଶୁଆ ଥଣ୍ଟିଆ, ତମ୍ବା ନାରାଚ ଏହାଙ୍କ ଜିମାରେ ରହେ । ଛେରାପହଁରା ସମୟରେ ଫୁଲ ଛିଞ୍ଚନ୍ତି । ଚନ୍ଦନ ଲାଗି ବେଳେ କର୍ପୂର, କସ୍ତୁରୀ ଯୋଗାନ୍ତି । ଶାଢ଼ୀବନ୍ଧାରେ ଚନ୍ଦନ ଛାପ ଦିଅନ୍ତି । ପାଳିଆ ମେକାପ- ଦ୍ୱାରଫିଟା ସମୟରେ ରହିବା, ରାତିରେ ଜୟବିଜୟ ଦ୍ୱାର ଜଗି ରହିବା, ସଜପାଳିଆ ଆସିଲେ, ବାସିପାଳିଆ ଯିବା, ଅଖଣ୍ଡ ମେକାପ ସହ ବଇଠା ଧରି ଶ୍ରୀଅଙ୍ଗ ଦେଖିବା, ମଙ୍ଗଳ ଆଳତି ସଜାଡ଼ିବା, ଆଳତି ପରେ ପୁଷ୍ପାଳକ ସିଂହାସନକୁ ଉଠିଲା ବେଳେ ଏହାଙ୍କଠାରୁ ଶ୍ରୀଅଙ୍ଗ ମଣି ନେବା, ସାହାଣମେଲାରେ ତିନିବାଡ଼ରେ ଗଡୁ ଧରି ଠିଆ ହେବା ଓ ଧୂପ ବେଳେ ପଣ୍ଡାଙ୍କୁ ଉପଚାର ସୁନା ଅଳଙ୍କାର ଦେବା ଓ ଫେରାଇବା, ଚନ୍ଦନ ଲାଗିରେ ତିନି ବାଡ଼ରେ ଚନ୍ଦନ ବଢ଼ାଇବା, ସନ୍ଦେହ ହେଲେ ଦିଅଁଙ୍କ ଲାଗି ଅଳଙ୍କାର ତଦାରଖ କରିବା, ପହଡ଼ ଆଳତିରେ କର୍ପୂର ଲଗାଇବା, ଜୟବିଜୟ ଦ୍ୱାରରେ ଶୟନ ଠାକୁରଙ୍କ ଆଳତିରେ କର୍ପୂର ଲଗାଇବା, ପହଡ଼ ବେଳେ ମଣିମା ଡାକ, ଜୟବିଜୟ ଦ୍ୱାରରେ ଶୋଇବା, ଯାତ୍ରାଙ୍ଗୀ, ଏକାଦଶୀ, ସର୍ବାଙ୍ଗରେ ମହାପ୍ରଭୁଙ୍କ ବାଡ଼ରେ ଚନ୍ଦନ ବଢ଼ାଇବା, ଯାନିଯାତ୍ରା ବେଶରେ ଭଣ୍ଡାର ମେକାପଠାରୁ ଅଳଙ୍କାର ନେଇ ପୁଷ୍ପାଳକଙ୍କୁ ଦେବା ଓ ଫେରାଇ ନେବା । ଦଶହରାଦିନ ଛଅଜଣ ମେକାପ ଆୟୁଧ ବେଢ଼ା କରିବା, ଘୋଡ଼ା ଲାଗିରେ ଘୋଡ଼, ଟୋପର, ଝଲକ ଆଣିଦେବା, ଦଣ୍ଡ ଛତ୍ରରେ ଓ ପୁଷ୍ପାଭିଷେକରେ ହନୁମାନ ଭଳି ଦଣ୍ଡଛତ୍ର ଧରି ବସିବା, ବନକ ଲାଗିରେ ମଝିବାଡ଼ରେ ବଇଠା ଦେଖାଇବା, ଦଇତା ଓ ଦଉଙ୍କ ଆବଶ୍ୟକ ସମୟରେ ଶ୍ରୀଅଙ୍ଗ ମଣାଇବା, ବନକଲାଗି ଓ ମହାସ୍ନାନରେ ସିଂହାସନ ଉପରକୁ

ଉଠି ଧୋଇବା ଏହାଙ୍କର କାର୍ଯ୍ୟ । ଚାଙ୍ଗଡ଼ ମେକାପ- ଠାକୁରଙ୍କ ବସ୍ତ୍ରାଦି ଦାୟିତ୍ୱରେ ଥିବା ସେବକ । ଦିନସାରା ବେଶ ପାଇଁ ପୁଷ୍ପାଳକଙ୍କୁ ବସ୍ତ୍ରଦେବା, ଉଲାଗି ବସ୍ତ୍ର ଲୁଗା ଧୂଆଁକୁ ଓ ପାଟପଠନି ମହାସେଠୀଙ୍କୁ ଦେବା, ପ୍ରତିଧୂପରେ ଆସନପକା, ଉପଚାର ବସ୍ତ୍ରଦେବା, ରାଜାଙ୍କୁ ଗଦିପ୍ରସାଦ ତାଟ ଦେବା, ଶାଢ଼ୀ ବନ୍ଧାରେ ସୂତା/ ପାଟଶାଢ଼ୀ ଦେବା, ରାଜନୀତି ପାଇଁ ହାତ ପୋଛା ଖଦୀ ଦେବା, ସୁଆରବଡ୍ଡୁ ଭାବରେ ଚକା ଅପସର ସେବା କରିବା, ଚାପ ଉପରେ ଖଦୀ ଚାମର କରିବା ଏହାଙ୍କ କାର୍ଯ୍ୟ ।

(ପୁ.ବୋ.- ପୃ.୨୯୬/୨୯୭, ଶ୍ରୀ.ସ୍ୱ. - ପୃ. ୧୦୮, ୧୧୯) ।

**ମେଘନାଦ ପାଚେରୀ**-*ଦେ.ବି.*- ପୌରାଣିକ ମତରେ ସାଗର ରାଜା ବରୁଣଙ୍କର ଅନ୍ୟନାମ ମେଘନାଦ । ସାଗର କୂଳରେ ଶ୍ରୀଜଗନ୍ନାଥ ମନ୍ଦିର ବିଦ୍ୟମାନ ଥିବାରୁ ସାଗର ରାଜା ବରୁଣ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ମନ୍ଦିର ମଧ୍ୟକୁ ପଶି ଆସୁଥିଲେ । ଏଣୁ ମନ୍ଦିରରେ ନ ପଶିବା ପାଇଁ ଓ ଲହଡ଼ିର ଶବ୍ଦ ନ ଶୁଣିବା ପାଇଁ ଏହି ମେଘନାଦ ପାଚେରୀ ନିର୍ମିତ ହୋଇଛି ବୋଲି ଲୋକ ବିଶ୍ୱାସ । ବରୁଣ ଏଥିରେ ଦୁଃଖିତ ହେବାରୁ ଶ୍ରୀଜଗନ୍ନାଥ ତାଙ୍କୁ କହିଥିଲେ ସେ ତାଙ୍କ ପାଚେରୀ ନାମ ମେଘନାଦ ରଖିଲେ । ତାଙ୍କ ନାମରେ ନାମିତ କରି ଏବଂ ତାଙ୍କୁ ଦର୍ଶନ କରିବାକୁ ସେ ପ୍ରତି ଅମାବାସ୍ୟାରେ ସାଗରକୂଳକୁ ଯିବେ ବୋଲି ପ୍ରତିଶ୍ରୁତି ଦେଲେ । ଏଣୁ ପ୍ରତି ଅମାବାସ୍ୟାରେ ସାଗର ନାରାୟଣ ପୂଜା ହୁଏ । ମଦନମୋହନ ବିମାନରେ ସାଗରକୂଳକୁ ଆସନ୍ତି । ଏହି ପାଚେରୀର ଉଚ୍ଚତା ପ୍ରାୟ ୨୨ ଫୁଟ । ସ୍ଥଳବିଶେଷରେ କେଉଁଠି କେଉଁଠି ଫୁଟେ ଦୁଇଫୁଟ ଅଧିକ । ପ୍ରାୟ ସାଢ଼େ ୬ ଫୁଟପ୍ରସ୍ଥ । ପୂର୍ବ-ପଶ୍ଚିମ ପଟର ଦୈର୍ଘ୍ୟ ପ୍ରାୟ ୬୪୦ ଫୁଟ, ଉତ୍ତର-ଦକ୍ଷିଣ ପଟର ଦୈର୍ଘ୍ୟ ୨୬୫ ଫୁଟ । ମେଘନାଦ ପାଚେରୀଠାରୁ କୂର୍ମବେଢ଼ା ପର୍ଯ୍ୟନ୍ତ ଶ୍ରୀମନ୍ଦିର ଭିତର ସ୍ଥାନକୁ ବାହାର ବେଢ଼ା ଏବଂ କୂର୍ମବେଢ଼ା ପର୍ଯ୍ୟନ୍ତ ଶ୍ରୀମନ୍ଦିର ଓ ମୁଖଶାଳା ଆଦିକୁ ଛାଡ଼ି ଚାରି ପାଖରେ ଥିବା ସ୍ଥାନକୁ ଭିତର ବେଢ଼ା କୁହାଯାଏ । ମେଘନାଦ ପାଚେରୀ ଖ୍ରୀ.୧୪୪୮ରେ ନିର୍ମିତ ହୋଇଥିଲା ।

(ଶ୍ରୀ.ଜି. - ପୃ. ୮୧, ଉ.ଇ.ଅ.ଥ., ପୂ.ଓ.ଭା. - ପୃ. ୬୬୯୦, ଓ.ସାଂ.ଶ. - ପୃ. ୩୦୭) ।

**ମେଘା**-*ଦେ.ବି.*- ଏହା ଏକ ପ୍ରକାର ବାଦ୍ୟଯନ୍ତ୍ର ।

(ପୁ.ବୋ. - ପୃ. ୨୯୭) ।

**ମେଘାଡମ୍ବର**-*ଦେ.ବି.*- ଏକ ପ୍ରକାର ଛତ୍ର ବିଶେଷ ।

(ପୁ.ବୋ. - ପୃ. ୧୯୩/୨୯୭) ।

**ମେଘମାଳିଆ**-*ଦେ.ବି.*- ଏକ ଉପାଧି ବିଶେଷ । ଜନଶ୍ରୁତି ଅଛି- ସ୍ୱର୍ଗ ଦ୍ୱାର ଦେଇ ଦେବତାମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଆସନ୍ତି । ଥରେ ଅନାବୃଷ୍ଟି ସମୟରେ ଦର୍ଶନ ପରେ ଇନ୍ଦ୍ର ଜଣେ ସୁଆରଠାରୁ କିଛି ମହାପ୍ରସାଦ ସେବା କରି ଅର୍ଥ ନ ଦେବାରୁ ସୁଆର ସମୁଦ୍ରକୂଳ ପର୍ଯ୍ୟନ୍ତ ତାଙ୍କର ପଶ୍ଚାତ୍ ଧାବନ କଲେ । ରାଜପୁରୁଷ ବେଶଧାରୀ ଇନ୍ଦ୍ର ସୁଆରଙ୍କ ଜିଜ୍ଞାସାର ଉତ୍ତରରେ ସ୍ୱ ପରିଚୟ ଦେଇ ବରମାଗିବାକୁ କହିଲେ । ସୁଆର ତାଙ୍କ ଇଚ୍ଛା ମତେ ବୃଷ୍ଟି ହେବା ପାଇଁ ବର ମାଗିଥିଲେ । ଗଜପତି ଏହା ଜାଣି ସୁଆରଙ୍କ ଏହି କାର୍ଯ୍ୟରେ ରାଜା ଖୁସି ହୋଇ ତାଙ୍କୁ ମେଘମାଳିଆ ସୁଆର ଆଖ୍ୟା ଦେଇଥିଲେ ।

(ପୁ.ବୋ. - ପୃ. ୨୯୭) ।

**ମେଣ୍ଢାମୁଣ୍ଡିଆ ଖେଚୁଡ଼ି**-*ଦେ.ବି.*- ଏହା ଏକ ପ୍ରକାର ଖେଚୁଡ଼ି ଭୋଗ ବିଶେଷ । ଅଦା ହେଙ୍ଗୁ ଓ ଲୁଣ ପଡ଼ି ପ୍ରସ୍ତୁତ ହୋଇଥିବା ଖେଚୁଡ଼ି । ଏହାକୁ ଚୂଳ ଆକୃତିରେ ସଜାଯାଇ ସକାଳ ଧୂପରେ ଠାକୁରଙ୍କୁ ଭୋଗ ଲାଗିହୁଏ ।

(ପୁ.ବୋ.- ପୃ. ୨୯୭) ।

**ମେରେଦା ରୋଷ**-*ଦେ.ବି.*- ଶ୍ରୀମନ୍ଦିର ପରିସରରେ ହରି ସହଦେବ ମନ୍ଦିର ପଛପାଖରେ ପ୍ରାଚୀନ ରୋଷଘର । ସ୍ୱତ୍ୱଲିପି ଅନୁସାରେ ବର୍ତ୍ତମାନର ରୋଷ ଘର ମରାମତି ହେଲେ ଏଠାରେ ରୋଷେଇ ହୁଏ ।

(ଶ୍ରୀ.ସ୍ୱ.- ପୃ. ୨୪୪) ।

ମେଲଣ-ଦେ.ବି.- ଏକତ୍ରୀକରଣ । ଏକ ଉତ୍ସବ ବିଶେଷ । ଶ୍ରୀମନ୍ଦିରରେ ଦୁଧ ମେଲଣ- ନବାଙ୍କ ପୂର୍ବଦିନ ଦ୍ୱିପ୍ରହର ଧୂପପରେ ରାମକୃଷ୍ଣ ବଟ ପାଖରେ ପାଲିଙ୍କିରେ ବିଜେ ହୁଅନ୍ତି । ଏହାପରେ ଘଣ୍ଟ ଛତା କାହାଳି ସହ ପାଲିଙ୍କି ଛୋଟରାୟପୁର ଯାଏ । ଏଠାରେ ବାଲି ବେଦୀ ଉପରେ ପାଲିଙ୍କିକୁ ବିଜେ କରାଯାଏ । ସେଠାରେ ଗଉଡ଼ମାନେ ବାଘମୁହାଁ ପିନ୍ଧି ଦୁଧଭାର କୋଠ ମହାଭୋଇ ନିକଟରେ ପଇଠ କରନ୍ତି । ମହାଭୋଇ ସେହି ଭାରମାନ ଘଣ୍ଟ ଛତା କାହାଳୀ ପଟୁଆରରେ ଗୋଷ୍ଠ (ଜଗନ୍ନାଥ ବଲ୍ଲଭ)କୁ ବିଜେ କରନ୍ତି । ଏଠାରେ ମହାଭୋଇ ଗୋଧନ ଓ ଭିତରଛ ମଣୋହି କରନ୍ତି ଓ ଠାକୁର ବାହୁଡ଼ନ୍ତି । ନାଟ ମନ୍ଦିର ଆଗରେ ଦୁଧ ଗରମ କରାଯାଏ । ଠାକୁର ନନ୍ଦ ମନ୍ଦିର (ଲକ୍ଷ୍ମୀଙ୍କ ଦେଉଳ)ରେ ଖଟରେ ବିଜେ କରନ୍ତି । ପ୍ରସାଦ ଲାଗି ଓ ବନ୍ଦାପନା ପରେ ଠାକୁର ଦକ୍ଷିଣିଘରକୁ ବାହୁଡ଼ନ୍ତି । ଚାଉଳ ମେଲାଣ- ନବାଙ୍କ ଦିନ ଅବକାଶ ମଇଲମ ହୋଇ ଘୋଡ଼ଲାଗି ହୋଇ ସନ୍ଧ୍ୟା ଆଳତି ବଢ଼ି ଚାଉଳ ମେଲାଣ ନିମନ୍ତେ ସିଂହଦ୍ୱାର ଚକଡ଼ା ଉପରେ ପାହାଡ଼ା ପଡ଼େ । ଧାନ ଘରଠାରୁ ବେଝରଭୋଇ ପଧାନ ଏଠାକୁ ଚାଉଳ ବିଜେ କରାନ୍ତି । ପଧାନ ଭୋଇ ବାଘ ମୁହାଁ ପିନ୍ଧି ତିନୋଟି ଥାଳିରେ ପାଞ୍ଚ ମାଣ ଲେଖାଏଁ ଚାଉଳ ମପାନ୍ତି । କୋଠଯୋଗାଣିଆ ବାଘମୁହାଁ ବାନ୍ଧି ଘଣ୍ଟ ଛତା କାହାଳୀ ସହ ତଳିଛ ପଟୁଆରରେ ଚାଉଳ ନେଇ ବଡ଼ ଦେଉଳକୁ ବେଢ଼ାଏ ବୁଲି ସେ ଚାଉଳ ଇନ୍ଦ୍ରାଣୀ ବେଢ଼ାରେ ରଖନ୍ତି, ଏହି ପ୍ରକାରରେ ଚାଉଳ ମେଲାଣ ହୋଇଥାଏ । ଫୁଲମେଲାଣ- ଏ ଦିନ (ନବାଙ୍କ ଦିନ) ମାଳିମାନେ ବାଘମୁହାଁ ବାନ୍ଧି ଘଣ୍ଟ ଛତା କାହାଳୀ ସହ ତଳିଛ ପଟୁଆରରେ ମାଳଚୂଳ, ଜଳକବର ମାନଘେନି ବଡ଼ଦେଉଳକୁ ବେଢ଼ାଏ ବୁଲି ବେହରଣରେ ତଡ଼ାଉଙ୍କୁ ଦରଶୁଆ କରାଇ ପାଳିଆ ଖୁଣ୍ଟିଆ ମାର୍ଫତରେ ଦିଅନ୍ତି । ଖୁଣ୍ଟିଆ ଭକ୍ତମାନେ ନେଇ ସନ୍ଧ୍ୟା ଆଳତି ବେଶରେ ଲାଗି କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୬୬) ।

ମେହେନା-ଦେ.ବି.- ଠାକୁର କିମ୍ୱା ଗଜପତି ମହାରାଜଙ୍କ ବାହାର ବିଜେ ସମୟରେ ବ୍ୟବହୃତ ହେଉଥିବା ବିଶେଷ ଧରଣର ପାଲିଙ୍କି । ରଥଯାତ୍ରା ଓ ବାହୁଡ଼ାରେ ଗଜପତି ମେହେନାରେ ଛେରାପହଁରା କରିବାକୁ ଆସନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୦) ।

ମୋଡ଼-ଦେ.ବି.- ରଥଯାତ୍ରା ସମୟରେ ରଥ ଦକ୍ଷିଣ ମୋଡ଼ ହେବା ଅର୍ଥାତ୍ ଦକ୍ଷିଣ ଦିଗକୁ ରଥ ମୁହାଁ କରିବା ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୩) ।

ମୋଡ଼ା-ଦେ.ବି.- ବସ୍ତ୍ରର ଏକ ଅଳଙ୍କରଣ । କଳା, ଧଳା ଓ ନାଲି କପଡ଼ା ମୋଡ଼ା ହୋଇ ଠାକୁରଙ୍କ ମସ୍ତକରେ ଲାଗି ହେଉଥିବା ଏକ ପ୍ରକାର ବସ୍ତ୍ରଭୂଷା ।
(ଶ୍ରୀ.ବେ.ର. - ପୃ. ୧୨୪) ।

ମୋଡ଼ିଆ-ଦେ.ବି.- ଏକ ପ୍ରକାର ପିଷ୍ଟକ ବିଶେଷ । ସରୁ ଚକୁଳି ଆକାରର ଏକ ପ୍ରକାର ପିଠା, ଯାହା ଠାକୁରଙ୍କୁ ଭୋଗ ଲାଗି ହୁଏ । ମକର ସଂକ୍ରାନ୍ତିରେ ଖଡୁ ପରି ମୋଟା ମୋଟା କର୍ଣ୍ଣାଳଙ୍କାର ଲାଗି ହୋଇଥାଏ ।
(କ୍ର.ବି.ଓ.ଶ.ସ. - ପୃ. ୮୫୯) ।

ମୋଚିବାରେଣି ଓଝା-ଦେ.ବି.- କମାର ସେବକ । ଶ୍ରୀମନ୍ଦିରର ଏ ହେଉଛନ୍ତି ଏକ କମାର ସେବକ ।
(ପୁ.ବୋ. - ପୃ. ୨୯୮) ।

ମୋହନ ଭୋଗ-ଦେ.ବି.- ସୁଜି, ଚିନି ମିଶ୍ରିତ ଏକ ପ୍ରକାର ପ୍ରସ୍ତୁତ ଭୋଗ ଦ୍ରବ୍ୟ । ଏହା ଠାକୁରଙ୍କୁ ଲାଗି କରାଯାଏ ।
(ଶ୍ରୀ.ଜି. - ପୃ. ୧୯୩) ।

ମୌରସୀ ଚୂଳି- ସେବାୟତମାନେ ନିଜ ଦଖଲରେ ରଖି ଯେଉଁ ଚୂଳିକୁ ନିଜର ବୋଲି ଦାବି କରନ୍ତି ତାହା ମୌରସୀ ଚୂଳି । ମୌରସୀ ଅର୍ଥ ନିଜର ଅଧୀନରେ ଥିବା ପଦାର୍ଥକୁ ନିଜ ବୋଲି ଦାବି କରି ପ୍ରମାଣିତ କରାଇବା ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬୩) ।

# ଯ

**ଯଅ**-*ଦେ.ବି.*- ଯବ ଧାନ । ହୋମାଦି ବିଭିନ୍ନ ପୂଜା କାମରେ ଏହା ଲାଗିଥାଏ ।
(ପୂ.ଓ.ଭା. - ପୃ.୬୭୪୪) ।

**ଯନ୍ତ୍ରପ୍ରତିମା**-*ସଂ.ବି.*- ନବକଳେବର ସମୟରେ ସ୍ୱତନ୍ତ୍ର ଭିନ୍ନ ଭିନ୍ନ ଲକ୍ଷଣ ଲକ୍ଷିତ ଶୁଭ ନିମ୍ବଦାରୁରେ ଚତୁର୍ଦ୍ଧାମୂର୍ତ୍ତିଙ୍କର କଳେବର ଗଠନ କରାଯାଏ । ସେମାନେ ଯନ୍ତ୍ରାରୂଢ଼ ଯାନ୍ତ୍ରିକ ପ୍ରତିମା । ଯନ୍ତ୍ରରେ ଏହି ଦେବତାମାନଙ୍କୁ ଆରାଧନା କରାଯିବା ଶାସ୍ତ୍ରୀୟ ବିଧାନ । ଉପାସକ ଏହି ଦେବତାମାନଙ୍କୁ ତାଙ୍କ ପାଇଁ ଉଦ୍ଦିଷ୍ଟ ନିର୍ଦ୍ଦିଷ୍ଟ ମନ୍ତ୍ରରେ ଆବାହନ କରନ୍ତି । ସେହି ମନ୍ତ୍ରର ବୀଜମନ୍ତ୍ର ବା ବୀଜକୁ ଯନ୍ତ୍ର ମଧ୍ୟରେ ସ୍ଥାପନା କରି ଯୋଗସାଧନା କରନ୍ତି । ଯନ୍ତ୍ରଦେବତାଙ୍କର ଶରୀର, ମନ୍ତ୍ର ତାଙ୍କର ଆତ୍ମା ବା ପ୍ରାଣ, ଯନ୍ତ୍ର ଉପରେ ଦେବତାଙ୍କର ପୂଜା ପ୍ରଶସ୍ତ । ବିନା ଯନ୍ତ୍ରରେ ପୂଜା ଅକରଣୀୟ ।
(ମ.ନ. - ପୃ. ୨୦) ।

**ଯବଶାସ୍ତ୍ର**-*ଦେ.ବି.*- ଶ୍ରୀଜୀଉଙ୍କର ଶ୍ରୀମୁଖ ଚିତ୍ରଣ ବିଷୟକ ପୋଥି । ଶ୍ରୀଜୀଉଙ୍କ ମୁଖ ଚିତ୍ରଣ କାର୍ଯ୍ୟ ପାଇଁ ପ୍ରାକୃତିକ ରଙ୍ଗ ବ୍ୟବହୃତ କରାଯାଏ । ବଇଠାରୁ କଳା, ଶଙ୍ଖ ଗୁଣ୍ଡରୁ ଧଳା, ହରିତାଳରୁ ହଳଦିଆ, ହିଙ୍ଗୁଳାରୁ ଲାଲ ଇତ୍ୟାଦି ରଙ୍ଗରେ ଶ୍ରୀମୁଖ ଚିତ୍ରଣ ହୁଏ । ଏଥିରେ କେତେକ ପାରିଭାଷିକ ଶବ୍ଦ ଶଙ୍ଖ ଭୂଇଁ, (ଶ୍ରୀମୁଖର ଶ୍ୱେତରଙ୍ଗ ରଞ୍ଜିତ ଅଂଶ), କଳାଭୂଇଁ- (ଶ୍ରୀମୁଖର କୃଷ୍ଣରଙ୍ଗ ରଞ୍ଜିତ ଅଂଶ), ହିଙ୍ଗୁଳ ଭୂଇଁ- (ଶ୍ରୀମୁଖର ଲୋହିତ ରଙ୍ଗ ରଞ୍ଜିତ ଅଂଶ), ହରିତାଳ ଭୂଇଁ (ଶ୍ରୀମୁଖର ପୀତରଙ୍ଗ ରଞ୍ଜିତ ଅଂଶ) ଓ ବସନ୍ତ ଭୂଇଁ (ଶ୍ରୀମୁଖର ପୀତରଙ୍ଗ ରଞ୍ଜିତ ଅଂଶ) ବ୍ୟବହାର କରାଯାଉଛି ।
(ପୁ.ବୋ. - ପୃ. ୨୯୮) ।

**ଯମୁନା**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ାରେ ରୋଷ ପରିସରରେ ଥିବା ଏକ କୂପ ବିଶେଷ ।

**ଯମୁନା ନଦୀ**- ଦେ.ବି.- ଶ୍ରୀମନ୍ଦିରରେ ଭାଦ୍ରବ କୃଷ୍ଣାଷ୍ଟମୀ ଦିନ କୃଷ୍ଣ ଜନ୍ମ ପରେ ଭଣ୍ଡାର ମେକାପ ଦେଇଥିବା ରୂପା ଥାଳିରେ କୃଷ୍ଣ ମଦନମୋହନ ମହାଜନ ହାତରେ ଦେବକୀ ବସୁଦେବ ସଙ୍ଗେ ଜଗମୋହନ ସରସ୍ୱତୀଙ୍କ ସମ୍ମୁଖ ଦେଇ ବିଜେ କରନ୍ତି । ଏହି ସରସ୍ୱତୀଙ୍କ ସମ୍ମୁଖସ୍ଥଳ ଯମୁନାନଦୀ ରୂପେ ପରିକଳ୍ପିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୯) ।

**ଯମେଶ୍ୱର**-*ଦେ.ବି.*- ଶ୍ରୀମନ୍ଦିର ପରିସରରେ ଥିବା ଶିବମନ୍ଦିର । ଶ୍ରୀକ୍ଷେତ୍ରର ପଞ୍ଚଶିବଙ୍କ ମଧ୍ୟରୁ ଅନ୍ୟତମ ।
(ଶ୍ରୀ.ସ୍ୱ. - ପୃ. ୨୪୧) ।

**ଯକ୍ଷକର୍ଦ୍ଦମ**-*ଦେ.ବି.*- ଅଗୁରୁ କୁଙ୍କୁମାଦି ମିଶ୍ରିତ (କର୍ପୂର, ଅଗୁରୁ, କସ୍ତୁରୀ, କଜ୍ଜ୍ୱଳ ମତାନ୍ତରେ ଚନ୍ଦନ ଓ ଜାଫ୍ରାନ) ସୁବାସ ଲେପ । ଶ୍ରୀଜୀଉଙ୍କ ପୂଜାରେ ଲାଗି ହୁଏ ।
(ପୂ.ଓ.ଭା. - ପୃ. ୬୭୪୬) ।

**ଯାଇପତ୍ରି**-*ଦେ.ବି.*- ବିଡ଼ିଆ ମଣୋହିରୁ ଖିଲିପାନରେ ଯାଇପତ୍ରି ଦିଆଯାଇ ମହାପ୍ରଭୁଙ୍କୁ ସମର୍ପଣ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ଯାଇଫଳ**-*ଦେ.ବି.*- ଅଣସର ସମୟରେ ଅଣସର ପଣାରେ ମିଶ୍ରିତ ହୋଇ ଶ୍ରୀଠାକୁରଙ୍କୁ ଅର୍ପଣ କରାଯାଏ । ବିଡ଼ିଆ ମଣୋହିରେ ଖିଲିପାନରେ ମଧ୍ୟ ଏହା ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ଯାଉଁଳି କବାଟ**-*ଦେ.ବି.*- ଦ୍ୱାର ଦେଶର ଦୁଇଫାଳ କବାଟ ।
(ପୂ.ଓ.ଭା. - ପୃ. ୬୭୮୮) ।

**ଯାଉଁଳି କରଡ଼ା**-*ଦେ.ବି.*- ଲାଲ ଓ ଧଳା ରଙ୍ଗର ଦୁଇଟି କନା ମୋଡ଼ାମୋଡ଼ି କରି ଶ୍ରୀଠାକୁରଙ୍କ ଶ୍ରୀମୁଖ ସଜ୍ଜିତ କରାଯିବା ପାଇଁ ଏକ ପ୍ରକାର ବେଶଭୂଷା ।
(ପୁ.ବୋ. - ପୃ. ୨୯୯) ।

**ଯାଉଁଳି ତାଡ଼**-*ଦେ.ବି.*- ଶ୍ରୀଠାକୁରଙ୍କ ବାହୁରେ ବ୍ୟବହୃତ ହେଉଥିବା ଏକ ଅଳଙ୍କାର ବିଶେଷ ।
(ପୂ.ଓ.ଭା. - ପୃ. ୬୭୮୯) ।

**ଯାଗା**-*ଦେ.ବି.*- ଯାଗା ପୁରୀରେ ଥିବା ଆନୁଷ୍ଠାନିକ ଘର ବା ଅଣଆନୁଷ୍ଠାନିକ ଘର । ଏହା ଶ୍ରୀଜଗନ୍ନାଥଙ୍କ ସଂସ୍ଥା ଓ ସଂସ୍କୃତି ସହିତ ଓତଃପ୍ରୋତ-ଭାବେ ଜଡ଼ିତ ।

ମାଜଣା ଯାଗା - ରଥ ଓ ଗୁଣ୍ଡିଚା ଘର ମାଜଣା, ରଥ ଚତୁଃପାର୍ଶ୍ୱ ପରିଷ୍କାର, ରଥରେ ପିଠାଭୋଗ ସେବା, ମାଜଣା ପୋଖରୀର ସୁରକ୍ଷା, ଗୁରୁବାର ମାଜଣାକୁ ଦହି, ହଳଦୀ ଯୋଗାଇବା, ରଥଯାତ୍ରା ସମୟରେ ଦାଣ୍ଡ ସଙ୍ଗୀତ କରିବା ସେବା ।

ବ୍ରହ୍ମା ଯାଗା - ଚନ୍ଦନଯାତ୍ରା ସମୟରେ ଯାତ୍ରାର ସର୍ବାଙ୍ଗ ସୁନ୍ଦରତା ରକ୍ଷା, ଚନ୍ଦନ ସରୋବର ରକ୍ଷା ।

ମାଳି ଯାଗା - ମାଳଚୂଳ ଯୋଗାଇବା, ବାହାରିଆ ମାଳମାନ ଗୁନ୍ଥିବା ଓ ଶରଧାବାଲିର ରକ୍ଷଣାବେକ୍ଷଣ ସେବା ।

ବିଷ୍ଣୁନି ଯାଗା - ବେଣୁ ମଣ୍ଡପର ରକ୍ଷଣାବେକ୍ଷଣ, ସୁଭଦ୍ରାଙ୍କ ନାକୁଆସୀ ଲାଗି କରିବା ସେବା ।

ମରିଚିକୋଟ ଯାଗା - ମଥୁରା ଘାଟ ଯୁଦ୍ଧ ସମୟରେ କୁସ୍ତି ପ୍ରଦର୍ଶନ । ଯାତ୍ରା ପଟୁଆରରେ ଯୋଗଦେବା କାର୍ଯ୍ୟ ।

ଇନ୍ଦ୍ରଦ୍ୟୁମ୍ନ କୋଟ ଯାଗା - ଇନ୍ଦ୍ରଦ୍ୟୁମ୍ନ ସରୋବର ରକ୍ଷଣାବେକ୍ଷଣ । ଶ୍ରୀଗୁଣ୍ଡିଚା ଯାତ୍ରାରେ ସହାୟତା କରିବା ।

ନରସିଂହ କୋଟ ଯାଗା - ନୃସିଂହନାଥଙ୍କ ସେବା ପୂଜାରେ ସହାୟତା କରିବା ଓ ବାଲିଘାଟରୁ ଆସୁଥିବା ଯାତ୍ରୀଙ୍କୁ ସହାୟତା କରିବା ।

ଦେବୀ ସିଂହ ଯାଗା - ଯାନିଯାତ୍ରାକୁ ଫଳପତ୍ର ଦେଇ ମଣ୍ଡନ କରିବା ସେବା ।

ଯୁଇଗଡ଼ ଯାଗା - ଚନ୍ଦନଯାତ୍ରାରେ ଯୁଇ, ପଞ୍ଚକାଣ୍ଡିଆ ଟାହିଆ ରାମକୃଷ୍ଣଙ୍କ ପାଇଁ ଯୋଗାଇବା ସେବା ।

ଗଣେଶ ଗୁରୁଜ ଯାଗା - ମନ୍ଦିରର ଚାର ବାନ୍ଧିବା ଓ ଚାରଗଣେଶଙ୍କୁ ସେବା କରିବା ।

ବଳଗଣ୍ଡି ଛତା ଯାଗା - ରଥବଳଗଣ୍ଡି ପାଖରେ ରହିବା ସମୟରେ କଟା ନଡ଼ିଆ ଭୋଗ କରିବା ସେବା କାର୍ଯ୍ୟ ।

ଖାକିଆଖଡ଼ା ଯାଗା - ରଥମାନଙ୍କର ସୁରକ୍ଷା ଦାୟିତ୍ୱ ସେବା କାର୍ଯ୍ୟ ।
(ଶ୍ରୀ.ପ.ସେ.- ପୃ. ୩୩୨)

**ଯଜ୍ଞ**-*ସଂ.ବି.* - ବେଦୋକ୍ତ ହୋମ ଓ ପୂଜା ବିଧି । ଏଥିରେ ପ୍ରଧାନ ଅଂଶ ହୋମ ବା ଅଗ୍ନିରେ ଘୃତ ଆଦି ଆହୁତି ଦେବା । ଯଜ୍ଞ ଦେବତାମାନେ ତୁଷ୍ଟ ହୋଇ ପୃଥିବୀକୁ ଅନ୍ନଦାନ ଓ ପ୍ରଜାଦାନ କରନ୍ତି । ଯଜ୍ଞ ନାନା ପ୍ରକାର । ଏଥିମଧ୍ୟରୁ ଅଗ୍ନିଷ୍ଟୋମ, ଜ୍ୟୋତିଷ୍ଟୋମ, ରାଜସୂୟ, ବାଜପେୟ, ଅଶ୍ୱମେଧ, ଗୋମେଧ, ପୁରୁଷମେଧ, ପୁତ୍ରେଷ୍ଟି, ବୃଷୋତ୍ସର୍ଗ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଅଗ୍ନିଷ୍ଟୋମ ଯଜ୍ଞର ପ୍ରଧାନ ଉପକରଣ ଅଗ୍ନି- ଏ ଅଗ୍ନି ତିନିଗୋଟି- ବା ତ୍ରିବିଧ, ଅଗ୍ନିର କ୍ରମ ହେଲା- ଗାର୍ହପତ୍ୟ, ଆହବନୀୟ ଓ ଦକ୍ଷିଣ । ବ୍ରାହ୍ମଣ ଦୈନିକ ସମସ୍ତ ଅନୁଷ୍ଠାନ ହିଁ ଯଜ୍ଞ, ଯଜ୍ଞବିହୀନ ବ୍ରାହ୍ମଣ ଚଣ୍ଡାଳ ଅଟେ । ଶ୍ରୀମନ୍ଦିରରେ ପ୍ରତ୍ୟହ ହୋମାଦି କାର୍ଯ୍ୟ ଅଗ୍ନି ବରଣ ତଥା ପୂଜାଦି ହୋମ କାର୍ଯ୍ୟ ସମ୍ପନ୍ନ ହୋଇଥାଏ ।
(ପୂ.ଓ.ଭା. - ପୃ. ୬୭୪୯) ।

**ଯଜ୍ଞନୃସିଂହ**-*ଦେ.ବି.*- ସ୍କନ୍ଦପୁରାଣ ଅନୁଯାୟୀ ବ୍ରହ୍ମାଙ୍କ ନିର୍ଦ୍ଦେଶରେ ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥଙ୍କ ଦର୍ଶନଲାଗି ନୃସିଂହଙ୍କ ଯଜ୍ଞ ଆରମ୍ଭ କରିଥିଲେ । ଏହି ସମୟରେ ଶ୍ରୀମନ୍ଦିରର ଜଗମୋହନରେ ଥିବା ଯଜ୍ଞନୃସିଂହ ରୂପରେ ଦର୍ଶନ କରିଥିଲେ । ଶ୍ରୀମନ୍ଦିରର ଜଗମୋହନରେ ଥିବା ଯଜ୍ଞନୃସିଂହ ଚିତ୍ରକୁ ଲକ୍ଷ୍ୟ କଲେ ଜଣାଯାଏ କାଳାଗ୍ନି ରୁଦ୍ର

ତୁଲ୍ୟ ଲେଲିହାନ ଜିହ୍ୱାରେ ଶ୍ରୀନୃସିଂହ ସମସ୍ତ ଲୋକଙ୍କୁ ଗ୍ରାସ କରିବା ପାଇଁ ଉଦ୍ୟତ ହେଉଥିବା ଚିତ୍ର ବଦଳରେ ମସ୍ତକରେ ସପ୍ତଫେଣା ବିଶିଷ୍ଟ ଶ୍ରୀବଳଭଦ୍ର ଓ କୋଳରେ ଲକ୍ଷ୍ମୀ ବା ସୁଭଦ୍ରାଙ୍କ ସହିତ ଶ୍ରୀଜଗନ୍ନାଥଙ୍କ ରୂପ ସେଥିରେ ଅଙ୍କିତ ହୋଇଥିବା ଦେଖାଯାଏ । ଏହି ମୂର୍ତ୍ତିରୁ ସୂଚନା ମିଳେ ଯେ ଭିନ୍ନ ଭିନ୍ନ ରୂପରେ ଶ୍ରୀମନ୍ଦିରର ରତ୍ନବେଦୀରେ ପୂଜିତ ହେଉଥିବା ଏହି ବିଗ୍ରହମାନେ ତତ୍ତ୍ୱତଃ ଏକ । ଏଣୁ ଏହି ନୃସିଂହ ହେଉଛନ୍ତି ଏ' ସମସ୍ତଙ୍କର ସମନ୍ୱିତ ମୂର୍ତ୍ତି । ସେହି ତତ୍ତ୍ୱର ଚିତ୍ରାଙ୍କନ ହେଉଛି ଯଜ୍ଞନୃସିଂହର ଚିତ୍ରର ରୂପାୟନ । ନବକଳେବର ବେଳେ ବନଯାଗଠାରୁ ବ୍ରହ୍ମ ପରିବର୍ତ୍ତନ ପର୍ଯ୍ୟନ୍ତ ସମସ୍ତ କ୍ଷେତ୍ରରେ ଏହି ନୃସିଂହଙ୍କୁ ପ୍ରାଧାନ୍ୟ ଦିଆଯାଇଛି । (କ୍ଷେ.ସ.) ।

**ଯଜ୍ଞବରାହ**-*ସଂ.ବି.*- ଭଗବାନ ବିଷ୍ଣୁ, ନାରାୟଣ । ଭଗବାନ ବିଷ୍ଣୁ ବରାହ ଅବତାର ପରେ ନିଜ ଶରୀରକୁ ତ୍ୟାଗ କଲାବେଳେ ତାଙ୍କର ଭିନ୍ନ ଭିନ୍ନ ଅଙ୍ଗରୁ ଯଜ୍ଞର ସାମଗ୍ରୀମାନ ବାହାରିଲା । ଏଣୁ ତାଙ୍କୁ ଯଜ୍ଞବରାହ କୁହାଯାଏ । (ଓ.ସାଂ.ଶ. - ପୃ. ୩୦୯) ।

**ଯଜ୍ଞ ମଣ୍ଡପ**-*ଦେ.ବି.*- ଗୁଣ୍ଡିଚା ମନ୍ଦିରର ଉତ୍ତର-ପୂର୍ବ ବେଢ଼ା ପାଖରେ ଥିବା ନୃସିଂହ ମନ୍ଦିର ପରିବେଶକୁ ଯଜ୍ଞ ମଣ୍ଡପ କୁହାଯାଏ । (ଶ୍ରୀ.ସ୍ୱ.- ପୃ. ୯୨) ।

**ଯଜ୍ଞରକ୍ଷା**-*ଦେ.ବି.*- ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳ ଦଶମୀ ତିଥିରେ ଯଜ୍ଞରକ୍ଷା ନୀତି ବଢ଼େ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୩) ।

**ଯଜ୍ଞେଶ୍ୱର**-*ସଂ.ବି.*- ମହାଦେବ, ଶିବ, ବିଷ୍ଣୁ, ନାରାୟଣ । (ଓ.ସାଂ.ଶ.- ପୃ. ୩୦୯) ।

**ଯାତଭୋଗ**-*ଦେ.ବି.*- ଚନ୍ଦନ ଯାତ୍ରାର ଏକୋଇଶି ଦିନ ଚନ୍ଦନ ଲାଗି ଆଳଟ ଲାଗି ପରେ ଶ୍ରୀମନ୍ଦିରରେ ଅନ୍ନ ବ୍ୟତୀତ ବିଭିନ୍ନ ବ୍ୟଞ୍ଜନ, ଡାଲି ଓ ପିଠା ଭୋଗ ଲାଗି ହୁଏ । ଏହାକୁ ଯାତଭୋଗ କୁହାଯାଏ । (କ୍ଷେ.ସ.) ।

**ଯାତ୍ରାଙ୍ଗୀ ଭୋଗ**-*ଦେ.ବି.*- ଶ୍ରୀମନ୍ଦିରର ଯାତ୍ରା ଦିନମାନଙ୍କରେ ଠାକୁରଙ୍କ ଯାତ୍ରାନୀତି ପୂର୍ବରୁ କରାଯାଉଥିବା ଭୋଗ । (ଶ୍ରୀ.ପ.ସୁ.- ପୃ. ୩୪୯)

**ଯାତ୍ରାଙ୍ଗୀ ମହାସ୍ନାନ**-*ଦେ.ବି.*- ଯାତ୍ରାଦିନମାନଙ୍କରେ ଶ୍ରୀମନ୍ଦିରରେ ହେଉଥିବା ମହାସ୍ନାନ । (ଶ୍ରୀ.ସ୍ୱ.- ପୃ.୧୪)

**ଯାତ୍ରାଦାଣ୍ଡ** - *ଦେ.ବି.*- ଶ୍ରୀଜୀଉଙ୍କ ପର୍ବପର୍ବାଣି ଦିନମାନଙ୍କରେ ଯାତ୍ରୀମାନଙ୍କ ସଂଖ୍ୟା ବଢ଼ିଗଲେ ପୁରୀଦାଣ୍ଡ ଜନାକୀର୍ଣ୍ଣ ହୋଇପଡ଼େ ଓ ବଜାରରେ କିଣାବିକା ତଥା ଲୋକ ସମାଗମ ଭଲ ଭାବରେ ଜମେ । ଏହାକୁ ଯାତ୍ରାଦାଣ୍ଡ କୁହାଯାଏ । (ପୁ.ବୋ. - ପୃ. ୨୯୯) ।

**ଯାତ୍ରୀ ଗୁମାସ୍ତା**-*ଦେ.ବି.*- ଯାତ୍ରୀମାନେ ଦୂରଦୂରାନ୍ତରୁ ଆସିଲେ ସେମାନଙ୍କ କଥା ବୁଝିବା, ସେମାନଙ୍କୁ ପୁରୀ ଆଣିବା ଓ ଦର୍ଶନ ପରେ ସେମାନଙ୍କୁ ବିଦା କରିବା, ନୂଆଯାତ୍ରୀ ଅନ୍ୟ ରାଜ୍ୟରୁ ଆଣିବା ନିମନ୍ତେ ପଣ୍ଡାମାନେ କେତେକ ଗୁମାସ୍ତା ତାଙ୍କ ଅଧୀନରେ ରଖିଥାନ୍ତି । ଏମାନଙ୍କୁ ଯାତ୍ରୀ ଗୁମାସ୍ତା ବୋଲାଯାଏ । (ପୁ.ବୋ. - ପୃ. ୨୯୯) ।

**ଯାତ୍ରୀ ଟିକସ**-*ଦେ.ବି.*- ଶ୍ରୀକ୍ଷେତ୍ରକୁ ଆସୁଥିବା ପ୍ରତ୍ୟେକ ଯାତ୍ରୀଙ୍କଠାରୁ ସରକାରଙ୍କ ଦ୍ୱାରା ପୂର୍ବେ ଆଦାୟ ହେଉଥିବା ଶୁଳ୍କ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାର ଯେତେବେଳେ ପୁରୀ ଜଗନ୍ନାଥ ମନ୍ଦିର ପରିଚାଳନା ଭାର ନେଲେ, ସେହି ସମୟରେ ପୁରୀକୁ ଦେବ ଦର୍ଶନାର୍ଥେ ଆସୁଥିବା ଯାତ୍ରୀମାନଙ୍କଠାରୁ ଶୁଳ୍କ ଆଦାୟ କର । ସେହି ଧନରୁ ଶ୍ରୀଜଗନ୍ନାଥଙ୍କ ସେବା ପୂଜାର ବ୍ୟୟ ଚଳାଉଥିଲେ । କିନ୍ତୁ କେତେକାଳ ପରେ ବିଲାତର ପାର୍ଲାମେଣ୍ଟରେ ଆନ୍ଦୋଳନ ଉଠିଲା ଯେ, ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ସରକାର ହିନ୍ଦୁ ଧର୍ମାବଲମ୍ବୀ ଯାତ୍ରୀମାନଙ୍କଠାରୁ ଶୁଳ୍କ ଆଦାୟ କରିବା ଧର୍ମ ବିରୁଦ୍ଧ ଅଟେ । ତା'ପରେ ଉକ୍ତ ଟିକସ ବନ୍ଦ କରାଗଲା । (ପୂ.ଓ.ଭା. - ପୃ. ୬୮୦୭) ।

**ଯାତ୍ରୀ ତଣ୍ଟିଚିପା**-*ଦେ.ବି.*- ଯେଉଁ ପଣ୍ଡା ବା ଗୁମାସ୍ତାମାନେ ତୀର୍ଥକୁ ସମାଗତ ଯାତ୍ରୀମାନଙ୍କଠାରୁ ନାନା ଉପାୟରେ ଜୁଲମ ପୂର୍ବକ ଅର୍ଥ ନିଅନ୍ତି । ରେଳଷ୍ଟେସନରେ ଭିନ୍ନ ଭିନ୍ନ ପଣ୍ଡାଙ୍କ ଯାତ୍ରୀ ଗୁମାସ୍ତାମାନେ ନିଜ ଯାତ୍ରୀ ନିଜର ପଣ୍ଡାଙ୍କଠାରୁ ନେବା ପାଇଁ ଅନେକ ଟଣାଓଟରା କରନ୍ତି । କ୍ଷେତ୍ରରେ ଆଟିକା କରିବା ପ୍ରଭୃତି ପାଇଁ କହି ଅଯଥା ଖର୍ଚ୍ଚାନ୍ତ ମଧ୍ୟ କରାନ୍ତି ।
(ପୂ.ଓ.ଭା. - ପୃ. ୬୮୦୭) ।

**ଯାତ୍ରୀ ପଟି**-*ଦେ.ବି.*- ପୁରୀର ଚିତ୍ରକରମାନେ ଯାତ୍ରୀଙ୍କୁ ବିକିବା ଉଦ୍ଦେଶ୍ୟରେ କାଗଜପଟି, କପଡ଼ା ପଟିରେ ଶ୍ରୀଜୀଉଙ୍କର ଚିତ୍ର ଅଙ୍କନ କରି ବିକ୍ରୟ କରନ୍ତି । ଏହାକୁ ଯାତ୍ରୀପଟି କୁହାଯାଏ । ପଟ୍ଟଚିତ୍ର ଭାଷାରେ ଏଗୁଡ଼ିକ ଠିଆବଢ଼ିଆ, କାଗଜପନ୍ଥା, ନଖଣ୍ଡିଆ, କାଗଜଠିଆ, କରପଟିଆ, ଶିବ ନାରଦ ମଣ୍ଡି କିଆ, କତାଠିଆ, ପାଞ୍ଚମନ୍ଦିରିଆ ଇତ୍ୟାଦି । ଏହି ସବୁଥିରେ ପୌରାଣିକ ଚିତ୍ରମାନ ଚିତ୍ର କରାଯାଏ ।
(ଶ୍ରୀ.ଜି. - ପୃ. ୩୫୩) ।

**ଯାତ୍ରୀପଣ୍ଡା**-*ଦେ.ବି.*- ଯାତ୍ରୀ ବୃତ୍ତିରେ ପ୍ରତିଷ୍ଠିତ ସେବକ ଓ ଅଣସେବକ ତୀର୍ଥଗୁରୁ ।
(ପୁ.ବୋ.- ପୃ. ୨୯୯) ।

**ଯୁଣ**-*ଦେ.ବି.*- ଅଣସର ସମୟରେ ଶ୍ରୀଜୀଉଙ୍କ ନିକଟରେ ଲାଗି ହେଉଥିବା ଫଳମୂଳର ଚୋପା ତଥା ଅନ୍ୟାନ୍ୟ ଅନାବଶ୍ୟକୀୟ ଦ୍ରବ୍ୟ ଏକ ସ୍ଥାନରେ ଗଦା ହୋଇଥାଏ । ଏହାକୁ 'ଯୁଣ' କୁହାଯାଏ । ଅଣସର ନୀତି ପରେ ଏହା ଏକ ସମୟରେ ଉଠାଯାଇ ଏହି ସ୍ଥାନ ପରିଷ୍କାର କରାଯାଏ ।
(କ୍ଷେ.ସ.) ।

**ଯେଉଡ଼ଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ଜନ୍ମାଷ୍ଟମୀ ପାଳିତ ହୁଏ । ଏହି ତିଥିରେ ସନ୍ଧ୍ୟା ଆଳତି ପରେ ଭିତରେ ପାଣି ପଡ଼ି ଟେରା ବନ୍ଧା ହୋଇ ରୋଷରୁ ସନ୍ଧ୍ୟାଧୂପ ଛେକ ଶ୍ରୀଛାମୁକୁ ଆସେ । ସନ୍ଧ୍ୟାଧୂପ ବଢ଼ିଲା ଉତ୍ତାରୁ ଭିତରେ ପାଣିପଡ଼ି ଧୋ-ପଖାଳ ସରିଲେ ଜୟବିଜୟ ଦ୍ୱାର ବନ୍ଦ ହୁଏ । ଅଣସର ପଣ୍ଡିଠାରେ ଟେରା ବନ୍ଧାଯାଇ ରୋଷରୁ ଯେଉଡ଼ ଭୋଗ ଆସି ଛାମୁରେ ଲାଗି ହୁଏ । ଶାଗ, ତରକାରୀ, ପିଠା, ଝିଲି, ଓରିଆ, ସାନ ଆରିସା, ଟାଟତୁଣ, ବୟତୁଣ ଇତ୍ୟାଦିକୁ ଯେଉଡ଼ ଭୋଗ ନାମିତ କରାଯାଇଥାଏ ଓ ଏହାକୁ ୩ ପୂଜାପଣ୍ଡା ପଞ୍ଚୋପଚାରରେ ପୂଜା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୯୨/୮୯) ।

**ଯୋଗନିଦ୍ରା**-*ସଂ.ବି.*- ସମାଧି । ଯୋଗରତ ବ୍ୟକ୍ତିର ବିଷୟାନ୍ତର ନିବୃତ୍ତି ରୂପକ ନିଦ୍ରା । ପ୍ରଳୟକାଳୀନ ଭଗବାନ ବିଷ୍ଣୁଙ୍କ ନିଦ୍ରା, ବିଷ୍ଣୁ କ୍ଷୀର ସାଗରରେ ଅନନ୍ତ ଶୟନ କରି ଯୋଗନିଦ୍ରା ଯାଆନ୍ତି ।
(ଓ.ସାଂ.ଶ. - ପୃ. ୩୧୩) ।

**ଯୋଗମାୟା**-*ସଂ.ବି.*- ଭଗବାନଙ୍କର ଅଘଟଣ ଲୀଳାଶକ୍ତି । ଏହାଙ୍କ ମାଧ୍ୟମରେ ଭଗବାନ ଦେବକୀଙ୍କ ଗର୍ଭରୁ ରୋହିଣୀଙ୍କ ଗର୍ଭକୁ ଆକର୍ଷିତ ହୋଇଥିଲେ ।
(ଓ.ସାଂ.ଶ. - ପୃ. ୩୧୩) ।

**ଯୋଗମାୟା ବିମଳା**-*ସଂ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାର ନୈଋତ କୋଣରେ ଥିବା ରୋହିଣୀ କୁଣ୍ଡର ପଶ୍ଚିମକୁ ଅବସ୍ଥିତ । ଏହା ପୂର୍ବାଭିମୁଖୀ, ଯୋଗମାୟା ବିମଳା ଏ ମନ୍ଦିରରେ ବିରାଜମାନ । ବିମଳାଙ୍କୁ ଶ୍ରୀକ୍ଷେତ୍ର ରାଜେଶ୍ୱରୀ ବୋଲି ସମ୍ବୋଧନ କରାଯାଇଥାଏ । ଶ୍ରୀକ୍ଷେତ୍ରରେ ବିମଳା ଏକମାତ୍ର ଦେବୀ ଯିଏକି ଶ୍ରୀମନ୍ଦିର ପରିସର ମଧ୍ୟରେ ଶକ୍ତି ରୂପେ ଦଣ୍ଡାୟମାନ । ଶ୍ରୀଜଗନ୍ନାଥଙ୍କ ଭୋଗ ବିମଳାଙ୍କୁ ସମର୍ପିତ ହେବା ପରେ ଏହା ମହାପ୍ରସାଦ ରୂପେ ପରିଗଣିତ ହୁଏ । ଷୋଡ଼ଶ ଦିନ ପୂଜା ସମୟରେ ବିମଳାଙ୍କ ମନ୍ଦିର ମଧ୍ୟରେ ସ୍ତ୍ରୀଲୋକମାନଙ୍କ ପ୍ରବେଶ ନିଷେଧ ଅଟେ । ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ତିଥିରେ ଜଗନ୍ନାଥଙ୍କ ପହୁଡ଼ ପରେ ବିମଳାଙ୍କ ମନ୍ଦିରରେ ଆମିଷ ଭୋଗ କରାଯାଏ ଏବଂ ପଶୁବଳି ମଧ୍ୟ ଦିଆଯାଇଥାଏ । ବିମଳାଙ୍କ ମନ୍ଦିର ଅତି ପ୍ରାଚୀନ ଏବଂ ଏହା ଚାରିଭାଗରେ ବିଭକ୍ତ । ଯଥା- ବିମାନ, ଜଗମୋହନ, ନାଟ୍ୟମନ୍ଦିର ଓ ଭୋଗମଣ୍ଡପ । ମନ୍ଦିରର କାନ୍ଥର ଦେହରେ

ସପ୍ତମାତୃକା ସହ ଯୋଗିନୀମାନଙ୍କ ଚିତ୍ର ରହିଅଛି । ଯୋଗାସନରେ ଉପବିଷ୍ଟା ଉଲଗ୍ନ ଭୈରବୀ ମୂର୍ତ୍ତି ଦୃଷ୍ଟିଗୋଚର ହୁଏ । ଜଗମୋହନର ନୈଋତ କୋଣରେ ଦକ୍ଷିଣକାଳୀ ବିରାଜମାନା । ନାଟ୍ୟମନ୍ଦିରରେ ଦଶମହାବିଦ୍ୟାଙ୍କର ଚିତ୍ର ଭକ୍ତମାନେ ଦର୍ଶନ କରିଥାଆନ୍ତି । ଭୋଗମଣ୍ଡପ ବାହାରେ ରୋହିଣୀକୁଣ୍ଡ ନିକଟରେ ଏକ ହସ୍ତୀକୁ ସିଂହ ମାଡ଼ିବସିଥିବା ପ୍ରତିମୂର୍ତ୍ତି, ମା' ବିମଳାଙ୍କ ମୂର୍ତ୍ତି ସମ୍ମୁଖରେ ସିଂହ ମୂର୍ତ୍ତି ବିଦ୍ୟମାନ ।
(ଶ୍ରୀ.କ୍ଷି.- ପୃ. ୧୯୮/ ଶ୍ରୀ.ସ୍ୱ.- ପୃ. ୯୮)

**ଯୋଗାଡ଼**-*ଦେ.ବି.*- ଶ୍ରୀମନ୍ଦିରର ବାସନକୁସନ । (ପୁ.ବୋ. - ପୃ. ୨୯୯) ।

**ଯୋଗାଡ଼ମଜା ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ବାସନମଜା ସେବକ ବିଶେଷ । (ପୁ.ବୋ. - ପୃ. ୨୯୯) ।

**ଯୋଗାଡ଼ିଦେବା**-*ଦେ.ବି.*- ଶ୍ରୀମନ୍ଦିରର ରୋଷଘରେ ରୋଷେଇ ନିମନ୍ତେ ରନ୍ଧନ ପାତ୍ରରେ ଦ୍ରବ୍ୟ ପୂରାଇବାକୁ ଯୋଗାଡ଼ିଦେବା କୁହାଯାଏ । (ଶ୍ରୀ.ଶ. - ପୃ.୧୫୦) ।

**ଯୋଗାଣିଆ**-*ଦେ.ବି.*- ଶ୍ରୀମନ୍ଦିରର ବିଭିନ୍ନ ନୀତିରେ ଆବଶ୍ୟକ ପଦର୍ଥ ଯୋଗାଉଥିବା ସେବକ । ବଲ୍ଲଭ ଯୋଗାଣିଆ, କୋଠଭୋଗ ଯୋଗାଣିଆ, ପର୍ବଯାତ୍ରା ଯୋଗାଣିଆ, ବାହାର ଦେଉଳି ଯୋଗାଣିଆ । ଏମାନେ ଠିକ୍ ସମୟରେ ଠିକ୍ ଭାବେ ଠିକ୍ ପଦାର୍ଥ ନ ଯୋଗାଇଲେ ମନ୍ଦିର କାର୍ଯ୍ୟରେ ବିଶୃଙ୍ଖଳା ଦେଖାଦେବ । ଏଣୁ ଏମାନେ ନିଷ୍ପାପର ଭାବେ କାର୍ଯ୍ୟ କରନ୍ତି । (ଶ୍ରୀ.ସ୍ୱ.- ପୃ. ୨୨)

**ଯୋଗିନୀ**-*ସଂ.ବି.*- ଯୋଗ ସାଧନ କାରିଣୀ ନାରୀ । ଦୁର୍ଗାଙ୍କର ଅନୁଚରୀ । ପୁରାଣ ମତରେ ଏମାନଙ୍କ ସଂଖ୍ୟା ଚଉଷଠି । ସେମାନେ ହେଲେ- ୧. ନାରାୟଣୀ, ୨. କାତ୍ୟାୟନୀ, ୩. ଶାକମ୍ଭରୀ, ୪. ଗୌରୀ, ୫. ଭୀମା, ୬. ମହାଦେବୀ, ୭. କୃଷ୍ଣପିଙ୍ଗଳା, ୮. ଭ୍ରମରୀ, ୯. ପାର୍ବତୀ, ୧୦. ଚନ୍ଦ୍ରଘଣ୍ଟିକା, ୧୧. ମହାବିଦ୍ୟା, ୧୨. ମହାତପା, ୧୩. ଦୁର୍ଗା, ୧୪. ଚଣ୍ଡଘଣ୍ଟା, ୧୫. ରୁଦ୍ରାଣୀ, ୧୬. ସାବିତ୍ରୀ, ୧୭. ବ୍ରହ୍ମବାଦିନୀ, ୧୮. ଭଦ୍ରକାଳୀ, ୧୯. ବିଶାଳାକ୍ଷୀ, ୨୦. ଅଗ୍ନିଜ୍ୱାଳା, ୨୧. ରୌଦ୍ରମୁଖୀ, ୨୨. କାଳରାତ୍ରି, ୨୩. ତପସ୍ୱିନୀ, ୨୪. ମେଘସ୍ୱନା, ୨୫. ସହସ୍ରାକ୍ଷୀ, ୨୬. ବିଷ୍ଣୁମାୟା, ୨୭. ଜଳୋଦରୀ, ୨୮. ମହୋଦରୀ, ୨୯. ମୁକ୍ତକେଶୀ, ୩୦. ଘୋରରୂପା, ୩୧. ମହାବଳା, ୩୨. ଶ୍ରୁତି, ୩୩. ସ୍ମୃତି, ୩୪. ଧୃତି, ୩୫. ତୁଷ୍ଟି, ୩୬. ପୁଷ୍ଟି, ୩୭. ମେଧା, ୩୮. ବିଦ୍ୟା, ୩୯. ଲକ୍ଷ୍ମୀ, ୪୦. ସରସ୍ୱତୀ, ୪୧. ଅପର୍ଣ୍ଣା, ୪୨. ଅମ୍ବିକା, ୪୩. ଯୋଗିନୀ, ୪୪. ଡାକିନୀ, ୪୫. ଶାକିନୀ, ୪୬. ହାକିନୀ, ୪୭. ଲୋକିନୀ, ୪୮. ତ୍ରିଦଶେଶ୍ୱରୀ, ୪୯. ସର୍ବମଙ୍ଗଳା, ୫୦. ମହାଷଷ୍ଠୀ, ୫୧. ଲଜ୍ଜା, ୫୨. କୌଶିକୀ, ୫୩. ବ୍ରାହ୍ମଣୀ, ୫୪. ମାହେଶ୍ୱରୀ, ୫୫. ବୈଷ୍ଣବୀ, ୫୬. କୌମାରୀ, ୫୭. ଐନ୍ଦ୍ରୀ, ୫୮. ନାରସିଂହୀ, ୫୯. ବରାହୀ, ୬୦. ଚାମୁଣ୍ଡା, ୬୧. ଶିବଦୂତୀ, ୬୨. ବିଷ୍ଣୁଦୂତୀ, ୬୩. ଚଣ୍ଡିକା, ୬୪. ମାତୃକା । କେତେକ ଯୋଗିନୀ ଶ୍ରୀମନ୍ଦିର ବେଢ଼ା ଭିତରେ ଅଛନ୍ତି । (ଓ.ସାଂ.ଶ. - ପୃ. ୩୧୩/୩୧୪) ।

**ଯୋଡ଼ା ଆଷାଢ଼**-*ଦେ.ବି.*- ପ୍ରତି ଦୁଇବର୍ଷ ଅନ୍ତରରେ ଚନ୍ଦ୍ରକଳା ମାସ ଓ ସୌରକଳାର ବ୍ୟବଧାନକୁ ସମାନ କରିବା ଲାଗି ପ୍ରତି ବତିଶି ମାସରେ ଏକ ଅଧି ମାସ ବା ମଳ ମାସ ହୁଏ । ଯେଉଁଥର ଆଷାଢ଼ରେ ପଡ଼େ ଏହାକୁ ଦୋ'ଆଷାଢ଼ ବା ଯୋଡ଼ା ଆଷାଢ଼ କୁହାଯାଏ । ଏହା ମଧ୍ୟ ପୁରୁଷୋତ୍ତମ ମାସ ନାମରେ ଖ୍ୟାତ । ଏହି ଯୋଡ଼ା ଆଷାଢ଼ରେ ନବକଳେବର କାର୍ଯ୍ୟ ସମାପନ ହୋଇଥାଏ । କାରଣ ଅଣସର ନୀତି ପାଇଁ ପନ୍ଦରଦିନ ପରିବର୍ତ୍ତେ ଦେଢ଼ମାସ ମିଳିବାରୁ ଦାରୁକଟା ହୋଇ ଖରାଖାଇ ମୂର୍ତ୍ତି ଗଠନ ନିମନ୍ତେ ସମୟ ବ୍ୟବଧାନ ଠିକ୍ ହୁଏ । (ଶ୍ରୀ.ସ୍ୱ. - ପୃ. ୬୪) ।

**ଯୋଡ଼ା କାହାଳୀ ସେବକ**-*ଦେ.ବି.*- ଶ୍ରୀମନ୍ଦିରର କାହାଳୀ ବାଦକ ସେବକ ବିଶେଷ । (ପୁ.ବୋ.- ପୃ. ୨୯୯) ।

# ର

**ରକ୍ଷା ପଞ୍ଚମୀ-** ଭାଦ୍ର କୃଷ୍ଣ ପଞ୍ଚମୀ । ପ୍ରତିବର୍ଷ ଏ ଦିନ ଗୃହକୁ ରାକ୍ଷସାଦିଙ୍କ ଆକ୍ରମଣରୁ, ରୋଗରୁ ଓ ସମସ୍ତ ପ୍ରକାର ବିପଦରୁ ରକ୍ଷା କରିବା ପାଇଁ ଗୃହର ଦ୍ୱାର ନିକଟସ୍ଥ କାନ୍ଥରେ ଗଣେଶ, ମହାଦେବ ଓ ଏକ ଗୋଡ଼ିକିଆ ଭୈରବ ମୂର୍ତ୍ତିମାନ ଲେଖାଯାଏ ଓ ଦାଣ୍ଡ ଚାଳରେ ଓ ବାଡ଼ି ଚାଳରେ ରକ୍ଷାକାଣ୍ଡ ବନ୍ଧାଯାଏ । ଏହି ଦିନ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ରେଖା ଲାଗି ହୁଏ । ରଥଯାତ୍ରାରୁ ଫେରି ଚିତ୍ରରେ ରେଖା କରାଯାଏ । ଏହାକୁ ରେଖାପଞ୍ଚମୀ କହନ୍ତି । ଏହାକୁ ମଧ ବାଘମାମୁଁ ପଞ୍ଚମୀ କୁହାଯାଏ । (ପୂ.ଓ.ଭା. - ପୃ. ୬୯୧୮, ଶ୍ରୀ.ସ୍ୱ. ୨ୟ - ପୃ. ୮୮) ।

**ରଙ୍ଗଚିତ୍ରଣ ଉପାଦାନ-***ଦେ.ବି.-* ଶ୍ରୀଜଗନ୍ନାଥଙ୍କୁ ରଙ୍ଗ କରିବା ଲାଗି ଶଙ୍ଖରୁ ଧଳା, ହେଙ୍ଗୁଳରୁ ନାଲି, ହରତାଳରୁ ହଳଦିଆ, ଦୀପବଳାରୁ କଳା ଓ ଏଥିରେ କସ୍ତୁରୀ ମିଶ୍ରଣରେ ଠାକୁର ଚିତ୍ର ହୁଅନ୍ତି । (ଶ୍ରୀ.ଜି. - ପୃ. ୬୨) ।

**ରଘୁନାଥ ବେଶ-***ଦେ.ବି.-* ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ବେଶ ମଧ୍ୟରୁ ରଘୁନାଥ ବେଶ ଏକତମ । ଏହି ବେଶରେ ଶ୍ରୀଜଗନ୍ନାଥ ରାମ ରୂପରେ ସଜ୍ଜିତ ହୁଅନ୍ତି ଓ କାଷ୍ଠ ନିର୍ମିତ ହସ୍ତପଦ ଯୁକ୍ତ ହୋଇଥାନ୍ତି । ତାଙ୍କର ବାମ ପାଦଟି ସିଂହାସନ ଉପରେ ଥିବା ବେଳେ ଦକ୍ଷିଣ ପାଦଟି ତଳକୁ ଲମ୍ବି ରହିଥାଏ । ସେ ହସ୍ତରେ ଧନୁ ଓ ତୂଣୀର ଧାରଣ କରିଥାନ୍ତି । ସେ ସିଂହାସନରେ ଓ ଶ୍ରୀଅଙ୍ଗରେ ବହୁପ୍ରକାର ଅଳଙ୍କାରରେ ସୁସଜ୍ଜିତ ହୋଇଥାନ୍ତି । ତାଙ୍କ କୋଳରେ ଲକ୍ଷ୍ମୀ ପ୍ରତିମା ସୀତା ରୂପରେ ସ୍ଥାନ ପାଇଥାନ୍ତି ।

ବଳଭଦ୍ର ଲକ୍ଷ୍ମଣ ଭୂମିକାରେ ଅବତୀର୍ଣ୍ଣ ହୋଇଥାନ୍ତି । ସେ ଧନୁ ପାଦଛନ୍ଦରେ ଦଣ୍ଡାୟମାନ ହୋଇ ହସ୍ତପଦ ଯୁକ୍ତ ହୋଇ ଦୁଇ ହସ୍ତରେ ଜଗନ୍ନାଥଙ୍କ ମସ୍ତକକୁ ଲମ୍ବିଯାଉଥିବା ଛତ୍ରକୁ ଧରିଥାନ୍ତି । ତାଙ୍କ ଶରୀରରେ ମଧ ଅନେକ ଅଳଙ୍କାର ଲାଗି ହୋଇଥାଏ । ଏହି ବେଶରେ ସୁଭଦ୍ରାଙ୍କର କିଛି ଭୂମିକା ନ ଥାଏ, କିନ୍ତୁ ସେ ଅନେକ ଆଭୂଷଣରେ ମଣ୍ଡିତ ହୋଇଥାନ୍ତି ।

ଶ୍ରୀମନ୍ଦିରର ରତ୍ନସିଂହାସନ ପାଖରୁ କଳାହାଟ ଦ୍ୱାର ପର୍ଯ୍ୟନ୍ତ ପଟା ଉପରେ ଅନେକ କାଠମୂର୍ତ୍ତି ସୁସଜ୍ଜିତ ହୋଇ ରହିଥାନ୍ତି । ଶ୍ରୀଜଗନ୍ନାଥ ରାମଙ୍କ ବାମପାର୍ଶ୍ୱରେ ଶତ୍ରୁଘ୍ନ ଭରତ, ବଳଭଦ୍ର ଲକ୍ଷ୍ମଣଙ୍କ ଦକ୍ଷିଣରେ ବ୍ରହ୍ମା, ବଶିଷ୍ଠ ଇତ୍ୟାଦି ଋଷିମାନେ ଦଣ୍ଡାୟମାନ ହୋଇଥାଆନ୍ତି । ରତ୍ନସିଂହାସନକୁ ଲାଗି ସରୁ ପଟା ଉପରେ ଅଙ୍ଗଦ ଚାମର ଧରି, ଜାମ୍ବବାନ କରଯୋଡ଼ି, ବିଭୀଷଣ କରଯୋଡ଼ି, ହନୁମାନ କର ଯୋଡ଼ି ବସିଥାଆନ୍ତି । ସମ୍ପୂର୍ଣ୍ଣ ଗର୍ଭଗୃହଟି ସୁସଜ୍ଜିତ କରାଯାଏ ।

ଜଗନ୍ନାଥ ରାମଚନ୍ଦ୍ର ବୀରବେଶରେ ବସି ରହି ସୀତା ତାଙ୍କ କୋଳରେ ବସିଥିବାରୁ ଏବଂ ତାଙ୍କ ମୁଣ୍ଡ ଉପରେ ଲକ୍ଷ୍ମଣ ଛତ୍ର ଧାରଣ କରିଥିବାରୁ ତାହା ରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ ରୂପର ପରିଚାୟକ ବୋଲି ଜଣାଯାଏ । ଶ୍ରୀରାମ ଚଉଦ ବର୍ଷ ବନବାସ କରିସାରିବା ପରେ ଅଯୋଧ୍ୟାରେ ତାଙ୍କର ରାଜ୍ୟାଭିଷେକ ହୋଇଥିଲା ବୋଲି ରାମାୟଣରେ ବର୍ଣ୍ଣନା କରାଯାଇଛି ।

ଶ୍ରୀଜଗନ୍ନାଥଙ୍କୁ ରାଜା ରାମ ବେଶରେ ସଜାଇବାର ଚେଷ୍ଟା ରାମାନନ୍ଦୀ ସମ୍ପ୍ରଦାୟମାନଙ୍କଠାରୁ ଆରମ୍ଭ ହୋଇଥିବା ଅନୁମାନ କରାଯାଏ । ରାମାନନ୍ଦୀ ସମ୍ପ୍ରଦାୟ ରାମଚନ୍ଦ୍ରଙ୍କୁ ପୂର୍ଣ୍ଣବ୍ରହ୍ମ ଭାବରେ ପରିକଳ୍ପନା କରୁଥିବାରୁ ତାଙ୍କ ସମୟରୁ ଏହା ପ୍ରଚଳନ ହୋଇଥିବା ଆଶା କରାଯାଏ । ଏହି

ବେଶ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଶ୍ରୀମନ୍ଦିରରେ ପ୍ରଚଳିତ ହୋଇଛି ବୋଲି ଜଣାଯାଏ । ଗଜପତି ରାମଚନ୍ଦ୍ରଦେବ ତାଙ୍କ ରାଜତ୍ୱର ଏଗାର ଅଙ୍କରେ ଶ୍ରାବଣ ଶୁକ୍ଳ ନବମୀରେ ଠାକୁରମାନଙ୍କୁ ରତ୍ନସିଂହାସନରେ ବିଜେ କରାଇ ନିଜକୁ ଇନ୍ଦ୍ରଦ୍ୟୁମ୍ନ ବୋଲି ଘୋଷଣା କରିଥିଲେ । ତାଙ୍କର ସିଂହାସନ ଆରୋହଣ ସମୟରେ ସୁବର୍ଣ୍ଣର ରାମାଭିଷେକ ମୋହରର ପ୍ରଚଳନ ହୋଇଥିଲା । ସେହି ସମୟରେ ବହୁ ଅର୍ଥ ବ୍ୟୟରେ ନାନାଦି ରତ୍ନ ଅଳଙ୍କାରମାନ ନିର୍ମିତ କରାଇ ପ୍ରଥମେ ଠାକୁରମାନଙ୍କୁ ରଘୁନାଥ ବେଶ କରାଉଥିଲେ ।

ସାଧାରଣତଃ ପରମ୍ପରା ଅନୁଯାୟୀ ବୈଶାଖ ମାସରେ ଯେଉଁ ଦିନ ରାମଚନ୍ଦ୍ରଦେବଙ୍କ ଅଭିଷେକ ଉତ୍ସବ ପଡ଼ିଥାଏ ସେହି ତିଥିରେ ରଘୁନାଥ ବେଶ ହୋଇଥାଏ । କେତେକ ନିର୍ଭରଯୋଗ୍ୟ ତଥ୍ୟରୁ ସଂଗ୍ରହ କରାଯାଇଛି ରଘୁନାଥ ବେଶ, ୧୫୭୭ ମସିହା - ବୈଶାଖ କୃଷ୍ଣ ଦଶମୀ, ୧୭୩୯ ମସିହା - ବୈଶାଖ କୃଷ୍ଣ ଦଶମୀ, ୧୮୦୯ ମସିହା - ମୁକୁନ୍ଦ ଦେବଙ୍କ ଚଉଦ ଅଙ୍କ, ୧୮୩୩ ମସିହା - ରାମଚନ୍ଦ୍ର ଦେବଙ୍କ ଉଣଇଶ ଅଙ୍କ, ୧୮୪୨ ମସିହା - ବୀରକିଶୋର ଦେବଙ୍କ ତିନି ଅଙ୍କ, ୧୮୫୦ ମସିହା - ବୈଶାଖ କୃଷ୍ଣ ଚତୁର୍ଦ୍ଦଶୀ, ୧୮୯୩-୯୬ ମସିହା - ମୁକୁନ୍ଦଦେବଙ୍କ ଚଉଦ ଓ ଅଠର ଅଙ୍କ, ୧୯୦୫ ମସିହା - ଏପ୍ରିଲ ସତେଇଶ ତାରିଖ (ନବମୀ ଗୁରୁବାର) । ୧୯୮୩ ମସିହାରେ ଏ ବାବଦରେ କର୍ତ୍ତୃପକ୍ଷ ଆଗ୍ରହ ପ୍ରକାଶ କରିଥିଲେ ମଧ୍ୟ ଆର୍ଥିକ ତଥା ଅନ୍ୟାନ୍ୟ କାରଣରୁ ଏହା ସମ୍ଭବ ହୋଇପାରି ନ ଥିଲା ।

(ଶ୍ରୀଜ.ବେ.ର. - ପୃ. ୧୧୭) ।

**ରଜତ ବଟା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ପାଇଁ ଯେଉଁ ରୂପାପାତ୍ରରେ ଫୁଲ, ଚନ୍ଦନ ରଖାଯାଇ ପୂଜା କରାଯାଏ ।

(ଶ୍ରୀ.ଶ. - ପୃ. ୧୫୦) ।

**ରତ୍ନ ଓଡ଼ିଆଣି**-*ସଂ.ବି.*- ପ୍ରାଚୀନ କାଳର ଏକ ଅଳଙ୍କାର ବିଶେଷ । ଏହି ସ୍ୱର୍ଣ୍ଣ ଅଳଙ୍କାର କଟୀରେ ପିନ୍ଧାଯାଏ । ଲକ୍ଷ୍ମୀଙ୍କ ଅଳଙ୍କାର ।

(ଓ.ସାଂ.ଶ. - ପୃ. ୩୧୬) ।

**ରତ୍ନକମ ଦିହୁଡ଼ିଆ**-*ସଂ.ବି.*- ଶ୍ରୀମନ୍ଦିରରେ ଦିହୁଡ଼ି ଜାଳୁଥିବା ସେବକ । ଏ ଛାମୁ ଦିହୁଡ଼ିଆ ବା ରତ୍ନ ଦିହୁଡ଼ିଆ ନାମରେ ପରିଚିତ । ଶ୍ରୀଜୀଉଙ୍କ ସମ୍ମୁଖରେ ଜାଳୁଥିବାରୁ ଛାମୁ ଦିହୁଡ଼ି ଭାବରେ ଅଭିହିତ । ଠାକୁରଙ୍କ ପ୍ରତ୍ୟେକ ଭିତର ଓ ବାହାର ବିଜେରେ, ଦକ୍ଷିଣିଘରୁ ଭିତରକୁ ଗଲାବେଳେ ଏମାନେ ଦିହୁଡ଼ି ଲଗାଇ ଆଗରେ ଯାଆନ୍ତି । ସ୍ନାନଯାତ୍ରା ବିଜେ ଓ ବାହୁଡ଼ା ପହଣ୍ଡିରେ, ରଥରେ ସନ୍ଧ୍ୟାଠାରୁ ବଡ଼ସିଂହାର ପର୍ଯ୍ୟନ୍ତ ଚାପରେ ଓ ଷୋଳପୂଜାରେ ଦିହୁଡ଼ି ଜାଳନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ.୬୮) ।

**ରତ୍ନକମ ବିନ୍ଧାଣି**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କର ସୁନାରୂପାଦି ଯାବତୀୟ ଧାତୁ କାର୍ଯ୍ୟ କରୁଥିବା ସେବକ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ବଣିଆ ସେବକ ରୂପେ ବର୍ଣ୍ଣିତ ।

(ଶ୍ରୀ.ସ୍ୱ. - ପୃ. ୪୫, ପୁ.ବୋ. - ପୃ. ୨୨୯) ।

**ରତ୍ନ ପଲଙ୍କ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରାତ୍ର ପହୁଡ଼ ବା ଶୟନ ପାଇଁ ବ୍ୟବହୃତ ପଲଙ୍କକୁ ରତ୍ନପଲଙ୍କ କୁହାଯାଏ । ଏଥିରେ ସମ୍ପୂର୍ଣ୍ଣ ଭାବେ ରତ୍ନ ବ୍ୟବହୃତ ହୋଇ ନ ଥିଲେ ହେଁ ଏହାର ନାମ ରତ୍ନପଲଙ୍କ ।

(ଶ୍ରୀ.ସ୍ୱ. ୨ୟ - ପୃ.୨୮ , ଓ.ସାଂ.ଶ. - ପୃ. ୩୧୬) ।

**ରତ୍ନପଲଙ୍କ ଉଠା**-*ଦେ.ବି.*- ଶ୍ରୀମନ୍ଦିରରେ ଜୟବିଜୟ ଦ୍ୱାର ଅଧାଫିଟା ଥିବା ବେଳେ ଖଟ ଶେଯ ମେକାପ ରତ୍ନ ପଲଙ୍କ ଉଠାଇ ପଲଙ୍କ ଘରକୁ ନିଅନ୍ତି । ଏହାକୁ ରତ୍ନ ପଲଙ୍କ ଉଠା କୁହାଯାଏ ।

(ଶ୍ରୀ.ଶ.- ପୃ. ୧୫୧) ।

**ରତ୍ନପାଦୁକା**-*ଦେ.ବି.*- ସୁନା କଠଉ । ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥଙ୍କ ଚରଣରେ ବ୍ୟବହୃତ ହେଉଥିବା ସୁବର୍ଣ୍ଣ ପାଦୁକା ବିଶିଷ୍ଟ ଅଳଙ୍କାର ।

(ଓ.ସାଂ.ଶ. - ପୃ. ୩୧୭) ।

**ରତ୍ନବେଦୀ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଆସ୍ଥାନ । 'ପ୍ରତିଷ୍ଠା ପଞ୍ଚକ'ରେ ବର୍ଣ୍ଣିତ ଅଛି ଯେ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଆସ୍ଥାନ ତଳେ ନବରତ୍ନ ପୋତା ହୋଇଅଛି । ତେଣୁ ତାଙ୍କର ଏହି ଶ୍ରେଷ୍ଠ ଆସ୍ଥାନ ରତ୍ନ ସିଂହାସନ ରୂପେ ପରିଚିତ । ଏହି ରତ୍ନସିଂହାସନରେ ବିରାଜମାନ କରିଥାନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ସୁଦର୍ଶନ, ଶ୍ରୀଦେବୀ, ଭୂଦେବୀ ଓ ମାଧବ । ସମ୍ପ୍ରତି ବିଦ୍ୟମାନ ଥିବା ରତ୍ନବେଦୀକୁ ଭୋଇବଂଶୀୟ ରାଜା ବୀରକିଶୋର ଦେବ (୧୭୩୬-୧୭୯୧) ନିର୍ମାଣ କରିଥିଲେ । ଏହା ପାଷାଣ ନିର୍ମିତ । ଏହାର ଲମ୍ବ ୧୬ ଫୁଟ, ପ୍ରସ୍ଥ ୧୩ ଫୁଟ ଓ ଉଚ୍ଚତା ୪ ଫୁଟ ଅଟେ । (ଶ୍ରୀ.ସ୍ୱ. ୨ୟ-ପୃ.୬, ଓ.ସାଂ.ଶ.-ପୃ.୩୧୭) ।

**ରତ୍ନମୁଦି**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ସୁବର୍ଣ୍ଣ ମୁଦ୍ରିକା । (କ୍ଷେ.ସ.) ।

**ରତ୍ନହାଣ୍ଡି**-*ଦେ.ବି.*- ଶ୍ରୀମନ୍ଦିରରେ ବ୍ୟବହୃତ ହାଣ୍ଡି, କୁଡୁଆ, ଓଳି, ସରା, ବଡ଼ା ଓ ତାଡ଼ ଇତ୍ୟାଦି । ଏଥିନିମନ୍ତେ କୁମ୍ଭାର ବିଶୋଇଙ୍କୁ ମିଳିଥିବା ଭୂସମ୍ପତ୍ତି ରତ୍ନହାଣ୍ଡି ଜାଗିରି ଭାବରେ ପରିଚିତ । ଶ୍ରୀମନ୍ଦିରକୁ ଯାଉଥିବା ହାଣ୍ଡିରେ ବ୍ୟବହୃତ ଚାରୋଟି ବସ୍ତୁ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ନାମରେ କଥିତ । ପ୍ରତ୍ୟେକ ହାଣ୍ଡିରେ ଚଟା (ମାଟିକୁ ତାଡ଼ିଲାବେଳେ ରହୁଥିବା ଦାଗ, ହାଣ୍ଡି ବେକରେ ଗୁଣାଖାର (ମାଳିଭଳି ଅଳଙ୍କରଣ) ଓ ହାଣ୍ଡି ତଳେ ପଦ୍ମଚିହ୍ନ ରଖାଯାଏ । ଥାଳି କୁଡୁଆ- ଖେଚୁଡ଼ି ବାଇ, ଅଙ୍ଗବାସ ଓଳି- ମରିଚିପଣା, ମିଠାଦହି, ଅଦାଖଳା, ଚିପେଇ ହାଣ୍ଡି- କାନିକା, କ୍ଷୀରି, କଡମ୍ବା, ପାହାଣ୍ଡ- ଅମାଲୁ, କାକରା, ଅଧା- ଅମାଲୁ ଛଣା ମାଟି ଡବା (ସଂପ୍ରତି ଅବ୍ୟବହୃତ), ସାନଓଳି- ବାଲଭୋଗ, ପୁଳିସରା- ପିଠା, ଚଢ଼େଇନେଦା, ପାଳିସରା- ଛୋଟପିଠା, କାକରା, ଅମାଲୁ ଆଦି, ବଡ଼ା- ଧୂଆମୁଗ, କଟାସରା- କଦଳୀଭଜା, ପାଚିଲା କଦଳୀ ଚେକା, ବଡ଼ ତାଡ଼- ମକର ତାଡ଼, ସାତପୁରୀ ତାଡ଼, ବାଇହାଣ୍ଡି- ବଡ଼ ହାଣ୍ଡି- ସବୁଠାରୁ ବଡ଼ ଅଧର ପଣା ହାଣ୍ଡି, ବଡ଼ କୁଡୁଆ- ସମାଦି କୁଡୁଆ, ଦାସିଆ କୁଡୁଆ, ଏମାର କୁଡୁଆ, ବଡ଼ ମଠ କୁଡୁଆ ଇତ୍ୟାଦି କୁମ୍ଭାର ସେବକ ପ୍ରତ୍ୟହ ଶ୍ରୀମନ୍ଦିରକୁ ଯୋଗାନ୍ତି । (ଓ.ସାଂ.ଶ. - ପୃ. ୩୧୭, ପୁ.ବୋ. - ପୃ. ୨୯୯/୩୦୦) ।

**ରତ୍ନାଲଟ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥଙ୍କୁ ଆଲଟ କରିବା ସେବକ ବିଶେଷ । (ପୁ.ବୋ. - ପୃ. ୩୦୦) ।

**ରଥ**-*ଦେ.ବି.*- ବୈଦିକ ଯୁଗରେ ଆର୍ଯ୍ୟମାନେ ରଥର ବ୍ୟବହାର ଜାଣିଥିବାର ସ୍ପଷ୍ଟ ପ୍ରମାଣ ଋଗ୍ ଓ ଯଜୁର୍ବେଦରୁ ମିଳେ । ରଥରେ ଅଶ୍ୱମାନେ ସାରଥି ଦ୍ୱାରା ନିୟନ୍ତ୍ରିତ ହେଉଥିଲେ । ରଥକୁ ଶିଳ୍ପୀ ଓ ସୂତ୍ରଧରମାନେ ପ୍ରସ୍ତୁତ କରୁଥିଲେ । ଯୁଦ୍ଧ ରଥ ଗୋ-ଚର୍ମ ଆଦିରେ ଆଚ୍ଛାଦିତ ହେଉଥିଲା । ରଥରେ ରଥ ସ୍ୱାମୀଙ୍କର ପରିସୂଚକ ପତାକା ଉଡୁଥିଲା । ରଥର ଅଭ୍ୟନ୍ତରରେ ଯୋଦ୍ଧାମାନଙ୍କର ଅସ୍ତ୍ରଶସ୍ତ୍ର ରକ୍ଷା ହେଉଥିଲା । ପୁରାଣ ଆଦିରେ ଭିନ୍ନ ଭିନ୍ନ ରଥ ଓ ଉକ୍ତ ରଥକୁ ଟାଣିବା ପାଇଁ ଭିନ୍ନ ଭିନ୍ନ ଜନ୍ତୁ ନିଯୋଜିତ ହେବା ଉଲ୍ଲେଖ ଅଛି । ବର୍ତ୍ତମାନ ପୁରୀରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ତିନିଟି ରଥ ଆଷାଢ଼ ଶୁକ୍ଳ ଦ୍ୱିତୀୟା ପୁଷ୍ୟା ନକ୍ଷତ୍ରରେ ଗୁଣ୍ଡିଚା ମନ୍ଦିର ଯାତ୍ରା କରନ୍ତି । ଏହାକୁ ଘୋଷଯାତ୍ରା କୁହାଯାଏ ଓ ଶୁକ୍ଳ ଦଶମୀ ଦିନ ପୁନର୍ବାର ପ୍ରତ୍ୟାବର୍ତ୍ତନ କରନ୍ତି । ଏହାକୁ ବାହୁଡ଼ାଯାତ୍ରା କୁହାଯାଏ । (ପୁ.ବୋ. - ପୃ. ୩୦୦, ଶ୍ରୀକ୍ଷେତ୍ର- ଡା. ସୁ. ଦାସ, ପୂ.ଓ.ଭା. - ପୃ. ୬୯୮୧) ।

**ରଥ ଅନୁକୂଳ**-*ଦେ.ବି.*- ପ୍ରତିବର୍ଷ ବୈଶାଖ ଶୁକ୍ଳ ତୃତୀୟା ବା ଅକ୍ଷୟ ତୃତୀୟା ଦିନ ଶ୍ରୀନଅର ନିକଟରେ ରଥଖଳାରେ ରଥ କାର୍ଯ୍ୟ ଅନୁକୂଳ ହୁଏ । ଆଷାଢ଼ ମାସ ପ୍ରତିପଦ ଦିନ ଠାକୁରଙ୍କ ଗୁଣ୍ଡିଚା ଯାତ୍ରା ପୂର୍ବରୁ ସିଂହଦ୍ୱାରଠାରେ ରଥ ରହିବା ସ୍ଥାନରେ ରଥଯାତ୍ରା ଅନୁକୂଳ ବିଧି ହେବା ପରେ ଠାକୁର ରଥକୁ ବିଜେ କରନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୮) ।

**ରଥକଟା ଅମିନ**-*ଦେ.ବି.*- ରଥ ତିଆରି ନିମନ୍ତେ ଆବଶ୍ୟକ କାଠ ପରିମାଣ ବୁଝିନେଇ ରଥକାଠ ଯୋଗାଉଥିବା ମହାରଣା ସେବକ ବିଶେଷ । (ପୁ.ବୋ. - ପୃ. ୩୦୦) ।

**ରଥଖଳା**-*ଦେ.ବି.*- ଶ୍ରୀପଞ୍ଚମୀ ଦିନ କାଠକଟା ଅନୁକୂଳ ହୁଏ ଓ ରଥନିର୍ମାଣ ନିମିତ୍ତ ଆବଶ୍ୟକୀୟ କାଠ ଆସି ରାଜାଙ୍କ ଶ୍ରୀନଅର ସମ୍ମୁଖରେ ବନ୍ଧା ହୋଇଥିବା ଛାମୁଣ୍ଡିଆ ତଳେ ରଖାଯାଏ । ତାହା ହେଉଛି ରଥଖଳା । ଅକ୍ଷୟ ତୃତୀୟା ଦିନ ଏହିଠାରେ ରଥ ଅନୁକୂଳ ଆରମ୍ଭ ହୁଏ । (ଶ୍ରୀ.ଜି. - ପୃ. ୨୪୬) ।

**ରଥଦାଣ୍ଡ**-*ଦେ.ବି.*- ଶ୍ରୀକ୍ଷେତ୍ରର ଦାଣ୍ଡ ବଡ଼ଦାଣ୍ଡ ନାମରେ ଖ୍ୟାତ । ଏହି ଦାଣ୍ଡରେ ରଥଯାତ୍ରା ଅନୁଷ୍ଠିତ ହୁଏ । ଏଣୁ ଏହି ରାସ୍ତା ଅତ୍ୟନ୍ତ ପ୍ରଶସ୍ତ । ରଥଯାତ୍ରା ଏହି ଦାଣ୍ଡ ଉପରେ ଅନୁଷ୍ଠିତ ହେଉଥିବାରୁ ଏହାକୁ ରଥ ଦାଣ୍ଡ ବୋଲି କୁହାଯାଏ । ଏହା ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ବିସ୍ତୃତ । ଏହା ପ୍ରାୟ ତିନି କି.ମି. ଦୀର୍ଘ ଅଟେ । (କ୍ଷେ.ସ.) ।

**ରଥଧ୍ୱଜା**-*ଦେ.ବି.*- ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥର ଲାଙ୍ଗୁଳଧ୍ୱଜ, ଦେବୀ ସୁଭଦ୍ରା ଦେବଦଳନ ରଥର ପଦ୍ମଧ୍ୱଜ ଓ ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥର, ତାର୍କ୍ଷ୍ୟଧ୍ୱଜ ବା ଗରୁଡ଼ଧ୍ୱଜ ଅଟେ । ଶ୍ରୀଗୁଣ୍ଡିଚା ମନ୍ଦିରରୁ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ ଏହି ନଅ ଦିନ ଯାଏ ଧ୍ୱଜପୂଜା ହୋଇଥାଏ । (ଶ୍ରୀ.ଜି. - ପୃ. ୨୬୧) ।

**ରଥ ନିର୍ମାଣ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମଧ୍ୟରେ ରଥଯାତ୍ରା ବା ଗୁଣ୍ଡିଚା ଯାତ୍ରା ଶ୍ରେଷ୍ଠ ରୂପେ ପରିଗଣିତ । ପ୍ରତିବର୍ଷ ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଏହି ଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହି ରଥଯାତ୍ରାର ବୈଶିଷ୍ଟ୍ୟ ଏହି ଯେ ଏଠାରେ ତିନିଗୋଟି ରଥ ସମ୍ପୂର୍ଣ୍ଣ ନୂତନ ଭାବରେ ଗଠନ କରାଯାଏ । ଏଥିପାଇଁ ଆବଶ୍ୟକ କାଠ ପ୍ରତିବର୍ଷ ନୟାଗଡ଼ (ଦଶପଲ୍ଲା) ରଣପୁର ଜଙ୍ଗଲରୁ କଟା ହୋଇଆସେ । ଦଶପଲ୍ଲା ଜଙ୍ଗଲରୁ ୮୬୨ ଏବଂ ରଣପୁର ଜଙ୍ଗଲରୁ ୨୭୪ ଖଣ୍ଡ କାଠ ଅଣାଯାଏ । ଏହି କାଠ ମଧ୍ୟରେ ଫାଶି ଧଉରା, ମଇ, ଶିମିଳି ପ୍ରଭୃତି କାଠ ଅନ୍ତର୍ଭୁକ୍ତ । ପ୍ରତିବର୍ଷ ବସନ୍ତ ପଞ୍ଚମୀ ଦିନ ଦଶପଲ୍ଲା ଜଙ୍ଗଲରେ ବନଦେବୀଙ୍କର ପୂଜାର୍ଚ୍ଚନା ପରେ କାଠ କଟାଯାଏ । ବସନ୍ତ ପଞ୍ଚମୀ ଦିନରୁ ସେ ବର୍ଷର କାଠ ପୁରୀଠାରେ ପହଞ୍ଚି ସାରିଥାଏ । ଆଗେ କାଠଗୁଡ଼ିକ ଭେଳାରେ ଆସୁଥିଲା । ବର୍ତ୍ତମାନ ଟ୍ରକ ମାଧ୍ୟମରେ ଆସୁଅଛି । ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ ଅକ୍ଷୟ ତୃତୀୟା ଦିନଠାରୁ । ସେହିଦିନ ମହାପ୍ରଭୁ ଚନ୍ଦନକୁ ବିଜେ କରନ୍ତି । ଚନ୍ଦନଯାତ୍ରା ପଟୁଆର ସହିତ ଆଜ୍ଞାମାଳ ଆସେ । ତିନିଜଣ ପୂଜାପଣ୍ଡା ତିନି ବିଗ୍ରହଙ୍କ ଶ୍ରୀଅଙ୍ଗରୁ ଆଜ୍ଞାମାଳ ଆଣି ତିନିରଥର ମହାରଣା ସେବକଙ୍କୁ ପ୍ରଦାନ କରିଥାନ୍ତି । ଏହା ରଥ ନିର୍ମାଣ ଲାଗି ମହାପ୍ରଭୁଙ୍କର ଆଜ୍ଞାସ୍ୱରୂପ । ପ୍ରତି ରଥ ପାଇଁ ଜଣେ ବଡ଼ ମହାରଣା, ଜଣେ ସୁତାର ମହାରଣା ଓ ଆଉ ଜଣେ ତଳୀ ମହାରଣା ନିଯୁକ୍ତ ହୁଅନ୍ତି । ଏମାନେ ଆବଶ୍ୟକ ସଂଖ୍ୟକ ଆତ୍ମୀୟମାନଙ୍କୁ ନେଇ କାର୍ଯ୍ୟ ଆରମ୍ଭ କରନ୍ତି । କାମ କରୁଥିବା ବଢ଼େଇମାନଙ୍କର ହତିଆର ପଜାଇବା ପାଇଁ ଏବଂ ଆବଶ୍ୟକ ପରିମାଣ ଲୁହା କଣ୍ଟା ଯୋଗାଇବା ପାଇଁ ଜଣେ ମହାରଣା (କମାର) ନିଯୁକ୍ତି ହୁଅନ୍ତି । ସେ ମାସାଧିକକାଳ ଦୋଳବେଦୀ ପରିସର ମଧ୍ୟରେ ଶାଳ କରି ଲୁହାକଣ୍ଟା ପ୍ରସ୍ତୁତ କରନ୍ତି । ରଥରେ ଆଉ ତିନିଜଣ କାରିଗର ଲାଗନ୍ତି । ସେମାନେ ହେଲେ ରୂପକାର, ଚିତ୍ରକାର ଓ ଦରଜୀ । ରୂପକାର କାଠରେ ଘୋଡ଼ା, ସାରଥୀ ଓ ପାର୍ଶ୍ୱଦେବତା ମୂର୍ତ୍ତିମାନ ଗଠନ କରନ୍ତି । ଚିତ୍ରକାର ମୂର୍ତ୍ତିମାନଙ୍କୁ ତଥା ରଥର ଅବୟବମାନଙ୍କୁ ଚିତ୍ରିତ କରନ୍ତି । ଦରଜୀ ରଥ ମଣ୍ଡନ ପାଇଁ କନା ସିଲାଇ କରନ୍ତି । ଅକ୍ଷୟ ତୃତୀୟା ଦିନ କାର୍ଯ୍ୟ ଆରମ୍ଭ ହୋଇ ଭଉଁରୀ ଦିନ ସକାଳ ଧୂପ ପରେ ଚକ ଡେରିବା ପାଇଁ

ଆଜ୍ଞାମାଳ ଆସେ । ଏହାପରେ ପ୍ରତି ରଥର ଚକ ତେରାଯାଏ । ଭଉଁରୀଠାରୁ ସ୍ନାନପୂର୍ଣ୍ଣିମା ମଧ୍ୟରେ ଅନ୍ୟ ସମସ୍ତ ଚକ, ଅଖ ଓ ଦଣ୍ଡା ନିର୍ମାଣ ଶେଷ ହୁଏ ଓ ସେହିଦିନକୁ ସମସ୍ତ ଚକ ଖଞ୍ଜା ହୋଇ ଚାରି ନାହାକା ଉଠେ । ଚାରି ନାହାକାର ବାହାର ପଟେ ଚଉଦ ନାହାକ ଖୁଣ୍ଟ ପୋତାଯାଏ । ଏହିପରି ଅଠରଟି ନାହାକ ଖୁଣ୍ଟ ଉପରେ ରଥର ଅବୟବ ଗଢ଼ାଯାଏ । ଏହି ସବୁ ଖୁଣ୍ଟ ଉପରେ ଛାତ ଗଢ଼ାଯାଏ । ଛାତର ବିଭିନ୍ନ ସ୍ତର ଅଛି, ଯଥା- ପ୍ରଥମ ଭୂଇଁ, ଦ୍ୱିତୀୟ ଭୂଇଁ, ତୃତୀୟ ଭୂଇଁ, ପ୍ରଥମ ପୋଟଳ, ପାରାଭାଡ଼ି, ଦ୍ୱିତୀୟ ପୋଟଳ, ଖପୁରୀ, ଅଁଳାଶ୍ରୀ, ଅଁଳାଶ୍ରୀ ଉପରେ କଳସ ଓ ଧ୍ୱଜା ।
(ଶ୍ରୀ.ଜି.- ପୃ. ୨୪୭/୨୪୯)

**ରଥ ପରିଛା**-*ଦେ.ବି.*- ରଥ ନିର୍ମାଣଠାରୁ ଶେଷ ପର୍ଯ୍ୟନ୍ତ ଦାୟିତ୍ୱରେ ଥିବା ପରିଛା ।
(ପୁ.ବୋ. - ୩୦୦) ।

**ରଥଭୋଇ ସେବକ**-*ଦେ.ବି.*- ଶ୍ରୀମନ୍ଦିରର ସେବକମାନଙ୍କ ମଧ୍ୟରୁ ଏକତମ । ରଥକାମ କରୁଥିବା ଭୋଇ ସେବକ । ରଥକାଠ ବୋହିବା, ଚାରମାଳ ବାନ୍ଧିବା ଓ ଭାଡ଼ି ତିଆରି କରିବା ଏମାନଙ୍କର କାର୍ଯ୍ୟ ।
(ଶ୍ରୀ.ସ୍ୱ. - ପୃ. ୧୮/ପୁ.ବୋ. - ପୃ. ୩୦୦) ।

**ରଥଭୋଇ ସେବା**-*ଦେ.ବି.*- ରଥ କାର୍ଯ୍ୟ ଚାଲିଥିବା ସମୟରେ ଅନେକ ମୂଲିଆ ଆବଶ୍ୟକ ହୁଅନ୍ତି ଓ ଅନେକ ଆସି କାମ କରନ୍ତି । ସେମାନଙ୍କ ମଧ୍ୟରୁ ଜଣଙ୍କୁ ମୁଖିଆ (ସର୍ଦ୍ଦାର) ରୂପେ ନିଯୁକ୍ତି ଦିଆହୋଇଥାଏ, ଏହି ସର୍ଦ୍ଦାର ଜଣକ ପାରମ୍ପରିକ ଭୋଇ ସେବକ । ସେ ଅନ୍ୟାନ୍ୟ ମୂଲିଆଙ୍କୁ ଯୋଗାଇବା ଓ ଅନ୍ୟାନ୍ୟ ମୂଲିଆଙ୍କ ଉପରେ ନଜର ରଖିବା ସଙ୍ଗେ ସଙ୍ଗେ ନିଜ କାର୍ଯ୍ୟ ମଧ୍ୟ ସମ୍ପନ୍ନ କରନ୍ତି ।
(ଶ୍ରୀ.ସ୍ୱ.୬୪ - ପୃ. ୧୯) ।

**ରଥଭୋଗ**-*ଦେ.ବି.*- ରଥ ଉପରେ ଠାକୁର ବିଜେ ଥିବାବେଳେ ଯେଉଁ ଭୋଗ ସମର୍ପିତ ହୁଏ ।
(ପୁ.ବୋ. - ପୃ. ୩୦୦) ।

**ରବା**-*ଦେ.ବି.*- ରୁଦ୍ର ବୀଣା ବା ସୀତାର ସଦୃଶ ଏକ ବାଦ୍ୟଯନ୍ତ୍ର ବିଶେଷ । ଶ୍ରୀଠାକୁରଙ୍କ ନୃତ୍ୟଗୀତ ସେବାରେ ଏହା ଲାଗେ ।
(ପୁ.ବୋ.- ପୃ. ୩୦୦) ।

**ରସଗୋଲା ଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ନୀଳାଦ୍ରିବିଜେ ଅବସରରେ ଲାଗି ହେଉଥିବା ରସଗୋଲା ଭୋଗ । ଏହିଦିନରେ ମନ୍ଦିର ଭିତରେ ବାହାର ମିଠା ଶ୍ରୀଜୀଉଙ୍କୁ ସମର୍ପିତ ହୋଇଥାଏ ।
(ଶ୍ରୀ.ଜି. - ପୃ. ୨୬୮) ।

**ରସଦାୟକ**-*ଦେ.ବି.*- ଭାଗ / ପ୍ରାପ୍ୟାଂଶ । ପର୍ବଯାତ୍ରା ଯୋଗାଣିଆ ମହଣେ ଗହମରୁ ଚାରିସେର, କୋଡ଼ିଏ ନଡ଼ିଆରୁ ଦୁଇଟା, କଦଳୀ ଓ କୋରା ପଣକରେ ଯଥାକ୍ରମେ ଚାରିଟା ଓ ଦଶଟା ରସଦାୟକ ଭାବେ ପାଇଥାଆନ୍ତି ।
(ପୁ.ବୋ. - ପୃ. ୩୦୦) ।

**ରସାବଳୀ**-*ଦେ.ବି.*- କ୍ଷୀରରେ ଛେନା ଓ ନଡ଼ିଆ ପଡ଼ି ପ୍ରସ୍ତୁତ ହୋଇଥିବା ଭୋଗ, ଯାହା ମହାପ୍ରଭୁଙ୍କୁ ଛପନ ଭୋଗରେ ସମର୍ପିତ ହୁଏ ।
(ଶ୍ରୀ.ଜି. - ପୃ. ୧୯୩) ।

**ରସାବଳୀ ମାଣ୍ଡୁଅ**- ଚନ୍ଦନ ଘରେ ଏକୋଇଶି ଦିନ ମହାପ୍ରଭୁଙ୍କୁ ଲାଗି ହୁଏ ।
(ଶ୍ରୀ.ସ୍ୱ. - ପୃ. ୧୮୧) ।

**ରସିକ ଶିକୁଳା**-*ଦେ.ବି.*- ଲଗାମ, ରଶ୍ମିକ, ଛୋଟ ଦଉଡ଼ି, ରସନା- କଟି ମେଖଳା) ଶ୍ରୀଠାକୁରମାନେ ସିଂହାସନରେ ରୁନ୍ଧା ହେବା ପାଇଁ ବ୍ୟବହୃତ ରୂପା ଶିକୁଳି । ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରାଙ୍କ ରୁନ୍ଧା ନିମନ୍ତେ ଯଥାକ୍ରମେ ସାତସରିଆ, ପାଞ୍ଚସରିଆ ଓ ଚାରିସରିଆ ରୂପା ଶିକୁଳି ବ୍ୟବହୃତ ହୁଏ ।
(ପୁ.ବୋ. - ପୃ. ୩୦୧) ।

**ରାଇତା**-*ଦେ.ବି.*- ଏକ ପ୍ରକାର ପ୍ରସ୍ତୁତ ଭୋଗ ବିଶେଷ । ପାଣିକଖାରୁ ଓ ମୂଳା ଆଦି ପଡ଼ି ପ୍ରସ୍ତୁତ ଭୋଗ ଯାହା ଠାକୁରଙ୍କୁ ଲାଗିହୁଏ ।
(ଶ୍ରୀ.ଶ. - ପୃ. ୧୫୨) ।

**ରାଜଗୁରୁ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ଏ ଶ୍ରୀମନ୍ଦିରର ପ୍ରଶାସନିକ ଦାୟିତ୍ୱରେ ଥାଆନ୍ତି । ରାଜଗୁରୁ- ରାଜାଙ୍କ ମନ୍ତ୍ରୀ । ବ୍ରାହ୍ମଣମାନଙ୍କୁ ରାଜାଙ୍କ ଦ୍ୱାରା ପ୍ରଦତ୍ତ ଉପାଧି ବିଶେଷ । କାଶୀ ମିଶ୍ର ଗଜପତି ପ୍ରତାପରୁଦ୍ରଙ୍କର ରାଜଗୁରୁ ଥିଲେ । ରାଜଗୁରୁ ଶ୍ରୀମନ୍ଦିର ସମ୍ପର୍କୀତ ସମସ୍ତ କାର୍ଯ୍ୟ କରିଥାନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ.୨୮ ) ।

**ରାଜଧୂପ**-*ଦେ.ବି.*- ଶ୍ରୀମନ୍ଦିରର ସକାଳ ଧୂପକୁ ରାଜଧୂପ କୁହାଯାଏ ।
(ଶ୍ରୀ.ଜି. - ପୃ. ୨୦୩) ।

**ରାଜରାଜେଶ୍ୱର ବେଶ**-*ଦେ.ବି.*- କାର୍ତ୍ତିକ ପୂର୍ଣ୍ଣିମା ଦିନ ଶ୍ରୀବିଗ୍ରହମାନଙ୍କ ଅବକାଶ ନୀତି ପରେ ରାଜବେଶ ହୋଇଥାଏ । ବିଭିନ୍ନ ପ୍ରକାର ରତ୍ନ ଅଳଙ୍କାର, ପୁଷ୍ପ ଅଳଙ୍କାର ଓ ମୂଲ୍ୟବାନ ପାଟବସ୍ତ୍ରରେ ସୁସଜ୍ଜିତ ହୋଇ ଠାକୁରମାନେ ରାଜରାଜେଶ୍ୱର ବେଶ ଧାରଣ କରିଥାନ୍ତି । ଏହି ବେଶ ସକାଳ ଧୂପ, ଭୋଗମଣ୍ଡପ ଇତ୍ୟାଦି ଶେଷ ହେବା ପରେ ସର୍ବସାଧାରଣଙ୍କର ସାହାଣମେଲା ଦର୍ଶନ ହୋଇଥାଏ । ଏହି ବେଶଟି ସୁନାବେଶ, ରାଜାବେଶରେ ଠାକୁର ସୁସଜ୍ଜିତ ହୋଇଥାନ୍ତି । ଶ୍ରୀଜଗନ୍ନାଥ ଗୋପାଳକୃଷ୍ଣ ଏବଂ ଦ୍ୱାରକା କୃଷ୍ଣ ଉଭୟଙ୍କର ସଂଯୋଗରେ ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଭାବ ପ୍ରକାଶ କରୁଥିବାରୁ କାର୍ତ୍ତିକ ମାସରେ ରାଧା ଦାମୋଦର ବେଶର ମାଧୁର୍ଯ୍ୟ ଓ ରାଜରାଜେଶ୍ୱର ବେଶରେ ଐଶ୍ୱର୍ଯ୍ୟ ଭାବ ପ୍ରକାଶ ପାଏ । ପୁଷ୍ପାଳକ ସେବକମାନେ ବିଭିନ୍ନ ରତ୍ନ ଅଳଙ୍କାର ଓ ପାଟବସ୍ତ୍ରରେ ଶ୍ରୀଜୀଉଙ୍କର ରାଜରାଜେଶ୍ୱର ବେଶ କରାନ୍ତି । ରାଜବେଶରେ ନିମ୍ନଲିଖିତ ସୁନା ଅଳଙ୍କାର ଲାଗି କରାଯାଏ । ଶ୍ରୀଭୁଜ - ୪, କୀରିଟ-୩, ଶ୍ରୀପୟର-୪, କର୍ଣ୍ଣ-୬, ଚନ୍ଦ୍ରସୂର୍ଯ୍ୟ-୬, ହଳମୂଷଳ-୨, ଚନ୍ଦ୍ରିକା-୨, ଘାଘଡ଼ା ମାଳ - ୧, ଶ୍ରୀମଣିପଦ୍ମ-୪, ତଡ଼ଗି-୨, ରୂପାଶଙ୍ଖ-୧, ଅଳକା-୩, ଚିତା-୨, ତ୍ରିଶାଖା-୨, କୁଣ୍ଡଳ-୪, ଚକ୍ର, ଶଙ୍ଖ-୧, ସେବତୀ ମାଳି-୩, ଓଡ଼ିଆଣୀ-୩, ତାବିଜମାଳି-୧, ବାଘନଖମାଳି-୧, ହରିଡ଼ା, କଜଳମାଳି ଓ ବାହାଡା ମାଳି ବ୍ୟବହୃତ ହୋଇଥାଏ ।
(ଶ୍ରୀ.ବେ.ର.- ପୃ. ୮୮) ।

**ରାଜନୀତି**-*ଦେ.ବି.*- ରାଜାଙ୍କର ନିତ୍ୟକର୍ମ, ରାଜାଙ୍କର ପ୍ରାତ୍ୟହିକ, ଦୈହିକ କର୍ମମାନ । ସାଧାରଣଙ୍କ ଦୈନନ୍ଦିନ କୃତ୍ୟ ପରି ରାଜାଙ୍କର କ୍ରିୟାମାନଙ୍କର ବିଶିଷ୍ଟ ନାମକରଣ ଅଛି ଓ ଆମ୍ଭମାନଙ୍କ ନୀତି ଅପେକ୍ଷା ରାଜନୀତି ମାନ ବେଶୀ ଆଡମ୍ବରପୂର୍ଣ୍ଣ । ରାଜନୀତି ବଢ଼ିବା ଅର୍ଥ ରାଜାଙ୍କର କୌଣସି ବିଶିଷ୍ଟ ଦୈନନ୍ଦିନ କାର୍ଯ୍ୟର ସମ୍ପାଦନ । ଏଣୁ ରାଜାଙ୍କ ଦୈନନ୍ଦିନ ଦୈହିକ କର୍ମମାନ ହିଁ ରାଜନୀତି । ଶ୍ରୀମନ୍ଦିରରେ ଲକ୍ଷ୍ମୀନାରାୟଣ ଏକାଦଶୀ ଦିନ ବଡ଼ସିଂହାର ବେଶରେ ଦଣ୍ଡଛତ୍ର ନୀତି, ପ୍ରସାଦଲାଗି, ଗଦିଫେଟା ଲାଗି ଆଦି ପରେ ଓ ରଥ ଉପରେ ମଧ ରାଜନୀତି ହୁଏ ।
(କ୍ରି.ବି.ଓ.ଶ.ସ. - ପୃ. ୮୧୨, ପୂ.ଓ.ଭା. - ପୃ. ୭୦୫୪, ଶ୍ରୀ.ସ୍ୱ. ୨ୟ- ପୃ. ୪୩) ।

**ରାଜପ୍ରସାଦ ନୀତି**-*ଦେ.ବି.*- ଅଣସର ଦ୍ୱାଦଶୀ ତିଥିରେ ଶ୍ରୀଜୀଉଙ୍କ ଶ୍ରୀଅଙ୍ଗରୁ କଢ଼ାଯାଉଥିବା ଚନ୍ଦନ, ଓଷୁଅ, ପାଟଡୋରି ଆଦି ପଦାର୍ଥ । ଏହିଦିନ ଦଇତାମାନେ ଶ୍ରୀଅଙ୍ଗରୁ ଉଲାଗି ହୋଇଥିବା କରାଳ ଚନ୍ଦନ ଓ ପାଟଡୋରି ରୂପା ଥାଳିରେ ଧରି ଶ୍ରୀନଅର ଯାତ୍ରା କରନ୍ତି । ଏହା ହେଉଛି ରାଜପ୍ରାସାଦ ନୀତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୩) ।

**ରାଜବେଶ**-*ଦେ.ବି.*- ସୁନାବେଶ- ଅନ୍ୟନାମ 'ତଡ଼ାଉ' ବେଶ । ଆଷାଢ଼ ଶୁକ୍ଳ ଏକାଦଶୀ (ରଥ ଉପରେ), ଦଶହରା, କାର୍ତ୍ତିକ ପୂର୍ଣ୍ଣିମା, ପୁଷ୍ୟାଭିଷେକରେ (ପୁଷପୂର୍ଣ୍ଣିମା) ମଧାହ୍ନଧୂପ ପରେ ଠାକୁରଙ୍କ ସୁନାବେଶ ଲାଗିହୁଏ । ଏହାକୁ ରାଜାବେଶ କୁହାଯାଏ । ବର୍ଷକୁ ଚାରିଥର ଶ୍ରୀଜୀଉ ରାଜବେଶ ହୋଇଥାନ୍ତି । ଏହି ବେଶରେ ଠାକୁରଙ୍କର ସକଳ ସୁନା ଅଳଙ୍କାର ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୫) ।

**ରାଜଭୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ସକାଳ ଧୂପରେ ହେଉଥିବା ଭୋଗ ସମ୍ଭାର । ଏହା ପ୍ରଥମ ସଙ୍ଖୁଡ଼ି ଭୋଗ । ଏଥିରେ ବିରି ପ୍ରସ୍ତୁତ ବଡ଼କାନ୍ତି, ମାଠପୁଳି, ହଂସକେଳି, କାକତୁଆ, ଝିଲି, ଅଦାପାଚେଡ଼ି, ଶାଗ, ଖେଚୁଡ଼ି, କାନ୍ଦିକା, ପିଠାପୁଳି, ବୁନ୍ଦିଆ, ଖିରୀ ଇତ୍ୟାଦି ଭୋଗ ଲାଗି ହୁଏ । ସିଂହାଚଳମ୍ ଶ୍ରୀବରାହ ନୃସିଂହ ମନ୍ଦିରରେ ମଧ୍ୟ ପ୍ରଥମ ଧୂପକୁ ରାଜଭୋଗ କୁହାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୮, ଓ.ସାଂ.ଶ. - ପୃ. ୩୧୯) ।

**ରାଜସେବକ**-*ଦେ.ବି.*- ପୁରୀ ଗଜପତି ମହାରାଜଙ୍କର ସେବାକାରୀ, ତଢ଼ଉକରଣ ଓ ଦେଉଳକରଣ ସେବକ ଏହି ଶ୍ରେଣୀର । (କ୍ଷେ.ସ.) ।

**ରାଜେନ୍ଦ୍ରାଭିଷେକ**-*ଦେ.ବି.*- ଶ୍ରୀମନ୍ଦିରରେ ଜ୍ୟେଷ୍ଠ ଶୁକ୍ଳ ଦଶମୀ ଦିନ ସନ୍ଧ୍ୟା ଧୂପ ପରେ ଶ୍ରୀମଦନମୋହନ ଆଜ୍ଞାମାଳ ପାଇ ଭୋଗ ପରେ ବାଟଗଣେଶଙ୍କଠାରେ ପଡ଼ିଥିବା ଖଟ ଉପରେ ବିଜେ ହୁଅନ୍ତି । ଏହା ପରେ ଭିତର ଶୋଧ ହୋଇ ଜୟବିଜୟ ଦ୍ୱାର ବନ୍ଦ ହୋଇ ଜଗମୋହନ ଅନ୍ଧାର ଭିତରେ ଆଲଟ ଲାଗି ହୁଏ । ଡଗର ଆସି ଶ୍ରୀମଦନମୋହନଙ୍କ ଠାରେ ରକ୍ମିଣୀ ବିବାହ ପ୍ରସ୍ତାବ ଜଣାନ୍ତି ଓ ସ୍ୱୟଂ ମହାପ୍ରଭୁ ରାଜେନ୍ଦ୍ରାଭିଷେକ ହେବା ନିମନ୍ତେ ମହାଜନେ ଠାକୁରଙ୍କୁ ହାତରେ ବିଜେ କରାଇ ବଟମୂଳେ ଥିବା ରଥରେ ସ୍ଥାପନ କରାନ୍ତି । ବିମାନବଡୁ ଘଣ୍ଟ, ଛତା ଓ କାହାଳି ସହ ବଡ଼ଦେଉଳକୁ ବେଢ଼ାଏ ବୁଲି ବଟମୂଳେ ରଖନ୍ତି । କୁତକୌତୁକ ଋଷି ଦଣ୍ଡ ପ୍ରଣାମ କରି ଦୟଣାମାଳି ଦେଇଥିବା ଶୁକ୍ଳଫୁଲ ପାଳିଆ ଖୁଣ୍ଟିଆଠାରୁ ନେଇ ଆଞ୍ଜୁଳି କରି ରାସ୍ତାଯାକ ଥରକୁ ଥର ଦଣ୍ଡ ପ୍ରଣାମ କରି ତାହାକୁ ଦକ୍ଷିଣିଘରକୁ ନିଅନ୍ତି । ଖଟ ଉପରେ ବିଜେ କରିବା ଉତ୍ତାରେ ପଞ୍ଚାମୃତରେ ମହାସ୍ନାନ ହୁଏ ଓ ଫୁଲ ଚନ୍ଦନ ଲାଗି ବେଶ ହୋଇଥାଏ । ଶୀତଳ ଭୋଗ ମଣୋହି ହୋଇ କ୍ଷୀରି ଅମାଲୁ ଭୋଗ ହୋଇ ବନ୍ଦାପନା ପରେ ଦକ୍ଷିଣି ଘରକୁ ବିଜେ କରନ୍ତି । ଅଭିଷେକ ହେବା ସମୟରେ ଛତିଚେକା ହୋଇଥାଏ । ଘଣ୍ଟ କାହାଳି ମହୁରୀ ବାଜେ ବା ଅଭିଷେକ ସରିଲା ପରେ ଭିତରେ ପଣାଭୋଗ ଓ ଅନ୍ୟାନ୍ୟ ନୀତି ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୨୨) ।

**ରାତ୍ରଚାପ**-*ଦେ.ବି.*- ଶ୍ରୀଠାକୁରଙ୍କର ଚନ୍ଦନ ଯାତ୍ରାରେ ରାତ୍ର ସମୟରେ ବଡ଼ଚାପରେ ରାମକୃଷ୍ଣ ଓ ପଞ୍ଚପାଣ୍ଡବ ଏବଂ ପଛ ଚାପରେ ମଦନମୋହନ, ଲକ୍ଷ୍ମୀ ଓ ସରସ୍ୱତୀ ବିଜେ ହୋଇ ନରେନ୍ଦ୍ର ପୁଷ୍କରିଣୀରେ ତିନିଘେରା ଜଳକ୍ରୀଡ଼ା କରି ଶ୍ରୀମନ୍ଦିର ବାହୁଡ଼ା ବିଜେ କରନ୍ତି । ଏହା ରାତ୍ରଚାପ ନାମରେ କଥିତ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୯) ।

**ରାଧାକୃଷ୍ଣ**-*ଦେ.ବି.*- ରାଧା ଓ କୃଷ୍ଣଙ୍କର ଏକତ୍ର ସନ୍ନିବିଷ୍ଟ ଯୁଗଳ ରୂପ । ଶ୍ରୀମନ୍ଦିରର ଭିତର ବେଢ଼ାରେ ଏହି ମନ୍ଦିର ଅବସ୍ଥିତ । ସେବକମାନେ ଏଠାରେ ପୂଜା କରନ୍ତି । କୋଠ ଭୋଗ ମଧ୍ୟ ଏଥି ନିମନ୍ତେ ଖଞ୍ଜା ଅଛି । ଶ୍ରୀମନ୍ଦିର ଭିତର ବେଢ଼ାରେ ଭୋଗ ମଣ୍ଡପ ଦ୍ୱାର ପାର୍ଶ୍ୱ ଦେଇ ଯିବା ବାଟରେ ବାମପାର୍ଶ୍ୱରେ ଏକ ମନ୍ଦିରରେ ରାଧାକୃଷ୍ଣ ବିଗ୍ରହ ପୂଜିତ । ଏତଦ୍‌ବ୍ୟତୀତ ବେଢ଼ା ଭିତରେ ଅନେକ ରାଧାକୃଷ୍ଣ ବିଗ୍ରହ ବିରାଜିତ ।

୨. ଉପରୋକ୍ତ ମନ୍ଦିରକୁ ଲାଗି ଅନ୍ୟ ଏକ ମନ୍ଦିରରେ ରାଧାକୃଷ୍ଣ ବିଗ୍ରହ ବିରାଜିତ ।

୩. ଶ୍ରୀମନ୍ଦିର ଗାରଦାଠାରେ ରାଧାକୃଷ୍ଣ ବିଗ୍ରହ ପୂଜିତ ।

୪. ଶ୍ରୀମନ୍ଦିର ଜଗମୋହନରେ କୃଷ୍ଣମୂର୍ତ୍ତି ଅବସ୍ଥିତ ।

୫. ଭିତର ବେଢ଼ାର ସୂର୍ଯ୍ୟ ମନ୍ଦିର ପାର୍ଶ୍ୱରେ ବର୍ଦ୍ଧମାନ ମହାରାଜାଙ୍କ ଦେଉଳରେ ରାଧାବଲ୍ଲଭ ଠାକୁର ପୂଜିତ ।

୬. ସରସ୍ୱତୀ ମନ୍ଦିର ନିକଟରେ ଥିବା କ୍ଷୀରଚୋରା ଗୋପୀନାଥ ମନ୍ଦିରରେ ଗୋପୀନାଥ ଓ ଶ୍ରୀରାଧା ବିରାଜିତ ।

୭. ଉପରୋକ୍ତ ଗୋପୀନାଥ ମନ୍ଦିର ପାର୍ଶ୍ୱରେ ଏକ ସରଘରେ ଗୋପୀନାଥ ବିଗ୍ରହ ଅବସ୍ଥିତ ।

୮. ଭିତର ବେଢ଼ାସ୍ଥ ଗଣେଶ ମନ୍ଦିର ପାର୍ଶ୍ୱସ୍ଥ ସାକ୍ଷୀଗୋପାଳ ମନ୍ଦିରରେ ଗୋପାଳ ଓ ରାଧା ମୂର୍ତ୍ତି ପୂଜିତ ।

୯. ବିମଳା ମନ୍ଦିର ପାର୍ଶ୍ୱରେ ବେଣୁ ମାଧବ ମନ୍ଦିରରେ ରାଧାକୃଷ୍ଣ ବିଗ୍ରହ ରହିଛି ।

୧୦. ପଞ୍ଚପାଣ୍ଡବ ମନ୍ଦିର ପାଖରେ ବଟକୃଷ୍ଣ ଠାକୁର ଅବସ୍ଥିତ ।

୧୧. ବଟ ପତିତପାବନ ମନ୍ଦିର ପାଖରେ ଏକ ରାଧାକୃଷ୍ଣ ମନ୍ଦିର ରହିଛି ।

୧୨. ବଟ ମଙ୍ଗଳା ପାଖରେ ବଟ କୃଷ୍ଣ ମନ୍ଦିରରେ ବଟକୃଷ୍ଣ ଠାକୁର ବିରାଜିତ ।

୧୩. ମେରଦା ରୋଷ ପାଖରେ କୃଷ୍ଣ ମୂର୍ତ୍ତି ମନ୍ଦିର ବା ଭିତର ବେଢ଼ାସ୍ଥ ବଟ କୃଷ୍ଣ ଠାକୁର ପୂଜିତ ।

୧୪. ସତ୍ୟନାରାୟଣ ମନ୍ଦିରର ବାମ ପାର୍ଶ୍ୱରେ ରଧାକୃଷ୍ଣ ବା ରାଧାରମଣ ଠାକୁରଙ୍କ ମନ୍ଦିର ।

୧୫. ପ୍ରତିହାରୀ ନିଯୋଗର ଘର/କାର୍ଯ୍ୟାଳୟ ମଧରେ ଶ୍ୟାମରାଇ ଠାକୁର ବିରାଜିତ ।

୧୬. ବାହାର ବେଢ଼ାର ବାଇଶି ପାହାଚ ଉପର ପାର୍ଶ୍ୱରେ ରାଧାବଲ୍ଲଭ ମନ୍ଦିର ।

୧୭. ଉତ୍ତର ଦ୍ୱାର କୋଇଲି ବୈକୁଣ୍ଠକୁ ଯିବା ରାସ୍ତାରେ ବର୍ଦ୍ଧମାନ ରାଧାକୃଷ୍ଣ ମନ୍ଦିର ।

୧୮. ସିଂହଦ୍ୱାର ଗୁମୁଟର ବାମ ପାର୍ଶ୍ୱରେ ଫତେହେନୁମାନଙ୍କ ପାର୍ଶ୍ୱରେ ରାଧାକୃଷ୍ଣ ବିଗ୍ରହ ପୂଜିତ ।

୧୯. ଶ୍ରୀମନ୍ଦିର ଜଗମୋହନରେ କେତେକ ରାଧାକୃଷ୍ଣ ଚିତ୍ର ପ୍ରତିମା ରହିଅଛି ।

(ଶ୍ରୀ.ବେ.ଦେ.- ପୃ. ୧୩୨) ।

**ରାଧାକୃଷ୍ଣ ମନ୍ଦିର ସରଘର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ଏହି ମନ୍ଦିରରେ ଠାକୁରଙ୍କର ଶୁଖିଲା ମହାପ୍ରସାଦ ବିକ୍ରୟ ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୨୪୫) ।

**ରାଧାଦାମୋଦର ବେଶ**-*ଦେ.ବି.*- ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଠାକୁରଙ୍କୁ ରାଧା ଦାମୋଦର ବେଶ ଲାଗି ହୁଏ । କାର୍ତ୍ତିକ ମାସରେ ବିଷ୍ଣୁଙ୍କର ନାମ ଦାମୋଦର ହୋଇଥିବାରୁ ବେଶର ଏପରି ନାମକରଣ କରାଯାଇଅଛି । କାର୍ତ୍ତିକ ମାସରେ ରାତ୍ର ଦୁଇଘଡ଼ି ଥାଇ ଆଳତି ଅବକାଶ ସରି ତା' ପରେ ରାଧାଦାମୋଦର ବେଶ ହୋଇ ଠାକୁର ବାଲଧୂପ ପର୍ଯ୍ୟନ୍ତ ରହନ୍ତି । ଏହି ଦାମୋଦର ବେଶ ବା ରାଧାଦାମୋଦର ପୂଜାର ମୂଳରେ ହେଉଛନ୍ତି ଗୋପୀମାନେ କାର୍ତ୍ତିକ ବ୍ରତ ଆଚରଣ କରି ଯମୁନା କୂଳରେ ରାଧାଦାମୋଦରଙ୍କୁ ପୂଜା କରୁଥିଲେ ।

ଏହି ବେଶରେ ଲାଗିହେଉଥିବା ସୁବର୍ଣ୍ଣ ଅଳଙ୍କାରମାନ ହେଲା - ସୁବର୍ଣ୍ଣ ଘାଗଡ଼ା-ତିନି, କଟି ଓଡ଼ିଆଣୀ-ତିନି, ଚନ୍ଦ୍ରସୂର୍ଯ୍ୟ (ମସ୍ତକରେ)-ତିନି, ଚନ୍ଦ୍ରିକା (ତ୍ରିମୁଣ୍ଡି ଚୂଳର ଅଗ୍ରଭାଗରେ)-ଦୁଇ, ତିଳକ-ଦୁଇ, ନଳୀଭୁଜ ହସ୍ତରେ-ଚାରି, କୁଣ୍ଡଳ-ଚାରି, ତଡ଼ଗି-ଦୁଇ ।

ଏହି ବେଶରେ ଫୁଲ ନିର୍ମିତ ଗୁଣା, ଚିତା ଓ ଅଧରମାଳା ଲାଗେ । ଫୁଲଠାରୁ ଅଧିକ ସୁବର୍ଣ୍ଣ ଅଳଙ୍କାର ଲାଗେ । ହସ୍ତରେ ନଳୀଭୁଜ ପିନ୍ଧାଇ ଦିଆଯାଏ । ମହାପ୍ରଭୁଙ୍କର ଚୂଳରେ ବାଉଁଶ ପାତିଆ ଓ କନାରେ ନିର୍ମିତ ଚୂଳ ତ୍ରିମୁଣ୍ଡି ଉପରେ ରହିଥାଏ । ଚୂଳର ଅଗ୍ରଭାଗରେ ଚନ୍ଦ୍ରିକା ଶୋଭାପାଏ । କର୍ଣ୍ଣଦେଶରେ କୁଣ୍ଡଳ, କଟିଦେଶରେ ଓଡ଼ିଆଣୀ, ମସ୍ତକରେ ତଡ଼ଗି ସହିତ ବିଭିନ୍ନ ପ୍ରକାର ପୁଷ୍ପ ଅଳଙ୍କାର, ସୁନା ଅଳଙ୍କାର ସହ ପାଟଶାଢ଼ୀ, ଫୁଟା ଶିରୀକପଡ଼ା, ପହରଣ, ବଳା, ଅଧରବଳା ଓ ଉତ୍ତରୀୟ ଲାଗି ହୁଏ । ଏହି ସମୟରେ ଏକ ଅଧିକ ଭୋଗ, ବାଲଭୋଗ ଭୋଗ ହୁଏ ।

କାର୍ତ୍ତିକ ପଞ୍ଚୁକ ସମୟରେ ରାଧାଦାମୋଦର ବେଶ ନ ହୋଇ ଅନ୍ୟ ପାଞ୍ଚଗୋଟି ବେଶ ହୁଏ । ଯଥା- ଲକ୍ଷ୍ମୀ ନାରାୟଣ, ବାଙ୍କଚୂଳ, ତ୍ରିବିକ୍ରମ, ଲକ୍ଷ୍ମୀ ନୃସିଂହ ଓ ରାଜରାଜେଶ୍ୱର । ଯେଉଁ ବର୍ଷ କାର୍ତ୍ତିକ ପଞ୍ଚୁକ ପାଞ୍ଚଦିନ ନ ହୋଇ ଛ'ଦିନ ହୁଏ ସେହି ପୂର୍ଣ୍ଣିମା ଦିନ ନାଗାର୍ଜ୍ଜୁନ ବେଶ ହୁଏ ।

ଜଗନ୍ନାଥଙ୍କର ମୁଖ କଳା ହେତୁ ସେ କୃଷ୍ଣ ଓ ତଳ ଭାଗଟି ଧଳା ହେତୁ ତାହା ରାଧା ଭାବରେ

ଚିହ୍ନିତ । ଏଣୁ ଜଗନ୍ନାଥଙ୍କର ରାଧା ଦାମୋଦର ବେଶ ଅନୁଷ୍ଠିତ ହେଉଛି । ରାଧାଦାମୋଦର ବେଶ କେବେଠାରୁ ଅନୁଷ୍ଠିତ ହେଲା ତାହା କହିବା କଷ୍ଟକର । ନିମ୍ବାର୍କାଚାର୍ଯ୍ୟ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ଉପାସକ ଥିଲେ । ବିଷ୍ଣୁ ସହସ୍ର ନାମ ଅନୁସାରେ କୃଷ୍ଣଙ୍କୁ ଦଉଡ଼ିରେ ଯଶୋଦା ବାନ୍ଧି ଦେଇଥିଲେ ବୋଲି ତାଙ୍କର ନାମ ଦାମୋଦର । ରାଧାଦାମୋଦର ବେଶ ରାଧାକୃଷ୍ଣଙ୍କର ଅପୂର୍ବ ଲୀଳାର ପରିଚୟ ଦିଏ । ଏହି ବେଶ ବୋଧହୁଏ ନିମ୍ବାର୍କାଚାର୍ଯ୍ୟରୁ ଆରମ୍ଭ ହୋଇଥାଇପାରେ । ଏପରି କି ନିମ୍ବାର୍କାଚାର୍ଯ୍ୟଙ୍କ ମଠରେ ରହୁଥିବା ଜୟଦେବ ମଧ ରାଇଦାମୋଦର ଯୁଗଳ ମୂର୍ତ୍ତିର ଉପାସକ ଥିଲେ ।

କେତେକ ନିମ୍ବାର୍କାଚାର୍ଯ୍ୟ ଉପରେ ଗୁରୁତ୍ୱାରୋପ ନ କରି ପ୍ରତାପରୁଦ୍ରଙ୍କ ସମୟରେ ଶ୍ରୀଚୈତନ୍ୟଙ୍କ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି । ଚୈତନ୍ୟ ରାଗାନୁଗା ଭକ୍ତିର ଉପାସକ ଥିବାରୁ ଶ୍ରୀମନ୍ଦିରରେ ରାଗାନୁଗା ଭକ୍ତି ପରିବର୍ତ୍ତେ ବୈଧି ଭକ୍ତିର ପ୍ରଚଳନ ଥିବାରୁ ଜଗନ୍ନାଥ ରାଧାକୃଷ୍ଣଙ୍କର ମିଳିତ ତନୁ ଭାବରେ ଏହି ବେଶ ହୋଇଥିବେ ଏବଂ ଏହା ଜୟଦେବଙ୍କ ପ୍ରେରଣାରେ ରାଜାଙ୍କ ଦ୍ୱାରା କରାଯାଇଥିବାର କଥା ଅଧିକ ଯୁକ୍ତିଯୁକ୍ତ ମନେହୁଏ ।

(ଶ୍ରୀ.ବେ.ର. - ପୃ. ୬୧, ଶ୍ରୀ.ସ୍ୱ. - ପୃ. ୧୦୦) ।

**ରାଧାବଲ୍ଲଭ ମଠ**-*ଦେ.ବି.*- ପୁରୀ ଶ୍ରୀମନ୍ଦିର ପୂର୍ବଦ୍ୱାର ସମ୍ମୁଖସ୍ଥ ବୈଷ୍ଣବ ମଠ । ଏହି ମଠରେ ଥିବା ବୈଷ୍ଣବ ସମ୍ପ୍ରଦାୟ ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କ ସହ ବିବାହିତା ସ୍ତ୍ରୀ ରୂପେ ଗ୍ରହଣ କରିଥାଆନ୍ତି । ଏମାନେ ନିମ୍ବାର୍କ ସମ୍ପ୍ରଦାୟର ଗୋଟିଏ ଶାଖା । ଶ୍ରୀମନ୍ଦିରର ଶ୍ରୀଠାକୁରଙ୍କର ନୀତି, କାନ୍ତି ଓ ପୂଜା ପାର୍ବଣରେ ସକ୍ରିୟ ଅଂଶ ଗ୍ରହଣ କରିଥାନ୍ତି । (ଓ.ସାଂ.ଶ. - ପୃ. ୩୨୦) ।

**ରାଧାଷ୍ଟମୀ**-*ଦେ.ବି.*- ଶ୍ରୀମନ୍ଦିରରେ ଭାଦ୍ରବ ଶୁକ୍ଳ ଅଷ୍ଟମୀ ଦିନ ଏହି ନୀତି ହୁଏ । ଏହି ଦିନ ସକାଳ ଧୂପ ପରେ ଲକ୍ଷ୍ମୀ ଠାକୁରାଣୀ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ସାତପାହାଚ ଦ୍ୱାର ପାଶେ ଥିବା ପାଲିଙ୍କିରେ ଯାଇ ଲକ୍ଷ୍ମୀ ଦେଉଳର ଜଗମୋହନରେ ପଡ଼ିଥିବା ଖଟ ଉପରେ ବିଜେ ହୋଇ ଝୁଲଣ ମଣ୍ଡପକୁ ଯାଆନ୍ତି । ସେଠାରେ ସୁନା ହରଡ଼ମାଳ, କମରପଟା ଓ ଦୟଣାମାଳି ଦେଇଥିବା ଚୂଳ ଲାଗି ହୋଇ ବଡ଼ଦେଉଳ ବେଢ଼ାଏ ବୁଲି ଶ୍ରୀ ଜମ୍ୱେଶ୍ୱର ଜହ୍ନିମୁଣ୍ଡିଆ ଉପରେ ବିଜେ କରନ୍ତି । ଏଠାରେ ପ୍ରସାଦଲାଗି ହୋଇ ଶୀତଳ ଭୋଗ ବନ୍ଦାପନା ହୋଇ ସିଂହାସନକୁ ବାହୁଡ଼ା ବିଜେ କରନ୍ତି । ପାଳିଆ ମେକାପ ସିଂହାସନ ପୋଛା ସାରିଲା ପରେ ଚାରିବାଡ଼ରେ ମହାସ୍ନାନ ବଢ଼େ ଓ ପାଳିଆ ପୁଷ୍ପାଳକ ଲକ୍ଷ୍ମୀ ସରସ୍ୱତୀଙ୍କୁ ଖଟ ଶେଯ ଘରୁ ନେଇ ସନ୍ଧ୍ୟା ଆଳତି ବେଶ କରାଇ ଆଳତି କରନ୍ତି । ସନ୍ଧ୍ୟା ପରେ ଚାରିଜଣ ପଣ୍ଡା ପୂଜାରେ ବସନ୍ତି ଓ ସୁଦର୍ଶନଙ୍କ ବାଡ଼ରେ ପ୍ରସାଦ ଲାଗି ହୁଏ । ଭୋଗ ପରେ ବନ୍ଦାପନା ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୯୪) ।

**ରାବଣବଧ**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ନୀତି ବୈଶାଖ କୃଷ୍ଣପକ୍ଷ ଦ୍ୱିତୀୟା ତିଥିରେ ହୁଏ । ଏ ଦିନ ସନ୍ଧ୍ୟା ଧୂପ ପୂଜା ବସିଥିବା ବେଳେ ବାଲିସାହିର ସାହିଯାତ (ଜଣେ ରାବଣ ବେଶ ହୋଇ) ଆସି ଜଗମୋହନ କାଠ ପାଖରେ ଠିଆ ହୁଏ ଓ ସିଂହାସନ ଛୁଆଁ ଆଜ୍ଞାମାଳ ପାଇ ସାହି ବୁଲିବା ନିମନ୍ତେ ଯାଏ । ସନ୍ଧ୍ୟାଧୂପ ବଢ଼ିବା ପରେ ରାମଲକ୍ଷ୍ମଣ ଦୁଇ ମୂର୍ତ୍ତି ଭିତର ସିଂହାସନକୁ ବିଜେ କରନ୍ତି । ଆଜ୍ଞାମାଳ ପାଇ ବଟମୂଳେ ଥିବା ପାଲିଙ୍କିରେ ବିଜେ ହୋଇ ଜଗନ୍ନାଥବଲ୍ଲଭ ମଠକୁ ଯାଆନ୍ତି । ଏଠାରେ ବାଲିସାହିଯାତ ଲୋକେ ରାବଣ ବଧ ପ୍ରସ୍ତାବ କଲା ପରେ ବାହୁଡ଼ା ବିଜେ ହୋଇ ଦିଅଁ ଦକ୍ଷିଣି ଘରକୁ ବିଜେ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୬) ।

**ରାମଚନ୍ଦ୍ରଦେବ ୨ୟ**-*ଦେ.ବି.*- ଏହି ରାଜା ଗୁଣ୍ଡିଚା ଘର ଜଗମୋହନ ନିର୍ମାଣ କରିଥିଲେ । ଏ ରାଜା ନବାବଙ୍କ କନ୍ୟାକୁ ବିବାହ କରି ଜାତି ଭ୍ରଷ୍ଟ ହୋଇଥିଲେ । ଏଣୁ ସିଂହଦ୍ୱାର ଗୁମୁଟରେ

ପତିତପାବନଙ୍କୁ ପ୍ରତିଷ୍ଠା କରାଗଲା । କାରଣ ରାଜା ମନ୍ଦିର ପ୍ରବେଶ ନ କରି ବାହାରେ ପତିତପାବନଙ୍କୁ ଦର୍ଶନ କରୁଥିଲେ ।
(ଶ୍ରୀ.ଜି. - ପୃ. ୧୦୪) ।

**ରାମରସ**-*ଦେ.ବି.*- ରାମରସ କହିଲେ ଲୁଣକୁ ବୁଝାଏ ।
(ଶ୍ରୀ.ଶ. - ପୃ. ୧୫୫) ।

**ରାମାଭିଷେକ** -*ଦେ.ବି.*- ଶ୍ରୀରାମ ନବମୀ ନୀତିରେ ଯେଉଁଦିନ ପୁଷ୍ୟା ନକ୍ଷତ୍ର ଥାଇ ତାରା ଶୁଦ୍ଧି ହୁଏ, ସେହିଦିନ ଶ୍ରୀରାମ ନବମୀ ଅଭିଷେକ ନୀତି ଅନୁଷ୍ଠିତ ହୁଏ । ଏହିଦିନ ସନ୍ଧ୍ୟା ଆଳତି ଓ ଦକ୍ଷିଣି ଘର ଭୋଗ ପରେ ରାମ, ଲକ୍ଷ୍ମଣ, ସୀତା ଓ ହନୁମାନ ଭିତରକୁ ବିଜେ ହୋଇ ଆଜ୍ଞାମାଳ ପାଇ ବଟମୂଳେ ଥିବା ରଥରେ ବିଜେ କରନ୍ତି । ବିମାନବଡୁ ମାନେ ନିଃଶବ୍ଦରେ ରଥ ନନ୍ଦିଗ୍ରାମଠାକୁ (ଜଗନ୍ନାଥବଲ୍ଲଭ ମଠକୁ) ବିଜେ କରାନ୍ତି । ଗୌଡ଼ବାଡ଼ ସାହିରୁ ଦୁଇଜଣ ବ୍ୟକ୍ତି ଭରତ ଶତ୍ରୁଘ୍ନ ବେଶ ହୋଇ ମନ୍ଦିରକୁ ଆସନ୍ତି ଓ ମନ୍ଦିର ଭଣ୍ଡାରରୁ ପାଦୁକା ନେଇ ଘଣ୍ଟା, ଛତା କାହାଳି ସହ ଅଭିଷେକ ହେବା ନିମନ୍ତେ ନନ୍ଦିଗ୍ରାମଠାକୁ ବିଜେ କରନ୍ତି ଓ ଶ୍ରୀମନ୍ଦିରକୁ ଫେରି ଲକ୍ଷ୍ମୀମନ୍ଦିର ଜଗମୋହନ ଖଟ ଉପରେ ବିଜେ କରି ଅଭିଷେକ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୬-୧୧୭) ।

**ରାସ**-*ଦେ.ବି.*- କୋଳାହଳ । ମଣ୍ଡଳାକାର ପରିବେଷ୍ଟିତ ନାରୀ ପୁରୁଷଙ୍କ ସମବେତ ନୃତ୍ୟ । ଗୋପନାରୀ ଗହଣରେ ରାଧାକୃଷ୍ଣଙ୍କ ନୃତ୍ୟ ବିଳାସ । ଶ୍ରୀକୃଷ୍ଣ ଶ୍ରେଷ୍ଠ ପୁରୁଷ, ରାଧା ପ୍ରକୃତି ସ୍ୱରୂପିଣୀ । ଷୋଳସହସ୍ର ଗୋପାଙ୍ଗନା ବିଶିଷ୍ଟ ଭକ୍ତଜନଙ୍କ ପ୍ରତୀକ । ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ବୃନ୍ଦାବନରେ ଶରତ ପୂର୍ଣ୍ଣିମା (କାର୍ତ୍ତିକ ପୂର୍ଣ୍ଣିମା)ରେ ଯେଉଁ ରାସ କରିଥିଲେ ତାହାକୁ ଶରତ ରାସ ଓ ବସନ୍ତ ଋତୁ (ଦୋଳପୂର୍ଣ୍ଣିମା)ରେ ଗୋପାଳମାନଙ୍କ ସହିତ ଯେଉଁ ରାସ କରିଥିଲେ ତାହାକୁ ବସନ୍ତ ରାସ କୁହାଯାଏ । ଏହା ବ୍ୟତୀତ ତାତ୍ତ୍ୱିକ ବୈଷ୍ଣବମାନେ ଏକ ନିତ୍ୟ ରାସସ୍ଥଳୀରେ ପରିକଳ୍ପନା କରିଛନ୍ତି ଯେଉଁଠାରେ ପ୍ରତିଟି ମୁହୂର୍ତ୍ତରେ ନିତ୍ୟ ରାଧା ନିତ୍ୟ କୃଷ୍ଣଙ୍କ କ୍ରୀଡ଼ାରତ ଅଛନ୍ତି । ଉତ୍କଳର ସନ୍ଥ କବିମାନେ ଶ୍ରୀକ୍ଷେତ୍ରକୁ ନିତ୍ୟ ରାସସ୍ଥଳ ରୂପେ ପରିକଳ୍ପନା କରିଛନ୍ତି ।
(ଓ.ସାଂ.ଶ. - ପୃ. ୩୨୨-୩୨୩) ।

**ରାସପୂର୍ଣ୍ଣିମା**-*ସଂ.ବି.*- କାର୍ତ୍ତିକ ପୂର୍ଣ୍ଣିମାକୁ ରାସପୂର୍ଣ୍ଣିମା କୁହାଯାଏ । ଏ ଦିନ ଶ୍ରୀମନ୍ଦିରରେ ଦୋଳଗୋବିନ୍ଦାଭିଷେକ ନିମନ୍ତେ ସନ୍ଧ୍ୟାଧୂପ ବଢ଼ିଲେ ଦକ୍ଷିଣିଘରୁ ଶ୍ରୀଦୋଳଗୋବିନ୍ଦ ଭିତର ସିଂହାସନକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - - ପୃ. ୧୦୧) ।

**ରାସବେଦୀ**-*ଦେ.ବି.*- ଗୁଣ୍ଡିଚାଘରକୁ ହିଁ ରାସବେଦୀ ବୋଲି କୁହାଯାଏ ।
(ଶ୍ରୀ.ପ.ସେ.ପୁ. - ପୃ. ୭୫) ।

**ରାହୁରେଖା**-*ଦେ.ବି.*- ଏକ ଅଳଙ୍କାର ବିଶେଷ । ସୁବର୍ଣ୍ଣ ଅଳଙ୍କାର । ଶ୍ରୀଠାକୁରଙ୍କ ଶ୍ରୀମୁଖକୁ ଘେରି ସୁନା ପାଟିଆର ଧାର ଭଳି ଏକ ଆଭୂଷଣ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୮) ।

**ରୁନ୍ଧା**-*ଦେ.ବି.*- ଦୃଢ଼ଭାବରେ ବାନ୍ଧିବା । ଶ୍ରୀମନ୍ଦିରରେ ଠାକୁରମାନେ ରତ୍ନସିଂହାସନରେ, ସ୍ନାନମଣ୍ଡପରେ, ରଥ ଉପରେ ବସିବା ସମୟରେ ରଥରେ ଦୃଢ଼ ଭାବରେ ବନ୍ଧା ହେବାକୁ ରୁନ୍ଧା କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୬୯) ।

**ରୁନ୍ଧା ଫିଟିବା**-*ଦେ.ବି.*- ଠାକୁରଙ୍କ ଶ୍ରୀଅଙ୍ଗ ସହିତ ରଥକୁ ପାଟକନା ଦ୍ୱାରା ବନ୍ଧାଯାଇଥିବାରୁ ଏହି ନୀତିରେ ତାହା ଫିଟାଯାଏ । ରଥଯାତ୍ରା ଦିନ ପାଳିଆ ଖୁଣ୍ଟିଆ ମଣିମା ଡାକ ପକାଇ ଦଇତାପତିମାନେ ରୁନ୍ଧା ଫିଟାନ୍ତି । ତା'ପରେ ପହଣ୍ଡି ବିଜେ ଆରମ୍ଭ ହୁଏ । ଆଗରେ ସୁଦର୍ଶନ ବିଜେ ହୁଅନ୍ତି । ଜଗମୋହନ ସାତପାହାଚରେ ପହଞ୍ଚିଲେ ବଡ଼ଠାକୁରଙ୍କ ରୁନ୍ଧା ଫିଟେ । ବଡ଼ଠାକୁର ସାତପାହାଚ ଦ୍ୱାର ଡେଇଁଲେ ସୁଭଦ୍ରାଙ୍କ ରୁନ୍ଧା ଫିଟେ, ଶ୍ରୀସୁଭଦ୍ରା ସାତପାହାଚ ଦ୍ୱାର ଡେଇଁଲେ ଶ୍ରୀଜଗନ୍ନାଥଙ୍କର ରୁନ୍ଧା ଫିଟେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୯) ।

**ରୂପକାରସେବା**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ରଥ ନିମନ୍ତେ ମନ୍ଦିରର ବିଭିନ୍ନ ନୀତି ଓ ବେଶ ନିମନ୍ତେ କାଠର ବିଭିନ୍ନ ମୂର୍ତ୍ତି ତିଆରି କରୁଥିବା ସେବକ । ନବକଳେବର ସମୟରେ ସାରଥି, ସଖୀ, ପାର୍ଶ୍ୱଦେବତା, ଘୋଡ଼ା, ଓଲଟ ଶୁଆ, ଦଧିନଉତିର ଅଁଳାଶ୍ରୀ ଆଦି ନୂଆ କରି ଗଢ଼ନ୍ତି । ପିତଳ, ଅଷ୍ଟଧାତୁ, ସୁନାମୂର୍ତ୍ତି ଢାଳିବା କାର୍ଯ୍ୟ ମଧ୍ୟ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୪୦) ।

**ରେକାବି**-*ଦେ.ବି.*- ଶ୍ରୀଜୀଉଙ୍କ ପୂଜାରେ ପିଠଉ ଆଳତିରେ ଲାଗୁଥିବା ବଟା ବା ଥାଳିଆ ।
(ପୂ.ବୋ. - ପୃ. ୩୦୨) ।

**ରେଖ ସୁନ୍ଦରୀ**-*ଦେ.ବି.*- ଶ୍ରୀମନ୍ଦିରରେ ବ୍ୟକ୍ତିଗତ ସେବା ନିମନ୍ତେ ବ୍ୟକ୍ତିବିଶେଷଙ୍କୁ ଲେଙ୍କା ସେବକଙ୍କ ମାଧ୍ୟମରେ ପ୍ରଦତ୍ତ ଅଙ୍ଗଲାଗି କନାବସ୍ତ୍ର ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୧) ।

**ରୋକଗାରି**-*ଦେ.ବି.*- ଯାତ୍ରୀମାନଙ୍କୁ ଭାରତର ବିଭିନ୍ନ ପ୍ରାନ୍ତରୁ ଆଣି ପୁରୀ ଯାତ୍ରୀପଣ୍ଡାଙ୍କୁ ଯୋଗାଇବା ବ୍ୟକ୍ତି ବିଶେଷ ।
(ଶ୍ରୀ.ଶ. - ପୃ. ୧୫୫) ।

**ରୋଷ**-*ଦେ.ବି.*- ଦେବତାଙ୍କ ଅନ୍ନ ବ୍ୟଞ୍ଜନ ମିଷ୍ଟାନ୍ନାଦି ଭୋଗ ତଥା ମନ୍ଦିର ସଂଲଗ୍ନ ଯେଉଁଘରେ ପାକ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଏ । ଶ୍ରୀଲକ୍ଷ୍ମୀଙ୍କ ରୋଷଘର ।
(ଶ୍ରୀ.ସ୍ୱ. - ପୃ. ୨୬୧-୬୮) ।

**ରୋଷଧୋପଖାଳିଆ**-*ଦେ.ବି.*- ଶ୍ରୀମନ୍ଦିର ପରମ୍ପରାରେ ଧୋ-ପଖାଳ ଦୈନିକ ବଡ଼ସିଂହାର ଧୂପ ସରିବା ପରେ ରୋଷଘରମାନ ଓଳାଇ ସଫା କରି ଶଙ୍ଖୁଡ଼ିସବୁ ବାହାର କରି ରୋଷ ମୁହଁ ଅଗଣାରେ ପକାଇଦେବା । କାର୍ତ୍ତିକ ମାସ ପହିଲି ଧୂପରେ କୋଠଭୋଗ ରୋଷ କେବଳ ବଡ଼ସିଂହାର ପରେ ଧୋ-ପଖାଳ ହୁଏ । ଅନ୍ୟସବୁ ରୋଷ ଦ୍ୱିପ୍ରହର ଧୂପ ପରେ ଧୋ ପଖାଳ ହୁଏ । ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଦିନ କେବଳ କୋଠଭୋଗ ରୋଷ ଧୋ-ପଖାଳ ହୁଏ । ଅନ୍ୟ ରୋଷ ହୁଏ ନାହିଁ । ଗ୍ରହଣ ଓ ସୂର୍ଯ୍ୟପରାଗରେ ରୋଷ ଦୁଇଥର ଧୋ-ପଖାଳ ହୁଏ । ଭୋଗ ପୋତା ହେଲେ ଆଉ ଥରେ ଧୋ-ପଖାଳ ହୁଏ । ସବୁ ରୋଷ ପରିଷ୍କାର କରି ଓଳାଇ ଶଙ୍ଖୁଡ଼ି ନ ରହିଲା ପରି ସଫା କରି ପାଣି ପକାଯାଏ ।
(ଶ୍ରୀ.ସ୍ୱ. ୩ୟ - ପୃ. ୨୬/୨୭) ।

**ରୋଷ ପରିବା** -*ଦେ.ବି.*- ଶ୍ରୀମନ୍ଦିରରେ ବ୍ୟବହୃତ ପନିପରିବା ମଧ୍ୟରେ ଦେଶୀଆଳୁ, ବାଇଗଣ, କଦଳୀ, କଖାରୁ, ପାଣିକଖାରୁ, ପୋଟଳ, ମୂଳା, ଶିମ୍ବ, ପଣସ, କାଙ୍କଡ଼ ଓ କନ୍ଦମୂଳ ।
(ଶ୍ରୀ.ଜି. - ପୃ. ୧୮୭) ।

**ରୋଷପାଇକ**-*ଦେ.ବି.*- ଶ୍ରୀମନ୍ଦିରରେ ପ୍ରତିଦିନ ରୋଷ ସଫା ହୋଇ ଶୁଦ୍ଧ ହେଲା ପରେ ଅମୋଣିହା ପରିଛା ଓ ମହାସୁଆରଙ୍କୁ ସୂଚନା ଦେବା ପରେ ହୋମ ପାଳିଆ ପୂଜାପଣ୍ଡା ହୋମ କରିଥାନ୍ତି । କୋଠଭୋଗର ସମସ୍ତ ଜିନିଷ ଯୋଗାଣିଆ ଗୋଦାମରୁ ଆଣି ଏମାନଙ୍କ ଜିମାରେ ଦେଲେ ଏମାନେ ଜଗିଆ ମହାସୁଆର ଜିମା ଦେଇ ରୋଷ ଦ୍ୱାରେ ବଡ଼ସିଂହାର ପର୍ଯ୍ୟନ୍ତ ପ୍ରତିହାରୀ ସ୍ୱରୂପ ଦ୍ୱାର ଜଗନ୍ତି । ମଧୁପରଖ ଗୁଡ଼ ଏହାଙ୍କଠାରେ ଥାଏ ଓ ଏହାଙ୍କଠାରୁ ପତ୍ରିବଡୁ ନିଅନ୍ତି । ଏମାନେ ମୁଛ ଦାଢ଼ିଥିବା ସେବକଙ୍କୁ, ମହାର୍ଦ୍ଦ ହାତରେ ଥିବା ବ୍ୟକ୍ତିଙ୍କୁ ବା ମହାର୍ଦ୍ଦ ସିନ୍ଦୂର ଲଗାଇଥିବା ବ୍ୟକ୍ତିଙ୍କୁ ବା ଅଶୁଦ୍ଧ ବ୍ୟକ୍ତିଙ୍କୁ ରୋଷକୁ ଛାଡ଼ିବେ ନାହିଁ । ଗୁଣ୍ଡିଚା ଘରଠାରେ ମଧ୍ୟ ଏପରି ସେବା କରନ୍ତି । ଚିଲ ଜଗିବାକୁ ପ୍ରଥମ ଛେକ ଆଗରେ କାଠ ଖଣ୍ଡେ ଧରି ଧୁକୁଡ଼ିଦ୍ୱାର ଯାଏ ଯାଆନ୍ତି । ସକାଳ ଧୂପରେ ମହାସୁଆର କାନ୍ତି ଛେକ ଥାଳିରେ ଥୋଇଲେ ପାଳିଆ ରୋଷ ପାଏକ, ତାହା ଥାଳିରୁ କାଢ଼ି ତଳେ ବାଢ଼ନ୍ତି ଓ ଥାଳିରେ ଖେଚେଡ଼ି ବଢ଼ା ହୁଏ ।
ରୋଷରେ ରନ୍ଧା ହେବା ଅମୋଣିହାରୁ ଚାଉଳ ତୋଳା କରି ନେଇ ରାନ୍ଧି ଭୋଗ କରନ୍ତି । ମଠବାଡ଼ି ଭୋଗ ହାଣ୍ଡିରୁ ଓଳିଏ ଅନ୍ନ ତୋଳା କରି ଭୋଗ ପରେ ନିଅନ୍ତି । ଏମାନେ ବୈଷ୍ଣବାଗ୍ନି

ଦିଅନ୍ତି । ଶୂଦ୍ର ସେବକଙ୍କୁ ଦେଲେ ସାମାନ୍ୟ ପାଉଣା ମିଳେ । ସୂପକାର ଗୋଷ୍ଠୀ, ଶାଢ଼ିବନ୍ଧା ନୁହନ୍ତି । ବ୍ରତ ପରେ ପ୍ରଥମେ ସ୍ନାନ ପୂର୍ଣ୍ଣିମା ଦିନ ଛେକ ନେଲା ପରେ ଏହି ସେବାରେ ନିଯୁକ୍ତ ହେବେ । ଏହାଙ୍କ କାମ ଅନ୍ୟ ସୂପକାର ଚଳାଇପାରିବ । କାମ ତ୍ରୁଟି କଲେ ଖେଇ ବନ୍ଦ ହେବ ଓ ସୂପକାର ନିଯୁକ୍ତି ହୋଇପାରିବ। ସେବା ବଂଶାନୁକ୍ରମିକ ଚାଲୁଅଛି ।

(ଶ୍ରୀ.ସ୍ୱ. ୨ୟ - ପୃ. ୮/୯) ।

**ରୋଷହୋମ**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ଆଠରୁ ଆଠଟା ତିରିଶି ମିନିଟ ମଧ୍ୟରେ । ଏ' ନୀତି ସକାଶେ ୧. ମାଣିକିଏ ଘିଅ, ୨. ନଡ଼ିଆ, ୩. ହୋମକାଠ, ୪. କାଠ ଆସନ ଏକାନ୍ତ ଆବଶ୍ୟକ । ଏହା ଶ୍ରୀମନ୍ଦିର ଅଫିସ ତରଫରୁ ଯୋଗାହୁଏ । ଏ ନୀତି ସମ୍ପନ୍ନ କରିବା ପାଇଁ ୩ ଜଣ ସେବକ ଆବଶ୍ୟକ । ଯଥା- ଧୋ-ପଖାଳିଆ, ୨. ଦେଉଳ ପୁରୋହିତ ବା ପାଳିଆ ପୂଜାପଣ୍ଡା, ୩. ନିକାପ ସେବକ । ଶ୍ରୀମନ୍ଦିର ପରମ୍ପରାରେ ପ୍ରତିଦିନ ଏହି ହୋମ ସକାଳର ନିର୍ଦ୍ଧାରିତ ସମୟରେ ରୋଷଘରେ କୋଠଚୂଲି ପାଖରେ ହୁଏ । ପୂର୍ବରୁ ଧୋ ପଖାଳିଆ ସେବକ ରୋଷ ପାଣି ପକାଇ ପାଉଁଶ କାଢ଼ି ଧୋ ପଖାଳ କରନ୍ତି । ଏହି ହୋମ ଦେଉଳ ପୁରୋହିତ କରିବା କଥା, କିନ୍ତୁ ବର୍ତ୍ତମାନ ପୂଜାପଣ୍ଡାମାନେ ଏହା କରୁଛନ୍ତି । ହୋମଘିଅ ନିକାପ ସେବକ ଯୋଗାଏ । କାଠଘରୁ ହୋମ ସକାଶେ କାଠ ଦିଆଯାଏ ଓ ଖଣ୍ଡିଏ କାଠ ଆସନ ଦିଆଯାଏ । ଗୋଟିଏ ନଡ଼ିଆ ଲାଗେ । ହୋମ କରିବା ବ୍ରାହ୍ମଣ କାଠ ଆସନ ଓ ନଡ଼ିଆ ନିଅନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୬) ।

**ରୋହିଣୀକୁଣ୍ଡ**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ଭିତର ବଡ଼ଦେଉଳର ଦକ୍ଷିଣରେ ଥିବା ଏକ କ୍ଷୁଦ୍ର ଜଳକୁଣ୍ଡ । ଏହି ପବିତ୍ର କୁଣ୍ଡର ନାମ ରୋହିଣୀକୁଣ୍ଡ । ପୁରାଣରେ ବର୍ଣ୍ଣିତ ଅଛି ଯେ, ଭୂଷଣ୍ଡ କାକ ଏଥିରେ ସ୍ନାନ କରି ଚତୁର୍ଭୁଜ ହୋଇଥିଲା । ଏ କୁଣ୍ଡଟିର ଦୈର୍ଘ୍ୟ ପ୍ରାୟ ତିନି କିମ୍ବା ଚାରି ହାତ ଓ ପ୍ରସ୍ଥ ଦୁଇ କିମ୍ବା ତିନି ହାତ । ଗଭୀରତା ଦୁଇ ହାତ । ଏଥି ମଧ୍ୟରେ ଗୋଟିଏ ଚାରିଗୋଡ଼ିଆ କୁଆର ପ୍ରସ୍ତର ମୂର୍ତ୍ତି ରଖାହୋଇଛି । ଏହା କଳ୍ପବଟ ବୃକ୍ଷର ଉତ୍ତର-ପଶ୍ଚିମରେ ଓ ବିମଳା ମନ୍ଦିରର ସମ୍ମୁଖରେ ଥିବା ସିଂହର ପଛରେ ଅବସ୍ଥିତ । ଦୈନିକ ନୀତି ସକାଶେ ଭୋଗ ଦ୍ରବ୍ୟ କୋଠରୁ ଖଞ୍ଜା ହୋଇଛି ।

(ପୂ.ଓ.ଭା. - ପୃ. ୭୨୨୩, ପ୍ର.ଅ. ୩ୟ - ପୃ. ୨୩୬୬, ଓ.ସାଂ.ଶ. - ପୃ. ୩୨୬, ଶ୍ରୀ.ସ୍ୱ. ୨ୟ - ପୃ. ୨୩୯) ।

●



**ଲଙ୍କାପୋଡ଼ି**-*ଦେ.ବି.*- ଶ୍ରୀମନ୍ଦିରରେ ଚୈତ୍ର ପୂର୍ଣ୍ଣିମା ଦିନ ଦୋଳମଣ୍ଡପ ସାହି ଲୋକେ ଲଙ୍କାପୋଡ଼ି ପ୍ରସ୍ତାବ କରନ୍ତି । ଏହି ଦିନ ସନ୍ଧ୍ୟାଧୂପ ପରେ ରାମ ଲକ୍ଷ୍ମଣ ଦୁଇ ମୂର୍ତ୍ତି ଆଜ୍ଞାମାଳ ପାଇ ବଟମୂଳେ ଥିବା ପାଲିଙ୍କିରେ ବିଜେ କରାନ୍ତି । ବିମାନବଡୁମାନେ ଆସି ପାଲିଙ୍କିକୁ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରାନ୍ତି । ଏହି ସମୟରେ ଘଣ୍ଟା କାହାଳୀ ଛତା ମଧ୍ୟ ଠାକୁରଙ୍କ ସହିତ ବିଜେ ହୋଇଥାଏ । ପାଲିଙ୍କି ଜଗନ୍ନାଥ ବଲ୍ଲଭଠାରେ ପହଞ୍ଚିଲା ମାତ୍ରେ ଦୋଳମଣ୍ଡପ ସାହି ଲୋକେ ଲଙ୍କାପୋଡ଼ି ପ୍ରସ୍ତାବ କରନ୍ତି । ଏହାପରେ ବିଗ୍ରହମାନେ ପାଲିଙ୍କିରେ ବାହୁଡ଼ା ବିଜେ କରି ଦକ୍ଷିଣି ଘରକୁ ବିଜେ କରନ୍ତି ଓ ପରେ ଭିତରେ ଅନ୍ୟାନ୍ୟ ନୀତି ହୁଏ । (ଶ୍ରୀ.ସ୍ୱ. ୨ୟ- ପୃ. ୧୧୬) ।

**ଲକ୍ଷ୍ମୀ**-*ସଂ.ବି.*- କମଳା, ପଦ୍ମାଳୟା, ପଦ୍ମା, ଶ୍ରୀ, ହରିପ୍ରିୟା, ଇନ୍ଦିରା, କ୍ଷୀରାବ୍ଧିତନୟା, ଲୋକମାତା, ମା', ଭାର୍ଗବୀ, ଲୋକଜନନୀ ଇତ୍ୟାଦି । ମହର୍ଷି ଭୃଗୁଙ୍କ ଔରସରେ ଖ୍ୟାତିଙ୍କ ଗର୍ଭରୁ ଜାତ କନ୍ୟା । ଅନ୍ୟ ଏକ ମତରେ ସେ କ୍ଷୀର ସାଗରରୁ ଜାତ କନ୍ୟା । ସୌଭାଗ୍ୟର ଅଧିଷ୍ଠାତ୍ରୀ ଦେବୀ । ସେ ଶ୍ୱେତ ଚମ୍ପକ ବର୍ଣ୍ଣା, କ୍ଷୀଣକଟୀ, ଚତୁର୍ଦ୍ଧାହସ୍ତା, ଅତ୍ୟନ୍ତ ସୁନ୍ଦରୀ ଓ ଦୟାଶୀଳା । ନାରାୟଣଙ୍କ ଭିନ୍ନ ଭିନ୍ନ ଅବତାର ବେଳେ ସେ ମଧ୍ୟ ଭିନ୍ନ ଭିନ୍ନ ରୂପ ଧାରଣ କରନ୍ତି । ଦେବରାଜ ଇନ୍ଦ୍ରଙ୍କୁ ଦୁର୍ବାସା ଅଭିଶାପ ଦେବାରୁ ତ୍ରିଲୋକ ଶ୍ରୀହୀନ ହେଲା ଓ ଲକ୍ଷ୍ମୀ ସମୁଦ୍ର ଗର୍ଭରେ ନିମଜ୍ଜିତା ହେଲେ, ପରେ ଦେବାସୁରମାନେ କ୍ଷୀର ସମୁଦ୍ରକୁ ମନ୍ଥନ କରିବା ସମୟରେ ଲକ୍ଷ୍ମୀ ସମୁଦ୍ରରୁ ଯାତ ହୋଇଥିଲେ । ସେ ସୀତା ରୂପରେ ପୃଥିବୀ ଗର୍ଭରୁ ବାହାରି ଶ୍ରୀ ରାମଚନ୍ଦ୍ରଙ୍କୁ ଓ ରୁକ୍ମିଣୀ ରୂପରେ ଜନ୍ମଲାଭ କରି ଶ୍ରୀକୃଷ୍ଣଙ୍କୁ ବିବାହ କରିଥିଲେ । ପୁରୀ ଶ୍ରୀମନ୍ଦିର ବେଢ଼ାର ଉତ୍ତର ପଶ୍ଚିମ କୋଣରେ ଲକ୍ଷ୍ମୀ ମନ୍ଦିର ବିଦ୍ୟମାନ । (ଶ୍ରୀ.ସ୍ୱ. - ପୃ. ୨୨୭, ଓ.ସାଂ.ଶ. - ପୃ. ୩୨୭, ପୂ.ଓ.ଭା.- ପୃ. ୭୨୪୦) ।

**ଲକ୍ଷ୍ମୀଙ୍କ ରୋଷ**-*ଦେ.ବି.*- ଶ୍ରୀମନ୍ଦିରର ଭିତର ବେଢ଼ାରେ ଲକ୍ଷ୍ମୀଙ୍କ ରୋଷଘର ଅବସ୍ଥିତ । ଏଠାରେ ବାହାର ଦେଉଳି ଭୋଗ ପ୍ରସ୍ତୁତି ହୁଏ । ଏହି ରୋଷଘରେ ଦୁଇଟି ଚୁଲା ଅଛି । (ଶ୍ରୀ.ସ୍ୱ. - ପୃ. ୨୨୨) ।

**ଲକ୍ଷ୍ମୀଛଡ଼ା**-*ଦେ.ବି.*- ଲକ୍ଷ୍ମୀ ହେଉଛନ୍ତି ସୌଭାଗ୍ୟର ଅଧିଷ୍ଠାତ୍ରୀ ଦେବୀ । ସେ ଯାହାଙ୍କୁ ତ୍ୟାଗ କରି ଚାଲିଯାଆନ୍ତି ତାକୁ ଲକ୍ଷ୍ମୀଛଡ଼ା କୁହାଯାଏ । ଓଡ଼ିଆ ଲକ୍ଷ୍ମୀ ପୁରାଣରେ ବର୍ଣ୍ଣିତ ଅଛି ଏକଦା ଜଗନ୍ନାଥ ଓ ବଳଭଦ୍ର ମହାପ୍ରଭୁ ମଧ୍ୟ ଲକ୍ଷ୍ମୀଛଡ଼ା ହୋଇ ବାରଦ୍ୱାର ବୁଲିଥିଲେ । ଖାଇବାକୁ ନ ପାଇ ଡହଳବିକଳ ହେଉଥିଲେ । ଲକ୍ଷ୍ମୀ ବିମୁଖ ହେଲେ ଦୁର୍ଭାଗ୍ୟ ଘୋଟିଆସେ । (ଓ.ସାଂ.ଶ.- ପୃ. ୩୨୭) ।

**ଲକ୍ଷ୍ମୀ ନରସିଂହ**-*ସଂ.ବି.*- ଲକ୍ଷ୍ମୀ ଓ ବିଷ୍ଣୁଙ୍କର ୪ର୍ଥ ଅବତାର ନୃସିଂହଙ୍କ ଯୁଗଳ ସମାବେଶ । ବିଶେଷ ଲକ୍ଷଣଯୁକ୍ତ ଶାଳଗ୍ରାମ । ଏଥିରେ ଦୁଇଟି ଚକ୍ର ଓ ଏକ ବନମାଳା ଚିହ୍ନ ଥାଏ । ଏହି ଶାଳଗ୍ରାମ ଗୃହସ୍ଥଙ୍କ ପକ୍ଷରେ ଅତ୍ୟନ୍ତ ଶୁଭଙ୍କର । (ପୂ.ଓ.ଭା. - ପୃ. ୭୨୪୨) ।

**ଲକ୍ଷ୍ମୀ ନରସିଂହ ମୂର୍ତ୍ତି**-*ଦେ.ବି.*- ଉର୍ଦ୍ଧ୍ୱ ହସ୍ତ ଦ୍ୱୟରେ ଶଙ୍ଖ, ଚକ୍ର ଏବଂ ନିମ୍ନ ହସ୍ତ ଦ୍ୱୟ ପ୍ରସାରିତ କରି ପ୍ରଦର୍ଶନ କରିଅଛନ୍ତି । କଟି ଦେଶରେ କିଙ୍କିଣି ମାଳା କେଶର ଓ ମୁକୁଟରେ ତାହାଙ୍କ ମସ୍ତକ ଅତି ରମଣୀୟ ହୋଇଛି । ସୁନ୍ଦର

ପଦ୍ମପୀଠ ଉପରେ ଭଗବାନ ନୃସିଂହ, ଲକ୍ଷ୍ମୀଙ୍କୁ ପାର୍ଶ୍ୱରେ ଆଲିଙ୍ଗନ ପୂର୍ବକ ଧାରଣ କରିଛନ୍ତି । ଶ୍ରୀମନ୍ଦିରର ଦକ୍ଷିଣଘରେ ଲକ୍ଷ୍ମୀ ନୃସିଂହଙ୍କ ଚଳନ୍ତି ପ୍ରତିମା ପୂଜିତ ହୁଅନ୍ତି । ଉତ୍ତର ଦ୍ୱାରସ୍ଥ ଉତ୍ତରାୟଣୀ ମନ୍ଦିର ପାର୍ଶ୍ୱରେ ଶ୍ରୀଲକ୍ଷ୍ମୀ ନୃସିଂହ ମନ୍ଦିରରେ ଲକ୍ଷ୍ମୀନୃସିଂହ ମୂର୍ତ୍ତି ପୂଜିତ ହେଉଛନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୧୫) ।

**ଲକ୍ଷ୍ମୀନାରାୟଣ**-*ଦେ.ବି.*- ଲକ୍ଷ୍ମୀ ନାରାୟଣଙ୍କର ଯୁଗଳ ମୂର୍ତ୍ତି । ଶାଳଗ୍ରାମ ବିଶେଷ । ଏହାର ବର୍ଣ୍ଣ ମେଘ ବର୍ଣ୍ଣ ପରି । ଓଡ଼ିଶାର ପରମ୍ପରାରେ ଶୁକ୍ଳ ଏକାଦଶୀ ଗୁରୁବାରରେ ପଡ଼ିଲେ ଓଡ଼ିଆଘର ନାରୀମାନେ ଶ୍ରୀ ବୃଦ୍ଧି ପାଇଁ ଲକ୍ଷ୍ମୀ ନାରାୟଣ ବ୍ରତ କରନ୍ତି ଓ ଲକ୍ଷ୍ମୀ ପୂଜା କରିଥାନ୍ତି । ତାହା ଲକ୍ଷ୍ମୀ ନାରାୟଣ ଏକାଦଶୀ ନାମରେ ପରିଚିତ । ଜଗତର କଲ୍ୟାଣକାରୀ ଦେବଦେବୀ ରୂପେ ଏମାନଙ୍କୁ ଆବାହନ କରାଯାଏ । ପ୍ରତ୍ୟେକ ଓଷାବ୍ରତ ଓ ପର୍ବପର୍ବାଣିରେ ଓଡ଼ିଆ ଘରର ନାରୀମାନେ ଏହି ବ୍ରତ କରିଥାନ୍ତି । ଧନଧାନ୍ୟ, ଗୋପଲକ୍ଷ୍ମୀ ଓ ଶ୍ରୀ ବୃଦ୍ଧି ପାଇଁ ପ୍ରଭୁ ନାରାୟଣ ବିଶ୍ୱକଲ୍ୟାଣକାରୀ ଦେବତା ରୂପେ ପରିଚିତ । ଶ୍ରୀମନ୍ଦିରରେ ସନ୍ଧ୍ୟା ଧୂପ ପରେ ଏହିଦିନ ବିଶେଷ ନୀତି ଅନୁଷ୍ଠିତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬, ଓ.ସାଂ.ଶ. - ପୃ. ୩୨୭, ପୂ.ଓ.ଭା. - ପୃ. ୭୨୪୨) ।

**ଲକ୍ଷ୍ମୀନାରାୟଣ କଳି**-*ଦେ.ବି.*- ନୀଳାଦ୍ରିବିଜେ ଦିନ ଜୟବିଜୟ ଦ୍ୱାରଠାରେ ଲକ୍ଷ୍ମୀଙ୍କ ପକ୍ଷରୁ ମାହାରୀ ଓ ଶ୍ରୀଜଗନ୍ନାଥଙ୍କ ପକ୍ଷରୁ ଦଇତାଙ୍କ ମଧ୍ୟରେ ଦାମ୍ପତ୍ୟ କଳହର ଏକକ ଅଭିନୟ ପ୍ରସ୍ତାବ ହୋଇଥାଏ । ଏହାକୁ ଲକ୍ଷ୍ମୀନାରାୟଣ କଳି କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୮୧) ।

**ଲକ୍ଷ୍ମୀନାରାୟଣ ବେଶ**-*ଦେ.ବି.*- କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଶ୍ରୀଜୀଉଙ୍କୁ ଲାଗି ହେଉଥିବା ବେଶ । ଏହି ବେଶରେ ଠାକୁରମାନେ ଶ୍ରୀଭୁଜ-ଚାରି, କାନ-ଛଅ, ଚନ୍ଦ୍ରିକା-ଦୁଇ, ତଡ଼ଗି-ଦୁଇ, କିଆ-ପାଞ୍ଚ, ଶ୍ରୀପୟର-ଚାରି, ଆଡ଼କାନୀ-ଚାରି, ଚନ୍ଦ୍ରସୂର୍ଯ୍ୟ ଏବଂ ଓଡ଼ିଆଣୀ-ତିନି ଇତ୍ୟାଦି ସୁବର୍ଣ୍ଣ ଅଳଙ୍କାର ଲାଗି ହୁଅନ୍ତି । ଏହା ବ୍ୟତୀତ ତିନି ଗୋଟି ସ୍ୱର୍ଣ୍ଣ କିରୀଟ ଲାଗି ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦) ।

**ଲକ୍ଷ୍ମୀନାରାୟଣ ଭେଟ**-*ଦେ.ବି.*- ଶ୍ରୀକ୍ଷେତ୍ରରେ ବାହୁଡ଼ାଯାତ୍ରାରେ ରଥ ବାହୁଡ଼ା ସମୟରେ ଶ୍ରୀନଅର ପାର୍ଶ୍ୱରେ ଶ୍ରୀଜଗନ୍ନାଥ ଓ ଲକ୍ଷ୍ମୀଙ୍କ ଭେଟ ହୁଏ । ଶ୍ରୀଜଗନ୍ନାଥଙ୍କ ରଥ ଶ୍ରୀନଅରଠାରେ ପହଞ୍ଚିଲେ ଲକ୍ଷ୍ମୀ ଚାହାଣି ମଣ୍ଡପ ଉପରେ ବିଜେ ହୋଇ ଚାହାନ୍ତି । ତା'ପରେ ତାଙ୍କୁ ଘଣ୍ଟ, ଛତା ଓ କାହାଳୀ ସହ ଶ୍ରୀଜଗନ୍ନାଥଙ୍କ ରଥ ପାଖକୁ ନିଆଯାଏ । ସେଠାରେ ତାଙ୍କର ଦହି ପଟୋଉ ଭୋଗ ହୁଏ । ଏହି ସମୟରେ ରାଜା ବିଜେ କରିଥାଆନ୍ତି । ଲକ୍ଷ୍ମୀଙ୍କ ବିମାନକୁ ଶ୍ରୀଜଗନ୍ନାଥଙ୍କ ରଥ ଚାରିପାଖେ ବେଢ଼ାଏ ବୁଲାଯାଏ । ତା'ପରେ ଜଗନ୍ନାଥଙ୍କ ଆଜ୍ଞାମାଳ ପାଇ ଲକ୍ଷ୍ମୀ ମନ୍ଦିରକୁ ବିଜେ କରନ୍ତି ।
(ଶ୍ରୀ.ସ୍ୱ. - ପୃ. ୮୦) ।

**ଲକ୍ଷ୍ମୀନାରାୟଣ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିରର ବେଢ଼ା ଭିତରେ ଏହା ଅବସ୍ଥିତ । ଏହି ମନ୍ଦିରରେ ଥିବା ବିଗ୍ରହକୁ ଲକ୍ଷ୍ମୀ ମନ୍ଦିର ସେବକମାନେ ଦୈନିକ ସେବା ପୂଜା କରନ୍ତି । ଏଥିନିମନ୍ତେ କୋଠରୁ ଭୋଗ ଖଞ୍ଜା ଅଛି । ବଡ଼ଛତା ମଠ ଏହାର ମାର୍ଫତଦାର ଅଟନ୍ତି ।
(ଶ୍ରୀ.ସ୍ୱ. - ପୃ. ୨୨୬) ।

**ଲକ୍ଷ୍ମୀପୂଜା**-*ସଂ.ବି.*- କୁମାର ପୂର୍ଣ୍ଣିମା ଓ ଆଶ୍ୱିନ ପୂର୍ଣ୍ଣିମାରେ ନାରିକେଳ ଓ ନୈବେଦ୍ୟ ପ୍ରଦାନ କରାଯାଇ ଲକ୍ଷ୍ମୀଦେବୀଙ୍କର ପୂଜା କରାଯାଏ । ଧନ ଓ ସୌଭାଗ୍ୟ ବୃଦ୍ଧି ପାଇଁ ପ୍ରତି ଗୁରୁବାର ଦିନ ଓ ବିଶେଷତଃ ମାର୍ଗଶିର ମାସ ଗୁରୁବାର ଦିନ ଗୋଟିଏ ପିଢ଼ା ଉପରେ ଶୁକ୍ଳଧାନକୁ ମାଣ ବା ଗୌଣୀରେ ପୂର୍ଣ୍ଣକରି ରଖି ବସ୍ତ୍ରାଳଙ୍କାର ଭୂଷିତ କରି ତାଙ୍କୁ ଲକ୍ଷ୍ମୀ ରୂପେ କଳ୍ପନା କରି ପୂଜା କରାଯାଏ । ଯାହାଙ୍କ ଘରେ ଲକ୍ଷ୍ମୀ ପ୍ରତିମା ଥାଆନ୍ତି ତାଙ୍କୁ ସେଦିନ ପୂଜା କରାଯାଏ । ଏହି

ଦିନ ଘର ଲିପାପୋଛା କରାଯାଇ ବିଭିନ୍ନ ଚିତା ପକାଯିବା ସହ ଧୂପ, ଦୀପ ଓ ନୈବେଦ୍ୟ ପ୍ରଦାନ ପରେ ଘରେ ଲକ୍ଷ୍ମୀ ପୁରାଣ ପାଠ କରାଯାଇଥାଏ । କୌଣସି ମାସର ଶୁକ୍ଳ ଦଶମୀ ଦିନ ଗୁରୁବାର ପଡ଼ିଲେ ସେଦିନ ସୁଦଶାବ୍ରତ ଲକ୍ଷ୍ମୀଙ୍କର ପୂଜା, ଶୁକ୍ଳ ପଞ୍ଚମୀ ଦିନ ଗୁରୁବାର ପଡ଼ିଲେ ସେଦିନ ଲକ୍ଷ୍ମୀପୂଜା ହୁଏ । କାର୍ତ୍ତିକ ଅମାବାସ୍ୟା ରାତିରେ ମଧ୍ୟ ଲକ୍ଷ୍ମୀପୂଜା ହୋଇଥାଏ ।
(ଶ୍ରୀ.ସ୍ୱ. - ପୃ. ୧୦୦, ପୂ.ଓ.ଭା. - ପୃ. ୭୨୪୩) ।

**ଲକ୍ଷ୍ମୀ ବିଳାସ** - *ଦେ.ବି.*- ଏକ ପ୍ରକାର ଗୋଲାକାର ମିଷ୍ଟପିଷ୍ଟକ । ଶ୍ରୀ ଜୀଉମାନଙ୍କୁ ଲାଗି କରାଯାଏ ।
(ଉ.ଇ.ଅ.ଅ. - ପୃ. ୩୨୫) ।

**ଲକ୍ଷ୍ମୀ ମହିମା** - *ଦେ.ବି.*- ଲକ୍ଷ୍ମୀ ଦେବୀଙ୍କ କୃପା । ମାତୃ କୃପା ହେଲେ ଧନଧାନ୍ୟର ଅଭାବ ରହେ ନାହିଁ । ଯୁଗେ ଯୁଗେ ମା' ଲକ୍ଷ୍ମୀଙ୍କର କୃପା ଲାଭ ଅର୍ଥାତ୍ ସୁଦୟା ପାଇବା ନିମନ୍ତେ ବାରମାସରେ ତେର ପର୍ବ ପାଳନ କରାଯାଏ । ମାର୍ଗଶିର ଓ ମାଘ ମାସର ଗୁରୁବାର ଦିନ ମାଣ ବସାଯାଇ ମା' ଲକ୍ଷ୍ମୀଙ୍କୁ ଆବାହନ କରାଯାଏ । ପ୍ରତିଟି ଗୁରୁବାରରେ ମଧ୍ୟ ଘରେ ଘରେ ଲକ୍ଷ୍ମୀପୂଜାର ପ୍ରଚଳନ ଅଛି । ଲକ୍ଷ୍ମୀ ମହିମା ଉପଲବ୍ଧ ହେଲେ ଧନଧାନ୍ୟ ଗୋପଲକ୍ଷ୍ମୀ ବୃଦ୍ଧି ହୁଏ ।
(ଓ.ସାଂ.ଶ.- ପୃ. ୩୨୭) ।

**ଲଣ୍ଡାବର୍ତ୍ତ** - *ଦେ.ବି.*- ଶ୍ରୀମନ୍ଦିରର ପ୍ରବେଶ ଦ୍ୱାରର ଅର୍ଦ୍ଧବୃତ୍ତାକାର ପାହାଚ ।

**ଲବଣଚଉଁରୀ**- *ଦଂ.ବି.* - ଶୀତଳଷଷ୍ଠୀ ଦିନ ପଞ୍ଚଗ୍ରାସୀ ପରେ ବିବାହ ଉତ୍ସବ ଅବସରରେ ଶିବପାର୍ବତୀଙ୍କ ଉପରେ ଲକ୍ଷ୍ମୀ ଏବଂ ରୁକ୍ମିଣୀ ବିବାହରେ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କ ଉପରେ ପାର୍ବତୀ ଲୁଣ ସୋରିଷ ପକାନ୍ତି । ପ୍ରଥମଟି ଶ୍ରୀମନ୍ଦିରସ୍ଥ ଲକ୍ଷ୍ମୀ ମନ୍ଦିରର ଜଗମୋହନରେ ଏବଂ ଦ୍ୱିତୀୟଟି ଜମ୍ୱେଶ୍ୱର ମନ୍ଦିରରେ ଅନୁଷ୍ଠିତ ହୋଇଥାଏ ।
(କ୍ଷେ.ସ.) ।

**ଲବଣ ବିଶୋଇ** - *ଦେ.ବି.*- ଶ୍ରୀମନ୍ଦିରର ରୋଷକୁ ଲୁଣ ଯୋଗାଉଥିବା ସେବକ ବିଶେଷ ।
(ଶ୍ରୀ.ଶ.- ପୃ. ୧୫୭) ।

**ଲବଣୀଖିଆ ଛକ** - *ଦେ.ବି.*- ପୁରୀ ସହରର ଏକ ସ୍ଥାନ ବା ଛକର ନାମ ବିଶେଷ । ଶ୍ରୀମନ୍ଦିରରେ ଭାଦ୍ର ଶୁକ୍ଳ ଦଶମୀ ଦିନ ମଧ୍ୟାହ୍ନ ଧୂପ ପରେ ଠାକୁର ରାମକୃଷ୍ଣ ପାଲିଙ୍କିରେ ବିଜେ ହୋଇ ପୁରୀ ସହରସ୍ଥିତ କୁଣ୍ଡେଇବେ ସାହିର ଲବଣୀଖିଆ ମଣ୍ଡପରେ ବିଜେ କରନ୍ତି । ଏଥିନିମନ୍ତେ ଏହି ସ୍ଥାନର ନାମ ଲବଣୀଖିଆ ଛକ ରଖାଯାଇଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୫) ।

**ଲବଣୀଖିଆ ନୀତି** - *ଦେ.ବି.*- ଶ୍ରୀମନ୍ଦିର ପରମ୍ପରାରେ କୃଷ୍ଣ ଲୀଳା ନୀତିରେ ଠାକୁରଙ୍କ ଲବଣୀଖିଆ ବିଧି ଅନୁସାରେ ଅନୁଷ୍ଠିତ ହୁଏ । ମଧ୍ୟାହ୍ନ ଧୂପ ପରେ ମହାଜନେ ରାମକୃଷ୍ଣ ଦୁଇ ଦେବଙ୍କୁ ଆଜ୍ଞାମାଳ ଲାଗି କରାଇ ବଟ ପାଖରେ ଥିବା ପାଲିଙ୍କିରେ କୁଣ୍ଡେଇବେଣ୍ଟ ସାହିରେ ଥିବା ଲବଣୀଖିଆ ସ୍ଥାନକୁ ବିଜେ କରାନ୍ତି । ଏଠାରେ ସର ଲବଣୀ ଇତ୍ୟାଦି ଭୋଗ ପରେ ମହାଭୋଇଙ୍କ ଝିଅ ବୋହୂମାନେ ବନ୍ଦାପନା କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୫) ।

**ଲବଣୀଖିଆ ମଣ୍ଡପ** - *ଦେ.ବି.*- ଶ୍ରୀଜୀଉଙ୍କର କୃଷ୍ଣଲୀଳା ଅବସରରେ ଠାକୁରଙ୍କର ଲବଣୀଖିଆ ନୀତି ଅନୁଷ୍ଠିତ ହେଉଥିବା ମଣ୍ଡପ । ଏହା କୁଣ୍ଡେଇବେଣ୍ଟ ସାହିରେ ଅବସ୍ଥିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୫) ।

**ଲୟତା ଲିଆ** - *ଦେ.ବି.*- ଶ୍ରୀଜୀଉଙ୍କ ନିମନ୍ତେ ପ୍ରସ୍ତୁତ ଏକ ପ୍ରକାର ଭୋଗ । ଏହା ଠାକୁରଙ୍କୁ ଲାଗି ହୋଇଥାଏ ।
(ଶ୍ରୀ.ଶ. - ପୃ. ୧୫୮) ।

**ଲହୁଣୀ**- *ଦେ.ବି.*- ଲବଣୀ, ନବନୀତ, ଦହି ମୁହାଁଯାଇ ସେଥିରୁ ଯେଉଁ ଘୃତୋତ୍ପାଦକ ଚିକ୍କଣ ଲେହବତ୍ ସାର ବାହାରେ । ଶ୍ରୀଜଗନ୍ନାଥଙ୍କୁ ଏହା ଅର୍ପଣ କରାଯାଏ ।
(ପୂ.ଓ.ଭା. - ପୃ. ୭୨୩୦) ।

**ଲହୁଣିଆ**-*ଦେ.ବି.*- ଶ୍ରୀଜୀଉଙ୍କ ଭୋଗ ଲାଗି କରାଯାଉଥିବା ଏକ ପ୍ରକାର ପିଷ୍ଟକ ବିଶେଷ ।
(ପୁ.ବୋ. - ପୃ. ୩୦୪) ।

**ଲାଲ ମୋହରିଆ ପଣ୍ଡା**-*ଦେ.ବି.*- ଲାଲ ମୋହରିଆ ଏକ ଉପାଧି । ପୁରୀ ହରଚଣ୍ଡୀ ସାହିରେ କେତେକ ଲାଲ ମୋହରିଆ ପଣ୍ଡା ଅଛନ୍ତି । ନେପାଳ ରାଜଦମ୍ପତି ଶ୍ରୀକ୍ଷେତ୍ରକୁ ଆସିଲେ, ଏମାନେ ଶ୍ରୀମନ୍ଦିର ଶ୍ରୀଜୀଉଙ୍କୁ ଦର୍ଶନ କରାଇବା ବ୍ୟବସ୍ଥା କରନ୍ତି । ଏଥିପାଇଁ ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ତାଙ୍କୁ ଅନୁମତି ମିଳିଅଛି । ରୂପାରେ ନିର୍ମିତ ପଶୁପତିନାଥଙ୍କ ପ୍ରତିମୂର୍ତ୍ତି ଥିବା ଏକ ମୋହର ଏମାନଙ୍କୁ ମିଳିଅଛି । ନେପାଳ ରାଜା ବୀରେନ୍ଦ୍ର ଶାହା ଏମାନଙ୍କୁ ତାମ୍ରଫଳକ ସନନ୍ଦ ମଧ୍ୟ ପ୍ରଦାନ କରିଛନ୍ତି ।
(କ୍ଷେ.ସ.) ।

**ଲିଆ**- ଶ୍ରୀମନ୍ଦିରରେ କାର୍ତ୍ତିକ ମାସରେ ଦୈନନ୍ଦିନ ନୀତିରେ ବାଳଧୂପ ସମୟରେ ଲିଆ ଭୋଗ ହୁଏ । ଯାହା କି ହରିବଲ୍ଲଭ ଲିଆ ନାମରେ ପରିଚିତ ।
(ଶ୍ରୀ.ଜି. - ପୃ. ୨୧୪) ।

**ଲୀଳା ପୁରୁଷୋତ୍ତମ**-*ଦେ.ବି.*- ଶ୍ରୀରାମ ଓ ଶ୍ରୀକୃଷ୍ଣ ଏ ଦୁଇ ପ୍ରଧାନ ଅବତାରଙ୍କ ମଧ୍ୟରେ ଶ୍ରୀରାମଙ୍କୁ ମର୍ଯ୍ୟାଦା ପୁରୁଷୋତ୍ତମ ଏବଂ ଶ୍ରୀକୃଷ୍ଣଙ୍କୁ ଲୀଳା ପୁରୁଷୋତ୍ତମ ବୋଲି କୁହାଯାଏ ।
(ଓ.ସାଂ.ଶ.- ପୃ. ୩୨୯) ।

**ଲୁଗାଧୁଆ**-*ଦେ.ବି.*- ଧୋବା ବଡୁ ସେବକ । ଠାକୁରଙ୍କର ଲୁଗା, ତଡ଼ପ, ଉତ୍ତରୀୟ ଇତ୍ୟାଦି ଏହି ଧୋବାବଡୁ ବଟଗଣେଶଙ୍କ ପାଖରେ ଗୋଟିଏ କୁଣ୍ଡରେ ଧୋଇଥାନ୍ତି । ଏହି ଧୋବା ସେବକ ପ୍ରକୃତରେ ଧୋବା ଜାତିର ନୁହଁନ୍ତି, ଏ ଜଣେ ବ୍ରାହ୍ମଣ ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ଲୁଣଖୁରୁମା**-*ଦେ.ବି.*- ଏକ ପିଷ୍ଟକ । ଏହା ଠାକୁରଙ୍କୁ ଭୋଗ ଲାଗି ହୁଏ ।
(ପୁ.ବୋ. - ପୃ. ୩୦୪) ।

**ଲୁଣିଆଝିଅ**-*ଦେ.ବି.*- ଲକ୍ଷ୍ମୀ ସମୁଦ୍ର ଦେବତା ବରୁଣଙ୍କ କନ୍ୟା ହୋଇଥିବାରୁ ତାଙ୍କୁ ଲୁଣିଆ ଝିଅ କୁହାଯାଇଛି । ବଡ଼ଭାଇ ବଳଭଦ୍ର ଶ୍ରୀଜଗନ୍ନାଥଙ୍କ ପତ୍ନୀ ଲକ୍ଷ୍ମୀଙ୍କୁ ତାଚ୍ଛଲ୍ୟ କରିବା ଉଦ୍ଦେଶ୍ୟରେ ଏହି ଶବ୍ଦ ପ୍ରୟୋଗ କରିଥାନ୍ତି ।
(ଓ.ସାଂ.ଶ. - ପୃ. ୩୨୯) ।

**ଲେଙ୍କା ସେବକ**-*ଦେ.ବି.*- ଶ୍ରୀମନ୍ଦିର ଚର୍ଚ୍ଚାଇତ ଗୋଷ୍ଠୀର ସେବକ ବିଶେଷ । କଳିଙ୍ଗରେ ଗଙ୍ଗ ଶାସନ କାଳରେ ରାଜକର୍ମଚାରୀ ଭାବରେ ପରବର୍ତ୍ତୀ ଗଜପତିଙ୍କ ଶାସନ କାଳରେ ମଧ୍ୟ ମନ୍ଦିର ସେବାରେ ନିଯୁକ୍ତ ହୋଇଥିଲେ । ଏହାଙ୍କ ଅଧୀନରେ ପାଇକ, ଡାକୁଆ, ବେତୁଆ ଆଦି ସେବାୟତମାନେ ରହିଥିବା ଜଣାଯାଏ । ପୂଜାପର୍ବରେ ସେବକଙ୍କୁ ଖଟାଇବା, ପଦାର୍ଥମାନ ଯୋଗାଇବା, ଭଅଣ୍ଡ ବାହାର ପୂଜାକାଳେ ଘୃତ ଅମୃତ ଦେବା, ବେଣ୍ଟଯାତ୍ରା କାଳେ ଧନୁଶର ନେଇଯିବା, ବେଣ୍ଟ ବେଳେ ବେଣ୍ଟ ପାଇଁ କୌଣସି ସେବକ ଆସିବାକୁ ଅମାନ୍ୟ କଲେ ବୁଢ଼ା ଲେଙ୍କାଙ୍କୁ ଜଣାଇବା, ଅବାଧ ହେଲେ ପରିଛାଙ୍କ ପାଖେ ହାଜର କରାଇବା ଆଦି କାର୍ଯ୍ୟ କରୁଥିଲେ । ଏହି ସେବାୟତ ଶାଢ଼ୀପାଇ ଶକ୍ତିଦଣ୍ଡ ନେଇ ବିଜେ କାଳେ ଆଗେ ଚାଲୁଥିଲେ । ସ୍ୱତ୍ୱଲିପିରୁ ଜଣାଯାଏ ଯେ, ଲେଙ୍କା ପ୍ରତିଦିନ ସକାଳେ ପାଳିଆ, ପତ୍ରୀ, ଗରାବଡୁଙ୍କୁ ଡାକିବା, ପଣ୍ଡାଙ୍କୁ ଡାକିବା, ବେହରଣ ଦ୍ୱାରରେ ରହି ଧ୍ୱଜା ବା ଲାଗି ଜିନିଷ ଆସିଲେ ତଡ଼ାଉ ଓ ଦେଉଳ କରଣଙ୍କୁ କହି ଅଫିସରେ ଦାଖଲ କରିବା, ଧ୍ୱଜା ବନ୍ଧାରେ ଚୂନରାଙ୍କୁ ଧ୍ୱଜା ମଣାଇ ଦେବା, ସବୁ ଧୂପରେ ପ୍ରଧାନୀଙ୍କ ସହ ପଣ୍ଡାଙ୍କୁ ଡାକିବା, ରାତିରେ ଚନ୍ଦନ ଲାଗି ପର୍ଯ୍ୟନ୍ତ ସେବକ ଯୋଗାଇବା ପ୍ରଭୃତି ଏହାଙ୍କ କାର୍ଯ୍ୟ । ସ୍ନାନ ପୂର୍ଣ୍ଣିମା ଦିନ ରାଘବ ଦାସ ମଠ, ଗୋପାଳ ତୀର୍ଥ ମଠର ହାତୀବେଶ ଓ ଚିତ୍ରକାର ଘରୁ ପଟି ଆଣିବା ବେଳେ ଘଣ୍ଟ , ଛତା, କାହାଳୀ ସହ ଆସିବା, ଅଣସର ବେଳେ ଦଇତାପତିଙ୍କୁ ଖଳି ଓ ଖଡ଼ି ପ୍ରସାଦ ବିଜେ କରାଇବାକୁ ଯିବା,

ରାଜପ୍ରାସାଦ ସହ ଯିବା, ନେତ୍ରୋତ୍ସବରେ ମେକାପ ସହ ଦାରୁ ମହାସ୍ନାନ ସାମଗ୍ରୀ ଆଣି ଭିତରେ ଯୋଗାଇବା, ପ୍ରତ୍ୟେକ ପର୍ବ ଯାତ୍ରା ମହାସ୍ନାନରେ ପ୍ରଧାନୀ ସହ ଜିନିଷ ଯୋଗାଇବା, ଗୁଣ୍ଡିଚା ଦିନ ବଣିଆ ଘରୁ ସୋଲ ଚିତା ଆଣିବା, ରଥରେ ସେବକମାନଙ୍କୁ ଡାକିବା, ଚିତା ଓ ରାହୁରେଖା ଲାଗିରେ ବଣିଆଙ୍କୁ ଡାକିବା ଓ ତାଙ୍କୁ ସାହାଯ୍ୟ କରିବା, କୃଷ୍ଣ ଓ ରାମଲୀଳାରେ ନନ୍ଦୋତ୍ସବରେ ଗୋ ଦୋହନ ପାଇଁ ଦୁହାଁଳିଆ ଗାଈ ଯୋଗାଇବା, କୁମ୍ଭାରଠାରୁ ସାତପୁରୀ ତାଟ ଘଣ୍ଟ, ଛତା, କାହାଳୀ ସହ ଆଣିବା, ପାର୍ଶ୍ୱଦେବଙ୍କ ପୂଜାରେ ପଣ୍ଡାଙ୍କୁ ଡାକିବା, ଦଶହରା ଦିନ ନଅରରେ ଲାଖ ବିନ୍ଧିବା, ପହିଲି ଭୋଗରେ ସେବା କରିବା, ବଡୁ ମହାପାତ୍ରଙ୍କୁ ତାଟ ଦେବା, ଚନ୍ଦନରେ ଠାକୁରଙ୍କ ସଙ୍ଗେ ଯିବା, ମଦନମୋହନଙ୍କ ଚାପରେ ଚକ୍ର ନେଇ ଛିଡ଼ା ହେବା, ଚକ୍ର ଧରି ବନଯାଗରେ ଯିବା, ଶାଢ଼ୀ ବନ୍ଧାରେ ସେବକଙ୍କ ଘରକୁ ମହାପ୍ରସାଦ ନେଇ ଯିବା ଆଦି କାର୍ଯ୍ୟ କରିଥାନ୍ତି ।ଲେଙ୍କା ଚାରିଭାଗରେ ବିଭକ୍ତ । ୧. ବରଗଣିଆ ଲେଙ୍କା, ୨. ତାଟ ଲେଙ୍କା, ୩. ଛାମୁ ଲେଙ୍କା, ୪. ପାଳିଆ ଲେଙ୍କା ।
(ଶ୍ରୀ.ସ୍ୱ. - ପୃ. ୧୭୬) ।

**ଲୋକନାଥ**-*ଦେ.ବି.*- ଶ୍ରୀ ଲୋକନାଥ ମନ୍ଦିର ଶ୍ରୀମନ୍ଦିରର ପଶ୍ଚିମରେ ପ୍ରାୟ ଦୁଇକିଲୋମିଟର ଦୂରରେ ଅବସ୍ଥିତ ।ଏହି ମନ୍ଦିରରେ ଥିବା ଶିବ ଲିଙ୍ଗ ସର୍ବଦା ଜଳମଗ୍ନ ହୋଇ ରହିଥାନ୍ତି । ବର୍ଷକୁ ଥରେ ମାତ୍ର ଫାଲ୍‌ଗୁନ କୃଷ୍ଣ ଏକାଦଶୀ ଦିନ ଜଳ ନିଷ୍କାସନ ପରେ ଅର୍ଦ୍ଧରାତ୍ରରେ ଶ୍ରୀଲୋକନାଥଙ୍କର ଦିବ୍ୟ ଦର୍ଶନ ମିଳିଥାଏ । ଏହି ଦିନ ପଙ୍କୋଦ୍ଧାର ଏକାଦଶୀ ନାମରେ ପରିଚିତ । ଲୋକନାଥ ଶ୍ରୀଜଗନ୍ନାଥଙ୍କର ଭଣ୍ଡାର ରକ୍ଷକ ରୂପେ ପରିଚିତ ।
(କ୍ଷେ.ସ.) ।

**ଲୋକେଶ୍ୱର**-*ଦେ.ବି.*- ଶ୍ରୀମନ୍ଦିର ବାହାର ବେଢ଼ାରେ ଥିବା ଶୀତଳାଙ୍କ ମନ୍ଦିରର ପୂର୍ବ ଭାଗରେ ଲୋକେଶ୍ୱର ବା ଲୋକନାଥ ମନ୍ଦିର ଅବସ୍ଥିତ । ଏହା ଏକ କ୍ଷୁଦ୍ର ମନ୍ଦିର ଏବଂ ଉକ୍ତ ମନ୍ଦିର ମଧ୍ୟରେ ଲୋକେଶ୍ୱର ମହାଦେବ ବିରାଜିତ ।
(ଶ୍ରୀ.ସ୍ୱ. - ପୃ. ୫୩) ।



# ଶ

**ଶଙ୍କରାଚାର୍ଯ୍ୟ**-*ଦେ.ବି.*- ସନାତନ ହିନ୍ଦୁ ଧର୍ମର ମହାନ୍ ପ୍ରବର୍ତ୍ତକ ଜଗତ୍ ଗୁରୁ ଆଦି ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରରେ ଗୋବର୍ଦ୍ଧନ ମଠ ସ୍ଥାପନ କରିଥିଲେ । ଏହି ମଠ ସ୍ୱର୍ଗଦ୍ୱାର ନିକଟରେ ଅବସ୍ଥିତ । ଋଗ୍‌ବେଦର ପ୍ରସାର ପାଇଁ ଶ୍ରୀକ୍ଷେତ୍ରରେ 'ଗୋବର୍ଦ୍ଧନମଠ, ସାମବେଦର ପ୍ରସାର ପାଇଁ ପଶ୍ଚିମରେ ଦ୍ୱାରକା ଧାମରେ ଶାରଦା ମଠ, ଅଥର୍ବ ବେଦର ପ୍ରସାର ପାଇଁ ଉତ୍ତରରେ ହିମାଳୟର ପାଦଦେଶରେ ବହିକାଠା ଯୋଶୀମଠ, ଦକ୍ଷିଣରେ ଯଜୁର୍ବେଦର ପ୍ରସାର ପାଇଁ 'ଶୃଙ୍ଗେରୀମଠ' ଅବସ୍ଥିତ । ଗୋବର୍ଦ୍ଧନ ମଠର ମହାବାକ୍ୟ ହେଉଛି "ପ୍ରଜ୍ଞାନଂ ବ୍ରହ୍ମ, "ଅୟମାତ୍ମାବ୍ରହ୍ମ" ଶୃଙ୍ଗେରୀମଠର ମହାବାକ୍ୟ ଅହଂବ୍ରହ୍ମାସ୍ମି । ଶଙ୍କରାଚାର୍ଯ୍ୟ ଅଲୌକିକ ମେଧାସମ୍ପନ୍ନ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ତାଙ୍କର ଅଲୌକିକ ବିଦ୍‌ବତ୍ତା ଅସାଧାରଣ ତର୍କ ପଟୁତା ଏବଂ ଅନୁପମ ବିବିଧ ଜ୍ଞାନର ଆଧାର ଯୋଗୁ ଭାରତୀୟମାନେ ଶଙ୍କରଙ୍କୁ ଅବତାର ରୂପେ ଗ୍ରହଣ କରିନେଇଛନ୍ତି । ଶଙ୍କରାଚାର୍ଯ୍ୟ ପୁରୀ ଆଗମନ ବେଳକୁ ଅନ୍ତର୍ବେଦୀ ଉପରେ କୌଣସି ବିଗ୍ରହ ଉପାସିତ ହେଉ ନ ଥିଲେ । ପୂର୍ବରୁ ଶୋଭନ ଦେବଙ୍କ ରାଜତ୍ୱ କାଳରେ ରକ୍ତବାହୁର ଆକ୍ରମଣରୁ ରକ୍ଷା କରିବା ପାଇଁ ରାଜା ଶୋଭନଦେବ ସୋନପୁରର ଗୋପାଳୀ ଗ୍ରାମରେ ଜଗନ୍ନାଥଙ୍କୁ ପାତାଳୀ କରାଇ ତା' ଉପରେ ଏକ ବୃକ୍ଷ ରୋପଣ କରିଥିଲେ । ମାଦଳାପାଞ୍ଜିରୁ ଜଣାଯାଇଛି ଯେ, ପ୍ରାୟତଃ ହଜାର ବର୍ଷ ପୂର୍ବେ ସୋମବଂଶୀ ଉତ୍କଳର ମହାରାଜା ଯଯାତି କେଶରୀଙ୍କ ସମୟରେ ଶଙ୍କରାଚାର୍ଯ୍ୟଙ୍କ ଦିଗ୍‌ଦର୍ଶନ କ୍ରମେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ସୋନପୁର ନିକଟବର୍ତ୍ତୀ ଗୋପାଲୀ ଗ୍ରାମରୁ ୧୪୪ ବର୍ଷ ପାତାଳୀ ଅବସ୍ଥାରୁ ଉଦ୍ଧାର କରାଯାଇ ପୁନଃ ଶ୍ରୀକ୍ଷେତ୍ରରେ ନୂତନ ମନ୍ଦିର ନିର୍ମାଣ କରାଯାଇ ପ୍ରତିଷ୍ଠା କରାଯାଇଥିଲା ଏବଂ ମହାପ୍ରଭୁଙ୍କ ରାଜନୀତି, ମହାପ୍ରସାଦ ଆଦିଶଙ୍କରାଚାର୍ଯ୍ୟଙ୍କ ପରାମର୍ଶକ୍ରମେ ପୁନଃ ଆରମ୍ଭ ହୋଇଥିଲା । ଶଙ୍କରାଚାର୍ଯ୍ୟଙ୍କର ଏହି ମହତ୍ ଅବଦାନ ପାଇଁ ମହାରାଜା ଯଯାତିକେଶରୀ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ଶ୍ରୀମନ୍ଦିର ରୀତିନୀତିରେ ଅଧିକାର ସମ୍ପର୍କରେ ଏକ ଆଜ୍ଞାପତ୍ର ପ୍ରଦାନ କରିଥିଲେ । ସେଥିରେ ଲେଖାଅଛି ଯେ, "ଏ ବଡ଼ ଦେଉଳ ମହାଧିନାୟକ ଧର୍ମ ସେତୁ ସକଳ ପରମ୍ପରା ଧର୍ମଶଙ୍କାଙ୍କୁ ସିଦ୍ଧାନ୍ତ ଦେବେ । ତାହା ମହାନାୟକ, ଭୋଗବିଶୋଇ, ଅହ୍ଲଣିଆ ପରିଛା ପଣ୍ଡା ପ୍ରତିହାରୀ, ଛତିଶା ନିଯୋଗ ମାନିବେ । ଯାତ୍ରା ପର୍ବରେ ଆକଟ ଦର୍ଶନ କରିବେ, ଗହଣରେ ସତାଇଶ ସନ୍ନ୍ୟାସୀ ବ୍ରହ୍ମଚାରୀ ନେବେ । ଏ' ଧୋକଡ଼ି ଛାଡ଼ପତ୍ର ପ୍ରମାଣେ । ଧର୍ମନୀତି ଗତିରେ ଦ୍ୱିବିଧା ଘଟିଲେ ଏହାଙ୍କ ବଚନ ସିଦ୍ଧାନ୍ତ ବୋଲି ସକଳ ମାନିବେ ।" ୧୮୦୩ ମସିହାରେ ଯେତେବେଳେ ଇଷ୍ଟଇଣ୍ଡିଆ କମ୍ପାନୀ ଓଡ଼ିଶା ଦଖଲ କଲେ ଓ ଶ୍ରୀମନ୍ଦିର ଉତ୍ତମ ପରିଚାଳନା ନିମନ୍ତେ ଚିନ୍ତା କଲେ ସେତେବେଳର ପୁରୀ କଲେକ୍ଟର ଚାର୍ଲସ ଗ୍ରୋମ ୧୮୦୫ ଜୁନ୍ ୧୦ ତାରିଖରେ କମ୍ପାନୀକୁ ତାଙ୍କ ରିପୋର୍ଟ ପ୍ରଦାନ କରିଥିଲେ । ସେହି ରିପୋର୍ଟରେ ଶ୍ରୀମନ୍ଦିର ପରମ୍ପରାକୁ ଅନୁଧ୍ୟାନ କରି ସେ ଲେଖିଥିଲେ ଯେ, ଯଦି ଶ୍ରୀମନ୍ଦିରରେ କୌଣସି ଧାର୍ମିକ ବ୍ୟବସ୍ଥା ପ୍ରସଙ୍ଗରେ ନିର୍ଣ୍ଣୟ ଆବଶ୍ୟକ ହୁଏ, ତେବେ ପୁରୀ ଗୋବର୍ଦ୍ଧନପୀଠର ଜଗତ୍‌ଗୁରୁ

ଶଙ୍କରାଚାର୍ଯ୍ୟ ଏବଂ ପୁରୀସ୍ଥିତ କେତେକ ମଠର ଅଧକ୍ଷ ସନ୍ନ୍ୟାସୀ ଓ ମୁକ୍ତିମଣ୍ଡପର ବିଦ୍ୱାନ୍‌ମାନେ ଏହାର ନିର୍ଣ୍ଣୟ ଗ୍ରହଣ କରିବେ । ଶ୍ରୀମନ୍ଦିରର ସେବକମାନେ ଯଥା ଛତିଶା ନିଯୋଗ ନାୟକ, ପୂଜାପଣ୍ଡା, ପୁଷ୍ପାଳକ, ପ୍ରତିହାରୀ, ସୁଆର ଆଦି ସେବା କରୁଥିଲେ ମଧ୍ୟ ସେମାନଙ୍କର ଧାର୍ମିକ ନିର୍ଣ୍ଣୟ ଦେବା ଅଧିକାର ନାହିଁ ବୋଲି ଚାର୍ଲସ ଗ୍ରୋମ ତାଙ୍କ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ।

ବହୁ ପ୍ରାଚୀନ ସମୟରୁ ଜଗନ୍ନାଥ ମନ୍ଦିର ସହିତ ଶଙ୍କରାଚାର୍ଯ୍ୟ ମଠର ଘନିଷ୍ଠ ସମ୍ପର୍କ ରହିଛି ।

ସ୍ୱାଧୀନତା ପରେ ରାଜ୍ୟ ସରକାର ଯେତେବେଳେ ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱ ଗଜପତିଙ୍କଠାରୁ ନିଜ ହାତକୁ ନେବାକୁ ପ୍ରସ୍ତାବ ଦେଲେ ସେତେବେଳେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର ପ୍ରଶାସନ ଆଇନ ୧୯୫୨ ପ୍ରଣୟନ କରି ତାହା ଅଧୀନରେ ଏକ ସ୍ୱତ୍ୱଲିପି (ରେକର୍ଡ ଅପ୍ ରାଇଟସ୍) ପ୍ରସ୍ତୁତ କରାଇଲେ, ଯେଉଁଥିରେ ଶ୍ରୀମନ୍ଦିରର ବିବିଧ ସେବା ପୂଜା, ରୀତିନୀତି ସମ୍ପର୍କରେ ବର୍ଣ୍ଣନା କରାଯାଇଛି । ଶ୍ରୀଜଗନ୍ନାଥ ମନ୍ଦିର ଆଇନ ୧୯୫୫ ଯାହାଦ୍ୱାରା ଶ୍ରୀମନ୍ଦିର ବର୍ତ୍ତମାନ ପରିଚାଳିତ ହେଉଛି ସେଥିରେ ଧାରା ୧୫ (୧)ରେ ସ୍ପଷ୍ଟ ଲେଖାଅଛି ଯେ ଶ୍ରୀମନ୍ଦିରର ସେବାପୂଜା ଏହି ସ୍ୱତ୍ୱଲିପି (ରେକର୍ଡ ଅପ୍ ରାଇଟସ୍) ଅନୁଯାୟୀ ପାଳନ କରାଯିବା ବିଧେୟ । ଏହି ଶ୍ରୀମନ୍ଦିରର ସ୍ୱତ୍ୱଲିପିର ତୃତୀୟ ଭାଗ ପୃଷ୍ଠା ୧୮୪ ଅନୁଯାୟୀ ଗୋବର୍ଦ୍ଧନ ପୀଠାଧୀଶର ଶ୍ରୀମଦ୍‌ଜଗତଗୁରୁ ଶଙ୍କରାଚାର୍ଯ୍ୟଙ୍କ ଅଧିକାର ସମ୍ପର୍କରେ କୁହାଯାଇଛି ଯେ "ଦେଉଳନୀତି ବିଷୟରେ ମତଦେବା ଅଧିକାର ଅଛି ଓ ମନ୍ଦିରର ଧର୍ମ ବ୍ୟବସ୍ଥା ଏହାଙ୍କୁ ପଚାରି କରିବା ନିୟମ, ମୁକ୍ତିମଣ୍ଡପର ନାୟକ ଅଟନ୍ତି ।"

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କର ଶ୍ରୀମନ୍ଦିରରେ କେତେକ ବିଶେଷ ସୁବିଧା ଓ ଅଧିକାର -

* ଏହି ମଠର ପୀଠାଧୀଶ ଶ୍ରୀମନ୍ଦିର ଭିତରକୁ ଦଣ୍ଡଧରି ପ୍ରବେଶ କରିପାରିବେ ଓ ଶ୍ରୀମନ୍ଦିର ଭିତରରେ ଆସନ ପକାଇ ବସିପାରିବେ । ଏ ଅଧିକାର ଅନ୍ୟ କାହାରି ନାହିଁ ।
* ଶଙ୍କରାଚାର୍ଯ୍ୟ ଶ୍ରୀମନ୍ଦିରକୁ ଦର୍ଶନ ପାଇଁ ଆସିଲେ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ବିଶେଷ ବ୍ୟବସ୍ଥା ଗ୍ରହଣ କରାଯାଇଥାଏ ।
* ଶ୍ରୀଗୁଣ୍ଡିଚା ଯାତ୍ରାରେ ଶ୍ରୀବିଗ୍ରହମାନେ ରଥାରୂଢ଼ ହେବା ପରେ ଗଜପତି ମହାରାଜଙ୍କ ଛେରାପହଁରା ନୀତି ପୂର୍ବରୁ ଶଙ୍କରାଚାର୍ଯ୍ୟ ତାଙ୍କ ଶିଷ୍ୟମାନଙ୍କ ଗହଣରେ ଆନୁଷ୍ଠାନିକ ଭାବେ ପ୍ରଥମେ ରଥ ଉପରେ ଶ୍ରୀବିଗ୍ରହମାନଙ୍କୁ ଆକଟ ଦର୍ଶନ କରିପାରିବେ ।
* ଶଙ୍କରାଚାର୍ଯ୍ୟ ହେଉଛନ୍ତି ମୁକ୍ତିମଣ୍ଡପ ପଣ୍ଡିତ ସଭାର ସ୍ଥାୟୀ ସଭାପତି । ଶ୍ରୀମନ୍ଦିର ନୀତି ନିର୍ଘଣ୍ଟ ପାଳନରେ ଶଙ୍କରାଚାର୍ଯ୍ୟଙ୍କର ନିର୍ଣ୍ଣୟ ଓ ମତାମତ ନିଆଯାଇଥାଏ ।
* ପ୍ରତ୍ୟହ ଶ୍ରୀମନ୍ଦିରରୁ ଶଙ୍କରାଚାର୍ଯ୍ୟ ମଠ ଖେଇ ପାଆନ୍ତି ।

ରଥଯାତ୍ରାରେ ଶ୍ରୀବିଗ୍ରହମାନଙ୍କର ପହଣ୍ଡିବିଜେ ସମୟରେ କାଶୀ ବିଶ୍ୱନାଥ ମନ୍ଦିର ପାଖରେ ବାଇଶି ପାହାଚ ଉପରେ ଶ୍ରୀବିଗ୍ରହମାନଙ୍କୁ ଗୋବର୍ଦ୍ଧନ ମଠ ତରଫରୁ ଏକ ପନ୍ତିଭୋଗ କରାଯାଇଥାଏ ।

* ଗୁଣ୍ଡିଚା ଘରେ ପହଣ୍ଡି ସମୟରେ ଓ ନୀଳାଦ୍ରିବିଜେ ସମୟରେ ମଧ୍ୟ ପନ୍ତି ଭୋଗ କରାଯାଇଥାଏ ।

ପୁରୀ ଗୋବର୍ଦ୍ଧନ ମଠରେ ୧୪୫ ଜଣ ମଠାଧୀଶ ବା ଶଙ୍କରାଚାର୍ଯ୍ୟ ଅଭିଷିକ୍ତ ହୋଇଛନ୍ତି । କ୍ରମାନ୍ୱୟରେ ସେମାନଙ୍କର ନାମ ହେଲା- ୧. ପଦ୍ମପାଦ, ୨. ଶୂଳପାଣି, ୩. ନାରାୟଣ, ୪. ବିଦ୍ୟାରଣ୍ୟ, ୫. ବାମଦେବ, ୬. ପଦ୍ମନାଭ, ୭. ଜଗନ୍ନାଥ, ୮. ମଧୁରେଶ୍ୱର, ୯. ଗୋବିନ୍ଦ, ୧୦. ଶ୍ରୀଧର, ୧୧. ମାଧବାନନ୍ଦ, ୧୨. କ୍ରିଷ୍ଣ ବ୍ରହ୍ମାନନ୍ଦ, ୧୩. ରାମାନନ୍ଦ, ୧୪. ବାଗୀଶ୍ୱର, ୧୫. ପରମେଶ୍ୱର, ୧୬. ଗୋପାଳ, ୧୭. ଜନାର୍ଦ୍ଦନ, ୧୮. ଜନନାନନ୍ଦ, ୧୯. ବୃହଦାରଣ୍ୟ, ୨୦. ମହାଦେବ, ୨୧. ପରଂ

ବ୍ରହ୍ମାନନ୍ଦ, ୨୨. ରାମାନନ୍ଦ, ୨୩. ସଦାଶିବ, ୨୪. ହରିଶ୍ୱରାନନ୍ଦ, ୨୫. ବୋଦ୍ଧାନନ୍ଦ, ୨୬. ରାମକୃଷ୍ଣ, ୨୭. ଚିତ୍ତବୋଧାତ୍ମା, ୨୮. ତତ୍ତ୍ୱକେଶ୍ୱର, ୨୯. ଶଙ୍କର, ୩୦. ବାସୁଦେବ, ୩୧. ହୟଗ୍ରୀବ, ୩୨. ସ୍ୱତୀଶ୍ୱର, ୩୩. ବିଦ୍ୟାନନ୍ଦ, ୩୪. ମୁକୁନ୍ଦାନନ୍ଦ, ୩୫. ହିରଣ୍ୟଗର୍ଭ, ୩୬. ନିତ୍ୟାନନ୍ଦ, ୩୭. ଶିବାନନ୍ଦ, ୩୮. ଯୋଗୀଶ୍ୱର, ୩୯. ସୁଦର୍ଶନ, ୪୦. ବ୍ୟୋମକେଶ, ୪୧. ଦାମୋଦର, ୪୨. ଯୋଗାନନ୍ଦ, ୪୩. ଗୋଲକେଶ, ୪୪. କୃଷ୍ଣାନନ୍ଦ, ୪୫. ଦେବାନନ୍ଦ, ୪୬. ଚନ୍ଦ୍ରଚୂଡ଼, ୪୭. ହଳାୟୁଧ, ୪୮. ସିଦ୍ଧ୍ୟସେବ୍ୟ, ୪୯. ତାରକାତ୍ମା, ୫୦. ବୋଦ୍ଧାୟନ, ୫୧. ଶ୍ରୀଧର, ୫୨. ନାରାୟଣ, ୫୩. ସଦାଶିବ, ୫୪. ଜୟକୃଷ୍ଣ, ୫୫. ବିରୂପାକ୍ଷ, ୫୬. ବିଦ୍ୟାରଣ୍ୟ, ୫୭. ବିଶେଶ୍ୱର, ୫୮. ବିନୋଦେଶ୍ୱର, ୫୯. ମହେଶ୍ୱର, ୬୦. ମଧୁସୂଦନ, ୬୧. ରଘୁତ୍ତମ, ୬୨. ରାମଚନ୍ଦ୍ର, ୬୩. ଯୋଗୀନ୍ଦ୍ର, ୬୪. ମହେଶ୍ୱର, ୬୫. ଓଁକାର, ୬୬. ନାରାୟଣ, ୬୭. ଜଗନ୍ନାଥ, ୬୮. ଶ୍ରୀଧର, ୬୯. ରାମଚନ୍ଦ୍ର, ୭୦. ତମ୍ରଖ, ୭୧. ଉଗ୍ରେସର, ୭୨. ଭବାନନ୍ଦ, ୭୩. ଶଙ୍କର୍ଷଣ, ୭୪. ଜନାର୍ଦ୍ଦନ, ୭୫. ଅଖଣ୍ଡାତ୍ମା, ୭୬. ଦାମୋଦର, ୭୭. ଶିବାନନ୍ଦ, ୭୮. ଗଦାଧର, ୭୯. ବିଦ୍ୟାଧର, ୮୦. ବାମନ, ୮୧. ଶଙ୍କର, ୮୨. ନୀଳକଣ୍ଠ, ୮୩. ରାମକୃଷ୍ଣ, ୮୪. ରଘୁତ୍ତମ, ୮୫. ଦାମୋଦର, ୮୬. ଗୋପାଳ, ୮୭. ମୃତ୍ୟୁଞ୍ଜୟ, ୮୮. ଗୋବିନ୍ଦ, ୮୯. ବାମଦେବ, ୯୦. ଗଙ୍ଗାଧର, ୯୧. ସଦାଶିବ, ୯୨. ବାମଦେବ, ୯୩. ଉପମନ୍ୟୁ, ୯୪. ହୟଗ୍ରୀବ, ୯୫. ହରି, ୯୬. ରଘୁତ୍ତମ, ୯୭. ପୁଣ୍ଡରୀକାକ୍ଷ, ୯୮. ପରଶଙ୍କର ତୀର୍ଥ, ୯୯. ବେଦଗର୍ଭ, ୧୦୦. ବେଦାନ୍ତ ଭାସ୍କର, ୧୦୧. ବିଜ୍ଞାନାତ୍ମା, ୧୦୨. ଶିବାନନ୍ଦ, ୧୦୩. ମହେଶ୍ୱର, ୧୦୪. ରାମକୃଷ୍ଣ, ୧୦୫. ବୃଷଧ୍ୱଜ, ୧୦୬. ସୁଧାବୋଧ, ୧୦୭. ସୋମେଶ୍ୱର, ୧୦୮. ଗୋପଦେବ, ୧୦୯. ଶମ୍ଭୁତୀର୍ଥ, ୧୧୦. ଭୃଗୁ, ୧୧୧. କେଶବାନନ୍ଦ, ୧୧୨. ବିଦ୍ୟାନନ୍ଦ, ୧୧୩. ବେଦାନନ୍ଦ, ୧୧୪. ବୋଦ୍ଧାନନ୍ଦ, ୧୧୫. ସୁତପାନନ୍ଦ, ୧୧୬. ଶ୍ରୀଧର, ୧୧୭. ଜନାର୍ଦ୍ଦନ, ୧୧୮. କାମନାଶାନନ୍ଦ, ୧୧୯. ହରିହରାନନ୍ଦ, ୧୨୦. ଗୋପାଳ, ୧୨୧. କୃଷ୍ଣାନନ୍ଦ, ୧୨୨. ମାଧବାନନ୍ଦ, ୧୨୩. ମଧୁସୂଦନ, ୧୨୪. ଗୋବିନ୍ଦ, ୧୨୫. ରଘୁତ୍ତମ, ୧୨୬. ବାମଦେବ, ୧୨୭. ହୃଷୀକେଶ, ୧୨୮. ଦାମୋଦର, ୧୨୯. ଗୋପାଳାନନ୍ଦ, ୧୩୦. ଗୋବିନ୍ଦ, ୧୩୧. ରଘୁତ୍ତମ, ୧୩୨. ରାମଚନ୍ଦ୍ର, ୧୩୩. ଗୋବିନ୍ଦ, ୧୩୪. ରଘୁନାଥ, ୧୩୫. ରାମକୃଷ୍ଣ, ୧୩୬. ମଧୁସୂଦନ, ୧୩୭. ଦାମୋଦର, ୧୩୮. ରଘୁତମ, ୧୩୯. ଶିବ, ୧୪୦. ଲୋକନାଥ, ୧୪୧. ଦାମୋଦର ତୀର୍ଥ, ୧୪୨. ମଧୁସୂଦନ ତୀର୍ଥ, ୧୪୩. ଭାରତୀକୃଷ୍ଣ ତୀର୍ଥ, ୧୪୪. ନିରଞ୍ଜନ ତୀର୍ଥସ୍ୱାମୀ, ୧୪୫. ସମ୍ପ୍ରତି ସ୍ୱାମୀ ନିଶ୍ଚଳାନନ୍ଦ ସରସ୍ୱତୀ ଗୋବର୍ଦ୍ଧନ ମଠର ୧୪୫ତମ ଶଙ୍କରାଚାର୍ଯ୍ୟ ରୂପେ ଗତ ତା ୯.୨. ୧୯୯୨ଠାରୁ ଅଧିଷ୍ଠିତ ହୋଇଛନ୍ତି । (ଶ୍ରୀଜଗନ୍ନାଥ- ପୃ. ୪-୫) ।

**ଶଙ୍ଖ**-*ଦେ.ବି.*- ମଧୁର ସ୍ୱର ଦ୍ୱାରା ଜଗତକୁ ଶାନ୍ତ କରେ । ଶ୍ରୀନାରାୟଣଙ୍କର ହସ୍ତରେ ସୁଶୋଭିତ ଶଙ୍ଖନିଧି । ଶ୍ରୀକୃଷ୍ଣଙ୍କ ଶଙ୍ଖ ପାଞ୍ଚଜନ୍ୟ, ଅର୍ଜୁନଙ୍କ ଶଙ୍ଖ - ଦେବଦତ୍ତ, ଭୀମଙ୍କ ଶଙ୍ଖ- ପୌଣ୍ଡ୍ର, ଯୁଧିଷ୍ଠିରଙ୍କ ଶଙ୍ଖ- ଅନନ୍ତ ବିଜୟ, ନକୁଳଙ୍କ ଶଙ୍ଖ- ସୁଘୋଷ, ସହଦେବଙ୍କ ଶଙ୍ଖ - ମଣିପୁଷ୍ପକ, ଡାହାଣଆଡ଼ ଶଙ୍ଖ ଦକ୍ଷିଣାବର୍ତ୍ତ, ଏହା ପୂଜାରେ ବିଶେଷ ବ୍ୟବହୃତ । ଅଷ୍ଟ ନାଗ ମଧ୍ୟରୁ ଏକ । ଶ୍ରୀକ୍ଷେତ୍ରକୁ ଶଙ୍ଖକ୍ଷେତ୍ର ବୋଲି କୁହାଯାଏ । ଶ୍ରୀମନ୍ଦିରରେ ଶଙ୍ଖ ସେବା ବହୁଦିନରୁ ବନ୍ଦ ହୋଇଯାଇଛି ।
(ପୂ.ଓ.ଭା. - ପୃ. ୭୫୧୬, ଓ.ସାଂ.ଶ. - ପୃ. ୩୩୦) ।

**ଶଙ୍ଖଚକ୍ର ପଡ଼ିଆରୀ**-*ଦେ.ବି.*- ସେବକ ବିଶେଷ । ସାତପୁରୀ ଅମାବାସ୍ୟା ଦିନ ସାତପୁରୀ ତାଟରେ ଜୀରାଗୁଣ୍ଡ ଦ୍ୱାରା ମୁରୁଜରେ ଶଙ୍ଖଚକ୍ର ପକାନ୍ତି । ଏହି ବ୍ୟକ୍ତିଗତ ସେବା ବା ଉପସ୍ୱତ୍ୱ ପର୍ଯ୍ୟାୟଭୁକ୍ତ ।
(ପୁ.ବୋ. - ପୃ. ୩୦୬) ।

**ଶଙ୍ଖଚକ୍ର ଗଦା ପଦ୍ମଧାରୀ**-*ସଂ.ବି.*- ଚାରିହାତରେ ଚାରିଗୋଟି ଆୟୁଧଧାରୀ ବିଷ୍ଣୁ । ନାରାୟଣ ଚତୁର୍ଭୁଜ ମୂର୍ତ୍ତି, ସେ ଚାରି ହାତରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥାନ୍ତି । ଏହାଙ୍କ ଶଙ୍ଖର ନାମ ପାଞ୍ଚଜନ୍ୟ, ଚକ୍ରର ନାମ ସୁଦର୍ଶନ, ଗଦାର ନାମ କୌମୋଦକୀ, ପଦ୍ମର ନାମ ଲୀଳାରବିନ୍ଦ ।
(ପୂ.ଓ.ଭା. - ପୃ. ୭୫୧୮) ।

**ଶଙ୍ଖନାଭି ମଣ୍ଡଳ**-*ସଂ.ବି.*- ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଦକ୍ଷିଣାବର୍ତ୍ତ ଶଙ୍ଖ ସଦୃଶ ହୋଇଥିବାରୁ ଭୁବନ ବିଦିତ ଏହି ପାବନ କ୍ଷେତ୍ର ଶଙ୍ଖ କ୍ଷେତ୍ର ବୋଲି ନୀଳାଦ୍ରି ମହୋତ୍ସବ, ବାମଦେବ ସଂହିତା ଓ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ହୋଇଅଛି । ଶ୍ରୀକ୍ଷେତ୍ର ପଶ୍ଚିମରେ ଶ୍ରୀଲୋକନାଥ ମହାଦେବଙ୍କ ଠାରୁ ପୂର୍ବରେ ବେଲେଶ୍ୱର ମହାଦେବଙ୍କ ମନ୍ଦିର ପର୍ଯ୍ୟନ୍ତ ଦକ୍ଷିଣରେ ମହୋଦଧି ସଂଲଗ୍ନ ସ୍ୱର୍ଗଦ୍ୱାର ଠାରୁ ଉତ୍ତରରେ ମାଟିଆନଦୀ ପର୍ଯ୍ୟନ୍ତ ସୁବିସ୍ତୃତ ଭୂଖଣ୍ଡ ଶଙ୍ଖନାଭି ମଣ୍ଡଳ ନାମରେ ପରିଚିତ ।
(କ୍ଷେ.ସ.) ।

**ଶଙ୍ଖମହୁରୀ**-*ଦେ.ବି.*- ଶଙ୍ଖ ମହୁରୀ ଉଭୟ ବାଦ୍ୟ ଶୁଭ ଅନୁକୂଳ କାର୍ଯ୍ୟରେ ବାଜେ । ବିବାହ, ବ୍ରତ ଓ ଅନ୍ୟାନ୍ୟ ଶୁଭ ମାଙ୍ଗଳିକ କାର୍ଯ୍ୟରେ ଏହା ବଜାଇବା ବିଧି ରହିଛି । ଶ୍ରୀଜଗନ୍ନାଥଙ୍କ ବିଭିନ୍ନ ଯାତ୍ରାନୁଷ୍ଠାନମାନଙ୍କରେ ମଧ ଏହା ବଜାଇବା ବିଧି ଅଛି ।
(ଓ.ସାଂ.ଶ.- ପୃ. ୩୩୧) ।

**ଶଙ୍ଖୁଆ ସେବକ**-*ଦେ.ବି.*- ଶଙ୍ଖବାଦକ । ଦେବମନ୍ଦିରରେ, ବିବାହ ଓ ଅନ୍ୟାନ୍ୟ ଶୁଭ ମାଙ୍ଗଳିକ କାର୍ଯ୍ୟ ପୂଜା ପାର୍ବଣରେ ଯେ ଶଙ୍ଖ ବଜାଏ । ବିବାହ କାର୍ଯ୍ୟରେ ଉଭୟ ଶଙ୍ଖୁଆ ଓ ମହୁରିଆର ଆବଶ୍ୟକ ଥାଏ । ଶ୍ରୀମନ୍ଦିରର ଶଙ୍ଖବାଦକ । ବାଜନ୍ତୀ ସହ ଶଙ୍ଖ ବଜାଇ ପଟୁଆରରେ ଚାଲନ୍ତି । ସକାଳ ଧୂପ ପଟୁଆରରେ ଜଗମୋହନରେ ସକଳ ବିଜେ, ଯାନିଯାତ୍ରା ନୀତିରେ ଶଙ୍ଖ ବଜାନ୍ତି । ପ୍ରାତଃକାଳରେ ପାଣି ଶଙ୍ଖୁଆ ସେବକ ଶଙ୍ଖ ବଜାଉଥିଲେ । ଏ ସେବକ ଏବେ ନାହାନ୍ତି, ଅନ୍ୟ କେହି ନିଯୁକ୍ତି ହୋଇନାହାନ୍ତି ।
(ପୂ.ଓ.ଭା. - ପୃ. ୭୫୨୬) ।

**ଶଙ୍ଖକ୍ଷେତ୍ର**-*ଦେ.ବି.*- ଉତ୍କଳ ଖଣ୍ଡରେ ପୁରୁଷୋତ୍ତମ କ୍ଷେତ୍ରକୁ ଶଙ୍ଖକ୍ଷେତ୍ର ରୂପରେ ବର୍ଣ୍ଣନା କରାଯାଇଛି । ଏହି କ୍ଷେତ୍ରର ଆକୃତି ଶଙ୍ଖ ସଦୃଶ ।
(ଓ.ସାଂ.ଶ. - ପୃ. ୩୩୧, ପୂ.ଓ.ଭା. - ପୃ. ୭୫୧୮) ।

**ଶଙ୍ଖୁଡ଼ି/ସଙ୍ଖୁଡ଼ି**-*ଦେ.ବି.*- ଜଳଦ୍ୱାରା ଅଗ୍ନିରେ ପକ୍ୱ ହୋଇଥିବା ଖାଦ୍ୟ । ଜଳରେ ସିଦ୍ଧ ହୋଇଥିବା ଖାଦ୍ୟକୁ ଶଙ୍ଖୁଡ଼ି ଓ ଜଳରେ ସିଦ୍ଧ ହୋଇ ନ ଥିବା ଏବଂ ଘୃତ ତୈଳରେ ପକ୍ୱ ହୋଇଥିବା ଖାଦ୍ୟକୁ ନିଶଙ୍ଖୁଡ଼ି ବୋଲାଯାଏ । ଯଥା- ଭାତ, ଡାଲି, ତିଅଣ, ମଣ୍ଡା, ଏଣ୍ଡୁରି, ଚକୁଳି, ଚାଉଳଖିରି ଆଦି ଶଙ୍ଖୁଡ଼ି । ମିଠାଇ କାକରା, ଆରିଷା, ଗହମଖିରୀ, ଚୂଡ଼ାଘଷା, ଗହମ ତିଆରି ଘୃତପକ୍ୱ ପିଠା, ଉଖୁଡ଼ା ଆଦି ଜଳଖିଆ ସାମଗ୍ରୀ ନିଶଙ୍ଖୁଡ଼ି । ଶଙ୍ଖୁଡ଼ି ପଦାର୍ଥକୁ ଅନ୍ୟ କେହି ଲୋକ ଛୁଇଁଦେଲେ ତାହା ମାରା ହୋଇଯାଏ । ମାତ୍ର ନିଶଙ୍ଖୁଡ଼ି ପଦାର୍ଥରେ ସ୍ପର୍ଶ ଦୋଷ ଲାଗେ ନାହିଁ । ଭଜା କିମ୍ବା ତରକାରୀ ଲୁଣ ପଡ଼ି ରନ୍ଧା ହୋଇଥିଲେ ତାହା ଶଙ୍ଖୁଡ଼ି ହୋଇଥାଏ । କିନ୍ତୁ ଲୁଣ ନ ପଡ଼ିଥିଲେ ତାହା ନିଶଙ୍ଖୁଡ଼ି ହୋଇଥାଏ । ଚାଉଳ ଓ ବିରିପିଠା ଶଙ୍ଖୁଡ଼ିରେ ଗଣାହୁଏ କିନ୍ତୁ ଗହମ ଅଟା ରୁଟି ଓ ପିଠା ନିଶଙ୍ଖୁଡ଼ି ଅଟେ । ଶଙ୍ଖୁଡ଼ି ପଦାର୍ଥକୁ ଖାଇବା ପୂର୍ବରୁ ବ୍ରାହ୍ମଣ ଚଳୁ କରିଥାନ୍ତି, କିନ୍ତୁ ନିଶଙ୍ଖୁଡ଼ି ଖାଦ୍ୟ ପାଇଁ ଚଳୁ କରିବା ଦରକାର ହୁଏ ନାହିଁ । ଶଙ୍ଖୁଡ଼ି ହେଉ ବା ନିସଙ୍ଖୁଡ଼ି ହେଉ କୌଣସି ଖାଦ୍ୟକୁ ଜଣେ ବ୍ୟକ୍ତି ଖାଇଲେ ଅବଶିଷ୍ଟ ଖାଦ୍ୟ ଅଇଁଠା (ଉଚ୍ଛିଷ୍ଟ) ହୁଏ । କିନ୍ତୁ

ଶଙ୍ଖୁଡ଼ି ପଦାର୍ଥ ଅଇଁଠା ହେବାର ନିୟମ ବଡ଼ କଡ଼ା । ଶଙ୍ଖୁଡ଼ି ପଦାର୍ଥକୁ ଇତର ଜାତୀୟ ବ୍ୟକ୍ତି ଛୁଇଁଦେଲେ ତାହା ମାରା ବା ଖାଦ୍ୟ ପାଇଁ ଉପଯୁକ୍ତ ହୁଏ ନାହିଁ, କିନ୍ତୁ ନିଶଙ୍ଖୁଡ଼ି ପଦାର୍ଥ ସମ୍ବନ୍ଧରେ ଏତେ କଡ଼ା ନିୟମ ପ୍ରତିପାଳିତ ହୁଏ ନାହିଁ ଓ ଏହାକୁ ଇତର ଶ୍ରେଣୀର ଲୋକେ ଛୁଇଁଲେ ତାହା ମାରା ହୁଏ ନାହିଁ । ସମ୍ଭବତଃ ଲବଣ (କ୍ଷାର) ମିଶାଯାଇ ପକ୍ୱ ହୋଇଥିବା ଖାଦ୍ୟକୁ ନୀଚ ଜାତିର ଲୋକ ଛୁଇଁଲେ ତାହା ମାରା ହେବା ଦୃଷ୍ଟିରୁ ଏ ଶଙ୍ଖୁଡ଼ି ଶବ୍ଦ ଉତ୍ପତ୍ତି ହୋଇଛି । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ନିମନ୍ତେ ଉଭୟ ଶଙ୍ଖୁଡ଼ି ଓ ନିଶଙ୍ଖୁଡ଼ି ଭୋଗ ଲାଗି ହୋଇଥାଏ । ପୂଜାପଣ୍ଡା ଆସି ବଡ଼ଠାକୁରଙ୍କଠାରୁ ଆରମ୍ଭ କରି ଶ୍ରୀଜଗନ୍ନାଥଙ୍କ ପର୍ଯ୍ୟନ୍ତ ଯେଉଁ ଥାଳି ପଡ଼ିଥାଏ ତାହାର ବାହାର ସୀମାରେ ମୁରୁଜ ବୁଲାଇ ପନ୍ତି କାଟନ୍ତି । ଲକ୍ଷ୍ମୀଙ୍କ ପାଖରେ ମଧ ଏକ ଛୋଟ ପନ୍ତି ହୁଏ । ଭୋଗ ମୁରୁଜ କଟା ସୀମା ଭିତରେ ରହିଲେ ମହାପ୍ରସାଦ ହୁଏ, କିନ୍ତୁ ବାହାରେ ରହିଲେ ତାହା ଶଙ୍ଖୁଡ଼ି ହୁଏ ।
(ପୁ.ଓ.ଭା.-ପୃ ୭୫୨୭, ଶ୍ରୀ.ସ୍ୱ. ୨ୟ-ପୃ୧୯) ।

**ଶାଙ୍ଖେତ୍ରା**-*ଦେ.ବି.*- ପତ୍ରୀବଡୁ ମଧ୍ୟରୁ ଏକ ଗୋଷ୍ଠୀ ସେବକ । ଏହାଙ୍କ ଦାୟିତ୍ୱରେ ଶଙ୍ଖ ରହେ । (ପୁ.ବୋ. - ପୃ. ୩୦୬) ।

**ଶବରପଲ୍ଲୀ**- *ଦେ.ବି.*- ଏକ ପଲ୍ଲୀ ବା ଛୋଟ ଗାଁ ଯେଉଁଥିରେ ଶବରମାନେ ରହନ୍ତି । ନବକଳେବର ସମୟରେ ସେହି ପ୍ରକାରରେ ଏକ ଶବରପଲ୍ଲୀ ନିର୍ମାଣ କରାଯାଇଥାଏ । ଦାରୁ ଅନ୍ୱେଷଣରେ ଆସିଥିବା ସେବକ ଦଇତା ଏଠାରେ ବିଶ୍ରାମ ନେବା ସଙ୍ଗେ ସଙ୍ଗେ ବନଯାଗପର୍ବରେ ଦାରୁ ଚିହ୍ନଟ କରିବାକୁ ଯାଆନ୍ତି । ଦାରୁ ଚିହ୍ନଟ ପରେ ଯଥାବିଧି ଶଗଡ଼ିରେ ପାଟ ଦଉଡ଼ିରେ ବାନ୍ଧିବା ଓ ଆଜ୍ଞାମାଳ ପ୍ରଦାନ ଇତ୍ୟାଦି କାର୍ଯ୍ୟ ଏହି ଠାରେ ହୁଏ । (ଶ୍ରୀ.ସ୍ୱ. - ପୃ. ୬୪) ।

**ଶମ୍ଭୁ ଏକାଦଶୀ**-*ଦେ.ବି.*- ସୋମବାର ଦିନ ଏକାଦଶୀ ପଡ଼ିଲେ ତାକୁ ଶମ୍ଭୁ ଏକାଦଶୀ କୁହାଯାଏ । ଆଷାଢ଼ ମାସ ଶୟନ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ଯାଏଁ ବିଗ୍ରହମାନେ ଏପରି ଲୋକନାଥଙ୍କ ପାଖକୁ ଯାଆନ୍ତି ନାହିଁ । ଭକ୍ତ ଚତୁର୍ମାସ୍ୟାରେ ଲୋକନାଥ ସେବକ ଆସି ଲୋକନାଥଙ୍କୁ ଓ ମଦନମୋହନଙ୍କୁ ଜୟବିଜୟ ଦ୍ୱାରକୁ ଆଣି ସେହିପରି ବନ୍ଦାପନା କରନ୍ତି । ଚନ୍ଦନଯାତ୍ରାରେ ଓ ରୁକ୍ମିଣୀ ହରଣରେ ଶମ୍ଭୁ ଏକାଦଶୀ ପଡ଼ିଲେ ବିଅଁମାନେ ଶ୍ରୀଲୋକନାଥ ମନ୍ଦିର ଯାଆନ୍ତି । କିନ୍ତୁ ଅନ୍ୟ ଶମ୍ଭୁ ଏକାଦଶୀରେ ଶ୍ରୀଲୋକନାଥଙ୍କ କାହିଆ ତାଙ୍କ ପାଲିଙ୍କି ଆଣି ତାଙ୍କୁ ଲୋକନାଥଙ୍କ ମନ୍ଦିରକୁ ଘଣ୍ଟ ଛତାର ସହ ଯାଆନ୍ତି । ବାନାୟରଙ୍କ ଗମ୍ଭୀରାରେ ଠାକୁରମାନେ ରହନ୍ତି, ପନ୍ତି ଭୋଗ ହୁଏ । ପର୍ବଯାତ୍ରା ଯୋଗାଣିଆ ଗୋଦାମଘରୁ ଖଇ, କଦଳୀ, କୋରା ସେଠାକୁ ନିଏ । ସୁଦୁସୁଆର ଆସ୍ଥାନ ପଢ଼ିଆରୀ ଚାଉଳ, କର୍ପୂର, ବଳିତା, ଚନ୍ଦନ, ଫୁଲ, ବେଲପତ୍ର ଦେଇ ଏଠାରେ ପୂଜା କରନ୍ତି । ପାଳିଆ ପୂଜାପଣ୍ଡା ସେଠାକୁ ଯାଇ ଭୋଗ କରନ୍ତି । ଆଳତି ବନ୍ଦାପନା ପରେ ଦୁଇଠାକୁର ମଦନମୋହନ ଯାଇଥିବା ପାଲିଙ୍କିରେ ଏକତ୍ର ଫେରନ୍ତି । ବାସେଳି ସେହିବାଟେ ପଶ୍ଚିମଦ୍ୱାର ଦେଇ ମଙ୍ଗଳାଙ୍କ ପାଖକୁ ଆସନ୍ତି । ଜୟବିଜୟ ଏକାଦଶୀ ଲାଗି ନକ୍ଷତ୍ର ବନ୍ଦାପନା ପରେ ପୂଜା ଆଳତି ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୩) ।

**ଶୟନ ଏକାଦଶୀ**-*ଦେ.ବି.*- ଶ୍ରୀମନ୍ଦିରରେ ଆଷାଢ଼ ଶୁକ୍ଳ ଏକାଦଶୀକୁ ଶୟନ ଏକାଦଶୀ କୁହାଯାଏ । ଏହି ଦିନ ରଥ ଉପରେ ଠାକୁରମାନଙ୍କର ଏକାଦଶୀର ନୀତି ଅନ୍ୟାନ୍ୟ ଏକାଦଶୀର ନୀତି ପରି ହୁଏ । ଶ୍ରୀମନ୍ଦିରରେ ବିଜେ କରିବା ପରେ ଶୟନ ଘର କୋଠ ସୁଆଁସିଆ ଦେଇଥିବା ଶେଯ ଖଟ, ଦରଜୀ ଦେଇଥିବା ଶେଯ ମାଣ୍ଡିରେ ଶୟନ କରନ୍ତି । ମୁଦିରସ୍ତ ହାତୁଆଣି ପ୍ରସାଦ ଲାଗି, ପୁଷ୍ପାଞ୍ଜଳି, କର୍ପୂର ଆଳତୀ ଓ ସାତକାହାଳୀ ସଞ୍ଜବତୀ, ଦୂର୍ବାକ୍ଷତ

ବନ୍ଦାପନା କରି ଠାକୁର ରହିଥିବା ପେଡ଼ା ବନ୍ଦ କରନ୍ତି । କେହି କେହି ଏହାକୁ ଶୟନ ଯାତ୍ରା କହିଥାନ୍ତି । ଆଷାଢ଼ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ପର୍ଯ୍ୟନ୍ତ ହରି ଶୟନ କରିଥାନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୮୩, ପୂ.ଓ.ଭା. -ପୃ. ୭୫୭୬) ।

**ଶୟନଘର**-*ଦେ. ବି.*- ଶ୍ରୀମନ୍ଦିରର ଜଗମୋହନ ମଧ୍ୟରେ ହରିଶୟନ ନିମନ୍ତେ ଉଦ୍ଦିଷ୍ଟ ଘର । (ପୁ.ବୋ. - ପୃ. ୩୦୬) ।

**ଶୟନଠାକୁର**-*ଦେ. ବି.*- ସୁବର୍ଣ୍ଣ ନିର୍ମିତ ଅଷ୍ଟଭୁଜ ଯୁକ୍ତ ଅର୍ଦ୍ଧନାରୀଶ୍ୱର (ଲକ୍ଷ୍ମୀ-ନାରାୟଣ) ମୂର୍ତ୍ତି । ଏହାଙ୍କ ବାମ (ନାରୀ) ପଟ ହସ୍ତରେ ଦର୍ପଣ, ପଦ୍ମ, ପୁସ୍ତକ ଓ କଳସ ଏବଂ ଡାହାଣ ପଟ ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ରହିଛି । ବଡ଼ସିଂହାର ପରେ ଭଣ୍ଡାର ମେକାପ ସେବକ ତାଙ୍କୁ ନେଇ ସିଂହାସନରେ ବିଜେ କରାନ୍ତି । ସେଠାରେ ମାଳଫୁଲ ଲାଗି, ପଇଡ଼, ବିଡ଼ିଆ ମଣୋହି ହେବା ପରେ ତାଙ୍କୁ ଜୟବିଜୟ ଦ୍ୱାରଠାରେ ଡମ୍ବରୁରେ ବିଜେ କରାଯାଏ । ସେଠାରେ ପୁନର୍ବାର ପଇଡ଼, ବିଡ଼ିଆ ମଣୋହି, କର୍ପୂର ଆଳତି, ସଞ୍ଜବତୀ ଆଳତି, ପୁଷ୍ପାଞ୍ଜଳି ପରେ ଜଗନ୍ନାଥଙ୍କ ରତ୍ନପଲଙ୍କରେ ଶୟନ କରାଇ ଦିଆଯାଏ ଓ ପରେ ଭଣ୍ଡାର ଘରକୁ ବିଜେ କରାଇ ନିଆଯାଏ । ସାମ୍ବତ୍ସରିକ ଶୟନ ନୀତି, ଏହି ନୀତି ନିମନ୍ତେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ନିମନ୍ତେ ନାରାୟଣ, ବାସୁଦେବ ଓ ଭୁବନେଶ୍ୱରୀ ସୁବର୍ଣ୍ଣ ପ୍ରତିମା, ଆଷାଢ଼ ଶୁକ୍ଳ ଏକାଦଶୀରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ଚାରିମାସ ଶୟନର ସମୟ । ତିନି ଶୟନ ଠାକୁରଙ୍କୁ ଖଟ ଶେଯଘର ଉପର ଶୟନ ଘରେ ଶୁଆଇବା ବେଳକୁ ଜଗନ୍ନାଥ ରଥରେ ଥାଆନ୍ତି । ଚାରିମାସ ମଧ୍ୟରେ ଠିକ୍ ଦୁଇମାସ ପରେ ଭାଦ୍ର ଶୁକ୍ଳ ଏକାଦଶୀ ଦିନ ଠାକୁରଙ୍କର ପାର୍ଶ୍ୱ ପରିବର୍ତ୍ତନ କରାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୨୧୧) ।

**ଶରଣ ପଞ୍ଜର**-*ଦେ. ବି.*- ଉଦ୍ଧାର କର୍ତ୍ତା, ରକ୍ଷାକର୍ତ୍ତା, ବିପଦ ନାଶନ କର୍ତ୍ତା, ପାଳନକର୍ତ୍ତା, ଯେ ବିପଦ ଆପଦରୁ ରକ୍ଷା କରି ଠିକ୍ ସମୟରେ ଶରଣ ଦିଅନ୍ତି, ତାଙ୍କୁ ଶରଣ ପଞ୍ଜର ବୋଲାଯାଏ । ଅନ୍ୟ ଅର୍ଥରେ ଈଶ୍ୱର ବା ଶ୍ରୀଜଗନ୍ନାଥ ହେଉଛନ୍ତି ସର୍ବଶକ୍ତିମାନ ଓ ସର୍ବ ମଙ୍ଗଳମୟ ଠାକୁର । (ଓ.ସାଂ.ଶ. - ପୃ. ୩୩୨) ।

**ଶରଧାବାଲି**-*ଦେ. ବି.*- ବଡ଼ଶଙ୍ଖଠାରୁ ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ବାଲୁକାମୟ ଅଞ୍ଚଳ । ଏବେ କିନ୍ତୁ ତାହା ସମ୍ପୂର୍ଣ୍ଣ ପ୍ରଶସ୍ତ ପିଚୁ ରାସ୍ତାରେ ପରିଣତ । ପୂର୍ବେ ଏହି ସ୍ଥାନରେ ଶଙ୍ଖୁଆ ନଦୀର ଏକ ଧାର 'ମାଳିନୀ' ନଈ ବଡ଼ଶଙ୍ଖ ଓ ଗୁଣ୍ଡିଚା ମନ୍ଦିରକୁ ପୃଥକ କରୁଥିଲା । ଖ୍ରୀ. ୧୨୭୦ରେ ରାଜା ନରସିଂହଦେବଙ୍କ ରାଣୀ 'ଶ୍ରଦ୍ଧାଦେବୀ'ଙ୍କ ତତ୍ତ୍ୱାବଧାନରେ ଏହି ନଦୀ ଉପରେ ସେତୁ ବନ୍ଧାଯାଇ ଏହି ଅଞ୍ଚଳକୁ ରଥଚାଳନା ଉପଯୋଗୀ କରାଯାଇଥିଲା । ରାଣୀ ଶ୍ରଦ୍ଧାଦେବୀଙ୍କ ନାମାନୁସାରେ ଏହି ବିସ୍ତୀର୍ଣ୍ଣ ଅଞ୍ଚଳ ଶରଧାବାଲି ଓ ସେତୁର ନାମ ବଡ଼ଶଙ୍ଖ ହୋଇଛି । ଶ୍ରୀଜଗନ୍ନାଥଙ୍କ ଚେତନାରେ ଶରଧାବାଲିର ପ୍ରତିଟି ଧୂଳିକଣା ଭକ୍ତଜନର କପାଳ ଚନ୍ଦନ ବୋଲି ବିବେଚିତ ହୋଇଥାଏ । ଶରଧାବାଲିର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଶରଧାବାଲିର ମହତ୍ତ୍ୱ ଓ ମୂଲ୍ୟବୋଧ ସମ୍ପର୍କରେ ଏକ ପୌରାଣିକ ଉପାଖ୍ୟାନ ଥିବାର ଜଣାଯାଏ । ରାଜା ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କରି ଶ୍ରୀଜୀଉଙ୍କୁ ପାଇଥିଲେ ଗୁଣ୍ଡିଚା ମନ୍ଦିରରେ । ତେଣୁ ଏହି ବେଦୀ ଯଜ୍ଞବେଦୀ ବା ଅନ୍ତର୍ବେଦୀ ନାମରେ ପରିଚିତ । ସେଥିପାଇଁ ଜୀଉମାନେ ବର୍ଷରେ ଥରେ ଆସନ୍ତି ନିଜ ଜନ୍ମବେଦୀକୁ । ପ୍ରଥମେ ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀକ୍ଷେତ୍ରରେ ଯାହା ଦେଖିଲେ ସେଥିରେ ସେ ବିବ୍ରତ ହୋଇପଡ଼ିଲେ । ଚତୁର୍ଦ୍ଦିଗରେ ରାଶି ରାଶି ବାଲି ତାଙ୍କର ଦୃଷ୍ଟି ପଥାରୂଢ଼ ହେଲା ଏବଂ ଶବର ପୂଜିତ ନୀଳମାଧବଙ୍କର ସ୍ଥିତି ଏଇ ବାଲୁକାରାଶି ଭିତରେ ଅବଲୁପ୍ତ ହୋଇଯାଇଥିଲା । ବିକଳ ହୋଇ ପ୍ରଳାପ କରିଥିଲେ ରାଜା ଇନ୍ଦ୍ରଦ୍ୟୁମ୍ନ ।

କିଛି ସମୟ ପରେ ନାରଦ ଆବିର୍ଭୂତ ହୋଇ ରାଜାଙ୍କୁ ଆଶ୍ୱାସନା ଦେଇ କହିଥିଲେ, ତୁମେ ଯାଇ ନୀଳକଣ୍ଠ ସ୍ୱୟଂଭୂଙ୍କ ଦକ୍ଷିଣ ପାର୍ଶ୍ୱସ୍ଥ ଭଗବାନ ଯଜ୍ଞନୃସିଂହଙ୍କ ଉପାସନା କର । ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରଦ୍ଧାର ସହ ଆରମ୍ଭ କରିଥିଲେ ନୃସିଂହ ଉପାସନା । ଅଶେଷ ଶ୍ରଦ୍ଧାର ସହ ବାଲୁକାରାଶି ଉପରେ ବସି ଧ୍ୟାନସ୍ଥ ହୋଇ ତାଙ୍କର ଈପ୍ସିତ ଫଳପ୍ରାପ୍ତ ହୋଇଥିବାରୁ ସେହିଦିନଠାରୁ ଏହି ବାଲିର ନାମ ହୋଇଛି ଶରଧାବାଲି ।
(କ୍ଷେ.ସ.) ।

**ଶସ୍ତ୍ର**-*ସଂ.ବି.*- ଶ୍ରୀମନ୍ଦିରର ଶାରଦୀୟ ତିନିପୂଜାରେ ବିମଳାଙ୍କ ପାଖରେ ସପ୍ତମୀ, ଅଷ୍ଟମୀ ଓ ନବମୀ ପୂଜାରେ ଶ୍ରୀମନ୍ଦିର ମଧ୍ୟସ୍ଥ ବିମଳା ମନ୍ଦିରରେ ଠାକୁରାଣୀଙ୍କ ଦ୍ୱାରା ବ୍ୟବହୃତ ହେଉଥିବା ଖଡ଼୍ଗ ।
(ପୁ.ବୋ. - ପୃ. ୩୦୭) ।

**ଶସ୍ତ୍ରବୈଦ୍ୟ**-*ସଂ.ବି.*- ବୈଦ୍ୟ ସେବକ ବିଶେଷ । ଶଲ୍ୟ ଚିକିତ୍ସକ । ଅଣସର ଘରେ ଶ୍ରୀଜୀଉ ଥିବା ସମୟରେ ଉଭୟ କ୍ଷେତ୍ର ବୈଦ୍ୟ ଓ ଶସ୍ତ୍ର ବୈଦ୍ୟ ନୀତି ଅନୁସାରେ ଠାକୁରଙ୍କର ସେବା କରନ୍ତି ।
(ଉ.ଇ.ଅ.ଅ. - ପୃ. ୩୪୭) ।

**ଶ୍ମଶାନ**-*ସଂ.ବି.*- ପୁରୀର (ଶ୍ରୀକ୍ଷେତ୍ରର) ଶ୍ମଶାନ ସ୍ୱର୍ଗଦ୍ୱାର । ଶ୍ରୀଜଗନ୍ନାଥଙ୍କ ନବକଳେବର ସମୟରେ ପୁରୁଣା ଘଟର ସମାପ୍ତି ସ୍ଥାନ କୋଇଲି ବୈକୁଣ୍ଠ । ଏଠାରେ ଚତୁର୍ଦ୍ଧା ଦାରୁବିଗ୍ରହଙ୍କୁ ପାତାଳୀ କରାଯାଏ ।
(ଓ.ସାଂ.ଶ. - ପୃ. ୩୩୯) ।

**ଶାକମ୍ଭରୀ**-*ଦେ.ବି.*- ଶିବାନୀ, ଦେବୀ ଦୁର୍ଗା ।
(ଓ.ସାଂ.ଶ. - ପୃ. ୩୩୪) ।

**ଶାକରା**-*ଦେ.ବି.*- ଶ୍ରୀମନ୍ଦିରର ଏକ ତରକାରୀ ବିଶେଷ । କଖାରୁ, ତେନ୍ତୁଳି ମଣ୍ଡ ଓ ଗୁଡ଼ ମିଶି ପ୍ରସ୍ତୁତ ଏକ ତରକାରୀ ।
(ଶ୍ରୀ.ଚୈ.ଦୀ.ବ୍ୟା.- ପୃ. ୨୫୬) ।

**ଶାଗପୋରିବା**-*ଦେ.ବି.*- ଶାଗ କାଟିବାକୁ ଶାଗ ପୋରିବା କୁହାଯାଏ ।
(ଶ୍ରୀ.ଶ. - ପୃ. ୧୬୦) ।

**ଶାଳଗ୍ରାମ**-*ଦେ.ବି.*- ଗଣ୍ଡକୀ ନଦୀ କୂଳରେ ବହୁଳ ଭାବରେ ଶାଳଗଛ ଥିବା ଏକ ଗ୍ରାମ । ଏଠାରେ ମନୋରମ ଚିକ୍କଣ ଶିଳା ଖଣ୍ଡମାନ ମିଳୁଥିବାରୁ ଏହାର ନାମ ଶାଳଗ୍ରାମ ହୋଇଛି । ପୁରାଣରେ ଉଲ୍ଲେଖ ଅଛି ଯେ, ବଜ୍ରକୀଟ ଦ୍ୱାରା ଛିଦ୍ରଯୁକ୍ତ ହୋଇଥିବା ଏହି ଶିଳା ଖଣ୍ଡ ସବୁ ବିଷ୍ଣୁଙ୍କର ଅଙ୍ଗବିଶେଷ । ତେଣୁ ଏହା ପୂଜ୍ୟ । ଅଠର ପ୍ରକାର ଶାଳଗ୍ରାମ ରହିଛି । ବର୍ତ୍ତୁଳାକାର ଶାଳଗ୍ରାମ ଲକ୍ଷ୍ମୀପ୍ରଦ ହୋଇଥିବାରୁ ମନ୍ଦିରରେ ଏହାକୁ ପୂଜା କରାଯାଏ । 'ଓଁ ନମୋ ନାରାୟଣାୟ' ମନ୍ତ୍ର ଦ୍ୱାରା ଶାଳଗ୍ରାମଙ୍କୁ ପୂଜା କରାଯାଏ । ଶାଳଗ୍ରାମର ଶୋଇବା ବସିବା ସମାନ । ଲୋକ ବିଶ୍ୱାସ ଅଛି ଯେ, ରତ୍ନବେଦୀର ଚତୁଃପାର୍ଶ୍ୱରେ ଏକ ଲକ୍ଷ ଆଠ ମୂର୍ତ୍ତି ଶାଳଗ୍ରାମ ପ୍ରୋଥିତ ହୋଇଛନ୍ତି ।
(ଓ.ସାଂ.ଶ. - ପୃ. ୩୩୪) ।

**ଶାଳିଅନ୍ନ**-*ଦେ.ବି.*- ଅରୁଆ ଚାଉଳ ପାକରେ ଗୁଆଘିଅ, ଫାଳଟଭା ଓ ଖରଡ଼ା ଲବଣ ମିଶ୍ରିତ ଗରମ ଅନ୍ନ ।
(ଓ.ସାଂ.ଶ. - ପୃ. ୩୩୪) ।

**ଶାନ୍ତିଜଳ**-*ଦେ.ବି.*- ନବକଳେବର ବିଧିରେ ତିନିଜଣ ପୂଜାପଣ୍ଡା ଠାକୁରଙ୍କ ମହାସ୍ନାନ କଳାପରେ ଠାକୁରଙ୍କ ଶ୍ରୀମସ୍ତକରେ ଶାନ୍ତିଜଳ ଛିଞ୍ଚନ୍ତି । ଏହା ତିନିଗୋଟି ମାଟି କଳସରେ ରଖାଯାଇଥାଏ ।
(ଶ୍ରୀ.ଶ. - ପୃ. ୧୬୦) ।

**ଶିକାଧୁଆ ସୁଆର**-*ଦେ.ବି.*- ରୋଷଘରୁ ଛେକ ବୋହିବା ନିମନ୍ତେ ବ୍ୟବହୃତ ହେଉଥିବା ଶିକା ଓ ବାହୁଙ୍ଗି ଧୋଇବା ସେବକ ।
(ଉ.ଇ.ଅ.ଅ.- ପୃ. ୩୪୨) ।

**ଶିଙ୍ଗାରୀ**-*ସଂ.ବି.*- ଶୃଙ୍ଗାରକାରୀ, ବେଶକାରୀ, ଦେବତା, ରାଜା ଓ ରାଣୀଙ୍କର ବେଶକାରୀ ସେବକ ।
(ଓ.ସାଂ.ଶ. - ପୃ. ୩୩୫) ।

**ଶିରକପଡ଼ା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ଅଙ୍ଗଲାଗି ବସ୍ତ୍ର । ଏହା ଗୋଲାପୀ ରଙ୍ଗର ସୂତା ବା ଖଦୀର ପତଳା ବସ୍ତ୍ର । ଠାକୁରଙ୍କ ମସ୍ତକରେ ଏହା ଲାଗି ହୁଏ ।
(ଶ୍ରୀ.ଜି. - ପୃ. ୨୨୧) ।

**ଶିରପେଞ୍ଚ**-*ଦେ.ବି.*- ଠାକୁରଙ୍କ ଶ୍ରୀମସ୍ତକରେ ବ୍ୟବହୃତ ସୁବର୍ଣ୍ଣ ଅଳଙ୍କାର । (ପୁ.ବୋ. - ପୃ. ୩୦୭) ।

**ଶିବ ମନ୍ଦିର**- ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତଥା ସୁଦର୍ଶନଙ୍କୁ ନେଇ ଚତୁର୍ଦ୍ଧା ମୂର୍ତ୍ତି । ଶ୍ରୀଜଗନ୍ନାଥ ବିଷ୍ଣୁ, ବଳଭଦ୍ର ମହେଶ୍ୱର ଓ ସୁଭଦ୍ରା ବ୍ରହ୍ମାଙ୍କର ପ୍ରତୀକ । ମହେଶ୍ୱର ଓ ବିଷ୍ଣୁଙ୍କ ମଧ୍ୟରେ ବ୍ରହ୍ମା ସ୍ତ୍ରୀ ରୂପେ ଆସନ ଲାଭ କରିଛନ୍ତି । ଯେପରି ରାମ ଅବତାର ଯୋଗୁଁ ଶ୍ୟାମନ୍ଦିରରେ ଶ୍ରୀରାମଙ୍କ ଓ ଶ୍ରୀ ହନୁମାନଙ୍କର ଅବସ୍ଥିତି ଦେଖିବାକୁ ମିଳେ । ସେହିପରି ବଳଭଦ୍ର (ମହେଶ୍ୱର)ଙ୍କ ଯୋଗାଗୁଁ ଶ୍ରୀ ମନ୍ଦିରରେ ଶିବ ମନ୍ଦିର ଥିବା ଦେଖିବାକୁ ମିଳେ । ବ୍ରହ୍ମା - ସୃଷ୍ଟିକର୍ତ୍ତା । ବିଷ୍ଣୁ ପାଳନକର୍ତ୍ତ ଓ ଶିବ ବିନାଶକର୍ତ୍ତା । ଶିବ ମଧ୍ୟ ମଙ୍ଗଳର ପରିପ୍ରକଶ । ଶିବ ଶୁଭ, ମଙ୍ଗଳ ତଥା ସୁଖପ୍ରଦ, ଶୁଭଦ ଓ ମଙ୍ଗଳମୟ । ସେ ପୁଣି ଅଦ୍ୱୈତ ବ୍ରହ୍ମ । ସେ ମଧ୍ୟ ମୋକ୍ଷ ଓ ମୁକ୍ତିଦାତା ।

**ଶିବରାତ୍ରି**-*ଦେ.ବି.*- ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ଶିବରାତ୍ରି ପାଳନ କରାଯାଏ । ଏହି ଦିନ ବଲ୍ଲଭଭୋଗ ଉତ୍ତାରେ ଭଣ୍ଡାର ଲୋକନାଥ ନୂଆପାଟ ଲାଗି ହୁଅନ୍ତି । ଏହାକୁ ମନ୍ଦିର କାର୍ଯ୍ୟାଳୟ ଦେଇଥାଏ । ଲୋକନାଥଙ୍କ ସେବକ ଆସି ହରହରି ଭେଟ ନିମନ୍ତେ ଏହାକୁ ଲୋକନାଥଙ୍କ ମନ୍ଦିରକୁ ନିଅନ୍ତି । ଉକ୍ତ ମନ୍ଦିରରେ ହରିହର ଭେଟ ସରିଲା ପରେ ବାହୁଡା ବିଜେ କରନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୧୦, ପୂ.ଓ.ଭା. - ପୃ. ୭୬୭୬) ।

**ଶିଷ୍ଟକରଣ**-*ଦେ.ବି.*- ଶିଷ୍ଟକରଣ ପ୍ରଚଳିତ ଶବ୍ଦ । କେହି ଯାତ୍ରୀ ଶ୍ରୀମନ୍ଦିରର ନିଳଚକ୍ରରେ ଧ୍ୱଜା ବାନ୍ଧିବା ସମୟରେ ଏହି ସେବକ ଯାତ୍ରୀଙ୍କଠାରୁ ମାସୁଲ ରଖନ୍ତି । ମନ୍ଦିର ପାଉଣା ଦେଉଳ କରଣଙ୍କୁ ପ୍ରଦାନ କରିବା ସହ ଚୂନରା ସେବକଙ୍କ ଦ୍ୱାରା ଧ୍ୱଜା ବାନ୍ଧନ୍ତି । (ଶ୍ରୀ.ସ୍ୱ. ୭ମ - ପୃ. ୧୦୦) ।

**ଶୀତଳ ଅନ୍ନ**-*ଦେ.ବି.*- ଏକ ସେବକ ବିଶେଷଙ୍କ କାମ । ଅରୁଆ ଭୋଗ ସମର୍ପଣ କରିବା ପଣ୍ଡା ସେବକ । (ଶ୍ରୀ.ଶ. - ପୃ. ୧୬୦) ।

**ଶୀତଳ ଭୋଗ**-*ଦେ.ବି.*- ଅଳ୍ପ ଆହାର, ଜଳଖିଆ । ଶ୍ରୀମନ୍ଦିରର ନିସଙ୍ଖୁଡ଼ି ଅରନ୍ଧା ଫଳଭୋଗ । ଯଥା- ଖଇ, କୋରା, କଦଳୀ, ପଇଡ଼, ଲଡୁ । ଏହି ଭୋଗ ନନ୍ଦଉତ୍ସବ, ଶ୍ରୀକୃଷ୍ଣ ଲୀଳା, ଭାଦ୍ରବ କୃଷ୍ଣ ନବମୀ, ଜନ୍ମାଷ୍ଟମୀ, ଦିନମାନଙ୍କରେ ଠାକୁରଙ୍କୁ ଲାଗି ହୁଏ । ଶୀତଳ ମଣୋହି ବୋଲି ମଧ୍ୟ କୁହାଯାଏ । ଶୀତଳଷଷ୍ଠୀ ଓ ରାଜେନ୍ଦ୍ରାଭିଷେକ ପ୍ରଭୃତି । (ଶ୍ରୀ.ସ୍ୱ. ୨ୟ - ପୃ. ୮୯/୯୦, ଓ.ସାଂ.ଶ. - ପୃ. ୩୩୬) ।

**ଶୀତଳ ଷଷ୍ଠୀ**-*ସଂ.ବି.*- ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ । ଶିବ ପାର୍ବତୀଙ୍କର ବିବାହ ଉତ୍ସବ ପାଳନ କରାଯାଏ । ଶ୍ରୀମନ୍ଦିରରେ ସନ୍ଧ୍ୟାଧୂପ ପରେ ଦୋଳଗୋବିନ୍ଦ ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ଖଟଶେଯ ଘରେ ବିଜେ କରନ୍ତି । ତା'ପରଦିନ ବଲ୍ଲଭ ସରିବା ପରେ ମହାଦେବ ପଞ୍ଚ ପାଣ୍ଡବଙ୍କୁ ନେଇ ନଗର ଉତ୍ସବ ଯାତ୍ରା କରନ୍ତି । ମହାଦେବଙ୍କୁ ସେବକମାନେ ବୁଲାନ୍ତି । (ଶ୍ରୀ.ସ୍ୱ. ୨ୟ- ପୃ. ୧୨୨, ପୂ.ଓ.ଭା. ୬ଷ୍ଠ - ପୃ. ୭୭୧୬) ।

**ଶୀତଳା ଦେବୀ**- ଶ୍ରୀମନ୍ଦିରର ବାହାର ବେଢ଼ାର ଉତ୍ତରଦ୍ୱାର ସନ୍ନିକଟରେ ଶୀତଳା ଦେବୀଙ୍କ ମନ୍ଦିର ଅବସ୍ଥିତ । ଏକ କ୍ଷୁଦ୍ର ମନ୍ଦିର ମଧ୍ୟରେ ଶୀତଳାଦେବୀ ଉତ୍ତରାଭିମୁଖୀ ହୋଇ ରହିଛନ୍ତି । ସେ ହସ୍ତରେ ସୂପ ବା କୁଲା ଧାରଣ କରିଥାନ୍ତି । ମା' ଶୀତଳା ଗର୍ଧଭ ବାହିନୀ ଅଟନ୍ତି । ବସନ୍ତ, ବିସ୍ଫୋଟକ, ରୋଗରେ ଆକ୍ରାନ୍ତ ବ୍ୟକ୍ତିମାନେ ରୋଗ ପ୍ରଶମିତ ହେବା ପାଇଁ ଶୀତଳାଙ୍କୁ ପଣସ, ପଇଡ଼ ଇତ୍ୟାଦି ଭୋଗ କରନ୍ତି ଏବଂ ଚନ୍ଦନ ଲାଗି କରାଇଥାନ୍ତି । ଶୀତଳାଙ୍କ ମନ୍ଦିର ପ୍ରାଙ୍ଗଣରେ ଦେବସଭା ବସିଥାଏ ବୋଲି ଅନେକଙ୍କର ବିଶ୍ୱାସ । ଅର୍ଦ୍ଧରାତ୍ରି ପରେ

ଯେତେବେଳେ ଶ୍ରୀଜଗନ୍ନାଥଙ୍କର ପହୁଡ଼ ହୁଏ ସମଗ୍ର ଦେବଦେବୀ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସନ୍ତି । ବୋଧହୁଏ ସେହି ସମୟରେ ଶୀତଳାଙ୍କ ମନ୍ଦିର ପ୍ରାଙ୍ଗଣରେ ସେମାନେ ଏକତ୍ରିତ ହୁଅନ୍ତି । ଶୀତଳାଙ୍କ ମନ୍ଦିର ପ୍ରାଙ୍ଗଣରେ ସୁବର୍ଣ୍ଣ କୂପ ବା ସୁନାକୂଅ ବିଦ୍ୟମାନ । ସ୍ନାନଯାତ୍ରା ଦିନ ଶ୍ରୀବଳଭଦ୍ର, ଶ୍ରୀ ସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀ ସୁଦର୍ଶନ ସୁନା କୂଅର ଜଳରେ ସ୍ନାନ କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭୪) ।

**ଶ୍ରୀଅଙ୍ଗ**- ବିଗ୍ରହଙ୍କ ଶ୍ରୀଭୁଜ ଓ ଅନ୍ୟାନ୍ୟ ଅଂଶକୁ ଶ୍ରୀଅଙ୍ଗ କୁହାଯାଏ ।

**ଶ୍ରୀଅଙ୍ଗ ପଖଳା**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥାଦି ଦେବଦେବୀଙ୍କ ସ୍ନାନ ନୀତି ।
(ଓ.ସାଂ.ଶ. - ପୃ. ୩୩୯) ।

**ଶ୍ରୀଅଙ୍ଗପାଳକ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ପୁଷ୍ପାଳକ ।
(ଶ୍ରୀ.ସ୍ୱ. ୧ମ - ପୃ. ୬୭) ।

**ଶ୍ରୀଅଙ୍ଗ ପୋଛା**-*ଦେ.ବି.*- ଏକ ବସ୍ତ୍ର ବିଶେଷ । ଶ୍ରୀଜୀଉଙ୍କ ଅଙ୍ଗ ପୋଛା ବସ୍ତ୍ର ବିଶେଷ ।
(ପୁ.ବୋ. - ପୃ. ୩୦୭) ।

**ଶ୍ରୀଅଙ୍ଗ ଫିଟା**-*ଦେ.ବି.*- ନବକଳେବର ବ୍ୟତୀତ ଅନ୍ୟ ସମୟରେ ସାମୟିକ ଆବଶ୍ୟକତା ଦୃଷ୍ଟିରୁ ଠାକୁରଙ୍କ ଶ୍ରୀଅଙ୍ଗ ଖୋଲାଯିବା ବିଧି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୫) ।

**ଶ୍ରୀଅଙ୍ଗ ବାହୁଟ ମାପ**-*ଦେ.ବି.*- ଶ୍ରୀମନ୍ଦିରର ଠାକୁରଙ୍କ ପହଣ୍ଡି ବେଳେ ଲାଗି ହେଉଥିବା ବଉଳକାଠ ନିର୍ମିତ ବାହୁଟ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୬) ।

**ଶ୍ରୀଅଙ୍ଗମଣାଇ**-*ଦେ.ବି.*- ଶ୍ରୀଅଙ୍ଗକୁ ବୁଝାଇ ଦେବା ।
(ଶ୍ରୀ.ଶ. - ପୃ. ୧୬୧) ।

**ଶ୍ରୀଅଙ୍ଗ ଲାଗି**-*ଦେ.ବି.*- ଗୁରୁବାର ନୀତିରେ ମାଜଣା ମଣ୍ଡପରେ ପାଳିଆ ପୁଷ୍ପାଳକମାନେ ଲକ୍ଷ୍ମୀ ଓ ସରସ୍ୱତୀଙ୍କ, ମଦନମୋହନଙ୍କ ଶ୍ରୀଅଙ୍ଗ ଲାଗି କରିବା ନୀତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୩୯/୪୦) ।

**ଶ୍ରୀକରଣ**-*ଦେ.ବି.*- କରଣ ବିଶେଷ । ରାଜମହଲରେ ରାଜପରିବାରରେ ଶ୍ରୀକରଣ ସେବକ ବା ବାର୍ତ୍ତା ବହ ପରାମର୍ଶଦାତାର କାର୍ଯ୍ୟ କରନ୍ତି ।
(ପୁ.ବୋ. - ପୃ. ୩୧୫) ।

**ଶ୍ରୀକୃଷ୍ଣ ଜନ୍ମଲୀଳା**-*ଦେ.ବି.*- ଭାଦ୍ରବ କୃଷ୍ଣ ସପ୍ତମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ପ୍ରଚଳିତ ପାରମ୍ପରିକ ନୀତି । ସପ୍ତମୀ ଦିନ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ଅଧିକ ଗୋଟିଏ ବନ୍ଦାପନା ହୁଏ । ଭାଦ୍ର କୃଷ୍ଣ ସପ୍ତମୀରେ ସନ୍ଧ୍ୟାଧୂପ ପରେ ଟେରା ବନ୍ଧାହୋଇ ଅଣସର ପିଣ୍ଡିରେ ଯେଉଟ ଭୋଗ (ଶାଗ, ତରକାରୀ, ପିଠା, ଝିଲି, ଓରିଆ, ଖିରି ଇତ୍ୟାଦି) ପ୍ରସାଦ ଲାଗି ହୁଏ । ପଞ୍ଚୋପଚାର ପୂଜା ପଣ୍ଡା, ପତି, ମୁଦିରସ୍ତ ତିନିବାଡ଼ରେ ବନ୍ଦାପନା କରନ୍ତି । ଏକ ଅଧିକ ବନ୍ଦାପନା ହୁଏ । ଏହାକୁ ଗର୍ଭଉଦକ ବନ୍ଦାପନା କୁହାଯାଏ । ଅଷ୍ଟମୀରେ କୃଷ୍ଣଜନ୍ମ, ନବମୀରେ ନନ୍ଦୋତ୍ସବ, ଦଶମୀରେ ବନଭୋଜୀ ବେଶ, କୋଳିବିକା, ବକାସୁର ଓ ଅଘାସୁର ବଧ, ଏକାଦଶୀରେ କାଳୀୟଦଳନ ଓ ଧେନୁକାସୁର ବଧ, ଦ୍ୱାଦଶୀରେ ପ୍ରଳମ୍ବାସୁର ବଧ, ତ୍ରୟୋଦଶୀରେ କୃଷ୍ଣବଳରାମ ବେଶ, ଚତୁର୍ଦ୍ଦଶୀରେ ପରଦିନର ଅମାବାସ୍ୟା ପାଇଁ ପ୍ରସ୍ତୁତି, ଅମାବାସ୍ୟା ଦିନ ସପ୍ତପୁରୀ ଅମାବାସ୍ୟାରେ ବସ୍ତ୍ରହରଣ, ଶୁକ୍ଳ ପ୍ରତିପଦାରେ ଦାବାଗ୍ନି, ଦ୍ୱିତୀୟାରେ ନିକୁଞ୍ଜ ଲୀଳା, ତୃତୀୟାରେ ଅନ୍ଧମନ୍ଦିର ହାତୀ ପ୍ରସ୍ତାବ, ଚତୁର୍ଥୀରେ ଗଣେଶ ପୂଜା, ପଞ୍ଚମୀରେ ଋଷୀ ପଞ୍ଚମୀ ଓ ଦାହଲୀଳା, ଶୁକ୍ଳ ଷଷ୍ଠୀରେ କୃଷ୍ଣ ଲୀଳା, ଅଷ୍ଟମୀରେ ଶ୍ରୀରାଧାଷ୍ଟମୀ, ଦଶମୀରେ କୃଷ୍ଣଲୀଳା, ଲବଣୀଖିଆ ମଥୁରାହାଟ ଓ ଯୂର, ଏକାଦଶୀରେ ପାର୍ଶ୍ୱପରିବର୍ତ୍ତନ ଏକାଦଶୀ, ଦ୍ୱାଦଶୀରେ ବାମନ ଜନ୍ମ ଓ ସୁନିଆଁ, ଇନ୍ଦ୍ରଧ୍ୱଜ ପୂଜା, ଚତୁର୍ଦ୍ଦଶୀରେ ଅନନ୍ତଙ୍କ (ମୁକ୍ତିମଣ୍ଡପ ପାଖରେ) ପର୍ବଯାତ୍ରା, ବାସେଳୀ ସାହିର ଇନ୍ଦ୍ରହାତୀ ପ୍ରସ୍ତାବ, ଭାଦ୍ର ପୂର୍ଣ୍ଣିମାରେ ବିମଳାଙ୍କ ଷୋଡ଼ଶ ପୂଜା ଆରମ୍ଭ । ସହସ୍ରାକୁମ୍ଭାଭିଷେକ - ଏହିପରି ଭାଦ୍ର କୃଷ୍ଣ

ସପ୍ତମୀରୁ ଭାଦ୍ର ପୂର୍ଣ୍ଣିମା ପର୍ଯ୍ୟନ୍ତ ଶ୍ରୀଠାକୁରଙ୍କର ନୀତି କ୍ରମାଗତ ଭାବେ ଲାଗି ରହିଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୮୮-୯୭) ।

**ଶ୍ରୀଖଣ୍ଡ** - *ଦେ.ବି.*- ଚନ୍ଦନ କାଠ ବିଶେଷ ।
(ଓ.ସାଂ.ଶ. - ପୃ. ୩୩୯) ।

**ଶ୍ରୀ ଖୁଣ୍ଟିଆ** - *ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ବିଜେ ଆଳତୀ ଓ ରାଜନୀତିରେ ଯୋଡ଼ା ବେତ ଧରି କାର୍ଯ୍ୟ ସମ୍ପାଦନ କରିବା ସେବକ । ଏହି ସେବକ ଶ୍ରୀଅଙ୍ଗ ରକ୍ଷା ପାଇଁ ଆକଟ କରନ୍ତି ଓ ବିଜେ ସମୟରେ ମଣିମା ଡାକ ଦିଅନ୍ତି ।
(ଶ୍ରୀ.ସ୍ୱ. ୧ମ - ପୃ. ୮୮/୮୯) ।

**ଶ୍ରୀଗୁଣ୍ଡିଚା ବିଜେ** - *ଦେ.ବି.*- ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ ତିନିଠାକୁରଙ୍କ ଗୁଣ୍ଡିଚା ବିଜେ ଯାତ୍ରା । ଏହା ମଧ୍ୟ ଘୋଷଯାତ୍ରା ନାମରେ ନାମିତ । ସ୍କନ୍ଦପୁରାଣରେ ଏହା ସହସ୍ର ଅଶ୍ୱମେଧ ଯଜ୍ଞର ମହାବେଦୀ ଓ ଜଗନ୍ନାଥଙ୍କ ଆବିର୍ଭାବ ବା ଜନ୍ମସ୍ଥଳ ବୋଲି ଉଲ୍ଲେଖ ରହିଛି । ଏହା ହେଉଛି ଜଗନ୍ନାଥଙ୍କର ଜନ୍ମସ୍ଥାନକୁ ବାର୍ଷିକ ଭ୍ରମଣ ନୀତି । ଇନ୍ଦ୍ରଦ୍ୟୁମ୍ନ ମହାରାଜଙ୍କ ପତ୍ନୀ ଗୁଣ୍ଡିଚା ଦେବୀ ଏହାକୁ ଆରମ୍ଭ କରିଥିବାରୁ ଏହା ଗୁଣ୍ଡିଚା ଯାତ୍ରା ନାମରେ ଖ୍ୟାତ । ଚୋଡ଼ଗଙ୍ଗ ଦେବଙ୍କ ପଟ୍ଟମହିଷୀଙ୍କ ନାମ ଗୁଣ୍ଡିଚାରାଣୀ । ତାଙ୍କ ନାମାନୁସାରେ ଗୁଣ୍ଡିଚା ମନ୍ଦିରର ଏହି ଭଳି ନାମକରଣ ହୋଇଥାଇପାରେ ।
(ଶ୍ରୀ.ଜି. - ପୃ. ୨୪୨) ।

**ଶ୍ରୀଜଗନ୍ନାଥଙ୍କ ସେବକଗଣ** - ଦ୍ୱାଦଶ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର ପ୍ରତିଷ୍ଠା ହେବା ପରେ ରାଜା ନ' ଜଣ ସେବକଙ୍କୁ ଠାକୁରଙ୍କ ସେବା ନିମନ୍ତେ ନିଯୋଗ କରିଥିଲେ । ୧. ଚରୁ ହୋତା, ୨. ପାତ୍ର ହୋତା, ୩. ବ୍ରହ୍ମା, ୪. ଆଚାର୍ଯ୍ୟ, ୫. ପ୍ରତିହାରୀ, ୬. ପୁଷ୍ପାଳକ, ୭. ଦଇତା, ୮. ଧୋବା, ୯. ଭଣ୍ଡାରୀ । ପ୍ରତ୍ୟେକଙ୍କୁ କେତେକ ନିର୍ଦ୍ଦିଷ୍ଟ ଦାୟିତ୍ୱ ଦିଆଯାଇଥିବାରୁ ଅନୁଷ୍ଠାନର କୌଣସି ପରିଚାଳନାଗତ ତ୍ରୁଟି ପରିଲକ୍ଷିତ ହେଉ ନ ଥିଲା ।
ଦ୍ୱିତୀୟ ପର୍ଯ୍ୟାୟରେ ଯଯାତିଙ୍କ ସମୟରେ ୩୦ ଜଣ ସେବାୟତଙ୍କୁ ନିଯୁକ୍ତି କରାଯାଇ ଶ୍ରୀଜଗନ୍ନାଥଙ୍କର ସେବା କାର୍ଯ୍ୟ ଚାଲିଲା । ତୃତୀୟ ପର୍ଯ୍ୟାୟରେ ଅନଙ୍ଗଭୀମଦେବଙ୍କ ସମୟରେ ଛତିଶା ନିଯୋଗ ପ୍ରଚଳନ ହେଲା । ଚତୁର୍ଥ ପର୍ଯ୍ୟାୟରେ ରାମଚନ୍ଦ୍ରଦେବ-୧ମଙ୍କ ସମୟରେ କର୍ମାଙ୍ଗୀ ପ୍ରୟୋଗ କରାଯାଇ ସତାବନଜଣ ସେବକଙ୍କୁ ନିଯୋଗ କରାଗଲା । ପଞ୍ଚମ ପର୍ଯ୍ୟାୟରେ ଇଂରେଜକାଳରେ ଗ୍ରୋମ୍‌ସାହେବଙ୍କ ରିପୋର୍ଟ ଅନୁଯାୟୀ ଶ୍ରୀଜଗନ୍ନାଥଙ୍କ ସେବା ଲାଗି ଦୁଇଶହ ଅଠଚାଳିଶି ଜଣ ସେବାୟତଙ୍କୁ ନିୟୋଜିତ କରାଯାଇଥିଲା । ବର୍ତ୍ତମାନ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ଦୈନନ୍ଦିନ ସେବା କାର୍ଯ୍ୟ ଓ ପର୍ବପର୍ବାଣି ସମ୍ପନ୍ନ କରିବା ପାଇଁ ଶହେକୋଡ଼ିଏ ଜଣ ସେବାୟତ ଅଛନ୍ତି । ସାମ୍ପ୍ରତିକ ସମୟରେ ସେବା କରୁଥିବା ବ୍ୟକ୍ତିଙ୍କ ବଂଶଧର ନ ଥିବାରୁ କେତେକ ସେବା ବନ୍ଦ ଅଛି ।
ଓଡ଼ିଶା ସରକାର ଶ୍ରୀମନ୍ଦିର ଚାଳନା ଦାୟିତ୍ୱ ନେବା ପରେ ପ୍ରସ୍ତୁତ ସ୍ୱତ୍ୱଲିପିରେ ଶହେଉଣେଇଶି ସେବା ଉଲ୍ଲେଖ କରାଯାଇଛି । ୧୯୮୮ ମସିହାରେ ବେହେରାକରଣ ସେବାର ପୁନଃ ପ୍ରଚଳନ କରାଗଲା ଓ ମୋଟରେ ଶହେକୋଡ଼ିଏ ସେବାର ପ୍ରଚଳନ ହେଲା, କିନ୍ତୁ ବର୍ତ୍ତମାନ ସେଥିମଧ୍ୟରୁ ପ୍ରାୟ କୋଡ଼ିଏଟି ସେବା ବନ୍ଦ ହୋଇଯାଇଛି, ଯଥା- ବୈଠିକରଣ, ଶଙ୍ଖୁଆ, ଖଟୁଲି, ପାଇକ, ଗୀତଗୋବିନ୍ଦ, ପରିଛା, ସୁଆର ନିଯୋଗ ନାୟକ, ବିଣାକାର, ପନିକିପଟା, ଭିତର ଗାଉଣୀ, ଦେବଦାସୀ ସମ୍ପ୍ରଦା ନିଯୋଗ, ମାଦେଳୀ ସେବା, ପତରବନ୍ଧା ସେବା, ବୈଜନ୍ତ୍ରୀ ସେବା, କଳାବେଠିଆ, କୁମ୍ଭାର ବିଶୋଇ, ବାଣୁଆ, ମାପସାଇତା କରଣ, କୋଠକରଣ, ଚର୍ଚ୍ଚଇତା କରଣ ଓ ଦଉଡ଼ିବୋଳା ସେବା ଇତ୍ୟାଦି ପ୍ରାୟ କୋଡ଼ିଏଟି ସେବା ବନ୍ଦ ଅଛି ।
(ଶ୍ରୀ.ଜି. - ପୃ. ୧୬୬/ କ୍ଷେ.ସ.) ।

**ଶ୍ରୀଜୀଉଙ୍କ ଅଙ୍ଗବାସ**-*ଦେ.ବି.*-ଶ୍ରୀଜୀଉଙ୍କ ଅଙ୍ଗରେ ବାସଗୁଡ଼ିକ ହେଲା- ଅଧରବଳା, ଆଲୁମଣ୍ଡିଆ, ଲୁଗା, ଓଳମାଳ, କାନ୍ଧପଇତି, କିନାରି, କୁସୁମି, କେନ୍ଦୁଲି ଫେଟା, ଖଣ୍ଡୁଆ, ଖସାଗଡ଼ା, ଗଡ଼ା, ଗିଲାପ, ଘଣା, ଘୋଡ଼ (ଶୀତବସ୍ତ୍ର), ଟେକାଘୋଡ଼, ଠିଆଘୋଡ଼, ଚନ୍ଦନଗୁଡ଼, ଟହଲଶି / ଚେହେଲି, ଚେମେଡ଼ି, ଜାମା, ଝଲକ, ଝୋଲି ଲୁଗା, ତଡ଼ପ, ତାରା ବଳିସଜ, ପତନି, ପହରଣ, ପାଗପଟି, ପାୟେଡ଼ା/ ପାହାଡ଼ା, କୋଡ଼ପାହାଡ଼ା, ଦଣ୍ଡା ପାହାଡ଼ା, ଫତେଇ ଫୁଟା, ନେତଫୁଟା, ଫୁଲପୁରିଆ, ଖଦି, ବର୍ଷପଡ଼ି ଖଦି, ବର୍ଷ ପଡ଼ି ଶାଢ଼ୀ, ବହୁରୁଣି, ବାରପାଟିଲୁଗା, ବାରଲାଗି, ବୋଇରାଣୀ, ବୋଳା, ଯାଉଁଳି କରଡ଼ା, ଶିରକାପଡ଼ା ଇତ୍ୟାଦି ।
(ଶ୍ରୀ.ଜି. - ପୃ. ୨୨୧) ।

**ଶ୍ରୀଜୀଉଙ୍କବେଶଲାଗି**-*ଦେ.ବି.*- ପ୍ରତ୍ୟେହ ଦିନକୁ ତିନିଥର ଶ୍ରୀଜୀଉଙ୍କୁ ବେଶ କରାଯାଏ । ସକାଳ ସ୍ନାନ ପରେ ହେଉଥିବା ବେଶ ସକାଳ ଧୂପ ସରିବା ଯାଏ ରୁହେ । ଦ୍ୱିତୀୟ ଛତ୍ର ଭୋଗ ପରେ ବେଶ ସନ୍ଧ୍ୟା ଧୂପ ସରିବା ଯାଏ ରୁହେ । ତୃତୀୟ ସନ୍ଧ୍ୟା ଧୂପ ସରିବା ପରେ ବଡ଼ସିଂହାର ବେଶ ଆସନ୍ତା ସକାଳ ଯାଏ ରହେ । ପ୍ରତ୍ୟେହ ଶ୍ରୀଜୀଉଙ୍କ ବେଶ ନିମନ୍ତେ ଚବିଶ ଜଣ ଲେଖାଏ ମୋଟ ବାସ୍ତରୀ ଜଣ ପୁଷ୍ପାଳକ ସେବକ ସମ୍ପ୍ରଦାୟ ରହିଥାନ୍ତି, ମାତ୍ର ସେମାନଙ୍କ ମଧ୍ୟରୁ ପ୍ରତିଦିନ ତିନି ଠାକୁରଙ୍କୁ ତିନି ଜଣ କରି ମୋଟ ନଅ ଜଣ ପୁଷ୍ପାଳକ ସେବାୟତ ବେଶ କରନ୍ତି ।
(ଶ୍ରୀ.ଜି. - ପୃ. ୨୨୧) ।

**ଶ୍ରୀମନ୍ଦିରରୁ ଶିଳାପାତ**- ଶତାଧିକ ବର୍ଷ ପୂର୍ବରୁ ଶ୍ରୀମନ୍ଦିରରୁ ପଥର ଖସିବା ଆରମ୍ଭ ହୋଇଛି । ଯଥା- ୧. ୧୮୭୫ ମସିହା ଜୁଲାଇ ୯ ତାରିଖ, ୨. ୧୯୩୯ ମସିହା ଡିସେମ୍ବର ୪ ତାରିଖ, ୩. ୧୯୬୧ ମସିହା ଜାନୁୟାରୀ ୨୭ ତାରିଖ, ୪. ୧୯୬୯ ମସିହା ଜାନୁୟାରୀ ୨୨ ତାରିଖ, ୫. ୧୯୮୫ ମସିହା ଅଗଷ୍ଟ ୧୪ ତାରିଖ, ୬. ୧୯୮୮ ମସିହା ଜାନୁୟାରୀ ୧୯ ତାରିଖ, ୭. ୧୯୯୦ ମସିହା ଫେବୃୟାରୀ ୬ ତାରିଖ, ୮. ୧୯୯୦ ମସିହା ଜୁନ୍ ୧୪ ତାରିଖ, ୯. ୧୯୯୧ ମସିହା ଫେବୃୟାରୀ ୧୮ ତାରିଖ, ୧୦. ୧୯୯୨ ମସିହା ଅଗଷ୍ଟ ୧୩ ତାରିଖ । ଏହିଦିନ ଅପରାହ୍ନ ୪ଟା ସମୟରେ ଶ୍ରୀମନ୍ଦିର ଗର୍ଭଗୃହ ପୂର୍ବ ପଟସ୍ଥିତ ତୃତୀୟ ଓ ଚତୁର୍ଥ ଝୁଲାପଥର ବେଢ଼ରୁ ପଥର ଖସି ରତ୍ନସିଂହାସନ ନିକଟରେ ଶ୍ରୀବଳଭଦ୍ରଙ୍କ ପାଦତଳେ ପଡ଼ି ଦୁଇଖଣ୍ଡ ହୋଇଯାଇଥିଲା ।
(ଶ୍ରୀ.ଜି. - ପୃ. ୩୦୮)

**ଶ୍ରୀଦେବୀ**-*ଦେ.ବି.*- ଶ୍ରୀମନ୍ଦିରରେ ରତ୍ନସିଂହାସନରେ ଆସୀନା ଲକ୍ଷ୍ମୀ ପ୍ରତିମା । ସପ୍ତଧା ମୂର୍ତ୍ତି ମଧ୍ୟରୁ ଅନ୍ୟତମ ।
(ଶ୍ରୀ.ସ୍ୱ. - ପୃ. ୬) ।

**ଶ୍ରୀନଅର**-*ଦେ.ବି.*- ପୁରୀ ଗଜପତି ମହାରାଜଙ୍କ ନବର । ଶ୍ରୀଜଗନ୍ନାଥଙ୍କ ବାହୁଡ଼ାଯାତ୍ରା ବେଳେ ଶ୍ରୀନଅର ସିଂହଦ୍ୱାରରେ ଠାକୁରଙ୍କ ପୂଜା ହୁଏ । ଲକ୍ଷ୍ମୀ ନାରାୟଣ ଭେଟ ହୁଏ । ଚମ୍ପକ ଦ୍ୱାଦଶୀରେ ଠାକୁର ମଧ ଶ୍ରୀନଅର ବିଜେ କରନ୍ତି । ଲକ୍ଷ୍ମୀଦେବୀ ବିମାନରେ ଆସି ଶ୍ରୀଜଗନ୍ନାଥଙ୍କ ରଥ ଚାରିପଟେ ବୁଲି ଆଜ୍ଞାମାଳ ପାଇ ଶ୍ରୀମନ୍ଦିରକୁ ବାହୁଡ଼ି ଯାଆନ୍ତି । ଏତଦ୍‌ବ୍ୟତୀତ ଅନେକ ପୂଜାନୀତି ଶ୍ରୀନଅରରେ ହୋଇଥାଏ । ନବକଳେବର ବେଳେ ଗୁଆଟେକା ଶ୍ରୀନଅରରୁ ନେଲାପରେ ବନଯାଗ ପର୍ବ ଆରମ୍ଭ ହୋଇଥାଏ ।
( ଶ୍ରୀ.ସ୍ୱ. ୨ୟ - ପୃ. ୭୬/୮୦) ।

**ଶ୍ରୀବତ୍ସ ଚିହ୍ନ**-*ସଂ.ବି.*- ପରମ ଭକ୍ତ ଶ୍ରୀବତ୍ସ ବ୍ରାହ୍ମଣର ପଦାଘାତ ଚିହ୍ନ । ଯାହାକୁ ବିଷ୍ଣୁ ପରମ ତୃପ୍ତି ସହିତ ବକ୍ଷରେ ଧାରଣ କରିଛନ୍ତି ।
(ଓ.ସାଂ.ଶ. - ପୃ. ୩୪୦) ।

**ଶ୍ରୀବତ୍ସ ଖଣ୍ଡଶାଳ**-*ସଂ.ବି.*- ଶ୍ରୀମନ୍ଦିରର ଢାଞ୍ଚାର ନାମ । ୩୬ ପ୍ରକାର ପ୍ରାସାଦ ମଧ୍ୟରେ ୨୦ ପ୍ରକାର ପ୍ରାସାଦ ଶ୍ରେଷ୍ଠ । ଏଥିମଧ୍ୟରୁ 'ଶ୍ରୀବତ୍ସ ଖଣ୍ଡଶାଳ' ବିଷ୍ଣୁଙ୍କର ଅତିପ୍ରିୟ । ଶିଳ୍ପଶାସ୍ତ୍ର,

'ଭୁବନ ପ୍ରଦୀପ'ରେ ୩୬ରୁ ଊର୍ଦ୍ଧ୍ୱରେଖ ମନ୍ଦିରର ବିବରଣୀ ଲିପିବଦ୍ଧ । ସେଥିମଧ୍ୟରୁ ଶ୍ରୀବସ୍ତ ଖଣ୍ଡଶାଳକୁ ଶ୍ରେଷ୍ଠ ବୋଲି ମାନ୍ୟତା ଦିଆଯାଇଛି । ପୁରୀର ଏହି ମନ୍ଦିର ଏକ ପଞ୍ଚରଥ ମନ୍ଦିର । ଶ୍ରୀମନ୍ଦିର ଭିତରେ ସାକ୍ଷୀଗୋପାଳ ମନ୍ଦିର ପାଖରେ ଏକ କ୍ଷୁଦ୍ର 'ଶ୍ରୀବସ୍ତ ଖଣ୍ଡଶାଳ' ମନ୍ଦିର ରହିଛି । ଏହା ଶ୍ରୀମନ୍ଦିରର ଡାଞ୍ଚା ବୋଲି କୁହାଯାଏ । ଯଦିଓ ଡାଞ୍ଚା ଏକ ତଥାପି ଉଭୟଙ୍କ ମଧ୍ୟରେ କେତେକ ପାର୍ଥକ୍ୟ ରହଛି । ମୁଖ୍ୟ ମନ୍ଦିରର ବେକୀରେ ଚତୁର୍ଦ୍ଦିଗରେ ଗରୁଡ଼ ଥିଲାବେଳେ ଏଥିରେ ଦେଉଳଚାରଣୀ (ପିଠିରେ ଆମଳକ ଶିଳା ବହିଥିବା କନ୍ୟା) ସଂଯୋଜିତ । ପୁଣି ଏଥିରେ ଜଗନ୍ନାଥଙ୍କ ସ୍ଥାନରେ ବିଷ୍ଣୁ ମୂର୍ତ୍ତି ରହିଛନ୍ତି ।
(ପୁ.ବୋ. - ପୃ. ୧୦୭) ।

**ଶ୍ରୀପୟର**- ଶ୍ରୀଜୀଉଙ୍କ ଅଧରଠାରୁ ପାଦ ପର୍ଯ୍ୟନ୍ତ ଲମ୍ବିଥିବା ବିରାଟ ପୁଷ୍ପମାଳା ।
(ଶ୍ରୀ.ଜି. - ପୃ. ୨୨୨) ।

**ଶ୍ରୀପୟର ତୁଳାଗଡ଼ା**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ପରିଧେୟ ବା ତୁଳାରେ ତିଆରି ଗଡ଼ାବସ୍ତ୍ର ।
(ଶ୍ରୀ.ଜି. - ପୃ. ୨୨୧) ।

**ଶ୍ରୀ ପୁରୁଷୋତ୍ତମ**- ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କୁ ବୁଝାଏ ।
(ଶ୍ରୀ.ଜି. - ପୃ. ୩) ।

**ଶ୍ରୀଫଳ**-*ଦେ.ବି.*- ବେଲ, କ୍ଷୀରକୋଳି, ଅଁଳା, ଗୁଆ, ନଡ଼ିଆ, ଶୁଭମଙ୍ଗଳକାରୀ ଫଳ ।
(ଓ.ସାଂ.ଶ. - ପୃ. ୩୪୦) ।

**ଶ୍ରୀଭୁଜ**-*ଦେ.ବି.*- ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସୁବର୍ଣ୍ଣ ନିର୍ମିତ ହସ୍ତ । ଏହା ସୁନାବେଶ ବେଳେ ଶ୍ରୀଅଙ୍ଗରେ ଲାଗି ହୋଇଥାଏ ।
(ଶ୍ରୀ.ସ୍ୱ.- ୧ମ- ପୃ. ୧୬)

**ଶ୍ରୀମନ୍ଦିର**-*ଦେ.ବି.*- ପୁରୀର ଜଗନ୍ନାଥ ମନ୍ଦିର । ଶ୍ରୀଯନ୍ତ୍ର ଉପରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ତଥା ଶ୍ରୀସୁଦର୍ଶନଙ୍କ ନିମନ୍ତେ ନିର୍ମିତ ଶ୍ରୀବସ୍ତ ଖଣ୍ଡଶାଳ ମନ୍ଦିର ।
(ଶ୍ରୀ.ସ୍ୱ. ୨ୟ - ପୃ. ୧/୨) ।

**ଶ୍ରୀମନ୍ଦିରରେ ପୂଜାମନ୍ତ୍ର**- ଦେବପୂଜାମନ୍ତ୍ର - ଶ୍ରୀମନ୍ଦିରରେ ପାଞ୍ଚ ଥର ଧୂପ ପୂଜା ଅନୁଷ୍ଠିତ ହୁଏ । ଏହି ପୂଜାରେ ଶ୍ରୀଜଗନ୍ନାଥଙ୍କୁ କୃଷ୍ଣ ସହିତ ଅଭେଦ ଚିନ୍ତା କରାଯାଇ ଗୋପୀଜନ ବଲ୍ଲଭ ମନ୍ତ୍ରରେ ପୂଜା କରାଯାଏ । ସେ ଦଶାକ୍ଷରୀ ଓ ଅଷ୍ଟାଦଶାକ୍ଷରୀ ଗୋପାଳ ମନ୍ତ୍ରରେ ପୂଜା ପାଆନ୍ତି । ଦଶାକ୍ଷରୀ ମନ୍ତ୍ର ହେଉଛି - "ଗୋପୀଜନବଲ୍ଲଭାୟ ସ୍ୱାହା" । ଅଷ୍ଟାଦଶାକ୍ଷରୀ ମନ୍ତ୍ର - "କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା" । ବଳଦେବଙ୍କୁ ଦ୍ୱାଦଶାକ୍ଷର ବାସୁଦେବ ମନ୍ତ୍ରରେ ପୂଜା କରାଯାଏ । ସେ ବାସୁଦେବ ରୂପେ ପୂଜା ପାଆନ୍ତି । ତାଙ୍କର ଦ୍ୱାଦଶାକ୍ଷର ମନ୍ତ୍ର - "ଓଁ ନମୋ ଭଗବତେ ବାସୁଦେବାୟ" । ସୁଭଦ୍ରା ତାଙ୍କର ଭୁବନେଶ୍ୱରୀ ମନ୍ତ୍ରରେ ପୂଜା ପାଇଥାନ୍ତି । ଏହି ମନ୍ତ୍ରଟି ହେଉଛି- "ଓଁ ହ୍ରୀଂ ଭୁବନେଶ୍ୱର୍ଯ୍ୟୈ ନମଃ ।" ତାଙ୍କୁ ଦେବୀ ସୂକ୍ତିରେ ମଧ୍ୟ ପୂଜା କରାଯାଇଥାଏ । ସୁଦର୍ଶନ ପୂଜା ପାଇଁ ସପ୍ତାକ୍ଷର ସୁଦର୍ଶନ ମନ୍ତ୍ର ହେଉଛି, "ଓଁ ସହସ୍ରାର ହୁ ଫଟ୍" । ଲକ୍ଷ୍ମୀ ତାଙ୍କର ଏକକ୍ଷର "ଶ୍ରୀଂ" ମନ୍ତ୍ରରେ ପୂଜା ପାଇଥାନ୍ତି । ଭୂଦେବୀଙ୍କୁ ଧରିତ୍ରୀ ବା ବସୁଧା ରୂପେ ପୂଜା କରାଯାଏ । କ୍ରମ ପର୍ଯ୍ୟାୟାନୁସାରେ ମାଧବଙ୍କୁ ପୂଜା କରାଯାଇଥାଏ । ଶ୍ରୀମନ୍ଦିରରେ ଜୀଉମାନଙ୍କ ପୂଜା ପଦ୍ଧତିରେ ସପ୍ତମୁଦ୍ରା ପ୍ରଦର୍ଶନର ବିଧି ରହିଛି । ଏହି ସପ୍ତ ମୁଦ୍ରା ହେଲା- ୧. ବ୍ୟୋମ ମୁଦ୍ରା, ୨. ପଦ୍ମ ମୁଦ୍ରା, ୩. କମ୍ବୁ ମୁଦ୍ରା, ୪. ନିଷ୍ଠୁରା ମୁଦ୍ରା, ୫. ଗୋବିଷାଣା ମୁଦ୍ରା, ୬. ଧେନୁ ମୁଦ୍ରା, ୭. ତାପିନୀ ମୁଦ୍ରା । ପ୍ରୟୋଜନ ବିଧି ଅନୁସାରେ ଏହି ସପ୍ତ ମୁଦ୍ରା ପ୍ରଦର୍ଶନ କରାଯାଇଥାଏ ।
(ଶ୍ରୀ.ଜି.- ପୃ. ୨୦୮)

**ଶ୍ରୀମନ୍ଦିରସ୍ଥ ପାଦୁକା**- ଶ୍ରୀମନ୍ଦିରର ପୂର୍ବଦିଗ - କଳ୍ପବଟ ନିକଟରେ ମହର୍ଷି ମାର୍କଣ୍ଡେୟଙ୍କର ପାଦୁକା । ଶ୍ରୀମନ୍ଦିର ପଶ୍ଚିମ ଦିଗ - ଇନ୍ଦ୍ରଦ୍ୟୁମ୍ନଙ୍କ ପାଦୁକା । ଶ୍ରୀମନ୍ଦିର ଉତ୍ତର ଦିଗ - ଭୃଗୁଙ୍କର ପାଦୁକା । ଶ୍ରୀମନ୍ଦିର ଦକ୍ଷିଣ ଦିଗ -

ରୋହିଣୀକୁଣ୍ଡ ନିକଟରେ ବ୍ରହ୍ମାଙ୍କର ପାଦୁକା ବିଦ୍ୟମାନ ।
(ଶ୍ରୀ.କି. - ପୃ. ୩୦) ।

**ଶ୍ରୀମନ୍ଦିରସ୍ୱତ୍ୱଲିପି-** ଶ୍ରୀମନ୍ଦିର ପରିଚାଳନା ପାଇଁ ଚୋଳଗଙ୍ଗ ଓ ଅନଙ୍ଗଭୀମଙ୍କ ସମୟରେ ଯେଉଁ ନୀତି ନିର୍ଦ୍ଧାରଣ ହୋଇଥିଲା ଓ ଯାହା କର୍ମାଙ୍ଗୀରେ ଲିପିବଦ୍ଧ ହୋଇଥିଲା, ୧୮୦୫ରେ ଗ୍ରୋମ୍‌ଙ୍କ ରିପୋର୍ଟ ଏହି ସମସ୍ତଙ୍କୁ ନେଇ ୧୯୫୨ ମସିହାରେ ସେବାୟତ ଓ ସେବକମାନଙ୍କ କାର୍ଯ୍ୟସୂଚୀ ନିର୍ଦ୍ଧାରଣ କରି ସେମାନଙ୍କୁ ସୂଚାଇ ଦିଆଯାଇଥିଲା ଏବଂ ୧୯୫୪, ୧୯୫୫ରେ କେତେକ ପରିବର୍ତ୍ତନ ହୋଇ ଏକ ବିଧିବଦ୍ଧ ଭାବେ ସ୍ୱତ୍ୱଲିପି ପ୍ରସ୍ତୁତ ହୋଇ ୧୯୬୦ରୁ ଏହା ପ୍ରଚଳିତ ହୋଇଆସୁଅଛି । ଏହାର ଅନୁସରଣରେ ସେବକ ଓ ସେବାୟତମାନେ ନିଜର କର୍ମ କରନ୍ତି ଓ ଠିକ୍ ସମୟାନୁସାରେ ଠାକୁରଙ୍କ ନୀତିକାନ୍ତି ଓ ବିଭିନ୍ନ ପର୍ବପର୍ବାଣି ଯାତ୍ରା ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇଆସୁଅଛି ।
(ଓଡ଼ିଆ ଗେଜେଟ୍ - ଫେ. ୧୫, ୧୯୬୪) ।

**ଶ୍ରୀମୁଖଓଡା-**ଦେ.ବି.- ଶ୍ରୀଜୀଉଙ୍କ ଶ୍ରୀମୁଖରେ ଯେଉଁ ଧଳା କଳା ପଡ଼ି ତା' ଉପରେ ଶ୍ରୀମୁଖ ଚିତ୍ରିତ ହୋଇଥାଏ ।
(ପୁ.ବୋ. - ପୃ. ୩୦୬) ।

**ଶ୍ରୀମୁଖଖଣ୍ଡୁଆ-**ଦେ.ବି.- ପହଡ଼ରେ ଶ୍ରୀମୁଖରେ ପଡୁଥିବା ଖଣ୍ଡୁଆ । ରଥଯାତ୍ରାର ଅବ୍ୟବହିତ ପୂର୍ବରୁ ପୁଷ୍ପାଳକ ସେବକମାନେ ଠାକୁରଙ୍କଠାରେ ଲାଗି କରୁଥିବା ଖଣ୍ଡୁଆ ବସ୍ତ୍ର ।
(ଶ୍ରୀ.ଶ. - ପୃ. ୧୯୨) ।

**ଶ୍ରୀମୁଖସିଂହାର-**ଦେ.ବି.- ଶ୍ରୀମନ୍ଦିରର ଏକ ସେବକମାତ୍ର । ଏ ହେଉଛନ୍ତି ଦଉ ମହାପାତ୍ର ସେବକ । ଶ୍ରୀଜୀଉଙ୍କ ଶ୍ରୀମୁଖ ଚିତ୍ରକାର, ଶ୍ରୀମୁଖ ସିଂହାରୀ ବା ଭିତର ବନକ ସେବକ । ଦଉଖଟଣି ନିଯୋଗ- ଶ୍ରୀଜୀଉଙ୍କ ଆଙ୍ଗିକ । ପରମ ସେବକ ଠାକୁରଙ୍କୁ ଅଣସର ପିଣ୍ଡିରେ, ପ୍ରତି ଗୁରୁବାରରେ ବନକ କରିବେ । ପ୍ରତି ତିନିମାସରେ ଶ୍ରୀମୁଖ ସିଂହାର କରିବେ । ଭିଆଣଦଉ ମହାଶ୍ରମ ନିଯୋଗ- ପ୍ରତି ରବିବାର ଦିନ ଅବକାଶ ପୂର୍ବରୁ କନା ଓ କର୍ପୂର ଜଳରେ ତିନିଠାକୁର ଓ ନୀଳମାଧବଙ୍କ ଶ୍ରୀମୁଖ ପୋଛିବା, ଗୁରୁବାର ନଚେତ ବୁଧବାରରେ ଅଧର ପୋଛା ଓ ବନକଲାଗି, ଅଣସରରେ ଖଡ଼ିଲାଗି, ତ୍ରୟୋଦଶୀରୁ ନେତ୍ରୋତ୍ସବ ପର୍ଯ୍ୟନ୍ତ ବନକଲାଗି, ମହାଅଣସରରେ ଅନୁରୂପ କାର୍ଯ୍ୟ, ନଅରକୁ ଖଡ଼ି ପ୍ରସାଦ ନେବା ଆଦି କାର୍ଯ୍ୟ କରନ୍ତି । ଅଶାଢ଼ୀ ବନ୍ଧା । ସଂଜ୍ଞା- ଦଉ ମହାପାତ୍ର ।
(ଶ୍ରୀ.ସ୍ୱ. ୩ୟ- ପୃ. ୯୦) ।

**ଶ୍ରୀରାମଚନ୍ଦ୍ର ମନ୍ଦିର-**ଦେ.ବି.- ଶ୍ରୀମନ୍ଦିର ଭିତର ବେଢ଼ାରେ ଏହି ମନ୍ଦିର ଅବସ୍ଥିତ । ଠାକୁରଙ୍କ ଦୈନିକ ନୀତି ସକାଶେ କୋଠରୁ ଭୋଗ ଖଞ୍ଜା ଅଛି । ଏତଦ୍‌ବ୍ୟତୀତ ଶ୍ରୀମନ୍ଦିର ବେଢ଼ାରେ - ୧. ବାଇଶି ପାହାଚରେ ଶ୍ରୀରାମଚନ୍ଦ୍ରଦେବ ମନ୍ଦିରରେ ରାମଚନ୍ଦ୍ରଙ୍କ ଚିତ୍ର ପ୍ରତିମା ରହିଛି । ୨. ଦକ୍ଷିଣିଘରେ ରାମ (ଚଳନ୍ତି ବିଗ୍ରହ) ପ୍ରତିଷ୍ଠିତ ପୂର୍ବକ ପୂଜିତ ହେଉଛନ୍ତି । ୩. ଭିତର ବେଢ଼ାର ଦଧିବାମନ ମନ୍ଦିର ପାର୍ଶ୍ୱରେ ଥିବା ରାମଚନ୍ଦ୍ର ମନ୍ଦିରରେ ରାମଚନ୍ଦ୍ର ବିଗ୍ରହ ମୁଖ୍ୟ ବିଗ୍ରହ ରୂପେ ଅଧିଷ୍ଠିତ ପୂର୍ବକ ଦୈନନ୍ଦିନ ପୂଜିତ ହେଉଛନ୍ତି । ୪. ନବଗ୍ରହ ମନ୍ଦିରରେ ରାମମୂର୍ତ୍ତି ଅଧିଷ୍ଠିତ । ୫. ମଣ୍ଡଣି ଘରେ ରାମଚନ୍ଦ୍ରଙ୍କ ବିଗ୍ରହ ଅଧିଷ୍ଠିତ ହୋଇଛନ୍ତି । ୬. ଭିତର ବେଢ଼ାରେ ବୃନ୍ଦାବନ ଚନ୍ଦ୍ର ଠାକୁରଙ୍କ ପାର୍ଶ୍ୱରେ ଥିବା ସରଘରେ ସୀତାରାମ ବିଗ୍ରହ ଉପାସିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୮, ଶ୍ରୀ.ବେ.ଦେ. - ପୃ. ୧୩୦) ।

**ଶ୍ରୀ ରାମଜନ୍ମ ନୀତି-**ଦେ.ବି.- ଏହି ନୀତିରେ ଶ୍ରୀଜଗନ୍ନାଥ ମନ୍ଦିରରେ ମହାଜନେ ଶ୍ରୀରାମଚନ୍ଦ୍ର ଠାକୁରଙ୍କୁ ଭିତର ସିଂହାସନରେ ବିଜେ କରାନ୍ତି । ଦୁଇଜଣ ସେବକଙ୍କ ମଧ୍ୟରୁ ଜଣେ ଦଶରଥ ଓ ଅନ୍ୟ ଜଣେ କୌଶଲ୍ୟା ଭାବରେ ଖଣ୍ଡୁଆ ଘୋଡ଼ାଇ ହୋଇ ଜନ୍ମବିଧି ଅନୁଷ୍ଠାନ କରାନ୍ତି । କର୍ପୂର ଆଳତି ବନ୍ଦାପନା ହେବା

ପରେ ମହାସୁଆର ଖଣ୍ଡୁସ ମସଲା, କ୍ଷୀର ମଣୋହି କରାନ୍ତି । ମହାସୁଆର ଜୟବିଜୟ ଦ୍ୱାରଠାରେ ଚରୁଅନ୍ନ ମଣୋହି କରାନ୍ତି । ଏହାପରେ ବାହୁଡ଼ା ବିଜେ ହୋଇ ଦକ୍ଷିଣି ଘରକୁ ବିଜେ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୩) ।

**ଶ୍ରୀ ରାମନବମୀ**-*ଦେ.ବି.*- ଶ୍ରୀରାମ ଜନ୍ମ ଲୀଳା ଚୈତ୍ର ଶୁକ୍ଳପକ୍ଷ ଅଷ୍ଟମୀଠାରୁ ଆରମ୍ଭ ହୋଇ ରାମାଭିଷେକ ପରେ ଶେଷ ହୁଏ । ମାତ୍ର ଶ୍ରୀରାମ ନବମୀ ଦିନ ରାମ ଓ ଲକ୍ଷ୍ମଣଙ୍କୁ ମହାଜନମାନେ ହାତରେ ସିଂହାସନରେ ବିଜେ କରାନ୍ତି । ପୂଜାପଣ୍ଡା ଆଜ୍ଞାମାଳ ଦେବା ପରେ ଘଣ୍ଟ, ଛତା ଓ କାହାଳୀ ସହ ଜଗନ୍ନାଥ ବଲ୍ଲଭ ବିଜେ କରାନ୍ତି । ଏହା ଚୈତ୍ର ଶୁକ୍ଳ ଦଶମୀ ଦିନ ଅନୁଷ୍ଠିତ ହୁଏ । ଏହିଦିନ ହରଚଣ୍ଡୀ ସାହି ଲୋକେ ଯାନିଯାତ୍ରା ବାହାର କଲା ଉତ୍ତାରେ ଦିଅଁ ବାହୁଡ଼ା ବିଜେ ହୋଇ ଆସି ଦକ୍ଷିଣି ଘରେ ବିଜେ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୩) ।

**ଶ୍ରୀରାମ ବନବାସ**- ଶ୍ରୀମନ୍ଦିରରେ ଚୈତ୍ର ଶୁକ୍ଳ ଦ୍ୱାଦଶୀ ଦିନ ରାମକୃଷ୍ଣ ଓ ସୀତା ଛାମୁ ଦିହୁଡ଼ି ସହ ସିଂହାସନ ବିଜେ କରନ୍ତି । ଏହାପରେ ପାଲିଙ୍କି ଦ୍ୱାରା ଶ୍ରୀଜଗନ୍ନାଥ ବଲ୍ଲଭ ବିଜେ କରନ୍ତି । ମାର୍କଣ୍ଡେଶ୍ୱର ସାହିଲୋକେ ବନବାସ ଲୀଳା ପ୍ରସ୍ତାବ କରନ୍ତି ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୧୪) ।

**ଶ୍ରୀକ୍ଷେତ୍ର**-*ଦେ.ବି.*- ଶ୍ରୀକ୍ଷେତ୍ର କହିଲେ ପୁରୀକୁ ବୁଝାଏ । ପରମ ପବିତ୍ର ସ୍ଥାନ, ନଦୀ, ହ୍ରଦ, ସମୁଦ୍ରାଦି ପବିତ୍ର ଜଳାଶୟର ତୀରରୁ ଦୁଇ କୋଶ ପର୍ଯ୍ୟନ୍ତ ବ୍ୟାପ୍ତ ସ୍ଥଳଭୂମି । ପୁରାଣୋକ୍ତ ନୀଳାଚଳକୁ କେନ୍ଦ୍ରକରି ପାଞ୍ଚକୋଶ ବ୍ୟାପୀ ପବିତ୍ର ଭୂମି ହେଉଛି ଏହି ପୁରୁଷୋତ୍ତମ କ୍ଷେତ୍ର ବା ଶ୍ରୀକ୍ଷେତ୍ର । ପୁଣି ଏହି ପାଞ୍ଚକୋଶ ମଧ୍ୟରୁ ଦୁଇକୋଶ ଅଞ୍ଚଳ ସାଗରର ବେଳାଭୂମି । ଏହି ପଞ୍ଚକୋଶୀ ଅଞ୍ଚଳ ପୌରାଣିକ ମାନଚିତ୍ରରେ ଦକ୍ଷିଣାବର୍ତ୍ତ ଶଙ୍ଖାକୃତି । ସେହି ଶଙ୍ଖର ଉଦର ଭାଗ ସମୁଦ୍ରକୁ ସ୍ପର୍ଶ କରିଛି । ସେହି ସ୍ପର୍ଶ ଯୋଗୁ ସମୁଦ୍ର ପୁରୀର ପଞ୍ଚତୀର୍ଥଙ୍କ ମଧ୍ୟରେ ଶ୍ରେଷ୍ଠ ତୀର୍ଥରାଜ । ସେହି ଶଙ୍ଖନାଭି (ଶଙ୍ଖନାଭିମଣ୍ଡଳ) ବା କେନ୍ଦ୍ରସ୍ଥଳରେ ରହିଛି ନୀଳାଚଳ ତଥା ଶ୍ରୀମନ୍ଦିର । ଶ୍ରୀକ୍ଷେତ୍ର ଶବ୍ଦରେ ଶ୍ରୀକୁ ନେଇ ନାନା ମତ ରହିଛି । କେତେକଙ୍କ ମତରେ ଏଠାରେ ଲକ୍ଷ୍ମୀଙ୍କର ପ୍ରାଧାନ୍ୟ ରହିଛି । ବ୍ରହ୍ମଦେଶ (ମିଆମାର)ର ଗ୍ରୋମ୍ ଅଞ୍ଚଳ ଶ୍ରୀକ୍ଷେତ୍ର ରୂପେ କଥିତ । ଦେଉଳ ପୁରୋହିତ ପଣ୍ଡିତ ହରିହର ମହାପାତ୍ରଙ୍କ ମତରେ ବ୍ରହ୍ମଗିରିରୁ ମାଉସୀମା ମନ୍ଦିର ପର୍ଯ୍ୟନ୍ତ ଅଞ୍ଚଳ ଶ୍ରୀକ୍ଷେତ୍ର ଓ ଗୁଣ୍ଡିଚା ମନ୍ଦିରଠାରୁ କୋଣାର୍କ, କାକଟପୁର, ନିଆଳି ମାଧବ ସମେତ ଅଞ୍ଚଳ ଥିଲା ମାଧବ କ୍ଷେତ୍ର । ଏହି ଦୁଇ କ୍ଷେତ୍ର ମଧ୍ୟରେ ମହାନଦୀର ମୁଖ୍ୟଧାରା ପ୍ରବାହିତ ହୋଇ ବାଙ୍କି ମୁହାଣଠାରେ ସମୁଦ୍ରରେ ପଡ଼ିଥିଲା । ଶ୍ରୀକ୍ଷେତ୍ରରେ କନ୍ଧ ସଭ୍ୟତା ଓ ମାଧବ କ୍ଷେତ୍ରରେ ଶାବର ସଭ୍ୟତା ଗଢ଼ି ଉଠିଥିଲା । କନ୍ଧମାନଙ୍କର ଆରାଧ୍ୟ ଦେବୀ କାମ୍ପିଲ୍ୟାମା ବା ସୁଭଦ୍ରା ମା' ଓ ଶବରମାନଙ୍କର ଆରାଧ୍ୟ ଦେବୀ ଥିଲେ ଜଗନ୍ତା । ଏହି ଦୁଇ ସଭ୍ୟତା ଉପରେ ଗଢ଼ିଉଠିଲା ଆର୍ଯ୍ୟ ସଭ୍ୟତା ଓ ବୌଦ୍ଧ ସଭ୍ୟତା । ଏହି ସଭ୍ୟତାର ଆଗମନ ଫଳରେ ଶ୍ରୀକ୍ଷେତ୍ର ଓ ମାଧବ କ୍ଷେତ୍ରର ବିକାଶ ଘଟିଲା । ଶଙ୍କରାଚାର୍ଯ୍ୟଙ୍କ ଆରାଧ୍ୟ ଥିଲେ ଶିବ ଏବଂ ସେ ନଦୀର ଅପରପାର୍ଶ୍ୱବର୍ତ୍ତୀ ମାଧବ, ଶ୍ରୀକ୍ଷେତ୍ରର ଶ୍ରୀ ଓ ନିଜର ଆରାଧ୍ୟ ଦେବ ଶିବଙ୍କୁ ମିଶାଇ ଏକ ବିଗ୍ରହ ପୁରୁଷୋତ୍ତମ ଯଜ୍ଞ ନୃସିଂହଙ୍କ କ୍ରୋଡ଼ରେ ଲକ୍ଷ୍ମୀ ସ୍ଥାପନ କଲେ । ଏହି ମିଳିତ କ୍ଷେତ୍ର ଶ୍ରୀପୁରୁଷୋତ୍ତମ କ୍ଷେତ୍ର ରୂପେ ପ୍ରସିଦ୍ଧ ହେଲା ।

( ପୁ.ବୋ.- ପୃ. ୩୦୭)

**ଶ୍ରୀକ୍ଷେତ୍ର ନୃସିଂହ**-*ସଂ.ବି.*- ଚତୁର୍ଦ୍ଧାମୂର୍ତ୍ତି ଦାରୁ ବିଗ୍ରହ ପ୍ରତିଷ୍ଠା ପୂର୍ବରୁ ଶ୍ରୀବିଷ୍ଣୁ ଶ୍ରୀନୃସିଂହ ରୂପରେ ପୂଜା ପାଉଥିଲେ । ପରବର୍ତ୍ତୀ ସମୟରେ ଶ୍ରୀକ୍ଷେତ୍ରରେ ନବନୃସିଂହ ବିଦ୍ୟମାନ ହୋଇ ପୂଜା ପାଇଲେ, ଯଥା- ୧. ପ୍ରଥମ ଦାରୁ

ଆବିର୍ଭାବସ୍ଥଳ (ଚକ୍ରତୀର୍ଥ)ରେ ପୁରୁଷୋତ୍ତମ ନୃସିଂହ, ୨. ଆଡ଼ପ ମଣ୍ଡପରେ ଲକ୍ଷ୍ମୀ ନୃସିଂହ, ୩. ଅନ୍ତର୍ବେଦୀ ଓ ବଟସାଗର ମଧ୍ୟବର୍ତ୍ତୀସ୍ଥଳରେ କଣ୍ଠ ବା ପଣ୍ଡୁ ନୃସିଂହ, ୪. ଶ୍ରୀମନ୍ଦିରର ପଶ୍ଚିମପଟ ବାଡ଼ରେ ନିଶା ନୃସିଂହ, ୫. ସ୍ତମ୍ଭ ନୃସିଂହ, ୬. ସିଙ୍ଗଡ଼ା ନୃସିଂହ, ୭. ବେଢ଼ା ନୃସିଂହ, ୮. ଆଦି ନୃସିଂହ, ୯. ପୁରୁଷୋତ୍ତମ ଦାରୁବ୍ରହ୍ମରୂପୀ ଶ୍ରୀନୃସିଂହ ।

ଶ୍ରୀକ୍ଷେତ୍ରର ଚତୁର୍ଦ୍ଦିଗରେ ଥିବା ନୃସିଂହ ଯଥା- ପୂର୍ବରେ ଚକ୍ର ନୃସିଂହ, ପଶ୍ଚିମରେ ଉଗ୍ରନିଶା ନୃସିଂହ, ଉତ୍ତରରେ ଆଦି ନୃସିଂହ, ଦକ୍ଷିଣରେ ପଣ୍ଡ ନୃସିଂହ । ଏହାବ୍ୟତୀତ ସିଙ୍ଗଡ଼ା ନୃସିଂହ ବାରବାଟି ନୃସିଂହ ଶ୍ରୀକ୍ଷେତ୍ରରେ ଦେଖିବାକୁ ମିଳେ ।

(ଶ୍ରୀ.ଜି. - ପୃ. ୨୭/୩୧) ।

**ଶ୍ରୀକ୍ଷେତ୍ରେ ପୂଜିତା ଦେବୀ**-*ଦେ.ବି.*- ଶ୍ରୀକ୍ଷେତ୍ରେ ପୂଜିତା ଦେବୀଙ୍କୁ ଚାରି ଶ୍ରେଣୀରେ ବିଭକ୍ତ କରାଯାଏ । ଯଥା- ଦେବୀ, ଚଣ୍ଡୀ, କାଳୀ ଓ ମଙ୍ଗଳା ।

୧. ଦେବୀ- ଶ୍ରୀମନ୍ଦିର ବାହାର, ଭିତର ବେଢ଼ା ଓ ଶ୍ରୀମନ୍ଦିର ବାହାରେ ଅର୍ଥାତ୍ ଶ୍ରୀକ୍ଷେତ୍ରରେ ଥିବା ଦେବୀ- କମଳା, ବିମଳା, ସରସ୍ୱତୀ, ମହାଲକ୍ଷ୍ମୀ, ନାରାୟଣୀ, ସତ୍ୟଭାମା, ଷଷ୍ଠୀ, ସାବିତ୍ରୀ, କନକଦୁର୍ଗା, ଝାଡ଼େଶ୍ୱରୀ, ଖୁଲଣାଦେବୀ, ବନଦୁର୍ଗା, ମାଣ୍ଡଦେବୀ, କାଳିକା, କାଳିନ୍ଦୀ, ରୁକ୍ମିଣୀ, ଦେବକୀ, ଯଶୋଦା, ଜମ୍ବୁବତୀ, ମିତ୍ରବନ୍ଧ୍ୟା, ଭଦ୍ରା, ଲକ୍ଷଣା, ଉତ୍ତରାୟଣୀ, ଜାଗୁଳେଇ, ଶୀତଳା, ମରିଚାଇ, ଅଲପଦ୍ମା, ହାତଯୋଡ଼ି, ଷୋଳପୁଅ ମା, ବାରାହୀ, ବାସେଳୀ, ଅଲେର ଇତ୍ୟାଦି ।

୨. ଚଣ୍ଡୀ- ରାମଚଣ୍ଡୀ, ହରଚଣ୍ଡୀ, କୁତାମଚଣ୍ଡୀ, ଆଲାମଚଣ୍ଡୀ, ମଶାଣୀଚଣ୍ଡୀ, ଚାମୁଣ୍ଡା, ସପ୍ତମାତୃକା, ବିଶିରି ଠାକୁରାଣୀ, ଅର୍ଦ୍ଧଶୋଷଣୀ, (ମାଉସୀମା), ଶଙ୍କଟମୋଚନୀ, ମୁହାଣହରଚଣ୍ଡୀ, ବାଙ୍କିମୁହାଣ ରାମଚଣ୍ଡୀ ।

୩. କାଳୀ - ଶ୍ୟାମାକାଳୀ, ଦକ୍ଷିଣକାଳୀ, ଭଦ୍ରକାଳୀ, ଗଛକାଳୀ, ବେଢ଼ାକାଳୀ, ବାଟକାଳୀ, କାଳିକରାଳୀ ।

୪. ମଙ୍ଗଳା - ବାଟମଙ୍ଗଳା, ଘାଟମଙ୍ଗଳା, ବଟମଙ୍ଗଳା, ସର୍ବମଙ୍ଗଳା, ହେଙ୍ଗୁଳା, ଯାଗୁଳା ଆଦି ଅନ୍ତର୍ଭୁକ୍ତ ।

(ଶ୍ରୀ.ଜି. - ପୃ. ୨୭) ।

**ଶ୍ରୀକ୍ଷେତ୍ରର ପବିତ୍ର ଶିଳା**-*ସଂ.ବି.*- ଶ୍ରୀକ୍ଷେତ୍ରର ଚାରିଗୋଟି ପବିତ୍ର ଶିଳା ଦେଖିବାକୁ ମିଳେ । ସେଗୁଡ଼ିକ ହେଲା ୧. ଯମଶିଳା, ୨. ପିତୃଶିଳା, ୩. ମୁକ୍ତିଶିଳା, ୪. କୈବଲ୍ୟ ଶୀଳା । ଯମଶିଳା- ଶ୍ରୀମନ୍ଦିରର ବାଇଶି ପାହାଚର ୨ୟ ସୋପାନରେ ଅବସ୍ଥିତ । ପିତୃଶିଳା- ସ୍ୱର୍ଗଦ୍ୱାର ରାସ୍ତାରେ ଉଗ୍ରେଶ୍ୱର ମଣ୍ଡପ ବାଉଳି ମଠ ସମ୍ମୁଖରେ ଅବସ୍ଥିତ । ମୁକ୍ତିଶିଳା- ଶ୍ୱେତଗଙ୍ଗା ପୁଷ୍କରିଣୀ ନିକଟ ଶ୍ୱେତ ମାଧବଙ୍କ ପଶ୍ଚିମକୁ ଓ ବରାହୀ ଦେବୀଙ୍କର ପୂର୍ବରେ ରହିଛି । ୪. କୈବଲ୍ୟ ଶିଳା- ଶଙ୍ଖନାଭି ମଣ୍ଡଳର କେନ୍ଦ୍ରସ୍ଥଳରେ ଅର୍ଥାତ୍ ଅନ୍ତର୍ବେଦୀରେ ଅବସ୍ଥିତ ।

(ଶ୍ରୀ.ଜି. - ପୃ. ୩୫୬, ଶ୍ରୀମନ୍ଦିର ରଥସଂଖ୍ୟା- ୨୦୦୫, ପୃ. ୭୫) ।

**ଶ୍ରୀ କ୍ଷେତ୍ରପାଳ ମହାଦେବ**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ା ପରିସର ମଧ୍ୟରେ ପ୍ରତିଷ୍ଠିତ କେତେକ ଶିବ ମନ୍ଦିର ମଧ୍ୟରେ ଶ୍ରୀ କ୍ଷେତ୍ରପାଳ ମହାଦେବ ଅନ୍ୟତମ । ମୁକ୍ତିମଣ୍ଡପର ପଶ୍ଚାତ୍ ଭାଗରେ ଦକ୍ଷିଣାଭିମୁଖୀ ହୋଇ ମହାଦେବ ମନ୍ଦିରଟି ବିଦ୍ୟମାନ । ଜନଶ୍ରୁତି ଅନୁଯାୟୀ କ୍ଷେତ୍ରପାଳ ମହାଦେବ ଶ୍ରୀକ୍ଷେତ୍ର ତଥା ଶ୍ରୀମନ୍ଦିରର ରକ୍ଷକ ଅଟନ୍ତି । ଅନନ୍ତ ବାସୁଦେବ ମନ୍ଦିରର ଅତି ନିକଟରେ କ୍ଷେତ୍ରପାଳ ମନ୍ଦିରରେ କ୍ଷେତ୍ରପାଳ ଏକ କ୍ଷୁଦ୍ର ଲିଙ୍ଗ ରୂପରେ ବିରାଜିତ ତଥା ଉପାସିତ ହେଉଛନ୍ତି । ଏହି ମହାଦେବ ବା ଭୈରବ ଶ୍ରୀମନ୍ଦିର ତଥା ଶ୍ରୀକ୍ଷେତ୍ରର ରକ୍ଷକ ହୋଇଥିବାରୁ ଏହାଙ୍କୁ କ୍ଷେତ୍ରପାଳ ମହାଦେବ କୁହାଯାଏ । ଯଜ୍ଞାଦି, ପ୍ରତିଷ୍ଠା କର୍ମ, ଶାନ୍ତି ଅନୁଷ୍ଠାନ ତଥା କୃଷିକ୍ଷେତ୍ରର ସୁରକ୍ଷା ତଥା ସମ୍ବର୍ଦ୍ଧନା ନିମିତ୍ତ

କ୍ଷେତ୍ରପାଳଙ୍କୁ ଉପାସନା କରାଯାଇଥାଏ । ତାଙ୍କ ଉପାସନା ଦ୍ୱାରା କ୍ଷେତ୍ର ଆଦିର ରକ୍ଷା ସମ୍ଭବ ହୋଇଥାଏ । କ୍ଷେତ୍ରପାଳଙ୍କୁ ଦର୍ଶନ କରି ମହାପ୍ରଭୁ ଜଗନ୍ନାଥଙ୍କୁ ଦର୍ଶନ କଲେ ଶ୍ରୀକ୍ଷେତ୍ର ଦର୍ଶନ ଓ ଶ୍ରୀବିଗ୍ରହ ଦର୍ଶନର ପୂର୍ଣ୍ଣାଙ୍ଗ ଫଳ ମିଳିଥାଏ । ସାଧାରଣତଃ ଅଧିକାଂଶ ଭକ୍ତ ତଥା ଦର୍ଶନାର୍ଥୀ ଏହି ମନ୍ଦିରକୁ ଦର୍ଶନ କରିପାରି ନ ଥାନ୍ତି । କାରଣ ମୁକ୍ତିମଣ୍ଡପର ପଛପାର୍ଶ୍ୱକୁ ମନ୍ଦିରଟି ରହିଥିବାରୁ ଜନସାଧାରଣଙ୍କ ଲୋକଲୋଚନକୁ କ୍ଷେତ୍ରପାଳ ମନ୍ଦିରଟି ଆସିପାରି ନ ଥାଏ । ସଂପୃକ୍ତ ମନ୍ଦିରର ପୂଜକ ଦେବନୀତି ସମାପନ କରି ମନ୍ଦିର ଦ୍ୱାରରେ ତାଲା ପକାଇ ଦେଉଥିବାରୁ ଅଧିକାଂଶ ସମୟରେ ମନ୍ଦିରଟି ବନ୍ଦ ରହିଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪୧, କ୍ଷେ.ସ.) ।

**ଶ୍ରୀକ୍ଷେତ୍ରର ସାହିଯାତ**- ଚୈତ୍ର ମାସ ଶୁକ୍ଳ ନବମୀ ତିଥିରୁ ଦ୍ୱିତୀୟା ପର୍ଯ୍ୟନ୍ତ ନବଦିନ ବ୍ୟାପୀ ଶ୍ରୀମନ୍ଦିର ତଥା ସାହିମାନଙ୍କରେ ଶ୍ରୀରାମଜନ୍ମ ଲୀଳାଠାରୁ ଅଭିଷେକ ପର୍ଯ୍ୟନ୍ତ ଉତ୍ସବମାନ କ୍ରମାନ୍ୱୟରେ ଅନୁଷ୍ଠିତ ହୁଏ । ଏହି ସାହିଯାତରେ ମୁଖ୍ୟତଃ ପାଞ୍ଚଟି ସାହି ଅଂଶଗ୍ରହଣ କରିଥାନ୍ତି, ଯଥା- ବାଲିସାହି, ହରଚଣ୍ଡୀ ସାହି, ଦୋଳମଣ୍ଡପ ସାହି, ମାର୍କଣ୍ଡେଶ୍ୱର ସାହି ଓ କୁଣ୍ଡେଇବେଣ୍ଟ ସାହି । ସାହିଯାତ ସାଧାରଣତଃ ଗୋଟିଏ ସାହିରୁ ଅନ୍ୟ ବାଦୀ ସାହିକୁ ଯାଇଥାଏ । ସେହି କ୍ରମରେ କାଳିକା ଦେବୀ ସାହିରୁ ଶ୍ରୀରାମଜନ୍ମ, ହରଚଣ୍ଡୀ ସାହିରୁ ମାରିଚ, ସୁବାହୁ, ପର୍ଶୁରାମ, ମାର୍କଣ୍ଡେଶ୍ୱର ସାହିରୁ ରାମ ଲକ୍ଷ୍ମଣ ସୀତା ବନବାସ, କୁଣ୍ଡେଇବେଣ୍ଟ ସାହିରୁ ସୀତା ଚୋରି, ମାୟାରାବଣ ବଧ, ଦୋଳମଣ୍ଡପ ସାହିର ଲଙ୍କାପୋଡ଼ି, ହନୁମାନ, ରାବଣ, ବାଲିସାହିରୁ ସେତୁବନ୍ଧ, ନିକୁମ୍ଭିଳାପଞ୍ଝା, ବଧ ରାବଣ, ଗୌଡ଼ବାଡ଼ ସାହିରୁ ଅଭିଷେକ ଯାତ୍ରା ଆଦି ବାହାରି ନିଜ ନିଜ ବାଦୀ ସାହିମାନ ବୁଲି ଶେଷରେ ଜଗନ୍ନାଥ ବଲ୍ଲଭ ମଠକୁ ଗମନ କରନ୍ତି ଓ ଏହି ମଠରେ ଉକ୍ତ ସାହିଗୁଡ଼ିକର ଉଦ୍‌ଯାପନ ସମାରୋହ ହୋଇଥାଏ । ସଠରାନୃତ୍ୟ ଓ ନାଗାବେଶ ମଧ୍ୟ ସାହି ଯାତରେ ଅନ୍ତର୍ଭୁକ୍ତ । ଅଭିଷେକ କେବଳ ପୁଷ୍ୟାକର୍କଟ ଯୋଗରେ ଅନୁଷ୍ଠିତ ହୁଏ ।
(ଶ୍ରୀ.ଜି. - ପୃ. ୨୯୭) ।

**ଶ୍ରୀଂ**-*ସଂ.ବି.*- ଅଣାକାର ମତ ଅବଲମ୍ବନକାରୀ ତ୍ରିବୀଜ ମଧ୍ୟରୁ ଦ୍ୱିତୀୟ । ରମା, ରାଧା ଓ ବଳରାମଙ୍କ ଏହା ଧ୍ୟାନମନ୍ତ୍ର । ଏହାର ଭାବାର୍ଥ- ରାମ, ସୁଭଦ୍ରା, ହରିତ୍ ବର୍ଣ୍ଣ, ଋଗ୍‌ବେଦ, ବ୍ରହ୍ମା, ଅକାରର ନ'ଗୁଣ ।
(ଓ.ସାଂ.ଶ. - ପୃ. ୩୪୦) ।

**ଶ୍ଳୀଂ**-*ଦେ.ବି.*- ସୁଭଦ୍ରା, ରାଧା, ରଜ, ମାତାଙ୍କର ବୀଜମନ୍ତ୍ର ।
(ଓ.ସାଂ.ଶ. - ପୃ. ୩୪୦) ।

**ଶୁଆସାରି ଦେଉଳ**-*ଦେ.ବି.*- ପ୍ଲଟ ନଂ. ୧୨୫ । ଶ୍ରୀମନ୍ଦିର ବେଢ଼ାରେ ଥିବା ଏକ ମନ୍ଦିର । ଏଠାରେ ଦୈନିକ ନୀତି ନିମନ୍ତେ ଶ୍ରୀମନ୍ଦିର ତରଫରୁ ଭୋଗ ଖଞ୍ଜା ଅଛି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪୬) ।

**ଶୁଖିଲି ମହାପ୍ରସାଦ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ମିଷ୍ଟାନ୍ନ ଭୋଗ ବିଶେଷ । ଶୁଖିଲା ମିଷ୍ଟାନ୍ନ ଭୋଗ, ଯାହା ଅନେକଦିନ ଅବିକୃତ ରଖାଯାଇପାରେ ।
(ପୂ.ଓ.ଭା. - ପୃ. ୭୭୨୬) ।

**ଶୁକ୍ଳଫୁଲ**-*ଦେ.ବି.*- ଶ୍ରୀଜଗନ୍ନାଥ ପରମ୍ପରାରେ ଅଣସର ସମୟରେ ତିନି ଠାକୁର ପାଇଁ କେବଳ ଶୁକ୍ଳ ବାସଫୁଲ ବ୍ୟବହାର କରାଯାଏ । ଅନ୍ୟ କିଛି ଫୁଲ ଲାଗି ହୁଅନ୍ତି ନାହିଁ । ଛେରାପହଁରା ସମୟରେ ଭଣ୍ଡାର ମେକାପ ରଥ ଚାରିପାଖରେ ବୁଲି ଶୁକ୍ଳ ଫୁଲ ଆଗରେ ପକାଇ ଚାଲନ୍ତି ଓ ରାଜା ସୁନା ଖଡ଼ିକା ଧରି ରଥ ଚାରିପଟେ ମାର୍ଜନା କରନ୍ତି ।
(ଶ୍ରୀ.ସ୍ୱ. - ପୃ.୨୦/୬୨) ।

**ଶୁକ୍ଳସଜ**-*ଦେ.ବି.*- ଶ୍ରୀମନ୍ଦିରରେ ନେତ୍ରୋତ୍ସବ ଦିନ ରାଘବଦାସ ମଠ ଦେଇଥିବା ଶୁକ୍ଳସଜ ଠାକୁରଙ୍କୁ ଲାଗିହୁଏ ଓ ତା'ପରେ ଆଳତି ଅବକାଶ ହୁଏ । ଶୁକ୍ଳସଜ-ତୁଳି- ୨, ମାର୍କିନ କନା ଏକ ଗଜ,

ଶୁକ୍ଳ ମୁଠିମାଠ ଚାରି ଗଜ, ଶୁକ୍ଳ ଚଦର ଛଅଖଣ୍ଡ, ସେନାପଟାଲାଗି ଗଡ଼ା-ବଇଆଳିଶି ଖଣ୍ଡ, କାନୁଆସି ଗଡ଼ା ନଅ ଖଣ୍ଡ, କୁସୁମି ଚାଦର ଛଅ ଖଣ୍ଡ, ଅଧର କୁସୁମି ଦୁଇ ଖଣ୍ଡ ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୭) ।

**ଶୁଦ୍ଧପାଇକ**-*ଦେ.ବି.*- ଶ୍ରୀମନ୍ଦିରର ରୋଷ ଦ୍ୱାରରେ ରହି ରୋଷକୁ ଯାଉଥିବା ଦ୍ରବ୍ୟ ତନଖି କରୁଥିବା ସେବକ ।
(ପୁ.ବୋ. - ପୃ. ୩୦୭) ।

**ଶୁଦ୍ଧସୁଆର**-*ଦେ.ବି.*- ବିଦ୍ୟାପତି ଲଳିତାଙ୍କ ବଂଶଧର । କୌଣସି ଅଶୌଚ ହେଲେ ବା ଭୋଗ ମାରା ହେଲେ ଶୁଦ୍ଧ ସୁଆରମାନେ ତାହା ବାହାରକୁ କାଢ଼ି ସଫା କରନ୍ତି । ବଲ୍ଲଭ ପିଣ୍ଡି ସଫା କରନ୍ତି । ଏମାନେ ଯୋଗାଣିଆ ସେବକ । ଶ୍ରୀଠାକୁରଙ୍କ ଦୈନିକ ଓ ସାମ୍ବତ୍ସରିକ ସମସ୍ତ ପୂଜାରେ ଯାବତୀୟ ସାମଗ୍ରୀ ପୂଜା, ଭୋଗ ଇତ୍ୟାଦି ଯୋଗାଇଥାନ୍ତି । ଏ ୩୭ ନମ୍ବର ସେବକ ।
(ଶ୍ରୀ.ସ୍ୱ. - ପୃ. ୧୩ରୁ ୧୫, ଉ.ଇ.ଅ.ଅ. - ପୃ. ୩୪୨) ।

**ଶୁଦ୍ଧାଭକ୍ତି**-*ଦେ.ବି.*- ଫଳ କାମନା ରହିତ ନିଷ୍କାମ ଭକ୍ତି । ହ୍ଲାଦିନୀ, ସନ୍ଧିନୀ, ସମ୍ବିତାତ୍ମିକା, ଚିଦ୍ ଶକ୍ତିର ବୃତ୍ତି ବିଶେଷର ନାମ ଶୁଦ୍ଧ ସତ୍ତ୍ୱ । ଏହି ତିନି ଶକ୍ତିର ସମ୍ମିଳିତ ଅଭିବ୍ୟକ୍ତି ହିଁ ଶୁଦ୍ଧା ଭକ୍ତି । ଶ୍ରୀକୃଷ୍ଣ ସେବା ବ୍ୟତୀତ ଅନ୍ୟ ବାସନା, ଶ୍ରୀକୃଷ୍ଣ ବ୍ୟତୀତ ଅନ୍ୟ ଦେବତାଙ୍କର ପୂଜା, ନିର୍ବିଶେଷ ବ୍ରହ୍ମାନୁସନ୍ଧାନ, ସ୍ୱର୍ଗାଦି ଭୋଗ ସାଧନ କର୍ମ - ଏ ସମସ୍ତ ତ୍ୟାଗ କରି କୃଷ୍ଣ ପ୍ରେମ ଅନୁକୂଳ ପାଇଁ ଐକାନ୍ତିକ ଭାବେ ସାଧନ - ଭଜନାଦି ଅନୁସରଣ କରିବା ହିଁ ଶୁଦ୍ଧା ଭକ୍ତି । ଶୁଦ୍ଧ ସତ୍ତ୍ୱରେ ମାୟାର ସ୍ପର୍ଶ ନ ଥିବାରୁ ଏହା ଶୁଦ୍ଧାଭକ୍ତି । (ଓ.ସାଂ.ଶ. - ପୃ. ୩୩୭, ପୁ.ଓ.ଭା. ପୃ. ୭୭୪) ।

**ଶୁଦ୍ର ସେବକ**-*ଦେ.ବି.*- ଶ୍ରୀମନ୍ଦିରର ଧୋବା ସେବକ ବିଶେଷ । ଏ' ମହାସେଠି ନାମେ ପରିଚିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩୨) ।

**ଶେଷ**-*ଦେ.ବି.*- ବାସୁକି ଓ ବଳରାମଙ୍କୁ ବୁଝାଏ । ଶେଷଦେବ ମୂର୍ତ୍ତି ମଧ୍ୟ ଦକ୍ଷିଣି ଘରେ ଅବସ୍ଥାପିତ ।
(ଶ୍ରୀ.କ୍ଷି. - ପୃ. ୭୩) ।

**ଶ୍ୱେତଗଙ୍ଗା**-*ଦେ.ବି.*-ଶ୍ରୀଜଗନ୍ନାଥ ମନ୍ଦିରର ପଶ୍ଚିମରେ ଶ୍ୱେତଗଙ୍ଗା ପୁଷ୍କରିଣୀ ଅବସ୍ଥିତ ।
(ଶ୍ରୀ.କ୍ଷି. - ପୃ. ୯୬) ।

**ଶ୍ୱେତମାଧବ**-*ଦେ.ବି.*- ଶ୍ୱେତଗଙ୍ଗା ପରିସରରେ ଥିବା ଏକ ଠାକୁର ବିଗ୍ରହ, ଶ୍ୱେତମାଧବ ରୂପେ ବର୍ଣ୍ଣିତ ।)
(ଶ୍ରୀ.କ୍ଷି. - ପୃ. ୯୬) ।

**ଶ୍ୟାମାକାଳୀ**- ମା' ଶ୍ୟାମାକାଳୀ ମନ୍ଦିର ପୁରୁଣା ନଅର ଅଞ୍ଚଳରେ ଅବସ୍ଥିତ । ଏଠାରେ ପୂର୍ବେ ପୁରୀ ଗଜପତି ରାଜାଙ୍କର ରାଜବାଟୀ ଥିଲା ଓ ରାଜା ପରିବାରର ଅଧିଷ୍ଠାତ୍ରୀ ଦେବୀ ଥିଲେ ମା' ଶ୍ୟାମାକାଳୀ । ବର୍ତ୍ତମାନ ରାଜବାଟୀ ଏଠାରେ ଆଉ ନାହିଁ, ମା' ଶ୍ୟାମାକାଳୀ ରାଜ ପରିବାରର ଦେବୀ ହୋଇ ନାହାନ୍ତି ସେ ଆଜି ସମସ୍ତଙ୍କର ମା' ଠାକୁରାଣୀ । ସାଢ଼େ ୩ ଫୁଟ ଉଚ୍ଚତା ବିଶିଷ୍ଟ କଳାମୁଗୁନି ପଥରରେ ନିର୍ମିତ ମା' ଶ୍ୟାମାକାଳୀଙ୍କର ଲାବଣ୍ୟମୟୀ ବିଗ୍ରହ । ଚତୁର୍ଭୁଜା ମା' ତାଙ୍କ ପାଖରେ ଆଉ ଦୁଇଟି ଚତୁର୍ଭୁଜା ଦେବୀ କେହି କେହି କୁହନ୍ତି ବିମଳା ଓ ସର୍ବମଙ୍ଗଳା ପୂଜିତା, ସର୍ବମଙ୍ଗଳାଙ୍କୁ ଚନ୍ଦକା ବା ଚଣ୍ଡିକା ନାମରେ ଅଭିହିତ କରାଯାଇଛି । ମନ୍ଦିର ଅତ୍ୟନ୍ତ ପୁରୁଣା । ଏହା ଗଙ୍ଗ ରାଜାଙ୍କର କୀର୍ତ୍ତି ବୋଲି ମନେ ହୁଏ ।
(ଶ୍ରୀ.କ୍ଷି. - ପୃ. ୯୩) ।

**ଶୋଧ**-*ଦେ.ବି.*- ଶ୍ରୀମନ୍ଦିର ପରମ୍ପରାରେ ଗର୍ଭଗୃହରୁ ଦର୍ଶନାର୍ଥୀଙ୍କୁ ଖାଲି କରିବା କିମ୍ବା ଠାକୁରଙ୍କ ରାତ୍ରି ପହୁଡ଼ ପୂର୍ବରୁ ଶ୍ରୀମନ୍ଦିର ଭିତରୁ ଦର୍ଶନାର୍ଥୀ ଓ ଯାତ୍ରୀମାନଙ୍କୁ ବାହାରକୁ ନେଇ ପରିସର ନିର୍ମଳ ପୂର୍ବକ ଗର୍ଭଗୃହ ଓ ବେଢ଼ା ଜନଶୂନ୍ୟ ଓ ପରିଷ୍କାର ରଖିବା ହେଉଛି ଶୋଧ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୯) ।

**ଶୋଲଚିତା**-*ଦେ.ବି.*- ଶ୍ରୀମନ୍ଦିରରେ ଅଣସର ସମୟର ଭଣ୍ଡାର ସେବକଙ୍କଠାରୁ ପୂର୍ବବର୍ଷ ଲାଗି ହୋଇଥିବା ସୋଲଚିତା ନେଇ ସେଥିରୁ ସୁବର୍ଣ୍ଣ ଓ ପଥର

ବାହାର କରି ନୂତନ ଚିତା ତିଆରି ହୁଏ । ଶ୍ରୀଗୁଣ୍ଡିଚା ଦିନ ଠାକୁର ରଥ ଉପରେ ବିଜେ ହେଲା ପରେ ଘଣ୍ଟ, ଛତା, କାହାଳୀ ଆଦି ବିନ୍ଧାଣିମାନଙ୍କ ଘରକୁ ଯାଇ ସେଠାରେ ପୂଜା ହୁଏ ଓ ବିନ୍ଧାଣିମାନେ ନୂତନ ବସ୍ତ୍ର ପରିଧାନ କରି ନୂତନ ଚାଙ୍ଗୁଡ଼ିରେ ପାହାଡ଼ା ପକାଇ ଚିତାଧରି ଆସି ରଥ ଉପରେ ଦଇତାଙ୍କୁ ଦିଅନ୍ତି ଓ ଦଇତା ଲାଗି କରନ୍ତି । (ଶ୍ରୀ.ସ୍ୱ. - ପୃ. ୮୪) ।

**ଶୃଙ୍ଗାର ବେଶ**-*ସଂ.ବି.*- ଶ୍ରୀଜଗନ୍ନାଥଙ୍କର ଶୃଙ୍ଗାର ବେଶ ତିନି ଭାଗରେ ବିଭକ୍ତ । ପ୍ରଥମତଃ ସକାଳ ସ୍ନାନ ପରେ ଯେଉଁ ବେଶ ତାହା ସକାଳ ଧୂପ ସରିବା ଯାଏ ରୁହେ । ଦ୍ୱିତୀୟ ଛତ୍ର ଭୋଗ ପରେ ବେଶ ସନ୍ଧ୍ୟା ଧୂପ ସରିବା ଯାଏ ରୁହେ । ତୃତୀୟତଃ ସନ୍ଧ୍ୟା ଧୂପ ସରିବା ପରେ ବଡ଼ସିଂହାର ବେଶ ଆସନ୍ତା ସକାଳ ପର୍ଯ୍ୟନ୍ତ ରୁହେ । ଜଗନ୍ନାଥଙ୍କ ବଡ଼ସିଂହାର ବେଶରେ ଅର୍ଥାତ୍ ଶୃଙ୍ଗାର ଦ୍ୟୋତକ ସଜାଇ, ସଜ୍ଜିତ ହୋଇ ଭଗବତୀଙ୍କ ସହିତ ରାତ୍ରିଯାପନ କରନ୍ତି । ବୃନ୍ଦାବନର ଗୋବିନ୍ଦ, କାଶୀର ବିଶ୍ୱନାଥ, ବାବା ବୈଦ୍ୟନାଥ, ତାରକେଶ୍ୱର, ପୁରୀର ଜଗନ୍ନାଥ, ସତ୍ୟବାଦୀର ଗୋପୀନାଥଙ୍କର ରାତ୍ରିରେ ଶୃଙ୍ଗାର ସଜ୍ଜା (ବଡ଼ସିଂହାର) ପରେ ପହଡ଼ ହୁଏ ଓ କବାଟ ବନ୍ଦ ହୁଏ । ରାତ୍ର ୧୦.୩୦ରେ ବଡ଼ସିଂହାର ବେଶ ହେବାର ନିୟମ । ଏଥିପାଇଁ ଶ୍ରୀରାମଦାସ ମଠ ଫୁଲର କରପଲ୍ଲବ, କୁଣ୍ଡଳ ଓ ତଡ଼ଗି ଯୋଗାଏ । ଏମାରମଠ ଫୁଲର ଚନ୍ଦ୍ରିକା ଯୋଗାଏ । ଚାଙ୍ଗଡ଼ ମେକାପ ବାରଲାଗି ପାଟ ଯୋଗାଏ । ଏଥିରେ ଗୀତଗୋବିନ୍ଦ ଲେଖାହୋଇଥାଏ । ବର୍ଷକୁ ଆଠସଜପାଟ ଦରକାର ହୁଏ । ଚନ୍ଦନଲାଗି, ଚାଙ୍ଗଡ଼ ମେକାପ, ମଇଲମ ଲୁଗା ପଷ୍ପାଳକଙ୍କୁ ଦିଅନ୍ତି । ପୁଷ୍ପାଳକ ଠାକୁରଙ୍କୁ ବାରଲାଗି ପାଟ ପିନ୍ଧାନ୍ତି । ମାଳ ଉପରେ ବେଶ କରନ୍ତି । କରପଲ୍ଲବ, କୁଣ୍ଡଳ ଚନ୍ଦ୍ରିକା ଲାଗି ହୁଏ, ତଡ଼ଗି ଓ ଚନ୍ଦ୍ରିକା ସୁଭଦ୍ରାଙ୍କୁ ଲାଗି ହୁଏ । ଏହି ବେଶରେ ଠାକୁରେ କେବଳ ଫୁଲବେଶ ହୁଅନ୍ତି । କର୍ପୂର ଲାଗିପରେ ପୁଷ୍ପାଳକ ସିଂହାସନରୁ ଓହ୍ଲାଇ ଆସିବା ପରେ ବଡ଼ସିଂହାର ଧୂପ ହୁଏ । ସିଂହାସନ ତଳେ ପୂଜା ଠା' ହୁଏ । ଏଥିରେ ମୁରୁଜ ପକାଯାଏ ନାହିଁ । ରୋଷପାଇକ ରୂପା ପିଙ୍ଗଣରେ ଖାଲି ଘିଅ ଆଣି ଭୋଗ ସକାଶେ ଦିଏ । ଟେରା ପଡ଼ିବା ପୂର୍ବରୁ ଧୂପଦୀପ ଦିଆହୁଏ । ପଞ୍ଚୋପଚାରପୂଜା ହୁଏ । ଟେରା ଫିଟା ଲାଗି ପରେ ଆଳତି ହୁଏ ନାହିଁ । ଅନ୍ୟ ସବୁ ନୀତି ଅନ୍ୟାନ୍ୟ ଧୂପ ନୀତି ପରି ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୧-୨୯, ପୂ.ଓ.ଭା. - ପୃ. ୭୭୭୧, ଶ୍ରୀ.ଜି. - ପୃ. ୨୨୦) ।

●

# ଷ

**ଷଟ୍ କୋଣାତ୍ମକ ଅଗ୍ନିଯନ୍ତ୍ର-** ଏହା ଶ୍ରୀମନ୍ଦିରରେ ଥିବା ରୋଷଘରର ଚୁଲି । ଏହି ଚୁଲିରେ ୬ଟି ଝିଙ୍କା ଥାଏ । ଏଣୁ ଏହାକୁ ଷଟ୍ କୋଣାତ୍ମକ ଅଗ୍ନିଯନ୍ତ୍ର କୁହାଯାଏ । ଏହି ଚୁଲିରେ ଏକାଥରକେ ୯ ଗୋଟି ହାଣ୍ଡି ବସେ । ନ' ହେଉଛି ମହାପ୍ରସାଦର ମହାନତା । ଶାରଦା ତିଳକ ଗ୍ରନ୍ଥରେ କୁହାଯାଇଛି, - "ମହତ୍ତ୍ୱଂ ନବ ଗୁଣିତମ୍" ଅର୍ଥାତ୍ ନଅ ବା ନଅର ଗୁଣିତକ ଅଙ୍କ ହେଉଛି ମହାପ୍ରସାଦର ଗୌରବମୟ ଲକ୍ଷଣ । ପ୍ରତିଦିନ ହଜାର ହଜାର ସଂଖ୍ୟାରେ ନୂତନ ମୃତ୍ତିକା ପାତ୍ରରେ 'ବାଷ୍ପସିଦ୍ଧ ପଦ୍ଧତି'ରେ ପ୍ରାୟ ଚାରିଶହ ସୂପକାରଙ୍କ ଦ୍ୱାରା ଏହି ରନ୍ଧନ କାର୍ଯ୍ୟ କରାଯାଇଥାଏ ।
(ଶ୍ରୀ.ପ.ସେ.ପୂ. - ପୃ. ୩୫୯) ।

**ଷଟ୍‌ଚକ୍ର**-*ସଂ.ବି.*- ଷଡ଼ଚକ୍ର । କାୟା ସାଧକମାନଙ୍କ ଶରୀର ମଧ୍ୟରେ ଥିବା ଷଡ଼ଚକ୍ର । ୧. ମୂଳାଧାର ଚକ୍ର- ଗୁହ୍ୟ ଦ୍ୱାରର କିଛି ଊର୍ଦ୍ଧ୍ୱରେ, ୨. ସ୍ୱାଧିଷ୍ଠାନଚକ୍ର- ଲିଙ୍ଗଚକ୍ର - ଲିଙ୍ଗମୂଳରେ, ୩. ମଣିପୁର ଚକ୍ର, ନାଭିଚକ୍ର- ନାଭିମୂଳରେ, ୪. ଅନାହତ ଚକ୍ର ବା ହୃଦଚକ୍ର- ହୃଦୟରେ, ୫. ବିଶୁଦ୍ଧ ଚକ୍ର ବା କଣ୍ଠ ଚକ୍ର- କଣ୍ଠ ଦେଶରେ, ୬. ଆଜ୍ଞାଚକ୍ର ବା ବ୍ରହ୍ମରନ୍ଧ୍ର- ଭ୍ରୂ ମଧ୍ୟରେ । କାୟା ସାଧକମାନଙ୍କର ଶରୀର ଶୁଦ୍ଧି ନିମନ୍ତେ ଏହି ପ୍ରକ୍ରିୟା ଅନୁସରଣ କାମ୍ୟ ।
(ଓ.ସାଂ.ଶ. - ପୃ. ୩୧୪) ।

**ଷଟ୍‌ଶକ୍ତି**-*ବି.*- ରାଧା-କୃଷ୍ଣଙ୍କର ଶକ୍ତିରୂପ ଧାରିଣୀ ଛଅ ଜଣ ଦେବୀ । ଯଥା- ବୃନ୍ଦାବତୀ, ରଙ୍ଗଦେବୀ, ଶୁଭଦ୍ରା, ପ୍ରିୟମ୍ବଦା, ଶ୍ରୀଦେବୀ ଓ ରତ୍ନରେଖା ଏମାନେ ନିତ୍ୟାନାରୀ ।
(ଓ.ସାଂ.ଶ.- ପୃ. ୩୪୧) ।

**ଷଠି ଓଷା**-*ଦେ.ବି.*- (ସଂ. **ଷଷ୍ଠୀ** ଓ ଉତ୍ସବ) ଭାଦ୍ର ଶୁକ୍ଳ ଷଷ୍ଠୀ ତିଥିରେ ହେଉଥିବା **ଷଷ୍ଠୀ** ଦେବୀଙ୍କ ପୂଜା । ଏଦିନ ଶିଶୁମାନଙ୍କ ପିଠିରେ ମା' ଆଦି ବର୍ଷିୟାନମାନେ ବଜ୍ରମୂଳୀ, ସାରୁ, ନଡ଼ା, ବାଉଁଶପତ୍ର, ଧାନପତ୍ରର ବିଡାରେ ଧୀରେ ଧୀରେ ଆଘାତ କରନ୍ତି । ଏହାକୁ ଷଠି ବାଡ଼ିଆ କହନ୍ତି । ଏତଦ୍ୱାରା ଶିଶୁମାନଙ୍କର ସମସ୍ତ ବାଳରିଷ୍ଟ ଖଣ୍ଡିତ ହୁଏ । ଶ୍ରୀମନ୍ଦିରରେ ସନ୍ଧ୍ୟା ଧୂପ ପରେ ମଦନମୋହନ ନାଟ ମନ୍ଦିର ଖଟ ଉପରେ ବିଜେ କଲେ ମାର୍କଣ୍ଡେଶ୍ୱରସାହି ଲୋକେ ବିମ୍ବାସୁର ବଧ ପ୍ରସ୍ତାବ କରନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୪, ପୂ.ଓ.ଭା. - ପୃ. ୭୮୭୭) ।

**ଷଷ୍ଠୀଦେବୀ-** ଶ୍ରୀମନ୍ଦିର ଭିତର ବେଢ଼ାରେ ଥିବା ଭୁବନେଶ୍ୱରୀ ମନ୍ଦିରର ବାହାର ବଖରାରେ **ଷଷ୍ଠୀ** ଦେବୀ ବିଦ୍ୟମାନ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩୧) ।

**ଷଡ଼ ଅକ୍ଷର**-*ଦେ.ବି.*- ଶ୍ରୀଠାକୁରଙ୍କୁ ଜପ ନିମନ୍ତେ ଛଅଗୋଟି ବୀଜାକ୍ଷର ଯଥା- 'ହ', 'ରେ', 'ରା', 'ମ', 'କୃ', 'ଷ' ।
(ଶ୍ରୀ.ଶ୍ରୀ. - ପୃ. ୭୦) ।

**ଷଡ଼ଗୋସ୍ୱାମୀ**-*ଦେ.ବି.*- ଛଅଜଣ ଗୋସ୍ୱାମୀ, ଯଥା- ୧. ରୂପ ଗୋସ୍ୱାମୀ, ୨. ସନାତନ ଗୋସ୍ୱାମୀ, ୩. ରଘୁନାଥ ଭଟ୍ଟ, ୪. ଗୋପାଳ ଭଟ୍ଟ, ୫. ଜୀବ ଗୋସ୍ୱାମୀ ଓ ୬. ରଘୁନାଥ ଗୋସ୍ୱାମୀ । ଏ ଛଅ ଗୋସ୍ୱାମୀ ଚୈତନ୍ୟଙ୍କ ଅନୁସଙ୍ଗୀ ଥିଲେ ।
(ଓ.ସାଂ.ଶ. - ପୃ.୧୩୩) ।

**ଷଡ଼ ବିକାର**-*ଦେ.ବି.*- ପ୍ରାଣୀର ୬ ଗୋଟି ପରିବର୍ତ୍ତିତ ଅବସ୍ଥା । ଜନ୍ମ, ସ୍ଥିତି, ବୃଦ୍ଧି, ପରିଣାମ, କ୍ଷୟ, ବିନାଶ । ଛଅ ପ୍ରକାର ବିକାର

ମନୋବିକାର, ଚିଦ୍ ବିକାର, ଭାବ ବିକାର, ଦୃଷ୍ଟି ବିକାର, ବାକ୍ ବିକାର, ଶ୍ରବଣ ବିକାର । (ଓ.ସାଂଶ. - ପୃ. ୩୪୩) ।

**ଷଡ଼ରସ-** *ଦେ.ବି.-* ଛ'ଗୋଟି ସ୍ୱାଦଯୁକ୍ତ ପଦାର୍ଥ ଯଥା- ଲୁଣିଆ, ଅମ୍ଳ, କଷା, ରାଗ, ମିଠା ଓ ପିତା । ଶ୍ରୀମନ୍ଦିରର ମହାପ୍ରସାଦରେ ଏହି ଷଡ଼ରସର ସ୍ୱାଦ ଉପଲବ୍ଧ ।

**ଷଡ଼ସଖୀ-** *ବି.-* ଶ୍ରୀରାଧାଙ୍କର ଛ'ଜଣ ପ୍ରିୟ ସହଚରୀ । ସେମାନେ ହେଲେ ବୃନ୍ଦାବତୀ, ରଙ୍ଗଦେବୀ, ରତ୍ନରେଖା, ଲୀଳାବତୀ, ସୁଭଦ୍ରିକା ଓ ପ୍ରିୟାବତୀ । (ଓ.ସାଂ.ଶ. - ପୃ. ୩୪୩) ।

**ଷଡ଼ରିପୁ-** *ବି.-* କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ । କେତେକଙ୍କ ମତରେ ମଦ ଓ ମାତ୍ସର୍ଯ୍ୟ ସ୍ଥାନରେ ହିଂସା ଓ ଗର୍ବ । (ଓ.ସାଂ.ଶ.- ପୃ. ୩୪୩) ।

**ଷଡ଼କ୍ଷର ମନ୍ତ୍ର-** *ବି.-* ବିଷ୍ଣୁଙ୍କର ହରେ ରାମ କୃଷ୍ଣ । ରାମଙ୍କର - ଓଁ ଶ୍ରୀରାମ ରାମ । ରାଂ ରାମାୟ ନମଃ । ଶିବଙ୍କର- ଓଁ ନମଃ ଶିବାୟ । ଗଣେଶଙ୍କର - ନମୋ ଗଣେଶାୟ । (ଓ.ସାଂ.ଶ. - ପୃ. ୩୪୩) ।

**ଷଡ଼ାଙ୍ଗ ପୂଜା-** *ଦେ.ବି.-* ଅନ୍ନ, ଜଳ, ବସ୍ତ୍ର, ଦୀପ, ତାମ୍ବୁଳ ଓ ଆସନ । ଏହି ଛଅଗୋଟି ବସ୍ତୁ ଦେଇ କରାଯିବା ପୂଜା । (ଓ.ସାଂ.ଶ. - ପୃ. ୩୪୩) ।

**ଷଡ଼ାଙ୍ଗ ସଂସ୍କାର-** 'ଷଡ଼ାଙ୍ଗ ସଂସ୍କାର' ବିଧି ଦ୍ୱାରା ଏହାର ଅନ୍ନତ୍ୱ ଲୋପ କରାଯାଇ ବ୍ରହ୍ମତ୍ୱ ଆରୋପିତ ହୋଇ ମହାପ୍ରସାଦରେ ପରିଣତ ହୋଇଥାଏ । ଏହି ଷଡ଼ାଙ୍ଗ ସଂସ୍କାର ହେଉଛି-

୧. ମହାଲକ୍ଷ୍ମୀଙ୍କ ଦ୍ୱାରା ରନ୍ଧନ ହୁଏ ତଥା ବୈଷ୍ଣବାଗ୍ନିରେ ପାଚିତ ହୋଇଥାଏ ।

୨. ଶ୍ରୀଯନ୍ତ୍ର ରୂପକ ଠାଆ ବା ମୁରୁଜରେ ନୈବେଦ୍ୟ ନିମନ୍ତେ ସ୍ୱର୍ଣ୍ଣମୟ ପାତ୍ରରେ ପରିବେଷ୍ଟିତ ।

୩. ମନ୍ତ୍ରରାଜ ବା ଦ୍ୱାବିଂଶକ୍ଷରୀ ପାତାଳ ନୃସିଂହ ମନ୍ତ୍ରରେ ପ୍ରେକ୍ଷିତ ହୁଏ ।

୪. ଗୋବିନ୍ଦଙ୍କ ଅଷ୍ଟାଦଶାକ୍ଷର ଗୋପାଳ ମନ୍ତ୍ରରେ ନିବେଦିତ ହୁଏ ।

୫. ଭୈରବୀ ଚକ୍ରରେ ଉଚ୍ଛିଷ୍ଟ ଭୈରବୀ ବିମଳାଙ୍କୁ ସମର୍ପିତ କରାଯାଏ ।

୬. ଅଷ୍ଟସାତ୍ତ୍ୱିକ ବୈଷ୍ଣବମାନ, ଯଥା- ବିଶ୍ୱକ୍‌ସେନ, ଶୁକ, ପ୍ରହ୍ଲାଦ, ହନୁମାନ, ନାରଦ, ବୈନତେୟ, ଦେବଳ ଓ ଇନ୍ଦ୍ରଦ୍ୟୁମ୍ନଙ୍କୁ ଅବଶେଷାନ୍ନ ବଳି ପ୍ରଦାନ ପରେ ଏହା ମହାପ୍ରସାଦରେ ପରିଣତ ହୋଇଥାଏ ।

ସ୍କନ୍ଦପୁରାଣ (ଉତ୍କଳଖଣ୍ଡ) ମତରେ ଅଗ୍ନିସ୍ଥାନ ବହ୍ନି ସଂସ୍କାର ପରେ ଅନ୍ତର୍ହିତା ଲକ୍ଷ୍ମୀ ମହାପ୍ରସାଦ ପାକ କରିଥାଆନ୍ତି । ପୁନଶ୍ଚ ଯଜ୍ଞାଗ୍ନିରେ ପାକ ହୋଇ ଯନ୍ତ୍ର ରାଜ ଶ୍ରୀଯନ୍ତ୍ର ଉପରେ ନ୍ୟାସିତ ହୋଇ ମନ୍ତ୍ରରାଜ ନୃସିଂହ ମନ୍ତ୍ରଦ୍ୱାରା ପୂଜିତ ହୋଇ ଜଗନ୍ନାଥଙ୍କୁ ନିବେଦିତ ହୋଇ ବିମଳାଙ୍କୁ ସମର୍ପଣ ହେଲା ପରେ ମହାପ୍ରସାଦରେ ପରିଣତ ହୋଇଥାଏ ।

**ଷାଠିଏପଉଟିଭୋଗ-** *ବି.-* ବିପୁଳ ପରିମାଣର ଭୋଗ । ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କର ବହୁ ପରିମାପକ ମହାପ୍ରସାଦ ଶ୍ରୀଠାକୁରଙ୍କୁ ଲାଗି ହୁଏ । (ପୁ.ବୋ, - ପୃ. ୩୦୯, ଶ୍ରୀ.ପ.ସେ.ପୂ. - ପୃ. ୩୫୮) ।

**ଷୋଡ଼ଶାଙ୍ଗ-** *ବି.-* ଷୋଳ ଅଙ୍ଗ - ଦୁଇ ଆଖି, ଦୁଇ କାନ, ଦୁଇ ନାସାରନ୍ଧ୍ର, ଦୁଇ ହାତ, ଦୁଇ ଗୋଡ଼, ଏକ ମୁଖ, ଏକ ଛାତି, ଏକ ପେଟ, ଏକ ପିଠି, ଏକ ଜିହ୍ୱା ଓ ଏକ ଚର୍ମ । (ଓ.ସାଂ.ଶ.- ପୃ. ୩୪୩) ।

**ଷୋଡ଼ଶ ମାତୃକା-** *ସଂ.ବି.-* ଶ୍ରାଦ୍ଧାଦି ଓ ମଙ୍ଗଳ କର୍ମରେ ପୂଜିତା ଷୋହଳଟି ଦେବୀ । ଏମାନଙ୍କର ନାମ ଯଥା- ଗୌରୀ, ପଦ୍ମା, ଶଚୀ, ମେଧା, ସାବିତ୍ରୀ, ବିଜୟା, ଜୟା, ଦେବସେନା, ଷଷ୍ଠୀ, ସ୍ୱଧା, ସ୍ୱାହା, ଶାନ୍ତି, ପୁଷ୍ଟି, ଧୃତି, ତୁଷ୍ଟି, ଆତ୍ମଦେବତା ଓ କୁଳଦେବୀ । ଏମାନଙ୍କୁ ପ୍ରଥମେ ପୂଜା କରାଯିବା ପରେ ଶ୍ରାଦ୍ଧାଦି କାର୍ଯ୍ୟ ଆରମ୍ଭ କରାଯାଏ । ପନ୍ଦରଟି ମାତୃକାଙ୍କୁ ପୂଜାକରି ପରେ ବିନାୟକଙ୍କୁ ପୂଜା କରାଯାଏ । ତା'ପରେ ଷୋଡ଼ଶ ମାତୃକାଙ୍କୁ ପୂଜା କରାହୁଏ । (ପୂ.ଓ.ଭା. - ୭୮୯୬) ।

**ଷୋଡ଼ଶୋପଚାର**-*ସଂ.ବି.*- ବୈଦିକ ଦେବପୂଜାର ଷୋଳ ପ୍ରକାର ଉପକରଣ ଯଥା- ଆସନ, ସ୍ୱାଗତ, ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ମଧୁପର୍କ, ପୁନରାଚମନୀୟ, ସ୍ନାନ, ବସନ, ଆଭରଣ, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟ, ମୁଖବାସ, ମତାନ୍ତରେ ଚନ୍ଦନ । ଶକ୍ତି ପୂଜନର ଷୋଡ଼ଶୋପଚାର ଯଥା- ପାଦ୍ୟ, ଅର୍ଘ୍ୟ, ଆଚମନୀୟ, ସ୍ନାନ, ବସନ, ଭୂଷଣ, ଗନ୍ଧ, ପୁଷ୍ପ ଧୂପ, ଦୀପ, ନୈବେଦ୍ୟ, ପୁନରାଚମନୀୟ, ସୁରା, ତାମ୍ବୂଳ, ତର୍ପଣ ଓ ନମସ୍କାର । ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କର ପୂଜା ବୈଦିକ ଷୋଡ଼ଶୋପଚାରରେ ହୋଇଥାଏ ।
(ଶ୍ରୀ.ସ୍ୱ. - ପୃ. , ପୂ.ଓ.ଭା. - ପୃ. ୭୮୯୭) ।

**ଷୋଳକରଣ**-*ବି.*- ଏମାନେ ଷୋଳ ପ୍ରକାର ସେବାରେ ନିଯୁକ୍ତ । ଷୋଳ ଖମ୍ବ ଦଖଲକାରୀ- ମୁକ୍ତି ମଣ୍ଡପର ପ୍ରମୁଖ ଅଧିକାରୀ ଷୋଳ ଶାସନର ବ୍ରାହ୍ମଣ ମହାଜନ । ଶ୍ରୀମନ୍ଦିରର ଜଗମୋହନ, ମୁକ୍ତିମଣ୍ଡପ, ବେହରଣ ଆଦି ଯଜ୍ଞଶାଳା ଆଦର୍ଶରେ ନଚେତ୍ ନିର୍ମାଣଗତ ଆବଶ୍ୟକତା ହେତୁ ଷୋଳଖମ୍ବ ବିଶିଷ୍ଟ । କର୍ମାଙ୍ଗୀରେ ଆଠଜଣ କରଣଙ୍କ ସମ୍ପର୍କରେ ଉଲ୍ଲେଖ ଅଛି । ଯଥା- ଦେଉଳ, ତଡ଼ାଉ, ବଇଠି, ଚର୍ଚ୍ଚା, ଚାଉଳବଛା, ଘରୁଆ ଓ ପଞ୍ଜିଆକରଣ । ସ୍ୱତ୍ୱଲିପି ବେଳକୁ, ଚର୍ଚ୍ଚାଯିତ, ମାପସାଇତା ଓ କୋଠକରଣ ସେବା ବନ୍ଦ ଅଛି । ୧୯୮୮ରୁ ବେହେରା କରଣ ସେବା ପୁନଃ ପ୍ରଚଳିତ ଅଛି । ଯଥା- କୋଠକରଣ, ଘରୁଆକରଣ, ଚର୍ଚ୍ଚାକରଣ, ଚାଉଳବଛାକରଣ, ଛାମୁକରଣ, ଡଗରା କରଣ, ତଡ଼ାଉ କରଣ, ଦେଉଳ କରଣ, ଚଣ୍ଡକାର କରଣ, ଦେଶକରଣ, ଦ୍ୱାର ଦ୍ୱାରୀ କରଣ, ନିର୍ମାଲ୍ୟ କରଣ, ପଡ଼ିଆ କରଣ, ପଟ୍ଟନାୟକ କରଣ, ପରକରଣ, ପରିଛାକରଣ, ଦ୍ୱାରକରଣ, ପାଞ୍ଜିଆ କରଣ, ବଇଠିକରଣ, ବର୍ବକରଣ, ବାଟକରଣ, ବେହେରାକରଣ, ଭଣ୍ଡାର କରଣ, ମାପସାଇତା କରଣ, ମୁଦକରଣ, ରୋଷ କରଣ, ରୋଷ ବଇଠି କରଣ, ଶିଠ କରଣ, ଶ୍ରୀ କରଣ, ସତେଇଶ ହଜାରି ବଇଠି କରଣ, ସୁଆଁସ କରଣ, ହାଣ୍ଡି କରଣ ଇତ୍ୟାଦି ଶ୍ରୀଜଗନ୍ନାଥଙ୍କ ସେବାରେ ନିତ୍ୟ ଥାଆନ୍ତି ।
(ଶ୍ରୀ.ସ୍ୱ. - ପୃ. ୩୨/୩୩) ।

**ଷୋଳକଳା**-*ବି.*- ପଞ୍ଚ ଜ୍ଞାନେନ୍ଦ୍ରିୟ - ଆଖି, କାନ, ନାକ, ଜିଭ, ଚର୍ମ । ପଞ୍ଚ କର୍ମେନ୍ଦ୍ରିୟ- ବାକ୍ ପାଣି, ପାଦ, ପାୟୁ ଓ ଉପସ୍ଥ । ପଞ୍ଚ ମହାଭୂତ- କ୍ଷିତି, ଆପ, ତେଜ, ବ୍ୟୋମ ଓ ମରୁତ୍ ଏବଂ ମନ । ଏମାନେ ହେଲେ ଷୋଳକଳା । ଚନ୍ଦ୍ରର ଷୋଳକଳା ଅର୍ଥାତ୍ ପୂର୍ଣ୍ଣଚନ୍ଦ୍ର । ବ୍ରହ୍ମର ଷୋଳକଳା- ପୂର୍ଣ୍ଣବ୍ରହ୍ମ ଶ୍ରୀକୃଷ୍ଣ ।
(ଓ.ସାଂ.ଶ. - ପୃ. ୩୪୪) ।

**ଷୋଳନାମ**-*ବି.*- "ହରେ ରାମ ହରେ ରାମ ରାମ ରାମ ହରେ ହରେ । ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।" ସଂକୀର୍ତ୍ତନରେ ଏହି ନାମ ଉଚ୍ଚାରଣ କରାଯିବାର ଦେଖାଯାଏ ।
(ଓ.ସାଂ.ଶ. - ପୃ. ୩୪୪) ।

**ଷୋଳପୂଜାରେ ମା' ବିମଳାଙ୍କ ବେଶ**- ୧. ଶ୍ରୀ ବନଦୁର୍ଗା, ୨. ଶ୍ରୀ ଭୁବନେଶ୍ୱରୀ, ୩. ଶ୍ରୀ ନାରାୟଣୀ, ୪. ଶ୍ରୀ ବିମଳା, ୫. ଜୟଦୁର୍ଗା, ୬. ଉଗ୍ରତାରା, ୭. ମାତଙ୍ଗୀ, ୮. ଦଶଭୁଜା, ୯. ରାଜରାଜେଶ୍ୱରୀ, ୧୦. ହରଚଣ୍ଡୀ, ୧୧. ସିଂହବାହିନୀ । ଦେବୀଙ୍କର ଷୋଳପୂଜାରେ ଦେବୀ କେବଳ ୧୧ଟି ବେଶ ଧାରଣ କରିଥାନ୍ତି ।
(ଶ୍ରୀ.କ୍ଷି. - ପୃ. ୧୯୭, ଶ୍ରୀଜ.ପ.ସେ.ପୂ. - ପୃ. ୧୧୨) ।

**ଷୋଳଶାସନ ଭୋଗ**-*ଦେ.ବି.*- ପ୍ରତିବର୍ଷ କାର୍ତ୍ତିକ ଶୁକ୍ଳ ସପ୍ତମୀ ଦିନ ମୁକ୍ତିମଣ୍ଡପ ପକ୍ଷରୁ ହେଉଥିବା ବିପୁଳ ପରିମାଣରେ ଭୋଗ ଶ୍ରୀଠାକୁରଙ୍କୁ ଲାଗି କରାଯାଏ ।

●

# ସ

**ସକାଳଧୂପ-** *ଦେ.ବି.-* ସକାଳେ ଠାକୁରଙ୍କୁ ସମର୍ପିତ ହେଉଥିବା କୋଠଭୋଗ, ଏହା ଗୋପାଳ ବଲ୍ଲଭ ପରେ ଲାଗି ହୁଏ । ପ୍ରାୟ ଦିନ ଦଶଟାରେ ଏହା ହେବା ନିୟମ । ଏହି ନୀତି କାର୍ଯ୍ୟ ସମ୍ପନ୍ନ କରିବା ନିମନ୍ତେ ବତିଶି ଜଣ ସେବକଙ୍କର ସେବା ଆବଶ୍ୟକ ପଡ଼ିଥାଏ । ସୁଆରବଡୁ ଭିତର ପୋଖରୀଠାରୁ ଭିତର ଅର୍ଗଳି ପର୍ଯ୍ୟନ୍ତ ପାଣି ପକାଇ ଧୁଏ । ଅମଣିଆ ପାଣି ପକାଏ । ପାଣିଆପାଟ ପାଞ୍ଚଟି ଥାଳି ଓ ଏକଟି ପରଖ ଧୋଇ କରିଦିଏ । ସୁଆରବଡୁ ତାକୁ ଧୋଇ ତିନି ଠାକୁରଙ୍କଠାରେ ତିନିଟି ଓ ସୁଦର୍ଶନଙ୍କଠାରେ ଏକଟି ପକାଏ । ପଢ଼ିଆରି ଭିତର ଟେରା ଭିତର କବାଟ ପାଖରେ ବାନ୍ଧେ । ବଲ୍ଲଭ ସମୟରେ ଭିତର କାଠ ପାଖରେ ବନ୍ଧା ହୋଇଥିବା ଟେରା ସକାଳ ଧୂପ ସରିବା ପର୍ଯ୍ୟନ୍ତ ଥାଏ । ପୂଜାପଣ୍ଡା ଆସି ବଡ଼ ଠାକୁରଙ୍କଠାରୁ ଆରମ୍ଭ କରି ଜଗନ୍ନାଥଙ୍କ ପର୍ଯ୍ୟନ୍ତ ଯେଉଁଥାଳି ପଡ଼ିଥାଏ, ତାହାର ବାହାର ସୀମାରେ ମୁରୁଜ ବୁଲାଇ ପନ୍ତି କାଟନ୍ତି । ଲକ୍ଷ୍ମୀଙ୍କ ପାଖରେ ଏକ ଛୋଟ ପନ୍ତି ହୁଏ । ମୁରୁଜ ସୀମା ଭିତରେ ରହିଲେ ମହାପ୍ରସାଦ କିନ୍ତୁ ବାହାରେ ରହିଲେ ଶଙ୍ଖୁଡ଼ି ହୁଏ । ଏଥିପାଇଁ ଅନେକ ମଠବାଡ଼ିର ଚିଟାଉ ଅଛି । ମୁରୁଜ ମଧ୍ୟରେ କେବଳ କୋଠଭୋଗ ଓ ସନନ୍ଦ ପାଇଥିବା ଲୋକଙ୍କର ଭୋଗ ରହିବା ନିୟମ । ପରିମାଣିକ (ନିର୍ଦ୍ଧାରିତ) ଫିସ୍ ଦେଇ ଅନୁମତି ନେଇ ମୁରୁଜ ରେଖା ମଧ୍ୟରେ ଭୋଗ ରହିପାରିବ । ଏହାପରେ ପ୍ରତିହାରୀ ବେତଧରି ପ୍ରଧାନୀ ସେବକ ସହ କୋଠଭୋଗ ରୋଷକୁ ଭୋଗ ଡାକଦିଏ । ଦକ୍ଷିଣ ଦ୍ୱାର ପଢ଼ିଆରୀ ଦୁଆର ଜଗିଥାଏ । ଭୋଗ ଶେଷ ହେବା ପର୍ଯ୍ୟନ୍ତ ଧୁକୁଡ଼ି ଦ୍ୱାର (ଅର୍ଗଳି ପାଖରେ ଛୋଟ ଦୁଆର) ପାଖରେ ପହରା ଦିଏ । ପାଳିଆ ମହାସୁଆର ପ୍ରଥମେ ବିରିକାନ୍ତି ପିଠା ଓ ଅଦା ପାଚିଡ଼ି ଧରି ଆସେ । ତାଙ୍କ ପଛରେ ପନ୍ତିବଡୁ ସକାଳ ଧୂପ ଖେଚୁଡ଼ି କୁଡୁଆ ଧରି ରୋଷ ପାଇକ ସହ ଆସନ୍ତି । ରୋଷ ପାଇକ ବାଡ଼ି ଧରି କୁଆ ଉଡ଼ାଏ । ମହାସୁଆର ଆଣିଥିବା ଜିନିଷମାନ ସିଂହାସନ ତଳେ ରଖିଯାଏ । ବଡ଼ସୁଆର ଥାଳିରୁ କାଢ଼ି ତଳେ ରଖେ । ପନ୍ତିବଡୁ ସବୁ ଥାଳିରେ କୁଡୁଆରୁ ବାଢ଼େ । ଅନ୍ୟାନ୍ୟ ଭୋଗସବୁ ପନ୍ତିକୁ ଆସେ । ଏ ଭୋଗରେ କାନିକା, ଖେଚୁଡ଼ି, କାନ୍ତି, କାକତୁଆ, ଝିଲି, ଏଣ୍ଡୁରୀ, ହଂସକେଳୀ, ମାଠପୁଳି, ଗଜା, ପାଗ, ଅଦାପାଚେଡ଼ି ଭୋଗ ହୁଏ । ପାଳିଆ ପତ୍ରି ପୂଜା ଠା କଲାପରେ ସୁଆରବଡୁ ନୂଆ କନାର ପାହାଡ଼ା ପକାନ୍ତି ଓ ପୂଜାପଣ୍ଡା ସିଂହାସନ ଉପରେ ବସି ପୂଜା କରନ୍ତି । ପୂଜା କରିବାର ପାତ୍ର ସଜ (ପୂଜା ପାଇଁ ଅଠର ମୂର୍ତ୍ତି ରୂପା ଗିନା) ଉପଚାର ଯଥା- ଅଳେଇଚ, ଲବଙ୍ଗ, ଯବଧାନ, ଗୁଡ଼, ପଇତା, ଚନ୍ଦନ ଇତ୍ୟାଦି ଆବଶ୍ୟକ ହୁଏ । ଘୋଡ଼ଲାଗି (ଓଢ଼ଣ ଷଷ୍ଠୀରୁ ବସନ୍ତ ପଞ୍ଚମୀ) ସମୟରେ ସିଂହାସନ ତଳେ ବସି ପୂଜା କରନ୍ତି । ପୂଜା ବସିଥିବା ସମୟରେ ଅଣସର ପିଣ୍ଡିଠାରେ ଦ୍ୱାରି ନାଏକ ଜଣେ ପ୍ରତିହାରୀ ଠିଆ ହୋଇପାରେ । ପ୍ରତିହାରୀମାନେ ଜୟବିଜୟ ଦୁଆର ପହରା ଦିଅନ୍ତି । ଘଣ୍ଟୁଆ ଓ ବଜନ୍ତୀମାନେ ଘଣ୍ଟା ବାଜା ବଜାନ୍ତି । ଷୋଡ଼ଶ ଉପଚାର ପୂଜା ହୁଏ । ପରିଛାବଡୁ ତିନିଟି ଦର୍ପଣ ଓ ତିନିଠାକୁରଙ୍କ ସମ୍ମୁଖରେ ରଖେ । ଖୁଣ୍ଟିଆ ମାଳ ତୁଳସୀ ଯୋଗାଏ । ମେକାପ ତିନିଟି ସ୍ୱର୍ଣ୍ଣପଦକ ମୁଦୁଲି

ପାଖକୁ ନେଇ ଯୋଗାଏ । ଚାଙ୍ଗଡ଼ ମେକାପ ତିନି ଖଣ୍ଡ ବସ୍ତ୍ର ଯୋଗାଏ । ସୁଆରବଡ଼ୁ ରୋଷରୁ ନିଆଁ ଆଣେ । ତିନିଟି ପିତଳ ଦୀପାବଳିରେ ଗୋଗୁଳ, ଚନ୍ଦନଗୁଣ୍ଡ, ଓଳିଆ ରଖି ଧୂପ ପ୍ରସ୍ତୁତ ହୁଏ । ଧୂପ ପରେ ସେହି ଦୀପାବଳୀରେ ଦୀପତଳେ ଗରାବଡୁ ଘସା ଜଳ ଦେଲେ ପାଳିଆ ମହାସୁଆର ପନ୍ତିରେ ଲଗାନ୍ତି । ସେତେବେଳେ ଧୂପ ଦୀପ ଦିଆଯାଏ । ପଡ଼ିଆରୀ ଭିତର ଦ୍ୱାର ବନ୍ଦ କରେ । ଏହାକୁ ଟେରା ପଡ଼ିବା କହନ୍ତି । ପଣ୍ଡାମାନେ ଠାକୁରଙ୍କୁ ଭୋଗ ମଣୋହି କଲାବେଳେ ମହାସୁଆର, ପନ୍ତିବଡୁ, ସୁଆରବଡୁ, ଗରାବଡୁ ଅନ୍ୟ କେହି ଭିତରେ ରହିପାରିବେ ନାହିଁ । ପୂଜାପଣ୍ଡା ପାଳିଆ ମହାସୁଆରକୁ ସବୁ ଠିକ୍ କି ନାହିଁ ପଚାରି ଠାକୁରଙ୍କୁ ମଣୋହି କରନ୍ତି । ବାହାରେ ଝାଞ୍ଜ ଘଣ୍ଟ ଫିଟା ହେଉଥାଏ । ଟେରା ପଡ଼ିବା ସମୟରେ ଜଗମୋହନରେ ଗରୁଡ଼ ଆଗରେ ନିମ୍ନଲିଖିତମତେ ପଟୁଆର ହୁଏ । ପରୀକ୍ଷା (ରାଜଗୁରୁ) ସେଠାରେ ଉପସ୍ଥିତ ରହନ୍ତି । ପ୍ରଧାନୀ ସେବକ ଭଣ୍ଡାର ଘରୁ ସୁନାବେତ ନେଇ ତାଙ୍କ ହାତରେ ଦିଅନ୍ତି । ପାଳିଆ ମାହାରୀ (ବାହାର ଗାଆଣୀ) ସେଠାରେ ନୃତ୍ୟ କରେ । ମାଦଳୀ ମାହାରୀ ଠିଆହୋଇ ମାଦଳ ବଜାଏ । ପୁରାଣ ପଣ୍ଡା ଅଣସର ପିଣ୍ଡିରେ ଭାଗବତ / ଗୀତା ପୁରାଣ ପାଠକରେ । ଝାଞ୍ଜ ଜଗମୋହନରୁ ବାହାରି ବଟଗଛ, ମୁକ୍ତିମଣ୍ଡପ, ବିମଳା ଓ ଲକ୍ଷ୍ମୀ ମନ୍ଦିର ଦେଇ ଗରୁଡ଼ ଖମ୍ବକୁ ଫେରିଆସେ । ଭିତର ଭୋଗ ସରିଲେ ହଡପ ନାଏକ ଡାକ ଦିଅନ୍ତି । ପ୍ରତିହାରୀ ଦୁଆର ଫିଟାଏ । ଏହାକୁ ଟେରା ଫିଟା କହନ୍ତି । ଟେରା ଫିଟିଲେ ଜଗମୋହନରେ ହେଉଥିବା ପଟୁଆର ବନ୍ଦ ହୁଏ । ବିଡ଼ିଆ ଯୋଗାଡ଼ିଆ ଖିଲିପାନ ପାନ, ଗୋଟାଗୁଆ, ଲବଙ୍ଗ, ଅଳେଇଚ, କର୍ପୂର, ଯାଇପତ୍ର ଦେଇ ପାନ ଭଙ୍ଗା ହୁଏ । ହଡ଼ପ ନାଏକ ବନ୍ଧା ବିଡ଼ିଆ ତିନି ଠାକୁରଙ୍କ ପାଖରେ ରୂପା ବଟାରେ ଦିଅନ୍ତି । ପଣ୍ଡା ବିଡ଼ିଆ ମଣୋହି କରନ୍ତି । ପୂଜାପଣ୍ଡା କର୍ପୂର ଆଳତି କରନ୍ତି । କର୍ପୂର ଆଳତିରେ ଏକୋଇଶିଟି ଆଳତି ହୁଏ । ଆଳତି ପରେ ପୂଜାପଣ୍ଡା, ତିନି ସୁନା ପଦକ ମଇଲମ କରି ମେକାପକୁ ଦିଅନ୍ତି ଓ ସିଂହାସନରୁ ଓହ୍ଲାଇ ଆସନ୍ତି । ଭୋଗ ଭିତରୁ ଉଠିବା ପରେ ସୁଆରବଡୁ ପାଣି ପକାଇ ଭିତର କାଠ ସଫା କରେ ଓ ସକାଳ ଧୂପ ସମ୍ପୂର୍ଣ୍ଣ ହୁଏ । (ଶ୍ରୀ.ସ୍ୱ. ୨ୟ - ପୃ. ୧୮-୨୦) ।

**ସଂକୀର୍ତ୍ତନ** - *ସଂ.ବି.*- ଦେବତାଙ୍କ ନାମ ଉଚ୍ଚାରଣ ପୂର୍ବକ ସ୍ତୁତିଗାନ, ସମ୍ୟକ୍ ପ୍ରକାରରେ ଗୁଣାଦିକଥନ, ରାଧାକୃଷ୍ଣ ଓ ଚୈତନ୍ୟଙ୍କ ସମ୍ବନ୍ଧୀୟ ଖୋଳ କରତାଳ ଓ ନୃତ୍ୟାଦି ସହିତ ଗୀତଗାନ । ଭଗବାନ ଓ ଦେବତାଦିଙ୍କ ନାମ ସଂକୀର୍ତ୍ତନର ମାହାତ୍ମ୍ୟ ଭାଗବତ ନାରଦ ପାଞ୍ଚରାତ୍ର, ବୃହନ୍ନାରଦୀୟ ପୁରାଣାଦିରେ ବର୍ଣ୍ଣିତ ହୋଇଅଛି, କିନ୍ତୁ ଶ୍ରୀଚୈତନ୍ୟ ଦେବଙ୍କ ଅମଳରୁ ଖୋଳ କରତାଳ ସହିତ ବହୁ ଲୋକଙ୍କର ସମ୍ମିଳିତ ଗାନ ଓ ବିଶେଷତଃ ଶ୍ରୀରାଧା ସମ୍ବନ୍ଧୀୟ ଗାନ ବା ସଂକୀର୍ତ୍ତନ ପ୍ରତି ବୈଷ୍ଣବମାନଙ୍କର ବିଶେଷ ଆଗ୍ରହ ଜନ୍ମିଅଛି । ଚୈତନ୍ୟ ଦେବ ପ୍ରଚାର କଲେ କଳିଯୁଗରେ ହରିନାମ କୀର୍ତ୍ତନ ମୁକ୍ତିଲାଭାର୍ଥେ ମନୁଷ୍ୟର ଏକମାତ୍ର ଅବଲମ୍ବନ । ସତ୍ୟଯୁଗରେ ତୀର୍ଥ, ତ୍ରେତାରେ ଯଜ୍ଞ, ଦ୍ୱାପରରେ ଦାନ ଓ କଳିରେ ନାମ ସଂକୀର୍ତ୍ତନ ହେଉଛି ଯୁଗଧର୍ମ । କଥିତ ଅଛି ଯେ, ଦାନ, ବ୍ରତ, ତପସ୍ୟା, ଯଜ୍ଞ ଏ ସମସ୍ତ ଅଶେଷ ସଂକୀର୍ତ୍ତନ ହିଁ ଯୁଗଧର୍ମ । ଯେଉଁଠାରେ ସଂକୀର୍ତ୍ତନ ହୁଏ, ତାହା ପ୍ରଧାନତମ ତୀର୍ଥ, ସଂକୀର୍ତ୍ତନକାରୀଙ୍କ ପଦରଜ ଯେଉଁଠାରେ ପଡ଼େ ସେ ସ୍ଥାନ ଅତୀବ ପବିତ୍ର । ଶ୍ରୀଜଗନ୍ନାଥଙ୍କ ବେଢ଼ାରେ ଅନେକ ଦିନ ସଂକୀର୍ତ୍ତନ ହେଉଥାଏ । ରଥଯାତ୍ରା ସମୟରେ ମଧ୍ୟ ବଡ଼ଦାଣ୍ଡରେ ରଥ ଆଗରେ, ଗୁଣ୍ଡିଚା ମନ୍ଦିର ପାଖରେ ମଧ୍ୟ ସଂକୀର୍ତ୍ତନ ହୁଏ । ଶ୍ରୀଜଗନ୍ନାଥଙ୍କ ବାହାର ଯାତ୍ରାରେ ସଂକୀର୍ତ୍ତନ ପ୍ରଚଳନ ଅଛି । (ପୂ.ଓ.ଭା. - ପୃ. ୭୯୧୮) ।

**ସଙ୍ଖୁଡ଼ି ପରିଛା** - *ଦେ.ବି.*- ଭୋଗ ଦ୍ରବ୍ୟ ତନଖି କରିବାର ଅଧିକାର ପ୍ରାପ୍ତ ପରିଛା । ଏମାନେ ହେଲେ ପାଟଯୋଷୀ ମହାପାତ୍ର ଓ ତଳିଛ ମହାପାତ୍ର ।
(ପୁ.ବୋ. - ପୃ. ୩୨୦) ।

**ସଙ୍ଖୁଡ଼ି ପ୍ରସାଦ**-*ଦେ.ବି.*- ଅଭଡ଼ା ବା ଅନ୍ନ ତିଅଣ ପ୍ରସାଦ, ଦେବତାଙ୍କୁ ନିବେଦିତ ଅନ୍ନ ବ୍ୟଞ୍ଜନାଦି । ଜଗନ୍ନାଥଙ୍କ ଅଭଡ଼ାରେ ସଙ୍ଖୁଡ଼ି ଦୋଷ ଲାଗେ ନାହିଁ ।
(ପୂ.ଓ.ଭା.- ପୃ. ୭୯୯୫) ।

**ସଜ**-*ଦେ.ବି.*- ଠାକୁରଙ୍କ ପ୍ରତ୍ୟେକ ନୀତି ପାଇଁ ଆବଶ୍ୟକ ସଜ ସମ୍ଭାର ବା ସଦ୍ୟତମ ବସ୍ତୁ ।
(ପୁ.ବୋ. - ପୃ. ୩୨୦) ।

**ସଜ ପାଳିଆ**-*ଦେ.ବି.*- ନିର୍ଦ୍ଦିଷ୍ଟ ଦିନରେ ସେବା ଖଟୁଥିବା ସେବକ ବା ରାତ୍ରି ପାଳିଆକୁ ଦାୟିତ୍ୱମୁକ୍ତ କରି ସେମାନଙ୍କ ସେବାରେ ନିଯୁକ୍ତ ହେବା ସେବକ ।
(ପୁ.ବୋ. - ପୃ. ୩୨୦) ।

**ସଞ୍ଜ କାହାଳୀ ଆଳତି**-*ଦେ.ବି.*- ଶ୍ରୀମନ୍ଦିରର ପିଠୋଉ ଆଳତିର ଅନ୍ୟନାମ । ବସନ୍ତ ପଞ୍ଚମୀ (ମାଘ ଶୁକ୍ଳ ପଞ୍ଚମୀ) ଦିନ ମଧ୍ୟାହ୍ନ ଧୂପ ପରେ ଚାଚେରୀ ବେଶ ଓ ଜାଗରଠାରୁ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ ଓ ଦ୍ୱାଦଶୀରେ (ଅର୍ଥାତ୍ ଫାଲ୍‌ଗୁନ ଶୁକ୍ଳପକ୍ଷ ପ୍ରତିପଦ, ଚତୁର୍ଥୀ, ଅଷ୍ଟମୀ ଓ ଦ୍ୱାଦଶୀ ତିଥିରେ) ମଙ୍ଗଳ ଆଳତି ସରିବା ପରେ ଠାକୁରବେଣ୍ଟ ଶିକାରକୁ ବିଜେ କରିବାର ନିୟମ । ଏଥି ନିମନ୍ତେ ବିମାନଘରୁ ପାଲିଙ୍କି ଆସେ ଓ ଗାରଦଘରୁ ଆଶାବାଡ଼ି ଆସେ । ଶ୍ରୀଜଗନ୍ନାଥ ବଲ୍ଲଭ ମଠ ଭୋଗ ଯୋଗାନ୍ତି । ଲେଙ୍କା ସେବକ କାଣ୍ଡ ହେଙ୍ଗୁଡ଼ ତିଆରି କରନ୍ତି ଓ ପର୍ବଯାତ୍ରା ଯୋଗାଣିଆ ପଇଡ଼ ପାଞ୍ଚଗୋଟି ଯୋଗାଇଥାନ୍ତି । ଶିକାର ଦିନରେ ଜଣେ ମହାଜନ ଦକ୍ଷିଣଘରୁ ଦୋଳଗୋବିନ୍ଦ ଠାକୁରଙ୍କ ହାତରେ ବିଜେ କରାଇନେଇ ସିଂହାସନ ଉପରେ ବିଜେ କରାନ୍ତି । ଏହାପରେ ବିମାନବଡୁ ଘଣ୍ଟ, ଛତା, କାହାଳୀ ସହ ଠାକୁରଙ୍କୁ ଜଗନ୍ନାଥ ବଲ୍ଲଭ ମଠକୁ ଆଣନ୍ତି । ଏଠାରେ ଶୀତଳ ଭୋଗ ଦିଆଯାଏ । ଭିତରଛ ମହାପାତ୍ର କର୍ପୂର ଆଳତି ସାତବତୀ ଆଳତି କରନ୍ତି ଓ ସଞ୍ଜ କାହାଳି ଆଳତି କରନ୍ତି । ବନ୍ଦାପନା ପରେ ଠାକୁର ବେଣ୍ଟ ପୋଖରୀକୁ ଆସନ୍ତି । ପ୍ରତ୍ୟେହ ସକାଳେ ପିଠୋଉ ଆଳତି ହୁଏ, ପ୍ରଥମେ ହୁଏ କର୍ପୂର ଆଳତି, ପରେ ୨୧ ବତୀ ଆଳତି, ତା'ପରେ ସଞ୍ଜ କାହାଳୀ ଆଳତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୬) ।

**ସଞ୍ଜଧୂପ**-*ଦେ.ବି.*- ସନ୍ଧ୍ୟା ଧୂପ, ସନ୍ଧ୍ୟା ପରେ ଦେବତାଙ୍କ ନିକଟରେ ଅର୍ପିତ ଭୋଗ । ପୂଜା ଓ ଧୂପ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ଯେଉଁ ନୀତିରେ ହୁଏ ସନ୍ଧ୍ୟା ଧୂପ ସେହି ନିୟମରେ ହୁଏ । ମଧ୍ୟାହ୍ନ ଧୂପର ଭୋଗ ସାମଗ୍ରୀ, ସଞ୍ଜଧୂପର ଭୋଗ ଆଳତି ବାଦେ ଆଉ ୨ ଗୋଟି ଅଧିକା ଆଳତି ହୁଏ । ଏହା ରୂପାବଟାରେ ହୁଏ ଓ ଏହାକୁ ଜୟମଙ୍ଗଳ ଆଳତି କୁହାଯାଏ । ଏହି ସଞ୍ଜଧୂପର ଭୋଗ ହେଲା- କଅଁଳ ପୁଳି, ମାଠପୁଳି, ଗୋଟାଳି, ଟାକୁଆ, ଭୋଗପିଠା, ବଡ଼ ଓ ସାନ କାକରା, ଲୁଣ ଖୁରୁମା, ଅମାଲୁ, ସୁଆର ପିଠା, ରୋଷ ପାଇକ ବିରିବୁହା, ଝଡ଼େଇନଦା, ସୁବାସ ପଖାଳ, କଡ଼ମ୍ବ । ସନ୍ଧ୍ୟା ଧୂପ ପରେ ସାହାଣ ମେଲା ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୬, ପୂ.ଓ.ଭା. - ପୃ. ୮୦୨୦) ।

**ସଟରା**-*ଦେ.ବି.*- ପୁରୀର ସାହିଯାତ୍ରାରେ କାଠପିଟି ଗୀତ ବୋଲୁଥିବା ଶିଖ୍ ସନ୍ନ୍ୟାସୀ ।

**ସତେଇଶ ହଜାରି ପରିଛା**-*ଦେ.ବି.*- ସତେଇଶ ହଜାରି ମାହାଲ ଦାୟିତ୍ୱରେ ଥିବା ପରିଛା ।
(ଶ୍ରୀ.ଶ. - ପୃ. ୧୬୫) ।

**ସତ୍ୟଯୁଗ**-*ସଂ.ବି.*- କୃତଯୁଗ । ସୃଷ୍ଟିର ଚାରିଟି ଯୁଗ ମଧ୍ୟରୁ ପ୍ରଥମ । ଯୁଗ ସୃଷ୍ଟିର ପ୍ରଥମେ ସତ୍ୟଯୁଗ, ତା'ପରେ ତ୍ରେତା, ଦ୍ୱାପର ଓ ଶେଷରେ କଳିଯୁଗ । ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା) ଦିନ ସତ୍ୟଯୁଗର ଉତ୍ପତ୍ତି । ଏ ଯୁଗରେ

ମତ୍ସ୍ୟ, କୂର୍ମ, ବରାହ ଓ ନୃସିଂହ ଏହି ଚାରି ଅବତାର, କୁରୁକ୍ଷେତ୍ର ତୀର୍ଥ, ମନୁଷ୍ୟମାନେ ସତ୍ୟପରାୟଣ ଓ ମଜ୍ଜାଗତ ପ୍ରାଣ, ଭୋଗଶୂନ୍ୟ, ଇଚ୍ଛାମୃତ୍ୟୁ, ଉଚ୍ଚରେ ଏକଶଠି ହାତ ବଢ଼ନ୍ତି । ପରମାୟୁ ଏକ ଲକ୍ଷ ବର୍ଷ । ସତ୍ୟଯୁଗରେ ବଳି, ବେଣୁ, ମାନ୍ଧାତା, ପୁରୁରବା, ଧୁନ୍ଦୁମାର, କାର୍ତ୍ତବୀର୍ଯ୍ୟ ଏହି ଛଅଜଣ ଚକ୍ରବର୍ତ୍ତୀ ରାଜା ଥିଲେ । ସତ୍ୟ ଯୁଗର ତାରକ ବ୍ରହ୍ମ ନାମ - "ନାରାୟଣ ପରାଦେବାଃ ନାରାୟଣ ପରାକ୍ଷରାଃ/ ନାରାୟଣ ପରାମୁକ୍ତିଃ ନାରାୟଣ ପରାଗତିଃ ।" ଏ ଯୁଗରେ ଧର୍ମ ଚତୁଷ୍ପାଦ । ଦେବତାମାନେ ପୃଥିବୀରେ ସର୍ବଦା ବିଚରଣ କରି ଲୋକଙ୍କୁ ସତ୍ୟଫଳ ଦେଉଥିଲେ । ବସୁମତୀ ଶସ୍ୟଶ୍ୟାମଳା ଓ ହୃଷ୍ଟପୁଷ୍ଟ ତଥା କୃତସମ୍ପନ୍ନ ଥିଲେ ।
(ପୂ.ଓ.ଭା. - ପୃ. ୮୦୫୯) ।

**ସତ୍ୟନାରାୟଣ**-*ସଂ.ବି.* - ଅଗ୍ନୀଶ୍ୱର ମହାଦେବଙ୍କ ମନ୍ଦିର ପରେ ସତ୍ୟନାରାୟଣଙ୍କ ମନ୍ଦିର ଅବସ୍ଥିତ । ମନ୍ଦିରର ମୁହଁ ଉତ୍ତର ଦିଗକୁ । ଉକ୍ତ ମନ୍ଦିରରେ ମୁଗୁନି ପଥରରେ ସତ୍ୟନାରାୟଣ ମୂର୍ତ୍ତି ବିରାଜମାନ । ଏହା ଚତୁର୍ଭୁଜ ଜନାର୍ଦ୍ଦନ ମୂର୍ତ୍ତି । ପୀଠକୁ ମିଶାଇଲେ ମୂର୍ତ୍ତିଟିର ଉଚ୍ଚତା ପ୍ରାୟ ପାଞ୍ଚ ଫୁଟ । ସତ୍ୟନାରାୟଣଙ୍କ ଉପରେ ଡାହାଣ ହାତରେ ଚକ୍ର, ଉପର ବାମ ହାତରେ ଶଙ୍ଖ, ତଳ ଡାହାଣ ହାତରେ ଅଭୟ ମୁଦ୍ରା ଏବଂ ତଳ ବାଁ ହାତରେ ତାହା ଶୋଭାପାଏ । ପ୍ରଭୁଙ୍କ କର୍ଣ୍ଣରେ କୁଣ୍ଡଳ ଗଳାରେ ହାର ଏବଂ ପ୍ରତ୍ୟେକ ହାତରେ ଦୁଇଟା ଯୋଡ଼ା ହୋଇଥିବା ଖଡୁ ଶୋଭା ପାଉଥାଏ । ସତ୍ୟନାରାୟଣଙ୍କ ଦୁଇ ଦିଗରେ ଅଛନ୍ତି ଜୟା ଓ ବିଜୟା । ଗରୁଡ଼ ନତଜାନୁ ଅବସ୍ଥାରେ ପାଦତଳେ ବିରାଜମାନ । ଉପରେ ଅପ୍‌ସରା କିନ୍ନରୀଙ୍କ ଚିତ୍ର । ସ୍ନାନପୂର୍ଣ୍ଣିମା ଦିନ ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନଙ୍କ ସ୍ନାନ ଉଦ୍ଦେଶ୍ୟରେ ସୁନା କୂଅରୁ ଆସିଥିବା ଜଳ, ସତ୍ୟନାରାୟଣଙ୍କ ମନ୍ଦିରରେ ହାଣ୍ଡି ଓ କୁଡୁଆ ରହେ । ପ୍ରତ୍ୟହ ଏଠାରେ ଶ୍ରୀଜୀଉମାନଙ୍କ ଚନ୍ଦନ ଲାଗି ସମୟରେ ଅଳକା ଥୁଆ ହୁଏ ଏବଂ ଏଠାରେ ମଧ ଭକ୍ତ ମାଳ ଶ୍ରୀଜୀଉଙ୍କ ପାଇଁ ଫୁଲ ଗୁନ୍ଥନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪୭) ।

**ସତ୍ୟନାରାୟଣ ମନ୍ଦିର**-*ଦେ.ବି.*- ଶ୍ରୀମନ୍ଦିର ଉତ୍ତର ପାର୍ଶ୍ୱରେ ଭିତର ବେଢ଼ାରେ ଥିବା ଏକ ମନ୍ଦିର । ଏଠାରେ ଭକ୍ତମାନେ ଶ୍ରୀଜଗନ୍ନାଥଙ୍କ ପାଇଁ ଫୁଲ ଗୁନ୍ଥନ୍ତି । ସ୍ନାନ ପୂର୍ଣ୍ଣିମାରେ ସୁନା କୂଅରୁ ଜଳ ଆସି ରହିବା ପାଇଁ ଆବଶ୍ୟକ ହାତକୁଡୁଆ ଏଠାରେ ମହଜୁଦ ରଖାଯାଏ । ଠାକୁରଙ୍କ ଚନ୍ଦନ ଲାଗି ସମୟରେ ଅଳକା ଏହି ସ୍ଥାନରେ ରଖା ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୪୭) ।

**ସଦର ଗୁମାସ୍ତା**-*ଦେ.ବି.*- ଗୁମାସ୍ତା ସେବକ । ପଣ୍ଡାଙ୍କ କଚେରୀ ଘରେ ଲେଖାପଢ଼ା କରୁଥିବା ସେବକ । ପଣ୍ଡା ଓ ଯାତ୍ରୀଙ୍କ ମଧ୍ୟରେ ସେ ହେଉଛନ୍ତି ଏକ ମାଧ୍ୟମ ।
(ପୁ.ବୋ. - ପୃ. ୩୨୦) ।

**ସଦାବର୍ତ୍ତ**-*ଦେ.ବି.*- ଦୀନ ଦରିଦ୍ର, ସାଧୁ ସନ୍ନ୍ୟାସୀ ଅତିଥିଙ୍କୁ ନିୟମିତ ଅନ୍ନଦାନ । ଅଠରନଳା ଘାଟଠାରେ ଯାତ୍ରୀମାନଙ୍କ ପାଇଁ ଜଗନ୍ନାଥ ବଲ୍ଲଭ ମଠ ତରଫରୁ ସଦା କର୍ତ୍ତବ୍ୟ ବ୍ୟବସ୍ଥା ଥିଲା ।
(ପୁ.ବୋ. - ପୃ. ୩୨୧) ।

**ସନ୍ଧ୍ୟା ଆଳତି**- ଅପରାହ୍ନ ଛଅ ଘଣ୍ଟା ସମୟରେ ପହୁଡ଼ ଫିଟିବାର ନିୟମ । ଏ ନୀତି ସକାଶେ କର୍ପୂର, ପାଟପଟନି, ଫୁଲ ଓ ଚନ୍ଦନ ଶ୍ରୀମନ୍ଦିର ଅଫିସ ତରଫରୁ ଯୋଗାଇ ଦିଆଯାଏ । ଏହି ନୀତି କାର୍ଯ୍ୟ ସମ୍ପନ୍ନ ପାଇଁ ନଅ ଜଣ ସେବକ ଆବଶ୍ୟକ । ଯଥା- ୧. ଭିତରଛ ମହାପାତ୍ର, ୨. ପାଳିଆ ମେକାପ, ୩. ଅଖଣ୍ଡ ମେକାପ, ୪. ମୁଦୁଲି, ୫. ଖଟଶେଯ ମେକାପ, ୬. ପାଳିଆ ପୁଷ୍ପାଳକ, ୭. ଗରାବଡୁ, ୮. ତଳିଛ ମହାପାତ୍ର, ୯. ଖୁଣ୍ଟିଆ ।
ଭିତରଛ ପାଳିଆ ମେକାପ, ଅଖଣ୍ଡ ମେକାପ, ପାଳିଆ ପ୍ରତିହାରି ଓ ମୁଦୁଲି ମନ୍ଦିର ଭିତରକୁ

ଯାଆନ୍ତି । ଭିତରଛଙ୍କ ଆଦେଶରେ କଳାହାଟ ଦ୍ୱାରର ତାଲା ଖୋଲେ । ଏହି ସମୟରେ ପ୍ରତିହାରି ମଣିମା ଡାକ ଦିଏ- 'ମଣିମା, ମଣିମା, ରତ୍ନ ପଲଙ୍କ ତେଜି ରତ୍ନସିଂହାସନରେ ବିଜେ କରନ୍ତୁ ।' ଅଖଣ୍ଡ ମେକାପ ବଇଠା ବସାଏ । ଖଟ ଶେଯ ମେକାପ ଭିତରକୁ ଯାଇ ପଲଙ୍କ ଆଣିଲେ ଦ୍ୱାର ଖୋଲାଯାଏ । ସୁଆର ବଡ଼ ୨୧ ବତୀ ସଞ୍ଜକାହାଳି ବଳିତା ଭିତରେ ସିଂହାସନରେ ରଖେ । ପାଳିଆ ପଶୁପାଳକ ୩ ଜଣ, ତଳିଛ ମହାପାତ୍ର ଓ ଗରାବଡୁ ଭିତରକୁ ଯାଇ ସିଂହାସନ ତଳେ ଠିଆ ହୁଅନ୍ତି । ପାଳିଆ ପୁଷ୍ପାଳକ ଓ ଶ୍ରୀଜଗନ୍ନାଥଙ୍କ ବାଡ଼ରେ ତଳିଛ ମହାପାତ୍ର ସିଂହାସନ ତଳେ ଥାଇ ୩ ବାଡ଼ରେ କର୍ପୂର ଆଳତି, ୨୧ ବତୀ ଓ ସଞ୍ଜକାହାଳି ଆଳତି କରନ୍ତି । ଏହା ମଙ୍ଗଳ ଆଳତି ନୀତି ଅନୁସାରେ ହୁଏ । ଆଳତି ପରେ ପୁଷ୍ପାଳକମାନେ ସିଂହାସନ ଉପରକୁ ଉଠି ଗରାବଡୁଠାରୁ ପାଣି ନେଇ ହାତ ଧୋଇ ମଇଲମ କରନ୍ତି । ଗୁଣା, ଫୁଲର ନାକୁଆସି, ଫୁଲର ମାଳ ଇତ୍ୟାଦିରେ ଠାକୁର ବେଶ ହୁଅନ୍ତି । (ଯଦି କୌଣସି ଦିନ ସମୟ ଅଭାବରୁ ଠାକୁରଙ୍କର ଦିବା ପହୁଡ଼ ହୋଇ ନ ପାରେ ତାହାହେଲେ ଦ୍ୱିପ୍ରହର ଧୂପ ପରେ ଠାକୁରଙ୍କ ମଇଲମ କରାଯାଇ ବେଶ ପରେ ସନ୍ଧ୍ୟା ଆଳତି ହୁଏ, କିନ୍ତୁ ପହୁଡ଼ ହୋଇଥିଲେ ସନ୍ଧ୍ୟା ଆଳତି ପରେ ବେଶ ହୁଏ । (ଏକାଦଶୀ ଦିନ ଆଗରେ ଆଳତି ହୋଇ ପରେ ମଇଲମ ଓ ବେଶ ହୁଏ ।)

(ଶ୍ରୀ.ସ୍ୱ. ୨ୟ - ପୃ. ୨୪/୨୫) ।

**ସନ୍ଧ୍ୟାଦର୍ଶନ**-*ଦେ.ବି.*- ଆଷାଢ଼ ଶୁକ୍ଳ ନବମୀ ଦିନ ସନ୍ଧ୍ୟାବେଳେ ଗୁଣ୍ଡିଚା ଘରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ । ଏହାର ଅନ୍ୟନାମ ନବମୀ ଦର୍ଶନ । ପ୍ରତିଦିନ ସନ୍ଧ୍ୟା ଦର୍ଶନ ସୁଯୋଗ ନୀତି ପ୍ରଚଳିତ ଥିଲେ ମଧ ଏହି ଦିନର ସନ୍ଧ୍ୟାରେ ଦର୍ଶନ ହିଁ ସନ୍ଧ୍ୟାଦର୍ଶନ ନାମରେ ପରିଚିତ ।

(ପୂ.ଓ.ଭା.- ପୃ. ୮୧୦୫) ।

**ସର୍ପମଣୋହି**-*ଦେ.ବି.*- ଗୁଣ୍ଡିଚା ଘରେ ବଲ୍ଲଭ ଭୋଗ ଅର୍ପିତ ହେବା ସର୍ପମଣୋହି ବିଧି ବା ଠାକୁରଙ୍କ ଉଦ୍ଦେଶ୍ୟରେ ଭୋଗଦ୍ରବ୍ୟ ସାମାନ୍ୟ ଉପରକୁ ଟେକି ଦେବା । ଅଣସର ନୀତିରେ (ବଲ୍ଲଭ ସର୍ପମଣୋହି), ଶ୍ରୀଗୁଣ୍ଡିଚା ବାଡ଼ି ନୀତିରେ ଗୁଣ୍ଡିଚାଘରେ (ବଲ୍ଲଭ ସର୍ପମଣୋହି), ମାଘ ଶୁକ୍ଳ ପଞ୍ଚମୀରେ (ମାଣ୍ଡୁଅ ସର୍ପମଣୋହି) ଠାକୁରଙ୍କୁ ଅର୍ପଣ କରାଯାଏ ।

(ଶ୍ରୀ.ସ୍ୱ. - ପୃ. ୧୦୮, ୬୨, ୭୧) ।

**ସପ୍ତଜ୍ୟୋତି ବନ୍ଦାପନା**- ଶ୍ରୀମନ୍ଦିରରେ ସପ୍ତର୍ଷି - ଯଥା- ଶୁକ, ସନକ, ସନନ୍ଦ, ସନାତନ, କପିଳ, କତ୍ରୁ ଓ ପଞ୍ଚଶିଖ ବନ୍ଦାପନା କରାଯାଏ ସ୍ନାନମଣ୍ଡପକୁ ଠାକୁର ଆସିବା ସମୟରେ ସପ୍ତ ପାହାଚ ଉପରେ ଏହି ସପ୍ତଜ୍ୟୋତି ବନ୍ଦାପନା କରାଯାଇଥାଏ ।

**ସପ୍ତଫେଣା**- ଶ୍ରୀକୃଷ୍ଣଙ୍କୁ ବସୁଦେବ ନେଇଯିବା ସମୟରେ ଯମୁନାନଦୀ (ସରସ୍ୱତୀ ମନ୍ଦିର ସମ୍ମୁଖ ସ୍ଥାନ) ଅତିକ୍ରାନ୍ତ ସମୟରେ ବେହେରା ଖୁଣ୍ଟିଆ ଠାକୁରଙ୍କ ଶିର ଉପରେ ସପ୍ତଫେଣା ବାସୁକି ଧରି ଚାଲୁଥାଆନ୍ତି । ଉଗ୍ରସେନ (ପୂଜାପଣ୍ଡା ମଧ୍ୟରୁ ଜଣେ) ଦଣ୍ଡ ପ୍ରଣାମ ପରେ ମୁଦିରସ୍ତ ପ୍ରସାଦ ଲାଗି ଓ ବନ୍ଦାପନା କରନ୍ତି । ନୀଳାଦ୍ରି ମହୋଦୟ ଓ ସ୍କନ୍ଦପୁରାଣାନୁସାରେ ବଳଭଦ୍ରଙ୍କ ଶିରୋଦେଶରେ ସପ୍ତଫଣା ଯୁକ୍ତ ନାଗରାଜ ଶୋଭିତ ଥାଏ । ଭାରତ ବିଖ୍ୟାତ ସ୍ମୃତିଧର ବିଦ୍ୟାଧର ମିଶ୍ର, ବାଜପେୟୀଙ୍କ ପ୍ରଣୀତ ନିତ୍ୟାଚାର ପଦ୍ଧତି ଗ୍ରନ୍ଥରେ ଶ୍ରୀଜଗନ୍ନାଥ ବିଷ୍ଣୁ, ସୁଭଦ୍ରା ବ୍ରହ୍ମା ଓ ବଳଭଦ୍ରଙ୍କୁ ମହେଶ୍ୱର ରୂପେ ପରିକଳ୍ପନା କରାଯାଇଛି ।

(ଶ୍ରୀ.ସ୍ୱ. ୨ୟ - ପୃ. ୮୯, ଶ୍ରୀ.ଜି. - ପୃ. ୪୨) ।

**ସପ୍ତବିଗ୍ରହ**-*ସଂ.ବି.*- ରତ୍ନସିଂହାସନାସୀନ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀସୁଦର୍ଶନ, ମାଧବ, ଭୂଦେବୀ ଓ ଶ୍ରୀଦେବୀ ସପ୍ତ ବିଗ୍ରହ ରୂପେ ପରିଚିତ ।

(ଶ୍ରୀ.ସ୍ୱ. ୨ୟ - ପୃ. ୬୦) ।

**ସପ୍ତମାତୃକା**-*ସଂ.ବି.*- ମାର୍କଣ୍ଡେୟ ପୁଷ୍କରଣୀ କୂଳରେ ଅଗ୍ନିକୋଣରେ ସପ୍ତମାତୃକା ମନ୍ଦିର

ଅବସ୍ଥିତ । ମାଦଳାପାଞ୍ଜି ବର୍ଣ୍ଣନାନୁଯାୟୀ କେଶରୀ ବଂଶର ରାଜା ଭୀମକେଶରୀ ଉକ୍ତ ସପ୍ତମାତୃକା ମୂର୍ତ୍ତି ସ୍ଥାପନ କରିଥିଲେ । ସପ୍ତମାତୃକାଙ୍କ ଉଭୟ ପାର୍ଶ୍ୱରେ ବୀରଭଦ୍ର ଓ ଗଣେଶଙ୍କ ମୂର୍ତ୍ତି ଦେଖିବାକୁ ମିଳେ । ସପ୍ତମାତୃକା ହେଉଛନ୍ତି- ବ୍ରାହ୍ମୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଚାମୁଣ୍ଡା । ଇତିହାସ ମତରେ ଭୀମ କେଶରୀ ହେଲେ ସୋମବଂଶୀ ଭୀମରଥ । (ଶ୍ରୀ.ଜି. - ପୃ. ୯୭) ।

**ସପ୍ତମୀ-** *ସଂ.ବି.-* କୃଷ୍ଣପକ୍ଷର ସପ୍ତମୀକୁ କୃଷ୍ଣ ସପ୍ତମୀ ଓ ଶୁକ୍ଳପକ୍ଷରେ ଏହା ଶୁକ୍ଳ ସପ୍ତମୀ । ଏହି ସପ୍ତମୀମାନଙ୍କରେ ନାନା ବ୍ରତ ଆଚରଣ କରିବା ପାଇଁ ପୁରାଣରେ ବର୍ଣ୍ଣିତ ଅଛି । ତନ୍ମଧ୍ୟରୁ ନିମ୍ନ ସପ୍ତମୀ ମାନ ପ୍ରଧାନ । ସପ୍ତମୀ ସୂର୍ଯ୍ୟ ମୂର୍ତ୍ତି ପ୍ରକାଶିତ ତିଥି ଥିବାରୁ ସପ୍ତମୀମାନଙ୍କରେ ସୂର୍ଯ୍ୟପୂଜା ଓ ଉପବାସାଦି କରିବାର ବିଧି ଅଛି । ମତ୍ସ୍ୟପୁରାଣରେ ଭିନ୍ନ ଭିନ୍ନ ସପ୍ତମୀର ନାମ ଓ ବ୍ରତ ବିଧି ଲେଖା ଅଛି । ଯଥା- ୧. କଲ୍ୟାଣ ସପ୍ତମୀ, ୨. ବିଶୋକ ସପ୍ତମୀ, ୩. ଶର୍କରା ସପ୍ତମୀ, ୪. କମଳ ସପ୍ତମୀ, ୫. ମନ୍ଦାର ସପ୍ତମୀ, ୬. ଶୁଭ ସପ୍ତମୀ, ଏହାଛଡ଼ା ଅନ୍ୟାନ୍ୟ ପୁରାଣୋକ୍ତ ନିମ୍ନ ସପ୍ତମୀମାନ ମଧ୍ୟ ହିନ୍ଦୁମାନଙ୍କ ପର୍ବ ରୂପରେ ଗଣ୍ୟ ହୋଇଆସୁଅଛି । ଯଥା- ମାଘସପ୍ତମୀ । ଏହି ସପ୍ତମୀରେ ପ୍ରାତଃସ୍ନାନ, ଉପବାସ, ସୂର୍ଯ୍ୟପୂଜା ଓ ତୀର୍ଥସ୍ନାନ କରାଯାଏ । ମାଘ ସପ୍ତମୀଠାରୁ ଆରମ୍ଭ କରି ବର୍ଷେ ପର୍ଯ୍ୟନ୍ତ ସପ୍ତମୀରେ ଉପବାସ, ପ୍ରାତଃସ୍ନାନ ଓ ସୂର୍ଯ୍ୟପୂଜା ସହ କରାଯିବା ବ୍ରତକୁ 'ଆରୋଗ୍ୟ ବ୍ରତ' କୁହାଯାଏ । ଏ ବ୍ରତର ବିଧାନ ବରାହ ପୁରାଣ, ଭବିଷ୍ୟପୁରାଣ ଓ ବ୍ରହ୍ମ ବୈବର୍ତ୍ତ ପୁରାଣରେ ଅଛି । ଏହି ବ୍ରତରେ ଆଦିତ୍ୟଙ୍କୁ ବିଷ୍ଣୁ ରୂପରେ କଳ୍ପନା କରି ପୂଜା କରାଯାଏ ଏବଂ ଏ ବ୍ରତ କଲେ ମନୁଷ୍ୟ ସବୁ ପ୍ରକାରରୋଗରୁ ମୁକ୍ତ ହୁଏ । ଏହି ସପ୍ତମୀରେ ସ୍ନାନାଦାନାଦି ସୂର୍ଯ୍ୟଗ୍ରହଣ କାଳରେ ଅନୁଷ୍ଠିତ ସ୍ନାନାଦାନାଦି ତୁଲ୍ୟ ଫଳଯୁକ୍ତ ଅଟେ । ସେହିପରି ଭାଦ୍ର ଶୁକ୍ଳ ସପ୍ତମୀ ତିଥିକୁ ବା କୁକ୍କୁଟବ୍ରତ ମଧ ବୋଲାଯାଏ । ଏଥିରେ ପାର୍ବତୀ ଓ ଶିବଙ୍କୁ ପୂଜା କରାଯାଏ । ଏଥିରେ ସ୍ତ୍ରୀମାନେ ଗଣ୍ଠି ପଡୁଥିବା ବ୍ରତ ବ୍ୟବହାର କରନ୍ତି । ପୋଥିପୂଜା ସପ୍ତମୀ ବା ନବପତ୍ରିକା ସପ୍ତମୀ (ଆଶ୍ୱିନ ଶୁକ୍ଳ ସପ୍ତମୀ), ଜହ୍ନୁ ସପ୍ତମୀ ବୈଶାଖ ଶୁକ୍ଳ ସପ୍ତମୀ-ଏ ଦିନ ଗଙ୍ଗାଙ୍କର ପୂଜା କରାଯାଏ । ମିତ୍ର ସପ୍ତମୀ ମାର୍ଗଶୀର ଶୁକ୍ଳ ସପ୍ତମୀ, ଚୈତ୍ର ସପ୍ତମୀ-ବାସନ୍ତୀକ ଦୁର୍ଗାପୂଜା, ବିଜୟ ସପ୍ତମୀ । ଶ୍ରୀମନ୍ଦିରରେ ଭାଦ୍ର କୃଷ୍ଣପକ୍ଷ ସପ୍ତମୀ ତିଥିରେ ବିଗ୍ରହମାନଙ୍କ ନିକଟରେ କେଉଡ଼ ଭୋଗଲାଗି ହୁଏ ଏବଂ ଗର୍ଭଉଦକ ବନ୍ଦାପନା କରାଯାଏ । (ପୂ.ଓ.ଭା. - ପୃ. ୮୧୨୫) ।

**ସପ୍ତାବରଣ-** *ସଂ.ବି.-*ସ୍ନାନ ପୂର୍ଣ୍ଣିମାର ପଞ୍ଚଷଠୀ ଦିନ ପୂର୍ବରୁ ନବକଳେବର ନିମନ୍ତେ ଦାରୁ ଅନ୍ୱେଷଣ ପାଇଁ ବନଯାଗ ଯାତ୍ରା ଆରମ୍ଭ ହୁଏ ଏବଂ ସ୍ନାନ ପୂର୍ଣ୍ଣିମା ପୂର୍ବରୁ ଦାରୁ ଆସି ଶ୍ରୀମନ୍ଦିରରେ ପହଞ୍ଚି ଥାଏ । ପୂର୍ଣ୍ଣମୀଠାରୁ ପ୍ରତିମା ଗଠନ ଆରମ୍ଭ ହୁଏ ଏବଂ ଅମାବାସ୍ୟାରେ ବ୍ରହ୍ମ ପ୍ରବେଶ କରାଯାଇଥାଏ । ତାହା ପରେ ଅମାବାସ୍ୟା ଠାରୁ ମଳମାସ ଆରମ୍ଭ ହୁଏ ଏବଂ ଏହି ମଧ୍ୟରେ ନୂତନ ବିଗ୍ରହମାନଙ୍କର ସପ୍ତାବରଣ ସେବା କରାଯାଏ । ସପ୍ତାବରଣ କର୍ମରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ଅସ୍ଥି, ମଜା, ଶିରା ପ୍ରଶିରା, ରକ୍ତ, ମାଂସ, ଚର୍ମ ଓ ଶୁକ୍ର ଯଥାକ୍ରମେ ଦାରୁରେ ଚନ୍ଦନ, ପାଟଡୋର, ନେତପାଟ, ସୁବାସିତ ତୈଳ, ଝୁଣାର ପ୍ରଲେପ, ବସ୍ତ୍ର ଓ ଅଷ୍ଟଗନ୍ଧାଦି ପ୍ରଭୃତି ବ୍ୟବହାର କରାଯାଇ ଶ୍ରୀ ଅଙ୍ଗରେ ଲାଗି ହୋଇଥାଏ । ଶ୍ରୀଜୀଉଙ୍କର ଏହା ମାନବୀୟ ଲୀଳା ହୋଇଥିବାରୁ ତାଙ୍କ ଶ୍ରୀଅଙ୍ଗରେ ଏହି ସାତ ଗୋଟି ଦ୍ରବ୍ୟ ସୃଷ୍ଟି କରାଯାଏ । ଯାହାକି ପ୍ରଭୁଙ୍କର ସପ୍ତାବରଣ ଅଟେ । ଶ୍ରୀଜଗନ୍ନାଥଙ୍କ ଦୈତାମାନେ ଗୋପନରେ ଏହି ସପ୍ତାବରଣ କାର୍ଯ୍ୟ ସମ୍ପନ୍ନ କରିଥାନ୍ତି । (କ୍ଷେ.ସ.) ।

**ସପ୍ତାବରଣ ତତ୍ତ୍ୱ**-*ସଂ.ବି.*- ଶ୍ରୀବଳରାମ- ଆତ୍ମତତ୍ତ୍ୱ, ଦେବୀ ସୁଭଦ୍ରା- ବିଦ୍ୟାତତ୍ତ୍ୱ, ଶ୍ରୀଜଗନ୍ନାଥ- ପରଂତତ୍ତ୍ୱ, ଶ୍ରୀସୁଦର୍ଶନ- ମହାତତ୍ତ୍ୱ, ମାଧବ- ସତ୍ୟତତ୍ତ୍ୱ, ଭୂଦେବୀ- ନିର୍ଗୁଣ ତତ୍ତ୍ୱ, ଶ୍ରୀଦେବୀ- ତୁରୀୟ ତତ୍ତ୍ୱ ।
(ଶ୍ରୀ.ଜି. - ପୃ. ୫୫) ।

**ସପ୍ତମୃତ୍ତିକା**-*ସଂ.ବି.*- ଅଶ୍ୱଶାଳା, ଗଜଶାଳା, ଉଇହୁଙ୍କା, ଚାରିଛକ, ରାଜଦ୍ୱାର, ଗୋଶାଳା ଓ ନଦୀ କୂଳର ମୃତ୍ତିକା । ଶ୍ରୀଜଗନ୍ନାଥ ରଥ ପ୍ରତିଷ୍ଠା ବେଳେ ଏହି ସପ୍ତ ମୃତ୍ତିକାର ଆବଶ୍ୟକତା ହୋଇଥାଏ ।
(ମ.ନ.- ପୃ. ୧୮୯) ।

**ସର୍ବାଙ୍ଗଲାଗି**-*ଦେ.ବି.*- ରଥ ଗୁଣ୍ଡିଚା ଦାଣ୍ଡରେ ପହଞ୍ଚିଲେ ଠାକୁରମାନଙ୍କର ମହାସ୍ନାନ ହୁଏ । ମହାସ୍ନାନ ପରେ ନୂଆ ବୋଇରାଣୀ ଲୁଗା ଲାଗି ହୋଇ ସର୍ବାଙ୍ଗ ହୁଏ ଓ ବେଶ ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୭୦) ।

**ସର୍ବାଙ୍ଗ ଚନ୍ଦନଲାଗି**-*ଦେ.ବି.*- ପ୍ରତି ଏକାଦଶୀ ତିଥିରେ ମଧ୍ୟାହ୍ନ ଧୂପପରେ ଠାକୁରଙ୍କ ମୈଲମ ବଢ଼ିବା ଉତ୍ତାରେ ଶାଢ଼ୀ ଓ ଖଣ୍ଡୁଆ ଲାଗି ହୁଏ । ସନ୍ଧ୍ୟା ଆଳତି ପରେ ଚନ୍ଦନ ଲାଗି ହୁଏ । ଏହାକୁ ମହାପ୍ରଭୁଙ୍କ ସର୍ବାଙ୍ଗ ଚନ୍ଦନ ଲାଗି କୁହାଯାଏ । ଘଟୁଆରୀ ରୂପା ପିଙ୍ଗଣରେ କର୍ପୂର, ଚନ୍ଦନ, କସ୍ତୁରୀ ଓ ଚୂଆ ପ୍ରଦାନ କରେ । ପଣ୍ଡା, ପତି ଓ ମୁଦିରସ୍ତ ସିଂହାସନରେ ଥିବା ୩ ଜଣ ପାଳିଆ ପୁଷ୍ପାଳକ ଠାକୁରଙ୍କୁ ଲାଗି କରନ୍ତି । ଦକ୍ଷିଣି ଘରୁ ମହାଜନମାନେ ମଦନମୋହନଙ୍କୁ ମହାଜନମାନେ ଆଣି ବିଜେ କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୨) ।

**ସମାପନୀ ମୁଦ୍ରା**-*ଦେ.ବି.*- ପୂଜା ଶେଷରେ ଯେଉଁ ମୁଦ୍ରା ଦେଖାଯାଏ ।
(ଶ୍ରୀ.ଶ. - ପୃ. ୧୬୬) ।

**ସମ୍ପ୍ରଦା ନିଯୋଗ ସେବକ**-*ସଂ.ବି.*- ସକାଳ ଧୂପରେ ନୃତ୍ୟ କରନ୍ତି । ଚନ୍ଦନଯାତ୍ରା, ଚନ୍ଦନଲାଗିରେ, ଜଗମୋହନରେ, ପଟୁଆର ଚାପ ଉପରେ ଓ ଚାପ ବାହୁଡ଼ା ବିଜେରେ ନୃତ୍ୟ କରନ୍ତି । ରୁକ୍ମିଣୀ ବିବାହରେ ଲକ୍ଷ୍ମୀଙ୍କ ମୋହନରେ ଚିଟାଉ ଲେଖା ସମୟରେ ଗୀତ ଓ ହୁଳହୁଳି ଦିଅନ୍ତି । ଲକ୍ଷ୍ମୀ ବିମଳା ମନ୍ଦିରକୁ ଗଲାବେଳେ ହୁଳହୁଳି ଦେବେ ଓ ଖଦୀ ଚାମର ସେବା କରନ୍ତି । ସ୍ନାନ ପୂର୍ଣ୍ଣିମା ବେଦୀ ତଳେ ପଟୁଆର କରନ୍ତି । ଚାହାଣୀ ମଣ୍ଡପରେ ଲକ୍ଷ୍ମୀଙ୍କ ଭେଟ ସମୟରେ ସାଥୀରେ ଯାଆନ୍ତି । ଗୁଣ୍ଡିଚା ମନ୍ଦିରରେ ୨ୟ ଦିନଠାରୁ ପଟୁଆର କରନ୍ତି । ହେରାପଞ୍ଚମୀ ଦିନ ଦଇତାଙ୍କୁ ଦଣ୍ଡମଣ୍ଡ ଓ ରଥ ଭାଙ୍ଗିବା ସେବା କରନ୍ତି । ଝୁଲଣ ମଣ୍ଡପ ତଳେ ପଟୁଆର ସେବା, କୃଷ୍ଣଜନ୍ମରେ ଯଶୋଦା ରୋହିଣୀ ସେବା, କୃଷ୍ଣଙ୍କୁ କ୍ଷୀର ଖୁଆଇବା, ଷୋଳପୂଜାରେ ବିମଳାଙ୍କ ନିକଟରେ ପଟୁଆର କରିବା ଏହାଙ୍କ କାମ । ରୁକ୍ମିଣୀ ହରଣଦିନ ଲକ୍ଷ୍ମୀଙ୍କ ଦାସୀ ସ୍ୱରୂପ ବିପ୍ର ବ୍ରାହ୍ମଣ ସଙ୍ଗେ ଯାଆନ୍ତି । ହେରାପଞ୍ଚମୀ ଦିନ ଦଇତାଙ୍କୁ ଦଣ୍ଡମଣ୍ଡ କରିବା ଓ ରଥ ଭାଙ୍ଗିବା । ନନ୍ଦୋତ୍ସବରେ ରୋହିଣୀ, ଯଶୋଦା ସେବା - ଏହି ତିନିଗୋଟି ସେବା ସମ୍ପ୍ରଦା ନିଯୋଗର ଅନ୍ତର୍ଭୁକ୍ତ ।
(ଶ୍ରୀ.ସ୍ୱ. ୩ୟ - ପୃ. ୪୮-୪୯) ।

**ସମ୍ବତ୍ସର ବ୍ରତ**- ଫାଲଗୁନ ପୂର୍ଣ୍ଣିମାଠାରୁ ପରବର୍ଷ ଫାଲଗୁନ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଳନ କରାଯାଇଥାଏ । ସ୍କନ୍ଦପୁରାଣାନୁଯାୟୀ ଏହି ଦ୍ୱାଦଶ ମାସରେ ବିଷ୍ଣୁଙ୍କର ଦ୍ୱାଦଶ ମୂର୍ତ୍ତି ମଧ୍ୟରୁ ଏକ । ଦ୍ୱାଦଶବିଧ ଫୁଲ ଓ ଫଳ ଦ୍ୱାରା ପୂଜା କରାଯାଏ । ପ୍ରତ୍ୟେକ ଦିନ ଜଗନ୍ନାଥଙ୍କୁ ଉପଚାର ଆଦି ଦ୍ୱାରା ପ୍ରାର୍ଥନା କରାଯାଏ ।

**ସମର୍ଥା**-*ଦେ.ବି.*- ଶ୍ରୀମନ୍ଦିରର ଜଣେ ସେବକ । ବ୍ରାହ୍ମଣ ସମର୍ଥା- ବଟାଘସା କରିବା । ଶୂଦ୍ର ସମର୍ଥା- ଚୂନା କୁଟିବା, ବିରିମୁଗ ରଗଡ଼ିବା, ହଳଦୀ ବେସର ବାଟିବା । ସ୍ୱତ୍ୱଲିପି ଅନୁସାରେ ବିରି ରଗଡ଼ିବା, ବିରିବାଟିବା ପାଇଁ ଥିବା ସମର୍ଥା ରୋଷେଇ ବିରିମୁଣ୍ଡରେ କୋଠଭୋଗ ନିମନ୍ତେ ନିଜେ ଅଥବା ଅନ୍ୟ ଲୋକ ଲଗାଇ ବିରି ଚାଉଳ ବାଟନ୍ତି । ବର୍ତ୍ତମାନ ଏ ସେବକ ନାହାନ୍ତି ।
(ଶ୍ରୀ.ସ୍ୱ. - ପୃ. ୩୬) ।

**ସମାଧି ମଠ**-*ଦେ.ବି.*- ପୁରୀର ଏକ ମଠ ବିଶେଷ ।
(ପୂ.ଓ.ଭା. - ପୃ. ୮୧୮୫) ।

**ସମାଧିହାଣ୍ଡି**-*ଦେ.ବି.*- ପୁରୀରେ ଅନ୍ନ ମହାପ୍ରସାଦ ରଖାଯିବାର ଏକ ପ୍ରକାର ହାଣ୍ଡି ଏଥିରେ ତିନି/ଚାରି ସେର ଚାଉଳର ଅନ୍ନ ରହିପାରେ । ସମ୍ଭବତଃ ପୁରୀର ସମାଧି ମଠ ତରଫରୁ ଶ୍ରୀଜଗନ୍ନାଥଙ୍କଠାରେ ଭୋଗ କରାଯାଉଥିବା ଅନ୍ନ ମହାପ୍ରସାଦ ଏହି ଆକାରରେ ହାଣ୍ଡିରେ ରଖାଯାଉଥିବାରୁ ଏହାର ଏପରି ନାମକରଣ ହୋଇଅଛି ।
(ପୂ.ଓ.ଭା. - ପୃ. ୮୧୮୫) ।

**ସମିଆ**-*ଦେ.ବି.*- ଶ୍ରୀମନ୍ଦିରର ନୀତିକାନ୍ତିର ଖବର । ଶ୍ରୀମନ୍ଦିରରେ କେଉଁ ନୀତି ଚାଲିଛି, ତାହା ଜାଣିବା ନିମନ୍ତେ ପ୍ରଚଳିତ ଶବ୍ଦ ।
(ପୁ.ବୋ.- ପୃ. ୩୨୧) ।

**ସମିଧ**-*ସଂ.ବି.*- ଭିନ୍ନ ଭିନ୍ନ ଉଦ୍ଦେଶ୍ୟରେ ଅନୁଷ୍ଠିତ ଯଜ୍ଞ ଓ ହୋମ ନିମନ୍ତେ ଭିନ୍ନ ଭିନ୍ନ ବୃକ୍ଷର ଶାଖା ସମିଧ ରୂପେ ବ୍ୟବହାର ହେବାର ବିଧି ଅଛି । ଯଥା- ରବି, ମଙ୍ଗଳ, ଚନ୍ଦ୍ର, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ ଓ କେତୁ ଶାନ୍ତି ବିଧାନାର୍ଥେ ଅନୁଷ୍ଠିତ ହୋମରେ ଯଥାକ୍ରମେ- ଅର୍କ, ପଳାସ, ଖଦିର, ଅପାମାର୍ଗ, ପିପ୍ପଳ ବା ଅଶ୍ୱତ୍ଥ, ଉଦୁମ୍ବର, ଶମୀ, ଦୁବ ଓ କୁଶ ବ୍ୟବହୃତ ହୁଏ । ଉପନୟନାଦି ସଂସ୍କାର କର୍ମରେ ଯଜ୍ଞ ଡିମ୍ବିର ଓ ତାନ୍ତ୍ରିକ ସେବାରେ ବେଲପତ୍ରୀ ସମିଧ ବ୍ୟବହୃତ ହୁଏ । ହୋମସମିଧର ଲମ୍ବ, ପ୍ରାଦେ ପରମିତ, ଅର୍ଥାତ୍ ବିସ୍ତୃତ କରତଳର ବୁଢ଼ା ଆଙ୍ଗୁଠିର ଅଗରୁ ବିଶି ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ଅର୍ଥାତ୍ ୧୦ ଆଙ୍ଗୁଳି ହେବ । ଏଥିର ସ୍ଥୂଳତା ୧ ଆଙ୍ଗୁଳିରୁ ଅଧିକ ହେବ ନାହିଁ । ଏଥିରେ ବକ୍କଳ ଲାଗିଥିବା, ଏକ ଶାଖାଯୁକ୍ତ ହୋଇଥିବ, ପୋକରା ହୋଇ ନ ଥିବ କିମ୍ବା ବିଶୀର୍ଣ୍ଣ, ହ୍ରସ୍ୱ, ଦ୍ୱିଧାକୃତ, ବକ୍ର ବା ସ୍ଥୁଳ ହୋଇ ନ ଥିବ । ଏପରି ଦୋଷଯୁକ୍ତ ସମିଧ ଦ୍ୱାରା ହୋମ କଲେ ଅମଙ୍ଗଳ ଘଟେ । ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ବିଭିନ୍ନ ସମୟରେ, ରଥ ପ୍ରତିଷ୍ଠାରେ, ନବକଳେବର ପାଇଁ ଦାରୁଛେଦନ ପୂର୍ବରୁ ହେଉଥିବା ହୋମରେ ଶାଳକାଠ, ଆମ୍ବକାଠ, ବରୁଣକାଠର ସମିଧ ଲାଗି ହୋଇଥାଏ ।
(ପୂ.ଓ.ଭା. - ପୃ. ୮୨୦୦) ।

**ସରକାରୀ ପସରା**-*ଦେ.ବି.*- ଆନନ୍ଦ ବଜାରରେ କୋଠଭୋଗ ବିକ୍ରି ହେଉଥିବା ଦୋକାନ, ଏହି ଭୋଗ ଦୋକାନର ବିକ୍ରିଲବ୍ଧ ଶ୍ରୀମନ୍ଦିରକୁ ଯାଇଥାଏ ।
(ପୁ.ବୋ. - ପୃ. ୩୨୧) ।

**ସରକୁମ୍ପା**-*ଦେ.ବି.*- ଗହମ ପ୍ରସ୍ତୁତ କାକରା ସର (କୁମ୍ପା) ମଧ୍ୟରେ ଦେଉଳିଆ ରଖାଯାଇ କନ୍ଦ ଭଲ ଗୁଡ଼ ଦିଆ ଯାଇଥିବା ଭୋଗଦ୍ରବ୍ୟ ।
(ଶ୍ରୀ.ଚେ.ଦୀ.ବ୍ୟା. - ପୃ. ୨୬୫) ।

**ସରଖାଇ**-*ଦେ.ବି.*- ଶ୍ରୀମନ୍ଦିର ବେଢ଼ାରେ ଥିବା ବିମଳା ମନ୍ଦିରର ଚତୁର୍ଥ ବଖରା ମୁହଁର ଦୁଇ ପାର୍ଶ୍ୱରେ ଖୋପରେ ଦୁଇଟି କଦାକାର ଲମ୍ବୋଦର ମୂର୍ତ୍ତି ବସିଥିବା ଭଙ୍ଗିରେ ଅଛନ୍ତି । ବାମହସ୍ତ ଜାନୁରେ ଅଛି ଓ ଦକ୍ଷିଣ ହସ୍ତରେ ଏକ ଛୁରିକା ଅଛି । ଲୋକମୁଖରେ ଏହି ଦୁଇ ପୁରୁଷ ମୂର୍ତ୍ତି କ୍ଷୀରଖାଇ ଓ ସରଖାଇ ।
(ପୁ.ବୋ. - ପୃ. ୩୨୧/୨୬୪) ।

**ସରଘର**-*ଦେ.ବି.*- ବିଭିନ୍ନ ପ୍ରକାର ମାହାର୍ଦ୍ଦ ତଥା ଭୋଗଦ୍ରବ୍ୟ ସଞ୍ଚିତ ରହିବା ଘର ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୭୨, ୨୭୧, ୨୬୦, ୨୫୯, ୨୫୬, ୨୫୧, ୨୪୪, ୨୨୮, ୨୩୪, ୨୧୯) ।

**ସରଘରିଆଣୀ**-*ଦେ.ବି.*- ପରଘରର ଭାରତପ୍ରାପ୍ତ ଚାକରାଣୀ ।
(ପୂ.ଓ.ଭା. - ପୃ. ୮୨୫୫) ।

**ସରପୁଳି**-*ଦେ.ବି.*- ଏକ ପ୍ରକାର ମିଠା ଭୋଗ ବିଶେଷ । ବିରି ଓ ଘିଅ ଦ୍ୱାରା ପ୍ରସ୍ତୁତ ପିଠା । ଠାକୁରଙ୍କ କୋଠ ଭୋଗରେ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୪) ।

**ସରବଡ଼ା ପିଠା**-*ଦେ.ବି.*- ବିରି ଓ ଚାଉଳ ଚୂନାରେ ଲୁଣ ଓ ଖଣ୍ଡଦିଆ ଯାଇ ଏ ପିଠା ପ୍ରସ୍ତୁତ ହୋଇ ଶ୍ରୀଠାକୁରଙ୍କୁ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୫-୧୮୧) ।

**ସରସ୍ୱତୀ**-*ସଂ.ବି.* - ଶ୍ରୀମନ୍ଦିରରେ ମାଘ ଶୁକ୍ଳ ପଞ୍ଚମୀ ଦିନ ଏହି ମନ୍ଦିରରେ ସରସ୍ୱତୀଙ୍କ ପୂଜା ଅର୍ଚ୍ଚନା ମହାସମାରୋହରେ ଅନୁଷ୍ଠିତ ହୋଇଥାଏ । ଏହା ବସନ୍ତ ପଞ୍ଚମୀ ବା ଶ୍ରୀପଞ୍ଚମୀ ନାମରେ ବିଦିତ । ଶ୍ରୀମନ୍ଦିରର ପଶ୍ଚିମ ଉତ୍ତର କୋଣରେ ଲକ୍ଷ୍ମୀମନ୍ଦିର ନିକଟରେ ଅବସ୍ଥିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩୧) ।

**ସରସ୍ୱତୀ ନଦୀ**-*ଦେ.ବି.*- ପ୍ରାଚୀ ନଦୀର ପୂର୍ବବର୍ତ୍ତୀ ପୌରାଣିକ ନାମ ।
(ଦା.ନ. - ପୃ. ୪୯) ।

**ସରା**-*ଦେ.ବି.*- ଏକ ମାଟି ପାତ୍ର । ଏହାର ମୁହଁ ଖୋଲା ଓ ପ୍ରଶସ୍ତ । ପୂଜା କାର୍ଯ୍ୟରେ ଏହା ବ୍ୟବହୃତ ହୁଏ । ସରା - ପୁଳିସରା, ପାଳିସରା ଓ କଟାସରା ପ୍ରଭୃତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦) ।

**ସହସ୍ର କୁମ୍ଭାଭିଷେକ**-*ସଂ.ବି.*- ଶ୍ରୀମନ୍ଦିରରେ ଷୋଳଦିନ ଗଣତି ହୋଇ ଆଶ୍ୱିନ କୃଷ୍ଣ ସପ୍ତମୀ ବା ଅଷ୍ଟମୀ ଦିନଠାରୁ ଶ୍ରୀ ବିମଳାଙ୍କ ପୂଜା (ଷୋଡ଼ଶ ପୂଜା) ଆରମ୍ଭ ହୁଏ । ସକାଳ ଧୂପରେ ଭଣ୍ଡାରରୁ ଦୁର୍ଗା ଆଜ୍ଞାମାଳ ପାଇ ପତି ମହାପାତ୍ର ହାତରେ ବିଜେ ହୋଇ ସୋମନାଥ ମଣ୍ଡପ ତାଟ ଉପରେ ବିଜେ ହୁଅନ୍ତି । ପଣ୍ଡା, ପତି ଓ ମୁଦିରସ୍ତ ଆଚାର୍ଯ୍ୟ ବ୍ରହ୍ମାବରଣ ହୋଇ ଦୁର୍ଗାଦେବୀଙ୍କୁ ୧୦୦୦ ଗରା ଜଳ ଲାଗି କଲା ଉତ୍ତାରୁ ଶ୍ରୀଅଙ୍ଗ ପୋଛା ହୋଇ ଲୁଗା ଲାଗି ହୋଇ ବେଶ ହୁଅନ୍ତି । ଶୀତଳ ଭୋଗ ପରେ ମୁଦିରସ୍ତ ପ୍ରସାଦ ଲାଗି କରାନ୍ତି ଓ ପଞ୍ଚୋପଚାରରେ ପଣ୍ଡା ଭୋଗ କରାନ୍ତି । ଏ ଉତ୍ତାରେ ବନ୍ଦାପନା ହୋଇ ବାହୁଡ଼ା ବିଜେ ହୋଇ ଭଣ୍ଡାର ଦ୍ୱାରଠାରେ ବିଜେ ହୁଅନ୍ତି । ଅବକାଶ ପରେ ଦୁଇ ଖଣ୍ଡ ଆଜ୍ଞାମାଳ ଲାଗି ହୁଅନ୍ତି । ଭଣ୍ଡାର ଦୁଆରଠାରେଶ୍ରୀ ବାଳପୁରୁଷୋତ୍ତମଦେବଙ୍କୁ ଭଦ୍ରାସନରେ ଦୁର୍ଗାଦେବୀ ସହ ଏକତ୍ର ରୁନ୍ଧା କରି ପରେ ଭିତରକୁ ବିଜେ କରି ଶ୍ରୀଅଙ୍ଗରୁ ଆଜ୍ଞାମାଳ ପାଇ ଜୟବିଜୟ ଦ୍ୱାର ଦେଇ ଝୁଲଣ ମଣ୍ଡପଠାରେ ପାଲିଙ୍କିରେ ବିଜେ କରନ୍ତି । ଏହିପରି ବିଧିବିଧାନ ରୀତିନୀତି ଅନୁସାରେ ସହସ୍ର କୁମ୍ଭାଭିଷେକ ହୁଏ । ସକାଳ ଧୂପ ପରେ ବ୍ରହ୍ମାବରଣ, ବରୁଣ ପୂଜା, ଆଚାର୍ଯ୍ୟବରଣ, ବ୍ରହ୍ମାବରଣ ଓ ସ୍ୱସ୍ତିବାଚନ, ଚଣ୍ଡୀପୁରାଣ ତଥା ସଂକଳ୍ପ ହୋଇ ଠାକୁରାଣୀଙ୍କ ଛାମୁରେ ପାହାଡ଼ା ପଡ଼ି ଭୋଗ ହୁଏ । ଷୋଡ଼ଶ ଉପଚାରରେ ଭୋଗ ହୁଏ । କୋଠଭୋଗ, ମହାପ୍ରସାଦ, ପିଷ୍ଟକ ଥାଳି, ଖେଚେଡ଼ି ପୂଜା, ବିମଳି ମଣୋହିରେ ବଢ଼ା ହୁଏ । ଭୋଗ ସମୟରେ ଘଣ୍ଟ ଘଣ୍ଟା କାହାଳୀ ବାଜୁଥାଏ । ଆଚାର୍ଯ୍ୟ ସମର୍ପଣ, ପାଣିଛଡ଼ା ପରେ ଟେରା ପଡ଼ି କର୍ପୂର ଆଳତି ୨୧ ବତୀ ବନ୍ଦାପନା ହୁଏ । ଠାକୁରାଣୀ ବିମଳାଙ୍କ ମନ୍ଦିର ଖଟ ଉପରେ ବିଜେ ହୁଅନ୍ତି । କର୍ପୂର ଜଳ ଲାଗି, ଶୀତଳ ମଣୋହି ବନ୍ଦାପନା ହୁଏ । ଏହିପରି ୩ ଧୂପ ବଢ଼ିବା ପରେ ରାତ୍ର ଚନ୍ଦନ ଲାଗି ଉତ୍ତାରେ ମହାଜନେ ଭଣ୍ଡାରରେ ବିଜେ କରାନ୍ତି । ଏହି ରୁନ୍ଧା ଷୋଳ ଦିନ ରହି ଦଶହରା ପରେ ଫିଟାଯାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୯୭) ।

**ସ୍କନ୍ଦପୁରାଣ**-*ସଂ.ବି.*- ଅଷ୍ଟାଦଶ ପୁରାଣ ମଧ୍ୟରୁ ଅନ୍ୟତମ । ଏଥିରେ ଥିବା ଉତ୍କଳ ଖଣ୍ଡରେ ଶ୍ରୀଜଗନ୍ନାଙ୍କର ଉତ୍ପତ୍ତି, ଶ୍ରୀମନ୍ଦିର ନିର୍ମାଣ, ବିଭିନ୍ନ ପୂଜା ରୀତିନୀତି ତଥା ପର୍ବପର୍ବାଣି ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା କରାଯାଇଛି । ଏବେ ମଧ୍ୟ ସ୍କନ୍ଦ ପୁରାଣ ଅନୁସାରେ ଶ୍ରୀମନ୍ଦିରର ସମସ୍ତ ନୀତିକାନ୍ତି କରାଯାଏ ।
(ପୂ.ଓ.ଭା. - ପୃ. ୮୭୬୨) ।

**ସାକର**-*ଦେ.ବି.*- ଏକ ପ୍ରକାର ମିଠା । ଏହା କୋଠଭୋଗ, ଶୀତଳ ଭୋଗ ଓ ଦହିପଟି ଭୋଗରେ ବ୍ୟବହୃତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୭୬, ୧୭୮) ।

**ସାକ୍ଷୀଗୋପାଳ**-*ଦେ.ବି.*- ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନରେ କାଞ୍ଚିରାଜା ଶାଲ୍ୱ ନରସିଂହଦେବଙ୍କୁ ପରାସ୍ତ କରି ଆଣିଥିବା ସାକ୍ଷୀଗୋପାଳ ମୂର୍ତ୍ତି ଶ୍ରୀମନ୍ଦିରର ପଶ୍ଚାଦ୍

ଭାଗରେ ଏକ ଆସ୍ଥାନରେ ବିଜେ କରିଛନ୍ତି । ଏହା ପ୍ରଥମେ କଟକର ବାରବାଟୀ ଦୁର୍ଗରେ ପ୍ରତିଷ୍ଠିତ ହୋଇଥିଲେ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୩୩) ।

**ସାତ ଆସନ**-ଦେ.ବି.- ସାତ ଆସନ ବା ସାତ ଆସନ ମଠ । ଆସନ ନାମଧେୟ କେତେକ ଗୌଡ଼ୀୟ ପନ୍ଥୀ ଆଶ୍ରମ । ଅତିବଡ଼ୀ ସମ୍ପ୍ରଦାୟଭୁକ୍ତ ମଠ ସହ ସମ୍ପୃକ୍ତ ।
(ଶ୍ରୀ.ଜି. - ପୃ. ୨୮୭) ।

**ସାତ ପାହାଚ**-ଦେ.ବି.- ଶ୍ରୀମନ୍ଦିରର ନାଟମଣ୍ଡପ ଉତ୍ତରପଟ ପ୍ରବେଶ ପଥରେ ଥିବା ସାତଗୋଟି ପାହାଚ । ଏଠାରେ ଠାକୁରଙ୍କ ବିଭିନ୍ନ ନୀତି ବଢ଼ିବା ସହିତ ଗୁଣ୍ଡିଚା ଯାତ୍ରା ସମୟରେ ଠାକୁରମାନଙ୍କୁ ଟାହିଆ ଓ ଚୂଳ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୬) ।

**ସାତପୁରୀ**-ଦେ.ବି.- ଶ୍ରୀଜୀଉଙ୍କୁ ଭୋଗଲାଗି ହେଉଥିବା ଏକ ପ୍ରକାର ପିଷ୍ଟକ । ଭାଦ୍ରବ ଅମାବାସ୍ୟା ବା ସାତପୁରୀ ଅମାବାସ୍ୟା ଦିନ ହେଉଥିବା ବିପୁଳ ପରିମାଣରେ ପୁର କାକରା । ନଡ଼ିଆପୁର ଭୋଗ । ସାତ ପ୍ରସ୍ତ ପୁର ଦିଆଯାଉଥିବା ପିଠାକୁ ସାତପୁରୀ ପିଠା କୁହାଯାଏ । ମାତ୍ର ଏବେ ଏଭଳି ପିଠାର ପ୍ରଚଳନ ନାହିଁ, କିନ୍ତୁ ସାତପୁରୀ ରୋଷ ଅଛି । ଡାଲାରେ କିଆପତ୍ର ଦିଆଯାଇ ତା' ଉପରେ କାକରାମାନ ସଜାଯାଇ ପୁର ଓ ପୁର ଉପରେ ଖଣ୍ଡ ଦିଆଯାଇ, ମୂର୍ତ୍ତିମୂଳ କରାଯାଏ । ଏହାପରେ ପଢ଼ିଆରୀ ଜୀରା ଗୁଣ୍ଡରେ ଜଗନ୍ନାଥଙ୍କ ବାଡ଼ରେ ଶଙ୍ଖ ଚିହ୍ନ, ବଳଭଦ୍ରଙ୍କ ବାଡ଼ରେ ହଳ ମୂଷଳ, ସୁଭଦ୍ରାଙ୍କ ବାଡ଼ରେ ପଦ୍ମ ଚିହ୍ନ ଦିଅନ୍ତି ।
(ଶ୍ରୀ.ଚେ.ଦୀ.ବ୍ୟା- ପୃ. ୨୬୬) ।

**ସାତପୁରୀଅମାବାସ୍ୟା**-ଦେ.ବି.- ଭାଦ୍ର ଅମାବାସ୍ୟା । ଏହି ଅମାବାସ୍ୟାର ଅନ୍ୟନାମ କୌଶୀ ଅମାବାସ୍ୟା । ଶ୍ରୀମନ୍ଦିରରେ ଏହି ଦିନ ମହାପ୍ରଭୁଙ୍କୁ ସାତପ୍ରକାରର ପୂର ବିଶିଷ୍ଟ ମତାନ୍ତରେ ସାତ ପ୍ରକାର ପିଷ୍ଟକ ଭୋଗ କରାଯାଏ । ଏହି ଦିନ ମଧ୍ୟ ପିତୃଲୋକଙ୍କୁ ପିଣ୍ଡ ଦେବାର ବିଧି ଅଛି । ଏ ଦିନ ସ୍ତ୍ରୀମାନେ ସ୍ୱାମୀଙ୍କର ପୂଜା କଲେ ପୁତ୍ରବତୀ ହୁଅନ୍ତି ଓ ସାତଜନ୍ମ ପର୍ଯ୍ୟନ୍ତ ବିଧବା ହୁଅନ୍ତି ନାହିଁ । ଏ ଦିନ ଶ୍ରୀମନ୍ଦିରରେ ଅବକାଶ ବଢ଼ିବା ଉତ୍ତାରେ ତିନି ବାଡ଼ରେ ବେଶହୋଇ ଛଅମୂର୍ତ୍ତି ତଡ଼ାଉ ଲାଗି ହୁଏ । ସାତପୁରି ଟାଟ ରୋଷଘରୁ ଆସେ । ମୁଦିରସ୍ତ ପ୍ରସାଦ ଲାଗି କରିବା ପରେ ଷୋଡ଼ଶ ଉପଚାରରେ ମଣୋହି କରାନ୍ତି । ଆଳତି ବଢ଼ିବା ପରେ ତିନି ବାଡ଼ରେ ପଣ୍ଡା ପତି ମୁଦିରସ୍ତ ବନ୍ଦାପନା କରନ୍ତି । ପାଣିପଡ଼ିଲା ପରେ ଅମାବାସ୍ୟା ନାରାୟଣ ମୂର୍ତ୍ତି ଆଜ୍ଞାମାଳ ପାଇ ସାଗର ବିଜେ କରନ୍ତି । ସନ୍ଧ୍ୟାଧୂପ ପରେ ଆଜ୍ଞାମାଳ ନେଇ ମଦନମୋହନ ନାଟପା ମନ୍ଦିର ଖଟ ଉପରେ ବିଜେ କରନ୍ତି ଓ କାଳୀକା ଦେବୀ ସାହି ଲୋକେ ବସ୍ତ୍ରହରଣ ପ୍ରସ୍ତାବ କରନ୍ତି ।
(ପୂ.ଓ.ଭା. - ପୃ. ୮୩୭୫, ଶ୍ରୀ.ସ୍ୱ. - ୨ୟ - ପୃ. ୯୩) ।

**ସାତବତୀ**-ଦେ.ବି.- ଶ୍ରୀମନ୍ଦିରରେ ସନ୍ଧ୍ୟା ଆଳତିରେ ସାତବତୀ ଆଳତି ଦାନୀରେ ଆଳତି କରାଯିବା ବେଳେ ବ୍ୟବହୃତ ଆଳତି ବଳିତା ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୫) ।

**ସାତ ଲହଡ଼ିମଠ**-ଦେ.ବି.- ସମୁଦ୍ର ତଟରେ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ପ୍ରତିଷ୍ଠିତ ଆଶ୍ରମ ବା ମଠ ।
(ଶ୍ରୀ.ଜି. - ପୃ. ୨୮୭) ।

**ସାଥୁଆ**-ଦେ.ବି.- ଦେଶର ବିଭିନ୍ନ ପ୍ରାନ୍ତରର ଲୋକଙ୍କୁ ଜଗନ୍ନାଥ ଧାମକୁ ତୀର୍ଥ କରିବା ପାଇଁ ପ୍ରବର୍ତ୍ତାଇବା ବ୍ୟକ୍ତିବିଶେଷ । ଯାତ୍ରୀ ବୃତ୍ତିରେ ପଣ୍ଡାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ବ୍ୟକ୍ତି ।
(ପୁ.ବୋ. - ପୃ. ୩୨୨) ।

**ସାଧାବେଶ**-ଦେ.ବି.- ଶ୍ରୀମନ୍ଦିରରେ ଚୈତ୍ର କୃଷ୍ଣ ପ୍ରତିପଦଠାରୁ ଆଶ୍ୱିନ ଶୁକ୍ଳପକ୍ଷ ନବମୀ ପର୍ଯ୍ୟନ୍ତ ଓ ମାର୍ଗଶିର କୃଷ୍ଣ ପ୍ରତିପଦଠାରୁ ଓଢ଼ଣ ଷଷ୍ଠୀ ଯାଏ ସକାଳ ଓଳି ଠାକୁର ସାଦାବେଶ ଲାଗି ହୁଅନ୍ତି । ଏହି ବେଶରେ ତିନିଠାକୁରଙ୍କୁ ଝୋବାକଣ୍ଠି, ହୀରାଚିତା, ରାହୁରେଖା ଲାଗି

ହୁଏ । ମାତ୍ର ସ୍ନାନପୂର୍ଣ୍ଣିମାଠାରୁ ରେଖାପଞ୍ଚମୀ ପର୍ଯ୍ୟନ୍ତ ରାହୁରେଖା ଲାଗି ହୁଏ ନାହିଁ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୫) ।

**ସାନଛତା**-*ଦେ.ବି.*- ପୁରୀରେ ଶ୍ରୀଜଗନ୍ନାଥଙ୍କ ସିଂହଦ୍ୱାର ନିକଟରେ ଅବସ୍ଥାନ କରୁଥିବା ଏକ ଦଳ ବାବାଜୀଙ୍କ ଆଖଡ଼ା । ଏମାନେ ପୂର୍ବେ ବଡ଼ଦାଣ୍ଡରେ ଛତା ପୋତି ତହିଁ ତଳେ ରହୁଥିଲେ କିନ୍ତୁ ସରକାର ସେମାନଙ୍କୁ ଦାଣ୍ଡରୁ ଉଠାଇ ଦେବାରୁ ଏମାନେ ସିଂହଦ୍ୱାର ନିକଟରେ ମଠ କରି ରହିଛନ୍ତି । ଏହିପରି ଏମାନଙ୍କର ଆଉ ଏକ ଆଖଡ଼ା ଅଛି, ଏହାକୁ ବଡ଼ଛତା ବୋଲାଯାଏ ।
(ପୂ.ଓ.ଭା. - ପୃ. ୮୩୯୨) ।

**ସ୍ନାନଯାତ୍ରା**-*ସଂ.ବି.*- ଶ୍ରୀଜଗନ୍ନାଥଙ୍କ ଦ୍ୱାଦଶଯାତ୍ରା ମଧ୍ୟରୁ ସ୍ନାନଯାତ୍ରା ଅନ୍ୟତମ । ଏହା ଜ୍ୟେଷ୍ଠମାସ ପୂର୍ଣ୍ଣିମା ଦିନ ଅନୁଷ୍ଠିତ ହୋଇଥାଏ । ନୀଳାଦ୍ରି ମହୋଦୟ ଗ୍ରନ୍ଥ ଅନୁସାରେ ଏହି ଦିବସ ହେଉଛି ଶ୍ରୀଜଗନ୍ନାଥଙ୍କର ଆବିର୍ଭାବ ବା ଜନ୍ମ ବା ପ୍ରକଟ ଦିବସ । ଏହି ଦିନ ଠାକୁରମାନଙ୍କର ସେନାପଟା ଲାଗି ହେଲାପରେ ମଙ୍ଗଳାରୋପଣ କର୍ମ ସମାପ୍ତି ପରେ ସ୍ନାନମଣ୍ଡପକୁ ଧାଡ଼ି ପହଣ୍ଡିରେ ବିଜେ କରାଯାଇଥାଏ । ଜଗମୋହନର ଭିତରେ ଥିବା ସପ୍ତପାହାଚରେ ଟାହିଆ ଲାଗି କରାଯାଏ ଓ ସପ୍ତ ଜ୍ୟୋତି ବନ୍ଦାପନା କରାଯାଏ । ପୂର୍ବରୁ ଶୀତଳା ମନ୍ଦିର ସମ୍ମୁଖସ୍ଥ ସୁନାକୂପରୁ ଶହେଆଠ କୁମ୍ଭ ଜଳ ଅଣାଯାଇ ଅଧିବାସ ଘରେ ରଖାଯାଇଥାଏ । ପରବର୍ତ୍ତୀକାଳରେ ଶହେଆଠ କୁମ୍ଭ ମଧ୍ୟରୁ ବଳଭଦ୍ରଙ୍କୁ ତେତିଶି, ଜଗନ୍ନାଥଙ୍କୁ ପଇଁତିରିଶି, ସୁଭଦ୍ରାଙ୍କୁ ବାଇଶି ଓ ସୁଦର୍ଶନଙ୍କୁ ଅଠର କୁମ୍ଭ ଜଳ ଦ୍ୱାରା ପୁରୁଷ ସୂକ୍ତ ମନ୍ତ୍ରରେ ସ୍ନାନ କରାଯାଏ । ଏହା ପରେ ଠାକୁରଙ୍କୁ ହାତୀବେଶ ବା ଗଣପତି ବେଶ କରାଯାଇ ଦେବତାମାନଙ୍କୁ ଅଣସରପିଣ୍ଡିଙ୍କୁ ନିଆଯାଇଥାଏ ।
(ଶ୍ରୀ.ସ୍ୱ. ୧ମ.- ପୃ. ୫୭) ।

**ସାବତ ନିଯୋଗ ସେବକ**-*ଦେ.ବି.*- ପଞ୍ଚତୀର୍ଥ ସେବକ । ତୀର୍ଥରକ୍ଷା ପଡ଼ିଆରୀ । ପତ୍ରୀ ନିଯୋଗ ଖଟଣି । ଅନଙ୍ଗ ଭୀମଙ୍କ ସମୟରେ ମାର୍କଣ୍ଡ ମହୋଦଧି, ଶ୍ୱେତଗଙ୍ଗା, ଇନ୍ଦ୍ରଦ୍ୟୁମ୍ନ ତୀର୍ଥରେ ଯାତ୍ରୀଙ୍କୁ ସ୍ନାନ ଦାନ କରାଉଥିବା ସେବକ । ସ୍ୱତ୍ୱଲିପି ଅନୁସାରେ ପଞ୍ଚତୀର୍ଥରେ ସଂକଳ୍ପ ଶ୍ରାଦ୍ଧ, ଦାନାଦି କରାଇବା, ପ୍ରତି ଅମାବାସ୍ୟାରେ ଅମାବାସ୍ୟା ନାରାୟଣ ସାଗର ବିଜେ ହେଲେ ପାଛୋଟି ନେଇ ଏକ ହାଣ୍ଡି ପଣା ଭୋଗ କରାଇବେ । ସ୍ନାନପୂର୍ଣ୍ଣିମା, ଆଡ଼ପଘରେ, ରଥ ଉପରେ, କୁମାର ପୂର୍ଣ୍ଣିମାରେ, ଧନୁମାସରେ, ନୃସିଂହଜନ୍ମ, କାଳୀୟଦଳନ ଏକାଦଶୀରେ ଠାକୁରଙ୍କୁ ଭୋଗ ଲାଗି କରିବା ଆଦି ଏହାଙ୍କ କାର୍ଯ୍ୟ । ଏମାନେ ଉଡ଼ା, ପଡ଼ା, ବୁଡ଼ା, ଗଡ଼ା ଆଦି ନିଅନ୍ତି । ଉଡ଼ା- ପବନରେ ସମୁଦ୍ରକୂଳରୁ ବାଲି ଉଡ଼ିଗଲେ ସେଥିରୁ ମିଳୁଥିବା ସୁନା, ରୂପା, ଟଙ୍କା ପଇସା ଆଦି । ଗଡ଼ା- ସମୁଦ୍ର ଲହଡ଼ି ଛାଡ଼ିବା ଅବସ୍ଥାରେ ଗଡ଼ିଗଡ଼ି ଯାଉଥିବା ମୂଲ୍ୟବାନ ପଦାର୍ଥ । ପଡ଼ା- ବାଲିରେ ପଡ଼ିଥିବା ମୂଲ୍ୟବାନ ପଡ଼ିଥିବା ପଦାର୍ଥ, ବୁଡ଼ା- ବାଲିରେ ପୋତି ହୋଇଥିବା ବା ପାଣିରେ ବୁଡ଼ି ରହିଥିବା ଧନରତ୍ନ, ସାବତ, ପଣ୍ଡା ପତ୍ରୀ, ପଶୁପାଳକ । ସାବତ ଗୋଷ୍ଠୀର ଗୋଟିଏ ବଂଶ ବର୍ତ୍ତମାନ ସେବା କରନ୍ତି । ସେମାନଙ୍କୁ ବାଦ୍ ଦେଲେ ଅନ୍ୟ ତିନିଗୋଷ୍ଠୀର ସେବକ ଶାଢ଼ୀ ବାନ୍ଧାଇ ସେବା କରନ୍ତି । ଏମାନେ ତୀର୍ଥମାନଙ୍କରେ ରହି ଯାତ୍ରୀଙ୍କୁ ସଂକଳ୍ପ କରାଉଥିଲେ । ସାବତ ନିଯୋଗ ତୀର୍ଥର ରକ୍ଷଣାବେକ୍ଷଣ କରୁଥିଲେ । ତୀର୍ଥ ବାକ୍ୟ କର୍ତ୍ତା ଯାତ୍ରୀଙ୍କୁ ସଂକଳ୍ପ କରାଇଥିଲେ ।
(ଶ୍ରୀ.ସ୍ୱ. - ପୃ. ୬୮) ।

**ସାରଥୀ**-*ସଂ.ବି.*- ରଥ ଚାଳକ । ଶ୍ରୀଜଗନ୍ନାଥଙ୍କ ନନ୍ଦିଘୋଷ ରଥର ସାରଥୀ ଦାରୁକ । ଶ୍ରୀବଳଭଦ୍ରଙ୍କ ତାଳଧ୍ୱଜ ରଥର ସାରଥୀ ମାତଳି ଓ ଦେବୀ ସୁଭଦ୍ରାଙ୍କ ଦର୍ପଦଳନ ରଥର ସାରଥୀ ଅର୍ଜ୍ଜୁନ ।
(ପୂ.ଓ.ଭା. - ପୃ. ୮୪୩୩, ଓ.ସାଂ.ଶ. - ପୃ. ୩୫୭) ।

**ସାରେଖାୟା ପିଠାସୁଆର**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ସଂପ୍ରତି ଏଭଳି ସଂଜ୍ଞାଧାରୀ ସେବକ ନାହାନ୍ତି ।
(ପୁ.ବୋ. - ପୃ. ୩୨୩) ।

**ସାଷ୍ଟାଙ୍ଗ**-*ସଂ.ବି.*- ଜାନୁ, ଚରଣ, ହସ୍ତ, ବକ୍ଷ, ମସ୍ତକ, ଚକ୍ଷୁ, ଦୃଷ୍ଟି ଓ ବାକ୍ୟ ଏହି ଆଠ ଅଙ୍ଗ ସହ ଭୂମିରେ ଲମ୍ବ ହୋଇପଡ଼ି କରାଯିବା ପ୍ରଣାମ ।
(ଓ.ସାଂ.ଶ. - ପୃ. ୩୫୭, କୃ.ବି.ଓ.ଶ.ସ. - ପୃ. ୧୦୧୦) ।

**ସାହାଣମେଲା**-*ସଂ.ବି.*- ଯେଉଁ ସମୟରେ ସାଧାରଣ ଭକ୍ତ ବିଗ୍ରହମାନଙ୍କୁ ଦର୍ଶନ କରିପାରନ୍ତି । ଜଗନ୍ନାଥଙ୍କ ଦେଉଳରେ ଜଗନ୍ନାଥଙ୍କ ସାନ୍ନିଧ୍ୟକୁ ଯାଇ ସର୍ବସାଧାରଣ ଯାତ୍ରୀ ଦର୍ଶନ କରିପାରିବା ପାଇଁ ଏକ ନିର୍ଦ୍ଦିଷ୍ଟ ସମୟ ଅଛି । ସେହି ସମୟରେ ଦ୍ୱାର ଉନ୍ମୁକ୍ତ ହୁଏ । ସର୍ବସାଧାରଣଙ୍କ ଯିବା ଓ ଦର୍ଶନ ନିମନ୍ତେ ଏହାକୁ ସାହାଣମେଲା କୁହାଯାଏ । ଏହା ଠାକୁରଙ୍କ ନୀତି ମଧ୍ୟରେ ଗଣ୍ୟ ନୁହେଁ । କେବଳ ସର୍ବସାଧାରଣଙ୍କୁ ଠାକୁରଙ୍କ ନିକଟକୁ ଯିବା ସକାଶେ ସୁବିଧା ଦେବା ପାଇଁ ମନ୍ଦିରର ଓ ସେବକମାନଙ୍କର ଆୟ ପାଇଁ ଏହା କରାଯାଇଥାଏ । ସାଧାରଣତଃ ଦୈନିକ ୨ଥର ସାହାଣମେଲା ହୁଏ । ସକାଳେ ଥରେ ଓ ସନ୍ଧ୍ୟାଧୂପ ପରେ । ଦଶହରା ପରେ ଏକାଦଶୀଠାରୁ କାର୍ତ୍ତିକ ପୂର୍ଣ୍ଣିମା ପର୍ଯ୍ୟନ୍ତ ବାଲଧୂପ ଥିବାରୁ ସକାଳେ ସାହାଣମେଲା ନ ହୋଇ ସନ୍ଧ୍ୟାଧୂପ ପରେ ଥରକ ପାଇଁ ହୋଇଥାଏ । ଧନୁସଂକ୍ରାନ୍ତିଠାରୁ ମକରସଂକ୍ରାନ୍ତି ପର୍ଯ୍ୟନ୍ତ ସକାଳ ଧୂପ ପରେ ସାହାଣ ମେଲା ହୁଏ ।
(କୃ.ବି.ଓ.ଶ.ସ. - ପୃ. ୧୦୧୧, ପୂ.ଓ.ଭା. - - ୮୪୫୭, ଶ୍ରୀ.ସ୍ୱ. ୨ୟ - ପୃ. ୧୫) ।

**ସିଠ ନାଏକ**-*ଦେ.ବି.*- ସୂପକାର ଗୋଷ୍ଠୀର ମୁରବୀ ସ୍ଥାନୀୟ ନାୟକ ବିଶେଷ ।
(ପୁ.ବୋ. - ପୃ. ୩୨୩) ।

**ସିପୁଟି**-*ଦେ.ବି.*- ଠାକୁରଙ୍କର ବସ୍ତ୍ର ଓ ପୋଷାକ ଆଦି ସିଲେଇ କରୁଥିବା ଦରଜୀ ସେବକ ବିଶେଷ । ଏ ସେବକ ବିଜେକାଳେ ଛତାଟେକନ୍ତି । ମହାରଣା ରଖି କାର୍ଯ୍ୟ କରନ୍ତି ।
(ଶ୍ରୀ.ସ୍ୱ.- ପୃ. ୭୪) ।

**ସିଂହଦ୍ୱାର**-*ସଂ.ବି.*- ପ୍ଲଟ ନଂ. ୧୬୦ । ରାଜପ୍ରାସାଦ କିମ୍ବା ଦେବାଳୟକୁ ପ୍ରବେଶ କରିବା ପାଇଁ ପ୍ରଧାନ ଦ୍ୱାର । ଏହାର ଦୁଇ ପାର୍ଶ୍ୱରେ ଦୁଇଟି ସିଂହମୂର୍ତ୍ତି ବିଦ୍ୟମାନ । ଶ୍ରୀମନ୍ଦିର ମୁଖ୍ୟ ପ୍ରବେଶ ପଥ ବା ପୂର୍ବଦ୍ୱାର ବୈକୁଣ୍ଠ ପୁରର ପଥ । ଭକ୍ତମାନଙ୍କର ଅନ୍ୟ ପ୍ରବେଶ ଦ୍ୱାର ଅଛି, ମାତ୍ର ସିଂହଦ୍ୱାରକୁ ବୀରତ୍ୱ ଦ୍ୱାର ବା ଦର୍ପ ଦ୍ୱାର ବୋଲି କୁହାଯାଏ । ପୂର୍ବଦ୍ୱାର - ଯୋଗ ସାଧନା ଦ୍ୱାରା ସମର୍ଥ ସାଧକ ହେଲେ ସିଂହଦ୍ୱାର ଖୋଲିଯାଏ । ସହସ୍ରାରରେ ପ୍ରବେଶ କରିବାକୁ ହେଲେ ବ୍ରହ୍ମରନ୍ଧ୍ର (ସିଂହଦ୍ୱାର) ଉଦ୍‌ଘାଟନ କରିବା ଦରକାର ପଡ଼େ । ଶରୀରରେ ନଅଟି ଛିଦ୍ର ବା ଦ୍ୱାର ଅଛି । ଦଶଦ୍ୱାର ବା ବ୍ରହ୍ମ ରନ୍ଧ୍ର ହେଉଛି ସିଂହଦ୍ୱାର ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୮, ପୂ.ଓ.ଭା. - ପୃ. ୮୪୭୨, ଓ.ସାଂ.ଶ. - ପୃ ୩୫୯, କୃ.ବି.ଓ.ଶ.ସ.- ୯୬୭, ପ୍ର.ଅ. ୩ୟ - ୨୭୩୪) ।

**ସିଂହଦ୍ୱାର ଗୁମୁଟ**-*ଦେ.ବି.*- ଶ୍ରୀମନ୍ଦିରର ମୁଖ୍ୟ ଦ୍ୱାରରେ ଥିବା ମନ୍ଦିରାକୃତି ବାଟଘର ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୮) ।

**ସିଂହଦ୍ୱାର ଚକଡ଼ା**-*ଦେ.ବି.*- ସିଂହଦ୍ୱାରଠାରୁ ଅରୁଣସ୍ତମ୍ଭ ପର୍ଯ୍ୟନ୍ତ ପ୍ରସ୍ତରାଚ୍ଛାଦିତ ସମତଳ ଅଞ୍ଚଳ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୮) ।

**ସିଂହଦ୍ୱାର ପଡ଼ିହାରୀ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ବିଶେଷ । ଶ୍ରୀମନ୍ଦିରର ସିଂହଦ୍ୱାର କିମ୍ବା ଗୁଣ୍ଡିଚା ଘର ଦ୍ୱାର ପଡ଼ିହାରୀ ବିଶେଷ ।
(ଶ୍ରୀ.ସ୍ୱ. ୧ମ- ପୃ. ୧୪୮) ।

**ସିଂହାର**-*ଦେ.ବି.*- ଶ୍ରୀଠାକୁରଙ୍କର ସାଜସଜ୍ଜା ବା ଶୃଙ୍ଗାର ବେଶ ।
(ଶ୍ରୀ.ସ୍ୱ. ୧ମ - ପୃ. ୬୬) ।

**ସିଂହାର ହାର**-*ଦେ.ବି.*- ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଖିରିପିଠା ଆଦିର ଏକ ପ୍ରକାର ଶୁଖିଲି ଭୋଗ ବିଶେଷ ।
(ପୂ.ଓ.ଭା. - ପୃ. ୮୪୭୬) ।

**ସିହା କରିବା**-*ଦେ.ବି.*- ହିସାବ ରଖିବା । ଜମା ଖର୍ଚ୍ଚର ହିସାବ ଲେଖିବା ।
(ଶ୍ରୀ.ସ୍ୱ. - ପୃ. ୧୪୨) ।

**ସିଂହାରୀ**-*ଦେ.ବି.*- ଶ୍ରୀଜୀଉଙ୍କର ବେଶକାରୀ ସେବକ । ସବୁ ସମୟରେ ଠାକୁରଙ୍କୁ ବିଭିନ୍ନ ନୀତିରେ ବିଭିନ୍ନ ପ୍ରକାର ବେଶ କରାଉଥିବା ସେବକ ବିଶେଷ ।
(ଶ୍ରୀ.ସ୍ୱ. ୧ମ - ପୃ. ୬୬) ।

**ସୀତା ବିବାହ**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ନୀତି ଚୈତ୍ର ଶୁକ୍ଳ ଏକାଦଶୀ ଦିନ ଅନୁଷ୍ଠିତ ହୁଏ । ସନ୍ଧ୍ୟା ଆଳତି ପରେ ଓ ଦକ୍ଷିଣୀ ଘର ଭୋଗ ସରିବା ପରେ ମହାଜନେ ରାମ ଲକ୍ଷ୍ମଣ ସୀତାଙ୍କୁ ଭିତର ସିଂହାସନକୁ ବିଜେ କରାନ୍ତି । ପଣ୍ଡା ଆଣି ଆଜ୍ଞାମାଳ ଦିଅନ୍ତି । ମହାଜନେ ରାମ ଲକ୍ଷ୍ମଣ ସୀତାଙ୍କୁ ବଟମୂଳେ ପାଲିଙ୍କିରେ ବିଜେ କରାଇଥାନ୍ତି । ବିମାନବଡୁ ଆସି ଘଣ୍ଟ, ଛତା, ଚାମର କାହାଳି ସହ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ ହୁଅନ୍ତି । ଏଠାରେ ହରଚଣ୍ଡୀ ସାହି ଲୋକେ ଯାନିଯାତ୍ରା (ପରଶୁରାମ) ବାହାର କରି ଦିଅଁ ବାହୁଡ଼ା ବିଜେ ହୋଇ ଦକ୍ଷିଣି ଘରେ ବିଜେ ହୁଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ.୧୧୪) ।

**ସୁଆର**-*ଦେ.ବି.*- ଏକ ଜାତୀୟ ଅଶ୍ରୋତ୍ରିୟ ପାଚକ ବ୍ରାହ୍ମଣ । ଶ୍ରୀମନ୍ଦିରରେ ଏମାନେ ଭୋଗ ପ୍ରସ୍ତୁତ କରନ୍ତି । ପଣ୍ଡା, ପୂଜାରୀ, ସୁଆର ବା ଦେଉଳିଆ ବ୍ରାହ୍ମଣ ଏଇ ଶ୍ରେଣୀର ଅନ୍ତର୍ଗତ । କର୍ମାଙ୍ଗୀରୁ ରନ୍ଧାସୁଆର ନିଯୋଗ, ଅମୃତ ପରସା ନିଯୋଗ, ତୋଳାବଡୁ, ବଡୁସୁଆର, ଘିଅପରଷା ଆଦି ସୁଆର ଗୋଷ୍ଠୀର ସେବକଙ୍କ ସମ୍ପର୍କରେ ତଥ୍ୟ ମିଳେ । ସ୍ୱତ୍ୱଲିପିରୁ ଜଣାଯାଏ ଯେ, ବଡୁ ସୁଆର, ପନ୍ତିବଡୁ, ମହାସୁଆର ଜଗିଆ ମହାସୁଆର ବା ରୋଷଅମିନ, ତୋଳାବଡୁ, ଅମାଲୁ ତୋଳି ଓ ପୁର ଖରଡ଼ା, ରୋଷ ପାଇକ ବାହାର ଦେଉଳି ସୁଆର ତୋଳାବତୀ ଓ ହାଣ୍ଡି ଯୋଗାଣିଆ, ବିରିବୁହା ଆଦି ସୁଆର ଗୋଷ୍ଠୀର ସେବକ ।
(ଶ୍ରୀ.ସ୍ୱ.- ପୃ. , ପୂ.ଓ.ଭା. ୭ମ - ପୃ. ୮୫୩୯) ।

**ସୁଆର ମହାସୁଆର ନିଯୋଗ**-*ଦେ.ବି.*- ଶ୍ରୀମନ୍ଦିର ସେବାରେ ବଡୁ ସୁଆର, ମହାସୁଆର, ପନ୍ତିବଡୁ, ତୋଳାବଡୁ ଇତ୍ୟାଦି ସୂପକାର ଏହି ଶ୍ରେଣୀର ସେବକ । କୋଠଭୋଗରେ ରାନ୍ଧିବା ଓ ବୈକୁଣ୍ଠରେ ଜଳତୁଳସୀ ଯୋଗାଇ, ବୈକୁଣ୍ଠ ନାରାୟଣଙ୍କଠାରେ ପୂଜା କରିବା ଏହିମାନଙ୍କର କାର୍ଯ୍ୟ । ପୂର୍ବେ ନାଏକମାନେ କୋଠଭୋଗ ସୁଆର ନିଯୁକ୍ତି, ସୁଆର ନିଯୋଗ ପରିଚାଳନା, ବୈକୁଣ୍ଠ ଆୟ ଆମଦାନି ବୁଝିବା ଓ ଦାରୁଘର ସମ୍ଭାଳିବା ଇତ୍ୟାଦି କାର୍ଯ୍ୟ କରୁଥିଲେ । ସିଠ ନାଏକଙ୍କ ସହ ମିଶି କାମ କରୁଥିଲେ । ମାତ୍ର ବର୍ତ୍ତମାନ ଏ' କାମ ସବୁ ନିଯୋଗ ନିୟମାବଳୀ ଅନୁଯାୟୀ କମିଟି ଦ୍ୱାରା ହେଉଛି ।
ବର୍ତ୍ତମାନ ନାୟକ ପ୍ରଥା କାର୍ଯ୍ୟକାରୀ ନ ଥିବାରୁ ଏମାନଙ୍କ କାମ ଚାଲୁ ହେଉନାହିଁ ।
(ଶ୍ରୀ.ସ୍ୱ. ୧ମ - ପୃ. ୮୪-୮୮) ।

**ସୁଆର ବଡୁ ସେବକ**-*ଦେ.ବି.*- ଏମାନେ ଶ୍ରୀଜୀଉଙ୍କ ସାମନାରେ ଅବକାଶ ନୀତିରେ ପୋଖରୀଆ ମଧ୍ୟ ଭାଗରେ ତିନିଗୋଟି କାଠ ପିଢ଼ା ପକାନ୍ତି । ଏକୋଇଶି ବତୀ ଆଳତି ନିମନ୍ତେ ଘିଅବତୀ ପ୍ରସ୍ତୁତ କରନ୍ତି । ମଙ୍ଗଳ ଆଳତି ପାଇଁ ତିନିଗୋଟି ଥାଳିରେ ପିଠଉ ଆଳତି ସଜାଡ଼ି ରଖନ୍ତି । ଅବକାଶ ନୀତିରେ ଜଳପହଁରା କରନ୍ତି । ଗୋପାଳ ବଲ୍ଲଭ ଭୋଗ ପାଇଁ ଭିତର ପୋଖରୀଆଠାରୁ ଭିତର କାଠ ଅର୍ଗଳି ପର୍ଯ୍ୟନ୍ତ ସଫା କରନ୍ତି । ମହାପ୍ରଭୁଙ୍କର ଭୋଗଥାଳି ଧୁଅନ୍ତି । ଅମଣିହା, ପାହାଡ଼ା ପକାଇବା, ପାଣି ପକାଇବା, କଳାହାଟ ଦ୍ୱାର ଧୋଇବା - ଏହି ସେବକଙ୍କର କାର୍ଯ୍ୟ । ବଡ଼ସିଂହାର ଧୂପ ପରେ ପୋଖରୀଆ ପାଣି ପକାଯାଇ ସଫା ହୁଏ । ସକାଳ ଧୂପରେ ଭିତର ପୋଖରୀଆରେ ଭୋଗ ହାଣ୍ଡି ଭାଙ୍ଗିଥିଲେ ସଫା କରନ୍ତି । ସୁଆରବଡୁ ତିନି ଶ୍ରେଣୀର- ଯଥା- ସୁଆରବଡୁ, ଭୋଗ ସୁଆର ବଡୁ ଓ ବେହେରା ସୁଆରବଡୁ । ଭୋଗ ସୁଆରବଡୁ - କୋଠଭୋଗ ମାଲସାଇତି, ସେବକଙ୍କ ଖେଇ ଓ ପସରାମାଲ ବାଣ୍ଟି

ନିଅନ୍ତି । ବେହେରା ସୁଆର ବଡୁ ରାଜନୀତିମାନଙ୍କରେ ଦହି ପଟି ଲାଗାଏ । ଶାଢ଼ୀ ବନ୍ଧା ବ୍ରାହ୍ମଣ ସେବକ ।
(ଶ୍ରୀ.ସ୍ୱ. ୨ୟ - ପୃ. ୪୮) ।

**ସୁଆର ପାଳି**-*ଦେ.ବି.*- ରାଜା ଓ ଦେବତାଙ୍କ ପାଇଁ ଅନ୍ନାଦି ପାକ କରିବା ନିମନ୍ତେ ସେବକର ନିର୍ଦ୍ଦିଷ୍ଟ ଦିନ ।
(ପୂ.ଓ.ଭା. - ପୃ. ୮୫୩୯) ।

**ସୁଆର ପିଠା**-*ଦେ.ବି.*- ପୁରୀ ଶ୍ରୀମନ୍ଦିରରେ ପ୍ରତିଦିନ ସଞ୍ଜ ଧୂପର ଭୋଗରେ ନାନା ପ୍ରକାର ପିଠା ମଧରେ ବଡ଼ ପିଠା ।
(ପୂ.ଓ.ଭା. - ପୃ. ୮୫୩୯) ।

**ସୁତାଫୁଟା**-*ଦେ.ବି.*- ଅଠେଇଶ ହାତ ଲମ୍ବ ଓ ମୁଠୁଣିଏ ଓସାର ବିଶିଷ୍ଟ ବସ୍ତ୍ର । ଏହା ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଲାଗି ହୁଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୪୭) ।

**ସୁଦ ସୁଆର**-*ଦେ.ବି.*- ଶ୍ରୀମନ୍ଦିରରେ ବଲ୍ଲଭ ଯୋଗାଣିଆ ବଲ୍ଲଭ ଆଣିବା ପୂର୍ବରୁ ଏହି ସେବକ କଳାହାଟ ଦ୍ୱାରକୁ ଜୟବିଜୟ ଦ୍ୱାର ଯାଏ ଝାଡୁ କରି, ଅଣସର ପିଣ୍ଡି ସଫା କରି ବଲ୍ଲଭ ବାଡ଼ନ୍ତି, ଫଳ କାଟନ୍ତି, ବଲ୍ଲଭ ପରେ ସରକାରୀ ଓ ଖେଇକାରଙ୍କ ବଲ୍ଲଭ ସାଇତି ବିମଳାଙ୍କ ପାଖରେ ସମର୍ପଣ ପରେ ଖେଇକାରଙ୍କୁ ବାଣ୍ଟି କୋଠ ଜିନିଷ ପସରାରେ ଦିଅନ୍ତି । ଭୋଗ ବେଳେ ଅଣସର ପିଣ୍ଡିରୁ ଜୟବିଜୟ ଦ୍ୱାର ମଧରେ ସଙ୍ଖୁଡ଼ି ପଡ଼ିଲେ ସଫା କରନ୍ତି । ଭୋଗ ମାରା ହେଲେ ବାହାର କରନ୍ତି । ମହାସ୍ନାନରେ ପୂଜା କରନ୍ତି । ଯାନିଯାତ୍ରା ପର୍ବପର୍ବାଣି, ବନ୍ଦାପନା ଓ ବାହାର ବିଜେରେ ଚାଉଳ, ଘିଅ, ବଳିତା ଯୋଗାନ୍ତି । ମଙ୍ଗଳାରୋପଣ ସାମଗ୍ରୀ ଯୋଗାନ୍ତି । ମକର ସଂକ୍ରାନ୍ତି ଦିନ ଅଧିବାସ ହୋଇଥିବା ଚାଉଳ ଧୋଇ ତିନୋଟି ରୂପା ଥାଳିରେ ମକର ଚାଉଳ ପ୍ରସ୍ତୁତ କରନ୍ତି । ଚନ୍ଦନ ଯାତ୍ରାରେ ଭିତରେ ପୂଜା କରନ୍ତି । ଯାତ୍ରାରେ ଭିତରେ ପୂଜା କରନ୍ତି । ଦେଉଳରେ ମୁଦିରସ୍ତଙ୍କୁ ଫଗୁ ବଢ଼ାନ୍ତି । ଲକ୍ଷ୍ମୀ ନାରାୟଣ ଭେଟରେ ଦହି ପଟୋଇ ବାଜନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୩) ।

**ସୁଦର୍ଶନ**-*ସଂ.ବି.*- ଉତ୍ତମ ଦର୍ଶନ । ଯେଉଁ ବ୍ୟକ୍ତି, ବସ୍ତୁ କିମ୍ବା ପଦାର୍ଥର ଦର୍ଶନ ମାତ୍ରକେ ହୃଦୟରେ ଭାବାନ୍ତର ସୃଷ୍ଟି ହୁଏ, ଯାହାର ସଂଦର୍ଶନରେ ପ୍ରାଣ ଅତିନ୍ଦ୍ରିୟ ରାଜ୍ୟରେ ବିଚରଣ କରିଥାଏ, ତାହା ହିଁ ସୁଦର୍ଶନ ।
ସୃଷ୍ଟିର ପାଳକ ସର୍ବଶକ୍ତିମାନ ଭଗବାନ ବିଷ୍ଣୁଙ୍କର ଆୟୁଧ ରୂପେ ସୁଦର୍ଶନ ଯୁଗ ଯୁଗ ଧରି ଜନମାନସରେ ଏକ ବିଶେଷ ସ୍ଥାନ ଗ୍ରହଣ କରି ଆସିଅଛି । ବିଷ୍ଣୁ ତାଙ୍କର ଊର୍ଦ୍ଧ୍ୱ ଦକ୍ଷିଣ ଭୁଜରେ ହିଁ ସୁଦର୍ଶନ ଧାରଣ କରିଥିବା କଥା ଅଧିକାଂଶ ଗ୍ରନ୍ଥରେ ଉଲ୍ଲେଖ ରହିଛି । ଶ୍ରୀମନ୍ଦିରରେ ବିଷ୍ଣୁରୂପୀ ଶ୍ରୀଜଗନ୍ନାଥଙ୍କର ବାମପାର୍ଶ୍ୱରେ ସୁଦର୍ଶନ ସ୍ଥାପିତ । ସୁଦର୍ଶନ ଦେବ ସ୍ତମ୍ଭାକୃତ ଓ ଚଉରାଅଶି ଯବ ବିଶିଷ୍ଟ । ସେ ରକ୍ତବର୍ଣ୍ଣର ପଟବସ୍ତ୍ରରେ ଆବୃତ । ପ୍ରଜ୍ୱଳିତ ଅଗ୍ନିଶମ ସେ ଉଜ୍ଜ୍ୱଳ । ସେ ତୀକ୍ଷ୍ଣ ଦନ୍ତ ଓ ବିଦୀର୍ଣ୍ଣଭ୍ରୂ । ତାଙ୍କର କେଶଗୁଚ୍ଛରୁ ଯେପରି କି ବିଦ୍ୟୁତ୍ ନିର୍ଗତ ହୁଏ । ସେ ଅଷ୍ଟବାହୁ । ଧ୍ୟାନରେ ସେ ହିଁ ବିଷ୍ଣୁଙ୍କର କ୍ରିୟାଶକ୍ତି । ତେଣୁ ସେ ସମଗ୍ର ସୃଷ୍ଟିକୁ ସଂହାର କରିପାରନ୍ତି । ଏଥିରେ ସୁଦର୍ଶନ ବିଷ୍ଣୁଙ୍କର ଅନ୍ୟ ରୂପ ବୋଲି କଥିତ । ସର୍ବଦେବତାଙ୍କର ତେଜର ସମନ୍ୱୟରେ ହିଁ ସୁଦର୍ଶନଙ୍କ ସୃଷ୍ଟି ବୋଲି କୁହାଯାଏ । ସୁଦର୍ଶନ ଶିଖାମୟ ସ୍ତମ୍ଭ ସ୍ୱରୂପ । ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚକ୍ରର ନାମ ସୁଦର୍ଶନ । ଶ୍ରୀମନ୍ଦିର ଚୂଡ଼ାରେ ରହିଛି ନୀଳଚକ୍ର । ରତ୍ନବେଦୀ ଉପରେ ଶ୍ରୀଜଗନ୍ନାଥଙ୍କ ବାମପଟେ ବିରାଜିତ ଚକ୍ରରାଜ ସୁଦର୍ଶନ । ବୈଷ୍ଣବମାନଙ୍କର ଏହା ଧର୍ମଦଣ୍ଡ ବୋଲି କୁହାଯାଏ, କିନ୍ତୁ ଏହା ଚକ୍ରାକୃତି ନ ହୋଇ ଦଣ୍ଡାକୃତି ହୋଇଅଛି । କାରଣ ପ୍ରତୀକ ଧର୍ମୀ ଖମ୍ବ ଉପାସନାର ମୂଳ ବା ମୁଖ୍ୟ ହେଉଛନ୍ତି ଶ୍ରୀଜଗନ୍ନାଥ । ମହାଦେବଙ୍କ ଆଦେଶରେ ବିଶ୍ୱକର୍ମା ଦେବତାମାନଙ୍କ ତେଜରୁ ସାର ସଂଗ୍ରହ କରି ଏ ଚକ୍ର ତିଆରି କରିଥିଲେ । ଦୈତ୍ୟବିନାଶାର୍ଥେ ସେ ଏହାକୁ ବିଷ୍ଣୁଙ୍କୁ ପ୍ରଦାନ କରିଥିଲେ । ସୁଦର୍ଶନଙ୍କର ଅରବାରଟି, ଏହା

ଷଟ୍ କୋଣବଳୟତ୍ରୟ ସଂଯୁକ୍ତ । ପୁରୀ ଶ୍ରୀମନ୍ଦିରରେ ଚତୁର୍ଦ୍ଧାମୂର୍ତ୍ତି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ପୂଜିତ । ଚତୁର୍ଭୁଜ ବିଷ୍ଣୁ ଏହାକୁ ଉପର ଡାହାଣ ହସ୍ତରେ ଧାରଣ କରନ୍ତି ଏବଂ ଦୁଷ୍ଟକୁ ସଂହାର କରି ଶିଷ୍ଟକୁ ପାଳନ କରନ୍ତି ।
(ଓ.ସାଂ.ଶ. - ପୃ. ୩୬୦, ପୂ.ଓ.ଭା. - ପୃ. ୮୫୮୦) ।

**ସୁଦର୍ଶନଙ୍କ ବାଡ଼**-*ଦେ.ବି.*- ଯେଉଁ ସେବକମାନେ କେବଳ ସୁଦର୍ଶନଙ୍କ ସେବା ପାଇଁ ଉଦ୍ଦିଷ୍ଟଦଳର ଅନ୍ତର୍ଭୁକ୍ତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୨) ।

**ସୁନାକୂଅ**-*ଦେ.ବି.*- ଶୀତଳାଠାକୁରାଣୀଙ୍କ ସମ୍ମୁଖସ୍ଥ କୂଅ । ଶ୍ରୀମନ୍ଦିର ପରିସର ମଧ୍ୟରେ ସାତ ଗୋଟି କୂଅ ଅଛି । ୧. ୭୫ ନମ୍ବର ପ୍ଲଟରେ ଥିବା ବିମଳାଙ୍କ ମନ୍ଦିର ସମ୍ମୁଖସ୍ଥ କୂଅ । ୨. ୧୪ ନମ୍ବର ପ୍ଲଟରେ ଥିବା କୂଅ ପାଣି ଛତ୍ର ଘରେ ବ୍ୟବହୃତ ହୋଇଥାଏ । ୩. ୧୯୮ ନମ୍ବର ପ୍ଲଟରେ ଥିବା କୂଅ ସରଘର କାର୍ଯ୍ୟରେ ବିଶେଷ ବ୍ୟବହୃତ ହୋଇଥାଏ । ୪. ୨୧୦ ନମ୍ବର ପ୍ଲଟରେ ଥିବା ଷଡ଼ଭୁଜ ଗୌରାଙ୍ଗ ମନ୍ଦିର କୂଅ । ୫. ୨୫୩ ନମ୍ବର ପ୍ଲଟରେ ଥିବା ନିର୍ମାଲ୍ୟ ଖଳା କୂଅ । ୬. ୨୭୩ ନମ୍ବର ପ୍ଲଟରେ ଥିବା କୂଅ । ୭. ୨୮୪ ନମ୍ବର ପ୍ଲଟରେ ଥିବା ସୁନା କୂଅ ମା' ଶୀତଳା ଠାକୁରାଣୀ ମନ୍ଦିର ସମ୍ମୁଖରେ ଅବସ୍ଥିତ । ମନ୍ଦିର ମଧ୍ୟରେ ଥିବା ସର୍ବ ପୁରାତନ କୂଅ ବୋଲି ବିଭିନ୍ନ ପୁରାଣ ଶାସ୍ତ୍ରରେ ବର୍ଣ୍ଣିତ । ଶ୍ରୀଜଗନ୍ନାଥଙ୍କ ପ୍ରତିଷ୍ଠା ପୂର୍ବରୁ ଏହା ଖୋଳାଯାଇଥିଲା । ଏହାର ଜଳରେ ଚତୁର୍ଦ୍ଧାମୂର୍ତ୍ତିଙ୍କର ସ୍ନାନ କାର୍ଯ୍ୟ ସମ୍ପାଦିତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୫୮,୨୭୪ , ଶ୍ରୀ.ଛି. - ପୃ. ୨୩୬) ।

**ସୁନାକେଳୀ କଦମ୍ବ**-*ଦେ.ବି.*- ଶ୍ରୀଠାକୁରଙ୍କର ଏକ ସୁବର୍ଣ୍ଣ ଅଳଙ୍କାର ବିଶେଷ ।
(ଶ୍ରୀ.ଶ. - ପୃ. ୧୭୧) ।

**ସୁନାଗଡ଼ା**-*ଦେ.ବି.*- ଶ୍ରୀଜୀଉଙ୍କ ବସ୍ତ୍ର ବିଶେଷ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୪୭) ।

**ସୁନା ଗୋସାଇଁ ସେବା**-*ଦେ.ବି.*- ଶ୍ରୀମନ୍ଦିରରେ ଦେବସ୍ନାନ ପୂର୍ଣ୍ଣିମା ଦିନ ସୁନା କୂଅରୁ ପାଣି ଆଣୁଥିବାରୁ ଏହି ସେବାୟତମାନେ ସୁନାଗୋସାଇଁ ଭାବରେ ଅଭିହିତ । ଭକ୍ତମାନଙ୍କର ଏମାନେ ଦୀକ୍ଷାଗୁରୁ । ଏହାଙ୍କର ଦର୍ପଣୀ ବା ଦର୍ପନାରାୟଣ ମଠ ସେନା ଗୋସେଇଁ ମଠ ନାମରେ ଦୁଇଟି ମଠ ରହିଛି । ବନକ ଲାଗି ସମୟରେ ରତ୍ନସିଂହାସନ ତଳେ ମାର୍ଜନ, ସ୍ନାନପୂର୍ଣ୍ଣିମା ଦିନ ମୁଦିରଥ ସହ ପଟୁଆରରେ ସୁନାକୂଅରୁ ୧୦୮ ଗରା ଜଳ ଅଧିବାସ କରିବା, ଅକ୍ଷୟ ତୃତୀୟାରୁ ସ୍ନାନ ପୂର୍ଣ୍ଣିମା ପର୍ଯ୍ୟନ୍ତ ନିଜମଠରୁ ଅଳକା ଯୋଗାଇବା, ଚନ୍ଦନଲାଗି ବେଳେ ଆଳଟ ବିଞ୍ଚିବା, ପହଣ୍ଡିରେ ଡୋର ଧରିବା, ବଡ଼ସିଂହାର ବେଶ ପାଇଁ ଜଗନ୍ନାଥଙ୍କ ବାଡ଼କୁ ଗୋଟିଏ ଶ୍ରୀପୟର ମାଳ ଯୋଗାଇବା ଅଣସର ୧୫ ଦିନ ମଇଲମ ଭୋଗ ଓ ୪ଟା ଶୁକ୍ଳ ଫୁଲ ଟଭାମାଳ ଯୋଗାଇବା, ବାମନ ଜନ୍ମରେ, ବାମନଙ୍କ ବେଶ ପାଇଁ ଜଗନ୍ନାଥଙ୍କ ଶ୍ରୀହସ୍ତରେ କୁଶ ବିଡ଼ାଏ ଦିଅନ୍ତି । ମକର ସଂକ୍ରାନ୍ତି ଦିନ ଅଁଳା ବେଢ଼ା ରଙ୍ଗ ହେବା ପାଇଁ ତିନୋଟି ଟିପେଇ ହାଣ୍ଡିରେ ଗେରୁ ଯୋଗାଇବା, ଠାକୁର ବିଜେ ପୂର୍ବରୁ ରତ୍ନସିଂହାସନରେ ଚୁଆ, ଚନ୍ଦନ କର୍ପୂରାଦି ଲାଗି କରିବା ମଙ୍ଗଳ ଆଳତି ପରେ, ଚାପ, ରଥ, ସ୍ନାନ, ଦୋଳ ଓ ଝୁଲଣ ମଣ୍ଡପରେ ଚାମର ସେବା, ଗୁଣ୍ଡିଚା ଘରକୁ ଠାକୁର ବିଜେ ପୂର୍ବରୁ ସିଂହାସନ ଧୋଇ ଚୂଆ ଚନ୍ଦନ ବୋଳିବା ଆଦି କାର୍ଯ୍ୟ କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୬୮) ।

**ସୁନା ଚକ୍ର**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ସୁନା ତିଆରି ଚକ୍ର ।
(ଶ୍ରୀ.ଶ. -ପୃ. ୧୭୧) ।

**ସୁନା ଚକି ପତର**-*ଦେ.ବି.*- ଶ୍ରୀଜୀଉଙ୍କର ବ୍ୟବହୃତ ଏକ ପ୍ରକାର ସୁନା ଅଳଙ୍କାର ବିଶେଷ ।
(ଶ୍ରୀ.ଶ. - ପୃ. ୧୭୧) ।

**ସୁନାଚନ୍ଦ୍ର ସୂର୍ଯ୍ୟ କଳାପାଟ ଆଡ଼ ସେବକ** - *ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ସଂପ୍ରତି ଏହା ଲୁପ୍ତ ।
(ପୁ.ବୋ. - ପୃ. ୩୨୯) ।

**ସୁନାଝୁମ୍ପା**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଅନ୍ୟ ଏକ ସୁବର୍ଣ୍ଣ ଅଳଙ୍କାର ବିଶେଷ, ଯାହାର ଝୁମ୍ପାମାନ ନିମ୍ନକୁ ଓହଳିଥାଏ ।
(ଶ୍ରୀ.ଶ. - ପୃ. ୧୭୧) ।

**ସୁନାଦିହୁଡ଼ି ସେବକ**-*ଦେ.ବି.*- ଶ୍ରୀମନ୍ଦିର ଯେଉଁ ସେବକ ଦିହୁଡ଼ି ଜାଳନ୍ତି, କିନ୍ତୁ ଏ ସେବକ ସୁନା ଦିହୁଡ଼ି ପ୍ରଜ୍ୱଳନ ଦ୍ୱାରା ରଥକୁ ଆଲୋକିତ କରନ୍ତି ।
(ପୁ.ବୋ. - ପୃ. ୩୨୯) ।

**ସୁନାନାକ ଫାଶିଆ**-*ଦେ.ବି.*- ମହାପ୍ରଭୁଙ୍କର ଏକ ସୁବର୍ଣ୍ଣର ନାକ ଅଳଙ୍କାର ବିଶେଷ ।
(ଶ୍ରୀ.ଶ. - ପୃ. ୧୭୧) ।

**ସୁନାପାନପତ୍ରୀ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କର ଏକ ସୁବର୍ଣ୍ଣର ଅଳଙ୍କାର ବିଶେଷ ।
(ଶ୍ରୀ.ଶ. - ପୃ. ୧୭୧) ।

**ସୁନାବେତ ସେବକ**-*ଦେ.ବି.*- ସୁନା ବେତ ଧରି ମହାପ୍ରଭୁଙ୍କ ବିଭିନ୍ନ ନୀତିରେ ଉପସ୍ଥିତ ରହୁଥିବା ସେବକ ବିଶେଷ ।
(ପୁ.ବୋ. - ପୃ. ୩୨୯) ।

**ସୁନାବେଶ**-*ଦେ.ବି.*- ଚତୁର୍ଦ୍ଧା ମୂର୍ତ୍ତିଙ୍କର ସ୍ୱର୍ଣ୍ଣ ଅଳଙ୍କାର ଲାଗି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ସେବା ପୂଜା ଯେମିତି ସ୍ୱତନ୍ତ ବେଶ ମଧ ସେହିପରି ମନମୁଗ୍ଧକର ।
ଗବେଷକମାନଙ୍କ ମତ ଅନୁଯାୟୀ ସୁନାବେଶ ୧୨୩୨ ମସିହାରୁ ଆରମ୍ଭ ହୋଇଅଛି । ଗଜପତି କପିଳେନ୍ଦ୍ରଦେବ ୧୪୬୦ ଖ୍ରୀଷ୍ଟାବ୍ଦରେ ୧୭ଟି ହାତୀରେ ବିପୁଳ ଧନରତ୍ନ ଆଣି ସେହି ଅଳଙ୍କାର ମାଧମରେ ଏହି ବେଶ କରାଇଥିଲେ । ତ୍ରୟୋଦଶ ଶତାବ୍ଦୀର ଗଙ୍ଗବଂଶର ସମ୍ରାଟ ତୃତୀୟ ଅନଙ୍ଗ ଭୀମଦେବ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଉତ୍କଳ ସମ୍ରାଟ ତଥା ରାଷ୍ଟ୍ରଦେବତା ବୋଲି ଘୋଷଣା କରିଥିଲେ । ସେହିଦିନଠାରୁ ସକଳ ଐଶ୍ୱର୍ଯ୍ୟର ଅଧିକାରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଏହି ସୁନାବେଶ ହୋଇଆସୁଅଛି । ରାଜା କପିଳେନ୍ଦ୍ରଦେବ ଏକଶତ ଅଠତିରିଶ ପ୍ରକାର ରତ୍ନଖଚିତ ସ୍ୱର୍ଣ୍ଣ ଅଳଙ୍କାର ନିର୍ମାଣ କରି ପ୍ରଥମେ ବଡ଼ ଏକାଦଶୀ ତିଥିରେ ବିଗ୍ରହମାନଙ୍କୁ ପିନ୍ଧାଇଥିଲେ । ସବୁ ରାଜାବେଶ ସୁନାବେଶ ମାତ୍ର ସବୁ ସୁନାବେଶ ରାଜାବେଶ ନୁହେଁ ଯେହେତୁ ଦୋଳପୂର୍ଣ୍ଣିମାରେ ହେଉଥିବା ସୁନାବେଶ ରାଜାବେଶ ନୁହେଁ । ବିଭିନ୍ନ ପର୍ବପର୍ବାଣି ତଥା ବେଶ ମହୋତ୍ସବ ଅବକାଶରେ ଠାକୁରଙ୍କ ସୁନାବେଶର ବିଧି ଥିଲେ ହେଁ ରଥଯାତ୍ରା ଅବକାଶରେ ଅନୁଷ୍ଠିତ ସୁନାବେଶ ହେଉଛି ପ୍ରଧାନ ତଥା ମୁଖ୍ୟ ଆକର୍ଷଣ । ରଥଯାତ୍ରାରେ ରଥରେ ଯାତ୍ରା କରି ଠାକୁର ଗୁଣ୍ଡିଚା ମଣ୍ଡପରେ ଅବସ୍ଥାନ କରନ୍ତି । ଦଶମୀ ଦିନ ସେ ବାହୁଡ଼ି ଆସନ୍ତି ଶ୍ରୀମନ୍ଦିର ସମ୍ମୁଖକୁ । ଏକାଦଶୀ ଦିନ ରଥ ଉପରେ ଠାକୁରଙ୍କ ଅନ୍ୟାନ୍ୟ ନୀତି ସବୁ ସମ୍ପୂର୍ଣ୍ଣ ହେବା ପରେ ଠାକୁରମାନଙ୍କୁ ଅଧର ପଣା ଲାଗି କରାଯାଏ । ତା'ପରେ ଅନୁଷ୍ଠିତ ହୁଏ ସୁନାବେଶ । ରାତ୍ରିକାଳରେ ଏହି ବେଶ ଅନୁଷ୍ଠିତ ହୋଇଥାଏ । ପ୍ରତ୍ୟକ୍ଷଦର୍ଶନରେ ଏହି ବେଶ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ସହଜ ନୁହେଁ । ଏହି ବେଶରେ ମାଧୁର୍ଯ୍ୟର ଲାବଣ୍ୟ ଝରୁଥିବା ବେଳେ ସମସ୍ତ ବେଶଠାରୁ ଏହା ଐଶ୍ୱର୍ଯ୍ୟାତ୍ମକ ।
ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଯେତେ ସବୁ ସୁନା ଅଳଙ୍କାରରେ ମଣ୍ଡିତ ହୁଅନ୍ତି ତାହାର ଆକଳନ ଅସମ୍ଭବ । ଉତ୍କଳର ଯଥାର୍ଥ ସମ୍ରାଟ ଭାବରେ ଶ୍ରୀଜଗନ୍ନାଥଙ୍କୁ ବିବେଚନା କରିଥିବାରୁ ଗଜପତି ମହାରାଜମାନେ ଏହି ବେଶ ପାଇଁ ଅତୀତରେ ମହଣ ମହଣ ସ୍ୱର୍ଣ୍ଣ ଦାନ କରିଥିବାର ପ୍ରମାଣ ମିଳେ । ରଥ ଉପରେ ହେଉଥିବା ସୁନାବେଶକୁ ବଡ଼ ତଢ଼ାଉ ବେଶ କୁହନ୍ତି, କାରଣ ରାଜା ତଢ଼ାଉକରଣଙ୍କ ମାର୍ଫତରେ ସୁନା ଅଳଙ୍କାରମାନ ଆଣି ରଥ ଉପରେ ବିଗ୍ରହକୁ ଲାଗି କରାଇଥାଆନ୍ତି । ସେହି

ଦୃଷ୍ଟିରୁ ତାଙ୍କର ନାମକୁ ସ୍ମରଣ କରିବା ପାଇଁ ବେଶର ନାମ ବଡ଼ ତଡ଼ାଉକରଣ ବେଶ ହୋଇଅଛି । ଏହି ସୁନାବେଶରେ ବ୍ୟବହୃତ ସ୍ୱର୍ଣ୍ଣ ଅଳଙ୍କାରଗୁଡ଼ିକର ଏକ ବିବରଣୀ ନିମ୍ନରେ ଦିଆଯାଇଛି ।

ଶ୍ରୀବଳଭଦ୍ର - ଶ୍ରୀପୟର, ଶ୍ରୀଭୁଜ, କିରୀଟ, ଓଡ଼ିଆଣୀ, କୁଣ୍ଡଳ, ଚନ୍ଦ୍ରସୂର୍ଯ୍ୟ, ଆଡ଼କାନି, ଘାଗଡ଼ାମାଳି, କଦମ୍ବମାଳୀ, ତିଳକ, ଚନ୍ଦ୍ରିକା, ଅଳକା, ଝୋବାକଣ୍ଠି (ଲୁଗାକୁ ଠିକ୍ ଭାବରେ ରଖିବା ପାଇଁ) ହଳମୂଷଳ, ବାହାଡ଼ାମାଳି, ବାଘନଖିମାଳି, ସେବତୀ ମାଳି, ତ୍ରିଖଣ୍ଡିକା, କମରପଟି ।

ମା' ସୁଭଦ୍ରା- କିରୀଟ, ଓଡ଼ିଆଣୀ, କାନ, ଚନ୍ଦ୍ରସୂର୍ଯ୍ୟ, ଘାଗଡ଼ାମାଳି, କଦମ୍ବମାଳୀ, ତଡ଼ଗି-ଦୁଇଟି, ସେବତୀ ମାଳି ।

ଶ୍ରୀଜଗନ୍ନାଥ - ଶ୍ରୀପୟର, ଶ୍ରୀଭୁଜ, କିରୀଟ, ଓଡ଼ିଆଣୀ, ଚନ୍ଦ୍ରସୂର୍ଯ୍ୟ, କାନ, ଆଡ଼କାନି, ଘାଗଡ଼ାମାଳି, କଦମ୍ବ ମାଳି, ତିଳକ, ଅଳକା, ଝୋବାକଣ୍ଠି, ସ୍ୱର୍ଣ୍ଣଚକ୍ର ଓ ରୌପ୍ୟଶଙ୍ଖ, ହରିଡ଼ା ପଦମ୍ବମାଳି, ବାହାଡ଼ାମାଳି, ତାବିଜ ମାଳି, ସେବତୀ ମାଳି ଓ ତ୍ରିଖଣ୍ଡିକା କମରପଟି ।

ଶ୍ରୀଜୀଉ ବର୍ଷକରେ ମୋଟ ପାଞ୍ଚ ଥର ସୁନାବେଶ ହୋଇଥାନ୍ତି । ମାସ ଅନୁକ୍ରମରେ ଏହି ବେଶଗୁଡ଼ିକ ହେଲା-

୧. ଆଷାଢ଼ ଶୁକ୍ଳ ଏକାଦଶୀ - (ରଥ ଉପରେ ଅନୁଷ୍ଠିତ ମଧାହ୍ନ ଧୂପ ପରେ)

୨. କାର୍ତ୍ତିକ ପୂର୍ଣ୍ଣିମା - (ଶ୍ରୀମନ୍ଦିର ରତ୍ନସିଂହାସନ ଉପରେ ସକାଳ ସମୟରେ ଅନୁଷ୍ଠିତ ମଧାହ୍ନ ଧୂପ ପରେ

୩. ପୌଷ ପୂର୍ଣ୍ଣିମା - ମଧାହ୍ନ ଧୂପ ପରେ ରତ୍ନସିଂହାସନ ଉପରେ ।

୪. ଦୋଳ ପୂର୍ଣ୍ଣିମା - ସକାଳ ସମୟରେ ରତ୍ନ ସିଂହାସନ ଉପରେ ।

୫. ଦଶହରା / ଆଶ୍ୱିନ ଶୁକ୍ଳ ଦଶମୀ - ସକାଳ ସମୟରେ ରତ୍ନସିଂହାସନ ଉପରେ ।

ଦଶହରାରେ ବିଜୟୀ ରାମଚନ୍ଦ୍ର ରୂପରେ, କାର୍ତ୍ତିକ ପୂର୍ଣ୍ଣିମାରେ ଦ୍ୱାରକାନାଥ ରୂପରେ, ଦୋଳପୂର୍ଣ୍ଣିମାରେ ଗୋପେଶ୍ୱର ତଥା ପୁଷ୍ୟାଭିଷେକରେ (ପୌଷପୂର୍ଣ୍ଣିମା) ଶ୍ରୀରାମ ରୂପରେ ବେଶ ହୁଅନ୍ତି ।

(ଶ୍ରୀ.ସ୍ୱ.- ପୃ. ୧୫)

**ସୁନିଆ**-*ଦେ.ବି.*- ସ୍ୱର୍ଣ୍ଣମୁଦ୍ରା, ସୁନାମୋହର । ଭାଦ୍ରବ ଶୁକ୍ଳ ଏକାଦଶୀ । ଏହି ଦିନ ବାମନ ଜନ୍ମ । ପୁରୀ ଶ୍ରୀମନ୍ଦିରରେ ତଥା ରାଜବାଟୀରେ ସୁନିଆ ଉତ୍ସବ ପାଳିତ ହୁଏ । ଏ ଦିନ ପୁରୀର ରାଜବାଟୀରେ ରାଜାଙ୍କ ମସ୍ତକରେ ସ୍ୱର୍ଣ୍ଣମୁଦ୍ରା ଲାଗି ହୁଏ । ପରିବାର ସେବକ ସତେଇଶିଟି ବିଭିନ୍ନ ଦେବଦେବୀଙ୍କ ଛବି ମୁଦ୍ରିତ ନୂତନ ସ୍ୱର୍ଣ୍ଣମୁଦ୍ରା ମହାରାଜାଙ୍କୁ ଦିଅନ୍ତି । ମହାରାଜା ରାଜଗୁରୁଙ୍କୁ ଦେଲେ ରାଜଗୁରୁ ମହାରାଜାଙ୍କ ମସ୍ତକରେ ସେଗୁଡ଼ିକୁ ଲାଗି କରାନ୍ତି । ଏହା ପୂର୍ବରୁ ରାଜଗୁରୁ ବରୁଣ ପୂଜା, ନୃସିଂହପୂଜା, ସମ୍ପନ୍ନ କରିସାରିଥାଆନ୍ତି । ରାଜରାଜୁଡ଼ା କାଳରେ ଏହିଦିନ ମହାରାଜଙ୍କର ସ୍ୱର୍ଣ୍ଣମୁଦ୍ରା ପ୍ରଚଳନ ହେଉଥିଲା । ତେଣୁ ଏହି ଦିନଟି ଓଡ଼ିଆ (ଗଜପତି) ରାଜାଙ୍କ ଅଙ୍କ (ସାଲ) ପରିବର୍ତ୍ତନ ଦିବସ । ଏହିଦିନ ମଧ ଓଡ଼ିଶାର ରାଜା ଜମିଦାରଙ୍କ ସିରସ୍ତାରେ ନୂତନ ଅଙ୍କ (ସନ) ଗଣନା ଆରମ୍ଭ ହୁଏ । ରାଜା ଜମିଦାରମାନେ ସୁନିଆ ଦିନ ସିରସ୍ତା ପୂଜା କରନ୍ତି । ପ୍ରଜାମାନେ ଜମିଦାରଙ୍କୁ ଭେଟି ବା ସଲାମୀ ଦିଅନ୍ତି । ପୂର୍ବତନ ରାଜାଙ୍କର ନାମାଙ୍କିତ ସ୍ୱର୍ଣ୍ଣମୁଦ୍ରା କଟାଯାଇ ନୂଆ ରାଜାଙ୍କର ନୂତନ ସ୍ୱର୍ଣ୍ଣମୁଦ୍ରା ପ୍ରଚଳନ ବିଧି ଓ ରାଜତ୍ୱ କରୁଥିବା ରାଜାଙ୍କର ନୂଆ ଅଙ୍କ ପ୍ରଚଳିତ ହୁଏ । ଏହି ବିଧିରୁ ଏହିଦିନକୁ ସୁନିଆ କୁହାଯାଏ । ଓଡ଼ିଆ ସନର ଓ ପୁରୀ ରାଜାଙ୍କ ଅଙ୍କର ମାସ ଓ ଦିବସର ଗଣନା ସୌର ମାସର ଗଣନା କ୍ରମେ ହୁଏ, କିନ୍ତୁ ସନ ବା ଅଙ୍କ ଚାନ୍ଦ୍ର ଭାଦ୍ରବ ମାସର ଦ୍ୱାଦଶୀ ଗଣନା କରାଯାଏ । ଏହି ସୁନିଆ ପୂଜା ଓ ଗଣନା ଓଡ଼ିଆର ବିଶେଷତ୍ୱ ଏହିଠାରୁ ଓଡ଼ିଆମାନଙ୍କର ନବବର୍ଷର ଆରମ୍ଭ । ରାଜା ଓ ଜମିଦାରମାନେ ସୁନିଆ ଦିନ ବେଦୀରେ

ବସି ଗଣେଶ, ସରସ୍ୱତୀ, ଲକ୍ଷ୍ମୀ ଓ ଦେବଦେବୀଙ୍କୁ ପୂଜା କରନ୍ତି । ସୁନିଆ ଭେଟି ଓ ଉଲାଗିର ପ୍ରଚଳନ ଅଛି । ଶ୍ରୀମନ୍ଦିରରେ ସକାଳ ଧୂପ ପରେ ମହାସ୍ନାନ, ସର୍ବାଙ୍ଗରେ ଗତଦିନ ଅଧିବାସ ହୋଇଥିବା ପବିତ୍ର ଲାଗି ହୁଅନ୍ତି । ପବିତ୍ର ଚାଙ୍ଗୁଡ଼ିକୁ ପଣ୍ଡା, ପତି, ମୁଦିରସ୍ତ ତିନିଜଣ ପାଳିଆ ପୁଷ୍ପାଳକ ଘଣ୍ଟ ଛତା କାହାଳି ତଳିଛ ପଟୁଆର ଜୟ ବିଜୟ ଦ୍ୱାର ଦେଇ ବଡ଼ଦେଉଳକୁ ୩ ଘେରା ବୁଲି ଭିତର ସିଂହାସନଠାକୁ ବିଜେ କରାନ୍ତି । ଛଅ ମୂର୍ତ୍ତି ତଡ଼ାଉ ଲାଗି ହୁଅନ୍ତି କର୍ପୂର ଲାଗି ହୁଏ । ମଧାହ୍ନ ଧୂପ ଉଠିଲେ ଚନ୍ଦନ ଅର୍ଗଳି ପୋଛା ହୋଇ ପଞ୍ଚ ମୁରୁଜରେ ମଣ୍ଡଳ ଲେଖା ହୁଏ । ୩ ବାଡ଼ରେ ବନ୍ଦାପନା ହୁଏ । ବରୁଣ ପୂଜା ହୁଏ । ପତି ଓ ମୁଦିରସ୍ତ, ବ୍ରହ୍ମା, ଆଚାର୍ଯ୍ୟବରଣ, ଦକ୍ଷିଣି ଘର ଭୋଗ ପରେ ମହାଜନେ କୃଷ୍ଣଙ୍କୁ ହାତରେ ବିଜେ କରାଇ ଭିତର ସିଂହାସନକୁ ବିଜେ କରାନ୍ତି । ମୁଦିରସ୍ତ ଶ୍ରୀଅଙ୍ଗରେ ଧଣ୍ଡି ପ୍ରସାଦ ଲାଗି କଲାପରେ ମହାଜନେ ବିଜେ କରାଇ ଆଣି ସର୍ବତ୍ର ଭଦ୍ର ଭଣ୍ଡଳ ଉପରେ ବିଜେ କରାନ୍ତି । ବଣିଆ ଦେଇଥିବା ସୁବର୍ଣ୍ଣ ବାମନ ପ୍ରତିମା ବିଜେ ହୁଅନ୍ତି । ପଞ୍ଚାମୃତ ମହାସ୍ନାନ, ଶୀତଳ ଭୋଗ, ଗର୍ଭଉଦକ ନିମନ୍ତେ ପଞ୍ଚୋପଚାରରେ ପୂଜା ହୁଏ । ପରେ ଖଣ୍ଡୁଆ ଘୋଡ଼ାଇ ପୋଥି ପାଠ ପ୍ରମାଣେ ଜନ୍ମ ବିଧି ହୁଏ । କ୍ଷୀର, ଲହୁଣୀ, କୋରା ପ୍ରସାଦ ଲାଗି ମୁଦିରସ୍ତ କରାନ୍ତି । ମହାଜନେ ଠାକୁରଙ୍କୁ ବିଜେ କରାଇ ଜୟବିଜୟ ଦ୍ୱାର ତଳେ ଠିଆ ହୁଅନ୍ତି । ଏଠାରେ ମାର୍କଣ୍ଡେଶ୍ୱର ସାହିର ଲୋକେ ବାସନ ମୂର୍ତ୍ତି ପଟି ଆଣିଥିବେ । ବଟଦ୍ୱାର ଦେଇ ସୋମନାଥ ମଣ୍ଡପ (ମାଜଣା ମଣ୍ଡପ) ଖଟ ଉପରେ ବିଜେ ହୋଇବେ । ଭଣ୍ଡାରରୁ ରୂପାବଟାରେ ଶ୍ରୀ ଦୁର୍ଗାଦେବୀଙ୍କୁ ପତି ମହାପାତ୍ରେ ହାତରେ ବିଜେ କରାଇ ଆଣି ପଣ୍ଡା ଆଜ୍ଞାମାଳ ଦେବା ପରେ ଭକ୍ତ ମଣ୍ଡପ ଖଟ ଉପରେ ବିଜେ କରାନ୍ତି । ପଣ୍ଡା ପଞ୍ଚୋପଚାର ଭୋଗ, ବନ୍ଦାପନା ଓ ଉଲାଗି ହୋଇ ଶ୍ରୀକୃଷ୍ଣ ଦକ୍ଷିଣି ଘରକୁ ଓ ଦୁର୍ଗା ଭଣ୍ଡାର ଘରକୁ ବିଜେ ହୁଅନ୍ତି ।

(ଓ.ସାଂ.ଶ. - ପୃ. ୩୬୧, ପୂ.ଓ.ଭା. - ପୃ. ୮୫୯୬, ଶ୍ରୀ.ସ୍ୱ. ୨ୟ - ପୃ. ୯୬, ପ୍ର.ଅ. ୩ୟ - ପୃ. ୨୭୬୭, କ୍ର.ବି.ଓ.ଶ.ସ. - ପୃ. ୧୦୨୧) ।

**ସୁବାସ ପଖାଳ**-*ଦେ.ବି.*- ସୁଗନ୍ଧ ପୁଷ୍ପ ପଡ଼ି ସୁବାସିତ ହୋଇଥିବା ପଖାଳ, ଶ୍ରୀଜୀଉଙ୍କ ପାଇଁ ଭୋଗଲାଗି ହୁଏ ।

(ଶ୍ରୀ.ସ୍ୱ. ୨ୟ - ପୃ. ୨୩) ।

**ସୁନ୍ଦରାଚଳ**-*ଦେ.ବି.*- ଗୁଣ୍ଡିଚା ମଣ୍ଡପକୁ ସୁନ୍ଦରାଚଳ କୁହାଯାଏ । ପୂର୍ବେ ଏଠାରେ ଏକ ସୁନ୍ଦର ପର୍ବତ ଥିଲା ।

(ପୁ.ବୋ. - ପୃ. ୩୨୯) ।

**ସୁପରିଣ୍ଟେଣ୍ଡେଣ୍ଟ**- ୧୮୦୩ରେ ଇଂରେଜମାନେ ଓଡ଼ିଶାକୁ ନିଜ ଅଧୀନକୁ ନେଲେ । ପୁରୀ ଶ୍ରୀମନ୍ଦିରର ପରିଚାଳନା ରାଜାଙ୍କୁ ନ ଦେଇ ୩ ଜଣ ପଣ୍ଡିତଙ୍କୁ ନେଇ ଏକ ପଣ୍ଡିତ ମଣ୍ଡଳୀ ନିଯୁକ୍ତ କରି ସେମାନଙ୍କ ହାତରେ ଶ୍ରୀମନ୍ଦିର ପରିଚାଳନା ଦାୟିତ୍ୱ ଅର୍ପଣ କରିଥିଲେ । କିନ୍ତୁ କାର୍ଯ୍ୟରେ ବିଭ୍ରାଟ ଦେଖାଦେବାରୁ ୧୮୦୭ରେ ଗଜପତି ମହାରାଜଙ୍କୁ ଶ୍ରୀମନ୍ଦିରର ତତ୍ତ୍ୱାବଧାରକ ରୂପେ ନିଯୁକ୍ତି ଦେଲେ । ଶ୍ରୀଜଗନ୍ନାଥ ମନ୍ଦିର ପରିଚାଳନା କମିଟି ଗଠନ କରାଯାଇ ଜଗନ୍ନାଥଙ୍କର ସମସ୍ତ କାର୍ଯ୍ୟକୁ ନିୟନ୍ତ୍ରଣ କରାଗଲା । ୧୮୦୯ରେ ପୁରୀ ରାଜା ମୁକୁନ୍ଦଦେବଙ୍କୁ ଶ୍ରୀମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ (ତତ୍ତ୍ୱାବଧାରକ) ରୂପରେ ପ୍ରତ୍ୟକ୍ଷ ପରିଚାଳନା ଦାୟିତ୍ୱ ଇଂରେଜ ସରକାର ଅର୍ପଣ କଲେ । ଏହି ପଦବୀ ମୌରସୀ ସୂତ୍ରରେ ତାଙ୍କୁ ଦିଆଗଲା ।

(ଶ୍ରୀ ଲାଲମୋହନ ପଟ୍ଟନାୟକ, ଶ୍ରୀଜ. ଓ ଶ୍ରୀମ. ପରିଚୟ - ପୃ. ୨୦୫) ।

**ସୁଭଦ୍ରା**-*ସଂ.ବି.*- ଶ୍ରୀପୁରୁଷୋତ୍ତମ ତତ୍ତ୍ୱରେ ସୁଭଦ୍ରା ସୃଷ୍ଟିକର୍ତ୍ତ୍ରୀ । ବ୍ରହ୍ମ ସଂଯୋଗକାରିଣୀ ଶକ୍ତି ରୂପେ ଭାଇଙ୍କ ମଧ୍ୟରେ ବିରାଜମାନ । ଶ୍ରୀଜଗନ୍ନାଥ

ପାଳନ କର୍ତ୍ତା । ଶେଷଦେବ ସଂହାରକର୍ତ୍ତା । ଶିବ ବଳଭଦ୍ର ରୂପେ ରତ୍ନସିଂହାସନରେ ବିରାଜମାନ । ସୁଭଦ୍ରା ଜୀବାତ୍ମା ଗତି ନିୟନ୍ତ୍ରଣକାରିଣୀ ମାୟା ବୋଲି ପ୍ରଣବ ତତ୍ତ୍ୱରେ ଅର୍ଦ୍ଧମାତ୍ରା ଓ ସୃଷ୍ଟିତତ୍ତ୍ୱରେ ଦୁଇବସ୍ତୁର ସଂଯୋଗକାରିଣୀ ବିସର୍ଗମାତ୍ରା । ବ୍ରହ୍ମ ବା ପରମାତ୍ମାଙ୍କର ଇଛାଶକ୍ତିରୁ ପ୍ରଥମେ ଯେଉଁ କମ୍ପନ ସୃଷ୍ଟି ହୁଏ, ତାହା ଦୁଇ ଶକ୍ତିର ମିଳନଜନିତ କମ୍ପନ । ଏହି ଦୁଇ ଶକ୍ତି ହିଁ ସଗୁଣ ଓ ନିର୍ଗୁଣ ଶକ୍ତି । ଏହାର ପ୍ରତୀକ ଦୁଇ ଶୂନ୍ୟର ତଳ ଉପର ସଂଯୋଗ ବିସର୍ଗମାତ୍ର । ଏହା ଅନାଦି ଓ ଅନନ୍ତ ଶକ୍ତି । ଏହା ସୁଭଦ୍ରା ଶବ୍ଦର ଗୁପ୍ତ ରହସ୍ୟ ତତ୍ତ୍ୱ । କମ୍ପନ ସୃଷ୍ଟିର କାରଣ ହେତୁ ସୁଭଦ୍ରା କାମ୍ପିଲ୍ୟବାସିନୀ ବୋଲି କୁହାଯାଏ । ଶ୍ରୀମନ୍ଦିରରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏକତ୍ର ବହୁକାଳରୁ ପୂଜାପାଇ ଆସୁଥିଲେ ବୋଲି ଓଡ଼ିଶାର କିମ୍ବଦନ୍ତୀ ତଥା ଧାର୍ମିକ ଓ ସାଂସ୍କୃତିକ ବିଶ୍ୱାସ ରହିଅଛି । ଏହି ପରିପ୍ରେକ୍ଷୀରେ ବିଭିନ୍ନ ଧର୍ମ ଓ ସଂସ୍କୃତିରେ ସୁଭଦ୍ରାଙ୍କ ଉପାସନା କିପରି ପ୍ରଚଳିତ ଥିଲା ତାହା ନିମ୍ନରେ ବର୍ଣ୍ଣିତ ।

ଆଦିବାସୀ ସଂସ୍କୃତିରେ ସୁଭଦ୍ରା- ଆଦିବାସୀଙ୍କ ଦୃଷ୍ଟିରେ ଜାକେରୀ ପେନୁ, ତାନା ପେନୁ ଓ ମୁରବୀ ପେନୁ ଏହି ତିନି ଦେବୀ ହେଉଛନ୍ତି ଶ୍ରେଷ୍ଠ । ମଝି ଦେବୀ ତାନା ପେନୁ ଆଦିବାସୀଙ୍କ ଦୃଷ୍ଟିରେ ସ୍ତ୍ରୀ ଦେବତା । ତାନା ପେନୁ ହେଉଛନ୍ତି ମା' ଧରିତ୍ରୀ ଏବଂ ସୃଷ୍ଟିର ମୂଳ ଉତ୍ସ । ଗବେଷକ କାହ୍ନୁ ଚରଣ ମିଶ୍ର ମତ ଦିଅନ୍ତି ଆଦିବାସୀମାନଙ୍କ ଦ୍ୱାରା ପୂଜା ପାଉଥିବା ସ୍ତମ୍ଭେଶ୍ୱରୀ ହେଉଛନ୍ତି ସୁଭଦ୍ରାଙ୍କର ଆଦିରୂପ ବା ମୂଳରୂପ । ଶବରମାନେ ଏକ କାଷ୍ଠସ୍ତମ୍ଭକୁ ଘରେ ଘରେ ଗୃହ ଦେବତା ବା ଇଷ୍ଟ ଦେବତା ରୂପେ ପୂଜା କରୁଥିଲେ । ପରବର୍ତ୍ତୀ କାଳରେ ଏହି ସ୍ତମ୍ଭେଶ୍ୱରୀ ମା' ଭଗବତୀ ରୂପରେ ପୂଜା ପାଉଛନ୍ତି । କ୍ରମ ବିବର୍ତ୍ତନରେ ଏହି ସ୍ତମ୍ଭେଶ୍ୱରୀ ସୁଭଦ୍ରା ରୂପରେ ରୂପାନ୍ତରିତ ହୋଇ ରତ୍ନବେଦୀରେ ସୁଭଦ୍ରା ରୂପରେ ପୂଜା ପାଉଛନ୍ତି ।

ବୌଦ୍ଧ ସଂସ୍କୃତିରେ ସୁଭଦ୍ରା - ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ବୌଦ୍ଧଧର୍ମର ତ୍ରିରତ୍ନରେ ରୂପାନ୍ତରିତ ବୋଲି ଅନେକ ଐତିହାସିକ ମତ ଦେଇଥାନ୍ତି । ଜଗନ୍ନାଥ ବୁଦ୍ଧ, ବଳଭଦ୍ର ସଂଘ ଓ ସୁଭଦ୍ରା ଧର୍ମରତ୍ନର ରୂପାନ୍ତର । ବୁଦ୍ଧଙ୍କର ଅପର ନାମ ଜଗନ୍ନାଥ । ଜଗନ୍ନାଥ ନାମର ମୂଳ ହେଉଛି ବୌଦ୍ଧ । ପ୍ରଥମ ଶତାବ୍ଦୀରେ ଯେତେବେଳେ ମହାଜନ ପନ୍ଥା ପ୍ରବର୍ତ୍ତିତ ହୋଇ ବୁଦ୍ଧ ଓ ବୋଧିସତ୍ତ୍ୱମାନଙ୍କର ପୂଜା ଆରମ୍ଭ ହେଲା ସେତେବେଳେ ଶବରମାନେ ସ୍ତୂପର ତ୍ରିରତ୍ନ ଚିତ୍ରଟିକୁ ପୂଜା କଲେ । ଏ' ସମୁଦାୟ ଚିହ୍ନ ଅର୍ଥାତ୍ ଚିହ୍ନ ତ୍ରୟକୁ ଜଗନ୍ନାଥ ବୋଲି କୁହାଯାଉଥିଲା । କିଛିକାଳ ପରେ ଯେତେବେଳେ ମୂର୍ତ୍ତିପୂଜାର ସୂତ୍ରପାତ ହେଲା, ସେତେବେଳେ ଏହି ତିନୋଟି ଚିହ୍ନକୁ କାଠରେ ମୂର୍ତ୍ତି ନିର୍ମାଣ କରି ପୂଜା କଲେ । ମୂର୍ତ୍ତି ଯେତେବେଳେ ତିନୋଟି ହୋଇଗଲେ ସେତେବେଳେ ବୁଦ୍ଧ, ସଂଘ ଓ ଧର୍ମର ଆରୋପ କରାଯାଇ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ଗଠିତ ହେଲା । ଜଗନ୍ନାଥଙ୍କୁ ବୁଦ୍ଧ ଭାବରେ ପ୍ରମାଣ କରିବା ପାଇଁ ଯେପରି ଅକାଟ୍ୟ ଯୁକ୍ତି ରହିଛି ସେହିପରି ସାହିତ୍ୟିକ ଓ ଐତିହାସିକ ଭିତ୍ତି ଉପରେ ସୁଭଦ୍ରାଙ୍କୁ ଧର୍ମରତ୍ନ ରୂପେ ରୂପାନ୍ତରିତ କରାଯାଇଛି ।

ଏକନାଂସା ସୁଭଦ୍ରା- ସର୍ବପ୍ରଥମେ ପଞ୍ଚମ ଶତାବ୍ଦୀରେ ବରାହ ମିହିରଙ୍କ ଦ୍ୱାରା ଲିଖିତ ବୃହତ୍ ସଂହିତାରେ ଯେଉଁ ଏକନାଂସାଙ୍କର ବର୍ଣ୍ଣନା କରାଯାଇଛି ସେ ହେଉଛନ୍ତି ସୁଭଦ୍ରାଙ୍କ ଆଦିରୂପ । ଜଗନ୍ନାଥଙ୍କୁ ଯେତେବେଳେ କୃଷ୍ଣ, ବଳଭଦ୍ରଙ୍କୁ ବଳଦେବ ରୂପେ ଗ୍ରହଣ କରାଯାଇଛି । ସୁଭଦ୍ରାଙ୍କୁ ଶକ୍ତି ରୂପେ ଏମାନଙ୍କ ସହ ଯୋଗ କରାଯାଇଛି । ଏଣୁ ବୋଧହୁଏ ଏହି କାରଣରୁ ପ୍ରଥମେ ଭଗିନୀ ରୂପେ କଳ୍ପିତା ସୁଭଦ୍ରା ପରେ ସ୍ତ୍ରୀ ରୂପେ କଳ୍ପିତା ହୋଇଛନ୍ତି ।

ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିରରେ ଥିବା ସୁଭଦ୍ରା ଏକନାଂସା ରୂପେ ନିରୂପିତ ବୋଲି ଅନେକ ଗବେଷକ ମତ ଦେଇଛନ୍ତି ।

ଭଗିନୀ ସୁଭଦ୍ରା- ଜଗନ୍ନାଥଙ୍କୁ ବିଷ୍ଣୁ ରୂପେ ପରିକଳ୍ପନା କରାଯିବାରୁ ବଳଭଦ୍ର ତାଙ୍କର ବଡ଼ଭାଇ ଓ ସୁଭଦ୍ରା ତାଙ୍କର ସାନ ଭଉଣୀ ରୂପେ ବିଦିତ ହୋଇଆସୁଛନ୍ତି । ଓଡ଼ିଶାରେ କୃଷ୍ଣ ଉପାସନାର ପ୍ରାଧାନ୍ୟ ପ୍ରତିଷ୍ଠିତ ହେଲା ପରେ ଜଗନ୍ନାଥଙ୍କୁ କୃଷ୍ଣ ରୂପେ, ବଳଭଦ୍ରଙ୍କୁ ବଳରାମ ରୂପେ ଓ ସୁଭଦ୍ରାଙ୍କୁ ଦ୍ୱାପର ଯୁଗରେ ସୁଭଦ୍ରା ରୂପେ ପ୍ରତିପାଦନ କରିବା ପାଇଁ ପରିକଳ୍ପନା କରାଯାଇଛି ।

ରାଧାସ୍ୱରୂପିଣୀ ସୁଭଦ୍ରା- ଓଡ଼ିଶାରେ କୃଷ୍ଣ ଉପାସନାର ପ୍ରଭାବ ଫଳରେ ଗୌଡ଼ୀୟ ବୈଷ୍ଣବମାନେ ସୁଭଦ୍ରାଙ୍କ ଜଗନ୍ନାଥରୂପୀ କୃଷ୍ଣଙ୍କର ଭଗିନୀ ଭାବରେ କେବଳ ନୁହେଁ, ଶକ୍ତି ଅର୍ଥାତ୍ ରାଧା ଭାବରେ କଳ୍ପନା କରିଛନ୍ତି ।

ଲକ୍ଷ୍ମୀ ସ୍ୱରୂପିଣୀ ସୁଭଦ୍ରା- ଉତ୍କଳୀୟ ବୈଷ୍ଣବମାନେ ସୁଭଦ୍ରାଙ୍କୁ ଲକ୍ଷ୍ମୀ ସ୍ୱରୂପ ବୋଲି ପରିକଳ୍ପନା କରିଛନ୍ତି । ସ୍କନ୍ଦପୁରାଣ ଉତ୍କଳ ଖଣ୍ଡରେ ସୁଭଦ୍ରାଙ୍କୁ ଲକ୍ଷ୍ମୀଙ୍କର ଅବତାର ବୋଲି ବର୍ଣ୍ଣନା କରିଛନ୍ତି । ନୀଳାଦ୍ରି ମହୋଦୟରେ ମଧ ତାଙ୍କୁ ବୈଷ୍ଣବୀ ମହାଲକ୍ଷ୍ମୀ ବୋଲି ସମ୍ବୋଧନ କରାଯାଇଛି ।

ତନ୍ତ୍ରଦେବୀ ସୁଭଦ୍ରା- ପ୍ରଥମେ ବୌଦ୍ଧଧର୍ମରେ ତନ୍ତ୍ର ପ୍ରବେଶ ଲାଭ କଲାପରେ କାଳକ୍ରମେ ଶୈବ, ଶାକ୍ତ ଓ ବୈଷ୍ଣବଧର୍ମକୁ ଆକ୍ରାନ୍ତ କରିଥିଲା । ଶ୍ରୀଜଗନ୍ନାଥ ଚେତନାରେ ଜଗନ୍ନାଥଙ୍କ ଭୋଗ ବିମଳାଙ୍କୁ ସମର୍ପିତ ହେଲା ପରେ ମହାପ୍ରସାଦ ହୋଇଥାଏ । ତେବେ ବିମଳାଙ୍କୁ ଯେପରି ପୂଜା କରାଯାଏ, ସେହିପରି ତନ୍ତ୍ର ଧାରାରେ ସୁଭଦ୍ରାଙ୍କୁ ପୂଜା କରାଯାଇଥାଏ । ସୁଭଦ୍ରା ଓ ବିମଳା ଉଭୟଙ୍କୁ ଦୁର୍ଗା ଭାବରେ ଗ୍ରହଣ କରାଯାଇଅଛି । ବିମଳାଙ୍କୁ ଯେପରି ଓଁ ହ୍ରୀଂ ମନ୍ତ୍ରରେ ପୂଜା କରାଯାଏ ସୁଭଦ୍ରାଙ୍କୁ ସେହିପରି ଓଁ ହ୍ରୀଂ ମନ୍ତ୍ରରେ ପୂଜା କରାଯାଏ । ଏହିପରି ଭାବରେ ସୁଭଦ୍ରା ଓ ବିମଳାଙ୍କ ମଧ୍ୟରେ ଅଭିନ୍ନତା କଳ୍ପନା କରାଯାଇଅଛି । ଯୋଗମାର୍ଗୀ ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ସୁଭଦ୍ରା ହ୍ରୀଂ ବୀଜର ମୂଳଦେବୀ ରୂପେ ଗ୍ରହଣୀୟ ।

ଜଗତ୍‌ଜନନୀ ଆଦ୍ୟାଶକ୍ତି ସୁଭଦ୍ରା- ସୁଭଦ୍ରା ଭଗିନୀ ଭାବରେ ନୁହେଁ ଶକ୍ତି ଭାବରେ ପ୍ରତିଷ୍ଠିତ ହେବା ଯୋଗୁହିଁ ତାହାଙ୍କୁ ଜଗତ୍‌ଜନନୀ ଓ ଆଦ୍ୟାଶକ୍ତି ଭାବରେ ସମ୍ମାନ ଦିଆଯାଇଛି । ସୁଭଦ୍ରାଙ୍କୁ ଏହି ଜଗତ୍‌ଜନନୀ ଆଦ୍ୟାଶକ୍ତି ଯୋଗମାୟା ରୂପେ ଗ୍ରହଣ କରି ତାହାଙ୍କୁ ଜୀବାତ୍ମା ଗତି ନିୟନ୍ତ୍ରଣକାରିଣୀ ଶକ୍ତି ରୂପେ ବର୍ଣ୍ଣନା କରାଯାଇଛି । ସେ ପ୍ରଣବତତ୍ତ୍ୱରେ ଅର୍ଦ୍ଧମାତ୍ରା ଓ ସୃଷ୍ଟି ତତ୍ତ୍ୱରେ ତଳ ଓପର ଦୁଇ ବିନ୍ଦୁର ସଂଯୋଗକାରିଣୀ ବିଷର୍ଗମାତ୍ର ।

ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଧର୍ମ ସଂସ୍କୃତି ସୁଭଦ୍ରାଙ୍କୁ ନିଜ ନିଜ ଦୃଷ୍ଟିରେ ଦେଖିଥିବାରୁ ସୁଭଦ୍ରା ବହୁବିଧ ରୂପରେ ପ୍ରତୀୟମାନ ହୋଇଛନ୍ତି । ଶ୍ରୀମନ୍ଦିରରେ ତିନିଗୋଟି ମୂର୍ତ୍ତି ଏକତ୍ର ସ୍ଥାପନ କରିବାର ପରିକଳ୍ପନାରେ ଯେକୌଣସି ଧର୍ମଚେତନାରୁ ଆସୁ ନା କାହିଁକି ଓଡ଼ିଶାରେ କିନ୍ତୁ ବୈଷ୍ଣବ, ଶୈବ ଓ ଶାକ୍ତଧର୍ମର ସହାବସ୍ଥାନ ଏଥିରେ ସନ୍ଦେହ ନାହିଁ ।

(ଶ୍ରୀ. ଶ୍ରୀ.- ପୃ.୭୬) ।

**ସୁମଙ୍ଗଳୀ**-ଦେ.ବି.- ଦେବଦାସୀମାନଙ୍କୁ ସୁମଙ୍ଗଳୀ କୁହାଯାଏ କାରଣ ଏମାନେ ଚିର ସଧବା ଓ ତାଙ୍କର ପତିଦେବ ହେଉଛନ୍ତି ସ୍ୱୟଂ ଶ୍ରୀଜଗନ୍ନାଥ । ଏଣୁ ବୈଧବ୍ୟର ଚିହ୍ନ ଶୁକ୍ଳ ବସ୍ତ୍ର ଏମାନେ କେବେ ପରିଧାନ କରନ୍ତି ନାହିଁ । ମା' ବିମଳାଙ୍କର ଆଶ୍ୱିନ ମାସରେ ଷୋଳପୂଜା ସମୟରେ ସ୍ତ୍ରୀମାନଙ୍କୁ ପ୍ରବେଶ ନିଷେଧ ହେଲେ ହେଁ ଏହି ସୁମଙ୍ଗଳୀମାନଙ୍କୁ ମନ୍ଦିର ପ୍ରବେଶ ଅଧିକାର ଅଛି ।

(ଶ୍ରୀ.ଜି. - ପୃ. ୩୫୯) ।

**ସୂତାଚୂଳଫେଟା**-ଦେ.ବି.- ଶ୍ରୀଜୀଉଙ୍କର ଏକ ପ୍ରକାର ସୂତାବସ୍ତ୍ର ବିଶେଷ ।

(ଶ୍ରୀ.ସ୍ୱ. ୨ୟ - ପୃ. ୧୪୭) ।

**ସୂପକାର**-*ଦେ. ବି.*- ଶ୍ରୀମନ୍ଦିରରେ ମଡ଼ିଫୁଲି ପ୍ରସ୍ତୁତ ପାଇଁ ନିଯୁକ୍ତ ସେବକ, ଦେବଖାଦ୍ୟ ପ୍ରସ୍ତୁତକାରୀ । (ପୂ.ଓ.ଭା. - ପୃ. ୮୬୭୭) ।

**ସୂର୍ଯ୍ୟ**-*ସଂ. ବି.*- କାଶ୍ୟପମୁନିଙ୍କ ଔରସରେ ପତ୍ନୀ ଆଦିତିଙ୍କ ଗର୍ଭରୁ ଜନ୍ମ । ଏଣୁ ଏହାଙ୍କ ନାମ ଆଦିତ୍ୟ, ସପ୍ତାଶ୍ୱ ଯୁକ୍ତ ଏକ ଚକ୍ର ରଥରେ ଆକାଶ ମାର୍ଗରେ ବିଚରଣ କରନ୍ତି । ପୂର୍ବରେ ଉଦୟ ହୋଇ ପଶ୍ଚିମରେ ଅସ୍ତ ଯାଆନ୍ତି । ଅରୁଣ ଏହାଙ୍କର ସାରଥୀ । ଏ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞାଙ୍କ ପାଣିଗ୍ରହଣ କରିଥିଲେ ଓ ଏହାଙ୍କ ଗର୍ଭରୁ ବୈବସ୍ୱତ ମନୁ, ଯମ ଓ ଯମୁନା ନାମ୍ନୀ ଏକ କନ୍ୟା ଜନ୍ମଲାଭ କରିଥିଲେ । ସଂଜ୍ଞା ସୂର୍ଯ୍ୟଙ୍କ ତେଜ ସମ୍ଭାଳି ନ ପାରି ଛାୟା ନାମ୍ନୀ ଏକ ନାରୀ ସୃଷ୍ଟି କରି ସୂର୍ଯ୍ୟଙ୍କ ନିକଟରେ ତାହାଙ୍କୁ ସ୍ତ୍ରୀ ରୂପେ ରଖି ପିତୃଗୃହକୁ ପଳାଇଯାଇଥିଲେ ଓ ଛାୟାଙ୍କ ଗର୍ଭରୁ ଶନି ଓ ତପତି ନାମ୍ନୀ କନ୍ୟା ଜାତ ହେଲେ । ତତ୍ପରେ ଘୋଟକୀ ରୂପ ଧାରୀ ସଂଜ୍ଞାଙ୍କ ସହ ସୂର୍ଯ୍ୟଙ୍କର ମିଳନ ହେବାରୁ ତାଙ୍କ ଗର୍ଭରୁ ଅଶ୍ୱିନୀ କୁମାର ଜାତ ହେଲେ । ସଂଜ୍ଞା ପୁନରାୟ ପ୍ରତ୍ୟାବର୍ତ୍ତନ କରି ସୂର୍ଯ୍ୟଙ୍କ ପାଖରେ ରହିବାରୁ ତାଙ୍କ ଗର୍ଭରୁ ପୁନଶ୍ଚ ସୁଗ୍ରୀବ ଓ ବାଳି ଜନ୍ମ ହେଲେ । କୁନ୍ତୀଙ୍କ କର୍ଣ୍ଣବାଟେ କର୍ଣ୍ଣ ଜାତ ହେଲେ । ସୂର୍ଯ୍ୟଙ୍କୁ ଆଦିଦେବ ରୂପେ ଗ୍ରହଣ କରାଯାଏ । ପ୍ରତ୍ୟେକ ପୂଜାରେ ସୂର୍ଯ୍ୟଙ୍କୁ ବରଣ ଓ ଧ୍ୱଜା, ଅର୍ଘ୍ୟ ପ୍ରଦାନ କରାଯାଏ । ଶ୍ରୀମନ୍ଦିର ପରିସରରେ ସୂର୍ଯ୍ୟମନ୍ଦିର ବିଦ୍ୟମାନ । ପ୍ରତ୍ୟହ ଦିନ ଦ୍ୱାର ଫିଟା, ମଇଲମ, ଅବକାଶ, ସାହାଣ ମେଲା, ବେଶ ଲାଗି, ରୋଷ ହୋମ ପରେ ସୂର୍ଯ୍ୟପୂଜା ପ୍ରାତଃକାଳରେ ହୋଇଥାଏ । (ପୂ.ଓ.ଭା. - ପୃ. ୮୬୮୧/ ଶ୍ରୀ.ସ୍ୱ.- ପୃ. ୧୬) ।

**ସୂର୍ଯ୍ୟ ନାରାୟଣ**-*ସଂ. ବି.*- ମହାଲକ୍ଷ୍ମୀଙ୍କ ମନ୍ଦିରର ପୂର୍ବକୁ କୂର୍ମ ପ୍ରାଚୀର ଉତ୍ତର ଭାଗକୁ ସୂର୍ଯ୍ୟନାରାୟଣ ମନ୍ଦିର ଅବସ୍ଥିତ । ସୂର୍ଯ୍ୟ ମନ୍ଦିରଟି ବିମାନ, ଜଗମୋହନ ଓ ନାଟମନ୍ଦିର - ଏହିପରି ତିନି ଭାଗରେ ବିଭକ୍ତ । ବିମାନ ମଧ୍ୟରେ ଏକ ସିଂହାସନ ଉପରେ ପ୍ରସ୍ତରର ସୂର୍ଯ୍ୟ ନାରାୟଣ ମୂର୍ତ୍ତି ବିରାଜମାନ । ମୂର୍ତ୍ତିରେ ସପ୍ତାଶ୍ୱ ଅଛନ୍ତି । ଶ୍ରୀମନ୍ଦିରରେ ପ୍ରତ୍ୟହ ସୂର୍ଯ୍ୟପୂଜାର ବିଧି ଅଛି । ସୂର୍ଯ୍ୟଦେବଙ୍କର ସ୍ୱତନ୍ତ୍ର ରୋଷଘର ଅଛି । ଏଠାରେ ଛ' ଭୋଗ ପୂଜା ହୁଏ ଏବଂ ଛତିଶା ନିଯୋଗ ସରଘରେ ଏ ପ୍ରସାଦ ବିକ୍ରି ହୋଇଥାଏ । ରବିବାର ଦିନ ସୂର୍ଯ୍ୟଙ୍କ ବାର ହୋଇଥିବାରୁ ସୂର୍ଯ୍ୟନାରାୟଣଙ୍କର ଦୁଇଥର ସ୍ନାନ ହୁଏ । ଗ୍ରହଣ ଓ ସୂର୍ଯ୍ୟପରାଗଗୁଡ଼ିକରେ ମହାସ୍ନାନ ହୋଇଥାଏ । ମାଘ ସପ୍ତମୀ ଦିନ ସୂର୍ଯ୍ୟଦେବଙ୍କ ନିକଟରେ ବରୁଣ ପୂଜା, ବନ୍ଦାପନା, ଆରତି ହୋଇଥାଏ ଏବଂ ସୂର୍ଯ୍ୟ ନାରାୟଣ ନୂତନ ବସ୍ତ୍ର ଲାଗି ହୁଅନ୍ତି । ଚୈତ୍ର ଗୁଣ୍ଡିଚାରେ ସୂର୍ଯ୍ୟଦେବଙ୍କ ଚଳନ୍ତି ପ୍ରତିମା ଜଗମୋହନକୁ ବିଜେ ହୁଅନ୍ତି । ସପ୍ତପୁରୀ ଅମାବାସ୍ୟା ଦିନ ସାତଟି ପୁରୀ ଭୋଗ ହୋଇଥାଏ । କୁମାର ପୂର୍ଣ୍ଣିମା, ଓଢ଼ଣ ଷଷ୍ଠୀ ଓ ବସନ୍ତ ପଞ୍ଚମୀରେ ନୂତନ ବସ୍ତ୍ର ଲାଗି ହୁଏ । ଶାମ୍ବଦଶମୀ ଦିନ ଠାକୁରଙ୍କର ବିଶେଷ ଭୋଗ ହୋଇଥାଏ । ସୂର୍ଯ୍ୟଙ୍କୁ ଗ୍ରହରାଜ ବୋଲି ସମ୍ବୋଧନ କରାଯାଇଥାଏ । ଦିନଯାକ ମନ୍ଦିରର ଉତ୍ତରରେ ମୁକ୍ତିମଣ୍ଡପର ଐଶାନ୍ୟରେ ଏକ କ୍ଷୁଦ୍ର ସୂର୍ଯ୍ୟନାରାୟଣ ମନ୍ଦିର ଅଛି । ପ୍ରାତଃକାଳରେ ଏ ପୂଜା ପାଆନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୨୨୦) ।

**ସୂର୍ଯ୍ୟ ପରାଗ**-*ଦେ. ବି.*- ହିନ୍ଦୁ ପୁରାଣ ମତରେ ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କଲେ ସୂର୍ଯ୍ୟ ପରାଗ ହୁଏ । କିନ୍ତୁ ବିଜ୍ଞାନ କହେ ସୂର୍ଯ୍ୟ ପୃଥିବୀ ମଧ୍ୟରେ ଚନ୍ଦ୍ର ରହିଲେ ଚନ୍ଦ୍ରର ଛାୟା ଦ୍ୱାରା ସେହି ଅବସ୍ଥାରେ କିଛିକାଳ ସକାଶେ ସୂର୍ଯ୍ୟ ଦେଖାଯାନ୍ତି ନାହିଁ । ଏହିଦିନ ପରାଗର ବହୁ ପୂର୍ବରୁ ପାଞ୍ଜି ମତେ ପ୍ରତ୍ୟେକ ମନ୍ଦିର ବନ୍ଦ ରହେ । ଭୋଗ, ଅର୍ଥାତ୍ ଦେବ କାର୍ଯ୍ୟ ବନ୍ଦ ରହେ । ପରାଗ ପରେ ପୁନଶ୍ଚ ଦେବନୀତି ଆରମ୍ଭ ହୁଏ । (ପୂ.ଓ.ଭା. - ପୃ. ୮୬୮୨) ।

**ସୂର୍ଯ୍ୟପୂଜା**-*ଦେ. ବି.*- ଶ୍ରୀମନ୍ଦିର ବେଢ଼ାରେ ଥିବା ସୂର୍ଯ୍ୟମନ୍ଦିର ସମ୍ମୁଖରେ ଦୈନିକ ପୂଜା କାର୍ଯ୍ୟ ସମ୍ପାଦିତ ହୁଏ । ପାଳିଆ ପଣ୍ଡାଙ୍କ ଦ୍ୱାରା ରୋଷ

ହୋମ ପରେ ଦୈନିକ ଅନୁଷ୍ଠିତ ହୋଇଥାଏ । ଏହି ନୀତିର ନିର୍ଦ୍ଧାରିତ ସମୟ ସକାଳ ଘ୮.୩୦ ମିନିଟ୍‌ରୁ ଘ.୮.୪୫ ମିନିଟ୍ ମଧ୍ୟରେ । ଏହି ନୀତି ସକାଶେ କୋରା ଦୁଇଗୋଟି, ଫୁଲ, ଚନ୍ଦନ, ଘଣ୍ଟି, ଶଙ୍ଖ, ପିଢ଼ା ଓ ଝରି ଆବଶ୍ୟକ । ନିକାପ ମନ୍ଦିର କୋଠ ସରଘରୁ କୋରା ଆଣି ଦିଏ । ପାଳିଆ ପତ୍ରି ଫୁଲ, ଚନ୍ଦନ, ଘଣ୍ଟି, ଶଙ୍ଖ, ପିଢ଼ା ଓ ଝରି ଅଣସର ପିଣ୍ଡିରୁ ଆଣି ଯୋଗାଏ । ହୋମ କରୁଥିବା ପୁରୋହିତ ବା ପୂଜାପଣ୍ଡା ସୂର୍ଯ୍ୟମନ୍ଦିରରେ ପୂଜା କରନ୍ତି ଓ କୋରା ଦୁଇଟି ନୈବେଦ୍ୟ ଦେଇ ନିଅନ୍ତି । କୌଣସି କାରଣରୁ ରୋଷରେ ଅଧିକା ହୋମ ହେଲେ ଏଠାରେ ଅଧିକା ପୂଜା ହୁଏ । ଗ୍ରହଣ ସମୟରେ ଏଠାରେ ଅଧିକ ପୂଜା ହୁଏ । (ଶ୍ରୀ.ସ୍ୱ. - ପୃ. ୧୬/୨୪୧) ।

**ସେତୁବନ୍ଧ ପ୍ରତିପଦ**-*ଦେ.ବି.*- ଶ୍ରୀମନ୍ଦିରରେ ଏହି ନୀତି ଚୈତ୍ର ପୂର୍ଣ୍ଣିମା ପରଦିନ ବୈଶାଖ କୃଷ୍ଣପକ୍ଷ ପ୍ରତିପଦ ତିଥିରେ ଅନୁଷ୍ଠିତ ହୁଏ । ଏ ଦିନ ସନ୍ଧ୍ୟାଧୂପ ପରେ ରାମ ଲକ୍ଷ୍ମଣ ଦୁଇମୂର୍ତ୍ତି ଭିତରୁ ଆଜ୍ଞାମାଳ ପାଇ ବଟ ମୂଳେ ଥିବା ପାଲିଙ୍କିରେ ବିଜେ ହୋଇ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରନ୍ତି । ଏଠାରେ ବାଲିସାହି ଲୋକ ସେତୁବନ୍ଧ ପ୍ରସ୍ତାବ କରିବା ପରେ ରାମ ଲକ୍ଷ୍ମଣଙ୍କୁ ପାଲିଙ୍କିରେ ବାହୁଡ଼ା ବିଜେ କରି ଦକ୍ଷିଣି ଘରକୁ ବିଜେ କରାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୬) ।

**ସେନାପଟା**-*ଦେ.ବି.*- ଜଗନ୍ନାଥ ମହାପ୍ରଭୁଙ୍କ ପୃଷ୍ଠ ଭାଗରେ ବନ୍ଧାଯାଉଥିବା କାଠର ପଟା । ପହଣ୍ଡି ପୂର୍ବରୁ ଶ୍ରୀଅଙ୍ଗ ପଶ୍ଚାଦେଶରେ ମେରୁଦଣ୍ଡ ଭଳି ଭିଡ଼ାଯାଉଥିବା କାଷ୍ଠଦଣ୍ଡ ।
(ଶ୍ରୀ.ସ୍ୱ. - ପୃ. ୬୬, ପୂ.ଓ.ଭା. ୭ମ - ପୃ. ୮୭୦୭, ପୁ.ବୋ. - ପୃ. ୩୨୯) ।

**ସେନାପଟା ଲାଗି ଗଡ଼ା**-*ଦେ.ବି.*- ଶ୍ରୀମନ୍ଦିରରେ ମହାପ୍ରଭୁଙ୍କ ସେନାପଟା ଲାଗି ନୀତିରେ ବ୍ୟବହୃତ ସୂତା ତିଆରି ବସ୍ତ୍ର । ପହଣ୍ଡି ପୂର୍ବରୁ ଶ୍ରୀଅଙ୍ଗ ପଶ୍ଚାଦ୍‌ଦେଶରେ ମେରୁଦଣ୍ଡ ଭଳି ଭିଡ଼ାଯାଉଥିବା କାଠଦଣ୍ଡକୁ ସେନାପଟା କୁହାଯାଏ । ଏହି ସେନାପଟା ବନ୍ଧା ହେବା ଲାଗି ଯେଉଁ ସୂତା ତିଆରି ବସ୍ତ୍ର ବ୍ୟବହୃତ ହୁଏ, ତାହାକୁ ସେନାପଟା ଲାଗି ଗଡ଼ା କୁହାଯାଏ ।
(ଶ୍ରୀ.ସ୍ୱ. - ପୃ. ୬୬) ।

**ସେବକ**-*ଦେ.ବି.*- ପରିଚାରକ । ଧାରାବାହିକ ରୂପେ କୌଣସି କର୍ମ ଅବଲମ୍ବନକାରୀ ବ୍ୟକ୍ତି । ପୁରୀ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ପୂଜା ଓ ପୂଜା ସମ୍ବନ୍ଧୀୟ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ଥିବା ବ୍ୟକ୍ତିବିଶେଷ । ଶ୍ରୀଜଗନ୍ନାଥଙ୍କର ସେବକମାନେ ଭିନ୍ନ ଭିନ୍ନ ନୀତି କରିବା ଅନୁସାରେ ୩୬ଟି ଶ୍ରେଣୀରେ ବିଭକ୍ତ । ସେମାନଙ୍କୁ ଛତିଶା ନିଯୋଗ ବୋଲାଯାଏ । ସାଧାରଣତଃ ଶିବ ଓ ବିଷ୍ଣୁଙ୍କ ମନ୍ଦିରରେ ଦୁଇ ଜାତିର ସେବକ ଦେଖାଯାଆନ୍ତି । ବ୍ରାହ୍ମଣ (ପଣ୍ଡା ବା ସୁଆର) ଓ ଶୂଦ୍ର (ମାଳି, ବଡୁ ବା ମଳିଆ) । ଉପାଙ୍ଗିଆ ସେବକ - ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଉପାଙ୍ଗ ନାମକ ବାଜା ବଜାନ୍ତି । ଜୟମଙ୍ଗଳ ଆଳତି ସେବକ - ମହାପ୍ରଭୁଙ୍କର ଆଳତି ସେବକ । ଦରପଣିଆ ସେବକ- ମହାପ୍ରଭୁଙ୍କୁ ସ୍ନାନ ସମୟରେ ଦର୍ପଣ ଦେଖାନ୍ତି । ଦେବ ସେବକ - ଦେବତାଙ୍କ ସେବା କରନ୍ତି । ଧ୍ୱଜଧରା ସେବକ- ମଣୋହି ବେଳେ ଗରୁଡ଼ଧ୍ୱଜ, ତାଳଧ୍ୱଜ ଧରନ୍ତି । ପଣ୍ଡା ସେବକ- ପଣ୍ଡା ଜାତୀୟ ଦେବପୂଜକ । ପତ୍ରୀବଡୁ ସେବକ - ସମସ୍ତ ଉପକରଣ ପଣ୍ଡାଙ୍କୁ ବଢ଼ାନ୍ତି । ପାଣିଆପଟ ସେବକ- ସେବାପୂଜା ନିମନ୍ତେ ପାଣି ଯୋଗାନ୍ତି । ପାଳିଆ ସେବକ- ପାଳି ଅନୁସାରେ ଆସି କାମ କରନ୍ତି । ପୁରାଣ ପଣ୍ଡା ସେବକ - ପ୍ରସାଦବଡୁ ସେବକ- ଜଗନ୍ନାଥଙ୍କର ପ୍ରସାଦ ନେଇ ରାଜା ଉଆସକୁ ଯାଆନ୍ତି । ଫୁଲବଡୁ ସେବକ - ଜଗନ୍ନାଥଙ୍କର ଫୁଲ ପ୍ରସାଦ ନେଇ ରାଜ ଉଆସକୁ ଯାଆନ୍ତି । ବଡୁ ସେବକ- ଯେ ଶ୍ରୀଜଗନ୍ନାଥଙ୍କ ସେବାରେ ପାଣି ଯୋଗାନ୍ତି । ବିଡ଼ିଆ ଯୋଗାଣ ସେବକ- ଠାକୁରଙ୍କ ପାଇଁ ପାନଖିଲ ପ୍ରସ୍ତୁତ କରି ଯୋଗାନ୍ତି । ବିମାନବଡୁ ସେବକ- ଠାକୁରଙ୍କ ବିମାନକୁ ବହନ କରି ନିଅନ୍ତି । ଭିତର ଗରାବଡୁ ସେବକ-

ଠାକୁରଙ୍କ ପୂଜା ସମୟରେ ଜଳ ଯୋଗାନ୍ତି । ମହାସୁଆର - ଅନ୍ନ ପାଚକାରୀ ସେବକ । ମାଳି ସେବକ- ଠାକୁରଙ୍କ ଫୁଲ ଯୋଗାଇବା ଶୂଦ୍ର ସେବକ । ଯୋଗାଡ଼ମଞ୍ଜା ସେବକ- ଠାକୁରଙ୍କ ବାସନ ମାଜିବା ସେବକ । ରାଜସେବକ- ରାଜାଙ୍କ ଭୃତ୍ୟ । ଶୂଦ୍ର ସେବକ- ଶୂଦ୍ର ଜାତୀୟ ଦେବ ସେବକ । ସୁଆରବଡୁ ସେବକ- ଠାକୁରଙ୍କ ଭୋଗ ପରେ ଚଟାଣ ଧୋଇବା ସେବକ ଓ ଧୂପ ଆଳତି ପ୍ରସ୍ତୁତକାରୀ । ସୁଦୁସୁଆର ସେବକ - ମୁଗରଗଡ଼ିବା, ପରିବା କାଟିବା ସେବକ । ହାନ୍ଦୋଳାବଡୁ ସେବକ - ଦେବବିଗ୍ରହ ହାନ୍ଦୋଳାରେ ନେବା ।
(ପୂ.ଓ.ଭା. - ପୃ. ୮୭୧୦) ।

**ସେବକ ଜାଗିରି**-*ଦେ.ବି.*- ସେବକ ଅନୁଯାୟୀ ଜାଗିରିକୁ ସେବକ ଜାଗିରି କୁହାଯାଏ ।
(ପୂ.ଓ.ଭା. - ପୃ. ୮୭୧୧) ।

**ସେବକ ନିଯୋଗ**-*ଦେ.ବି.*- ଶ୍ରୀମନ୍ଦିରରେ ଥିବା ଭିନ୍ନ ଭିନ୍ନ ଶ୍ରେଣୀର ସେବକମାନଙ୍କର ଗୋଷ୍ଠୀ ବା ସମାଜ ।
(ପୂ.ଓ.ଭା. - ପୃ. ୮୭୧୧) ।

**ସେବକ ବରତନ**-*ଦେ.ବି.*- ଶ୍ରୀମନ୍ଦିରର ସେବକ ନିଜର ସେବା ନିମନ୍ତେ ପାଉଥିବା ପାରିଶ୍ରମିକ ।
(ପୂ.ଓ.ଭା. - ପୃ. ୮୭୧୧) ।

**ସେବକ ବ୍ରାହ୍ମଣ**-*ଦେ.ବି.*- ଶ୍ରୀମନ୍ଦିରରେ ନିଯୁକ୍ତ ଥିବା ଦେଉଳିଆ ବା ପଣ୍ଡା ବ୍ରାହ୍ମଣ ସେବକ ।
(ପୂ.ଓ.ଭା. - ପୃ. ୮୭୧୧) ।

**ସେବକାନ୍ ଜାଗିରି**-*ଦେ.ବି.*- ସେବକମାନେ ନିଜର କାର୍ଯ୍ୟ ପାଇଁ ଦରମା ପରିବର୍ତ୍ତେ ପାଉଥିବା ବୃତ୍ତି । ଏହାକୁ ସେବକାନ୍ ଜାଗିରି କୁହାଯାଏ ।
(ଶ୍ରୀ.ଶ. - ପୃ. ୧୭୨) ।

**ସେବକାନ୍ ନିଷ୍କର**-*ଦେ.ବି.*- ସେବା କରିବା ଯୋଗୁ ସେବକଙ୍କୁ ଯେଉଁ ଜମିର ରାଜସ୍ୱ ଛାଡ଼ କରାଯାଏ ।
(ଶ୍ରୀ.ଶ. - ପୃ. ୧୭୨) ।

**ସେବତୀମାଳା**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଶ୍ରୀଜୀଉଙ୍କ ସୁବର୍ଣ୍ଣ ନିର୍ମିତ ଏକ ଅଳଙ୍କାର ।
(ଶ୍ରୀ.ଶ. - ପୃ. ୧୭୨) ।

**ସେବାଇତ**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ଶ୍ରୀଜୀଉଙ୍କର ସେବାକାରୀ ।
(ପୂ.ଓ.ଭା. - ପୃ. ୮୭୧୩) ।

**ସେବା ଖଞ୍ଜା**-*ଦେ.ବି.*- ଶ୍ରୀମନ୍ଦିରରେ ଦେବସଭା ନିମନ୍ତେ ଲାଭ କରିଥିବା ନିର୍ଦ୍ଦିଷ୍ଟ ସମ୍ପତ୍ତି ।
(ପୂ.ଓ.ଭା. - ପୃ. ୮୭୧୩) ।

**ସେବା ଦାସୀ**-*ଦେ.ବି.*- ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ମାହାରୀ ।
(ପୂ.ଓ.ଭା. - ପୃ. ୮୭୧୩) ।

**ସେବାୟୁଧ**-*ଦେ.ବି.*- ସେବା ନିମନ୍ତେ ଆବଶ୍ୟକ ଦ୍ରବ୍ୟଚୟ ବା ଉପକରଣ ।
(ପୂ.ଓ.ଭା. - ପୃ. ୮୭୧୩) ।

**ସେହ୍ନା**-*ଦେ.ବି.*- ଶ୍ରୀକ୍ଷେତ୍ରରେ ରଥଯାତ୍ରାରେ ପହଣ୍ଡି ପୂର୍ବରୁ ଠାକୁରଙ୍କ ଶ୍ରୀଅଙ୍ଗ ପଶ୍ଚାଦ୍ ଦେଶରେ ମେରୁଦଣ୍ଡ ଭଳି ଭିଡ଼ାଯାଉଥିବା କାଷ୍ଠଦଣ୍ଡକୁ ସେନା (ସେହ୍ନା) ପଟା କୁହାଯାଏ । ସେନାପଟା ଓ ବାହୁଟ ଭିଡ଼ା ହେବା ଦ୍ୱାରା ପହଣ୍ଡି ସମୟରେ ଠାକୁରଙ୍କ ଶ୍ରୀଅଙ୍ଗରେ କୌଣସି କ୍ଷତି ହୁଏ ନାହିଁ ।
(ଓ.ସାଂ.ଶ. - ପୃ. ୩୬୪) ।

**ସୋଦୁଅ**-*ଦେ.ବି.*- ବିରି ଚାଉଳ ବଟା, ଚାଉଳ ବାଟିକରି ପିଠଉକୁ ପାଣି ପାଣିଆ କରି କାନ୍ଥ ଆଦିରେ ଚିତା ଦେବା ପାଇଁ ବ୍ୟବହୃତ ଜଳୀୟ ପଦାର୍ଥ ବିଶେଷ । ପିଠା ଆଦି କରିବା ପାଇଁ ଚାଉଳ ବଟା ପିଠଉ । ଅଟା, ଗୁଡ଼ ଓ ଘିଅରେ ତିଆରି ପିଷ୍ଟକ ଦ୍ରବ୍ୟ ।
(ପୂ.ଓ.ଭା. - ପୃ. ୮୭୨୮) ।

**ସୋମନାଥ ମଣ୍ଡପ**-*ଦେ.ବି.*- ମାଜଣା ମଣ୍ଡପ । ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଏହି ମଣ୍ଡପ । ପ୍ରତି ଗୁରୁବାର ଦିନ ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନଙ୍କ ମାର୍ଜନ ନୀତି ବା ଗୁରୁବାର ମାଜଣା ଏଠାରେ ଅନୁଷ୍ଠିତ ହୁଏ । ଏଠାରେ ରୁକ୍ମିଣୀ ବିବାହ ଅନୁଷ୍ଠିତ ହେଉଥିବାରୁ ଏହା ମଧ୍ୟ ବିଭାବେଦୀ ନାମରେ ପରିଚିତ ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୪) ।

**ସ୍ୱର୍ଗଦ୍ୱାର**-*ଦେ.ବି.*- ପୁରୀ ମହୋଦଧି ବେଳାସ୍ଥ ଶ୍ମଶାନ ଭୂମି । ତୀର୍ଥ ବିଶେଷ । ପୁରାଣୋକ୍ତି - ସ୍ୱର୍ଗକୁ ଯିବାର ଦ୍ୱାର ବା ପ୍ରବେଶ ପଥ । ସମ୍ପ୍ରତି ଏଠାରେ ଏକ ବିଦ୍ୟୁତ୍ ଚାଳିତ ଶବଦାହ ଚୁଲୀ ସ୍ଥାପିତ ହୋଇଛି । ଏହି ସ୍ଥାନରେ ଶବ ସତ୍କାର କରାଗଲେ ଆତ୍ମା ସ୍ୱର୍ଗଗାମୀ ହୁଏ ବୋଲି ହିନ୍ଦୁମାନଙ୍କର ବିଶ୍ୱାସ । ସ୍ୱର୍ଗଦ୍ୱାର ଶ୍ମଶାନ ଆଦିଶଙ୍କରାଚାର୍ଯ୍ୟ ମହାଭାଗଙ୍କ ଦ୍ୱାରା ସ୍ଥାପିତ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଏବେ ମଧ 'ଶଙ୍କରାଚାର୍ଯ୍ୟ ମଠ' ନାମରେ ଉଲ୍ଲେଖ ଅଛି ।
(ପୂ.ଓ.ଭା. - ୮୮୪୪, ପ୍ର.ଅ. ୩ୟ - ପୃ. ୨୮୫୯, ଓ.ସାଂ.ଶ. - ପୃ. ୩୬୮) ।

**ସ୍ୱପ୍ନାବତୀ ମନ୍ତ୍ର**-*ସଂ.ବି.*- ଶ୍ରୀଜୀଉଙ୍କ ନବକଳେବର ସମୟରେ ବନଯାଗ ଯାତ୍ରୀଦଳ କାକଟପୁରରେ ପହଞ୍ଚି ମା' ମଙ୍ଗଳାମନ୍ଦିରରେ ମାଜଣା ସମାପ୍ତ ପରେ ପ୍ରତ୍ୟହ ସ୍ୱପ୍ନାବତୀ ମନ୍ତ୍ର ଶହେ ଆଠ ବାର ଜପି ରାତ୍ରରେ ଶୟନ କରନ୍ତି । ନିଷ୍ଠାପର ଭାବେ ପ୍ରତ୍ୟହ ମନ୍ତ୍ର ଜପିଲା ପରେ ତିନି ଦିନ ମଧ୍ୟରେ ମା'ଙ୍କର ସ୍ୱପ୍ନାଦେଶ ହୋଇଥାଏ । "ଓଃ ନମଃ ସକଳ ଲୋକାୟ ବିଷ୍ଣବେ ବିଶ୍ୱାୟ ବିଶ୍ୱ ରୂପାୟ ସ୍ୱପ୍ନାଧିପତୟେ ନମଃ, ଆଚକ୍ଷୋ ଦେବ ଦେବଶ ପ୍ରପନ୍ନୋଽସ୍ମି ତବାନ୍ତିକମ୍, ସ୍ୱପ୍ନେ କାର୍ଯ୍ୟାଣି ସର୍ବାଣି ହୃଦେ ସ୍ଥାନୀହ ଯାନିସେ ଓଂ ଓଂ ହୁଁ ଫଟ୍ ବିଷ୍ଣବେ ସ୍ୱାହା ... ହରେତ୍ୱତ୍ ପ୍ରସାଦାତ୍ ସ୍ୱପ୍ନେ ଶୁଭାଭି ବ୍ୟକ୍ତରସ୍ତୁ ।" ମା'ଙ୍କ ନିର୍ଦ୍ଦେଶ ପରେ ଦାରୁ ଅନ୍ୱେଷଣ କାର୍ଯ୍ୟ ଆରମ୍ଭ ହୁଏ । (କ୍ଷେ.ସ.) ।

# ହ

**ହଜୁରି**-*ଦେ.ବି.*- ପୁରୀ ଶ୍ରୀଜଗନ୍ନାଥଙ୍କ ପଣ୍ଡାଙ୍କୁ ପ୍ରଦତ୍ତ ଉପାଧି ବିଶେଷ ।
(ପୂ.ଓ.ଭା. - ପୃ. ୮୯୦୯) ।

**ହଡ଼ପ**-*ଦେ.ବି.*- ଶ୍ରୀମନ୍ଦିରରେ ଶ୍ରୀଜୀଉଙ୍କ ଲାଗି ପାନ ରଖିବା ରୂପା ବଟା ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୦, ପୂ.ଓ.ଭା. - ୮୯୧୫, ପୁ.ବୋ. - ପୃ. ୩୩୦) ।

**ହଡ଼ପ ଘର**-*ଦେ.ବି.*- ଶ୍ରୀମନ୍ଦିରରେ ହଡ଼ପ ନାୟକ ବିଡ଼ିଆ ଖିଲିପାନ ଯୋଗାଇବା ପାଇଁ ବ୍ୟବହୃତ କରୁଥିବା ଘର । ଏଠାରେ ପାନର ଉପକରଣମାନ ମହଜୁଦ କରି ରଖିଥାଏ ।
(ପୁ.ବୋ. - ପୃ. ୩୩୦) ।

**ହଡ଼ପ ନାଏକ ସେବକ**-*ଦେ.ବି.*- ରାଜା ମହାରାଜା ଓ ଦେବତାଙ୍କୁ ପାନ ଭାଙ୍ଗିଦେବା ସେବକ ବିଶେଷ । ଠାକୁରଙ୍କ ବିଡ଼ିଆ ମଣୋହି ପାଇଁ ବିଡ଼ିଆ ଯୋଗାଉଥିବା ସେବକ । ମହାପ୍ରଭୁଙ୍କ ପାଇଁ ବିଭିନ୍ନ ନୀତିରେ ରୂପା ବଟାରେ ପାନ ଯୋଗାଇଥାଆନ୍ତି । ସକାଳ ଧୂପରେ ବାହାର ଦ୍ୱାର ଜଗି ରହନ୍ତି । ମଇଲମ ଓ ଚନ୍ଦନ ଲାଗି ସମୟରେ ଠାକୁରଙ୍କୁ ବିଡ଼ିଆ ମଣୋହି କରାନ୍ତି । ଭିତରେ ଭୋଗ ସରିଲେ ପତ୍ରିବଡୁ ଭିତରୁ ବାହାର ଦୁଆର ପାଖରେ ହଡ଼ପ ନାଏକଙ୍କୁ ଡାକନ୍ତି । ଟେରା ଫିଟିଲା ପରେ ବିଡ଼ିଆ ପାନ ଖିଲି ତିନି ଠାକୁରଙ୍କୁ ରୂପାବଟାରେ ଦିଅନ୍ତି । ରାତ୍ର ଚନ୍ଦନ ଲାଗି ସମୟରେ ଚନ୍ଦନ ବିଜେ କରି ଭଣ୍ଡାର ମେକାପଠାରୁ ହଡ଼ପ ନେଇ ଭିତର ସିଂହାସନ ତଳକୁ ଯାଇ ସିଂହାରୀ ହାତକୁ ଦେଲା ପରେ ଏ ସେବକ ବିଡ଼ିଆ ମଣୋହି କରାଇବେ । ପାର୍ଶ୍ୱଦେବତାଙ୍କୁ ଦୈନିକ ବିଡ଼ିଆ ଯୋଗାନ୍ତି । ବିଡ଼ିଆ ଘରେ ଯୋଗାଣିଆକୁ କର୍ପୂରକିମା ଦିଅନ୍ତି । ଚନ୍ଦନ ବଇଆଳିଶ ଦିନ ରାତ୍ର ଆଳଟ ଲାଗି ବେଳେ ରୂପାବଟାରେ ବିଡ଼ିଆ ନେଇ ସିଂହାସନ ତଳେ ୩ ବାଡ଼ରେ ମଣୋହି କରନ୍ତି । ଯାତ୍ରା ଏକୋଇଶି ଦିନ ଦଶ ଅବତାର ପଟି ପକାଇ ଚାପ ଉପରେ ରାମକୃଷ୍ଣଙ୍କୁ ବିଡ଼ିଆ ମଣୋହି କରାଇ ମଦନ ମୋହନ ଚାପରେ ରହି ବିଡ଼ିଆ ମଣୋହି କରାଉଥାଆନ୍ତି । ମାଣ୍ଡୁଅ ଭୋଗ ପରେ ଜଗତି ଉପରେ ମଦନମୋହନ, ଲକ୍ଷ୍ମୀ, ସରସ୍ୱତୀ ଓ ରାମକୃଷ୍ଣଙ୍କୁ ଜଗତି ଉପରେ ବିଡ଼ିଆ ମଣୋହି କରାନ୍ତି । ରାଜା ଗଲେ ବିଡ଼ିଆ ମୁଦିରସ୍ତ ହାତକୁ ଦିଅନ୍ତି । ସ୍ନାନପୂର୍ଣ୍ଣିମା, ଗୁଣ୍ଡିଚା, ବାହୁଡ଼ା, ରଥ ଉପରୁ ଗୁଣ୍ଡିଚାଘର ସବୁ ପହଣ୍ଡିରେ ଯେଉଁଠି ବନ୍ଦାପନା ହୁଏ ରୂପାବଟାରେ ବିଡ଼ିଆ ପତି ମହାପାତ୍ର ହସ୍ତକୁ ଦିଅନ୍ତି । ବାଲଧୂପ ଡେରା ପଡ଼ିଲେ ସକାଳ ଧୂପ ମୁତାବକ ବିଡ଼ିଆ ଯୋଗାନ୍ତି । ମକର ସଂକ୍ରାନ୍ତି ଦିନ ବିଡ଼ିଆ ବେଢ଼ା ବୁଲି ଯୋଗାନ୍ତି । ଦୋଳବେଦିରେ ଓ ବାହାର ବିଜେରେ ଓ ସରସ୍ୱତୀ ଓ ଗଣେଶଙ୍କ ପାର୍ଶ୍ୱପୂଜାରେ ବିଡ଼ିଆ ଯୋଗାନ୍ତି ।
(ଶ୍ରୀ.ସ୍ୱ. ୧ମ- ପୃ. ୨୦, ୨୨-୨୫, ପୂ.ଓ.ଭା. - ପୃ.୮୯୧୬) ।

**ହଡ଼ପ ମୁଣା**-*ଦେ.ବି.*- ପାନ ବଟୁଆ ।
(କ୍ଷେ.ସ.) ।

**ହଡ଼ପ ରତ୍ନ**-*ଦେ.ବି.*- ପାନ ଦେବା ସେବକଙ୍କ ରାଜପ୍ରଦତ୍ତ ଉପାଧି ବିଶେଷ ।
(ପୂ.ଓ.ଭା. - ପୃ. ୮୯୧୬) ।

**ହଡ଼ପଲାଗି**-*ଦେ.ବି.*- ଦେବତା ବା ରାଜାଙ୍କୁ ଭଙ୍ଗାପାନ ବିଡ଼ିଆ (ପାନଖିଲ) ସମର୍ପଣ ।
(ପୂ.ଓ.ଭା. - ପୃ.୮୯୧୬) ।

**ହଡ଼ପ ସେବା**-*ଦେ.ବି.*- ରାଜାଙ୍କୁ ଓ ଦେବତାଙ୍କୁ ପାନ ଯୋଗାଇବା ସେବା ।

**ହଣା**-*ଦେ.ବି.*- ଭୋଗର ଏକ ଭାଗ ବା ଅଂଶବିଶେଷ । ଶ୍ରୀଠାକୁରଙ୍କ ଭୋଗର ଏକ ଅଂଶ / ଭାଗ । ସୁଆର ବଡୁ ପ୍ରତି ଧୂପରେ ହେଉଥିବା ବିରିପିଠା, କାଣ୍ଟି, ମାଠପୁଳି, ଆଦିରୁ ହଣା (ଅଂଶ/ଭାଗ) କାଢ଼ି ପରିଛାଙ୍କୁ ଦରଶୁଆ କରାଉଥିଲେ (ଦର୍ଶାଉଥିଲେ) ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୦) ।

**ହବିଷ**-*ଦେ.ବି.*- କାର୍ତ୍ତିକ, ମାଘ ଓ ବୈଶାଖ ମାସରେ ହିନ୍ଦୁମାନଙ୍କର ଦିନରେ ଥରେ ମାତ୍ର ନିରାମିଷ ଅରୁଆ ଅନ୍ନ ଖାଇ ଈଶ୍ୱର ଚିନ୍ତନ ପୂର୍ବକ ଏହା ଏକ ବ୍ରତ । ସୂର୍ଯ୍ୟାସ୍ତ ପୂର୍ବରୁ ହବିଷାନ୍ନ ଏକଥର ଖାଆନ୍ତି । ହବିଷାନ୍ନ- ଅରୁଆ ଅନ୍ନ, ଗୁଆଘିଅ, କଞ୍ଚାମୁଗ ଡାଲି, ସାରୁ, କଦଳୀ, କନ୍ଦମୂଳ, ଅଗସ୍ତିଶାଗ, ଓଉଖଟା ଓ ଅଦାର ଡାଲମା, ଗଇଁଠା ପିଠା, ବେତକନ୍ଦା, କନ୍ଦମୂଳ ଆଦି ସାତ୍ତ୍ୱିକ ବସ୍ତୁ ଖାଇ ହବିଷ କରନ୍ତି । ହବିଷରେ ଲଙ୍କାମରିଚ ଖାଇବା ନିଷେଧ । ହବିଷ ଡାଲି/ତିଅଣ ବଘରା ହୁଏ ନାହିଁ । ହବିଷାଳୀମାନେ ଦେହ ଓ ମୁଣ୍ଡରେ ତେଲ ବ୍ୟବହାର କରନ୍ତି ନାହିଁ । କୁଶ ଆସନରେ ବସନ୍ତି ଓ ବ୍ରହ୍ମଚର୍ଯ୍ୟ ରକ୍ଷା କରନ୍ତି । ପୁରୀ ଶ୍ରୀମନ୍ଦିରରେ ହବିଷ୍ୟାଳୀମାନଙ୍କର କାର୍ତ୍ତିକ ମାସରେ ପ୍ରବଳ ଭିଡ଼ ହୁଏ । ରାଇଦାମୋଦର ପୂଜା ଜଗନ୍ନାଥ ଦର୍ଶନ, କାର୍ତ୍ତିକ ବ୍ରତ ପାଳନ ଓ କାର୍ତ୍ତିକ ମାହାତ୍ମ୍ୟ ପଠନ, ବାଲୁଙ୍ଗା ପୂଜା, ଅଭଡ଼ା ଭୋଜନ ଓ ଭଜନ ସଂକୀର୍ତ୍ତନରେ ଦିନ ଅତିବାହିତ ହୁଏ । (ପୂ.ଓ.ଭା. - ପୃ. ୮୯୩୮, ଓ.ସାଂ.ଶ. - ପୃ. ୩୬୧) ।

**ହରଚଣ୍ଡୀ ପଟନୀ ଶାଢ଼ୀ**-*ଦେ.ବି.*- ଏହା ଏକ ପ୍ରକାର ଶାଢ଼ୀ । ଏହା ବିଶେଷତଃ ପଣା ସଂକ୍ରାନ୍ତିରେ (ବିଷୁବ ସଂକ୍ରାନ୍ତି) ଠାକୁରଙ୍କ କାର୍ଯ୍ୟରେ ବ୍ୟବହୃତ ହୋଇଥାଏ ।
(ଶ୍ରୀ.ସ୍ୱ. ୨ୟ- ପୃ. ୧୬୫) ।

**ହରଚଣ୍ଡୀ ସାହି ଆଖଡ଼ା**-*ଦେ.ବି.*- ପୁରୀ ସହର ମଧ୍ୟସ୍ଥ ଏକ ସାହି । ଅନ୍ୟାନ୍ୟ ପୁରାତନ ସାହି ମଧ୍ୟରୁ ଅନ୍ୟତମ । ଠାକୁରଙ୍କ ଯାନିଯାତ୍ରାରେ ବିଭିନ୍ନ ସାହିର ଲୋକେ ଭିନ୍ନ ଭିନ୍ନ ଦିନରେ ଠାକୁରଙ୍କ ବେଢ଼ାରେ ପ୍ରସ୍ତାବମାନ କରନ୍ତି । ଭାଦ୍ର ଶୁକ୍ଳ ଦ୍ୱିତୀୟାରେ ହରଚଣ୍ଡୀ ସାହିର ଲୋକେ ନିକୁଞ୍ଜ ଲୀଳା ପ୍ରସ୍ତାବ କରିଥାନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୯୨) ।

**ହରି**-*ସଂ.ବି.*- ବିଷ୍ଣୁ, ଈଶ୍ୱର । ଯେ ସର୍ବଅମଙ୍ଗଳ ହରଣକାରୀ ମହାପ୍ରଭୁ । ପ୍ରେମଦାନ ଦ୍ୱାରା ମନୋହରଣକାରୀ ଈଶ୍ୱର । ଧର୍ମ-ଅର୍ଥ-କାମ-ମୋକ୍ଷ-ବାସନା ହରଣକାରୀ ପ୍ରଭୁ ।
(ଓ.ସାଂ.ଶ.- ପୃ. ୩୬୧) ।

**ହରି ଉତ୍ଥାନ ଏକାଦଶୀ**-*ଦେ.ବି.*- କାର୍ତ୍ତିକ ଶୁକ୍ଳ ଏକାଦଶୀ ହିଁ ହରି ଉତ୍ଥାନ ଏକାଦଶୀ । ବଡ଼ସିଂହାର ଭୋଗ ସରିବା ପରେ ଭିତରେ ମହାସ୍ନାନ ପୂଜା ହେବା ପରେ ମୁଦିରସ୍ତ ତିନି ଜଣ ପଣ୍ଡା ଖଟ ଶେଯ ଘର ଉପରକୁ ଯାଇ ତଡ଼ାଉ ଶୟନ ପେଡ଼ି ମୁଦ ଭାଙ୍ଗିବା ପରେ ମୁଦିରସ୍ତ ଶୟନ ପେଡ଼ି ଖୋଲି ପ୍ରାର୍ଥନା କରି କର୍ପୂର ଆଳତି, ଅଞ୍ଜଳି କରି ୩ ଗୋଟି ରୂପା ଥାଳିରେ ୩ ମହାପ୍ରଭୁଙ୍କୁ ବିଜେ କରାଇ ପଣ୍ଡାଙ୍କ ହାତରେ ଦେଲେ ପଣ୍ଡା ମହାସ୍ନାନରେ ପଡ଼ିଥିବା ଖଟୁଲିରେ ବିଜେ କରାଇ ମହାସ୍ନାନ ବଢ଼ାଇବେ । ମହାସ୍ନାନରେ ପଡ଼ିଥିବା ଖଟୁଲିରେ ବିଜେ କରାଇ ମହାସ୍ନାନ ବଢ଼ାଇବେ । ମହାସ୍ନାନ ପରେ ସିଂହାସନ ଉପରେ ବିଜେ କରନ୍ତି । ପଣ୍ଡା, ପତି, ମୁଦିରସ୍ତ ୩ ଗୋଟା ରୂପା ପିଙ୍ଗଣରେ, ଘଟୁଆରି ଘରଠାରୁ ଚନ୍ଦନ ବିଜେ କରାଇ ଆଣି ଚନ୍ଦନ ସର୍ବାଙ୍ଗ ଲାଗି ହୋଇବେ । ବଲ୍ଲଭ, ବଡ଼ସିଂହାର ଭୋଗ ଘଣ୍ଟ, ଛତା କାହାଳୀ ସହ ପଟୁଆରରେ ଆସି ଷୋଡ଼ଶ ଉପଚାରରେ ମଣୋହି ବଢ଼ିବ । ତା'ପରେ କର୍ପୂର ଆଳତି ବନ୍ଦାପନା ହୋଇ ଶୟନ ଠାକୁର ଭଣ୍ଡାରକୁ ବିଜେ କରିବେ । ଏହାପରେ ପଶୁପାଳକଙ୍କ ମଇଲମ ଓ ବିଡ଼ିଆ ମଣୋହି ଓ ପୁଷ୍ପାଞ୍ଜଳି ହୁଏ ।

**ହରିତାଳ ଭୂଇଁ**-ଦେ.ବି.- ଶ୍ରୀଠାକୁରଙ୍କ ଶ୍ରୀମୁଖର ପୀତରଞ୍ଜିତ ଅଂଶ । ହରିତାଳ ଘୋରି ହଳଦିଆ ରଙ୍ଗ ପ୍ରସ୍ତୁତ ହୁଏ ।
(ପୁ.ବୋ. - ପୃ. ୩୩୦) ।

**ହରିଣୀଘାଟ**-ଦେ.ବି.- ଶ୍ରୀକ୍ଷେତ୍ରକୁ ପ୍ରବେଶ କରିବା ପାଇଁ ଅନେକ ଘାଟ ଥିଲା । ବାଲୁଘାଟ (କୁଜଙ୍ଗ, କନିକା ଓ ଆଖପାଖ ଅଞ୍ଚଳର ଯାତ୍ରୀ ପାଇଁ) ଏହା ଗୁଣ୍ଡିଚା ଘର ପାର୍ଶ୍ୱଦେଇ ବର୍ତ୍ତମାନ ପୁରୀ କୋଣାର୍କ ସଂଯୋଗ ପଥରେ) । ସେହିପରି ମଙ୍ଗଳାଘାଟ, ଏହା ପାଖରେ ପାଇକ ସାହି ଥିଲା । (ୱେବ୍- ବିବରଣୀ ଅନୁଯାୟୀ) ହୁଲୁହୁଲିଆ ଘାଟ- (କର୍ମାଙ୍ଗୀରେ ବର୍ଣ୍ଣିତ) ଜେଲଖାନାରୁ କୁମ୍ଭାରପଡ଼ା ଆଗକୁ ରାସ୍ତା ଅଞ୍ଚଳ ଓ ସେହି ପାଖାପାଖି ଅଞ୍ଚଳ ହରିଣୀ ଘାଟ ରୂପେ ପରିଚିତ ଥିଲା । "କୁମ୍ଭାରପଡ଼ାକୁ ବାଟ, ଏ' ଅଟେ ହରିଣୀଘାଟ ।" ଏହା ହାଟ ଏବଂ ଘାଟ ବୋଲି ମଧ୍ୟ ବର୍ଣ୍ଣିତ । (ଶ୍ରୀମର୍ତ୍ତ୍ୟ ବୈକୁଣ୍ଠ, ଦାଣ୍ଡିମାଳସାହି ବର୍ଣ୍ଣନ) ମଙ୍ଗଳା ଓ ଅଠରନଳା ଘାଟର ଦେବୀ । ଶ୍ରୀକ୍ଷେତ୍ରର ଏ' ଘାଟରେ ଠାକୁରଙ୍କୁ ଭୋଗଲାଗି ହୁଏ ।
(ପୁ.ବୋ. - ପୃ. ୧୮୪-୧୮୫) ।

**ହରିବଲ୍ଲଭା ପସରା**-ଦେ.ବି.- ମହାଦେଈ (ରାଣୀ)ଙ୍କ ପାଖକୁ ଯାଉଥିବା ଡାଟ । ହରିବଲ୍ଲଭା ବା ହରିବଲ୍ଲଭୀ ହେଉଛନ୍ତି ଲକ୍ଷ୍ମୀ ।
(ପୁ.ବୋ. - ପୃ. ୩୩୦) ।

**ହରିବଂଶପୁର**- ପୁରୀର ଏକ ପ୍ରାଚୀନ ଜନବସତି । ସମ୍ଭବତଃ ଆଜିର ବଳଗଣ୍ଡି ଅଞ୍ଚଳ ହରିବଂଶପୁର ନାମରେ ପରିଚିତ ।

**ହରିଶୟନଏକାଦଶୀ**-ସଂ.ବି.- ଆଷାଢ଼ ଶୁକ୍ଳ ଏକାଦଶୀ । ଦଶମୀ ଦିନ ବାହୁଡ଼ା ଯାତ୍ରା ଦଶମୀରେ ତିନିରଥ ସିଂହଦ୍ୱାରେ ଲାଗିଯାଆନ୍ତି । ପରଦିନ ଶୁକ୍ଳ ଏକାଦଶୀ । ରଥ ଉପରେ ଠାକୁରଙ୍କର ଏକାଦଶୀ ନୀତି ଅନ୍ୟାନ୍ୟ ଏକାଦଶୀ ନୀତି ପରି । ବଡ଼ସିଂହାର ଭୋଗ ପରେ ମହାସ୍ନାନ, ପୂଜା ଠା' ହେଲା ପରେ ଭଣ୍ଡାର ମେକାପ ଭଣ୍ଡାରଘରୁ ୩ ମୂର୍ତ୍ତି ଶୟନ ଠାକୁରଙ୍କୁ ତିନିରଥକୁ ବିଜେ କରାନ୍ତି । ବଡ଼ବାଡ଼-ବାସୁଦେବ, ମଝିବାଡ଼-ଭୁବନେଶ୍ୱରୀ, ଶ୍ରୀଜଗନ୍ନାଥ ବାଡ଼- ଶ୍ରୀନାରାୟଣ । ଏହି ଠାକୁରମାନଙ୍କର ଶ୍ରୀଅଙ୍ଗ ଲାଗି ହେଲାପରେ ତିନି ପୂଜାପଣ୍ଡା ମହାସ୍ନାନ ବଢ଼ାନ୍ତି । ସର୍ବାଙ୍ଗଲାଗି, ନୂଆପତନି ଲୁଗା ଲାଗି ଓ ମାଳଫୁଲ ଲାଗି ହୁଅନ୍ତି । ତା'ପରେ ପାଣିପଡ଼ି ଟେରା ବନ୍ଧା ହୁଏ । ବଡ଼ସିଂହାର ଭୋଗ ରଥକୁ ଯାଏ । ବଡ଼ସିଂହାର ସରିବା ପରେ ଅଧିକ ଭୋଗ ହେଲେ ଏହାକୁ ବଲ୍ଲଭ ବଡ଼ସିଂହାର ଭୋଗ କହନ୍ତି । ଷୋଡ଼ଶ ଉପଚାରରେ ପୂଜା ହୁଏ । କର୍ପୂର ଆଳତି, ୩ ପୂଜାପଣ୍ଡା ୩ ରଥକୁ ବିଜେ ହୋଇଥିବା ଶୟନ ଠାକୁରଙ୍କୁ ହାତରେ ଧରି ମନ୍ଦିର ମଧ୍ୟରେ ସାତପାହାଚ ଜଗମୋହନ ଦେଇ ଭଣ୍ଡାର ଦୁଆରକୁ ଯାଆନ୍ତି । ସେଠାରେ ଶୟନ ଘର ଉପରେ କୋଠ ସୁଆଁସିଆ ଦେଇଥିବା ପେଡ଼ା ଡାଟ, ଦରଜି ଦେଇଥିବା ଶେଯମାଣ୍ଡିରେ ଶୟନ କରନ୍ତି । ମୁଦିରସ୍ତ ହାତୁଆଣି ନେଇ ପ୍ରସାଦ ଲାଗି, ପୁଷ୍ପାଞ୍ଜଳି, କର୍ପୂର ଆଳତି, ସାତକାହାଳି, ସାତବତୀ, ଦୁର୍ବାକ୍ଷତ, ବନ୍ଦାପନା କରି ପେଡ଼ା ବନ୍ଦ କରନ୍ତି । ପେଡ଼ା ଉପରେ ଖୋଳ ପକାନ୍ତି । ଅନ୍ୟାନ୍ୟ ସମସ୍ତେ ବାହାରକୁ ଆସିବା ପରେ ତଡାଉ କରଣ ଶୟନ ଘରଦ୍ୱାରକୁ ମଦନମୋହନଙ୍କ ମୁଦରେ ମୁଦ ଦିଅନ୍ତି । ଶୟନ ଏକାଦଶୀରେ ରଥ ଉପରେ ଅଧିକ ଭୋଗ ହୋଇଥାଏ ।
(ଶ୍ରୀ. ସ୍ୱ. ୨ୟ - ପୃ. ୮୨-୮୩, ପୂ.ଓ.ଭା. - ପୃ. ୮୯୮୨) ।

**ହରି ସହଦେବ**-ଦେ.ବି.- ଶ୍ରୀମନ୍ଦିରର ବଟବୃକ୍ଷର ପୂର୍ବଦିଗକୁ ହରି ସହଦେବଙ୍କ ମନ୍ଦିର ଅବସ୍ଥିତ । ଏକ ଛୋଟ ମନ୍ଦିର ମଧ୍ୟରେ ଏକ ଫୁଟ ଉଚ୍ଚତା ବିଶିଷ୍ଟ ଶିବଲିଙ୍ଗ ବିରାଜମାନ । ଲିଙ୍ଗର ପରିଧି ମଧ୍ୟ ଛୋଟ । ଲିଙ୍ଗର ସମ୍ମୁଖରେ ଏକ ମନୋହର ଠାଣିରେ ବୃଷଭ ବିଦ୍ୟମାନ । ହରି ସହଦେବ ଜଗନ୍ନାଥଙ୍କ ଗୋଧନର ମାଲିକ ।
(ଶ୍ରୀ.ସ୍ୱ. ୨ୟ- ପୃ. ୨୪୪) ।

**ହରିହର ବେଶ-ଦେ.ବି.-** ଶ୍ରୀମନ୍ଦିରରେ ହରିହର ବେଶରେ ବଡ଼ଠାକୁର ବଳଭଦ୍ରଙ୍କୁ ଭୂଷିତ କରାଯାଏ । ଏହି ବେଶ ଦୀପାବଳୀ ଅମାବାସ୍ୟାଠାରୁ କାର୍ତ୍ତିକ ପୂର୍ଣ୍ଣିମା ମଧ୍ୟରେ ପ୍ରତ୍ୟେକ ସୋମବାର ଦିନ ଅବକାଶ ପରଠାରୁ ବାଲ୍ୟଧୂପ ପର୍ଯ୍ୟନ୍ତ କରାଯାଏ । ବଡ଼ଠାକୁରଙ୍କ ଶ୍ରୀଅଙ୍ଗରେ ଅନେକ ଶ୍ୱେତବସ୍ତ୍ର ଲାଗି ହୋଇ ଅନ୍ୟ ଅର୍ଦ୍ଧେକ କୃଷ୍ଣବସ୍ତ୍ରରେ ମଣ୍ଡିତ କରାଯାଏ । ଧଳା ଓ କଳା ଉଭୟ ବସ୍ତ୍ରରେ ସଜ୍ଜିତ ବଳଭଦ୍ରଙ୍କର ଅପରୂପ ଶୋଭା ଦର୍ଶନ ପାଇ ଅନେକ ଲୋକ ଶ୍ରୀମନ୍ଦିରରେ ରୁଣ୍ଡ ହୁଅନ୍ତି ।

ବଳଭଦ୍ରଙ୍କୁ ବାସୁଦେବ ମନ୍ତ୍ରରେ ପୂଜା କରାଯାଉଥିବା ବେଳେ ଶ୍ରୀକଣ୍ଠାଦି ନ୍ୟାସ ବ୍ୟବହୃତ ହେଉଛି । ତତ୍ତ୍ୱତଃ ଏହା ହରିହର ସମନ୍ୱୟ ପୂଜା । ଶରୀର ତାଙ୍କର ଶିବ ହେଲାବେଳେ ମନ୍ତ୍ର ତାଙ୍କର ଭଗବତ୍ ବାସୁଦେବମନ୍ତ୍ର । ତେଣୁ ସେ ହରି (ବିଷ୍ଣୁ, ବାସୁଦେବ ମନ୍ତ୍ର) ଓ ହର (ମହାଦେବ, ଶ୍ରୀକଣ୍ଠାଦି ନ୍ୟାସ)ର ସମନ୍ୱୟ ଅଟନ୍ତି । ଏହି କାରଣରୁ କାର୍ତ୍ତିକ ମାସର ସୋମବାରରେ ତାଙ୍କର ଏହି ବେଶ କରାଯାଏ । କାର୍ତ୍ତିକ ସୋମବାରରେ ହରିଙ୍କର ବେଢ଼ା କରାଯାଏ ଓ ତାଙ୍କର ବାଳଭୋଗ ଶାସନ ଗ୍ରାମମାନଙ୍କରେ କରାଯାଏ । ସୋମବାର ଶିବଙ୍କର ଦିବସ ଭାବରେ ଗୃହୀତ ହୋଇଥିବାରୁ ସୋମବାର ଦିନ ଏହି ବେଶ କରାଯାଏ । ଶ୍ରୀକ୍ଷେତ୍ର ଏକ ସମନ୍ୱୟ କ୍ଷେତ୍ର ଭାବରେ ପରିଗଣିତ । ଏହା ଶୈବ, ଶାକ୍ତ ଓ ବୈଷ୍ଣବର ସମନ୍ୱୟପୀଠ । ତେଣୁ କାର୍ତ୍ତିକ ମାସରେ ୬ଟି ବିଷ୍ଣୁ ସମ୍ପର୍କିତ ବେଶ ଅନୁଷ୍ଠିତ ହେଉଥିବା ବେଳେ ଏହି ବେଶଟି ଶିବ ଏବଂ ବିଷ୍ଣୁ ଉଭୟଙ୍କର ସମନ୍ୱୟ ସାଧନ କରେ ।

ଭଗବାନ କହିଲେ, ଶିବଙ୍କୁ ସଂସ୍ଥାପନ କଲେ ମୋତେ ସଂସ୍ଥାପନ କରାଗଲା । ଆମେ ଏକ ମୂର୍ତ୍ତି ଦୁଇଭାଗ ହୋଇଛୁ । ଯେ ରୁଦ୍ର ସେ ବିଷ୍ଣୁ, ଯେ ବିଷ୍ଣୁ ସେ ରୁଦ୍ର । ପବନ ଆକାଶ ମଧ୍ୟରେ ଯେପରି ପ୍ରଭେଦ ନାହିଁ, ଆମ ଭିତରେ ସେପରି ପ୍ରଭେଦ ନାହିଁ । ପ୍ରାୟ ୭ମ ଶତାବ୍ଦୀ ସମୟରୁ ହରିହର ଚେତନା ଆବିର୍ଭାବ ହୋଇଥିଲା ବୋଲି ଜଣାଯାଏ । ଏହି ସପ୍ତମ ଶତାବ୍ଦୀରେ ଫୁଲବାଣୀର ଗାନ୍ଧାରାଡ଼ିଠାରେ ଶିବ ଓ ବିଷ୍ଣୁଙ୍କର ଏକତ୍ର ମନ୍ଦିର ପ୍ରତିଷ୍ଠା ହୋଇଥିଲା । ୮ମ ଶତାବ୍ଦୀରେ ଆଦିଶଙ୍କରାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁ, ଶ୍ରୀବଳଭଦ୍ରଙ୍କୁ ଶିବ ଓ ମା' ସୁଭଦ୍ରାଙ୍କୁ ଶକ୍ତି ରୂପେ ଗ୍ରହଣ କରି ଶୈବ - ବୈଷ୍ଣବ ମତବାଦର ସମନ୍ୱୟ ସୃଷ୍ଟି କରିଥିଲେ । ଅନେକ ଗବେଷକ ଜଗନ୍ନାଥଙ୍କୁ ଶିବ, ଏକ ପାଦ ଭୈରବ, ଭୈରବ ଇତ୍ୟାଦି ସ୍ୱରୂପରେ ପ୍ରତିଷ୍ଠା ବୋଲି ଜଣାଯାଏ । ଶିବଙ୍କର ଶତନାମ ମଧ୍ୟରୁ ଏକନାଥ ଜଗନ୍ନାଥ । ତାଙ୍କୁ ଭୁବନେଶ୍ୱର ଲିଙ୍ଗରାଜଙ୍କ ସହିତ ଅଭିନ୍ନ ବୋଲି କୁହାଯାଇଛି । ୧୨ଶ ଶତାବ୍ଦୀରେ ଚୋଳଗଙ୍ଗଦେବ ତ୍ରିଭୁବନେଶ୍ୱର, କୃତ୍ତିବାସ, ଶ୍ରୀଲିଙ୍ଗରାଜଙ୍କ ହରିହର ସ୍ୱରୂପକୁ ଉପଲବ୍ଧି କରି ସେହି ମତକୁ ଲିଙ୍ଗରାଜଙ୍କ ମନ୍ଦିରରେ ପ୍ରବର୍ତ୍ତନ କରାଇଥିବାରୁ ସେହିଦିନଠାରୁ ଲିଙ୍ଗରାଜଙ୍କର ଏକପାର୍ଶ୍ୱକୁ ହରି ଓ ଅନ୍ୟ ପାର୍ଶ୍ୱକୁ ହର ରୂପେ ଗ୍ରହଣ କରାଯାଏ । ଏଥିଯୋଗୁ ଜଗନ୍ନାଥଙ୍କ ମନ୍ଦିରରେ କାର୍ତ୍ତିକ ମାସରେ ସୋମବାର ଦିନ ବଳଭଦ୍ରଙ୍କୁ ହରିହର ବେଶ କରାଯାଇଥିବ ।

(ଶ୍ରୀଜ.ବେ.ର. - ପୃ. ୭୧) ।

**ହରିହର ଭେଟ-ଦେ.ବି.-** ହରିଙ୍କ ସହିତ ହର ଶିବଙ୍କର ଭେଟ । ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ଶିବ ଚତୁର୍ଦ୍ଦଶୀର ରାତ୍ର ଶେଷରେ ଶିବ ଓ ବିଷ୍ଣୁ ପ୍ରତିମା ଦ୍ୱୟଙ୍କର ପରସ୍ପର ଭେଟ ହେବାର ଏକ ମହୋତ୍ସବ । ଶ୍ରୀମନ୍ଦିରର ବଲ୍ଲଭ ଉତାରେ ଭଣ୍ଡାର ଲୋକନାଥ, ନୂଆପାଟ ଆଦି ଲାଗି ହୁଏ । ଲୋକନାଥଙ୍କ ସେବକ ଆସି ଏହାକୁ ହରିହର ଭେଟ ନିମନ୍ତେ ଶ୍ରୀଲୋକନାଥଙ୍କ ମନ୍ଦିରକୁ ନିଅନ୍ତି । ଉକ୍ତ ମନ୍ଦିରରେ ହରିହର ଅଧିବାସ ବାହୁଡ଼ାବିଜେ କରନ୍ତି ।

(ଶ୍ରୀ.ସ୍ୱ. ୨ୟ- ପୃ. ୧୧୦, ପୂ.ଓ.ଭା. ୭ମ - ପୃ. ୮୯୮୬) ।

**ହନୁମାନ-** ଶ୍ରୀକ୍ଷେତ୍ର ସର୍ବଧର୍ମ ଓ ସର୍ବ ମତାବଲମ୍ବୀମାନଙ୍କ ମିଳନ କ୍ଷେତ୍ର । ଶ୍ରୀରାମାନୁଜଚାର୍ଯ୍ୟ ଓ ବଲ୍ଲଭାଚାର୍ଯ୍ୟ ଶ୍ରୀକ୍ଷେତ୍ରକୁ ଆସିବା ଫଳରେ ଶ୍ରୀମନ୍ଦିରରେ ଶ୍ରୀରାମଚନ୍ଦ୍ରଙ୍କ ଉପାସନା ସହିତ ତାଙ୍କର ପ୍ରଧାନ ଭକ୍ତ ହନୁମାନଙ୍କ ଉପରେ ମଧ ପ୍ରାଧାନ୍ୟ ଦିଆଗଲା । ଶ୍ରୀମନ୍ଦିର ପରିସରରେ ଛୋଟ ବଡ଼ ଆକାରରେ ହନୁମାନ ପ୍ରାୟ ଏକ ଶହ ସତର ପାଷାଣ ମୂର୍ତ୍ତି ଓ ତନ୍ମଧ୍ୟରୁ ଏଗାର ଗୋଟି ଭିତ୍ତି ଚିତ୍ର ଦୃଷ୍ଟି ଗୋଚର ହୁଏ । ଶ୍ରୀମନ୍ଦିରର ଚାରି ଦ୍ୱାରାରେ ହନୁମାନ ମୂର୍ତ୍ତି ବିଦ୍ୟମାନ, ଯେକି ଶ୍ରୀମନ୍ଦିରକୁ ଚାରି ଦିଗରୁ ରକ୍ଷା କରିଥାନ୍ତି ।

**ଫତେ ହନୁମାନ** - ପୂର୍ବ ଦ୍ୱାର ବା ସିଂହ ଦ୍ୱାରରେ ଗୁମୁଟର ବାମପାର୍ଶ୍ୱରେ ବିଦ୍ୟମାନ ।

**କାନପତା ହନୁମାନ** - ପଶ୍ଚିମ ଦ୍ୱାର ନୀଳାଦ୍ରି ବିହାରକୁ ଲାଗିଥିବା(ଦ୍ୱାରର ବାମପାର୍ଶ୍ୱରେ) ବିରାଜିତ ।

**ଅଷ୍ଟଭୁଜ ହନୁମାନ** - ଦକ୍ଷିଣ ଦ୍ୱାର ବାହାର ବେଢ଼ାର ବାମପାର୍ଶ୍ୱରେ ଅବସ୍ଥିତ । ସେମାନେ ହେଲେ - ଜନ୍ମ ହନୁମାନ, ଗୟ, ଗବାକ୍ଷ, ସୁଷେଣ, ହନୁମାନ, ଜାମ୍ବବ, ତାରାକ୍ଷ, ଅଙ୍ଗଦ, ସୌରୀ, ନଳ, ନୀଳ ।

ବାଇଶି ପାହାଚର ବାମ ପାର୍ଶ୍ୱରେ ଥିବା ଶ୍ରୀରାମଚନ୍ଦ୍ର ଦେଉଳର ଅନ୍ୟାନ୍ୟ ବିଗ୍ରହଙ୍କ ସହ ହନୁମାନ ମୂର୍ତ୍ତି ।

ବାଇଶି ପାହାଚର ରୋଷ ରାସ୍ତାକୁ ଯାଇଥିବା ମାର୍ଗର ପ୍ରଥମ ସରଘର(ଯାହାକି ପୂର୍ବ ୟୁକୋ ବ୍ୟାଙ୍କର ଥିଲା) କାନ୍ଥରେ ପୂଜିତ ଏକ ହନୁମାନ ବିଗ୍ରହ ।

ବାଇଶି ପାହାଚରଉପର ଗୁମୁଟର ବାମପଟ କାନ୍ଥରେ ହନୁମାନ ମୂର୍ତ୍ତି ଦକ୍ଷିଣ ଦ୍ୱାର ରୋଷ ଦ୍ୱାର ନିକଟରେ ଏକ ନବନିର୍ମିତ ହନୁମାନ ବିରାଜିତ ।

ଦକ୍ଷିଣ ଦ୍ୱାର ବାହାର ବେଢ଼ାରେ ଥିବା ଶ୍ରୀରାମଚନ୍ଦ୍ର ମନ୍ଦିରରେ ଅଷ୍ଟ ଧାତୁ ନିର୍ମିତ ହନୁମାନ ।

ପଶ୍ଚିମ ପାର୍ଶ୍ୱସ୍ଥ ନୀଳାଚଳ ଉପବନ ମଧ୍ୟରେ ପଞ୍ଚମୁଖୀ ହନୁମାନ ।

ପଶ୍ଚିମ ଦ୍ୱାରଠାରେ ଥିବା ଚାରିଧାମ ମନ୍ଦିର ଭିତର କାନ୍ଥରେ ଶ୍ରୀରାମ ଲକ୍ଷ୍ମଣଙ୍କ ସହ କପିସେବା ମଧ୍ୟରେ ହନୁମାନ ଚିତ୍ର ।

ଉତ୍ତର ଦ୍ୱାର ତଳ ଗୁମୁଟର ପଶ୍ଚିମପଟ କାନ୍ଥର ଠଣାରେ ପ୍ରସ୍ତର ନିର୍ମିତ ହନୁମାନ ଉତ୍ତର ଦ୍ୱାର ବାହାରବେଢ଼ାରେ 'ତପସ୍ୱୀ ହନୁମାନ ।

କୋଇଲି ବୈକୁଣ୍ଠ ସୁଆର ମହାସୁଆର ନିଯୋଗ ପକ୍ସାର ଭିତର କାନ୍ଥରେ ଦୁଇଗୋଟି କ୍ଷୁଦ୍ର ହନୁମାନ । ନିଯୋଗ ତଳ ବାହାର ପଟକାନ୍ଥରେ ସାଢ଼େ ଛ'ଫୁଟ ଉଚ୍ଚ ହନୁମାନ ।

ଆନନ୍ଦ ବଜାରସ୍ଥ ସରକାରୀ ପସରା ଭିତରେପଥର ନିର୍ମିତ ହନୁମାନ ।

ଆନନ୍ଦ ବଜାର ଗୁମୁଟର ଆନନ୍ଦ ଆଡ଼କୁ ଥିବା ଗେଟ୍‌ର ଦୁଇ ପାର୍ଶ୍ୱରେ ଦୁଇ ଗୋଟି ପଥର ନିର୍ମିତ ହନୁମାନ ।

ଆନନ୍ଦ ବଜାର ପାଣିଘର ଭିତର ଉତ୍ତର ପଟ କାନ୍ଥରେ ଗୋଟିଏ ଓ ତାର କଡ଼ପଟ କାନ୍ଥରେ ଗୋଟିଏ ହନୁମାନ ଚିତ୍ର ରହିଛି ।

ଆନନ୍ଦ ବଜାରରେ ଥିବା ଚାହାଣୀ ମଣ୍ଡପ ସାମ୍ନାରେ ବରଗଛ ମୂଳରେ ପଥର ନିର୍ମିତ ଏକ ହନୁମାନ ମୂର୍ତ୍ତି । ଏତଦ୍ ବ୍ୟତୀତ ଭିତର ବେଢ଼ାର -

୧. ସତ୍ୟନାରାୟଣ ମନ୍ଦିରକୁ ଲାଗି ରହିଥିବା ମେରଦା ରୋଷ ଘରେ ହନୁମାନ ।

୨. ମେରଦାକୁ ଲାଗି ଥିବା ବର୍ଦ୍ଧମାନ ରାଜାଙ୍କ ରାଧାକୃଷ୍ଣ ମନ୍ଦିର ବାହାରେ ପୂର୍ବପଟ କାନ୍ଥରେ ପଥର ନିର୍ମିତ ହନୁମାନ ।

୩. ବନ୍ଦଘର ବାହର ପଟ କାନ୍ଥରେ ପଥର ତିଆରି ହନୁମାନ ।

୪. ସର୍ବମଙ୍ଗଳାଙ୍କ ମନ୍ଦିର ଜଗମୋହନ କାନ୍ଥର ଦୁଇପଟେ ଦୁଇଗୋଟି ହନୁମାନ ।

୫. ସର୍ବମଙ୍ଗଳାଙ୍କ ମନ୍ଦିର ଗର୍ଭଗୃହ ଦ୍ୱାର ଉପରେ ଏକଟି ହନୁମାନ ।

୬. ସୂର୍ଯ୍ୟ ଯନ୍ତ୍ର ମନ୍ଦିରର ପୂର୍ବପଟ ବାହାର କାନ୍ଥରେ ପଥରନିର୍ମିତ ହନୁମାନ ।

୭. ମୁକ୍ତିମଣ୍ଡକ ନିକଟସ୍ଥ ନୃସିଂହ ମନ୍ଦିର ଦ୍ୱାରର ଦୁଇ ପାର୍ଶ୍ୱରେ ଦୁଇଗୋଟି ହନୁମାନ ।
୮. ମୁକ୍ତେଶ୍ୱର ମହାଦେବଙ୍କ ମନ୍ଦିର ପଶ୍ଚିମ ପଟ ବାହାର କାନ୍ଥରେ ପଥର ନିର୍ମିତ ହନୁମାନ ।
୯. ମଣ୍ଡପ ଘର ଭିତରେ ହନୁମାନ ବିଗ୍ରହ ।
୧୦. ମହାଲକ୍ଷ୍ମୀଙ୍କ ମନ୍ଦିର ଜଗମୋହନ କାନ୍ଥରେ ଏକ ବଡ଼ ହନୁମାନ ଚିତ୍ର ।
୧୧. ନବଗ୍ରହ ମନ୍ଦିରରେ ହନୁମାନ ।
୧୨. ବିମାନ ଘର ଭିତରେ ହନୁମାନ ବିଗ୍ରହ ପୂଜିତ ।
୧୩. ସୂର୍ଯ୍ୟ ମନ୍ଦିର ବାହାର ଗୁମୁଟ ଉତ୍ତରପଟ କାନ୍ଥରେ ଅଷ୍ଟଧାତୁ ନିର୍ମିତ ହନୁମାନ ବିଗ୍ରହ ।
୧୪.ସୂର୍ଯ୍ୟମନ୍ଦିର ଗମ୍ଭୀରାଦ୍ୱାର ବାମଖମ୍ବ ଉପରେ ପଥର ତିଆରି ହନୁମାନ ।
୧୫. ସୂର୍ଯ୍ୟ ମନ୍ଦିର ଗାତ୍ରରେ(ପାଦୁକା କୁଣ୍ଡସାମ୍ନା) ହନୁମାନ ବିଗ୍ରହ ।
୧୬. ବେଦ ବିଦ୍ୟାଳୟ ଭିତର ଉତ୍ତର ପଟ କାନ୍ଥରେ ହନୁମାନ ।
୧୭. ବେଦ ବିଦ୍ୟାଳୟ ଭିତର ସେହି ଉତ୍ତର କବାଟ କାନ୍ଥରେ ହନୁମାନ ଚିତ୍ର ।
୧୮. ବେଦ ବିଦ୍ୟାଳୟ ବାହାରପଟ କାନ୍ଥରେ ପଥର ତିଆରି ହନୁମାନ ବିଗ୍ରହ ।
୧୯. ବେଦ ବିଦ୍ୟାଳୟ ନିକଟ ଶ୍ରୀରାମଚନ୍ଦ୍ର ମନ୍ଦିରରେ ହନୁମାନ ମୂର୍ତ୍ତି ।
୨୦. ଉତ୍ତର ଦ୍ୱାରସ୍ଥ କୋଇଲି ବୈକୁଣ୍ଠରେ ଥିବା ଫୁଲଘର ବାହାର କାନ୍ଥରେ ପଥର ତିଆରି ହନୁମାନ ।
୨୧. ଶ୍ରୀମନ୍ଦିର ଶାଖା କାର୍ଯ୍ୟଳୟ ମଧ୍ୟରେ ପଥର ତିଆରି ଷୋଳଟି ହନୁମାନ । ବାଇଶି ପାହାଚର ଦୁଇ ପାର୍ଶ୍ୱରେଥିବା ସରଘର ଗୁଡ଼ିକ ଭଙ୍ଗାଯିବା ପରେ ସେଠାରୁ ଉଦ୍ଧାର କରାଯାଇଥିବା ପନ୍ଦରଟି ହନୁମାନ ।
୨୨. ଶ୍ରୀମନ୍ଦିର ଶାଖା କାର୍ଯ୍ୟାଳୟ ନିକଟ ପ୍ରତିହାରୀ ନିଯୋଗ ପୂର୍ବପଟ ବାହାର କାନ୍ଥରେ ପଥର ତିଆରି ଏକ ହନୁମାନ ମୂର୍ତ୍ତି ଓ ନିଯୋଗ ଭିତରେ ଚାରିଟି ହନୁମାନ ମୂର୍ତ୍ତି ।
୨୩. ଭୋଗ ମଣ୍ଡପ ଗାତ୍ରରେ(ବାଇଶି ପାହାଚ ଗୁମଟ ସାମ୍ନା) ଏକ ପଥର ତିଆରି ହନୁମାନ ।
୨୪. ପୂଜା ପଣ୍ଡା ନିଯୋଗ ଭିତରେ ଥିବା ଅମୁଣିଆ ସରଘରେ ପଥରତିଆରି ଏକ ହନୁମାନ ।
୨୫. ମାଜଣା ମଣ୍ଡପ ଭିତରେ ଥିବା ପଶ୍ଚିମପଟ କାନ୍ଥରେ ହନୁମାନ ଚିତ୍ର ।
୨୬. ବେହରଣଦ୍ୱାର ପୂର୍ବପଟ କାନ୍ଥରେ ହନୁମାନ ଚିତ୍ର ରହିଛି ।
୨୭. ଦକ୍ଷିଣିଘର ବାହାର କାନ୍ଥରେ ହନୁମାନ ଚିତ୍ର ରହିଛି ।
୨୮. ନାଭିକଟା ମଣ୍ଡପରେ ପ୍ରସ୍ତର ନିର୍ମିତ ଏକ ମୂର୍ତ୍ତି ହନୁମାନ ।
୨୯. ଶ୍ରୀମନ୍ଦିର ଗାରଦ ଘରେ ଦୁଇଗୋଟି ହନୁମାନ ମୂର୍ତ୍ତି ।
୩୦. ଜଗମୋହନର ସାତ ପାହାଚକୁ ଲାଗି ପୂର୍ବପଟେ ଥିବା ପନ୍ତିଘର ମଧ୍ୟରେ ଦୁଇ ମୂର୍ତ୍ତି ହନୁମାନ ।
୩୧. ଶ୍ରୀମନ୍ଦିର ଭୋଗ ମଣ୍ଡପକୁ ଲାଗି ଥିବା ଶ୍ରୀ କୃଷ୍ଣଚନ୍ଦ୍ର ସୁବୁଦ୍ଧିଙ୍କ ସରଘର ବାହାର କାନ୍ଥରେ ପଞ୍ଚମୁଖୀ ହନୁମାନ ଚିତ୍ର ।
୩୨. ଜଗମୋହନରେ ଥିବା ଖମ୍ବ ମାନଙ୍କରେ ପାଞ୍ଚମୂର୍ତ୍ତି ହନୁମାନ ।
୩୩. ଭଣ୍ଡାରଘର ନିକଟରେ ଥିବା ମୁଦୁଲି ଆଲିମିରା ଠାରେ ପଥର ତିଆରି ଏକ ହନୁମାନ ।
୩୪. ମୁଖ୍ୟ ମନ୍ଦିର ବିମାନର ବେକିରେ ପୂର୍ବ ମୁଖ ହୋଇ ପ୍ରସ୍ତର ନିର୍ମିତ ହନୁମାନ ।
(ଶ୍ରୀ.ମ.ବେ.ଦେ.ଦେ.- ପୃ. ୧୩୭) ।

**ହରେକୃଷ୍ଣ**-*ବି*.- ଭଜନ ମନ୍ତ୍ର । ଅକ୍ଷର ମାତ୍ରିକ ଚତୁର୍ଦ୍ଧା ସ୍ୱରୂପ । ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ ଓ ସୁଦର୍ଶନ । (ଓ.ସାଂ.ଶ. - ୩୭୨) ।

**ହରେକୃଷ୍ଣ ଦେବ**-*ଦେ.ବି*.- ହରେକୃଷ୍ଣପୁର ଶାସନ ବସାଇଲେ । ଶ୍ରୀମନ୍ଦିରରେ ଚୁଳ ଦେଲେ । ଅଚିନ୍ତା ପହଣ୍ଡ ନିର୍ମାଣ କଲେ । ଗୁଣ୍ଡିଚା ଘର ମୁଖଶାଳା, ରୋଷ ଆଡ଼ର ଭୋଗମଣ୍ଡପ

ପଥରରେ ନିର୍ମାଣ କଲେ । ଯମେଶ୍ୱରଦେବଙ୍କ ମନ୍ଦିର ପଥରରେ ତିଆରି କଲେ ।
(ମା.ପା. - ପୃ. ୫୩) ।

**ହରେ ରାମ**-*ଦେ.ବି.*- ଉତ୍କଳୀୟ ବୈଷ୍ଣବମାନଙ୍କର ମହାମନ୍ତ୍ର । ଶ୍ରୀମନ୍ଦିରରେ ଭଜନ କୀର୍ତ୍ତନ ସମୟରେ ଏହା ଗାନ କରାଯାଏ ।
(ଉ.ସାଂ.ଶ. - ପୃ. ୩୭୨) ।

**ହଳଦୀପାଣି**-*ଦେ.ବି.*- ଶ୍ରୀକ୍ଷେତ୍ରରେ ବାହାର ଚନ୍ଦନଯାତ୍ରାର ଶେଷ ଦିନ । କୋଡିଏ ଦିନରେ ଭଉଁରୀ ଯାତ ହୋଇ ରାତ୍ର ଚାପ ନରେନ୍ଦ୍ରରେ ଏକୋଇଶି ଘେରା ବୁଲନ୍ତି । କୋଡିଏ ଦିନରେ ଦ୍ୱିପ୍ରହର ଧୂପ, ଯାତ୍ରାଙ୍ଗିଧୂପ ଏକାଠି ହୋଇ ପ୍ରଥମଦିନ ଭଳି ଚାପ କୂଳରେ ଲାଗିଲା ପରେ ରାମକୃଷ୍ଣ ମଦନମୋହନ ବନ୍ଦାପନା ପରେ ହଳଦୀପାଣି ପିଚିକାରୀ ଖେଳ ହୁଏ ।
(ଶ୍ରୀ.ସ୍ୱ. ୨ୟ - ୧୨୦) ।

**ହଳପତି**-*ଦେ.ବି.*- ବଳରାମ ବା ବଳଭଦ୍ର । ହଳ ହେଉଛି କୃଷି ସଭ୍ୟତାରେ କୃଷକର ଆୟୁଧ । ହଳ ଶ୍ରୀ ବଳରାମଙ୍କର ଆୟୁଧ । ତେଣୁ ତାଙ୍କୁ ହଳପତି କୁହାଯାଏ ।
(ଉ.ସାଂ.ଶ. - ୩୭୨) ।

**ହସ୍ତଖଣ୍ଡି**- ହଜାର ହଜାର ବର୍ଷ ଧରି ଶ୍ରୀକ୍ଷେତ୍ର ପୁରୀରେ ଯାତ୍ରୀ ଓ ଯାତ୍ରୀ ପଣ୍ଡାଙ୍କ ମଧ୍ୟରେ ହସ୍ତଖଣ୍ଡି ବା ଯାତ୍ରୀ ଖାତା ସହିତ ସମ୍ବନ୍ଧ ରହିଆସିଛି । ପଣ୍ଡାମାନେ ଦୂରଦୂରାନ୍ତରୁ ଯାତ୍ରୀ ସଂଗ୍ରହ କରି ଶ୍ରୀକ୍ଷେତ୍ରକୁ ଶ୍ରୀଜୀଉଙ୍କ ଦର୍ଶନ ନିମନ୍ତେ ଆଣିଥାଆନ୍ତି । ନିଜ ଗୃହରେ ରଖାଇ ଖାଦ୍ୟପେୟର ବ୍ୟବସ୍ଥା ମଧ୍ୟ କରିଥାଆନ୍ତି । ସେହି ଯାତ୍ରୀମାନଙ୍କଠାରୁ ଯାତ୍ରୀ ପଣ୍ଡା ସେମାନଙ୍କର ହସ୍ତଖଣ୍ଡି ଯାତ୍ରୀ ଖାତାରେ ତାଙ୍କର ଦସ୍ତଖତ ସହ ସମ୍ପୂର୍ଣ୍ଣ ଠିକଣା ରଖିଥାଆନ୍ତି ।
(ଶ୍ରୀ.ଜି. - ପୃ. ୩୫୨) ।

**ହଂସକେଳି**- *ଦେ.ବି.*- ଏକ ପ୍ରକାର ପିଷ୍ଟକ ବିଶେଷ । ଏହାର ଆକାର ବଡ଼ । ବଡ଼ ହଂସକେଳି, ସାନ ହଂସକେଳି । ଏହା ଦେବସ୍ନାନ ପୂର୍ଣ୍ଣିମାରେ ଠାକୁରଙ୍କ ପୂଜାରେ ଅର୍ପଣ କରାଯାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୧୦, ପୂ.ଓ.ଭା. - ୮୯୮୬) ।

**ହଂସବଲ୍ଲଭ ପସରା**-*ଦେ.ବି.*- ମହାରାଜ ଗଜପତିଙ୍କ ନିକଟକୁ ଶ୍ରୀମନ୍ଦିରରୁ ଯାଉଥିବା ଟାଟ । ବର୍ତ୍ତମାନ ହରିବଲ୍ଲଭ ଓ ହଂସବଲ୍ଲଭର ବ୍ୟବହାର ଆଉ ନାହିଁ । ତଥାପି ପୁରୀ ରାଜ ପରିବାରରେ ସ୍ୱନକ୍ଷତ୍ର ଓ ଶ୍ରାଦ୍ଧରେ ଶ୍ରୀମନ୍ଦିରରୁ (ଦ୍ୱିପ୍ରକାର ଧୂପ) ଆସୁଥିବା ଟାଟକୁ ହରିବୋଲ (ହରିବଲ୍ଲଭ) ଟାଟ କୁହାଯାଉଛି ।
(ପୁ.ବୋ.- ପୃ. ୩୩୧) ।

**ହଂସବଲ୍ଲଭ ହୁକୁମ**-*ଦେ.ବି.*- ଗଜପତି ମହାରାଜଙ୍କ ଆଦେଶକୁ କୁହାଯାଏ ।
(ପୁ.ବୋ. - ପୃ. ୩୩୧) ।

**ହୟଗ୍ରୀବ ଠାକୁର**-*ଦେ.ବି.*- ଶ୍ରୀମନ୍ଦିର ଭିତର ବେଢ଼ାରେ ପାତାଳେଶ୍ୱର ମହାଦେବଙ୍କ ଉପର ପାର୍ଶ୍ୱରେ ଏକ ଅଂଶରେ ବିରାଜମାନ ଠାକୁର ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୧୯) ।

**ହାଣ୍ଡି**-*ଦେ.ବି.*- ମାଟିରେ ନିର୍ମିତ ପାତ୍ର । ମାଟିରେ ବଡ଼ ଛୋଟ ଆକାରରେ ପାତ୍ରମାନ ନିର୍ମିତ ହୁଏ । ଯେଉଁଥିରେ ମହାପ୍ରସାଦ ବିକ୍ରୟ ହୁଏ । ରୋଷଘରୁ ମଧ୍ୟ ମାଟି ହାଣ୍ଡିରେ ଠାକୁରଙ୍କ ପାଖକୁ ଭୋଗ ଆସେ । ଆନନ୍ଦ ବଜାରରେ ମଧ୍ୟ ଛୋଟବଡ଼ ମାଟିପାତ୍ର ବା କୁଡୁଆ ଓ ଓଳିରେ ମହାପ୍ରସାଦ ବିକ୍ରୟ ମଧ୍ୟ ହୁଏ । ହାଣ୍ଡି ବିଭିନ୍ନ ପ୍ରକାର । ବାଇହାଣ୍ଡି - ବୃହତକାୟ ହାଣ୍ଡି- ଏହା ସବୁଠାରୁ ବଡ଼ହାଣ୍ଡି । ସମାଧି ହାଣ୍ଡି । ଦାସିଆ ହାଣ୍ଡି- ବଡ଼ ମାଟି ହାଣ୍ଡି - ଭକ୍ତ ଦାସିଆ ନାମରେ ନାମିତ । ଏମାର ହାଣ୍ଡି । ଅଧର ହାଣ୍ଡି- ଆଷାଢ଼ ଶୁକ୍ଳ ଦଶମୀରେ ରଥ ପୁନର୍ବାର ସିଂହଦ୍ୱାରକୁ ଆସେ ଏବଂ ରଥ ଉପରେ ଏକାଦଶୀ ଦିନ ଅଧର ପଣା ହୁଏ । ଠାକୁରଙ୍କ ଅଧର ପର୍ଯ୍ୟନ୍ତ ଲାଗୁଥିବା ଉଚ୍ଚା ବଡ଼ ହାଣ୍ଡିରେ ଏ ପଣା ତିଆରି ହୁଏ । ଏଣୁ ଏହାକୁ ଅଧର ହାଣ୍ଡି କୁହାଯାଏ ।
(ପୁ.ବୋ. - ପୃ. ୨୦୪, ୨୫୯, ୧୬୭) ।

**ହାଣ୍ଡିକରଣ**-*ଦେ.ବି.*- ଶ୍ରୀମନ୍ଦିରର କରଣ ସେବକ ବିଶେଷ । ରୋଷଘରକୁ ଅଣାଯାଉଥିବା ଜିନିଷର ହିସାବପତ୍ର ରଖନ୍ତି । ହାଣ୍ଡିର ସଂଖ୍ୟା, ମଠାଧାରୀମାନେ ଦେଉଥିବା ଭୋଗର ପରିମାଣର ହିସାବ ରଖି ତା' ପରଦିନ ଦେଉଳକରଣଙ୍କୁ ଦେଉଥିଲେ ।
(ପୁ.ବୋ. - ପୃ. ୩୩୦/୩୧୬) ।

**ହାଣ୍ଡି କୁଡୁଆ**- ଶ୍ରୀଜୀଉଙ୍କ ପ୍ରସାଦ ପ୍ରସ୍ତୁତ ନିମନ୍ତେ କୁମ୍ଭାରମାନେ ଯୋଗାଉଥିବା ମାଟିପାତ୍ର । ଏଗୁଡ଼ିକ ହେଲା- ଅଙ୍ଗବାସ ଓଳି, ଏମାରହାଣ୍ଡି, ଚକଓଳି, ଚିପେଇ ହାଣ୍ଡି, ଡଳା କୁଡୁଆ, ଥାଳି କୁଡ଼ିଆ, ଦାସିଆ, ଦିଆପି ଅଟିକା, ନମ୍ବରୀ କୁଡୁଆ, ନରସିଂହ ନାଥିଆ, ପଖାଳ ଓଳି, ପଲମ ବା ହାଣ୍ଡି, ତାଡ଼, ପାଇକିଆ ଓଳି, ପାଳିସରା, ପୁଲିସରା, ବଡ଼ତାଡ଼, ବଡ଼ମଠ କୁଡୁଆ ବାଇହାଣ୍ଡି, ଭାତ କୁଡୁଆ, ମଝା ଲସରା, ଓଳି, ମୁଗ ସମାଧି, ସାନ ତାଡ଼ ଓ ସାନମଠ କୁଡୁଆ ।
(ଶ୍ରୀ.ଜି. - ପୃ. ୧୮୬) ।

**ହାଣ୍ଡି ଯୋଗାଣିଆ ସେବା**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ରାତିରେ ହେଉଥିବା ଭୋଗମାନଙ୍କରେ ଛେକ ଆଗରେ ଦୀପ ଦେଖାଇ ଯାଉଥିବା ସେବକ ବିଶେଷ । ଏ ସେବକ ହାଣ୍ଡି ଯୋଗାଣିଆ ଭାବରେ ମଧ କାର୍ଯ୍ୟ କରିଥାନ୍ତି । କୁମ୍ଭାର କୋଠଭୋଗ ନିମନ୍ତେ ଆବଶ୍ୟକୀୟ ମାଟିପାତ୍ର ଓ ମୁଦ ପାଇଁ ମାଟି ଏହାଙ୍କ ମାର୍ଫତରେ ଦିଅନ୍ତି ।
(ଶ୍ରୀ.ସ୍ୱ. ୪ର୍ଥ - ପୃ. ୩୨/୩୩, ପୁ.ବୋ. - ୩୩୦/୨୧୧) ।

**ହାତପୋଛା ଅମାଲୁ**-*ଦେ.ବି.*- ଏକ ପ୍ରକାର ଅମାଲୁ ଯାହା ଠାକୁରମାନଙ୍କୁ ଭୋଗରେ ଅର୍ପଣ କରାଯାଏ ।
(ପୁ.ବୋ. - ପୃ. ୩୩୦) ।

**ହାତୀବେଶ**-*ଦେ.ବି.*- ଜ୍ୟେଷ୍ଠ ପୂର୍ଣ୍ଣମା ହେଉଛି ସ୍ନାନପୂର୍ଣ୍ଣମା । ସ୍ନାନମଣ୍ଡପରେ ବିଧିବିଧାନ ଅନୁସାରେ ଶ୍ରୀଠାକୁରମାନେ ରତ୍ନସିଂହାସନରୁ ଆସି ସ୍ନାନମଣ୍ଡପରେ ବିଜେ କରନ୍ତି । (ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ) ସ୍ନାନ ସକାଶେ ସୁନାକୂଅରୁ ଜଳ ଆଣିବେ । ମୁଦିରସ୍ତ ଗଦି ପ୍ରସାଦ ଲାଗି କରାଇବେ । ଷୋଡ଼ଶ ଉପଚାର ପୂଜା ବଢ଼ିଲା ପରେ ଗରାବଡୁମାନେ ଚନ୍ଦନ ମିଶ୍ରିତ ଜଳ ରୁପା ପିଙ୍ଗଣରେ ଜଳଦିଅନ୍ତି । ଜଳ ଲାଗି ହୁଏ । ସ୍ନାନ ପରେ ଗୋପାଳ ତୀର୍ଥ ମଠ ରାଘବ ଦାସ ମଠରୁ ଅନ୍ୟ ଦୁଇବାଡ଼ର ବେଶ ଉପକରଣ ଆସେ । ମୁଦିରସ୍ତ ସ୍ନାନମଣ୍ଡପରେ ଛେରାପହଁରା କରନ୍ତି । ପାଳିଆ, ପଶୁପାଳକ ଓ ଦଇତାପତିମାନେ କାଠଘୋଡ଼ା ଉପରେ ଚଢ଼ି ୩ ବାଡ଼ରେ ହାତୀବେଶ କରନ୍ତି । ଏହାପରେ ୩ ବାଡ଼ରେ କର୍ପୂର ଆଳତି ହୁଏ । ଏହିଠାରେ ନୀତିକାନ୍ତି ଅନୁସାରେ ସକାଳଧୂପ । ତା'ପରେ ପଣ୍ଡା, ପତି ଓ ମୁଦିରସ୍ତ ବନ୍ଦାପନା କରିବେ । ଏହାପରେ ସର୍ବସାଧାରଣଙ୍କ ଦର୍ଶନ ନିମନ୍ତେ ସାହାଣମେଲା ହୋଇଥାଏ । ହାତୀବେଶ ପ୍ରସ୍ତୁତିରେ ମୁଖ୍ୟତଃ ଧଳା, କଳା ରଙ୍ଗର ଭେଲଭେଟ୍ ଓ ସିଲ୍କ କନା ଜରି, ସୋଲ, କଦଳୀ ପଟୁକା, ଜମ୍ବୁରା, କଇଥ ଅଠା ପ୍ରଭୃତି ଉପକରଣ ଆବଶ୍ୟକ ହୋଇଥାଏ । ଏହି ବେଶ ସ୍ନାନ ପରେ ହୋଇଥାଏ । ବେଶ ବଢ଼ିବା ପରେ କର୍ପୂର ଲାଗି ହୋଇ ସ୍ନାନବେଦୀ ଭୋଗ ପାଇଁ ଶୋଧ କରାଯାଏ । ଠାକୁରଙ୍କର ହାତୀବେଶ ଓଲାଗି ପରେ ସ୍ନାନବେଦୀରେ ଅନ୍ୟାନ୍ୟ ନୀତି ସମ୍ପାଦନ ହୁଏ ।
(ଶ୍ରୀଜ.ବେ.ର. - ପୃ. ୩୨) ।

**ହାତୁଆଣି**-*ଦେ.ବି.*- ଗଜପତି ରଥଯାତ୍ରାରେ ଛେରାପହଁରା ବେଳେ ଗରାବଡୁଠାରୁ ହାତୁଆଣି ନେଇ ହାତ ପଖାଳି ପୁଷ୍ପାଞ୍ଜଳି ଦିଅନ୍ତି । କର୍ପୂର ଆଳତି କରନ୍ତି । ସୁନା ଚାମର ପକାନ୍ତି । ତା' ଉପରେ ତଳକୁ ଆସି ରାଜଗୁରୁଠାରୁ ସୁନା ଖଡ଼ିକା ନେଇ ଛେରାପହଁରା କରନ୍ତି । ଦୁଆର ଫିଟା ମଙ୍ଗଳ ଆଳତି ବେଳେ ମଧ ଗରାବଡୁ ହାତୁଆଣି ପାଳିଆ ପଶୁପାଳକଙ୍କୁ ଦିଅନ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୨/୭୦) ।

**ହାତେ ଦେଉଳରେ ବାଇଶ ହାତ ଦିଅଁ** - *ଦେ.ବି.*- ଶ୍ରୀମନ୍ଦିରର ସିଂହଦ୍ୱାର ଗୁମୁଟରେ ଏକ ଖୋପରେ ସ୍ଥାପିତ ନୃସିଂହ ମୂର୍ତ୍ତି ।
(ଶ୍ରୀ.ସ୍ୱ. ୨ୟ - ପୃ. ୨୫୮) ।

**ହାନ୍ଦୋଳା**-*ଦେ.ବି.*- ପାଲିଙ୍କି ବିଶେଷ । ଚନ୍ଦନ ବିଜେ କାଳରେ ଠାକୁର ରାମକୃଷ୍ଣ ଓ ଠାକୁର ଯେଉଁଥିରେ ନରେନ୍ଦ୍ର ପୁଷ୍କରିଣୀ ବିଜେ କରନ୍ତି । ଶିବିକା, ଦୋଳା, ପାଲିଙ୍କି, ସବାରୀ ଆଦି ଯାନର ଆଗରେ ପଛରେ ଲାଗିଥିବା ବାଉଁଶ ଦ୍ୱୟକୁ ମନୁଷ୍ୟ (ଗଉଡ଼ମାନେ) କାନ୍ଧରେ କାନ୍ଧେଇକରି ନିଅନ୍ତି । ବିଶେଷକରି ହାନ୍ଦୋଳା ରାଜପରିବାରର ନାରୀମାନଙ୍କୁ ବହନ କରାଇବାରେ ବ୍ୟବହୃତ ହେଉଥିଲା । ଏହାକୁ ବାହକମାନେ ବୋହି ନେଲା ବେଳେ ଏହା ଆନ୍ଦୋଳିତ ହେଉଥିବାରୁ ଏହାର ନାମ ହାନ୍ଦୋଳା ।
(ଓ.ସାଂ.ଶ. - ପୃ. ୩୭୩) ।

**ହାନ୍ଦୋଳା ବଡୁ**-*ଦେ.ବି.*- ଶ୍ରୀମନ୍ଦିରର ଏକ ସେବକ ବିଶେଷ । ଠାକୁର ଠାକୁରାଣୀଙ୍କ ହାନ୍ଦୋଳା କାନ୍ଧେଇବା ସେବକ ।
(ପୁ.ବୋ.- ପୃ. ୩୩୦) ।

**ହ୍ଲାଦିନୀ ଶକ୍ତି**-*ସଂ.ବି.*- ଭଗବାନ ନିଜେ ଆହ୍ଲାଦ ସ୍ୱରୂପ ହୋଇ ଯେଉଁ ଶକ୍ତି ଦ୍ୱାରା ନିଜେ ଆନନ୍ଦିତ ହୁଅନ୍ତି ଏବଂ ଭକ୍ତମାନଙ୍କୁ ଆହ୍ଲାଦିତ କରାନ୍ତି ।
(ଓ.ସାଂ.ଶ. - ପୃ. ୩୭୬) ।

**ହିଙ୍ଗୁଳ ଭୂଇଁ**-*ଦେ.ବି.*- ଠାକୁରଙ୍କ ଶ୍ରୀମୁଖର ଲୋହିତ ରଙ୍ଗ ରଞ୍ଜିତ ଅଂଶ । ହିଙ୍ଗୁଳାକୁ ବଟାଯାଇ ନାଲିରଙ୍ଗ ପ୍ରସ୍ତୁତ ହୁଏ ।
(ପୁ.ବୋ. - ପୃ. ୩୩୦) ।

**ହିନ୍ଦୁଳ**-*ଦେ.ବି.*- ହିନ୍ଦୁଳ- ହେଙ୍ଗୁକୁ ବୁଝାଏ ।
(ଶ୍ରୀ.ସ୍ୱ. ୨ୟ - ପୃ. ୧୦୦) ।

**ହ୍ରୀଂ**-*ସଂ.ବି.*- ହରି, ବଳଭଦ୍ର, ଶ୍ୱେତବର୍ଣ୍ଣ, ଯଜୁର୍ବେଦ, ତମୋଗୁଣ, ଉକାର ।
(ଓ.ସାଂ.ଶ.- ପୃ. ୩୭୬) ।

**ହ୍ଲୀଂ ଶ୍ଲୀଂ କ୍ଲୀଂ**-*ସଂ.ବି.*- ହରେ ରାମ କୃଷ୍ଣ । ହ୍ଲୀଂ- ହରେ ବଳଭଦ୍ର, ଶ୍ଲୀଂ- ରାମ ସୁଭଦ୍ରିକା, କ୍ଲୀଂ- କୃଷ୍ଣ ଜଗନ୍ନାଥ ।
(ଓ.ସାଂ.ଶ. - ପୃ. ୩୭୬) ।

**ହୁଳହୁଳି**-*ଦେ.ବି.*- ସ୍ତ୍ରୀମାନଙ୍କର ଜିହ୍ୱା ଦ୍ୱାରା ମୁଖବାଦ୍ୟ ବା ହୁଳହୁଳି ଧ୍ୱନି । ଭକ୍ତ ଭକ୍ତିରେ ବିଭୋର ହୋଇ ଠାକୁରଙ୍କୁ ସନ୍ତୁଷ୍ଟ ମନରେ ଯେପରି ହରିବୋଲ ଡାକ ଦିଅନ୍ତି, ସ୍ତ୍ରୀମାନେ ପୂଜା ଓଷାଦିରେ ସେହିଭଳି ଭକ୍ତିରେ ବିଭୋର ହୋଇ ହୁଳହୁଳି ଦିଅନ୍ତି । ପ୍ରତ୍ୟେକ ଆଧାତ୍ମିକ ପୀଠରେ, ଆନନ୍ଦ ଉତ୍ସବ ତଥା ଶୁଭ ଓ ମାଙ୍ଗଳିକ କାର୍ଯ୍ୟରେ ପୁରୁଷମାନଙ୍କର ହରିବୋଲ ସହ ତାଳଦେଇ ସ୍ତ୍ରୀମାନେ ହୁଳହୁଳି ଧ୍ୱନି ଦେଇଥାନ୍ତି । ହୁଳହୁଳି ଏକ ଦେବୀଙ୍କର ନାମ । ମଠ, ମନ୍ଦିର, ବିବାହ, ବ୍ରତ ଓ ଅନ୍ୟାନ୍ୟ ପ୍ରତ୍ୟେକ ଶୁଭ ମାଙ୍ଗଳିକ କାର୍ଯ୍ୟରେ ହୁଳହୁଳି ଧ୍ୱନି ଦିଆଯାଇଥାଏ । ଶ୍ରୀମନ୍ଦିରରେ ପ୍ରତ୍ୟକ ଦିନ ଆଳତୀ ସମୟରେ ପହଡ ଖୋଲିଲା ବେଳେ ଶୃଙ୍ଗାର ବେଶ ସମୟରେ ବିଭିନ୍ନ ପର୍ବପର୍ବାଣିରେ ବିଶେଷ କରି ବିଗ୍ରହମାନଙ୍କର ରଥଯାତ୍ରରେ ପହଣ୍ଡି ବେଳେ, ରଥା ରୁଢ଼ ବେଳେ ଗଜପତିଙ୍କ ରାଜନୀତି ସମୟରେ ଏବଂ ଗୁଣ୍ଡିଚା ମନ୍ଦିର ଅଭିମୁଖେ ରଥ ଚାଲିବା ବେଳେ ସ୍ତ୍ରୀମାନେ ହୁଳ ହୁଳି ଦେଇଥାନ୍ତି ।
(ଓ.ସାଂ.ଶ. - ପୃ. ୩୭୪) ।

**ହେଣ୍ଡିଆ**-*ଦେ.ବି.*- ଶାସନ ଗ୍ରାମର ସେବକ ବିଶେଷ । (ରାଜନିଯୁକ୍ତ)
(ପୁ.ବୋ. - ପୃ. ୩୩୦) ।

**ହେମାନୁ କଞ୍ଚଜପ**-*ଦେ.ବି.*- ଶ୍ରୀମନ୍ଦିରରେ ଭୋଗ ସରିବା ପରେ ଯେଉଁ ଜପ କରାଯାଏ ।
(ଶ୍ରୀ.ଶ.- ପୃ. ୧୭୪) ।

**ହେରା**-*ଦେ.ବି.*- ଦର୍ଶନ, ଦେଖିବା ବା ଭେଟ ହେବା ।
(ଓ.ସାଂ.ଶ. - ପୃ. ୩୭୪) ।

**ହେରାଗୋହିରୀ**-*ଦେ.ବି.*- ହେରାଗୋହିରୀ- ପୁରୀ ସହରରେ ଥିବା ଗୋଟିଏ ସାହିର ନାମ ବିଶେଷ । ଏହା କୁଣ୍ଢେଇବେଣ୍ଟ ସାହିର ଏକ ଅଂଶ ବିଶେଷ । ରଥଯାତ୍ରା ସମୟରେ ହେରାପଞ୍ଚମୀ ଦିନ (ଆଷାଢ଼ ଶୁକ୍ଳ ପଞ୍ଚମୀ ଦିନ) ମହାଲକ୍ଷ୍ମୀ ଜଗନ୍ନାଥଙ୍କ ରଥର ଏକ କ୍ଷୁଦ୍ରାଂଶ ଭାଙ୍ଗିଦେଇ ଗୁଣ୍ଡିଚା ମନ୍ଦିରରୁ ଶ୍ରୀମନ୍ଦିରକୁ ଏହି

ହେରାଗୋହିରୀ ସାହି ଦେଇ ଫେରିଥାନ୍ତି । କାହାରି କାହାରି ମତରେ ହରଗଉରୀ ସାହି । (ଶ୍ରୀ.ସ୍ୱ. ୨ୟ - ପୃ. ୭୧/୭୨) ।

**ହେରାପଞ୍ଚମୀ**-*ଦେ.ବି.*- ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସମୟରେ ଗୁଣ୍ଡିଚା ମନ୍ଦିରରେ ଏହି ଉତ୍ସବ ଆଷାଢ଼ ଶୁକ୍ଳ ଷଷ୍ଠୀ ତିଥିରେ ଏହି ଯାତ୍ରା ପାଳିତ ହୋଇଥିଲେ ହେଁ ବାସ୍ତବରେ ଶ୍ରୀଗୁଣ୍ଡିଚା ରଥଯାତ୍ରାର ପଞ୍ଚମ ଦିବସରେ ଅନୁଷ୍ଠିତ ହେଉଥିବାରୁ ଏହା ହେରାପଞ୍ଚମୀ ନାମରେ ପରିଚିତ ।

ଆଷାଢ଼ ଶୁକ୍ଳ ଦ୍ୱିତୀୟାରେ ଶ୍ରୀଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରା କରିବା ପରେ ମା' ମହାଲକ୍ଷ୍ମୀ ପ୍ରାଣାଧିକ ମହାପ୍ରଭୁଙ୍କର ଅନୁପସ୍ଥିତିରେ ଶ୍ରୀମନ୍ଦିରରେ ଏକ ଦୁର୍ବିସହ ଜୀବନଯାପନ କରିଥାନ୍ତି । କ୍ରମେ ଚାରିଦିନ ବିତିଯିବା ପରେ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରକୁ ନ ଫେରିବାରୁ ଶ୍ରୀ ମହାଲକ୍ଷ୍ମୀ ଠାକୁରାଣୀ ଭଗ୍ନିକଳ୍ପ ବିମଳାଙ୍କଠାରୁ ପ୍ରତିକାର ଜିଜ୍ଞାସା କରି ମୋହଚୂର୍ଣ୍ଣ ପ୍ରକ୍ଷେପ ଦ୍ୱାରା ପ୍ରାଣନାଥଙ୍କୁ ବଶୀଭୂତ କରିବା ଉଦ୍ଦେଶ୍ୟରେ ଗୁଣ୍ଡିଚା ମନ୍ଦିରକୁ ବିଜେ କରନ୍ତି । ଲକ୍ଷ୍ମୀ ଶ୍ରୀଗୁଣ୍ଡିଚାରେ ଶ୍ରୀଜଗନ୍ନାଥଙ୍କୁ ହରାଇ ତାଙ୍କ ଅନ୍ୱେଷଣରେ ଯାଉଥିବାରୁ ଏହା ହେରାପଞ୍ଚମୀ ନାମରେ ନାମିତ । ଏହିଦିନ ଲକ୍ଷ୍ମୀ ବିଜୟ କରିଥିବାରୁ ଏହାର ନାମ ଲକ୍ଷ୍ମୀ ବିଜୟ ଉତ୍ସବ ବୋଲି 'ଚୈତନ୍ୟ ଚରିତାମୃତ'ରେ ବର୍ଣ୍ଣିତ । ଆଷାଢ଼ ଶୁକ୍ଳ ଷଷ୍ଠୀ ରଥଯାତ୍ରାର ପଞ୍ଚମ ଦିନ । ଭଣ୍ଡାର ଘରେ ବିଜେ ହୋଇଥିବା ଲକ୍ଷ୍ମୀଙ୍କୁ ପାଳିଆ ମହାଜନମାନେ ମାଜଣା କରନ୍ତି । ବନକ ଲାଗି ହୁଅନ୍ତି । ଚାଙ୍ଗଡ଼ ମେକାପ ଦେଇଥିବା ପାଟଶାଢ଼ୀ, ଭଣ୍ଡାର ଘରୁ ଯାଇଥିବା ଅଳଙ୍କାର ଲାଗି ହୁଅନ୍ତି । ପାଳିଆ ମେକାପ ପଢ଼ିଆରୀ, ମୁଦୁଲି ଦେବା ପନ୍ତି ଭୋଗ ପୂଜାପଣ୍ଡା ଭୋଗ କରନ୍ତି । ମହାଜନମାନେ ବିଜେ କରାଇ ନେଇ ବଟ ତଳେ ଥିବା ବିମାନରେ ବସାଇ ଘଣ୍ଟ କାହାଳୀ ବାଜା ସହ ବିମାନବଡୁମାନେ ବିମାନକୁ ସିଂହଦ୍ୱାର ଦେଇ ବଡ଼ଦାଣ୍ଡରେ ଗୁଣ୍ଡିଚାଘରକୁ ନେଇ ମହାପ୍ରଭୁଙ୍କ ରଥ ପାଖରେ ଠିଆ କରାନ୍ତି । ଏଠାରେ ପତି ମହାପାତ୍ରେ ଘୋଡ଼ା ଉପରେ ଠିଆହୋଇ କାଠଘୋଡ଼ା ମନ୍ଦିରରୁ ଯାଇଥାଏ ପ୍ରସାଦ ଲାଗି, ବନ୍ଧାପନା ଓ ଚାମର ଲାଗି କରନ୍ତି । ଘସା ବିଡ଼ିଆ ଓ ଦହିପତି ମଣୋହି କରନ୍ତି । ଏ ମଧ୍ୟରେ ଗୁଣ୍ଡିଚା ଘରେ ଠାକୁରଙ୍କ ମଧ୍ୟାହ୍ନ ଧୂପ ପରେ ଶାଢ଼ୀ ଲାଗି ହୋଇ ଆରତି ବଢ଼େ । ମହାପ୍ରଭୁଙ୍କ ବାଡ଼ରେ ମହାସ୍ନାନ ବଢ଼େ । ତିନିବାଡ଼ରେ ସର୍ବାଙ୍ଗ ହୋଇ ବେଶ ହୋଇ ଓ ସନ୍ଧ୍ୟା ଧୂପ ଉଠି ପଣ୍ଡା ପୂଜାରେ ବସିଥାନ୍ତି । ଲକ୍ଷ୍ମୀ ରଥଠାରେ ନୀତି ବଢ଼ାଇ ଜଗମୋହନ ଜୟବିଜୟ ଦ୍ୱାରଠାକୁ ଆସିଥାନ୍ତି । ପତି ମହାପାତ୍ରେ ଜଗନ୍ନାଥଙ୍କ ଅଙ୍ଗରୁ ଆଜ୍ଞାମାଳ ଆଣି ଲକ୍ଷ୍ମୀଙ୍କୁ ଦିଅନ୍ତି । ପଣ୍ଡା ପୂଜା ବଢ଼ାଇ ଧୂପ ଦୀପ ଦେଇ ଚେରା ବଢ଼ାନ୍ତି । ଲକ୍ଷ୍ମୀଙ୍କ ବିମାନ ଜଗମୋହନରୁ ନାକଚଣା ଦୁଆର ଦେଇ ତେନ୍ତୁଳିଗଛଠାରେ ରଖାଯାଏ । ସେଠାରେ ଭିତରଛ ମହାପାତ୍ର ଗରାବଡୁଠାରୁ ହାତୁଆଣି ବନ୍ଧାପନା ଓ ଦହିପାଟ ମଣୋହି କରନ୍ତି । ବିମାନକୁ ଶ୍ରୀଜଗନ୍ନାଥଙ୍କ ରଥପାଖକୁ ନିଅନ୍ତି । ସେବକ ମଧ୍ୟରୁ ଜଣେ ରଥର ଖଣ୍ଡେ କାଠ ଭାଙ୍ଗିଦେଇ ହେରାଗୋହିରୀ ସାହି ଦେଇ ବଡ଼ଦେଉଳକୁ ବିଜେ କରନ୍ତି ।

ଆଉ ଦୁଇଦିନ ପରେ ଫେରିବା ପାଇଁ ମହାପ୍ରଭୁ ଲକ୍ଷ୍ମୀ ଠାକୁରାଣୀଙ୍କୁ ସାନ୍ତ୍ୱନା ଦେଇ ସମ୍ମତ ସୂଚକ ଅଧର ଚୁମ୍ବିତ ମାଳା ମାଆଙ୍କୁ ଲାଗି କରାଯାଏ । ପରିଶେଷରେ ମହାଲକ୍ଷ୍ମୀ ମହାପ୍ରଭୁଙ୍କୁ ସଙ୍ଗରେ ଆଣିପାରି ନ ଥିବାରୁ ଲଜ୍ଜିତ ହୋଇ ତାଙ୍କ ବିମାନକୁ ନାକଚଣା ଦ୍ୱାରଦେଇ ଫେରାଇ ଆଣି ଶରଧାବାଲିରେ ଥିବା ନନ୍ଦିଘୋଷ ରଥର ଚକା ଭାଙ୍ଗି ରାଜଦାଣ୍ଡରେ ନ ଆସି ହେରାଗୋହିରୀ ସାହି ବାଟେ ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଏଥିପାଇଁ ଏହାକୁ ହେରାପଞ୍ଚମୀ ବୋଲି କୁହାଯାଇଛି । ଏହା ରଥଯାତ୍ରାର ଏକ ଉପଯାତ୍ରା କହିଲେ ଅତ୍ୟୁକ୍ତି ହେବ ନାହିଁ । (ଶ୍ରୀ.ସ୍ୱ. ୨ୟ - ପୃ. ୭୧-୭୨, ଓ.ସାଂ.ଶ.- ପୃ. ୩୭୪-୩୭୫) ।

**ହେଙ୍ଗୁଡ଼**- ଲୁହାମୁନିଆ ସର । ଏହା ବସନ୍ତ ପଞ୍ଚମୀ ଦିନ ଚାଚିରି ବେଶ ପରେ ଜାଗରଠାରୁ ପ୍ରତିପଦ, ୪ର୍ଥୀ, ୮ମୀ ଓ ଦ୍ୱାଦଶୀରେ (ଫାଲଗୁନ ଶୁକ୍ଳ ପ୍ରତିପଦ, ୪ର୍ଥୀ, ୮ମୀ ଓ ଦ୍ୱାଦଶୀ) ଠାକୁରେବେଣ୍ଟ (ଶୀକର)କୁ ବିଜେ ସମୟରେ ପାଞ୍ଚଗୋଟି କାଣ୍ଡ ହେଙ୍ଗୁଡ଼ ଯୋଗାଯାଏ । (ଶ୍ରୀ.ସ୍ୱ. ୨ୟ - ପୃ. ୪୫/୪୬) ।

**ହୋମ**- *ସଂ.ବି.*- ଶ୍ରୀମନ୍ଦିରରେ ହୋମ ଏକ ଅପରିହାର୍ଯ୍ୟ କର୍ମ । ପ୍ରତିଦିନ ପୂଜାରେ ହୋମ ସାମାନ୍ୟ ଆକାରରେ ହେଉ ବା ବଡ଼ ଆକାରରେ ହେଉ (ପର୍ବ ତଥା ଦିନ ଦେଖି) ନିଶ୍ଚିତ ରୂପେ ହେଉଅଛି । ଦେବଯଜ୍ଞ ମନ୍ତ୍ରୋଚ୍ଚାରଣ ପୂର୍ବକ ଦେବତା ଓ ଗ୍ରହାଦିଙ୍କ ଉଦ୍ଦେଶ୍ୟରେ ଯଜ୍ଞାଗ୍ନିରେ ଘୃତାହୂତି ଦାନ ରୂପକ କର୍ମ ହେଉଅଛି ହୋମ । ପଞ୍ଚ ମହାଯଜ୍ଞ ମଧ୍ୟରୁ ହୋମ ଏକତମ । ବ୍ରହ୍ମଯଜ୍ଞ, ପିତୃଯଜ୍ଞ, ଦେବଯଜ୍ଞ (ହୋମ), ଭୂତଯଜ୍ଞ, ନୃଯଜ୍ଞ (ଅତିଥି ପୂଜନ) । ମନ୍ତ୍ରୋଚ୍ଚାରଣ ପୂର୍ବକ ଅଗ୍ନିରେ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଆହୂତି ଦେବା ହିଁ ହୋମ । ମନ୍ତ୍ର ଜପ ନ କଲେ ମନ୍ତ୍ର ସିଦ୍ଧ ହୁଏ ନାହିଁ । ମନ୍ତ୍ରୋଚ୍ଚାରଣ ପୂର୍ବକ ଆହୁତି ନ ଦେଲେ ଓ ହୋମ ନ କଲେ ଜପ ଫଳ ହୁଏ ନାହିଁ । ଏହି ହୋମ କର୍ମ ପାଇଁ ହୋମ କୁଣ୍ଡ ସ୍ଥାପନ ଏକାନ୍ତ ଆବଶ୍ୟକ । ହୋମକୁଣ୍ଡ- ହବନୀ ଯେଉଁ କୁଣ୍ଡରେ ଅଗ୍ନି ସ୍ଥାପନ ପୂର୍ବକ ଆହୂତି ଦିଆଯାଏ । ହୋମକୁଣ୍ଡ ଅଗ୍ନିର ପାଉଁଶ କ୍ଷେତରେ ଦିଆଯାଏ । ହୋମର ପବିତ୍ରତା ହିନ୍ଦୁଧର୍ମର ଖୁବ୍ ବିଶ୍ୱାସଯୋଗ୍ୟ କର୍ମ । ପରିବେଶକୁ ଏହା ସୁସ୍ଥ ଓ ମୁକ୍ତ ରଖେ । ହୋମ ନିମନ୍ତେ ହୋମ ଯୋଗାଣିଆ ସେବକ ମଧ୍ୟ ହୋମ ଉପକରଣ ଠିକ୍ ସମୟରେ ଯୋଗାଇ ଦେଉଛନ୍ତି । (ଶ୍ରୀ.ସ୍ୱ. ୨ୟ - ପୃ. ୧୬/୧୧୮, କୃ.ବି.ଓ.ଶ.ସ. - ପୃ. ୧୦୫୭, ଓ.ସାଂ.ଶ. - ୩୭୫, ପୂ.ଓ.ଭା. - ୯୨୩୮) ।

**ହୋମକୁଣ୍ଡ**- *ସଂ.ବି.*- ହୋମାର୍ଥ କୁଣ୍ଡ, ହବନୀ, ଯେଉଁ କୁଣ୍ଡ ମଧ୍ୟରେ ଅଗ୍ନି ସ୍ଥାପନ ପୂର୍ବକ ଆହୁତି ଦିଆଯାଏ । (ପୂ.ଓ.ଭା. - ପୃ. ୯୨୩୮, ଓ.ସାଂ.ଶ. - ପୃ. ୩୭୫) ।

**ହୋଲି**- *ଦେ.ବି.*- ବସନ୍ତ ଉତ୍ସବ, ଦୋଳଯାତ୍ରା । ଏ ଉତ୍ସବରେ ରାଧାକୃଷ୍ଣଙ୍କ ମୂର୍ତ୍ତିକୁ ନେଇ ହିନ୍ଦୁମାନେ ଦୋଳବେଦିରେ ଦୋଳିରେ ଖେଳାନ୍ତି ଓ ପରସ୍ପର ମଧ୍ୟରେ ଅବିର ରଙ୍ଗ ଓ ରଙ୍ଗ ପିଚିକାରୀ ମରାମରି ହୁଅନ୍ତି । ଶୁକ୍ଳ ଦଶମୀରୁ ପୂର୍ଣ୍ଣିମା ହେଉଛି ଫାଲଗୁନ ରାଜଦୋଳ ଓ ଚୈତ୍ର କୃଷ୍ଣ ପ୍ରତିପଦାରୁ ପଞ୍ଚମୀକୁ ପଞ୍ଚଦୋଳ କୁହାଯାଏ । ପୂର୍ଣ୍ଣିମା ବାସୀକୁ ସାଧାରଣତଃ ହୋଲି କୁହାଯାଏ । ଏହାକୁ ମଧ୍ୟ 'ଯମୁନା ଗାଧୁଆ' ଲୋକେ କହନ୍ତି । ବିମାନରେ ଠାକୁରଙ୍କୁ ନେଇ ସାହିମାନଙ୍କରେ ବୁଲିବା, ରଙ୍ଗ ଖେଳିବା ଓ ଶେଷରେ ନଦୀରେ ସ୍ନାନ କରି ବିଜେ ଠାକୁରଙ୍କୁ ସ୍ନାନ କରାଇ ଫେରନ୍ତି । ଏହିଦିନ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ପରେ ଲକ୍ଷ୍ମୀ, ସରସ୍ୱତୀ ଓ ମଦନମୋହନ ନରେନ୍ଦ୍ରପୋଖରୀକୁ ଗମନ କରି ସେଠାରେ ପୂଜା ଆରାଧନା, ବନ୍ଦାପନା, ଚାମର ଆଲଟ ପରେ ଶୀତଳ ଭୋଗ ମଣୋହି ପରେ ଶ୍ରୀମନ୍ଦିର ଦକ୍ଷିଣୀ ଘରକୁ ବିଜେ କରନ୍ତି । (ଶ୍ରୀ.ସ୍ୱ. - ପୃ. ୧୧୨, ପୂ.ଓ.ଭା. - ପୃ. ୯୨୪୧) ।

●

# କ୍ଷ

**କ୍ଷଟକ**-*ଦେ.ବି.*- ପରମାତ୍ମା, ତ୍ରାଣକର୍ତ୍ତାଙ୍କୁ ବୁଝାଏ । ଶ୍ରୀଜଗନ୍ନାଥ ଯେହେତୁ ଓଡ଼ିଶାର ଆରାଧ ଦେବତା ଏଣୁ ଶ୍ରୀଜଗନ୍ନାଥଙ୍କୁ ବୁଝାଇଥାଏ ।
(ଓ.ସାଂ.ଶ.- ପୃ.୯୮) ।

**କ୍ଷନ୍ତା**-କ୍ଷମାଶୀଳ, କ୍ଷମାବାନ୍ ଈଶ୍ୱର ହିଁ କେବଳ ଦୋଷୀଙ୍କର କ୍ଷମାକର୍ତ୍ତା; ତାଙ୍କ ବ୍ୟତୀତ ଦ୍ୱିତୀୟ କେହି ନାହିଁ ଏବଂ ସେହି ପରମେଶ୍ୱର କ୍ଷମାଶୀଳ ହୋଇଥିବାରୁ ସେ ପରମଶକ୍ତିମାନ ବୋଲି ଲୋକରେ ବିଦିତ ଅଛି । ତେଣୁ ଯଥାର୍ଥରେ କୁହାଯାଇଛି - 'ଦଣ୍ଡିବା ଶକ୍ତି ଯା'ର ଥାଇ, ସେ ପୁଣି କ୍ଷମା ଆଚରଇ' (ଭାଗବତ) ।
(ଶ.କ.ଦ୍ରୁ. ୨ୟ- ପୃ.୨୨୯) ।

**କ୍ଷୀରଖାଇ**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ବିମଳା ମନ୍ଦିରର ଚତୁର୍ଥ ବଖରା । ଏହି ବଖରା ମୁହଁରେ ଏକ ଖୋପ ଅଛି ଓ ଏଥିରେ ଏହି କ୍ଷୀର ଖାଇ ଦେବୀଙ୍କର ମୂର୍ତ୍ତି ଅଛି ।
(ଶ୍ରୀ.ବେ.ଦେ.- ପୃ.୬୮) ।

**କ୍ଷୀରଚୋରା ଗୋପୀନାଥ**-*ଦେ.ବି.*- ଏହି ମନ୍ଦିର ଶ୍ରୀମନ୍ଦିରର ପଶ୍ଚିମ ଭିତର ବେଢ଼ା ଦ୍ୱାର ନିକଟରେ ଭୁବନେଶ୍ୱରୀ ମନ୍ଦିରକୁ ଲାଗି ଅବସ୍ଥିତ । ମୁଦିରସ୍ତଙ୍କ ମାର୍ଫତରେ ଏହା ରହିଅଛି । ବାଲେଶ୍ୱର ନିକଟସ୍ଥ ରେମୁଣାରେ ବିରାଜିତ ଶ୍ରୀକୃଷ୍ଣ ବିଗ୍ରହ । ଏହାଙ୍କଠାରେ ପ୍ରତିଦିନ ୧୨ଟି ପାତ୍ରରେ କ୍ଷୀର ବା ଘନ ଆଉଟା ଦୁଧ ଭୋଗ ହୁଏ । ଭକ୍ତ ମାଧବେନ୍ଦ୍ର ପୁରୀଙ୍କ ପାଇଁ ଏହି ଦେବତା ନିଜେ ଗୋଟିଏ କ୍ଷୀର ପାତ୍ର ଚୋରି କରିଥିବାରୁ ସେହିଦିନଠାରୁ ତାଙ୍କର ନାମ କ୍ଷୀରଚୋରା ଗୋପୀନାଥ ହୋଇଛି ।
(ଶ୍ରୀ.ସ୍ୱ. - ପୃ. ୨୩୨) ।

**କ୍ଷୀରସାଗର**-*ଦେ.ବି.*- ପୁରାଣରେ ସାତୋଟି ସାଗର ମଧ୍ୟରୁ ଅନ୍ୟତମ । ସେଗୁଡ଼ିକ ହେଲା- ଲବଣ, ଦଧି, ଦୁଗ୍ଧ, ଘୃତ, ସୁରା, ମଧୁ ଓ ଇକ୍ଷୁ । ବିଷ୍ଣୁଙ୍କର ଅନନ୍ତ ବୈକୁଣ୍ଠ ପୁର କ୍ଷୀର ସାଗରରେ ଅବସ୍ଥିତ । ପୁରାଣୋକ୍ତି ଦୁଗ୍ଧ ସାଗର । ପ୍ରାଚୀନ ହିନ୍ଦୁମାନେ ପୃଥିବୀର ସମୁଦ୍ରକୁ ସାତଟି ବୋଲି ଗଣନା କରୁଥିଲେ । ଯଥା- ୧. ଲବଣ, ୨. ଇକ୍ଷୁ, ୩. ଦଧି, ୪. ଦୁଗ୍ଧ, ୫. ମଧୁ, ୬. ମଦିରା, ୭. ଘୃତ । ଏହି ସାତଟି ସାଗରରେ ସାତ ପ୍ରକାର ପଦାର୍ଥ ଜଳ ରୂପେ ଥିଲା । ପୁରାଣରେ ଅଛି ଯେ କ୍ଷୀର ସମୁଦ୍ର ଭିତରେ ବିଷ୍ଣୁଙ୍କର ବାସସ୍ଥାନ ବୈକୁଣ୍ଠ ଅବସ୍ଥିତ । ମନ୍ଦରଗିରିକୁ ମନ୍ଥନ ଦଣ୍ଡ ଓ ବାସୁକୀକୁ ମନ୍ଥନ ରଜ୍ଜୁ କରି ଏକ ପାଖରେ ଅସୁର ଓ ଏକ ପାଖରେ ଦେବତାମାନେ ସେ ଦଉଡ଼ିକୁ ଧରି କ୍ଷୀର ସମୁଦ୍ରକୁ ମନ୍ଥନ କରିବାରୁ ଏଥିରୁ ଲକ୍ଷ୍ମୀ, ଚନ୍ଦ୍ର କୌସ୍ତୁଭମଣି, ଉଚ୍ଚୈଶ୍ରବା ଅଶ୍ୱ, ଐରାବତ ହସ୍ତୀ, ଅମୃତ, ଶତଦଳ ପଦ୍ମ, ପାରିଜାତ ଫୁଲ ଓ କାଳକୂଟ ବିଷ ବାହାରିଥିଲା ।
(ଓ.ସା°.ଶ.- ୯୩, ପୂ.ଓ.ଭା. - ପୃ. ୧୮୬୩) ।

**କ୍ଷୀରାବ୍ଧି ତନୟା**-*ସଂ.ବି.ସ୍ତ୍ରୀ.*- (କ୍ଷୀରାବ୍ଧି + ତନୟା) ଲକ୍ଷ୍ମୀ ।
(ପୂ.ଓ.ଭା. - ପୃ. ୧୮୬୪) ।

**କ୍ଷୀରାବ୍ଧିଶାୟୀ**-*ସଂ.ବି.*- ବିଷ୍ଣୁଙ୍କର ନାମ ବିଶେଷ । କ୍ଷୀରସାଗରସ୍ଥ ବୈକୁଣ୍ଠରେ ବାସ କରନ୍ତି ବୋଲି ବିଷ୍ଣୁଙ୍କର ଏହି ନାମ । ପୁରାଣରେ ଅଛି ଯେ ମହାପ୍ରଳୟ କାଳରେ ବିଷ୍ଣୁ ବାସୁକୀ ନାଗର କୁଣ୍ଡଳୀକୃତ ଦେହରେ ଶଯ୍ୟା ରଚନା କରି ଶୋଇ ପ୍ରଳୟାର୍ଣ୍ଣବରେ ଭାସୁଥିଲେ ଓ ତାଙ୍କ ନାଭିକମଳରୁ ପଦ୍ମନାଡ଼ ବାହାର ହେଲା ଓ

ସେଥିରେ ପଦ୍ମ ଫୁଟିଲା । ସେହି କମଳରୁ ବ୍ରହ୍ମା ସୃଷ୍ଟି ହୋଇ ପୁନର୍ବାର ସୃଷ୍ଟି ରଚନା କରିଥିଲେ । ତେଣୁ ସେ ପଦ୍ମଯୋନି ।
(ପୂ.ଓ.ଭା. -ପୃ. ୨୮୬୪) ।

**କ୍ଷୀରିସାଗର**-*ଦେ.ବି.*- ଏହି ନାମ ଏକ କିମ୍ବଦନ୍ତୀ । କିମ୍ବଦନ୍ତୀ କହେ କୌଣସି ଏକ ରାଜାଙ୍କ ଶାସନ କାଳରେ ରତ୍ନସିଂହାସନ ଚତୁଃପାର୍ଶ୍ୱ ପୋଖରିଆରେ କାକରା ପିଠାର ବାଡ଼ ଦେଇ ହଣ୍ଡା ହଣ୍ଡା କ୍ଷୀରି ସେଠାରେ ଢଳାଯାଇ ଭୋଗ କରାଯାଉଥିଲା । ଏଥିନିମନ୍ତେ ବହୁସୁଆର ଆବଶ୍ୟକ ପଡ଼ିବାରୁ ସାମନ୍ତରାୟ, ସାହୁ, ମହାନ୍ତି, ଦୀକ୍ଷିତ ସଂଜ୍ଞକ ସୁଆରମାନେ, ବ୍ରାହ୍ମଣମାନେ ଏହି ମହାନ୍ ବହୁଳ ଭୋଗ ଦ୍ରବ୍ୟ ପ୍ରସ୍ତୁତ ପାଇଁ ନିଯୁକ୍ତି ହୋଇଥିଲେ ।
(ପୁ.ବୋ.-୧୭୦) ।

**କ୍ଷୀରି ସୁଆର**-*ଦେ.ବି.*- ଶ୍ରୀମନ୍ଦିରର ଶ୍ରୀଜୀଉଙ୍କ ଭୋଗ ଲାଗି ନିମନ୍ତେ ଯେଉଁ ସୁଆର କ୍ଷୀରି ପ୍ରସ୍ତୁତ ହୁଏ ।
(ପୁ.ବୋ.- ପୃ.୧୭୦) ।

**କ୍ଷେତ୍ର**-*ଦେ.ବି.*- ଭଗବାନ ବିଷ୍ଣୁ ଗୟାସୁରକୁ ବଧ କରି ବିଜୟ ସଙ୍କେତ ସ୍ୱରୂପ ପୁରୁଷୋତ୍ତମ କ୍ଷେତ୍ରରେ ତାଙ୍କ ହସ୍ତାୟୁଧ ପଞ୍ଚଜନ୍ୟ ଶଙ୍ଖ, ଏକାମ୍ର କ୍ଷେତ୍ରରେ ସୁଦର୍ଶନଚକ୍ର, ବିରଜା କ୍ଷେତ୍ରରେ କୌମୋଦିକୀ ଗଦା ଓ ଅର୍କକ୍ଷେତ୍ର କୋଣାର୍କରେ କିଂଜଳିନୀ ପଦ୍ମ ଚତୁର୍ବିଧ ଆୟୁଧ ସଂସ୍ଥାପନ କରିଥିଲେ । ସେହି ଅନୁସାରେ ପୁରୁଷୋତ୍ତମ କ୍ଷେତ୍ର ଶଙ୍ଖକ୍ଷେତ୍ର, ଏକାମ୍ରକ୍ଷେତ୍ର ଚକ୍ରକ୍ଷେତ୍ର, ବିରଜା କ୍ଷେତ୍ର, ଗଦାକ୍ଷେତ୍ର, ଅର୍କକ୍ଷେତ୍ର - କୋଣାର୍କ ପଦ୍ମକ୍ଷେତ୍ର ନାମରେ ବିଦିତ ହେଲା । କ୍ଷେତ୍ର ହେଉଛି ପରମ ପବିତ୍ର ଭୂଖଣ୍ଡ । ସାଂଖ୍ୟ ମତରେ ଚବିଶ ତତ୍ତ୍ୱର ଏକତ୍ର ଘଟିଲେ କ୍ଷେତ୍ର ହୁଏ । ପୁରୀ-ଶ୍ରୀକ୍ଷେତ୍ର ଶଙ୍ଖକ୍ଷେତ୍ର, ଭୁବନେଶ୍ୱର ଶୈବକ୍ଷେତ୍ର, ଯାଜପୁର ବିରଜାକ୍ଷେତ୍ର, ମହାବିନାୟକ ବିନାୟକ (ଗଣେଶ) କ୍ଷେତ୍ର, କେନ୍ଦ୍ରାପଡ଼ା ତୁଳସୀକ୍ଷେତ୍ର, କୋଣାର୍କ ଅର୍କକ୍ଷେତ୍ର, ଝଙ୍କଡ଼ରେ ଶକ୍ତିକ୍ଷେତ୍ର । ପୁରୁଷୋତ୍ତମକ୍ଷେତ୍ର ପୁରାଣୋକ୍ତ ନୀଳାଚଳକୁ କେନ୍ଦ୍ରକରି ପାଞ୍ଚକୋଶ ବ୍ୟାପୀ ଭୂଖଣ୍ଡ ପୁରୁଷୋତ୍ତମକ୍ଷେତ୍ର ବା ଶ୍ରୀକ୍ଷେତ୍ର । ଏହି ପାଞ୍ଚକୋଶ ବ୍ୟାପୀ ପବିତ୍ର ଭୂମିରୁ ଦୁଇକୋଶ ସାଗରର ଉପକୂଳ । ଏହି ପଞ୍ଚକୋଶୀକ୍ଷେତ୍ର ଦକ୍ଷିଣାବର୍ତ୍ତ ଶଙ୍ଖାକୃତି । ସେହି ଶଙ୍ଖର ନାଭିକୁ ଶଙ୍ଖନାଭିମଣ୍ଡଳ କୁହାଯାଏ । ଏହିଠାରେ ଅବସ୍ଥାପିତ ଶ୍ରୀମନ୍ଦିର । ଅଯୋଧ୍ୟା ବାରାଣସୀ, ବିରଜା ଆଦି ପୁଣ୍ୟସ୍ଥାନ ମଧ୍ୟ ପଞ୍ଚକ୍ରୋଶବ୍ୟାପ୍ତ । ପଣ୍ଡିତ ହରିହର ମହାପାତ୍ରଙ୍କ ମତରେ ପୁରୀ ମାଉସୀମା ମନ୍ଦିରରୁ ବ୍ରହ୍ମଗିରି ପର୍ଯ୍ୟନ୍ତ ହେଉଛି ଶ୍ରୀକ୍ଷେତ୍ର । ଏଠାରେ ପ୍ରସାରଲାଭ କରିଥିଲା କନ୍ଧ ସଭ୍ୟତା ଓ ଏମାନଙ୍କର ଆରାଧ୍ୟ ଦେବ ଥିଲେ ମାଧବ । ଗୁଣ୍ଡିଚାମନ୍ଦିରଠାରୁ କୋଣାର୍କ କାକଟପୁର, ନିଆଳି, ମାଧବ ଅଞ୍ଚଳ ମାଧବକ୍ଷେତ୍ର । ଏଠାରେ ଗଢ଼ି ଉଠିଥିଲା ଶବର ସଭ୍ୟତା ଓ ଏମାନଙ୍କର ଆରାଧ୍ୟ ଦେବୀ ଥିଲେ ଜଗନ୍ତା । ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ର ଆଗମନ ପରେ ଏହି ଦୁଇ ଆରାଧ୍ୟ ଦେବଦେବୀ ଓ ତାଙ୍କ ନିଜର ଆରାଧ୍ୟଦେବ ଶିବଙ୍କୁ ନେଇ ;ଏକକ ବିଗ୍ରହ ପୁରୁଷୋତ୍ତମ ନୃସିଂହଙ୍କ କ୍ରୋଡ଼ରେ ଲକ୍ଷ୍ମୀ ସ୍ଥାପନ କରିଥିଲେ । ଚୋଳଗଙ୍ଗଦେବ ଏହି ଏକକ ବିଗ୍ରହକୁ "ତ୍ରିଧା" କରି ସ୍ଥାପନ କରିଥିଲେ । ଏଣୁ ରତ୍ନସିଂହାସନର ତ୍ରିଧା ତ୍ରିଦେବ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ପୂଜା ପାଉଛନ୍ତି । ପରବର୍ତ୍ତୀକାଳରେ ସୁଦର୍ଶନ, ତ୍ରିଦେବ, ଶ୍ରୀଦେବୀ ଓ ଭୂଦେବୀ ଏଠାରେ ପୂଜିତ ।

**କ୍ଷେତ୍ରଦ୍ୱାର**- ଶ୍ରୀମନ୍ଦିରର ଉତ୍ତର ଦ୍ୱାର କ୍ଷେତ୍ରଦ୍ୱାର ନାମରେ ପରିଚିତ ।
(ମ.ନ. - ପୃ. ୮୦) ।

**କ୍ଷେତ୍ରଜ୍ଞ**-*ସଂ.ବି.*- ଜୀବାତ୍ମା, ଅନ୍ତର୍ଯ୍ୟାମୀ । ଆତ୍ମା, ଭଗବାନ, ବିଷ୍ଣୁ । ଆତ୍ମଜ୍ଞାନୀ ।
(ଓ.ସାଂ.ଶ.- ପୃ.୯୮) ।

**କ୍ଷେତ୍ରପରିକ୍ରମା**-*ଦେ.ବି.*- ମାର୍ଗଶିର କୃଷ୍ଣ ପଞ୍ଚମୀ ଦିନ ପାରମ୍ପରିକ ବିଧିରେ ପୁରୀର ପଞ୍ଚକ୍ରୋଶ ଅଞ୍ଚଳ ପରିକ୍ରମାକୁ କ୍ଷେତ୍ର ପରିକ୍ରମା କୁହାଯାଏ । (ପୁ.ବୋ.- ପୃ.୧୭୦) ।

**କ୍ଷେତ୍ରପାଳ**-*ଦେ.ବି.*- କ୍ଷେତ୍ରପାଳ ହେଉଛନ୍ତି ଶିବଙ୍କର ଏକ ରୂପ । ସହର/ଗ୍ରାମର ଐଶାନ୍ୟ କୋଣରେ କ୍ଷେତ୍ରପାଳ ମୂର୍ତ୍ତି ସ୍ଥାପିତ ହୁଅନ୍ତି । ତାଙ୍କର ମୁଖ ପଶ୍ଚିମ ଆଡ଼କୁ ହେବା ଉତ୍ତମ ଓ ଦକ୍ଷିଣ ଆଡ଼କୁ ହେବା ମଧ୍ୟମ । ଶ୍ରୀମନ୍ଦିରରେ କ୍ଷେତ୍ରପାଳଙ୍କ ମୁଖ ଦକ୍ଷିଣକୁ । କ୍ଷେତ୍ରପାଳ ତିନିରୂପେ କଳ୍ପନା କରାଯାଇଛି । ସାତ୍ତ୍ୱିକ- ସୌମ୍ୟବଦନ, ରାଜସିକ, ତାମସିକ - ଉଗ୍ର ବଦନ । ବାହୁ ହିସାବରେ କ୍ଷେତ୍ରପାଳ ଅଟନ୍ତି ଦ୍ୱିବାହୁ, ଚତୁର୍ବାହୁ, ଷଡ଼ବାହୁ କିମ୍ବା ଅଷ୍ଟବାହୁ । ଯେପରି ଶିବକ୍ଷେତ୍ର ଭୁବନେଶ୍ୱରର କ୍ଷେତ୍ରପାଳ ଅନନ୍ତ ବାସୁଦେବ, ଶଙ୍ଖକ୍ଷେତ୍ର ପ୍ରକାର କ୍ଷେତ୍ରପାଳ ଶ୍ରୀଲୋକନାଥ ଶରୀରର କ୍ଷେତ୍ରପାଳ ହେଲେ ଅଣଚାଶ ଦେବତା । ତୀର୍ଥକ୍ଷେତ୍ରର ସୀମାକୁ ଯେଉଁ ଦେବତା ଜଗିଥାଆନ୍ତି (ଯଥା- ପୁରୀର କ୍ଷେତ୍ରସ୍ୱାମୀ ଜଗନ୍ନାଥ, କିନ୍ତୁ କ୍ଷେତ୍ରପାଳ ହେଲେ ଲୋକନାଥ ଏବଂ ସେହିପରି ଭୁବନେଶ୍ୱରର କ୍ଷେତ୍ରସ୍ୱାମୀ ଶ୍ରୀ ଲିଙ୍ଗରାଜ ଏବଂ କ୍ଷେତ୍ରପାଳ ଅନନ୍ତ ବାସୁଦେବ ।

ଲିଙ୍ଗପୁରାଣ ମତରେ ଶିବଙ୍କର ଅବତାର । ଶାକ୍ତ ନନ୍ଦ ତରଙ୍ଗିଣୀ ଓ ଡାକିନୀ ତନ୍ତ୍ରରେ ଏହି ତଥ୍ୟର ଉଲ୍ଲେଖ ଅଛି । ଅନ୍ୟାନ୍ୟ ଦେବତାମାନଙ୍କର ପୂଜା ସହିତ ଏହାଙ୍କର ପୂଜା ବ୍ୟବସ୍ଥା କର୍ତ୍ତବ୍ୟ । ଏହାଙ୍କର ବିଭିନ୍ନ ରୂପ ଓ ବିଭିନ୍ନ ପୂଜା ଉପକରଣ ମିଳିଥାଏ । ଭାରତର ବିଭିନ୍ନ ପ୍ରାନ୍ତରେ ସାଧାରଣ ଲୋକଙ୍କ ଦ୍ୱାରା ପୂଜିତ ହୁଅନ୍ତି । ଶିବଙ୍କ ପୁତ୍ର ନାମରେ ମଧ୍ୟ ବିଦିତ । ଏହାଙ୍କର ଆଶୀର୍ବାଦରେ ଅଳ୍ପ ପରିଶ୍ରମରେ ପ୍ରଚୁର ଫଳ ମିଳିଥାଏ । ଏହାଙ୍କର ରୂପ ବର୍ଣ୍ଣନା ଯଥା- ବିକୃତ ଆନନ, ତ୍ରିଲୋଚନ, ଜଟାକପାଳଧାରୀ, ଦିଗମ୍ବର, ଭୁଜଙ୍ଗ ଭୂଷଣ, ଉଗ୍ରଦର୍ଶନ, କେଶ ପିଙ୍ଗଳବର୍ଣ୍ଣ, ତ୍ରିଶୂଳ, ଡମ୍ବରୁ, ଖଟ୍ୱାଙ୍ଗଧାରୀ, ତନ୍ତ୍ରଶାସ୍ତ୍ରାନୁସାରେ ଶିବଙ୍କର ଗୋଟିଏ ନାମ ମଧ୍ୟ କ୍ଷେତ୍ରପାଳ । ବାସ୍ତୁ ପୂଜନ ସମୟରେ ଶଙ୍ଖପାଳ, ନାଗପାଳ ଏବଂ ବାସ୍ତୁପାଳଙ୍କ ସହିତ ଏହାଙ୍କର ପୂଜନ ହୋଇଥାଏ । ପୁରୋହିତ ଦର୍ପଣରେ ଏହାଙ୍କୁ ଶମ୍ଭୁତନୟ ବୋଲି କୁହାଯାଇଛି । କ୍ଷେତ୍ର ଅର୍ଥାତ୍ ଶିଷ୍ୟ କ୍ଷେତ୍ରର ଦେବତା । ଦକ୍ଷିଣ ଭାରତରେ ନଗର ରକ୍ଷକ ଦେବତା ମଧ୍ୟ ।

(ପୌ.(ବ) ୧ମ - ପୃ. ୪୨୭, ପୁ.ବୋ.-ପୃ. ୧୭୧, ଅ.ସାଂ.ଶ.- ପୃ.୯୮, ପୂ.ଓ.ଭା. ୨ୟ - ପୃ.୧୮୭୨) ।

**କ୍ଷେତ୍ରମାହାତ୍ମ୍ୟ**-*ସଂ.ବି.*- ପୁଣ୍ୟଭୂମିକୁ ଦର୍ଶନ କରି ପରିକ୍ରମା ପୂର୍ବକ ଯାତ୍ରୀ ଯେଉଁ ଫଳ ଲାଭ କରେ ଏହା ଯେଉଁ ଗ୍ରନ୍ଥରେ ବର୍ଣ୍ଣିତ ହୋଇଥାଏ ତାହା କ୍ଷେତ୍ରମାହାତ୍ମ୍ୟ । ଯେପରି ଶ୍ରୀକ୍ଷେତ୍ର ମାହାତ୍ମ୍ୟ ।

**କ୍ଷେତ୍ରେଶ୍ୱରୀ**-*ଦେ.ବି.*- ଶ୍ରୀମନ୍ଦିରସ୍ଥ ବେଢ଼ାରେ ଅଛି ବିମଳାଙ୍କ ମନ୍ଦିର । ବିମଳାଙ୍କୁ କ୍ଷେତ୍ରେଶ୍ୱରୀ କୁହାଯାଏ । ବିରଜାକ୍ଷେତ୍ରରେ କ୍ଷେତ୍ରେଶ୍ୱରୀ ହେଲେ ଦେବୀ ବିରଜା ।

(ପୁ.ବୋ.- ପୃ.୧୭୧) ।

●

# ପରିଶିଷ୍ଟ

## ଅ

## ଆ

## କ

## ଖ

## ଘ



## ଚ

## ଛ

## ନ



## ପ

## ଯ

## ର



## ଲ

## ଶ

## ଷ



## ସ

# ସହାୟକ ଗ୍ରନ୍ଥସୂଚୀ


ଦାରୁ ଦେବତା - ବେଣୀମାଧବ ପାଢ଼ୀ
ଓଡ଼ିଆ ସାହିତ୍ୟରେ ଶ୍ରୀଜଗନ୍ନାଥ ଚେତନା - ଡଃ ବାସୁଦେବ ସାହୁ
ଶ୍ରୀଜଗନ୍ନାଥ ତତ୍ତ୍ୱ - ଶ୍ରୀ ଗୋପୀନାଥ ମହାନ୍ତି
ଉତ୍କଳ ଯୁଗେ ଯୁଗେ - ସୁରେନ୍ଦ୍ର ମହାନ୍ତି
ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ - ପ୍ରଫୁଲ୍ଲ ପଟ୍ଟନାୟକ
ପୁରୁଷୋତ୍ତମ ଶ୍ରୀଜଗନ୍ନାଥ - ନବକିଶୋର ଦାସ
ଜଗତ ଦର୍ଶନରେ ଜଗନ୍ନାଥ - ଗୁରୁଚରଣ ପଟ୍ଟନାୟକ
ଶ୍ରୀଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶ - ଡଃ ବାସୁଦେବ ସାହୁ
ଓଡ଼ିଶାର ଧର୍ମ - ଭଗବାନ ପଣ୍ଡା
ଶ୍ରୀଜଗନ୍ନାଥ ଚେତନାର ଦୀପ୍ତି ଓ ବ୍ୟାପ୍ତି - ଜ୍ଞାନଯୁଗ ପବ୍ଲିକେଶନ
ଲକ୍ଷ୍ମୀ ପୁରାଣ - ସଂ. ସୁରେନ୍ଦ୍ର ନାଥ ଦାଶ
ଶ୍ରୀଜଗନ୍ନାଥଙ୍କ ବେଶ ରହସ୍ୟ - ସ୍ମରିତା ପ୍ରଧାନ
ପୁରାଣ ପରମ୍ପରା ଓ ନବକଳେବର - ଡଃ ପ୍ରଫୁଲ୍ଲ କୁମାର ମିଶ୍ର
ଶ୍ରୀଜଗନ୍ନାଥ ପରିକ୍ରମା - ଡଃ ଶରତ ଚନ୍ଦ୍ର ମହାପାତ୍ର
ଚକ୍ର ସୁଦର୍ଶନ - ପ୍ରଫୁଲ୍ଲ ତ୍ରିପାଠୀ
ପ୍ରାଚୀ ମାହାତ୍ମ୍ୟ - କୈଳାସ ଚନ୍ଦ୍ର ମହାନ୍ତି
ନୀଳାଚଳ - ମଧୁସୂଦନ ଦାସ
ଶ୍ରୀକ୍ଷେତ୍ର ଦର୍ଶନ - ପୂର୍ଣ୍ଣଚନ୍ଦ୍ର ମିଶ୍ର
ଶ୍ରୀକ୍ଷେତ୍ର ଦର୍ଶନ - ଜଗବନ୍ଧୁ ପାଢ଼ୀ
ଶ୍ରୀଜଗନ୍ନାଥ ଓ ପୁରୀ - ଗୌରୀ କୁମାର ବ୍ରହ୍ମା
ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ସଂସ୍କୃତି - ପରମାନନ୍ଦ ତ୍ରିପାଠୀ
ବୈଚିତ୍ର୍ୟମୟ ଶ୍ରୀମନ୍ଦିର - ଶରତ ଚନ୍ଦ୍ର
ନୀଳାଦ୍ରି ବିଜୟ - ସୁରେନ୍ଦ୍ର ମହାନ୍ତି
ପୁରୁଷୋତ୍ତମ ଶ୍ରୀଜଗନ୍ନାଥ - ଶ୍ରୀ ସଦାଶିବ ମିଶ୍ର
ଦାରୁ ବିଗ୍ରହ - ଅର୍ଜୁନ ଚରଣ ପଣ୍ଡା
ଉତ୍କଳିୟ ଲୋକ ସଂସ୍କୃତି ଓ ଶ୍ରୀଜଗନ୍ନାଥ - ଡଃ ତୁଳସି ଓଝା
ନୀଳ ସୁନ୍ଦର ଜଗନ୍ନାଥ - ନିର୍ମଳ ମିଶ୍ର




# ENGLISH BOOKS

| | | |
|---|---|---|
| Laxmi Tantra | | Pt. V. Krishnamacharya |
| Aspects of Purusottam Jagannath | | B.K. Swain |
| Sri Jagannath at Puri | - | Jagabandhu Padhi |
| Webb's Report | - | Odisha State Archives |
| The Cult of Jagannath & Regional Tradition | | Herman Kulke |
| Grome's Report | - | Odisha State Archives |
| Jagannath Consciousness | - | Edited by Subas Pani |
| The Cult of Jagannath | - | K.C. Mishra |
| The Saga of the Land of Jagannath | | Mayadhar Mansingha |
| Purusottam Kshetra | | Rama Chandra Mishra |
| Our Black Magician | | M. Ray |
| Jagannath in History and Religious Tradition | | Gopinath Mohapatra |
| History of Jagannath Temple in 19th Century | | Pravat Ku. Mukherjee |
| Jagannath in Alien eyes | - | N.P. Tripathy & Others |
| Religious Tradition in Eastern India & Lord SriJagannath | - | S.N. Dash |
| Mahaprabhu SriJagannath the Lord of the Universe | - | S.N. Dash |
| Jay Jagannath | - | Dhruba Maharaj |
| Jagannath Puri | | Mahanidhi Das Swami |
| Sri Jagannath | | SCS College Special Issue |
| Sri Jagannath of Nepal | | Sk. Makbul Islam |
| Temple Legends of Odisha | | Dr. R.P. Mohapatra |
| Srikshetra Parikrama | | Bhakti Purusottam Swami |





୧୯୪୯ ମସିହା ଜାନୁୟାରୀ ୧୧ ତାରିଖରେ ଖୋର୍ଦ୍ଧା ଜିଲ୍ଲା ସ୍ଥିତ କୁହୁଡ଼ି ନିକଟସ୍ଥ ରତନପୁର ଗ୍ରାମରେ ପ୍ରଫେସର ସୁରେନ୍ଦ୍ରନାଥ ଦାଶ ଜନ୍ମଗ୍ରହଣ କରିଥିଲେ । ରେଭେନ୍ସା ମହାବିଦ୍ୟାଳୟରୁ ସ୍ନାତକ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧୀ ଲାଭ କରି ୧୯୭୩ ମସିହାରେ କେନ୍ଦୁଝର ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟରେ ଯୋଗଦେଇଥିଲେ। ତା'ପରେ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀ ରୂପେ ସୁନ୍ଦରଗଡ଼ ଓ ସମ୍ବଲପୁର ଜିଲ୍ଲାରେ କିଛି ଦିନ କାର୍ଯ୍ୟକରି ପରବର୍ତ୍ତୀ ସମୟରେ ଏହି କର୍ମକ୍ଷେତ୍ରରୁ ଅବ୍ୟାହତି ନେଇ ପୁନର୍ବାର ଓଡ଼ିଆ ଅଧ୍ୟାପକ ରୂପେ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟ, ପାରଳାଖେମୁଣ୍ଡି, ରାଜଧାନୀ କଲେଜ, ଭୁବନେଶ୍ୱର ଓ ବି.ଜେ.ବି. କଲେଜ, ଭୁବନେଶ୍ୱରରେ କାର୍ଯ୍ୟକରିଥିଲେ। ୧୯୯୦ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ, ସ୍ନାତକୋତ୍ତର ଓଡ଼ିଆ ବିଭାଗରେ ପ୍ରାଧ୍ୟାପକ ରୂପେ ଯୋଗଦାନକରି, ୨୦୦୯ ମସିହା ଜାନୁୟାରୀ ମାସରେ ଅବସର ଗ୍ରହଣ କଲେ । ସଂପ୍ରତି ପଞ୍ଚାଶରୁ ଉର୍ଦ୍ଧ୍ୱ ବିଭିନ୍ନ ବିଶ୍ୱବିଦ୍ୟାଳୟର ଗବେଷକ ଓ ଗବେଷିକା ପ୍ରଫେସର ଦାସଙ୍କ ତତ୍ତ୍ୱାବଧାନରେ ଏମ୍.ଫିଲ., ପିଏଚ୍.ଡ଼ି. ଓ ଡ଼ି.ଲିଟ୍. କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉପାଧି ଲାଭ କରିଛନ୍ତି । ଏତଦ୍ ବ୍ୟତୀତ ଶ୍ରୀଜଗନ୍ନାଥ ଚିନ୍ତା ଚେତନା, ସାହିତ୍ୟ, ସଂସ୍କୃତି, ଧର୍ମ, ଦର୍ଶନ, ପୂଜା ପଦ୍ଧତି, ପର୍ବପର୍ବାଣି ଉପରେ ପର୍ଯ୍ୟବେସିତ ଅନେକ ଗ୍ରନ୍ଥ ମଧ୍ୟ ରଚନା କରିଛନ୍ତି । ବିଭିନ୍ନ ଜାତୀୟ ତଥା ଆନ୍ତଃର୍ଜାତୀୟ ଆଲୋଚନା ଚକ୍ରରେ ନିୟମିତ ଭାବେ ଯୋଗଦାନକରି ଜଗନ୍ନାଥ ଚେତନା ଓ ସଂସ୍କୃତି ଉପରେ ନିଜର ବକ୍ତବ୍ୟ ପ୍ରଦାନ କରିଥାନ୍ତି । ପ୍ରଫେସର ଦାଶ ୟୁ.ଜି.ସି. ଦ୍ୱାରା ଆର୍ଥିକ ସହାୟତାରେ 'ଓଡ଼ିଶାରେ ଶ୍ରୀଜଗନ୍ନାଥ ମନ୍ଦିର' ଓ 'ଭାରତରେ ଶ୍ରୀଜଗନ୍ନାଥ ମନ୍ଦିର' ଦୁଇଟି ବୃହତ୍ତର ଗବେଷଣା ପ୍ରକଳ୍ପ ମଧ୍ୟ ସମାପ୍ତ କରିଛନ୍ତି । ସମ୍ପ୍ରତି ବିଭିନ୍ନ ଜାତୀୟ, ଆଞ୍ଚଳିକ ତଥା ବୁଦ୍ଧିଜୀବି ସଂସ୍ଥାସହ ସଂଶ୍ଳିଷ୍ଟ ଥିଲେ ହେଁ ଭୁବନେଶ୍ୱରସ୍ଥ ଶ୍ରୀଜଗନ୍ନାଥ ଗବେଷଣା ଅନୁଷ୍ଠାନର ପ୍ରତିଷ୍ଠାତା-ସଂପାଦକ ଓ ଶ୍ରୀଜଗନ୍ନାଥ ପତ୍ରିକାର ସଂପାଦକ ରୂପେ କାର୍ଯ୍ୟରତ । ଗବେଷଣାତ୍ମକ ତଥ୍ୟ ଓ ବିଷୟବସ୍ତୁ ସଂଗ୍ରହାର୍ଥେ ଇଂଲଣ୍ଡ, ଆରବ ଓ ନେପାଳ ମଧ୍ୟ ପରିଦର୍ଶନ କରିଛନ୍ତି । 'ଶ୍ରୀମନ୍ଦିର ଶବ୍ଦକୋଷ' ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଆର୍ଥିକ ସହାୟତାରେ ବୃହତ୍ତର ଗବେଷଣା ପ୍ରକଳ୍ପ ଦ୍ୱାରା ପ୍ରସ୍ତୁତ କରାଯାଇଅଛି ।

ପ୍ରକାଶକ